# କର୍ମୀର ସାଧନା



SIBA

## ପ୍ରସନ୍ନ କୁମାର ଦାଶ

# କର୍ମୀର ସାଧନା

ଲେଖକ :
ଶ୍ରୀ ପ୍ରସନ୍ନ କୁମାର ଦାଶ

ପ୍ରକାଶକ :
ଶ୍ରୀ ପୁରୁଷୋତ୍ତମ ଦାଶ

ମୁଦ୍ରଣ :
ରାଷ୍ଟ୍ରଭାଷା ସମବାୟ ପ୍ରେସ୍, କଟକ

ପ୍ରଚ୍ଛଦପଟ :
ଶ୍ରୀ ଶିବ କୁମାର ପାଣିଗ୍ରାହୀ

ପ୍ରଥମ ସଂସ୍କରଣ :
୨୭/୮/୯୬

ମୂଲ୍ୟ-ଟ ୧୨୫-୦୦
(ଏକଶତ ପଚିଶ ଟଙ୍କା ମାତ୍ର)



ସହଧର୍ମିଣୀ ସ୍ୱର୍ଗୀୟା କୃଷ୍ଣପ୍ରିୟାଙ୍କ ସହ ଶ୍ରୀଯୁକ୍ତ ପ୍ରସନ୍ନ କୁମାର ଦାଶ

# ଅଭିମତ

ଓଡ଼ିଶାର ଜଣେ ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ଶ୍ରୀ ପ୍ରସନ୍ନ କୁମାର ଦାଶ ' କର୍ମୀର ସାଧନା' ନାମରେ ତାଙ୍କର ଆତ୍ମଜୀବନୀ ଲେଖିଛନ୍ତି । ୧୯୩୯ ମସିହାରୁ ସ୍ୱାଧୀନତା ଆନ୍ଦୋଳନରେ ପ୍ରଭାବିତ ହୋଇ ମୟୁରଭଞ୍ଜ ଗଡଜାତର କୁଶାସନ ବିରୁଦ୍ଧରେ ସଂଗ୍ରାମ କରିବା ପାଇଁ ସେ ପ୍ରତିଜ୍ଞା କରିଥିଲେ । ତତ୍‌କାଳୀନ ମୟୁରଭଞ୍ଜ ଗଡଜାତ ଆନ୍ଦୋଳନର ନେତା ଶ୍ରୀ ଶରତ ଚନ୍ଦ୍ର ଦାସଙ୍କୁ ନିଜର ରାଜନୈତିକ ଗୁରୁଭାବେ ଗ୍ରହଣ କରିନେଇ ସେ ଆନ୍ଦୋଳନରେ ଯୋଗ ଦେଇଥିଲେ । ଦେଶ ସ୍ୱାଧୀନ ହେବା ପରେ ସର୍ଦ୍ଦାର ବଲ୍ଲଭଭାଇ ପଟେଲଙ୍କ ଉଦ୍ୟମରେ ଦେଶୀୟ ରାଜ୍ୟମାନଙ୍କ ମିଶ୍ରଣ ଘଟିଥିଲା । ଓଡିଶାର ଛବିଶି ଗଡଜାତ ମଧ୍ୟରୁ ମୟୁରଭଞ୍ଜର ମିଶ୍ରଣ ଓଡ଼ିଶାରେ ହୋଇ ନଥିଲା ଏବଂ କିଛି ଦିନ ମୟୁରଭଞ୍ଜ ଏକ ସ୍ୱତନ୍ତ୍ର ରାଜ୍ୟ ହୋଇରହିଥିଲା, ଯେଉଁଥିପାଇଁ ଷଢ଼େଇକଳା ଖରସୁଆଁର ଶାସନକାର୍ଯ୍ୟ ଚଳାଇବା ଓଡ଼ିଶା ସରକାରଙ୍କ ପକ୍ଷେ ଦୁଷ୍କର ହୋଇ ପଡିଥିଲା । ମୟୁରଭଞ୍ଜ ଯଦି ଅନ୍ୟ ଗଡଜାତମାନଙ୍କ ସହିତ ଯୋଗ ଦେଇଥାନ୍ତା, ବୋଧହୁଏ ଷଢ଼େଇକଳା ଖରସୁଆଁ ଆମକୁ ହରାଇବାକୁ ପଡିନଥାନ୍ତା । ସେ ଯାହାହେଉ, ପ୍ରସନ୍ନ ବାବୁ ଶ୍ରୀ ଶରତ ଚନ୍ଦ୍ର ଦାସଙ୍କର ଜଣେ ଏକାନ୍ତ ଅନୁଗତ ସାଥିଭାବରେ ଗଡଜାତ ଆନ୍ଦୋଳନରେ ଯେଉଁ ଭୂମିକା ଗ୍ରହଣ କରିଥିଲେ ତାହା ଅତ୍ୟନ୍ତ ପ୍ରଶଂସନୀୟ । ଉଚ୍ଚଶିକ୍ଷା ଲାଭ ନକରି ମଧ୍ୟ ସେ ନିଜର ସାଧାରଣ ଜ୍ଞାନ, ବୁଦ୍ଧି ଓ ଅଧ୍ୟବସାୟ ବଳରେ ଓଡ଼ିଶା ବିଧାନସଭାର ଜଣେ ପ୍ରମୁଖ ପାର୍ଲାମେଣ୍ଟାରିଆନ୍, ପ୍ରଜାସୋସାଲିଷ୍ଟ ଦଳର ନେତା, ଶେଷରେ କଂଗ୍ରେସ ଦଳରେ ଯୋଗ ଦେଇ ବିଧାନସଭାର ବାଚସ୍ପତି ଓ ଏବେ ଜଣେ ମନ୍ତ୍ରୀ ଭାବେ କାର୍ଯ୍ୟ କରୁଛନ୍ତି । ନିଜର ଆଦର୍ଶ ପ୍ରତି ତାଙ୍କର ଅଟଳ ବିଶ୍ୱାସ ଓ ନିଷ୍ଠା କର୍ତ୍ତବ୍ୟପରାୟଣତା ତାଙ୍କୁ ରାଜନୈତିକ ଜୀବନରେ ବହୁ ସମ୍ମାନ ଆଣିଦେଇଛି । ଯେ କୌଣସି ରାଜନୈତିକ କର୍ମୀ ବିଶେଷତଃ ରାଜନୀତି ପ୍ରତି ଆଗ୍ରହୀ ଯୁବସମାଜ ପକ୍ଷେ ତାଙ୍କର ଆତ୍ମଜୀବନୀ ଯଥେଷ୍ଟ ପ୍ରେରଣାଦାୟକ ହେବ ବୋଲି ମୁଁ ଆଶା କରେ ।

**ଜାନକୀ ବଲ୍ଲଭ ପଟ୍ଟନାୟକ**

ମୁଖ୍ୟମନ୍ତ୍ରୀ, ଓଡିଶା

# FORWARD

I am very glad to learn that Shri Prasanna Kumar Dash has now written a Book containing his life history and his involvement in political area of Mayurbhanj and the State as well. From a very humble beginning, he has risen to adorn the Speakership of O.L.A. During his entire political carreer, he has stood by his principles and won the hearts of millions of people.

I wish the publication all success.

Sd/-
***(BIJU PATTANAIK)***
Ex-Chief Minister,
Orissa.

# ମୋର ଶ୍ରଦ୍ଧା

ପ୍ରସନ୍ନ ବାବୁଙ୍କ ସମ୍ବନ୍ଧରେ ଦିପଦ ଲେଖିବାରେ ମୁଁ ଆନନ୍ଦିତ ଓ ଉତ୍ସାହିତ । ସେ ନିଜ ଜୀବନ ଓ କର୍ମ ବିବରଣୀ ଏକ ପୁସ୍ତକ ଆକାରରେ ଲେଖିଛନ୍ତି । ଏହା ଆହୁରି ଗୌରବର କଥା ।

ଆମ ଓଡ଼ିଶାର ରାଜନୀତିକ କାହାଣୀ ସଂପୂର୍ଣ୍ଣ ଲେଖାହାଇନାହିଁ । କିଛି ସରକାରୀ ବା ବେସରକାରୀ ଉଦ୍ୟମ ବି ନାହିଁ ।ଇତିହାସର ବହୁ ନାୟକ କ୍ରମେ ଅନ୍ତର ହୋଇ ଯାଉଚନ୍ତି । ସେ ଗୁଡିକ ସଂଗୃହୀତ ବା ଲିଖିତ ହୋଇ ପାରିବ ନାହିଁ । ପ୍ରସନ୍ନ କୁମାର ଦାଶ ସ୍ୱାଧୀନୋତ୍ତର ଓଡ଼ିଶାର ଜଣେ ଦିବ୍ୟ ଆଲୋକ ।

ମୋର କାଲିପରି ମନେ ପଡୁଛି । ମୟୂରଭଞ୍ଜର ପ୍ରଜାମଣ୍ଡଳର ସମାପ୍ତି ପରେ ମୁଁ ତାଙ୍କୁ ରାତିରେ ବାରିପଦାରେ ଭେଟିଲି ଓ ସୋସଲିଷ୍ଟ ପାର୍ଟିରେ ଯୋଗ ଦେବାକୁ ନିମନ୍ତ୍ରଣ କଲି । ସେ ସ୍ୱର୍ଗତ ଶରତ୍ ଚନ୍ଦ୍ର ଦାସଙ୍କ ପ୍ରେରଣାରେ ଆନ୍ଦୋଳନକୁ ଆସିଥିଲେ । ତାଙ୍କର ଜଣେ ଦକ୍ଷ ଓ ପ୍ରଭାବଶାଳୀ ଅନୁରାଗୀ ଥିଲେ । ବେଶ୍ ପ୍ରତିଷ୍ଠା ଅର୍ଜନ କରିଥିଲେ । ସୋସଲିଜିମ୍ ଆଦର୍ଶର ବ୍ୟାପକତା ଓ ନୂତନ ସମାଜ ଗଠନର ଆବଶ୍ୟକତା ସେ ଉପଲବ୍ଧ କଲେ । ଆମ ସହିତ ଯୋଗଦେଲେ । ବହୁ ବର୍ଷକାଳ ଏକ ସଙ୍ଗରେ କାର୍ଯ୍ୟ କରିଛୁ, ରହିଛୁ, ମିଶିଛୁ ଓ ଘନିଷ୍ଠ ବ୍ୟକ୍ତିଗତ ସଂପର୍କ ବଢ଼ିଛି ।

ସେ ଜଣେ ଅଗ୍ରଗାମୀ । ତାଙ୍କ ଭିତରେ ବିପ୍ଳବ ଓ ବିରୋଧର ବହ୍ନିଜଳୁ ଥାଏ । ସେ ମୟୂରଭଞ୍ଜ ପରି ରାଜାନୁଗତ ଓ ଆଦିବାସୀ ଅଧ୍ୟୁଷିତ ଅଞ୍ଚଳକୁ ଏକ ସୋସଲିଷ୍ଟ ଦୁର୍ଗରେ ପରିଣତ କଲେ । ବାରମ୍ବାର ସର୍ବାଧିକ ଥର ଓଡ଼ିଶା ଆସେମ୍ବ୍ଲିକୁ ନିର୍ବାଚିତ ହୋଇଛନ୍ତି । ସ୍ଥିକର ଭାବରେ ବାଘବକରୀଙ୍କି ଏକାଠି ଶାସନ କରାଯାଏ, ତାହାର ଉଜ୍ଜ୍ୱଳ ପରଂପରା ଥୋଇ ଦେଇ ଯାଇଛନ୍ତି ।

ଆଜି ସାଧାରଣ ଜୀବନ କଳୁଷିତ ଓ ଲୋକ ଚକ୍ଷୁରେ ଏକ ପ୍ରକାର ନିନ୍ଦିତ । କିନ୍ତୁ ବହୁ ଉଚ୍ଚ ପଦବୀରେ ଥାଇ ସୁଦ୍ଧା ପ୍ରସନ୍ନବାବୁଙ୍କର ଗୋଡ଼ କେବେ ଖସିନାହିଁ । ଏକ ଖାସ୍, ସାଧାସିଧା ନିର୍ଭିକ, ନିଷ୍ଠାବାନ ଓ ନିର୍ମଳ ଜୀବନ ବିତାଇ ଛନ୍ତି ।

ଓଡ଼ିଶାରେ ଯେତେ ସାଧାରଣ ସେବୀ ଅଛନ୍ତି ତହିଁ ଭିତରେ ସେ ଅନୁପମ । ତଳୁ ଯାହାକୁ କହନ୍ତି grass rootରୁ ତିଆରି । ଗଡ଼ଜାତ ପ୍ରଜା ଆନ୍ଦୋଳନ ଆଜି ବିସ୍ମୃତ । ପ୍ରସନ୍ନବାବୁ ରାଜ ଦମନର ଭୁକ୍ତଭୋଗୀ । ଗଡ଼ଜାତ ଆନ୍ଦୋଳନ ସ୍ୱାଧୀନତା ସଂଗ୍ରାମର ଥିଲା ପ୍ରଧାନ ଅଙ୍ଗ । ପରବର୍ତ୍ତୀ ଇତିହାସ ରଚନାରେ ସେ ଥିଲେ ଏକ ପ୍ରତ୍ୟକ୍ଷ ଭାଗୀଦାର; ଏବେ ବି ବଞ୍ଚିଛନ୍ତି ।

ଏପରି ସବୁ ଝଡ଼ ପାରି ହୋଇଥିବା ବ୍ୟକ୍ତି ବିରଳ । ତାଙ୍କ କଲମରୁ ନିଜ ଜୀବନ ଓ କର୍ମକାହାଣୀରେ ପୁରାତନ ଓ ଆଧୁନିକ ରାଜନୀତିର ଝଲକ ମିଳିବ । ଏହା ଓଡ଼ିଶାଇତିହାସର ଏକ ଅମୂଲ୍ୟ ସଂପଦ ହୋଇ ରହିବ ।

ମୁଁ ତାଙ୍କୁ ମୋର ଶ୍ରଦ୍ଧା ଜଣାଉଛି ଏବଂ କାମନା କରୁଛି ଦେଶ ମାତୃକାର ସେବାରେ ଏମିତି ଲାଗି ଥାଆନ୍ତୁ ।

ରାଉରକେଲା

୧୦।୬।୯୬

***ସୁରେନ୍ଦ୍ରନାଥ ଦ୍ୱିବେଦୀ***

**ପୂର୍ବତନ ରାଜ୍ୟପାଳ, ଅରୁଣାଚଳ ପ୍ରଦେଶ ।**

# ଅଭିମତ

ଜୀବନ ରଙ୍ଗମଞ୍ଚରେ ରାଜନୈତିକ ଭୂମିକା ନିମନ୍ତେ ଗାଁ ହାଟରେ ଡେଙ୍ଗୁରା ଦେବାପାଇଁ ଢୋଲବାଦକ ରୂପେ ବାହାରି ଆସିଥିବା ଜଣେ କୋମଳମତି ବାଳକ ପକ୍ଷରେ ଓଡିଶା ବିଧାନସଭାର ମାନ୍ୟବର ବାଚସ୍ପତିଙ୍କ ଆସନ ଅଳଙ୍କୃତ କରିବା ସମୟ ମଧ୍ୟରେ ବ୍ୟବଧାନ କିଛି କମ୍ ନୁହେଁ । ସୋପାନ ପରେ ସୋପାନ ଆରୋହଣ ବେଳେ ସଂଗ୍ରାମ, ସଂକଟ ଓ ସାଫଲ୍ୟର ସମ୍ମୁଖୀନ ହେବା ରାଜନୈତିକ ଜୀବନର ସ୍ୱାଭାବିକ ରୀତି ।

ଏହି ପୁସ୍ତକଟି ହେଉଛି ଜଣେ ସଂଗ୍ରାମୀଙ୍କର 'ଆତ୍ମଚରିତ' ଓ 'ଜୀବନଚରିତ' ମଧ୍ୟରେ ପାର୍ଥକ୍ୟ ରହିଛି । ଯେ କୌଣସି ମହାନ ବ୍ୟକ୍ତିଙ୍କ ଜୀବନଚରିତ ଲେଖିପାରନ୍ତି ଅନ୍ୟମାନେ । କିନ୍ତୁ ଆତ୍ମଚରିତ ଲେଖନ୍ତି ବ୍ୟକ୍ତି ନିଜେ । ଜୀବନ ଚରିତ ଲେଖକମାନେ ସାଧାରଣତଃ ନିଜର Hero ବା ମନୋନିତ ବ୍ୟକ୍ତିଙ୍କ ବିଷୟରେ ଲେଖିଲାବେଳେ ଅତିରଞ୍ଜନର ଆଶ୍ରୟ ନେଇ ପାରନ୍ତି । ଅଥଚ, ଆତ୍ମଚରିତ ଲେଖକମାନେ ସତ୍ୟର ଆଶ୍ରୟ ନେଇ ଜୀବନ ଉପରେ ଆଲୋକପାତ କରିବା ଲାଗି ନୈତିକତା ଦୃଷ୍ଟିରୁ ପ୍ରାୟତଃ ବାଧ୍ୟ । ଏହି ପୁସ୍ତକର ଲେଖକ ସତ୍ୟନିଷ୍ଠ ଭାବରେ ନିଜର ଲେଖନୀ ଚାଳନା କରିଛନ୍ତି, ଲେଖାଟି ପ୍ରଥମରୁ ଶେଷ ପର୍ଯ୍ୟନ୍ତ ପଢ଼ିଲାବେଳେ ମୋର ହୃଦବୋଧ ହୋଇଛି ।

ସାହିତ୍ୟର ପରିସର ପରିବ୍ୟାପ୍ତ । ଆତ୍ମଚରିତ ତାହାର ଗୋଟିଏ ଅଂଶବିଶେଷ । ସମସାମୟିକ ସମାଜ ଓ ଘଟଣା ପ୍ରବାହର ପ୍ରତିବିମ୍ବ ଧାରଣ କରିଥାଏ ସାହିତ୍ୟ । ତଥାପି ସାହିତ୍ୟରେ ଥାଏ କଳ୍ପନା ବିଳାସ, ତିର୍ଯ୍ୟକ ଦୃଷ୍ଟିଭଙ୍ଗୀ, ବ୍ୟଙ୍ଗ, ରସିକତା ଓ ରଚନା ବିନ୍ୟାସ । ଅପର ପକ୍ଷରେ, ଆତ୍ମଚରିତ ରୂପକ ସାହିତ୍ୟରେ ପ୍ରତିଫଳିତ ହୁଏ ସମାଜର ବାସ୍ତବ ଚିତ୍ର ଓ ସମୟର ନିଖୁଣ ପରିଚୟ । ଏଥି ନିମନ୍ତେ ଇତିହାସ ଲେଖକମାନେ 'ଆତ୍ମଚରିତ' ଉପରେ ଅଧିକ ଗୁରୁତ୍ୱ ଦେଇଥାନ୍ତି । ଏହି ଲେଖକଙ୍କ ରଚନା ମଧ୍ୟରେ ଅର୍ଦ୍ଧ ଶତାବ୍ଦୀର ଓଡିଶା ଇତିହାସ ଉପରେ ଯଥେଷ୍ଟ ଆଲୋକପାତ ସମ୍ଭବପର ହୋଇପାରିଛି ବୋଲି ମୋର ବିଶ୍ୱାସ ।

'ମୁଖରେ ରୌପ୍ୟ ଚାମଚ ସହ' ଲେଖକ ଜନ୍ମଲାଭ କରିନଥିଲେ । ମାଟିର ମଣିଷ ଭିତରୁ ତାଙ୍କର ଉତ୍ପତ୍ତି ଓ ଉତ୍ଥାନ, ସେହି ମାଟିର ମଣିଷଭାବେ ମାଟିର ମଣିଷ ସହିତ ତାଙ୍କର ଜୀବନ ବିତିଛି । ଫଳତଃ, ଦୁସ୍ଥ ଜନସାଧାରଣଙ୍କ ପ୍ରକୃତ ପ୍ରତିନିଧି ଭାବେ ତାଙ୍କର ଅଭିଜ୍ଞତା ଓ ଅନୁଭୂତି ବର୍ଣ୍ଣନା ଦ୍ୱାରା ଲେଖକ ନିଜ ଅଧ୍ୟବସାୟ ସାର୍ଥକ କରି ପାରିଛନ୍ତି ।

ପୁସ୍ତକଟିର ଅନ୍ୟ ଏକ ବିଶେଷତ୍ୱ ରହିଛି । ଦେଶ ବିଦେଶ ଭ୍ରମଣ ନିମନ୍ତେ ସମସ୍ତଙ୍କ ଜୀବନରେ ସୁଯୋଗ ମିଳେ ନା । ସେଥିଲାଗି, ଭ୍ରମଣ କାହାଣୀ ପ୍ରତି ପାଠକ ସମାଜରେ ସବୁଦିନ ଆଗ୍ରହ ରହିଥିବା ଦେଖାଯାଏ । ସାବଲୀଳ ଭାଷାରେ ବର୍ଣ୍ଣିତ ଥିବା ଭାରତର ନାନା ପୂଣ୍ୟପୀଠ ଓ ବିଦେଶର ବହୁସ୍ଥାନର ବିବରଣୀ ବହନ କରି ପୁସ୍ତକଟି ସମସ୍ତଙ୍କର ସୁଖପାଠ୍ୟ ହେବା ନିଶ୍ଚିତ ।

ସ୍ୱଦେଶଭକ୍ତ ଓ ସଦା କର୍ମଠ ସମାଜ ସେବକମାନଙ୍କ ଜୀବନକାଳ ଘଟଣା ବହୁଳ ହେବା ଅବଶ୍ୟମ୍ଭାବୀ । ସେମାନଙ୍କ ଆତ୍ମଚରିତରୁ ଭବିଷ୍ୟତ ବଂଶଧରମାନେ ଶିକ୍ଷା ଓ ପ୍ରେରଣା ପାଇବା ସ୍ୱାଭାବିକ । ଏହି ସ୍ୱନାମଧନ୍ୟ ବ୍ୟକ୍ତିଙ୍କ ସ୍ୱରଚିତ ପୁସ୍ତକ ଲାଗି ଓଡିଶାବାସୀଙ୍କ ପକ୍ଷରୁ ତାଙ୍କ ପ୍ରତି ଧନ୍ୟବାଦ ଅର୍ପଣ କରୁଛି ।

**ଡ଼ଃ. ମନ୍ମଥ ନାଥ ଦାସ,**
୨୭.୦୩.୯୬
ପୂର୍ବତନ କୁଳପତି. ଉତ୍କଳ ବିଶ୍ୱବିଦ୍ୟାଳୟ

# ଅଭିମତ

ଏହା ଏକ ଆତ୍ମ ଜୀବନୀ । ଆମ ଓଡ଼ିଆ ଭାଷାରେ ଆତ୍ମଜୀବନୀ ବିରଳ ଦୃଷ୍ଟିଗୋଚର ହୁଏ । ତଥ୍ୟାତ୍ମକ ଓ କଳ୍ପନାତ୍ମକ, ଏଇ ଦୁଇ ଭାଗରେ ହିଁ ସାହିତ୍ୟକୁ ବିଭକ୍ତ କରାଯାଏ । ଓଡ଼ିଶା ଭୂଗୋଳରେ 'ଚିଲିକା' ରାଧାନାଥଙ୍କ କାବ୍ୟର ଚିଲିକା ଯଥାକ୍ରମେ ତଥ୍ୟାତ୍ମକ ଓ କଳ୍ପନାତ୍ମକ ସାହିତ୍ୟରେ ଉଦାହରଣ ଦିଆଯାଇପାରେ । ଆତ୍ମ ଜୀବନୀ ବ୍ୟକ୍ତିବିଶେଷର ଜୀବନକାଳର କେତେକ ଘଟଣାବଳୀର ତଥ୍ୟ ସମ୍ବଳିତ ହୋଇଥିଲେ ମଧ୍ୟ ଏହାକୁ ତଥ୍ୟାତ୍ମକ ସାହିତ୍ୟ ଭାବରେ ଗଣନା କରାଯାଇ ନ ପାରେ । ''ବାକ୍ୟରସାତ୍ମକଂ କାବ୍ୟମ୍'' ଅର୍ଥାତ୍ ଯେଉଁ ସାହିତ୍ୟ ପାଠକ ମାନସରେ ରସ, ଆନନ୍ଦ ଓ ଶକ୍ତି ପ୍ରଦାନ କରିପାରେ ତାହା ହିଁ କାବ୍ୟ ବା ସାହିତ୍ୟ ପଦବାଚ୍ୟ ହୁଏ । ଆତ୍ମଜୀବନୀରେ ବ୍ୟକ୍ତିର ଘଟଣାବଳୀ ବର୍ଣ୍ଣିତ ହୋଇଥିଲେ ମଧ୍ୟ କେଉଁ ପରିସ୍ଥିତିରେ ସେ କିପରି ପଦକ୍ଷେପ ଗ୍ରହଣ କରିଛନ୍ତି, କିପରି କାର୍ଯ୍ୟରେ ଆଗଭର ହୋଇଛନ୍ତି, କିପରିଭାବରେ ସେ କୃତକାର୍ଯ୍ୟ ବା ଅକୃତକାର୍ଯ୍ୟହୋଇଛନ୍ତି ଇତ୍ୟାଦି ବିଷୟର ଏକ ବିଶଦ ବର୍ଣ୍ଣନା ସନ୍ନିବିଷ୍ଟ ହୋଇଥାଏ । ଏହା ପାଠକ ମାନସରେ ଚିନ୍ତାର ଉଦ୍ରେକ କରାଏ ଓ ପାଠକକୁ ଶକ୍ତି ପ୍ରଦାନ କରେ । ଭବିଷ୍ୟତରେ ସେ ଅନୁରୂପ ପରିସ୍ଥିତିର ସମ୍ମୁଖୀନ ହେଲା ବେଳେ ଆତ୍ମଜୀବନୀ ତାର ପଥ ପ୍ରଦର୍ଶକ ହୁଏ । ସୁତରାଂ ଏପରି ଲେଖାର ଉପାଦେୟତା ସର୍ବଜନ ସମ୍ମତ ।

ଯେଉଁ ମହାଶୟଙ୍କ ଜୀବନୀ ଏଥିରେ ବର୍ଣ୍ଣିତ, ତାଙ୍କର ଆବିର୍ଭାବ ହୋଇଥିଲା ଜାତୀୟ ସଂକଟ କାଳରେ । ସମାଜକୁ ସଠିକ ଭାବରେ ପରିଚାଳିତ କରିବା ଉଦ୍ଦେଶ୍ୟରେ ମୟୂରଭଞ୍ଜ ପ୍ରଜାମଣ୍ଡଳ ଆନ୍ଦୋଳନରେ ଯୋଗ ଦିଅନ୍ତି ପାଠ ପଢ଼ା ଛାଡ଼ି । ତାଙ୍କର ଜୀବନ ଥିଲା ସମସ୍ୟା ବହୁଳ । ତା ସତ୍ତ୍ୱେ ତାଙ୍କର ସଂଗ୍ରାମ ଥିଲା ଅବାରିତ । ଜୀବନ କାଳ ମଧ୍ୟରେ ତାଙ୍କୁ ନାନା ପ୍ରତିକୂଳ ପରିସ୍ଥିତି ବିରୋଧରେ ଲଢ଼ିବାକୁ ପଡ଼ିଛି । ଯେତେବେଳେ ତାଙ୍କର ବ୍ୟକ୍ତିଗତ ଜୀବନ କିଛି ମାତ୍ରାରେ ସାବଲୀଳ ହେବାକୁ ଯାଇଛି ସେତେବେଳେ ସେ ଗମ୍ଭୀର ରାଜନୈତିକ ସମସ୍ୟାର ସମ୍ମୁଖୀନ ହୋଇଛନ୍ତି । ନିଜ ସ୍ଥିତିର ସୁରକ୍ଷାପାଇଁ ତାଙ୍କୁ ପ୍ରାଣପାତ ସଂଗ୍ରାମ କରିବାକୁ ପଡ଼ିଛି । ନିଜର ବୁଦ୍ଧିମତ୍ତା ଓ ପ୍ରତିଭାବଳରେ ସମସ୍ତ ପ୍ରତିକୂଳ ପରିସ୍ଥିତିକୁ ଅତିକ୍ରମ କରି ଜୀବନର ଲକ୍ଷ୍ୟ ସାଧନରେ ସଫଳକାମ ହୋଇପାରିଛନ୍ତି ।

ତେବେ ଏ ଲେଖା ମଧ୍ୟକୁ ମୁଁ ଆସିଲି କିପରି ? ଏଥିରେ ମୋର ଅବଦାନ କ'ଣ ? ୧୯୯୦ ମସିହାରେ ଓଡ଼ିଶା ବିଧାନ ସଭା ନିର୍ବାଚନରେ ବାରିପଦା ନିର୍ବାଚନ ମଣ୍ଡଳୀରୁ ପ୍ରସନ୍ନବାବୁ ଥାଆନ୍ତି ଜଣେ ପ୍ରାର୍ଥୀ । ଆମ ସମସ୍ତଙ୍କର ସର୍ବବିଧ ପ୍ରୟାସ ସତ୍ତ୍ୱେ ନିର୍ବାଚନରେ ପରାଜିତ ହେଲେ । ତା ସତ୍ତ୍ୱେ ସେ ପୂର୍ବବତ୍ ଯଥାରୀତ ଲୋକସଂପର୍କ ରକ୍ଷାକରି ଆସୁଥାଆନ୍ତି । ପ୍ରତିମାସରେ ଶେଷ ରବିବାର ଦିନ ନିର୍ବାଚନ ମଣ୍ଡଳୀର କଂଗ୍ରେସ ଲୋକଙ୍କର ଗୋଟିଏ ଲେଖାଁଏ ସଭା ତାଙ୍କରି ଆବାହକତ୍ୱରେ ଅନୁଷ୍ଠିତ ହୁଏ । ସେଥିରେ ପ୍ରତ୍ୟେକ ଅଞ୍ଚଳର ଲୋକଙ୍କର ସୁବିଧା ଅସୁବିଧା ସଂପର୍କରେ ଆଲୋଚନା କରାଯାଏ । ସମଗ୍ର ନିର୍ବାଚନ ମଣ୍ଡଳୀର ବିଭିନ୍ନ ସ୍ଥାନ ପରିଦର୍ଶନ କରି ଲୋକଙ୍କର ବିଭିନ୍ନ ସମସ୍ୟା ସଂପର୍କରେ ସେ ଯାହା ଜାଣି ଥାଆନ୍ତି ଆମକୁ ଜଣାନ୍ତି । ସେଗୁଡ଼ିକର ପ୍ରତିକାର ପାଇଁ ବିଚାର ବିମର୍ଷ କରାଯାଏ । ସମୟ ସମୟରେ ବାରିପଦା ସହରରେ

ବିଭିନ୍ନ ୱାର୍ଡ଼କୁ ମଧ୍ୟ ବୁଲି ଯାଆନ୍ତି । ଥରେ କଥା ପ୍ରସଙ୍ଗରେ ତାଙ୍କର ଆତ୍ମଜୀବନୀ ଲେଖା ବିଷୟ ମୋଠାରେ ପ୍ରକାଶ କଲେ । ମୁଁ ମୋ ପକ୍ଷରୁ ତାହା ଲେଖିବାକୁ ଆଗ୍ରହ ପ୍ରକାଶ କଲାରୁ କେତେକ ଅଂଶ ମୋତେ ଲେଖିବାକୁ ଦେଲେ । ତାଙ୍କ ପ୍ରତି ମୋର ପିଲାଦିନରୁ ଶ୍ରଦ୍ଧା ଓ ଆକର୍ଷଣ ଥିଲା । ଆମେ ପାଠ ପଢୁଥିବା ବେଳେ ସେ ସ୍ୱାଧୀନତା ସଂଗ୍ରାମର ଜଣେ ସୈନିକ ।ସେତେବେଳେ ତାଙ୍କ ନାମ ଶୁଣିଥିଲେ ମଧ୍ୟତାଙ୍କୁ ବହୁଦିନ ଧରି ଦେଖି ନଥିଲି । ଥରେ ସେ ସମୟରେ ସର୍ଦ୍ଦାରମାନେ ପ୍ରଜାମାନଙ୍କ ଉପରେ କରୁଥିବା ଅନ୍ୟାୟ ଓ ଅତ୍ୟାଚାର ସଂପର୍କରେ ତାଙ୍କର ବକ୍ତୃତା ଶୁଣିବାଠାରୁ ତାଙ୍କ ପ୍ରତି ମୋର ଶ୍ରଦ୍ଧା ଜନ୍ମିଥିଲା । ଅବଶ୍ୟ ପରବର୍ତ୍ତୀ ସମୟରେ ବନ୍ଧୁ ଭାବରେ ଆମେ ପରସ୍ପରକୁ ଜାଣିଲୁ ।

ଏ ଲେଖାରେ ମୋର କୌଣସି ଅବଦାନ ନାହିଁ । ଏହା ତାଙ୍କର ନିଜସ୍ୱ । ମୁଁ କେତେକ ବାକ୍ୟକୁ ଏପଟ ସେପଟ ପରିବର୍ତ୍ତନ କରି ଲେଖିଛି । କେତେକ ପଦ ଯୋଡ଼ା ଯୋଡ଼ିକରି ସଜାଇ ଦେଇଛି ମାତ୍ର ।

ଏ ଆତ୍ମଜୀବନୀରେ ମୟୂରଭଞ୍ଜର ଏକ ରାଜନୈତିକ ଚିତ୍ର, ସ୍ୱାଧୀନତା ସଂଗ୍ରାମର ଇତିହାସ ସହିତ ଓଡ଼ିଶା ବିଧାନସଭାର ବିଗତ ଅର୍ଦ୍ଧଶତାବ୍ଦୀର ସମ୍ୟକ୍ ବିବରଣୀ ନିହିତ ହୋଇଅଛି । ଏ ସମସ୍ତ ଦୃଷ୍ଟିରୁ ଏହାର ଉପାଦେୟତା ଯଥେଷ୍ଟ ବୋଲି ମନେହୁଏ । ଏହା ପାଠକମାନଙ୍କଦ୍ୱାରା ଆଦୃତ ହେଲେ ଶ୍ରମ ସାର୍ଥକ ହେବ ବୋଲି ମନେକରେ ।

ପରିଶେଷରେ ଆମର ଅତିପ୍ରିୟ ନେତା ପ୍ରସନ୍ନବାବୁ ସୁଦୀର୍ଘ ନିରାମୟ ଜୀବନ ଯାପନ କରି ଦେଶ ଓ ଦଶର ସେବାରେ ନିଜକୁ ନିୟୋଜିତ କରିବାରେ ସମର୍ଥ ହୁଅନ୍ତୁ ଏହା ହିଁ ଭଗବାନଙ୍କ ନିକଟରେ ପ୍ରାର୍ଥନା ।

ବାରିପଦା

ତା ୨୫।୬।୯୫

*ଶ୍ରୀ ପୁରୁଷୋତ୍ତମ ଦାଶ*

ଓଡ଼ିଶା ସଂସ୍କୃତ ଶିକ୍ଷା ବିଭାଗର

ଅବସରପ୍ରାପ୍ତ ଉପାଧ୍ୟକ୍ଷ

********************************************************************

## -ଜନ୍ମକାଳ-

ସନ ୧୩୨୭ ସାଲ ସୌର ସିଂହ ମାସର ଦି ୧୫ନ ଅନୁଯାୟୀ ଇଂରାଜି ୧୯୧୯ ମସିହା ଅଗଷ୍ଟ ତା୨୭ରିଖ ବୁଧବାର ମୟୁରଭଞ୍ଜ ଜିଲ୍ଲାର ବାଙ୍ଗୀରିପୋଷୀ ଥାନାନ୍ତର୍ଗତ କେନ୍ଦୁମୁଣ୍ଡି ଗ୍ରାମରେ ଜନ୍ମ। ଜାତକର ପ୍ରତିଲିପି ନିମ୍ନରେ ପ୍ରଦତ୍ତ ହେଲା। ଫଳିତ ଜ୍ୟୋତିଷୀଙ୍କ ମତରେ ଏହି ଜାତକରେ ତଳଲିଖିତ ଯୋଗମାନ ରହିଛି।

ଏ ଜାତକରେ ବୃହସ୍ପତି ଉଚ୍ଚଯୋଗ, ଗୁରୁମଙ୍ଗଳୀଯୋଗ, ରନ୍ଧ୍ରାଞ୍ଜଳୀ ଯୋଗ, ସର୍ବପ୍ରହଦୃଷ୍ଟ ବୃହସ୍ପତି ଯୋଗ ମାନ ରହିଛି। ଜାତକରେ ରବିର ସ୍ଥିତି ପ୍ରବଳ ରାଜଯୋଗ ସୃଷ୍ଟି କରୁଅଛି। ଏ ଜାତକ ଧାର୍ମିକ, ନ୍ୟାୟବାନ୍ ସୁଶାସକ ଓ ବିଚାରବନ୍ତ ହେବାର ଯୋଗ ଥିବାର ଦେଖାଯାଏ।

## ମୁଁ କାହିଁକି ଜୀବନୀ ଲେଖିଲି :-

ଏହା ପୂର୍ବରୁ କେତେକ ବନ୍ଧୁଙ୍କ ଅନୁରୋଧ କ୍ରମେ ମୟୁରଭଞ୍ଜର ରାଜନୈତିକ ଆନ୍ଦୋଳନର ଏକ ସଂକ୍ଷିପ୍ତ ଇତିହାସ ରଚନା କରିଥିଲି। ତାହା ପକାଶିତ ହେବାପରେ ମୟୁରଭଞ୍ଜର ରାଜନୀତି ସଂପର୍କରେ ପାଠକମାନଙ୍କ ମଧ୍ୟରେ ଯତ୍ ସାମାନ୍ୟ ଧରଣା ମତ୍ର ସୃଷ୍ଟି କରିଥିଲା ମାତ୍ର ସେ ଲେଖାରେ ମୋର ତୃପ୍ତି ଆସାଲା ନାହିଁ। ମୋର ସୁଦୀର୍ଘ ଅର୍ଦ୍ଧଶତାବ୍ଦୀ ବ୍ୟାପୀ ରାଜନୈତିକ ଜୀବନର ଅଭିଜ୍ଞତାକୁ ସମ୍ବଳ କରି ମୋର ଆତ୍ମଜୀବନୀ ପ୍ରକାଶ କରିବା ପାଇଁ ବହୁ ବନ୍ଧୁ ଓ ବ୍ୟକ୍ତି ବିଶେଷ ମୋତେ ବାରମ୍ବାର ଅନୁରୋଧ ଜଣାଇଲେ। ଏହି ବ୍ୟକ୍ତି ବିଶେଷ ମାନଙ୍କ ମଧ୍ୟରେ ଭାରତର ସୁପ୍ରସିଦ୍ଧ ଐତିହାସିକ ଡକ୍ଟର ମନ୍ମଥନାଥ ଦାସ ଥିଲେ ଅନ୍ୟତମ। ଜୀବନୀ ଲେଖିବାର ଏକାନ୍ତ ଅଭିପ୍ରାୟ ନ ଥିଲେ ହେଁ ବନ୍ଧୁମାନଙ୍କର ଅନୁଗ୍ରହ ଏଡ଼ିଂ ନ ପାରି ଏକାର୍ଯ୍ୟରେ କ୍ରମଶଃ ଅଗ୍ରସର ହେଲି।

୧୯୩୯ ମସାହାରେ ବାରିପଦା ଉଚ୍ଚଇଙ୍ଗରାଜୀ ବିଦ୍ୟାଳୟରେ ଛାତ୍ର ଥିବା ସମୟରେ କେଉଁ ଅଜ୍ଞାତ ଆହ୍ୱାନ ମୋର ହୃଦୟ କନ୍ଦରକୁ ଅନ୍ଦୋଳିତ କରି ପକାଇଲା। ପାଠପଢ଼ାରେ ଡ଼ୋରି ବାନ୍ଧିଦେଇ ସେହିବର୍ଷର ଅପ୍ରେଲ ମାସ ୧୬ ତାରିଖର ଏକ ଶୁଭ ମୁହୁର୍ତ୍ତରେ ବାପଭାଇ ପ୍ରଭୃତି ଗୁରୁଜନମାନଙ୍କୁ କିଛି ନଜଣାଇ ଲମ୍ଫ ପ୍ରଦାନ କଲି ରାଜନୀତିକୁ। ସେ ଦିନର କେଉଁ ଅଦୃଷ୍ଟ ପ୍ରେରଣା ମୋତେ ଆକୃଷ୍ଟ କରି ଆଣିଲା ତାହା ସଠିକ ହୃଦୟଙ୍ଗମ କରି ନ ପାରିଲେ ମଧ୍ୟ ଦେଶମାତୃକାର ସ୍ୱାଧୀନତା ପ୍ରାପ୍ତି ମୋତେ ଯେ ଅତି ମାତ୍ରାରେ ପ୍ରଭାବିତ କରି ପାରିଥିଲା ଏଥିରେ କୌଣସି ସନ୍ଦେହର ଅବକାଶ ନାହିଁ। ବିଶେଷ କରି ସେତେବେଳର ମୟୁରଭଞ୍ଜରେ ଚାଲିଥିବା ଗଡ଼ଜାତୀ ଶାସନର କୁପ୍ରଭାବ ମୋର ଯୁବକ ପ୍ରାଣକୁ ଅତିମାତ୍ରାରେ ପ୍ରଭାବିତ କରି ପକାଇଲା। ସେହିଦିନଠାରୁ ଆରମ୍ଭ କରି ଆଜକୁ ଦୀର୍ଘ ୫୭-୫୭ ବର୍ଷଧରି

ନିରବିଚ୍ଛିନ୍ନ ଭାବରେ ବହୁ ଘାତ ପ୍ରତିଘାତ ଦୁଃଖ ଅବସାଦ ଉତଥାନପତନ ମଧ୍ୟ ଦେଇ ଏକ ସାଧାରଣ ଜୀବନପରି ମୋର ରାଜନୈତିକ ଜୀବନ ନିର୍ବିଘ୍ନରେ ବିତାଇ ଆସିଛି ।

ଅବଶ୍ୟ ଦୁଃଖ କଷ୍ଟର ଅଗ୍ନିଦାହ ମଧ୍ୟରେ ମାନବର ଜୀବନ ଶୁଦ୍ଧ ସୁବର୍ଣ୍ଣପରି ଜାଜ୍ଜଲ୍ୟମାନ ହୁଏ । ତେଣୁଁ ଦୁଃଖ, କଷ୍ଟ ଘାତ ପ୍ରତିଘାତ ମୋତେ କେବେହେଲେ ମୋର କର୍ତ୍ତବ୍ୟ ପଥରୁ ବିଚ୍ୟୁତ କରି ପାରିନାହିଁ । ଏ ପଥରେ ଅଗ୍ରସର ହେଉଥିବା ମୋର ବହୁ ସମଧର୍ମୀ କିଛିଦୁର ଗଲାପରେ ପଥଭ୍ରଷ୍ଟ ହୋଇ ପଡ଼ିଥିଲେ ହେଁ ତାର କୌଣସି ପ୍ରଭାବ ମୋ ଉପରେ ପଡ଼ି ନ ଥିଲା । ରାଜନୀତିରୁ କୌଣସି ବ୍ୟକ୍ତିଗତ ଲାଭ ବା ସ୍ୱାର୍ଥ ସମ୍ବଳିତ ଅଭିପ୍ରାୟ ନ ଥିବାରୁ ଏକ ସାଧନା ପଥର ଯାତ୍ରୀ ଭାବରେ ମୁଁ ଦୃଢ଼ତାର ସହିତ ଏ ପର୍ଯ୍ୟନ୍ତ ଆଗେଇ ଗାଲିଛି, ଜାଣିନି ଭଗବାନଙ୍କ ଇଛା କ'ଣ ? ଏ ପରିଣତ ବୟସରେ ମଧ୍ୟ ମୋତେ ଆଉ କେତେ ପଥ ଅଗ୍ରସର ହେବାକୁ ହେବ । ମୁଁ ଏକ ସର୍ବନିମ୍ନ ସ୍ତରରୁ ମୋର ରାଜନୈତିକ ଜୀବନର ମୂଳଦୁଆ ପକାଇଛି । ଏହାକୁ ମୁନିଋଷିଙ୍କର ସାଧନା ତଥା ମହାନ୍ କର୍ତ୍ତବ୍ୟ ବୋଲି ମନେ କରିଥିବାରୁ ହର୍ଷବିଷାଦ ମୋତେ କେବେହେଲେ ସ୍ପର୍ଶ କରିପାରି ନାହିଁ । ମୋର ରାଜନୈତିକ ଗୁରୁ ସ୍ୱର୍ଗତଃ ଶରତ ଚନ୍ଦ୍ର ଦାସ ମୟୁରଭଞ୍ଜ ଭଳି ଏକ ଆଦିବାସୀ ଅଞ୍ଚଳରେ ପ୍ରଜାମଣ୍ଡଳ ଆନ୍ଦୋଳନ କରିଆରେ ଦେଶମାତୃକାର ସ୍ୱାଧୀନତା ଲାଭ ପାଇଁ ପ୍ରୟାସ ଚଳାଇଥିବା ବେଳର କେତେପଦ ବାଣୀ ଓ ସଦୁପଦେଶମୋର ଯାବତୀୟ ବାଧାବିଘ୍ନ ଏଡ଼ାଇ ମୋତେ ଏ ପର୍ଯ୍ୟନ୍ତ ଆଗେଇ ନେବାରେ ଯେ ଯଥେଷ୍ଟ ପ୍ରେରଣା ଯୋଗାଇଛି, ଏଥିରେ ସନ୍ଦେହ ନାହିଁ । ତେଣୁଁ ଏହି 'କର୍ମୀର ସାଧନା' ପାଣ୍ଡୁଲିପିର ମୁଖବନ୍ଧରେ ତାଙ୍କରି ସେହି ମହାନ୍ ଆଦର୍ଶ ଓ ବ୍ୟକ୍ତିତ୍ୱ ପ୍ରତି ମୋର ଭକ୍ତିପୂତ ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଛି ।

ମୋର ରାଜନୈତିକ ଜୀବନର ସଫଳତାକୁ ଅନୁଧ୍ୟାନ କଲେ ଦେଖାଯିବ ଯେ ମୁଁ ମୋର ପ୍ରଥମେ ରାଜନୈତିକ ଜୀବନ ଏକ ଅତି ନଗଣ୍ୟ କାର୍ଯ୍ୟରୁ ଆରମ୍ଭ କରିଥିଲି । କିନ୍ତୁ କ୍ଷୁଦ୍ର କାର୍ଯ୍ୟକୁ କ୍ଷୁଦ୍ର ନ ଭାବି ଆନ୍ତରିକତା ସହିତ କର୍ତ୍ତବ୍ୟ ନିଷ୍ଠା ଭାବନେ ସଂପାଦନ କରିଥିବାରୁ ପରବର୍ତ୍ତୀ ପର୍ଯ୍ୟାୟରେ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟ ସଂପନ୍ନ କରିବାକୁ ମୁଁ ସଫଳ ହୋଇପାରିଛି ବୋଲି ମନେ କରେ ।

ରାଜନୀତି କ୍ଷେତ୍ରକୁ ପ୍ରବେଶ ମାତ୍ରେ ମୋତେ ପ୍ରଥମେ ଦାୟିତ୍ୱ ଦେଲେ ମୋର ରାଜନୈତିକ ଗୁରୁ ସ୍ୱର୍ଗତଃ ଶରତଚନ୍ଦ୍ର ଦାସ, ସେ ସମୟରେ ଗାଁ ହାଟରେ ଡ଼େଙ୍ଗୁରା ଦେବାପାଇଁ । ମୁଁ କିନ୍ତୁ ଏହାକୁ ଛୋଟ କାମ ମନେ ନକରି ଆନ୍ତରିକତାର ସହିତ ସଂପନ୍ନ କରିଥିଲି । ସ୍ୱର୍ଗତଃ ଶରତଚନ୍ଦ୍ର ଦାସଙ୍କ ଭାଷାରେ '' ତୁମେ ଯଦି ଶୃଙ୍ଖଳିତ ସୈନିକ ହେବ, ତେବେ ତୁମେ ହିଁ ସେନାପତି ହୋଇପାରିବ ।'' ଏହି ଉକ୍ତିକୁ ଜୀବନର ଚଳାପଥରେ ମୁଖ୍ୟ ଆଧାରକରି ଅଗ୍ରସର ହେଲି ।

୧୯୪୨ ମସିହାରେ ୫୦ ହଜାର ଲୋକଙ୍କ ନେତୃତ୍ୱନେଇ ବାରିପଦା ସହରରେ ଏକ ବିକ୍ଷୋଭ ଆୟୋଜନ କରିଥିଲି । ଏହାର ସଫଳତା ପରେ ଗୁରୁଦେବ ମୋତେ ଯଦି ଓ 'ସେନାପତି' ଆଖ୍ୟା ଦେଇଥିଲେ, ମୁଁ ଜଣେ ସୈନିକ ହୋଇ ରହିବାକୁ ପସନ୍ଦ କଲି । କାରଣ ଯୁଦ୍ଧରେ ଜୟଯୁକ୍ତ ହେବା

ପ୍ରତ୍ୟେକ ସୈନିକର କର୍ତ୍ତବ୍ୟନିଷ୍ଠା ଉପରେ ନିର୍ଭର କରେ । ଏହି ମହାନ ଆଦର୍ଶରେ ଅନୁପ୍ରାଣିତ ହେବା ଯୋଗୁ ବୟାଳିଶି ବର୍ଷର ସାଧନାପରେ ୧୯୮୪ ମସିହାରେ ମୁଁ ବିଧାନସଭାରେ ଅଧ୍ୟକ୍ଷ ହୋଇ ଶାସନ କ୍ଷେତ୍ରରେ ଏକ ଶୀର୍ଷ ପଦବୀରେ ଅଧିଷ୍ଠିତ ହେଲି । ମୋର ଜୀବନର ସଫଳତାର ସାରାଂଶ " From a Drummer to speaker "

ମୁଁ ଏବେ ମଧ ମୋର ରାଜନୈତିକ ଗୁରୁ ଓ ପିତାଙ୍କ ଭାଷାରେ ଜଣେ ସାଧାରଣ ସୈନିକ ଭାବେ ରହିବାକୁ ଗର୍ବ ଅନୁଭବ କରେଁ । ସେନାପତି ହେବାର ଆକାଂକ୍ଷା ଜୀବନରେ କେବେହେଲେ ପୋଷଣ କରିନାହିଁ । ରାଜନୀତିକୁ ଆର୍ଯ୍ୟଋଷି ମହର୍ଷିଙ୍କ ଭଳି ଏକ ନୈଷ୍ଠିକ ସାଧାନା ଭାବରେ ଗ୍ରହଣ କରିଥିବାରୁ କୌଣସି ବାଧାବିଘ୍ନ ଲୋଭ, ପ୍ରଲୋଭନ, ଭୟ ବା ଆଶଙ୍କରେ କେବେହେଲେ ଭାଙ୍ଗପଡ଼ି ନାହିଁ ବା କୌଣସି ପଦ ପଦବୀର ଅଧିକାରୀ ହୋଇ ମଧ ଗର୍ବ ଅନୁଭବ କରିନାହିଁ । ତୋଷାମଦ କରି ସ୍ୱାର୍ଥ ସାଧନ କରିବା ମୋର କେବଳ ନୀତି ବିରୁଦ୍ଧ ନୁହେଁ, ଏ ବିଦ୍ୟା ମୋତେ ଆଦୌ ଜଣା ନାହିଁ । ଅଥବା ତୋଷାମଦ କରି କେହିକେବେ ମୋଠାରୁ କୌଣସି ସ୍ୱାର୍ଥ ହାସଲ କରିପାରି ନାହାନ୍ତି । ଯେତେବେଳେ ମୋତେ ଯାହା ମିଳିଛି ତାହା ମୁଁ ଆଦରର ସହିତ ଗ୍ରହଣ କରିଛି । ଅନେକଙ୍କର ମତ ଯେ ରାଜନୀତି କରିବାକୁ ହେଲେ ଅର୍ଥର ଆବଶ୍ୟକତା ଅବଶ୍ୟମ୍ଭାବୀ ଏବଂ ରାଜନୀତି ମାଧମରେ ହିଁ ପ୍ରଚୁର ଅର୍ଥଲାଭ ମଧ ସହଜ ସାଧ ହୋଇଥାଏ । ମାତ୍ର ଅର୍ଥବଳରେ କ୍ଷମତାକୁ ଯିବା ଓ କ୍ଷମତା ବଳରେ ଅର୍ଥଲାଭ କରିବା. ଏ ନୀତି ସହିତ ମୁଁ କେବେହେଲେ ଏକମତ ହୋଇପାରୁନି । ଜନସାଧାରଣଙ୍କର ନିଃସ୍ୱାର୍ଥପର ସେବା କରିପାରିଲେ ତଥା ଜନତାର ଦୁଃଖ ଓ ବେଦନା ନିଜ ଅନ୍ତରରେ ଅନୁଭବ କରିପାରିଲେ ସେମାନଙ୍କର ମଧ ଆସ୍ଥା ଓ ବିଶ୍ୱାସ ଜନ୍ମିବ । ନିଷ୍କଳଙ୍କ ଜୀବନ ଯାପନ ସହିତ ମାନବର ସେବାହିଁ ମୋ ଜୀବନର ବ୍ରତ ରୂପେ ଗ୍ରହଣ କରିଛି । ''ଶରୀରଂ ହି ଦେବ ମନ୍ଦରମ୍'' ଅର୍ଥାତ୍ 'ମାନବ ଶରୀର ଜୀବନ୍ତ ଦେବତାରମନ୍ଦିର' ଏହି ଦାର୍ଶନିକ ଉକ୍ତିଟିକୁ ମୋ ଜୀବନର ପ୍ରତିଟି ପର୍ଯ୍ୟାୟରେ ପାଥେୟ କରିଥିବାରୁ ମୁଁ ଏକ ନିଷ୍କଳଙ୍କ ରାଜନୈତିକ ଜୀବନ ଗଢ଼ି ତୋଳିବାରେ ସମର୍ଥ ହୋଇପାରିଛି ବୋଲି ମନେ କରେଁ । ମୁଁ ଜାଣେନା ଲୋକେ ଏହାକୁ କେତେଦୂର ଗ୍ରହଣ କରି ପାରିଛନ୍ତି । ଜଗତର ନାଥ ଜଗନ୍ନାଥଙ୍କ ଉପରେ ମୋର ଅଟଳ ବିଶ୍ୱାସ । ପ୍ରତି ମୁହୂର୍ତ୍ତରେ ସେ ମୋତେ ସଦ୍‌ବୁଦ୍ଧି ଦେଉଛନ୍ତି ଓ ସତ୍‌ମାର୍ଗରେ ପରିଚାଳିତ କରିଛନ୍ତି । ତାଙ୍କର ଶୁଭାଶିଷ ମୋର କର୍ମପଥକୁ ନିଷ୍କଣ୍ଟକ କରିଥିବାରୁ ଆଜି ମୋର ଅନ୍ତରର ଭକ୍ତିପୂତ ଶ୍ରଦ୍ଧାଞ୍ଜଳି ତାଙ୍କ ପାଦପଦ୍ମରେ ଅର୍ପଣ କରୁଛି ।

ମୋର ଏହି ପ୍ରବନ୍ଧରେ ମୟୁରଭଞ୍ଜର ମୁକ୍ତି ଆନ୍ଦୋଳନର ଏକ ବିସ୍ତୃତ ବିବରଣୀ ଦେବାକୁ ଯଥାସାଧ ଚେଷ୍ଟା କରିଛି । ବିଧାନସଭାର ନିର୍ବାଚିତ ସଭ୍ୟପଦରେ ବିରୋଧିଦଳ ଭୂମିକାରେ ପ୍ରାୟ ୨୦/୨୨ ବର୍ଷର ଅଭିଜ୍ଞତା ସହ ଜାତୀୟ କଂଗ୍ରେସ ଦଳ ତରଫରୁ ଦୁଇଥର ବିଧାନସଭାର ଅଧକ୍ଷ ପଦକୁ ନିର୍ଦ୍ୱନ୍ଦରେ ନିର୍ବାଚିତ ହୋଇ ଅଧକ୍ଷ ଭାବରେ ମୋର କାର୍ଯ୍ୟ କଳାପ ଓ ଅଭିଜ୍ଞତା ମାନ ଯଥାବିଧି ବର୍ଣ୍ଣିତ ହୋଇଅଛି । ବିଧାନସଭା ପରିଚାଳନା କରିବାରେ କେଉଁ ପରିସ୍ଥିତିରେ କିପରି କୌଶଳ ଅବଲମ୍ବନ କରି ସ୍ୱକର୍ତ୍ତବ୍ୟ ପରିଚାଳନାରେ କୃତକାର୍ଯ୍ୟ ହୋଇପାରିଛି ସେ ସମସ୍ତ ବିଷୟରେ ଟିକିନିଖି ବର୍ଣ୍ଣନା ଏଥିରେ

ସନ୍ନିବେଶ କରାଯାଇଛି । ଅଧ୍ୟକ୍ଷ ପଦରେ ଥିବାବେଳେ ପୃଥିବୀ ଭ୍ରମଣରେ ଯାଇ ଇଂଲଣ୍ଡ, ଆମେରିକା, କାନାଡ଼ା, ଜାପାନ, କୋରିଆ, ଫିଲିପାଇନସ୍, ହଂକଂ, ଶିଙ୍ଗାପୁର, ମାଲେସିଆ ପ୍ରଭୃତି ବହୁଦେଶ ଭ୍ରମଣ କରି ସେ ଦେଶର ଲୋକଙ୍କର ଚାଲିଚଳନ, ସାମାଜିକ, ରାଜନୈତିକ ତଥା ସାଂସ୍କୃତିକ ଜୀବନ ସଂପର୍କରେ ସମ୍ୟକ୍ ବର୍ଣ୍ଣନା ସର୍ବସାଧାରଣଙ୍କ ଉଦ୍ଦେଶ୍ୟରେ ଏଥିରେ ସ୍ଥାନ ପାଇଛି । ବିଧାନସଭା ନିର୍ବାଚନରେ ଦୁଇଥରପରାଜୟ ସ୍ୱୀକାର କରିବାର ଅଭିଜ୍ଞତା ସହ ସମସ୍ତ ସଭ୍ୟଙ୍କ ଅପେକ୍ଷା ବେଶୀଦିନ କାଳ ସଭ୍ୟ ପଦରେ ରହିବାର ସୁଯୋଗ ମଧ୍ୟ ମୋତେ ମିଳିଛି ।

ଭାରତବର୍ଷର ସବୁ ସ୍ଥାନ ଓ ଧର୍ମପୀଠ ମଧ୍ୟ ପରିଦର୍ଶନ କରିବାର ସୌଭାଗ୍ୟ ମୋତେ ଏହି ସମୟ ମଧ୍ୟରେ ମିଳିଛି । ପଞ୍ଜାବ ରାଜ୍ୟରେ ପରିଭ୍ରମଣ କରୁଥିବା କାଳରେ ଜାତୀୟ ମୁକ୍ତି ଆନ୍ଦୋଳନର ସୁପ୍ରସିଦ୍ଧ ସ୍ଥାନ ଜାଲିଓ୍ୱାନା ବାଗ ପରିଦର୍ଶନ କରି ତାର ପବିତ୍ର ଧୂଳିମାଟି ମୁଣ୍ଡରେ ଲଗାଇ ନିଜକୁ ସାର୍ଥକ ମନେ କରିଥିଲି । ଠିକ ସେହିପରି କନ୍ୟାକୁମାରୀସ୍ଥ ଶ୍ରୀ ଅରବିନ୍ଦଙ୍କ ପବିତ୍ର ପୀଠ ସନ୍ଦର୍ଶରେ ଖୁବ ଅଭିଭୂତ ହୋଇଥିଲି । ଏବେ ପ୍ରାୟ ଏକ ବର୍ଷ ହେଲା ଓଡ଼ିଶା ପ୍ରଶାସନର ଜଣେ ଅଂଶୀଦାର ଭାବରେ ରାଜ୍ୟ ସରକାରଙ୍କ ପରିବେଶ, ବିଜ୍ଞାନ ଓ ପ୍ରଯୁକ୍ତିବିଦ୍ୟା ବିଭାଗର ମନ୍ତ୍ରୀ ପଦରେ ଅଧିଷ୍ଠିତ ହୋଇ ସ୍ୱକର୍ତ୍ତବ୍ୟ ସଂପାଦନରେ ବ୍ରତୀ ହୋଇଅଛି ।

ଅର୍ଦ୍ଧଶତାବ୍ଦୀରୁ ଅଧିକକାଳ ବ୍ୟାପୀ ମୋର ରାଜନୈତିକ ଜୀବନର ସବୁଠାରୁ ବଡ଼ ସହକର୍ମୀ ଓ ସହ ସାଧିକା ଭାବରେ ମୋତେ ଯିଏ ସବୁଠୁଁ ଅଧିକ ଉତ୍ସାହ ଓ ପ୍ରେରଣା ଯୋଗାଇ ପାରିଥିଲେ ସେ ହେଉଛନ୍ତି ମୋର ପ୍ରାଣ ପ୍ରିୟା ସହଧର୍ମିଣୀ କୃଷ୍ଣପ୍ରିୟା ମୋର ସଫଳ ରାଜନୈତିକ ଜୀବନରେ ତାଙ୍କର ନିଷ୍କାମ ଅବଦାନ ଅତୁଳନୀୟ । ତାଙ୍କର ପ୍ରେରଣାର ଉତ୍ସ ମୋତେ ସଗର୍ବରେ କର୍ମ କ୍ଷେତ୍ରରେ ଆଗେଇ ନେବାରେ ଯଥେଷ୍ଟ ସହାୟକ ହୋଇଛି ଏହା କହିବା ବାହୁଲ୍ୟ ମାତ୍ର, ସେ ଦିନିବର୍ଷ ହେଲା ଇହଲୋକରୁ ବିଦାୟ ନେଇ ଗଲେଣି । ଏହି ପାଣ୍ଡୁଲିପିଟି ପ୍ରକାଶ ପାଇଲା ବେଳକୁ ସେ ଏ ଜଗତରେ ନାହାନ୍ତି । ତେଣୁଁ ତାଙ୍କର ପବିତ୍ର ସ୍ମୃତିରକ୍ଷା ପାଇଁ ଏହି ପୁସ୍ତକଟି ତାଙ୍କରି ପବିତ୍ର ନାମରେ ଅର୍ପଣ କରୁଛି ।

ଏହି ଆତ୍ମଜୀବନୀ ଲେଖିବାରେ ମୁଁ ବିଧାନସଭାର ଅଧ୍ୟକ୍ଷ ଥିବା ବେଳର ସହକର୍ମୀମାନେ ଏବଂ ପରେ ଏହାର ସଂଶୋଧନ ଇତ୍ୟାଦି କରିବାରେ ବାରିପଦାର ପଣ୍ଡିତ ଶ୍ରୀ ପୁରୁଷୋତ୍ତମ ଦାଶ, ଓଡ଼ିଶା ସଂସ୍କୃତ ଶିକ୍ଷା ବିଭାଗର ଅବସର ପ୍ରାପ୍ତ ଉପାଧ୍ୟକ୍ଷ ମୋତେ ସାହାଯ୍ୟ କରିଥିବାରୁ ମୁଁ ସେମାନଙ୍କୁ କୃତଜ୍ଞତା ଜଣାଉଛି । ବିଶେଷକରି ପଣ୍ଡିତ ଶ୍ରୀ ପୁରୁଷୋତ୍ତମ ଦାଶ ବହୁଶ୍ରମ ସ୍ୱୀକାର ପୂର୍ବକ ଓ ବହୁ ଧୈର୍ଯ୍ୟର ସହିତ ସଂଶୋଧନ ପ୍ରଭୃତି ଅକୁଣ୍ଠ ଚିତ୍ତରେ ସଂପାଦନ କରିଥିବାରୁ ତାଙ୍କୁ ମୋର ହାର୍ଦ୍ଦିକ କୃତଜ୍ଞତା ଜ୍ଞାପନ କରିବା ସହ ତାଙ୍କର ଶୁଭକାମନା କରୁଛି । ଏତଦ୍ ବ୍ୟତୀତ ଚେତନଟି ମହାବିଦ୍ୟାଳୟର ଅଧ୍ୟାପକ ଶ୍ରୀ ବିକାଶ ଚନ୍ଦ୍ର ଦାସ ଏବଂ ବାରିପଦା ଭଞ୍ଜପୁରର ଶ୍ରୀମାନ୍ ସଂଗ୍ରାମ କେଶରୀ ମହାନ୍ତି ମଧ୍ୟ ମୋର ମୂଳ ଲେଖାଟି ସଂଶୋଧନ କରିବାରେ ଅନେକ ସହାୟତା ପ୍ରଦାନ କରିଥିବାରୁ ସେମାନଙ୍କୁ ମଧ୍ୟ କୃତଜ୍ଞତା ଜଣାଉଛି ।

ପରିଶେଷରେ ଓଡ଼ିଶାର ସ୍ୱନାମଧନ୍ୟ ଉପମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ବସନ୍ତ କୁମାର ବିଶ୍ୱାଳ ମୋର ଏହି ପାଣ୍ଡୁଲିପିକୁ ରାଷ୍ଟ୍ରଭାଷା ପ୍ରେସ୍ ଦ୍ୱାରା ପ୍ରକାଶ କରାଇବାର ପଦକ୍ଷେପ ନେଇଥିବାରୁ ତାଙ୍କୁ ମୋର ହାର୍ଦ୍ଦିକ କୃତଜ୍ଞତା ଜଣାଉଛି । ଉକ୍ତ ପ୍ରେସ୍‌ର କର୍ମଚାରୀମାନେ ବହୁ କଷ୍ଟ କରି ଛପା କାର୍ଯ୍ୟ ସୁଚାରୁ ରୂପେ କରିଥିବାରୁ ସେମାନଙ୍କୁ ମୋର କୃତଜ୍ଞତା ଜ୍ଞାପନ କରୁଅଛି ।

ମୋର ଜନ୍ମସ୍ଥାନ ମୟୂରଭଞ୍ଜ ଜିଲ୍ଲାର ଜନସାଧାରଣ ମୋତେ ତାଙ୍କର ଶୁଭାଶୀର୍ବାଦ ଅକଣ୍ଠ ଚିତ୍ତରେ ଦାନ କରି ମୋତେ ବିଧାନସଭାକୁ ବାରମ୍ବାର ନିର୍ବାଚିତ କରାଇ ଏକ ଇତିହାସ ସୃଷ୍ଟି କରିଥିବାରୁ ସେମାନଙ୍କୁ ତଥା ଓଡ଼ିଶାର ବହୁ ବନ୍ଧୁ ଓ ଆତ୍ମୀୟ ସ୍ୱଜନଙ୍କୁ ଶୁଭେଚ୍ଛା ଓ ଶ୍ରଦ୍ଧା ମୋ ପ୍ରତି ପ୍ରଦର୍ଶନ କରି ଆସିଥିବା ହେତୁ ମୋର ଅନ୍ତରର କୃତଜ୍ଞତା ଜ୍ଞପନ କରୁଛି ।

ସର୍ବଶେଷରେ ମୋର ଏହି ଲେଖାଟି ବର୍ତ୍ତମାନ ଭାରତର ରାଜନୀତି ଯେପରି କଳୁଷିତ ହୋଇ ଗଣତନ୍ତ୍ର ପ୍ରତି ଅନାସ୍ଥା ସୃଷ୍ଟି କରୁଛି, ଆଜିର ରାଜନୀତି କରୁଥିବା ବ୍ୟକ୍ତିମାନଙ୍କ ଚରିତ୍ର ଓ ଆଚରଣ ଗଢ଼ି ତୋଳିବାରେ ସହାୟକ ହେଲେ ଅତ୍ୟନ୍ତ ଆନନ୍ଦିତ ହେବା ସଙ୍ଗେ ସଙ୍ଗେ ଶ୍ରମ ସାର୍ଥକ ହେବ ବୋଲି ମନେ କରେ ।

ଓଁ ଦ୍ୟୌଃ ଶାନ୍ତିଃ, ଆନ୍ତରୀକ୍ଷଂ ଶାନ୍ତିଃ, ପୃଥିବୀ ଶାନ୍ତିଃ, ଆପଃ ଶାନ୍ତିଃ, ବନସ୍ପତୟଃ ଶାନ୍ତିଃ, ଔଷଧୟଃ ଶାନ୍ତିଃ, ବିଶ୍ୱେଦେବାଃ ଶାନ୍ତିଃ, ଶାନ୍ତିରେବ ଶାନ୍ତିଃ, ସାମାଂଶାନ୍ତିରେଧି ।

*ଶ୍ରୀ ପ୍ରସନ୍ନ କୁମାର ଦାଶ*



**ମୟୂରଭଞ୍ଜ ଷ୍ଟେଟ କଂଗ୍ରେସ କାର୍ଯ୍ୟକାରୀ କମିଟିର ସଦସ୍ୟ ଓ କାର୍ଯକାରୀ କମିଟି ବୈଠକକୁ ନିମନ୍ତିତ ସଭ୍ୟଗଣ**

**ବାମରୁ ଡାହାଣକୁ —** (ଆଗଧାଡ଼ି) ଶ୍ରୀ ଦୀନବନ୍ଧୁ ଦାସ, ଶ୍ରୀ ପୂର୍ଣ୍ଣଚନ୍ଦ୍ର ଆଚାର୍ଯ୍ୟ, ଶ୍ରୀ ଗୌରମୋହନ ମହାନ୍ତି, ଶ୍ରୀ ସତ୍ୟନାରାୟଣ ହା, ଶ୍ରୀ ଗୌରମୋହନ ମହାପାତ୍ର, ଶ୍ରୀ ଯଦୁନାଥ ମହାନ୍ତି, ଶ୍ରୀ ଗଦାଧର ପ୍ରଧାନ, ଶ୍ରୀ ଜଗତ୍ ଚରଣ ମାଝୀ, ଶ୍ରୀ ଦାମୋଦର ପଣ୍ଡା, ଶ୍ରୀ ନିତ୍ୟାନନ୍ଦ ସାହୁ, ଶ୍ରୀ ରମେଶ ଚନ୍ଦ୍ର ପତି, ଶ୍ରୀ ଦୁତିଂ ସିଂହ, ଶ୍ରୀ ବୈକୁଣ୍ଠ ନାଥ ସତୁଆଳ । (ମଝିଧାଡ଼ି) ଶ୍ରୀ ଯାଦବାନନ୍ଦ ମୁର୍ମୁ, ଶ୍ରୀ ଅମରେନ୍ଦ୍ର କୁମାର ଦାସ, ଶ୍ରୀ ପଞ୍ଚାନନ ପଟ୍ଟନାୟକ, ଶ୍ରୀ ହରିହର ମହାନ୍ତି, ଶ୍ରୀ ଭରତ ଚନ୍ଦ୍ର ଦାସ, ଶ୍ରୀ ବିଦ୍ୟାଧର ମହାପାତ୍ର, ଶ୍ରୀ ମହେଶ୍ୱର ନାଏକ, ଶ୍ରୀ ପ୍ରସନ୍ନ କୁମାର ଦାସ, ଶ୍ରୀ ଗୌରମୋହନ ପ୍ରଧାନ, ଶ୍ରୀ ସୁଧୀର କୁମାର ଜେଠି, ଶ୍ରୀ ଭବତୋଷ ଦାଶ, ଶ୍ରୀ ଜିତେନ୍ଦ୍ର ନାଥ ମହାନ୍ତି । (ପଛଧାଡ଼ି) ଶ୍ରୀ ପୁରୁଷୋତ୍ତମ ଜେନା, ଶ୍ରୀ ବିଶ୍ୱମ୍ଭର ମହାରଣା, ଶ୍ରୀ ରମାନାଥ ଚୁଡୁ, ଶ୍ରୀ କ୍ଷେତ୍ରମୋହନ ଦାସ, ଶ୍ରୀ ସାକଲା ସରେନ୍, ଶ୍ରୀ ହରେକୃଷ୍ଣ ତ୍ରିପାଠୀ, ଶ୍ରୀ ହାରାଧନ ପରିଡ଼ା, ଶ୍ରୀ ହରିହର ମହାନ୍ତି, ଶ୍ରୀ ଅଶ୍ୱିନି କୁମାର ବେବି, ଶ୍ରୀ ଚକ୍ରଲୋଚନ ଦତ୍ତ, ଶ୍ରୀ ଲକ୍ଷ୍ମୀଧର ତ୍ରିପାଠୀ, ଶ୍ରୀ ଲକ୍ଷ୍ମୀଧର ଧଳ ।

## ରାଜନୀତିରେ ଅତର୍କିତ ଯୋଗଦାନ :-

ମଣିଷ ପରିସ୍ଥିତିର ଦାସ । ପରିସ୍ଥିତିର ତାଡ଼ନାରେ ପଡ଼ି ମଣିଷ ବେଳେ ବେଳେ ଭଲ ବା ମନ୍ଦ କାର୍ଯ୍ୟରେ ଆଗଭର ହୋଇଯାଏ । ସେ ଦିନର ସେ ଆହ୍ୱାନ ଏବେ ବି ମନରେ ଆଲୋଡ଼ନ ସୃଷ୍ଟିକରେ । ସ୍ୱାଧୀନତା ଆନ୍ଦୋଳନ ଚଳାଇ ମୟୁରଭଞ୍ଜର ଲୋକମାନ୍ୟ ନେତା ସ୍ୱର୍ଗତଃ ଶରତ ଚନ୍ଦ୍ର ଦାସ ପ୍ରଗଣା ସମିତି ସହାୟତାରେ ଗ୍ରାମ ସଂଗଠନ କାର୍ଯ୍ୟରେ ଲାଗି ଥାଆନ୍ତି । ଏ କାର୍ଯ୍ୟ ସମ୍ପାଦନ ପାଇଁ ବହୁକର୍ମୀ ତଥା ଶିକ୍ଷିତ ଲୋକଙ୍କ ଆବଶ୍ୟକ ପଡୁଥାଏ । ସେତେବେଳ ମୟୁରଭଞ୍ଜରେ ଶିକ୍ଷିତ ଲୋକଙ୍କ ସଂଖ୍ୟା ଅତି ମୁଷ୍ଟିମେୟ । ତେଣୁ ସ୍ୱର୍ଗତଃ ଦାସ ୧୯୩୯ ମସିହା ଅପ୍ରେଲ ମାସ ୧୫ ତାରିଖକ ଦିନ ତାଙ୍କର ଆମ୍ରଯୋଡା ଆଶ୍ରମରୁ ''ମୟୁରଭଞ୍ଜର ପ୍ରଜାଭାଇମାନଙ୍କୁ ନିବେଦନ'' ଶୀର୍ଷକ ଏକ ଲେଖା ମାଧମରେ ଯୁବକମାନଙ୍କୁ ସ୍ୱାଧୀନତା ଆନ୍ଦୋଳନରେ ଯୋଗ ଦେବାକୁ ଆହ୍ୱାନ କଲେ । ଉକ୍ତ ଲେଖାଟି ମୋ ମନରେ ଏକ ଆଲୋଡନ ସୃଷ୍ଟି କଲା । ଏ ଆହ୍ୱାନ ଏତେ ବଳବତ୍ତର ଥିଲା ଯେଗୁରୁଜନମାନଙ୍କୁ କାହାରିକୁ ନଜଣାଇ ପାଠ ପଢ଼ାରେ ପୂର୍ଣ୍ଣଛେଦ ପକାଇ କାଳ ବିଳମ୍ବ ନ କରି ତହିଁ ପର ଦିନ ଅର୍ଥାତ୍ ତା ୧୬/୪/୩୯ରିଖ ରବିବାର ଦିନ ଆମ୍ରଯୋଡ଼ା ଅଭିମୁଖେ ଯାତ୍ରା କଲି ଏବଂ ରାଜନୀତିରେ ଯୋଗ ଦାନ କରି ନିରବଚ୍ଛିନ୍ନ ଭାବରେ ଏ ପର୍ଯ୍ୟନ୍ତ ରାଜନୀତି କରି ଆସୁଅଛି ।ସେ ଦିନ ସେ ଯେଉଁ ଆହ୍ୱାନ ଦେଇଥିଲେ ତାହା ନିମ୍ନରେ ପ୍ରଦତ୍ତ ହେଲା ।

## ''ମୟୁରଭଞ୍ଜ ପ୍ରଜାଭାଇଙ୍କୁ ନିବେଦନ''

ମୟୁରଭଞ୍ଜର ମହାରାଜା ଅଧୀନରେ ଦାୟିତ୍ୱମୂଳକକ ଶାସନ ପ୍ରତିଷ୍ଠା କରି ପ୍ରଜାଙ୍କର ଦୁଃଖ ଦୁର୍ଦ୍ଦଶା ମୋଚନ କରିବା ଓ ରାଜ୍ୟର ସର୍ବବିଧ ଉନ୍ନତି ସାଧନ କରିବା ଏବଂ ଆମ୍ଭମାନଙ୍କର ନିଜନିଜର ଆତ୍ମବିକାଶ କରିବା ମୋର ଲକ୍ଷ୍ୟ । ମୋର ଆଶା ପ୍ରତ୍ୟେକ ପ୍ରଜାର ଏହି ଲକ୍ଷ୍ୟହେବା ଉଚିତ । ଦାୟିତ୍ୱମୂଳକ ଶାସନ ଗଢ଼ିବା ପାଇଁ ଆମ୍ଭେ ପ୍ରଜାମାନେ କାଳ ବିଳମ୍ବ ନକରି ନିଜ ନିଜକୁ ଯୋଗ୍ୟ କରିବା ଦରକାର । ଏ ଦିଗରେ ସଫଳତା ପାଇଁ ଗ୍ରାମ ସଂଗଠନ ହିଁ ପ୍ରକୃଷ୍ଟ ଓ ଏକମାତ୍ର ପନ୍ଥା ଏବଂ ମାହାତ୍ମା ଗାନ୍ଧୀଙ୍କ ପ୍ରଦର୍ଶିତ ସତ୍ୟ ଓ ଅହିଂସା ହିଁ ଏକମାତ୍ର ଉତ୍କୃଷ୍ଟ ନୀତି । ଏହି ନୀତି ଓ ପନ୍ଥା ଅବଲମ୍ବନ କରି ଶୃଙ୍ଖଳିତ ଭାବେ ଗ୍ରାମ ସଂଗଠନ କାର୍ଯ୍ୟ କରିବାକୁ ଦେଶ ପ୍ରୀତିଥିବା ନିସ୍ୱାର୍ଥପର କର୍ମୀ ଏ କାର୍ଯ୍ୟକୁ ବରଣ କରିବା ଉଚିତ୍ ।

ମୟୁରଭଞ୍ଜର ଲୋକସଂଖ୍ୟା ପ୍ରାୟ ୯ ଲକ୍ଷ । ମୟୁରଭଞ୍ଜରେ ଶିକ୍ଷିତଲୋକଙ୍କ ସଂଖ୍ୟା ଉତ୍କଳର

ଗଡ଼ଜାତମାନଙ୍କ ତୁଳନାରେ ଅପେକ୍ଷାକୃତ ବେଶି । ମାତ୍ର ରାଜ୍ୟର ଲୋକସଂଖ୍ୟା ଓ ଆୟତନ ହିସାବରେ ଏବଂ ନିରକ୍ଷରତା ଓ ହାଣ୍ଡିଆ ମଦ ନିଶା ଖାଇ ବୁଦ୍ଧିଶୂନ୍ୟ ହୋଇ ରହିଥିବା ଲୋକ ସଂଖ୍ୟା ଦୃଷ୍ଟିରେ ସଂଗଠନ କାର୍ଯ୍ୟର ଗୁରୁତ୍ୱ ଓ ପରିସର ଯେ ଖୁବ୍ ବେଶି ଏଥିରେ ସନ୍ଦେହ ନାହିଁ । ଏପରି ଅବସ୍ଥାରେ କର୍ମୀସଂଖ୍ୟା ମଧ୍ୟ ବହୁତ ପ୍ରୟୋଜନ । ବର୍ତ୍ତମାନ ସାଇଁକୁଳା, କଇଁସାରି, ଆରପଟା, ଚିଲିମା, ବେଲାକୁଟା, ଅଖୁଆ ଦେଉଳିଆ ମାଣତ୍ରି, କୁରାଡିହା, ସଠିଲୋ, ରାହାଣ୍ଡ ଓ ବାରପଦା ପ୍ରଗଣା ମାନଙ୍କରେ ଗ୍ରାମ ସଂଗଠନ କାର୍ଯ୍ୟ ଆରମ୍ଭ କରାଯାଇଅଛି । ଶୋଭାଯାତ୍ରା କରି ଗ୍ରାମେ ଗ୍ରାମେ ପ୍ରଚାର କାର୍ଯ୍ୟ ହେଉଅଛି । ମୁଠି ଚାଉଳ ଦ୍ୱାରା ଗ୍ରାମେ ଗ୍ରାମେ ଗ୍ରାମପାଣ୍ଠିମାନ ସ୍ଥାପନ କରାଯାଉଅଛି । ପ୍ରଗଣା ସମିତି ଅଧୀନରେ ଗ୍ରାମ ସଭାମାନ ପ୍ରତିଷ୍ଠା କରାଯାଉଅଛି । ଗ୍ରାମମାନଙ୍କରୁ ନିଶା ଦୂର କରିବା ଓ ମୁଷ୍ଟି ଭିକ୍ଷା ଲବ୍ଧଧନ ସାହାର୍ଯ୍ୟରେ ଗ୍ରାମେ ଗ୍ରାମେ ଚାଟଶାଳି ସ୍ଥାପନ କରି ନିରକ୍ଷରତା/ ଦୂରକରିବା ଓ ଗ୍ରାମ ସଭା ସାହାଯ୍ୟରେ ଗ୍ରାମର ମାଲିମାମଲା ନିଷ୍ପତ୍ତି କରିବା ଓ କପାଚାଷ କରି ସୂତା କାଟି ଲୁଗା ବୁଣାଇ ପିନ୍ଧିବା ଆଦି ଉଦ୍ୟମମାନ କରାଯାଉଅଛି । କେତେକ ଗ୍ରାମରେ ବିଶେଷତଃ ସାନ୍ତାଳ, ବାଥୁଡି ପ୍ରଭୃତି ଅନାର୍ଯ୍ୟ ଗ୍ରାମମାନଙ୍କରେ କୁରାଡିଆ ଲୋକେ ଏକ ଯୋଟ ହୋଇ ଠାଛିଆ କୋଡ଼ି ଧରି ଗ୍ରାମ, ସଡ଼କମାନ ତିଆରି କଲେଣି ଓ ଗ୍ରାମମାନ ପରିଚ୍ଛନ ରଖିବାକୁ ଶିଖିଲେଣି । ପ୍ରଗଣାର ପୁରାଡ଼ିଆ ଗ୍ରାମ, ଗମ୍ଭାରିଆ, ପଙ୍କଚା, ଡ଼ିଙ୍ଗରା, ବାରିହାପାଳ, ମାଣିତ୍ରି ପ୍ରଗଣାର କୋଡିମୁଣ୍ଡା, ନାଖରା ପାଟଳିପୁରା, ଡ଼େମ୍ପଭଦା, ମାଣିତ୍ରି ଆଦି ଗ୍ରାମରେ ରାସ୍ତା ତିଆରି କରି ସାରିଲେଣି । କଇଁସାରି ପ୍ରଗଣାରେ ସାନ୍ତାଳ ଭୂମିଜମାନେ ହାଟରେ ବା ଘରେ ହାଣ୍ଡିଆ ଓ ମଦ ପ୍ରାୟ ଛାଡି ଦେଲେଣି । ଅନ୍ୟାନ ପ୍ରଗଣାମାନଙ୍କରେ ନିଶା ତ୍ୟାଗ କରିବା ପାଇଁ ଅନାର୍ଯ୍ୟମାନଙ୍କ ମଧ୍ୟରେ ସଂକଳ୍ପ ଦେଖାଦେଲାଣି ।

ଅନାର୍ଯ୍ୟ ମୂଳିଆମାନଙ୍କର ନିରକ୍ଷରତା ଦୂରକରିବା ପାଇଁ ଗ୍ରାମେ ଗ୍ରାମେ ରାତିରେ ପାଠଶାଳା ସ୍ଥାପନ କରି ପାଠ ପଢ଼ାଇବାର ଉଦ୍ୟମ ହେଉଛି । ପ୍ରତ୍ୟେକ ଗ୍ରାମରେ ଖବର କାଗଚ ଅଣାଇ ଲୋକଙ୍କୁ ପଢ଼ି ଶୁଣାଇବାର ବ୍ୟବସ୍ଥା ହେଉଛି । ଏ ସବୁ ଦିଗରେ ଖରଚ ଗ୍ରାମ ପାଣ୍ଠିମାନଙ୍କରୁ ହେବ । କେତେକ ଗ୍ରାମର ମାଲିମୋକଦ୍ଦମା ଗ୍ରାମରେ ନିଷ୍ପତ୍ତି କରାଯାଇ ଆର୍ଯ୍ୟମାନଙ୍କ ମଧ୍ୟରେ କେତେକ ଗ୍ରାମରେ ମଦ ଓ ଗଞ୍ଜା ମଧ୍ୟ ଛାଡି ଦେଲେଣି ।

ମାତ୍ର ଦୁଃଖର କଥା ରାଜ୍ୟର ଶିକ୍ଷିତ ଲୋକେ ଆଗଭର ହୋଇ ଦୁଃଖ କଷ୍ଟ ସହି ଏସବୁ କାର୍ଯ୍ୟ ହାତକୁ ନେଇ ଅଗ୍ରସର ହେବାର ଦେଖାଯାଉ ନାହିଁ । ତାଙ୍କ ଶିକ୍ଷାର ପ୍ରକୃତ ପରୀକ୍ଷାସ୍ଥଳ ଏହିଠାରେ, ଶିକ୍ଷାର ମିଥ୍ୟା ଅହଙ୍କାର ବା ଅଭିମାନକୁ ଛାଡି ସାଧାରଣ ଗରିବ ଅଶିକ୍ଷିତ ଲୋକଙ୍କ ଭିତରେ ପଶି କାନ୍ଧକୁ କାନ୍ଧ ମିଳାଇ କାର୍ଯ୍ୟ କରିବାରେ ଶିକ୍ଷାର ପ୍ରକୃତ ମହତ୍ୱ ସିନା । ମୁଁ ଏସବୁ କାର୍ଯ୍ୟପାଇଁ ଅଳ୍ପ କେତେକ ମାତ୍ର କର୍ମୀ ପାଇ କାର୍ଯ୍ୟ ଆରମ୍ଭ କରିଅଛି । ମୋର ବିନୀତ ନିବେଦନ ରାଜ୍ୟର ଶିକ୍ଷିତ ଲୋକେ କାର୍ଯ୍ୟକ୍ଷେତ୍ରରେ ପହଞ୍ଚି ଚାଳକ ହୁଅନ୍ତୁ । ମୁଁ ଓ ମୋର କର୍ମୀବୃନ୍ଦ ସେବକ ରୂପେ ରାଜ୍ୟର ସେବା କରିବାରେ ତାଙ୍କୁ ସାହାଯ୍ୟ କରିବୁଁ । ମୋର ଆହୁରି ନିବେଦନ ଯେ ଯେଉଁମାନେ କର୍ମୀରୂପେ ତାଙ୍କର

ଖାଇବାର ସୁବିଧା ମାତ୍ର ପାଇ ଏ ଦିଗରେ କାର୍ଯ୍ୟ କରିବାକୁ ପ୍ରସ୍ତୁତ ସେମାନେ ମୋ ସହିତ ଦେଖା କରି ତାଙ୍କର କାର୍ଯ୍ୟକ୍ଷେତ୍ର ନିରୂପଣ କରି ନିଅନ୍ତୁ । ବଡ଼ ଆନନ୍ଦର କଥା ଗ୍ରାମକୁ ପ୍ରକୃତ ଶିକ୍ଷାସ୍ଥଳ ଭାବି ମୟୂରଭଞ୍ଜର ଜଣେ କଲେଜ ଛାତ୍ର ଓ ଜଣେ ସ୍କୁଲ ଚାତ୍ର ସେଠାରେ ଶିକ୍ଷା ତ୍ୟାଗକରି ଗ୍ରାମ ସଂଗଠନରେ ଯୋଗ ଦେଇ ଅଛନ୍ତି । ଆଖୁଆ ଦେଉଳିଆ ପ୍ରଗଣାର ତେନ୍ତୁଳିମୁଣ୍ଡା ଗ୍ରାମର ଶ୍ରୀ ଗଜେନ୍ଦ୍ରନାଥ ପଟ୍ଟନାୟକ ଆଜି ଏକ ତ୍ୟାଗର ଆଦର୍ଶ ଦେଖାଇ ପାରିଅଛନ୍ତି । ବେତନଟୀ ପ୍ରତାପ ଚାଉଳ କଳରେ ମାସିକ ୮୫(ପଞ୍ଚାଅଶୀ) ବେତନରେ ସେ କାର୍ଯ୍ୟ କରୁଥିଲେ ଉକ୍ତ ନାର୍ଯ୍ୟ ଇସ୍ତଫା ଦେଇ ବର୍ତ୍ତମାନ ଗ୍ରାମ ସଂଗଠନ କାମରେ ତା଼ଙ୍କର ମନ ପ୍ରାଣ ଢ଼ାଳି ଦେଇଅଛନ୍ତି । ଯେଉଁମାନଙ୍କର ପ୍ରାଣ ଅଛି , ଯେଉଁମାନଙ୍କର ହୃଦୟ ଅଛି, ଏହି ତ୍ୟାଗର ମହତ୍ତ୍ୱରେ ସେମାନେ ଅନୁପ୍ରାଣିତ ହେବେ ଏହା ମୋର ଆଶା ।

ମୋର ଆଶଙ୍କା ହେଉଛି ମୋର କେହି ଜଣେ ଦେଶପ୍ରେମିକ ଭାଇ ମହାରାଜାଙ୍କଠାରେ ଦାବୀମାନ ଉପସ୍ଥାପିତ କରିବାର ଇଚ୍ଛା କରିଛନ୍ତି ଓ ଉକ୍ତ ଦାମୀମାନ ମହାରାଜା ଗ୍ରହଣ ନକଲେ ସତ୍ୟାଗ୍ରହ କରିବାର କଳ୍ପନା ରଖିଛନ୍ତି । ମୁଁ ପ୍ରଜାଙ୍କର ବର୍ତ୍ତମାନ ଅବସ୍ଥା ଯାହା ବୁଝିଛି ଓ ରାଜ୍ୟର ବର୍ତ୍ତମାନ ପରିସ୍ଥିତି ଦୃଷ୍ଟିରେ ସେପରି କଳ୍ପନା କରିଥିବା ଭାଇଙ୍କୁ ସାବଧାନ କରି ଦେଉଛି ଯେ ତାଙ୍କର ଏପରି ଭ୍ରାନ୍ତ କଳ୍ପନାକୁ କାର୍ଯ୍ୟରେ ପରିଣତ କରିବାର ଚେଷ୍ଟାରେ ସମୂହ ରାଜ୍ୟର ଓ ପ୍ରଜାଙ୍କର ଅହିତ ଓ ଅକାରଣ ନିର୍ଯ୍ୟାତନା ଅବଶ୍ୟମ୍ଭାବୀ ।

ମହାରାଜାଙ୍କଠାରେ ଦାବୀ ଉପସ୍ଥାପିତ କରିବାକୁ ମୁଁ ନିଷେଧ କରୁନାହିଁ, ବରଂ ତାହା କରିବା ଉଚିତ । ମାତ୍ର ସତ୍ୟାଗ୍ରହ ପ୍ରଶ୍ନ ବର୍ତ୍ତମାନ କଳ୍ପନାକୁ ଆଣିବା ଅର୍ଥ ହେଉଛି ପରିସ୍ଥିତିର ପ୍ରକୃତ ଅବସ୍ଥା ବୁଝି ନଥିବା ବା ବୁଝିବାରେଭ୍ରମ ଘଟିଥିବା । ମୁଁ କହୁନାହିଁ ଯେ କେବେହେଲେ ସତ୍ୟାଗ୍ରହ କରିବାକୁ ହେବ ନାହିଁ । ଅବସ୍ଥା ଯଦି ବାଧ କରାଏ ସତ୍ୟାଗ୍ରହ କରିବାକୁ ତାହା ଅବଲମ୍ବନ କରାଯାଇପାରେ । ବ୍ୟକ୍ତି ବିଶେଷଙ୍କ କାହାରି କାହାରି ସେ ଶକ୍ତି ଲୁକାୟିତଭାବେ ଅନ୍ତର୍ନିହିତ ଥାଇପାରେ । ମାତ୍ର ସତ୍ୟଗ୍ରହୀ ହେବାକୁ ହେଲେ ଯେ ସାଧନା ଭିତର ଦେଇ ପ୍ରାଣକୁ ଓ ଚରିତ୍ରକୁ ଗଢ଼ିବା ପ୍ରୟୋଜନ ସେ ଦିଗରେ ଗତି କେହି କରି ନଥାଇଁ । ଏପରି ଅବସ୍ଥାରେ ମୋର ବିଶ୍ୱାସ କେବଳ ଗ୍ରାମ ସଂଗଠନରେ ହିଁ ଆମ୍ଭମାନଙ୍କର ବର୍ତ୍ତମାନ କାର୍ଯ୍ୟ ନିହିତ ରହିବା ଉଚିତ । ଏବାଦ୍ ଆମ୍ଭମାନଙ୍କ ପ୍ରଗଣା କାର୍ଯ୍ୟକାରୀ ସମିତିରେ ଶାସନ ନୀତିର ଓ ପ୍ରଜାଙ୍କ ହିତ ଦୃଷ୍ଟିରେ ଶାସନ ସଂପର୍କୀୟ ସୁବିଧା ଓ ଅସୁବିଧା ଆଲୋଚନା କରାଯାଇ ଗୃହୀତ ପ୍ରସ୍ତାବମାନ ମହାରାଜାଙ୍କଠାରେ ବା ବିଭାଗୀୟ କର୍ମଚାରୀଙ୍କଠାରେ ଉପସ୍ଥାପନ କରି ତାହା ଗ୍ରହଣ କରିବାକୁ ଦାବି କରିବାର ଯେପରି ସ୍ଥାନ ରଖାଯାଇଛି ତାହାହିଁ ବର୍ତ୍ତମାନ ପରିସ୍ଥିତିରେ ବିଧେୟ ବୋଲି ମୋର ବିଶ୍ୱାସ ଓ ମତ ।

ମା ଭଞ୍ଜଭୂମି ଆହ୍ୱାନ କରୁଛି, ତାର ସନ୍ତାନ ତ୍ୟାଗ ମନ୍ତ୍ରରେ ଦୀକ୍ଷିତ ହୋଇ ଭୟଭ୍ରାନ୍ତି ଛାଡି ତାର ଦୁଃଖ ଦୁର୍ଦ୍ଦଶା ମୋଚନ କରନ୍ତୁ ଓ ସେଥିପ୍ରତି ଆତ୍ମ ପ୍ରତିଷ୍ଠା କରି ପୂର୍ଣ୍ଣ ମାନବିକତା ଲାଭ କରନ୍ତୁ ।

ଆମ ରାଜ୍ୟର ପତାକା ବିଶ୍ୱ ସମ୍ମୁଖରେ ରାଜ୍ୟର ଉଚ୍ଚ ଆଦର୍ଶ ରାଜନୀତି ପ୍ରଚାର କରି ପ୍ରଜାକୂଳକୁ ଡାକି କହୁଛି '' ଉତ୍ତିଷ୍ଠିତ, ଜାଗ୍ରତ, ପ୍ରାପ୍ୟବରାନ୍ନି ବୋଧକ'' ହେ ପ୍ରଜାବୃନ୍ଦ । ଉଠ ପ୍ରଜାବୃନ୍ଦ । ଉଠ, ଜାଗ୍ରତ ହୁଅ ଏବଂ ଲକ୍ଷ ସ୍ଥଳରେ ନପହଞ୍ଚିବା ଯାଏ କ୍ଷାନ୍ତ ହୁଅନାହିଁ । ଆସ ଭାଇ! ଏହି ଆଦର୍ଶରେ ଅନୁପ୍ରାଣିତ ହୋଇ ରାଜ୍ୟର ତଥା ରାଜାଙ୍କର ଗୌରବ ବୃଦ୍ଧି ପାଇଁ ପ୍ରାଣ ପଣ କରି କାର୍ଯ୍ୟରେ ଲାଗି ପଡ଼ିବା - ଯେପରି ଭବିଷ୍ୟତ ଭାରତ ଇତିହାସରେ ଆମ ରାଜ୍ୟ ଆଦର୍ଶ ରାଜ୍ୟ ରୂପେ ଏକ ଅଭିନବ ଅଧ୍ୟାୟରେ ସ୍ୱର୍ଣ୍ଣାକ୍ଷରରେ ମୁଦ୍ରିତ ହୁଏ । ଇତି ।

ଆମ୍ବଯୋଡା
୧୫.୦୪.୧୯୩୯

ମୟୁରଭଞ୍ଜ ରାଜ୍ୟର ସେବକ
**ଶରତଚନ୍ଦ୍ର ଦାସ**

# କିଛି କଥା କିଛି ଉପକ୍ରଣିକା

''ମାନବ ଜୀବନ ନୁହଇଁ କେବଳ
ବର୍ଷ ମାସ ଦିନ ଦଣ୍ଡ
କର୍ମେ ଜୀଏ ନର କର୍ମ ଏକା ତାର
ଜୀବନର ମାନ ଦଣ୍ଡ ।''

ମୁଁ କହିପାରିବିନି, ଉତ୍କଳମଣିଙ୍କର ଏହି ପଂକ୍ତି କାହିଁକି ମୋତେ ଏତେ ଭଲ ଲାଗେ, ମୋ ଭିତରେ ଏତେ ଉଦ୍ଦିପନା ଏତେ କର୍ମପ୍ରବଣତା ଭରିଦିଏ । ତଥାପି ବାରମ୍ବାର ତାକୁ ଆବୃତ୍ତି କରିବାକୁ ଇଚ୍ଛା ହୁଏ । ନିରବଚ୍ଛିନ୍ନଭାବରେ କର୍ମ କରିଯିବାକୁ ପ୍ରେରଣା ମିଳିଯାଏ ଆପେ ଆପେ । ବାଧା, ବିଘ୍ନ, ଦୁଃଖ, କଷ୍ଟ, ହତାଶା ଉତ୍ପୀଡ଼ନ ଏ ସବୁକୁ ପଛକୁ ପକେଇ ଅନ୍ୟପାଇଁ କିଛି କରିବାପାଇଁ ଏହା ମୋତେ ପିଲାଟି ଦିନରୁ ବାରମ୍ବାର ଆହ୍ୱାନ କରିଛି । ମୋତେ ଶକ୍ତି, ସାହସ, ଧୈର୍ଯ୍ୟ ଓ ନିଷ୍ଠା ଯୋଗେଇଛି । ସତରେ, ଅତି ସହଜ ଓ ସରଳ ଭାଷାରେ ଉତ୍କଳମଣି ଏକ ମହାନ ଦର୍ଶନ ଭରିଦେଇଛନ୍ତି ଏଇ ଦୁଇ ପଂକ୍ତି ଭିତରେ । କର୍ମକୁ ସାଧନା ପଥରେ ଆଗେଇ ନେବାର ମହାମନ୍ତ୍ର ଇଏ । ବର୍ଷମାସ ଦିନ ଦଣ୍ଡରେ ମଣିଷର କର୍ମ କୁଶଳତା ସୀମିତ ନୁହେଁ । ବରଂ ଅଳ୍ପ ସମୟ ଭିତରେ ବେଶୀ କାମ କରିବା ହିଁ ପ୍ରକୃତ ଜୀବନ । ସେଥିପାଇଁ ଏହା ଏକ ଉଦବୋଧନୀ ।

ଏଣୁ ଏହି ବାଣୀ ମୋର ଆଦର୍ଶ, ମୋର ପ୍ରେରଣା, ମୋ ଶକ୍ତିର ଉସ, ମୋ ସାହସର ଭଣ୍ଡାର, ସାଧନାର ମହାମନ୍ତ୍ର ଏବଂ ମୋ ଜୀବନର Friend, Philosopher and Guide ସବୁକିଛି ସେଥିପାଇଁ ଉତ୍କଳମଣି, ମଣିଷ ନୁହନ୍ତି ମୋପାଇଁ ସେ ଦେବତା ।

ଆଜି ଯେତେବେଳେ ମୁଁ ମୋର ଆତ୍ମଜୀବନୀ ଲେଖିବାକୁ ଯାଉଛି ସେତେବେଳେ କେବଳ ତାଙ୍କୁ ହିଁ ମୋର ହୃଦୟର ଭକ୍ତିପୂତ ପ୍ରଣତି ଜଣାଉଛି । ମୋର ଦୀର୍ଘଦିନର ରାଜନୈତିକ ଜୀବନର କିଛି ସ୍ମୃତି କିଛି ଅନୁଭୂତିକୁ ସମ୍ବଳ କରି ଏଇ ଆତ୍ମଜୀବନୀ ଲେଖା ଆରମ୍ଭ କରୁଛି । ଏଣୁ ଯେଉଁ ସବୁ ଚରିତ୍ରମାନେ ଏହାର ପରିସର ଭିତରକୁ ଆସିଛନ୍ତି ସେମାନଙ୍କୁ ମୁଁ ଉଦ୍ଦେଶ୍ୟମୂଳକଭାବେ ଆଣି ନାହିଁ କଥା ପ୍ରସଙ୍ଗରେ ସେମାନେ ଆପେ ଆପେ ଆସିଯାଇଛନ୍ତି । ତେଣୁ ଏହି ଆତ୍ମଜୀବନୀ ପାଠ କରି ଯଦି କୌଣସି ପାଠକ ପାଠିକା ସେପାଇଁ ବ୍ୟଥିତ ହୁଅନ୍ତି ସେମାନଙ୍କ ପାଖରୁ ମୁଁ ପ୍ରଥମରୁ କ୍ଷମା ମାଗି ନେଉଛି ।

## ମୋ ବଂଶ ଓ ମୋ ପରିଚୟ

ପ୍ରାୟ ଏକ ଶହ ଚାଳିଶ ବର୍ଷ ତଳର କଥା । ପୂର୍ବତନ ଓଡିଆ ଭାଷାଭାଷୀ ଏକ ଗଡଜାତ

ରାଜ୍ୟ ଷଢେଇକଳାରେ ଥିଲା ମୋ ବଂଶର ମୂଳପିଣ୍ଡ । ତେବେ, ମୁଁ ମୟୂରଭଞ୍ଜକୁ ଆସିଲି କିପରି ? ଏହା ନିଶ୍ଚିତ ଭାବରେ ଏକ ପ୍ରଶ୍ନବାଚୀ । ମୟୂରଭଞ୍ଜର ସେତେବେଳର ମହାରାଜା କୃଷ୍ଣଚନ୍ଦ୍ର ଭଂଜଦେଓ, ମୟୂରଭଞ୍ଜ ଛଉନୃତ୍ୟର ଉନ୍ନତିପାଇଁ ଦୁଇଜଣ ଛଉନୃତ୍ୟ ଗୁରୁଙ୍କୁ ଏଠାକୁ ପଠାଇବାପାଇଁ ଷଢେଇକଳାର ରାଜାସାହେବଙ୍କୁ ଅନୁରୋଧ କରିଥିଲେ । ବଂଧୁ କୃଷ୍ଣଚନ୍ଦ୍ରଙ୍କର ଅନୁରୋଧକୁ ଏଡା଼ଇ ନ ପାରି ଷଢେଇକଳାର ରାଜାସାହେବ ଯେଉଁ ଦୁଇଜଣ ଛଉନୃତ୍ୟ ଗୁରୁଙ୍କୁ ମୟୂରଭଞ୍ଜକୁ ପଠାଇଲେ ସେମାନେ ହେଲେ ଶ୍ରୀ ବନମାଳୀ ଦାଶ ଓ ଶ୍ରୀ ଉପେନ୍ଦ୍ର ବିଶ୍ୱାଳ । ସେଇ ବନମାଳୀ ହେଉଛନ୍ତି ମୋର ଜେଜେବାପା । ତାଙ୍କର ଚଉଦବର୍ଷ ବୟସରେ ସେ ମୟୂରଭଞ୍ଜ ଆସିଥିଲେ ଜଣେ ଛଉନୃତ୍ୟ ଗୁରୁ ହିସାବରେ । ଅବଶ୍ୟ ତାଙ୍କ ଆସିବା ପୂର୍ବରୁ ମୟୂରଭଞ୍ଜରେ ମଧ୍ୟ ଛଉନୃତ୍ୟ ରହିଥିଲା, ମାତ୍ର ଷଢେଇକଳା ପରି ସର୍ବଭାରତୀୟ ପ୍ରସିଦ୍ଧି ଲାଭ କରି ପାରିନଥିଲା କିମ୍ବା ସେତେ ଉନ୍ନତ ମାନର ନଥିଲା । ତେଣୁ ମୟୂରଭଞ୍ଜ ଛଉନୃତ୍ୟର ଉନ୍ନତି ସାଧନପାଇଁ, ଛଉପ୍ରେମୀ ମହାରାଜା କୃଷ୍ଣଚନ୍ଦ୍ର ଭଞ୍ଜଦେଓ ସତତ ଚେଷ୍ଟିତ ଥିଲେ । ସେଥିପାଇଁ ସେ ତାଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ଉକ୍ତ ଦୁଇଜଣ ନୃତ୍ୟଗୁରୁଙ୍କୁ ବାରିପଦାରେ ରଖି ଛଉନୃତ୍ୟ ଶିକ୍ଷାଦାନ କରାଇଥିଲେ ଏବଂ ବାରିପଦାରେ (ମୟୂରଭଞ୍ଜରେ) ମୋ ବଂଶର ମୂଳଦୁଆ ପଡ଼ିଲା ।

ନର୍ତ୍ତକମାନଙ୍କ ମଧ୍ୟରେ ପ୍ରତିଯୋଗୀ ମନୋଭାବ ସୃଷ୍ଟିନିମନ୍ତେ ତଥା ଶୃଙ୍ଖଳିତଭାବରେ ନୃତ୍ୟ ଶିକ୍ଷାଦେବାନିମନ୍ତେ ମହାରାଜା ବାରିପଦା ଛଉଦଳକୁ ଦୁଇଭାଗରେ ବିଭକ୍ତ କରି ଗୋଟିକୁ ଉତ୍ତରସାହି ଓ ଅନ୍ୟଟିକୁ ଦକ୍ଷିଣସାହିଭାବରେ ନାମିତ କଲେ ଏବଂ ନିଜେ ମହାରାଜା ଉତ୍ତରସାହିର ପରିଚାଳନା ଦାୟିତ୍ୱ ନେଇଥିବାବେଳେ ମହାରାଣୀଙ୍କୁ ଦକ୍ଷିଣସାହିର ପରିଚାଳନା ଦାୟିତ୍ୱ ପ୍ରଦାନ କରିଥିଲେ । ଏଣୁ ଛଉଗୁରୁ ଓ କଳାକାରମାନେ ରାଜପରିବାରର ଅତି ନିକଟତମ ଥିଲେ ଓ ସମାଜରେ ସେମାନଙ୍କର ଯଥେଷ୍ଟ ସମ୍ମାନ ଥିଲା । ମୋ ଜେଜେବାପା ବନମାଳୀ ଦାଶ ଦକ୍ଷିଣ ସାହିର ଓ ଉପେନ୍ଦ୍ର ବିଶ୍ୱାଳ ଉତ୍ତରସାହିର ଗୁରୁଭାବରେ ଦାୟିତ୍ୱ ନେଲେ । ଉଭୟ ମହାରାଜା ଓ ମହାରାଣୀ ଅତ୍ୟନ୍ତ ଛଉପ୍ରେମୀ ଥିବାରୁ ପ୍ରତ୍ୟେକେ ନିଜ ନିଜ ଦଳର ପ୍ରତ୍ୟକ୍ଷ ତତ୍ତ୍ୱାବଧାନ କରୁଥିଲେ । ରାଜପରିବାରର ଆନ୍ତରିକ ପୃଷ୍ଠପୋଷକତା ଓ ଛଉଗୁରୁମାନଙ୍କର ନିଷ୍ଠାପର ପ୍ରଚେଷ୍ଟା ଫଳରେ ମୟୂରଭଞ୍ଜର ଛଉନୃତ୍ୟ କ୍ରମଶଃ ଉନ୍ନତି ପଥରେ ଆଗେଇ ଚାଲିଲା । ମୋ ଜେଜେବାପା ବନମାଳୀ ଦାଶ ନିଜକୁ ଜଣେ ସୁଦକ୍ଷ ଛଉ ଓସ୍ତାଦ୍‌ରୂପେ ଗଢ଼ିପାରିଥିଲେ । ଛଉନୃତ୍ୟରେ ସେ ଅତି ନିପୁଣ ଥିଲେ । ଚଳନ୍ତା ହାତୀ ଓ ହାଣ୍ଡି (ମାଟି) ଉପରେ ମଧ୍ୟ ସେ ଛଉନାଚ ପ୍ରଦର୍ଶନ କରି ସମସ୍ତଙ୍କୁ ଚକିତ କରିଦେଇଥିଲେ । ତାଙ୍କର ଏତାଦୃଶ ଉଚ୍ଚ କୋଟିର ନୃତ୍ୟ ପ୍ରଦର୍ଶନରେ ଏବଂ ଓସ୍ତାଦ୍‌ଭାବରେ ନୃତ୍ୟ ଶିକ୍ଷାଦାନରେ ସନ୍ତୁଷ୍ଟ ହୋଇ ମହାରାଜା ତାଙ୍କୁ ବାଙ୍ଗିରିପୋଷୀ ଥାନା ଅନ୍ତର୍ଗତ କେନ୍ଦୁମୁଣ୍ଡି ଗ୍ରାମରେ ଓ ବାରିପଦା ନିକଟସ୍ଥ ବୁଢୀଖମାରୀ (ଯମୁନାଦେଈପୁର) ଶାସନରେ ବ୍ରହ୍ମୋତ୍ତର ଲାଖେରାଜ ଜମି ପୁତ୍ରପୌତ୍ରାଦି କ୍ରମେ ଭୋଗ ଦଖଲ କରିବାପାଇଁ ପ୍ରଦାନ କରିଥିଲେ । ଉକ୍ତ ଜମି ଅଦ୍ୟାବଧି ଆମେ ଭୋଗଦଖଲ କରୁଅଛୁଁ ।

ମୋ ଜେଜେବାପାଙ୍କର ଚାରି ପୁଅ ଥିଲେ । ତା ମଧ୍ୟରୁ ମୋ ବାପା ସ୍ୱର୍ଗତ ଜଗମୋହନ

ଦାଶ ବଡ । ତାଙ୍କ ତଳକୁ ଅନ୍ୟ ତିନି ଜଣ ହେଲେ ଚନ୍ଦ୍ରମୋହନ, ଗୌରମୋହନ ଓ ଶ୍ରୀରାମଚନ୍ଦ୍ର । ବଡକକା ଚନ୍ଦ୍ରମୋହନ ବୁଢାଖମାରୀ ଶାସନରେ ରହୁଥିଲେ ଏବଂ ଅନ୍ୟ ଦୁଇ କକା ବାପାଙ୍କ ସହିତ କେନ୍ଦୁମୁଣ୍ଡିରେ ରହୁଥିଲେ । ମୋ ବାପା ମୁରୁଡା ଗ୍ରାମର ଏକ ସାଧାରଣ ବ୍ରାହ୍ମଣ ପରିବାରରେ ବିବାହ କରିଥିଲେ । ମାଆଙ୍କ ନାମ ଥିଲା ପବନୀ ଦେବୀ । ତାଙ୍କ ଗର୍ଭରୁ ତିନି ପୁଅ ଓ ଦୁଇ ଝିଅ ଜନ୍ମଗ୍ରହଣ କରିଥିଲେ । ତିନି ପୁଅ ମଧ୍ୟରୁ ଶିବକୁମାର ବଡ, ମୁଁ ମଝିଆଁ ଓ ସତ୍ୟନାରାୟଣ ସାନ । ଦୁଇ ଭଉଣୀ ମଧ୍ୟରୁ ସବାସାନ ଭଉଣୀ ବ୍ୟତୀତ ଜଣେ ଭଉଣୀ ଓ ଦୁଇ ଭାଇ ମୋର ଜୀବିତ ଅଛନ୍ତି ।

୧୯୧୯ ମସିହା ଅଗଷ୍ଟ ମାସ ୨୭ ତାରିଖରେ କେନ୍ଦୁମୁଣ୍ଡି ଗ୍ରାମରେ ମୋର ଜନ୍ମ । ମୋ ରାଶି ସିଂହ । କେନ୍ଦୁମୁଣ୍ଡିର ସେଇ ଧୂଳିମାଟି, ତାର ପାଣି ଆଉ ଜଙ୍ଗଲି ପବନରେ ପ୍ରତିପାଳିତ ହେଲା ମୋର ଶୈଶବ । ତାର ଗହଳ ଗଛର ବହଳ ସବୁଜିମା, ଉଚ୍ଛୁଳା ଫସଲରେ ଫାଟି ପଡୁଥିବା ଧାନକ୍ଷେତ ଏବଂ ଭାଇ ବନ୍ଧୁଙ୍କର ଗାଉଁଲି ସ୍ନେହ ମମତାର ଅନାବିଳ ସ୍ପର୍ଶରେ ମୁଖରିତ ହେଲା ମୋର କୈଶୋର । ସେଇ ଶୈଶବ ଓ କୈଶୋରର ଆନନ୍ଦମୟ ଭିତ୍ତିଭୂମିରୁ ଉପରେ ହିଁ ମୋ ଛାତ୍ରଜୀବନର ଶିଳାନ୍ୟାସ ହେଲା ବାପାଙ୍କ ଦ୍ୱାରା ଏବଂ ଆମରି ଘରେ ।

## ଛାତ୍ର ଜୀବନ

ପୂର୍ବରୁ କହିଛି, ଉତ୍କଳମଣି ଗୋପବନ୍ଧୁଙ୍କର ସେଇ ମହାନବାଣୀ ''ମାନବ ଜୀବନ ନୁହଁଇ କେବଳ...''ଥିଲା ମୋ ଜୀବନରେ ପ୍ରେରଣାର ଉତ୍ସ । ତା'ର ଭାବାର୍ଥ ହିଁ ମୋ ସାଧନାର ପ୍ରଧାନ ଅବଲମ୍ବନ । ଜନ୍ମ ଓ ମୃତ୍ୟୁର ଚନ୍ଦ୍ରବଂଧନୀ ମଧ୍ୟରେ ନିତି ଲେଉଟାଏ ମଣିଷର ଜୀବନ । ଅଫେରା ସମୟର ପ୍ରତିକୂଳ ସୁଅରେ ବହୁ ବାଧା ବିଘ୍ନକୁ ଅତିକ୍ରମ କରି ସଂସାର ପଥରେ ଆଗେଇ ଚାଲେ ସେ । ତାର କର୍ମ ପ୍ରବଣତା, ତାର ମାନବିକତା ବର୍ଷ ମାସ ଦିନ ଦଣ୍ଡର ହିସାବ ମାଗେନା । ସ୍ୱଳ୍ପ ଜୀବନ କାଳ ମଧ୍ୟରେ ଯିଏ ଅନ୍ୟର ମଙ୍ଗଳପାଇଁ ଆପଣାକୁ ଉତ୍ସର୍ଗକରି ଉଚିତ୍ କର୍ମକୁ ନିଜର ଧର୍ମ ବୋଲି ଭାବିନିଏ ସେ ହିଁ ସାର୍ଥକ ମଣିଷ । ଏହାଥିଲେ ଗୋପବନ୍ଧୁଙ୍କ ଜୀବନାଦର୍ଶ, ଯାହାକି ମୋତେ ଜଣେ କର୍ମୀଭାବରେ ନିରବଚ୍ଛିନ୍ନ ସାଧନା କରିଯିବାପାଇଁ ପ୍ରତିମୁହୂର୍ତ୍ତରେ ପ୍ରେରଣା ଯୋଗାଇ ଆସିଛି ।

ଗାଁରେ ବାପାଙ୍କ ଦ୍ୱାରା ବିଦ୍ୟାରମ୍ଭ ହୋଇ ମୂଳଦୁଆ ପଡିଥିବା ମୋ ଛାତ୍ର ଜୀବନର ପରିସମାପ୍ତି ହେଲା ବାରିପଦା ହାଇସ୍କୁଲରେ (ବର୍ତ୍ତମାନର ମହାରାଜା କୃଷ୍ଣଚନ୍ଦ୍ର ଉଚ୍ଚ ବିଦ୍ୟାଳୟ) ୧୯୩୮ ମସିହାରେ ଏକାଦଶ ଶ୍ରେଣୀର ଛାତ୍ରଭାବରେ ମାତ୍ର ଉଣେଇଶି ବର୍ଷ ବୟସରେ ।

ଆମ ଗାଁରେ କୌଣସି ପ୍ରାଥମିକ ବିଦ୍ୟାଳୟ ନ ଥିଲା । ଆମ ଗାଁଠାରୁ ଦୁଇମାଇଲ ଦୂର ପାଣ୍ଡଡା ଓ ଚାରିମାଇଲ ଦୂର ରାଜାଲୋକା ଗ୍ରାମରେ ଗୋଟିଏ ଲେଖାଏଁ ଉଚ୍ଚ ପ୍ରାଥମିକ ବିଦ୍ୟାଳୟ ଥିଲା । ଏଣୁ ଗ୍ରାମ ପାଠଶାଳାରେ ମୋର ପ୍ରାରମ୍ଭିକ ଶିକ୍ଷା ସମାପନ ହେଲା । ରାଜାଲୋକ ଉଚ୍ଚ ପ୍ରାଥମିକ ବିଦ୍ୟାଳୟରେ ମୋର ଜଣେ ସମ୍ପର୍କୀୟ ଶିକ୍ଷକତା କରୁଥିବାରୁ ତାଙ୍କ ତତ୍ତ୍ୱାବଧାନରେ ତାଙ୍କ ପାଖରେ ରହି ମୋର ପାଠ ପଢ଼ିବାର ସ୍ଥିର ହେଲା । ଦ୍ୱିତୀୟ ଶ୍ରେଣୀରୁ ଚତୁର୍ଥ ଶ୍ରେଣୀ ପର୍ଯ୍ୟନ୍ତ

ରାଜାଲୋକା ଉଚ୍ଚ ପ୍ରାଥମିକ ବିଦ୍ୟାଳୟରେ ମୋର ପାଠପଢା ଚାଲିଲା । ପଞ୍ଚମ ଶ୍ରେଣୀର ପାଠପଢା ହେଲା ପାଣ୍ଡଡ଼ା ଉଚ୍ଚ ପ୍ରାଥମିକ ବିଦ୍ୟାଳୟରେ । ଷଷ୍ଠ ଓ ସପ୍ତମ ଶ୍ରେଣୀ ଶିକ୍ଷା ଶୀର୍ଷା ମଧ୍ୟ ଇଂରାଜୀ ବିଦ୍ୟାଳୟରେ ସମାପ୍ତ ହେବା ପରେ ସେତେବେଳେ ମୟୂରଭଞ୍ଜର ଏକ ମାତ୍ର ଉଚ୍ଚ ବିଦ୍ୟାଳୟ ''ବାରିପଦା ହାଇସ୍କୁଲ''ରେ ମୋର ନାମ ଲେଖା ହେଲା ।

ସେ ସମୟରେ ଶିକ୍ଷାର ପ୍ରସାର ରାଜଶାସନ ଚାହୁଁନଥିବାରୁ ସମଗ୍ର ମୟୂରଭଞ୍ଜରେ ଅଠରଗୋଟି ଉଚ୍ଚ ପ୍ରାଥମିକ, ପାଞ୍ଚଗୋଟି ମଧ୍ୟ ଇଂରାଜୀ ଓ ଗୋଟିଏ ମାତ୍ର ମାଧ୍ୟମିକ ବିଦ୍ୟାଳୟ ଥିଲା ।

ମାଧ୍ୟମିକ ଶିକ୍ଷା ଲାଭପାଇଁ ୧୯୩୫ ମସିହାରେ ମୁଁ ବାରିପଦା ଆସିଲି । ସହରର ଉପକଣ୍ଠରେ ଥିବା ବୁଢୀଖମାରୀ ଶାସନରେ କକାଙ୍କ ଘରେ ରହି ଅଷ୍ଟମ, ନବମ ଓ ଦଶମ ତିନିବର୍ଷ ପାଠ ପଢିଲି । ପଢାପଢିରେ ସୁବିଧା ଦୃଷ୍ଟିରୁ ଏକାଦଶ ଶ୍ରେଣୀ ବେଳକୁ ବାରିପଦା ହାଇସ୍କୁଲର ''ଫ୍ରେଜାର ହଷ୍ଟେଲ''ରେ ଆସି ରହିଲି । ମାତ୍ର ଦୁର୍ଭାଗ୍ୟକୁ ସ୍କୁଲ ଫାଇନାଲ ପରୀକ୍ଷାପାଇଁ ହେଉଥିବା ନିର୍ବାଚନୀ ପରୀକ୍ଷା ବେଳକୁ ମୋ ଛାତିରେ ବଥ ବାହାରିବାରୁ ମୁଁ ପରୀକ୍ଷା ଦେଇ ପାରିଲି ନାହିଁ । ଏଣୁ ସ୍କୁଲ ଫାଇନାଲ ପରୀକ୍ଷା ଦେବାରୁ ବଞ୍ଚିତ ହେଲି । ବାରିପଦା ଡାକ୍ତରଖାନାରେ ରହି ଏଥିପାଇଁ ଅସ୍ତ୍ରୋପଚାର କରାଇବାକୁ ପଡ଼ିଲା । ପରୀକ୍ଷା ଦେଇ ନ ପାରିବାରୁ ଭୀଷଣ ମନ ଦୁଃଖ ହେଲା । ଏଣୁ ହଷ୍ଟେଲ ଛାଡି ପୁଣି ବୁଢିଖମାରୀ ଗ୍ରାମକୁ ଫେରିଲି, ଏକ ଭଡ଼ାଘର ନେଇ ସାନଭାଇ ସତ୍ୟନାରାୟଣ ସହିତ ରହି ସପ୍ଲିମେଣ୍ଟାରୀ ପରୀକ୍ଷାପାଇଁ ପ୍ରସ୍ତୁତ ହେଲି ।

ସେତେବେଳକୁ ଭାରତୀୟ ଜାତୀୟ ଆନ୍ଦୋଳନର ପ୍ରଭାବ ମୟୂରଭଞ୍ଜରେ ମଧ୍ୟ ଉପଲବ୍ଧି ହେଲାଣି । ରାଜରାଜୁଡ଼ାଙ୍କର ଅନ୍ଧାରୀ ମୂଳକ ଶାସନ ବିରୁଦ୍ଧରେ ଜନସାଧାରଣଙ୍କ ଗୁଞ୍ଜରଣ ଶୁଣାଗଲାଣି । ଏ ସବୁର ପ୍ରଭାବ ମଧ୍ୟ ମୋ ମନ ଉପରେ ପଡୁଥାଏ ଏବଂ ମୋ ଭାବନାକୁ ଆନ୍ଦୋଳିତ କରୁଥାଏ । ପାଠପ୍ରତି ଆଗ୍ରହ କ୍ରମଶଃ କମି ଆସୁଥାଏ ଏବଂ ଇଚ୍ଛା ହେଉଥାଏ ଜାତୀୟ ଆନ୍ଦୋଳନରେ ସାମିଲ ହୋଇ ଜଣେ କର୍ମୀଭାବରେ କିଛି କାମ କରିବାକୁ ।

ଏଣୁ ବୁଢୀଖମାରୀରେ ରହଣିବେଳେ ସେଠାକାର ଯୁବକମାନଙ୍କୁ ନେଇ ''ପଲ୍ଲୀସଖା'' ନାମରେ ଏକ ସେବା ସମିତି ଗଠନ କରି, ରାସ୍ତାଘାଟ ସଫେଇ, ଗ୍ରାମ ସଫେଇ ଆଦି କିଛି କିଛି ସମାଜ ସେବା ମୂଳକ କାର୍ଯ୍ୟ ହାତକୁ ନେଲି । ପ୍ରତି ରବିବାର ଦିନ ସେଠାକାର ଶାସନ ମଣ୍ଡପରେ ସଭାକରି, ସମାଜର ସଂସ୍କାର ଆଣିବାପାଇଁ ସମସ୍ତଙ୍କର ସହଯୋଗ କାମନା କଲି । କିଛିଦିନ ଏହି କାର୍ଯ୍ୟ ଚାଲିବା ପରେ ବ୍ରାହ୍ମଣମାନେ ସେଥିରେ ବାଧାଦେଲେ । କାରଣ ସେମାନେ ରାଜ ଅନୁଗତ ଥିଲେ ଓ ରାଜାଙ୍କଠାରୁ ଦାନ ପାଇଥିବା ''ଲାଖରାଜ'' (ନିଷ୍କରଜମି) ଭୋଗଦଖଲ କରୁଥିଲେ । ରାଜ୍ୟରେ ସଭାସମିତି କରିବା ବେଆଇନ୍ ଥିବା ଯୋଗୁଁ ''ପଲ୍ଲୀସଖା''ର ଏ ପ୍ରକାର ବୈଠକ; ଯଦିଓ ଏହା ରାଜଦ୍ରୋହ ଅପରାଧ ଭଳି କାର୍ଯ୍ୟ ନ କରି କେବଳ ସମାଜ ସଂସ୍କାରମୂଳକ କାର୍ଯ୍ୟ କରୁଥିଲା, ସେମାନେ ତଥାପି ଚଳାଇବାକୁ ଦେଲେ ନାହିଁ । ଫଳରେ ''ପଲ୍ଲୀସଖା''ର କାର୍ଯ୍ୟ ବନ୍ଦ

ହୋଇଗଲା । ରାଜତନ୍ତ୍ର ବିରୁଦ୍ଧରେ ମନ ଆହୁରି ବିପ୍ଳବ କରିଉଠିଲା ।

## ଆନ୍ଦୋଳନର ଅନୁଚିନ୍ତା

୧୯୩୮ ମସିହାରେ ଓଡିଶାର ଢେଙ୍କାନାଳ, ନିଳଗିରି, ରଣପୁର ପ୍ରଭୃତି ଗଡଜାତମାନଙ୍କରେ ରାଜ ଶାସନ ବିରୁଦ୍ଧରେ ମୁଣ୍ଡଟେକୁଥିବା ପ୍ରଜା ଆନ୍ଦୋଳନକୁ ଦବେଇବାପାଇଁ ଗଡଜାତ ଶାସକମାନେ ଇଂରେଜ ସରକାରଙ୍କ ପ୍ରୋତ୍ସାହନରେ ଆନ୍ଦୋଳନକାରୀଙ୍କ ଉପରେ ଅକଥନୀୟ ଅତ୍ୟାଚାର ଚଳେଇ ଥାଆନ୍ତି । ଜାତୀୟ ମୁକ୍ତି ଆନ୍ଦୋଳନକାରୀ କଂଗ୍ରେସ ନେତା ପଣ୍ଡିତ ନେହେରୁ ଓଡ଼ିଶାର ନବକୃଷ୍ଣ ଚୌଧୁରୀ ଓ ହରେକୃଷ୍ଣ ମହତାବ ପ୍ରଭୃତି ଗଡଜାତମାନଙ୍କରେ ହେଉଥିବା ପ୍ରଜା ଆନ୍ଦୋଳନକୁ ନୈତିକ ସାହାଯ୍ୟ ଓ ସମର୍ଥନ ଦେଉଥିଲେ ।

ଓଡ଼ିଶାର ସାରଙ୍ଗଧର ଦାସ ଏକ ବଡ ସରକାରୀ ଚାକିରି ଛାଡି ଏହି ଆନ୍ଦୋଳନରେ ଝାସ ଦେଇଥିଲେ । ମହାତ୍ମାଗାନ୍ଧୀଙ୍କ ଅହିଂସା ନୀତିରେ ଆନ୍ଦୋଳନ ଅଧିକ ବ୍ୟାପକ ଓ ଯୋରଦାର ହେଉଥିଲା ବେଳେ ଓଡିଶାର ରଣପୁର ଭଳି ଏକ ଛୋଟ ଗଡ଼ଜାତରେ ଉତ୍ୟକ୍ତ ଜନତା ପୂର୍ବାଞ୍ଚଳ ଗଡ଼ଜାତମାନଙ୍କର ରାଜନୈତିକ ଏଜେଣ୍ଟ ବେଜେଲଗେଟ୍ ନାମକ ଜଣେ ଉଚ୍ଚପଦସ୍ଥ ଇଂରେଜ ଅଫିସରଙ୍କୁ ପିଟି ପିଟି ମାରିଦେବା ଫଳରେ ସାରା ଭାରତରେ ଏକ ଗୁରୁତର ଜଟିଳ ପରିସ୍ଥିତି ସୃଷ୍ଟି ହେଲା । ପୋଲିସର ଅକଥନୀୟ ଅତ୍ୟାଚାର ଯୋଗୁଁ ରଣପୁରର ଲୋକେ ରାଜ୍ୟ ଛାଡ଼ି ପଳାଇ ଯାଇ ଅନୁଗୋଳରେ ରହୁଥାଆନ୍ତି । ଓଡିଶାର କଂଗ୍ରେସ ନେତୃବର୍ଗ ରାଜ୍ୟଛାଡି ପଳାଇ ଯାଇଥିବା ରଣପୁରବାସୀଙ୍କର ଥଇଥାନପାଇଁ ସାହାଯ୍ୟ କରୁଥାଆନ୍ତି ଏବଂ ଏଥିପାଇଁ ଜନସାଧାରଣଙ୍କୁ ଦାନ ଦେବାପାଇଁ ନିବେଦନ କରୁଥାଆନ୍ତି । ରଣପୁରର ଏହି ଚାଞ୍ଚଲ୍ୟକର ଘଟଣା ତଥା ପଡ଼ୋଶୀ ରାଜ୍ୟ ନୀଳଗିରିଠାରେ ଚାଲିଥିବା ପ୍ରଜାମଣ୍ଡଳ ଆନ୍ଦୋଳନର ପ୍ରଭାବ ମୟୂରଭଞ୍ଜରେ ମଧ ପଡ଼ିଲା । ରଣପୁର ଘଟଣାରେ ମୁଁ ବିଶେଷଭାବେ ମର୍ମାହତ ହୋଇପଡ଼ିଲି । ସେତେବେଳେ ମୁଁ ବାରିପଦା ହାଇସ୍କୁଲର ଏକାଦଶ ଶ୍ରେଣୀର ଛାତ୍ର ଥିଲି ଓ ଫ୍ରେଜାର ହଷ୍ଟେଲରେ ରହୁଥିଲି । ଏ ଘଟଣା ମୋଭଳି ଅନ୍ୟ କେତେକ ହଷ୍ଟେଲ ଛାତ୍ରଙ୍କୁ ମଧ ବିବ୍ରତ କଲା । ଏ ସମ୍ପର୍କରେ ଆମେ ସମସ୍ତେ ପରସ୍ପର ଠାରେ ଆମର ପ୍ରତିକ୍ରିୟା ବ୍ୟକ୍ତ କଲୁଁ ଓ କେତେକ ଛାତ୍ର ମିଶି ଦିନେ ସଂଧ୍ୟା ପୂର୍ବରୁ ବାରିପଦା ନିକଟସ୍ଥ ବାରୁଣୀଘାଟଠାରେ ଏକ ଗୁପ୍ତ ବୈଠକ କରି ସମସ୍ତେ କିଛି କିଛି ଚାନ୍ଦା ଦେଇ ତାହାକୁ ରଣପୁରର ଅସହାୟ ଲୋକଙ୍କ ପାଇଁ ପଠାଇଲୁ । ଏହି କାର୍ଯ୍ୟକୁ ଆମେ ସମସ୍ତେ ଗୁପ୍ତ ରଖିଲୁ ।

ସେଥର ପୂଜାଛୁଟିରେ ହଷ୍ଟେଲରେ ରହୁଥିବା ଏକାଦଶ ଶ୍ରେଣୀର ଛାତ୍ରମାନେ କେହି ଘରକୁ ଗଲୁନାହିଁ । ପଢ଼ାପଢ଼ିପାଇଁ ରହିଗଲି ସିନା କିନ୍ତୁ ପଢ଼ାରେ ମନ ଲାଗୁ ନ ଥାଏ । ସବୁବେଳେ ସେଇ ଗୋଟିଏ ଚିନ୍ତା, କିପରି ଏଇ ଅନ୍ୟାୟ ଓ ଅତ୍ୟାଚାର ବିରୁଦ୍ଧରେ ଲଢିବି ।

ଦିନେ ଶୁଣିବାକୁ ପାଇଲି, ବାଙ୍ଗିରିପୋଷି ଥାନାର ସିମଳାଠାରେ ଥିବା ବିଖ୍ୟାତ ଶିବ ମନ୍ଦିର ନିକଟରେ ଏକ ସାଧାରଣ ସଭାର ଡାକରା ଦିଆଯାଇଛି । ଲଙ୍କାରେ ହରି ଶବ୍ଦ ପରି ମନେହେଲା । ମୋ ନିଜ କାନକୁ ମୁଁ ବିଶ୍ୱାସ କରିପାରିଲି ନାହିଁ । ମନେ ମନେ ସ୍ଥିର କଲି ଯେମିତି ହେଉ ଏ ସଭାରେ

ଯାଇ ଯୋଗଦେବି । ହୃଦୟର ଆବେଗ ଓ ମନର ଅସ୍ଥିରତା ମୋତେ ବ୍ୟସ୍ତ କରିପକାଇଲା । ମୋର ଜଣେ ସହପାଠୀ ହଷ୍ଟେଲ ବନ୍ଧୁ, କ୍ଷୀରୋଦ ଚନ୍ଦ୍ର ମଣ୍ଡଳ ଓ ମୁଁ ଶିମଳା ଗଲୁ । କୁଳିଅଣା ଥାନା ଧଡ଼ାଙ୍ଗରୀ ଗ୍ରାମର ବଂଶୀଧର ବେହେରା ନାମକ ଜଣେ କଂଗ୍ରେସ କର୍ମୀ ଏହି ସାଧାରଣ ସଭା ଡକାଇଥାଆନ୍ତି । ସଭା ସମିତି କରିବା ବେଆଇନ ଥିବା ସମୟରେ ପ୍ରକାଶ୍ୟଭାବରେ ସାଧାରଣ ସଭାର ଡାକରାଦେବା କମ୍ କଥା ନୁହେଁ ।

ସଭାସ୍ଥଳରେ ପହଞ୍ଚି ଯାହା ଦେଖିଲି ତାହା ଏବେବି ମନେପଡିଗଲେ କ୍ରୋଧ ଓ ଉତ୍ତେଜନାରେ ମୋ ରକ୍ତଚାପ ବଢିଯାଏ । ବଂଶୀଧରବାବୁ ଓ ତାଙ୍କର ଜଣେ ସହଯୋଗୀ ବଂଧୁ, ସଭାସ୍ଥଳକୁ ନ ଆସି ଦୂରରେ ପୋଲିସ୍‌କୁ ଡରି ଠିଆ ହୋଇଥିବା କିଛି ଲୋକଙ୍କୁ, ସଭା ସ୍ଥାନକୁ ଆସିବାକୁ ଅନୁରୋଧ କରୁଥାଆନ୍ତି । ବେଆଇନ ଭାବରେ ସଭା କରୁଥିବାରୁ କିଛି ସମୟ ପୂର୍ବରୁ ପୋଲିସ୍ ତାଙ୍କୁ ମାଡ ଦେଇ ତାଙ୍କର ଏ ଅବସ୍ଥା କରିଥିବା କଥାଶୁଣି ମୁଁ ବିବ୍ରତ ହୋଇପଡିଲି ।

ଅନ୍ତର ତଳେ ବିଦ୍ରୋହର ନିଆଁ ଦିକି ଦିକି ହୋଇ ଜଳିବାକୁ ଲାଗିଲା ।

ସଭାସ୍ଥଳକୁ ନ ଆସି ଦୂରରେ ରହି ଘଟଣାକୁ ଅନୁଧ୍ୟାନ କରୁଥିବା ମୁଷ୍ଟିମେୟ କେତେକ ଲୋକ ପୋଲିସ ଭୟରେ ଘରକୁ ଫେରିଗଲେ । ତେଣୁ ବଂଶୀଧର ବାବୁ ସଭା କରିପାରିଲେ ନାହିଁ । ମାତ୍ର ସଭା କରି ନ ପାରିଲେ ସୁଦ୍ଧା ସେଇ ଆହତ ରକ୍ତାକ୍ତ ଅବସ୍ଥାରେ ପୋଲିସର ଏହି ବର୍ବରୋଚିତ ଅମାନୁଷିକ ଅତ୍ୟାଚାରର ତୀବ୍ର ପ୍ରତିବାଦ କରିଗଲେ । ତାଙ୍କର ନିର୍ଭୀକତା ଏବଂ ବୈପ୍ଳବିକ ସାହସିକତା ସେଦିନ ମୋତେ ସ୍ତମ୍ଭୀଭୂତ କରିଦେଲା ।

ସଭା ଦେଖିବାକୁ ଆସିଥିବା ଲୋକେ ଯେ ଯାହା ବାଟରେ ଫେରିଗଲେ । ବଂଶୀଧରବାବୁ ମଧ ତାଙ୍କର ବିରକ୍ତି ଓ କ୍ଷୋଭ ପ୍ରକାଶ କରି ସଭାସ୍ଥଳ ଛାଡ଼ି ଚାଲିଗଲେ ମାତ୍ର ଏ ଘଟଣା ମୋ ପ୍ରତିକ୍ରିୟାଶୀଳ ଯୁବ ମାନସରେ ଏକ ଅଶାନ୍ତ ଝଡ ସୃଷ୍ଟି କରିଗଲା । ରାଜତନ୍ତ୍ରର ଏପରି ଅତ୍ୟାଚାର ବିରୁଦ୍ଧରେ ବିଦ୍ରୋହ କରିବାକୁ ପ୍ରବଳ ଇଚ୍ଛା ହେଉଥିଲା । ଏ ହେଉଛି ୧୯୩୮ ମସିହାର କଥା । ଇତି ପୂର୍ବରୁ ୧୯୧୭ ମସିହାରେ ମୟୂରଭଞ୍ଜରେ ଏକ ପ୍ରଜାମେଳି ହୋଇଥିଲା । ରାଜସରକାର ସେ ପ୍ରଜାମେଳିକୁ ଏପରି ନିର୍ମମଭାବରେ ଦମନ କରିଥିଲେ ଯେ, ଦୀର୍ଘ ବାଇଶି ବର୍ଷ ପରେ ଅର୍ଥାତ୍ ୧୯୩୮ ମସିହାରେ ମଧ ରାଜତନ୍ତ୍ର ବିରୁଦ୍ଧରେ ପାଟି ଫିଟେଇବାକୁ ଲୋକେ ଭୀଷଣ ଭୟ କରୁଥିଲେ । ମାତ୍ର ମୁଁ ଉପାୟ ଖୋଜୁଥିଲି କିପରି ରାଜତନ୍ତ୍ରର ଏଇ ଅତ୍ୟାଚାରକୁ ପ୍ରତିହତ କରିବାପାଇଁ ସଂଗଠିତ ଏକ ଲୋକଶକ୍ତି ସକ୍ରିୟ କରାଯାଇପାରିବ ।

ମୟୂରଭଞ୍ଜର ପଡ଼ୋଶୀ ରାଜ୍ୟ ନୀଳଗିରିର ପ୍ରଜା ଆନ୍ଦୋଳନର ପ୍ରଭାବ ମୟୂରଭଞ୍ଜବାସୀଙ୍କ ଉପରେ ପଡୁଥାଏ । ସେଇ ପ୍ରଭାବକୁ ସମ୍ବଳକରି ମୟୂରଭଞ୍ଜରେ ପୁଣି ଏକ ଶକ୍ତିଶାଳୀ ପ୍ରଜା ଆନ୍ଦୋଳନକୁ ରୂପଦେବାର ଭାବନାରେ ଭାରାକ୍ରାନ୍ତ ହୋଇ ମୁଁ ମୋର ବନ୍ଧୁଙ୍କ ସହିତ ଶିମଳା ସଭାସ୍ଥଳରୁ ଫେରିଲି । ବିଦ୍ରୋହର ଭାବନା ମନ ଭିତରେ ଗୁଞ୍ଜରଣ ସୃଷ୍ଟି କରୁଥାଏ ।

କକାଙ୍କ ଘରେ ବୁଡିଖମାରୀ ଶାସନରେ ରହି ହାଇସ୍କୁଲ ସପ୍ଲିମେଣ୍ଟାରୀ ପରୀକ୍ଷା ଦେବାପାଇଁ

ପୁଣି ପଢ଼ାପଢ଼ି ଆରମ୍ଭ କଲି । ସାନଭାଇ ସତ୍ୟନାରାୟଣ ମଧ ସାଙ୍ଗରେ ଥାଇ ସ୍କୁଲରେ ପଢୁଥାଏ । ପାଠ ପଢ଼ିବା ନାଆଁରେ ବହିକୁ ଅନେଇ ଥାଏଁ ସିନା ହେଲେ ପାଠରେ ମନ ଲାଗୁ ନଥାଏ । ରାଜ ଅତ୍ୟାଚାରର ବିଭିନ୍ନ ଘଟଣାର ପ୍ରତିଛବି ଆଖିରେ ନାଚି ଯାଉଥାଏ ଏବଂ ମୁଁ ଅନ୍ୟମନସ୍କ ହୋଇପଡୁଥାଏ ।

ସେତେବେଳକୁ ବେତନଟୀରୁ ଅଳ୍ପଦୂର ଆୟଯୋଡ଼ା ଗ୍ରାମର ଶରତ ଚନ୍ଦ୍ର ଦାସଙ୍କ ନାମ, ଜଣେ ରାଜତନ୍ତ୍ର ଶାସନର ବିରୋଧିଭାବେ ଶୁଣିବାକୁ ମିଳିଲାଣି । ସେ ସେତେବେଳକୁ ବାରିପଦାରେ ଓକିଲାତି କରୁଥାଆନ୍ତି ଏବଂ ଜଣେ ଓକିଲଭାବରେ ଖ୍ୟାତି ଅର୍ଜନ କରିଥାଆନ୍ତି । ଗାନ୍ଧିଜୀଙ୍କର ପ୍ରଦର୍ଶିତ ଅହିଂସା ମାର୍ଗରେ ରାଜଶାସନର ଅତ୍ୟାଚାର ବିରୁଦ୍ଧରେ ସଂଗ୍ରାମ କରିବାକୁ ସେ ଲୋକଶକ୍ତିକୁ ସଂଗଠିତ କରିବାପାଇଁ ଉଦ୍ୟମ ଚଳାଇଥାଆନ୍ତି । ତାଙ୍କର ଏତାଦୃଶ କାର୍ଯ୍ୟପାଇଁ ସେ ରାଜ ଅତ୍ୟାଚାର ଜର୍ଜରିତ ପ୍ରତ୍ୟେକ ବ୍ୟକ୍ତିଙ୍କଠାରେ ଅତି ପ୍ରିୟ ହୋଇସାରିଥିଲେ । ଏଣୁ ଲୋକେ ତାଙ୍କୁ ଶ୍ରଦ୍ଧାରେ ''ଶରତ ଗାନ୍ଧୀ'' ବୋଲି କହୁଥିଲେ ।

ନୀଳଗିରି ପ୍ରଜାଆନ୍ଦୋଳନରେ ଅନୁପ୍ରାଣିତ ହୋଇ ଶରତବାବୁ, ଅନୁରୂପଭାବରେ ମୟୂରଭଞ୍ଜରେ ପ୍ରଜା ଆନ୍ଦୋଳନ ରୂପ ଦେବାକୁ ଚାହୁଁଥିଲେ । ୧୯୨୧ ମସିହା ବାଲେଶ୍ୱରରେ ହୋଇଥିବା କଂଗ୍ରେସ ଆନ୍ଦୋଳନରେ ମୟୂରଭଞ୍ଜରୁ ପ୍ରଥମ ଲୋକ ହିସାବରେ ଯାଇ ସେଥିରେ ଯୋଗ ଦେଇଥିଲେ ଏବଂ ବାଲେଶ୍ୱର କଂଗ୍ରେସ କମିଟିର ଉପ-ସଭାପତି ହୋଇ ହରେକୃଷ୍ଣ ମହତାବ୍ ଓ ଗୋପବନ୍ଧୁ ଦାସଙ୍କ ନେତୃତ୍ୱରେ କିଛିଦିନ ସାଂଗଠନିକ କାର୍ଯ୍ୟ ମଧ କରିଥିଲେ ।

ବାରିପଦାରେ ''ଜଗନ୍ନାଥ କ୍ଲବ'' ନାମରେ ଏକ ସେବାନୁଷ୍ଠାନ ଗଢ଼ି ବହୁ ଗରୀବ ମେଧାବୀ ଛାତ୍ରଙ୍କୁ ଉଚ୍ଚଶିକ୍ଷା ଲାଭ କରିବାପାଇଁ ଆର୍ଥିକ ସହାୟତା ଯୋଗାଇ ଦେଉଥିଲେ । ଏଥିପାଇଁ ସମ୍ବଳ ସଂଗ୍ରହନିମନ୍ତେ ପ୍ରତ୍ୟେକଙ୍କ ଘରୁ 'ମୁଠି ଚାଉଳ' ଭିକ୍ଷା କରୁଥିଲେ ।

ବୈଶିଙ୍ଗା ଥାନା ଅନ୍ତର୍ଗତ ରାହାଣ୍ଡା ପ୍ରଗଣା (ବର୍ତ୍ତମାନର ଆଗିରିଆ ଗ୍ରା.ପ.) ଅଞ୍ଚଳରେ ପ୍ରଗଣା ଉନ୍ନୟନ ସମିତି ଗଠନ କରି ପ୍ରଥମେ ଏକ ଉଚ୍ଚ ପ୍ରାଥମିକ ସ୍କୁଲ ଆରମ୍ଭ କରିଥିଲେ । ବାରିପଦାରେ ଏକ ଖଦି ଭଣ୍ଡାର ଖୋଲାଇ ସୂତାକଟା ଓ ଖଦଡ଼ ଲୁଗା ପରିଧାନପାଇଁ ପ୍ରଚାର ଭଳି ଗଠନମୂଳକ କାର୍ଯ୍ୟ କରୁଥିଲେ ।

ଏତଦ୍ ବ୍ୟତୀତ ବାରିପଦା ସବ୍‌ଡ଼ିଭିଜନର ସଠିଲୋ, ବଣହାରି, ମାଣତ୍ରୀ, ବାରପଡ଼ା, ରସୁଣିଆ, ଆଖୁଆ, ଦେଉଳିଆ ପ୍ରଭୃତି ପ୍ରଗଣାମାନଙ୍କରେ ଓ କପ୍ତିପଦା ସବ୍‌ଡ଼ିଭିଜନର ଆର୍‌ପଟା, ଚିଲିମା, ଖୁଣ୍ଟା, ଡୁକୁରା, ସାଇଁକୁଳା, କଇଁସାରୀ, କପ୍ତିପଦା ଓ ପୋଡ଼ାଡ଼ିହା ପ୍ରଭୃତି ପ୍ରଗଣାମାନଙ୍କରେ ପ୍ରଗଣା ସମିତିମାନ ଗଠନ କରି ସଂଗଠନ କାର୍ଯ୍ୟମାନ କରୁଥିଲେ । ଏହାସହିତ ଏହି ଅଞ୍ଚଳମାନଙ୍କରେ ପ୍ରାଥମିକ ଶିକ୍ଷା, ସ୍ୱାସ୍ଥ୍ୟଶିକ୍ଷା, ଗ୍ରାମ ସଫେଇ, ରାସ୍ତାଘାଟ ସଫେଇ ଓ ମରାମତି ଆଦି ସେବାମୂଳକ କାର୍ଯ୍ୟକରି ଲୋକପ୍ରିୟତା ବଢ଼ିବାକୁ ରାଜ୍ୟ ସରକାର ଆଦୌ ପସନ୍ଦ କରୁନଥିଲେ ଏବଂ ଏହାକୁ ହ୍ରାସ କରିବାପାଇଁ ତାଙ୍କର ବିରୁଦ୍ଧାଚରଣ କରୁଥିଲେ ।

ପୋଲିସ୍ ଓ ରାଜକର୍ମଚାରୀମାନଙ୍କ ପାଖରୁ ମିଥ୍ୟା ଓ ଉଦ୍ଦେଶ୍ୟମୂଳକ ରିପୋର୍ଟମାନ ତାଙ୍କ ବିରୁଦ୍ଧରେ ଆସି ରାଜାଙ୍କ ପାଖରେ ପହଞ୍ଚୁଥିଲା ମୟୂରଭଞ୍ଜର ସ୍ୱତନ୍ତ୍ର ଆଇନ୍ ଅନୁଯାୟୀ ରାଜଦ୍ରୋହ ଅପରାଧରେ ତାଙ୍କୁ ମୟୂରଭଞ୍ଜରି ରାଜ୍ୟରୁ ଚବିଶ୍ ଘଣ୍ଟାମଧ୍ୟରେ ବହିଷ୍କାର କରିବାପାଇଁ ରାଜାଙ୍କୁ ପ୍ରଶାସନିକ ପରାମର୍ଶ ଦିଆଯାଇଥିଲା । କିନ୍ତୁ ମହାରାଜା ପୂର୍ଣ୍ଣଚନ୍ଦ୍ର ଭଞ୍ଜଦେଓ ଜଣେ ଯୁବକ ହୋଇଥିଲେ ହେଁ ଅତ୍ୟନ୍ତ ବୁଦ୍ଧିମାନ ଥିବାରୁ ଏହାଦ୍ୱାରା ତାଙ୍କ ରାଜ ମର୍ଯ୍ୟାଦାର ହାନୀ ହୋଇପାରେ ଏବଂ ଅଯୋଗ୍ୟତା ପ୍ରକାଶ ପାଇପାରେ ବୋଲି ଭାବି, ସେ ଆଦେଶ ଦେଲେ ନାହିଁ ।

ଶରତ ବାବୁଙ୍କ ଭଳି ଜଣେ ବ୍ୟକ୍ତିତ୍ୱ ସଂପନ୍ନ ଜନପ୍ରିୟ ସଂଗଠକଙ୍କ ସୁଖ୍ୟାତି ଶୁଣି ତାଙ୍କୁ ହିଁ ମନେ ମନେ ମୁଁ ମୋର ଆଦର୍ଶରୂପେ ଗ୍ରହଣ କରିନେଇଥିଲି । ଏଣୁ ପାଠପଢ଼ା ସମୟରେ ମଝିରେ ମଝିରେ ଅନ୍ୟମନସ୍କ ହୋଇ ତାଙ୍କ କଥା ଚିନ୍ତା କରୁଥିଲି ଏବଂ କିପରି ତାଙ୍କସହିତ କେବେ ସାକ୍ଷାତ ହେବ ତାହା ଭାବୁଥିଲି ।

**ଶରତ ଦାସଙ୍କ ସହିତ ସାକ୍ଷାତ**

''ଏ ମନ ଖୋଜୁଥାଇ ଯାହା , କାଳେ ପ୍ରାପତ ହୁଏ ତାହା'' ଭାଗବତର ଏହି ବାଣୀର ସତ୍ୟତା ମୋରି ପାଖରେ ହେଲା । ଅନ୍ଧକୁ ଆଖି ଓ ଅସହାୟକୁ ଭଗବତ ସହାୟ ମିଳିଲା ପରି ମୋତେ ମୋର ଆଦର୍ଶ ପୁରୁଷଙ୍କ ସହିତ ସାକ୍ଷାତ୍ ହେବାର ସୁଯୋଗ ମିଳିଗଲା ।

ସେଦିନ ଥିଲା ୧୯୩୯ ମସିହା ଏପ୍ରିଲ ମାସ ୧୬ତାରିଖ ରବିବାର । ଏହା ମୋପାଇଁ ଅତ୍ୟନ୍ତ ସୌଭାଗ୍ୟ ତଥା ମୋର ଚରମ ସାଫଲ୍ୟ ଓ ପରମ ଆତ୍ମସନ୍ତୋଷର ଦିନ । ତେଣୁ ଏହି ଦିନଟି ମୋପାଇଁ ଚିରସ୍ମରଣୀୟ ହୋଇ ରହିଗଲା ।

ସେହି ଦିନ ବାରିପଦାରେ ହଠାତ୍ ମୋର ସାକ୍ଷାତ୍ ହୁଏ ଏକଦା ମୋର ସହପାଠୀ ବନ୍ଧୁ ଚନ୍ଦ୍ରମୋହନଙ୍କ ସହିତ । ୧୯୬୧ ମସିହାରେ ବିଜୁ ପଟ୍ଟନାୟକଙ୍କ ମନ୍ତ୍ରୀ ମଣ୍ଡଳରେ ସେ ଜଣେ ଉପମନ୍ତ୍ରୀ ହୋଇଥିଲେ । ଶରତ ଦାସଙ୍କର ଏକ ନିବେଦନ ପତ୍ର ଆଣି ସେ ମାର୍କେଟ ପାଖରେ ବିତରଣ କରୁଥିଲେ । ସେଠାରେ ତାଙ୍କସହିତ ମୋର ଦେଖା । ନିବେଦନ ପତ୍ରରୁ ଖଣ୍ଡେ ଆଣି ପଢ଼ିଲି । ତାର ଭାବ ଆଉ ଭାଷା ମୋତେ ଉଦ୍‌ବୁଦ୍ଧ କଲା । ସେଥିରୁ ଶରତ ବାବୁଙ୍କ ଆଭିମୁଖ୍ୟ ଓ ଉଦ୍ଦେଶ୍ୟ ସମ୍ପର୍କରେ ଅନେକ କିଛି ଜାଣି ପାରିଲି । ଅନ୍ତର ଭିତରେ ତାଙ୍କ ପ୍ରତି ମୋର ଶ୍ରଦ୍ଧା ଓ ଭକ୍ତି ଆହୁରି ଘନୀଭୂତ ହେଉଥିଲା । ସେଇ ନିବେଦନ ପତ୍ରକୁ ସେଠାରେ ଠିଆହୋଇ ବାରମ୍ବାର ପଢ଼ିବାକୁ ଲାଗିଲି । ଉକ୍ତ ନିବେଦନ ପତ୍ର ମାଧ୍ୟମରେ ଶରତ ବାବୁ ମୟୂରଭଞ୍ଜର ଶିକ୍ଷିତ ଯୁବକ ମାନଙ୍କୁ ମାତୃଭୂମିର ସେବା କରିବାକୁ ଆଗେଇ ଆସିବାପାଇଁ ଆହ୍ୱାନ ଜଣାଇ ଥାଆନ୍ତି । ତାଙ୍କର ଆହ୍ୱାନ ମୋତେ କେଜାଣି କାହିଁକି ଏତେ ଆକର୍ଷଣ କଲା ଯେ ମୁଁ ସେହି ମୁହୂର୍ତ୍ତରେ ହିଁ ମାତୃଭୂମିର ସେବା କରିବା ପାଇଁ ମନେ ମନେ ସଂକଳ୍ପ କରିନେଲି ଏବଂ ବଂଧୁ ଚନ୍ଦ୍ରମୋହନକୁ ମୋତେ ଶରତ ବାବୁଙ୍କ ପାଖକୁ ନେଇ ତାଙ୍କ ସହିତ ପରିଚୟ କରାଇ ଦେବାକୁ ଅନୁରୋଧ କଲି । ଚନ୍ଦ୍ରମୋହନ ମୋ: କଥାରେ ସମ୍ମତି ପ୍ରକାଶ କରିବାରୁ କାଳବିଳମ୍ବ ନକରି ସେହି ଦିନ ହିଁ ତାଙ୍କ ପାଖକୁ ଯିବାପାଇଁ

ସ୍ଥିର କଲି । ଏହାଦ୍ୱାରା ମୋର ଭବିଷ୍ୟତ କ'ଣ ହେବ ଏବଂ ମୁଁ କେଉଁ ପରିସ୍ଥିତିର ସମ୍ମୁଖୀନ ହେବି କିମ୍ବା ମୋର ବାପା ଓ ବନ୍ଧୁବାନ୍ଧବ କ'ଣ କହିବେ, କିଛି ଚିନ୍ତା କରିପାରିଲି ନାହିଁ ।

ସଙ୍ଗେ ସଙ୍ଗେ ବୁଢ଼ିଖମାରୀସ୍ଥ ବସାଘରକୁ ଆସି ସାନଭାଇ ସତ୍ୟନାରାୟଣକୁ କିଛି ନ ଜଣାଇ କେଇଖଣ୍ଡ ଲୁଗାପଟା ଧରି ଶରତ ବାବୁଙ୍କ ସାକ୍ଷାତପାଇଁ ଚନ୍ଦ୍ରମୋହନଙ୍କ ସହିତ ବାହାରିପଡ଼ିଲି ।

ମୋର ତ ସାଇକେଲ ନଥିଲା ଏବଂ ଚନ୍ଦ୍ରମୋହନଙ୍କର ଯଦିଓ ସାଇକେଲ ଥିଲା, ସେଥିରେ କେରିୟାର ନଥିଲା । ଏଣୁ ଜଣେ ପରିଚିତ ପିଲାଠାରୁ ତା' ସାଇକେଲ କେରିୟାରଟି ମାଗି ଆଣି ଚନ୍ଦ୍ରମୋହନଙ୍କ ସାଇକେଲ୍‌ରେ ଲଗାଇ ଆମେ ଦୁହେଁ ଆମ୍ବଯୋଡ଼ା ବାହାରି ପଡ଼ିଲୁଁ ।

ବାରିପଦାରୁ ବେତନଟୀ, ସେଠାରୁ ପୁଣି ଆମ୍ବଯୋଡ଼ା ! ଘନ ଶାଳ ଜଙ୍ଗଲ ଭିତରେ ଯିବାକୁ ପଡ଼ିବ ଦୀର୍ଘ କୋଡ଼ିଏ ମାଇଲ୍ ବାଟ । ମୋର ବନ୍ଧୁମାନେ ମନା କରୁଥାଆନ୍ତି ଜଙ୍ଗଲ ପଥରେ ସାଇକେଲ୍‌ରେ ଏତେ ବାଟ ଯିବାପାଇଁ । ମାତ୍ର ଆବେଗ ଉଚ୍ଛୁଳା ମନକୁ ମୁଁ ଆଉ ସମ୍ଭାଳିବା ଅବସ୍ଥାରେ ନଥିଲି ।

ଆଦ୍ୟ ବୈଶାଖର ପ୍ରବଳ ଖରାରେ ଧୁ-ଧୁ ଜଳୁଥିବା ସେଇ ଦ୍ୱିପ୍ରହର, ଘଞ୍ଚଶାଳ ବଣ ମଝିରେ ଲମ୍ବି ଯାଇଥିବା ସୁଦୀର୍ଘ ନିର୍ଜନ ଜଙ୍ଗଲ ରାସ୍ତା ଆଉ ମୁହଁ କାନ ପୋଡ଼ି ପକାଉଥିବା ତାତିଲା ପବନର ପ୍ରହାର ମୋପାଇଁ ସେଦିନ ଥିଲା ଏକ ଆହ୍ୱାନ ଏବଂ ସେ ଆହ୍ୱାନର ସମ୍ମୁଖୀନ ହେବାପାଇଁ ମୋ ଭିତରେ ଥିଲା ଅଦମ୍ୟ ସାହାସ, ଅସୀମ ମନୋବଳ ।

କେତେବେଳେ ଚନ୍ଦ୍ରମୋହନ ତ କେତେବେଳେ ମୁଁ ଅଦଳବଦଳ କରି ସାଇକେଲ୍ ଚଳାଉ ଥାଉଁ । ପାଟଳ ରଙ୍ଗର କଅଁଳ ଶାଳ ପତ୍ରରେ ପ୍ରତିଫଳିତ ମଧ୍ୟାହ୍ନ ସୂର୍ଯ୍ୟରଶ୍ମି ଆଖି ଝଲସାଇ ଦେଉଥାଏ । ମଝିରେ ମଝିରେ ଝିଙ୍କାରୀର ଝଙ୍କାର ଶବ୍ଦ ସ୍ତବ୍ଧ ଖରାବେଳର ନିରବତା ଭଙ୍ଗ କରୁଥାଏ । ମୁଁ କିନ୍ତୁ ଭାବନାର କେଉଁ ଅଥଳ ସାଗର ଭିତରେ ବୁଡ଼ିଯାଇଥାଏଁ । ତେଣୁ ଝିଙ୍କାରୀର ସେଇ ଝଙ୍କାର କେତେବେଳେ କେମିତି ମୋତେ ଶୁଣାଯାଉଥାଏ ଏବଂ ତାହା ମୋତେ ମୋ ଯାତ୍ରାର ଶୁଭ ଶଂଖ ଧ୍ୱନି ପରି ମନେ ହେଉଥାଏ । ନାଁ ଅଜଣା ବଣୁଆ ଫୁଲର ମହକ ବି ମୋତେ ମୋ ସଙ୍କଳ୍ପର ପୂଜାଧୂପ ଭଳି ପୁଲକିତ କରୁଥାଏ ।

ସାଇକେଲ ଯେତିକି ଯେତିକି ଆଗକୁ ଗଡ଼ି ଚାଲୁଥାଏ ମନର ଆବେଗ ଓ ହୃଦୟର ସ୍ପନ୍ଦନ ସେତିକି ବଢ଼ି ବଢ଼ି ଚାଲିଥାଏ । ମନଶ୍ଚକ୍ଷୁରେ ନାଚି ଯାଉଥାଏ ଶରତ ବାବୁଙ୍କର ଆମ୍ବଯୋଡ଼ା ଗାଁର ଏକ ସ୍ନିଗ୍ଧ ସୁନ୍ଦର କାଳ୍ପନିକ ପ୍ରତିଛବି । ଯା ଭିତରେ କେତେବେଳେ ସାଇକେଲ ଆମର ଯାଇ ଆମ୍ବଯୋଡ଼ା ଗାଁ ମୁଣ୍ଡ ଧରିଲାଣି ମୋତେ ଜଣା ନଥିଲା । ହଠାତ୍ ଚନ୍ଦ୍ରମୋହନ ବାବୁ କହିଲେ, ଏଇଟା ଆମ୍ବଯୋଡ଼ା ଗାଆଁ । ଏହା ଶୁଣି ମୋ ଭାବନା ସୂତାର ଖିଅ ଛିଡ଼ିଗଲା, ମୁଁ ଚମକି ପଡ଼ିଲି ।

ଶରତ ବାବୁଙ୍କ ଘର ସାମନାରେ ସାଇକେଲରୁ ଓହ୍ଲାଇଲୁ ମୁଁ ଆଉ ଚନ୍ଦ୍ରମୋହନ । ସେତେବେଳର ସେ ଯେଉଁ ଆନନ୍ଦ ଭାଷାରେ ପ୍ରକାଶ କରିହେବ ନାହିଁ । ଖବର ନେଇ ବୁଝିଲୁ ଯେ,

ଶରତ ବାବୁ ମାଣତ୍ରୀ ସଭା କରିବାକୁ ଯାଇଛନ୍ତି ଫେରିବାକୁ ରାତି ହେବ । ଆମ୍ବଯୋଡ଼ାରୁ ମାଣତ୍ରୀ ପ୍ରାୟ ପାଞ୍ଚ ମାଇଲ ବାଟ । ମଝିରେ ପଡ଼ିବ ବଳଙ୍ଗ ନଈ । ବାରିପଦାରୁ ସାଇକେଲ୍‌ରେ ଏତେ ବାଟ ଆସିଥିବା କଥା ଶୁଣି ସେଠାରେ ଥିବା ଲୋକମାନେ ଆମକୁ ବିଶ୍ରାମ ନେବାକୁ ଓ ତାଙ୍କ ଆସିବା ପର୍ଯ୍ୟନ୍ତ ଅପେକ୍ଷା କରିବାକୁ କହିଲେ ।

ମାତ୍ର ମନର ବ୍ୟଗ୍ରତାକୁ ଆଉ ସମ୍ଭାଳିବା ଅବସ୍ଥାରେ ମୁଁ ନଥିଲି । ସିଦ୍ଧାନ୍ତ କଲି ସେଠାରେ ଆଉ କାଳ ବିଳମ୍ବ ନକରି ମାଣତ୍ରୀ ଯିବାକୁ ବନ୍ଧୁ ଚନ୍ଦ୍ରମୋହନଙ୍କୁ ରାଜି କରେଇଲି । ପୁଣିଥରେ ଆମେ ଦୁହେଁ ମାଣତ୍ରୀ ଉଦ୍ଦେଶ୍ୟରେ ସାଇକେଲ ଧରିଲୁ । ରାତି ପ୍ରାୟ ୮ଟା ବେଳକୁ ଆମେ ଯାଇ ମାଣତ୍ରୀରେ ପହଞ୍ଚିଲୁ ।

**ଶରତ ବାବୁଙ୍କ ସହିତ ଭେଟ**

ସେଇ ମାତ୍ର ମାଣତ୍ରୀ ସଭା କାର୍ଯ୍ୟ ସରିଥାଏ । ଶରତ ବାବୁଙ୍କୁ ସଭାରେ ଦିଆଯାଇଥିବା ଫୁଲମାଳଟି ନିଲାମ ଡାକ ହେଉଥାଏ । ସେଇ ଫୁଲମାଳକୁ ହିଡିଂ ସିଂ ନାମକ ଜଣେ ଆଦିବାସୀ, ସର୍ବୋଚ୍ଚ ଆଠଟଙ୍କା ଡାକରେ ନିଲାମ ଧରିଲେ ।

ମାଣତ୍ରୀ ଅଞ୍ଚଳକୁ ମୁଁ ଇତି ପୂର୍ବରୁ କେବେ ଯାଇନଥିଲି, ତେଣୁ ବହୁ ନୂତନ ଲୋକଙ୍କ ସହିତ ସେଠାରେ ମୋର ପ୍ରଥମ ପରିଚୟ । ସେଠାକାର ବିଶିଷ୍ଟ ଲୋକମାନଙ୍କ ମଧ୍ୟରେ ଶ୍ରୀ କୃଷ୍ଣଚନ୍ଦ୍ର ସ୍ୱାଇଁ, ଅଦ୍ୱୈତ ପ୍ରସାଦ ଲାଲ, ଗୌର ମୋହନ ପ୍ରଧାନ, ଗୋପବନ୍ଧୁ ମହାନ୍ତି, ମଦନ ମୋହନ ପଣ୍ଡା, ଅଭିତ୍ରାଣ ପଣ୍ଡା, ଲକ୍ଷ୍ମଣ ଚନ୍ଦ୍ର ପରିଡ଼ା ଧ୍ରୁବଚରଣ ରାଉତ, ରାମଚନ୍ଦ୍ର ପଟ୍ଟନାୟକ ଏବଂ ହରିହର ମହାନ୍ତିଙ୍କ ନାମ ଉଲ୍ଲେଖଯୋଗ୍ୟ ।

ହରିହର ମହାନ୍ତି, ରେଭେନ୍‌ସା କଲେଜରୁ ସଦ୍ୟ ଆଇ.ଏ. ପାଶ୍ କରି ଆସି ଆନ୍ଦୋଳନରେ ଯୋଗ ଦେଇ ଗ୍ରାମ ସଂଗଠନ ଆଦି କାର୍ଯ୍ୟ କରୁଥାନ୍ତି । ଯଦିଓ ଉଚ୍ଚ ଶିକ୍ଷା ଲାଭପାଇଁ ସେ ବହୁ ଆଶାୟୀ ଥିଲେ ତଥାପି ତାଙ୍କ ପରିବାରର ଆର୍ଥିକ ଦୂରବସ୍ଥା ତାଙ୍କ ଉଚ୍ଚଶିକ୍ଷାରେ ଅନ୍ତରାୟ ହୋଇଥିଲା । ପରେ ଅବଶ୍ୟ ସେ ନିଜ ଚେଷ୍ଟାରେ ବି.ଏ. ଏବଂ ଓକିଲାତି ପାଶ୍ କରି ବାରିପଦାରେ ଆଇନ୍ ବ୍ୟବସାୟ କଲେ ।

ନୂଆ ସ୍ଥାନର ନୂଆ ବ୍ୟକ୍ତିଙ୍କ ସହିତ ପରିଚୟ ମୋତେ ସେଦିନ ଅନେକ ଆନନ୍ଦ ଦେଇଥିଲା । ସଭା ଭଙ୍ଗ ହେଲାପରେ ଚନ୍ଦ୍ରମୋହନ ମୋତେ ଶରତ ବାବୁଙ୍କ ସହିତ ପରିଚୟ କରାଇ ଦେଲେ । ଶରତ ବାବୁ ମୋ ବିଷୟରେ ସମସ୍ତ କଥା ଶୁଣି ଏବଂ ମୋର ପରିଚୟ ପାଇ ଅତି ଖୁସି ହୋଇ ମୋତେ ଆଲିଙ୍ଗନ କଲେ । ତାଙ୍କର ସେଇ ଭାବ ଗଦ୍‌ଗଦ୍ ଆନନ୍ଦ ବିହ୍ୱଳ ଆଲିଙ୍ଗନରେ ମୁଁ ଆତ୍ମହରା ହୋଇ ସାଣୁ ପାଲଟି ଗଲି । ସେ ମୋତେ ପଚାରିଲେ "ତୁମେ ଯେଉଁ କାମ କରିବାକୁ ଆସିଛ ତାହା ଆଦୌ ସହଜ ନୁହେଁ । ଦୁଃଖ, ବିପଦକୁ ସାମ୍ନା କରି ତୁମେ ସେପାଇଁ କଷ୍ଟ ସହି ପାରିବତ ?" ତାଙ୍କର ଏହି ପ୍ରଶ୍ନର କି ଶକ୍ତି ଥିଲା କେଜାଣି ମୁଁ ମନ୍ତ୍ରମୁଗ୍ଧ ପରି ସଂଗେ ସଂଗେ ମୋର ସମ୍ମତି ଜଣାଇଲି । ମୋର ଏଇ ଉତ୍ତର ଶୁଣି ସେ ଆଶୀର୍ବାଦ ଜଣାଇଲେ ।

ସେଇ ରାତିରେ ମାଣତ୍ରୀ ସଭାପରେ ଶରତ ବାବୁ ଏବଂ ଆଉ କେତେଜଣ କର୍ମୀଙ୍କ ସହିତ ମୁଁ ଏବଂ ଚନ୍ଦ୍ରମୋହନ ସାଥି ହୋଇ ପୁଣି ଆମ୍ବଯୋଡ଼ା ଆଶ୍ରମକୁ ଫେରିଲୁ । ସେଠାରେ ପହଞ୍ଚି ଆହୁରି କେତେକ କର୍ମୀଙ୍କୁ ଭେଟିଲି । ସେମାନଙ୍କ ମଧ୍ୟରେ ଥିଲେ ମୋର ପୂର୍ବ ପରିଚିତ ବନ୍ଧୁ ଜଗନ୍ନାଥ କମିଳା, ଯେ'କି ମୋର ଗୋଟିଏ ଶ୍ରେଣୀ ଉପରେ ପାଠ ପଢୁଥିଲେ । ସେ ରେଭେନ୍‌ସା କଲେଜରୁ ପଢ଼ା ଛାଡ଼ିଦେଇ ଶରତ ବାବୁଙ୍କ ସହିତ ଯୋଗ ଦେଇଥାନ୍ତି ଏବଂ ପ୍ରଜା ଆନ୍ଦୋଳନ କାର୍ଯ୍ୟ କରୁଥାନ୍ତି । ସେଇପରିଭାବରେ ଅପେରା ପାର୍ଟିର ସଂଗୀତ ଶିକ୍ଷକ ଚାକିରି ଛାଡ଼ି କୈଳାସ ଚନ୍ଦ୍ର ନାଏକ, ଶରତ ବାବୁଙ୍କ ସହିତ ସମ୍ପର୍କ ରଖି ସଭାମାନଙ୍କରେ ଉଦ୍‌ବୋଧନୀ ସଂଗୀତ ଗାନ କରି ଲୋକମାନଙ୍କ ଭିତରେ ଜାଗରଣ ସୃଷ୍ଟି କରୁଥାନ୍ତି । ଅନ୍ୟ ଜଣେ ବିଶିଷ୍ଟ ବ୍ୟକ୍ତି ହେଉଛନ୍ତି ଗଜେନ୍ଦ୍ର ପଟ୍ଟନାୟକ, ସରକାରୀ ଚାକିରି ଛାଡ଼ି ସେ ଏହି ଆନ୍ଦୋଳନରେ ଯୋଗ ଦେଇଥିଲେ । ଶରତ ବାବୁଙ୍କ ତଳକୁ ଏହି ସଂଗଠନରେ ଗଜେନ୍ଦ୍ର ପଟ୍ଟନାୟକଙ୍କର ସ୍ଥାନ ଥିଲା । ସେମାନଙ୍କୁ ଦେଖିଲାପରେ ମୋର ଉତ୍ସାହ ଆହୁରି ବଢ଼ିଗଲା । ଏମାନେ ସମସ୍ତେ ଏ ଦୁନିଆଁରୁ ଜଣଙ୍କ ପରେ ଜଣେ ବିଦାୟ ନେଲେଣି ।

ସେଦିନ ରାତିରେ ଆମ୍ବଯୋଡ଼ାରେ ରହଣି ହେଲା । ମୁଁ ଶରତ ବାବୁଙ୍କ ସଂଗଠନର କର୍ମୀ ହୋଇ ଆମ୍ବଯୋଡ଼ା ଆଶ୍ରମକୁ ମୋର ସାଧନାର ପୀଠ ବୋଲି ଗ୍ରହଣ କଲି ।

ଶରତ ବାବୁ, ବାରିପଦାରେ ରହି ଓକିଲାତି କରୁଥିଲେ ହେଁ ଆମ୍ବଯୋଡ଼ା ଆଶ୍ରମରେ ତାଙ୍କର ଚାରି ପୁଅଙ୍କ ମଧ୍ୟରୁ ଜଣେ ରହୁଥିଲେ ଓ ଜଣେ ଅନ୍ଧୁଣୀ ଝିଅ ମଧ୍ୟ ସେ ଆଶ୍ରମରେ ରହି ଆସୁଥିଲେ । ତାଙ୍କର ଅନ୍ୟ ଝିଅ ଜଣକ ସେତେବେଳକୁ ବିବାହ କରିସାରିଥିଲେ । ଆଶ୍ରମ ସମସ୍ତଙ୍କ ଖାଇବା ପିଇବା କଥା ବୁଝିବା ଏବଂ ତାକୁ ଚଳାଇବାପାଇଁ ଯଶୋଦା ନାମ୍ନୀ ଜଣେ ସ୍ତ୍ରୀ ଲୋକ, ଯେ'କି ଶରତ ବାବୁଙ୍କର ଜଣେ ସମ୍ପର୍କୀୟା ଝିଆରୀ ହେବେ ତାଙ୍କ ଉପରେ ଦାୟିତ୍ୱ ନ୍ୟସ୍ତ କରିଥିଲେ । ତାଙ୍କର ସରଳ, ଅମାୟିକ ବ୍ୟବହାର ଏବଂ ସମସ୍ତଙ୍କ ପ୍ରତି ସ୍ନେହର ପଟାନ୍ତର ନାହିଁ ।

ମୋ ଛାତ୍ର ଜୀବନର ପରିସମାପ୍ତି ଘଟିବା, ସ୍ୱାଧୀନତା ହାସଲପାଇଁ ଶରତବାବୁ ମୟୂରଭଞ୍ଜରେ ଆରମ୍ଭ କରିଥିବା ପ୍ରଜା ଆନ୍ଦୋଳନର କର୍ମୀ ହିସାବରେ ତାଙ୍କର ଶୁଭାଶିଷ ଲାଭ କରିବା ଓ ସଂଗ୍ରାମୀ ଜୀବନର ପ୍ରଥମ ପାହାଚରେ ପାଦ ଦେବା ସେଇ ଗୋଟିଏ ଦିନରେ ହିଁ ସଂଘଟିତ ହୋଇଥିଲା । ଏଣୁ, ଏପ୍ରିଲ୍ ୧୬ ତାରିଖ ୧୯୩୯ ମସିହାର ସେଇ ଶୁଭ ରବିବାର ଆଜୀବନ ମୋପାଇଁ ଏକ ଅଭୁଲା ସ୍ମୃତି ହୋଇ ରହିଥିବ ଏବଂ ପ୍ରତି ପଦପାତରେ ମୋତେ ନୂତନ ପ୍ରେରଣାରେ ଉଦ୍‌ବୁଦ୍ଧ କରୁଥିବ । ମୋର ହାଇସ୍କୁଲ ଶିକ୍ଷା ଏହିପରିଭାବରେ ଅସଂପୂର୍ଣ୍ଣ ରହିଗଲା । ମୁଁ ସ୍କୁଲ ଫାଇନାଲ୍ ପରୀକ୍ଷା ଦେଇପାରିଲି ନାହିଁ ଆଉ ଦେବା ମଧ୍ୟ ଆବଶ୍ୟକ ନଥିଲା । କାରଣ- ଆନ୍ଦୋଳନର ଡାକରାକୁ ଉପେକ୍ଷା କରିବା ମୋ ପକ୍ଷରେ ସମ୍ଭବ ହେଲା ନାହିଁ । ଦେଶ ସେବା କାର୍ଯ୍ୟରେ ନିଜକୁ ଉତ୍ସର୍ଗ କରିବାର ଉଦ୍‌ବେଳନକୁ ଅନ୍ତର ତଳେ ଚାପିରଖି ପରୀକ୍ଷାପାଇଁ ପଢ଼ାପଢ଼ିରେ ମନୋନିବେଶ କରିବାର ଯୌକ୍ତିକତା ମୁଁ ହରାଇ ବସିଥିଲି । ଜଣେ ଯାଦୁକରର କିମିଆ ଭଳି ଶରତବାବୁ ମୋର ସମସ୍ତ ଚିନ୍ତା ଓ ଚେତନାକୁ ଆୟତ୍ତକରି ସାରିଥିଲେ । ତାଙ୍କ ନିର୍ଦ୍ଦେଶ ଏବଂ ତାଙ୍କର ଅଭିପ୍ରାୟ ମୋ ବ୍ୟକ୍ତିତ୍ୱକୁ ଗ୍ରାସ କରିଯାଇଥିଲା । ଏଣୁ ମୁଁ କେବଳ ତାଙ୍କରି ନିର୍ଦ୍ଦେଶକୁ

ଗୁରୁବାକ୍ୟ ମନେ କରି ନିର୍ବିକାରଭାବରେ ପାଳନ କରିବାରେ ଆନନ୍ଦ ଲାଭ କରୁଥିଲି ।

**ମୋ କର୍ମୀ ଜୀବନର ପ୍ରଥମ କାର୍ଯ୍ୟକ୍ରମ**

ତହିଁ ପରଦିନ (ତା୧୭।୪।୧୯୩୯ରିଖ) ସକାଳ ନହେଉଣୁ ନିଦ ଭାଂଗିଗଲା । ପୂର୍ବରାତିର ନିଷତ୍ତି ଅନୁଯାୟୀ ଗଜେନ୍ଦ୍ରବାବୁଙ୍କ ସହିତ ମାଣତ୍ରୀ ପ୍ରଗଣାରେ ହେଉଥିବା ଗ୍ରାମ ସଂଗଠନ ଓ ଶୋଭାଯାତ୍ରାରେ ଯୋଗଦେବାପାଇଁ ଯିବାକୁ ପ୍ରସ୍ତୁତ ହୋଇଗଲି । ଆମସହିତ କୈଳାସବାବୁ ମଧ ଗଲେ ।

ସେଠାରେ ଶ୍ରୀ ଗୌରମୋହନ ପ୍ରଧାନ ନାମକ ଜଣେ ଶିକ୍ଷିତ ଯୁବକଙ୍କ ସହିତ ମୋର ପରିଚୟ ହେଲା । ସେ ମଧ ଏହି ଆନ୍ଦୋଳନର ଜଣେ ନିଷ୍ଠାପର କର୍ମୀ ଥିଲେ । ସେଦିନର ଶୋଭାଯାତ୍ରାରେ ଅଦ୍ୱୈତ ପ୍ରସାଦ ଲାଲ, କୃଷ୍ଣଚନ୍ଦ୍ର ସ୍ୱାଇଁ, ମଦନ ମୋହନ ପଣ୍ଡା, ଗୋପବନ୍ଧୁ ମହାନ୍ତି, ବିଶ୍ୱମ୍ବର ମହାରଣା, ପ୍ରଭୃତି ପ୍ରଜା ଆନ୍ଦୋଳନର ବହୁ କର୍ମୀ ଭାଗନେଇଥିଲେ ।

ସେମାନଙ୍କର ସୁଶୃଙ୍ଖଳିତ କର୍ମ ପଦ୍ଧତି, କ୍ଳାନ୍ତି ବିହୀନ କାର୍ଯ୍ୟଦକ୍ଷତା ଓ ପରସ୍ପର ପ୍ରତି ପରସ୍ପରର ଅନାବିଳ ସ୍ନେହ ବ୍ୟବହାର ମୋତେ ମୁଗ୍ଧ କରିଦେଲା ଏବଂ ଉତ୍ସାହର ସହିତ ମୁଁ ମଧ ସେମାନଙ୍କ ଭଳି ପ୍ରଜା ଆନ୍ଦୋଳନର ସମସ୍ତ କାର୍ଯ୍ୟରେ ନିଜକୁ ନିୟୋଜିତ କରିବାରେ ଲାଗିଲି ।

ଏହା ଭିତରେ ମାତ୍ର କେତୋଟି ମୁହୂର୍ତ୍ତ ଭଳି କାର୍ଯ୍ୟବ୍ୟସ୍ତତା ଭିତରେ ବିତିଗଲା ଦୀର୍ଘ ତିନିମାସ । ଭାରି ଭଲ ଲାଗୁଥାଏ ମୋତେ । କ'ଣ ଯେ ସେ ଆକର୍ଷଣ ତାହା କହିହେବ ନାହିଁ । ନା ମନେପଡୁଥାଏ ଘର କଥା ନା ମନରେ ଥାଏ ପଢ଼ା ଚିନ୍ତା । ମୋତେ ଲାଗୁଥାଏ ସତେ ଯେମିତି ମୁଁ ଏକ ଗୃହତ୍ୟାଗୀ ସନ୍ୟାସୀ, ଘର ନାହିଁ, ପରିବାର ନାହିଁ, ମା,ବାପା, ଭାଇ କେହି ନାହାନ୍ତି । କେତେ ଅଚିହ୍ନା ଲୋକଙ୍କ ସହିତ ଚିହ୍ନା, କେତେ ଅଜଣାଙ୍କ ସହିତ ଆତ୍ମୀୟତା ଦିନ ପରେ ଦିନ ବଢ଼ିଚାଲିଲା । ତାସହିତ ଶରତ ବାବୁଙ୍କ ନିର୍ଦ୍ଦେଶରେ ପ୍ରଜା ଆନ୍ଦୋଳନର ସେତୁବନ୍ଧ ପ୍ରତିଷ୍ଠାପାଇଁ ବାନର ସେନାର ଭୂମିକା ମୋପାଇଁ ଏକ ସଙ୍କଳ୍ପ ବନି ଯାଇଥିଲା । ତେଣୁ ଘରେ କାହାରିକୁ ନଜଣାଇ, ଅଭିଭାବକଙ୍କର ଅନୁମତି ନ ନେଇ ଏବଂ ମୋ ଦାୟିତ୍ୱରେ ରହି ବାରିପଦାରେ ପାଠ ପଢୁଥିବା ସାନଭାଇ ସତ୍ୟନାରାୟଣଙ୍କୁ ଏକୁଟିଆ ଛାଡ଼ିଦେଇ ତିନିମାସ ହେଲା ଆମ୍ବଯୋଡ଼ା ଚାଲିଆସିଥିବାର ଅନୁଶୋଚନାକୁ ମୁଁ କେବେ ମନରେ ସ୍ଥାନ ଦେଇ ନାହିଁ । ଏହା ମୋର ଉଚ୍ଛୃଙ୍ଖଳତା ନା ଅଜ୍ଞତା କ'ଣ ଥିଲା ପଚାରିଲେ ମୁଁ ହୁଏତ ଏବେ ବି ତାର ସଠିକ୍ ଉତ୍ତର ଦେଇ ପାରିବି ନାହିଁ । ସେ ଯାହା ହେଉନା କାହିଁକି, ବିଧାତାର ନିର୍ଦ୍ଦେଶରେ ଇଏ ସବୁ ଘଟିଗଲା ।

ପ୍ରାୟ ତିନି ମାସ ପରେ, ମୋର ବଡ଼ଭାଇ ଶିବ କୁମାର ଦାଶ ହଠାତ୍ ଦିନେ ଆସି ଆମ୍ବଯୋଡ଼ାରେ ଶରତ ବାବୁଙ୍କ ଘରେ ପହଞ୍ଚିଲେ । ମୋତେ ସେଠାରେ ଦେଖି ସେ କାନ୍ଦି ପକାଇଲେ ଓ ମୁଁ ଘର ଛାଡ଼ି ପଳାଇ ଆସିଥିବାରୁ ମୋ ଚିନ୍ତାରେ ମାଆର ସ୍ୱାସ୍ଥ୍ୟ ଅବସ୍ଥା ଅତି ଖରାପ ବୋଲି କହିବାରୁ ମୋତେ ମଧ କାନ୍ଦ ଲାଗିଲା ଏବଂ ମୁଁ କାନ୍ଦି ପକାଇଲି ।

ସେ ମୋତେ ତାଙ୍କ ସାଙ୍ଗରେ ଘରକୁ ଯିବାପାଇଁ କହିଲେ । ମାତ୍ର କର୍ତ୍ତବ୍ୟର ନିଶା ମୋ ମନରେ ଏମିତି ଭାବରେ ବସା ବାନ୍ଧିଥିଲା ଯେ, ମୋ ଉପରେ ଥିବା କେତେକ କାର୍ଯ୍ୟ ନସାରି ମୁଁ ତାଙ୍କ ସହିତ ଯାଇ ପାରିବି ନାହିଁ ବୋଲି କହିଲି ଓ କିଛି ଦିନ ପରେ ଯିବାକୁ ସମ୍ମତି ଦେଲି । ବଡ଼ଭାଇ ମୋ ଅସୁବିଧା କଥା ବୁଝିଗଲେ ଏବଂ ମୋତେ ଯଥାସମ୍ଭବ ଶୀଘ୍ର ଯିବାପାଇଁ କହି ଗାଁକୁ ଫେରିଲେ ।

ଭାଇ ଆମ୍ବଯୋଡ଼ାରୁ ଗାଁକୁ ଫେରିଗଲା ପରେ କେଜାଣି କାହିଁକି ମାଆ କଥା, ତା' ମୁହଁର ଛବି ଆଉ ଘରର ଅନ୍ୟମାନଙ୍କ କଥା ମୋର ବହୁତ ମନେ ପଡ଼ିଲା । ମାଆକୁ ଦେଖିବାକୁ ମନ ଗୁଡ଼େଇ ହେଲା । କିଛିଦିନ ପରେ କାମସାରି ଶରତ ବାବୁଙ୍କର ଅନୁମତି ନେଇ ମୁଁ ଘରକୁ ଆସିଲି । ମୋତେ ଦେଖି ମୋ ମାଆ କୋଟି ନିଧି ପାଇଗଲାପରି ଖୁସି ହୋଇଗଲା । ଆମ ପରିବାରରେ ଆନନ୍ଦ ଖେଳିଗଲା । ପରିବାରର ସମସ୍ତେ ମୋତେ ସବୁଠାରୁ ବେଶି ଭଲ ପାଉଥିଲେ । ଏଣୁ ଆଉ ମୋତେ କୁଆଡ଼େ ଛାଡ଼ିବେ ନାହିଁ ବୋଲି ଏକପ୍ରକାର ସ୍ଥିର କରି ନେଲେ ।

**ବାରଶହ ବଢ଼େଇରେ ଦାୟ ନା ପୁଅରେ ଦାୟ**

ଶରତ ବାବୁଙ୍କ ପାଖରୁ ବିଦାୟ ନେଇ ମାଆକୁ ଦେଖିବାକୁ ଗାଁକୁ ଆସି ଆଠମାସ କାଳ ପାରିବାରିକ ମାୟାମମତାରେ ଏକପ୍ରକାର ବାନ୍ଧି ହୋଇପଡ଼ିଲି । ପରିବାରର ସମସ୍ତଙ୍କର ଇଚ୍ଛା ମୁଁ ଯେପରି ଘର ଛାଡ଼ି ଆଉ ବାହାରକୁ ନଯାଏ । ଏଥିପାଇଁ ମୋ ଉପରେ ସମସ୍ତଙ୍କର ସତର୍କ ଦୃଷ୍ଟି । ଏସବୁ ଭିତରେ ମଝିରେ ମଝିରେ ମନେପଡୁଥାଏ ଶରତ ବାବୁଙ୍କ କଥା ଓ ପ୍ରଜା ଆନ୍ଦୋଳନର ସହଯୋଗୀ କର୍ମୀ ଭାଇମାନଙ୍କ ଆଦର ସମ୍ଭାଷଣ । ଇଚ୍ଛା ହେଉଥାଏ ସେମାନଙ୍କ ସହିତ ପୁଣି ଥରେ ଯାଇ ମିଶି ପାରନ୍ତିକି । କିନ୍ତୁ ଘର ଧନ୍ଦା ଭିତରେ ରହି, ମନ ହେଉଥିଲେ ମଧ୍ୟ ଆମ୍ବଯୋଡ଼ା ଫେରିପାରୁ ନଥାଏଁ । କେମିତି ଏକ ଆସ୍ୱସ୍ତିବୋଧ ଭିତରେ ମୁଁ ଅଣନିଃଶ୍ୱାସି ହୋଇ ପଡୁଥାଏ । ମାଆକୁ ଦେଖିବାପାଇଁ ଅଳ୍ପଦିନପାଇଁ କଥା କରି ଆସି ଏତେଦିନ ଗାଁରେ ରହିଗଲି; ତେଣେ ଶରତ ବାବୁ କ'ଣ ଭାବୁଥିବେ କେଜାଣି ଏଇ ଭାବନା ମୋତେ ବେଳେବେଳେ ଅସ୍ଥିର କରିପକାଉଥାଏ । ପୁଣି କେତେବେଳେ ପାରିବାରିକ ମୋହରେ ଆଚ୍ଛନ୍ନ ହୋଇ ମୁଁ ଏସବୁ ଭୁଲି ଯାଉଥାଏ ।

ମନସହିତ ଏମିତି ଲୁଚକାଳି ଖେଳ ଖେଳୁଥିବା ବେଳେ ହଠାତ୍ ଦିନେ ବଂଧୁ ଜଗନ୍ନାଥ କମିନାଙ୍କ ଠାରୁ ଚିଠିଟିଏ ପାଇଲି । ସେ ଉତ୍କଳୀୟ ଶିଳ୍ପୀ କୁଳର ମଉଡ଼ମଣି ପୃଥିବୀ ପ୍ରସିଦ୍ଧ କୋଣାର୍କ ସୂର୍ଯ୍ୟ ମନ୍ଦିରର ସୁଦକ୍ଷ ବିନ୍ଧାଣୀ ବିଶୁ ମହାରଣାଙ୍କର ତ୍ୟାଗ ଓ ଆଦର୍ଶର ସୂଚନା ଦେଇ ଲେଖିଥିଲେ "ବାରଶହ ବଢ଼େଇରେ ଦାୟ ନା ପୁଅରେ ଦାୟ" । ଅତ୍ୟନ୍ତ ମର୍ମସ୍ପର୍ଶୀ ସେ ଚିଠିର ଭାଷା ଓ ଭାବନା । ତାକୁ ପଢ଼ିସାରିଲା ପରେ ମୁଁ ମନେ ମନେ ଲଜ୍ଜା ଅନୁଭବ କଲି । ଘର ମମତାରେ ବାନ୍ଧିହୋଇ ସଂକଳ୍ପିତ ସାଧନାରୁ ଦୂରେଇ ଯିବାର ଆତ୍ମଗ୍ଳାନୀରେ ମୁଁ ଭାଙ୍ଗି ପଡୁଥିଲି ।

କୁରୁକ୍ଷେତ୍ରରେ ଯୁଦ୍ଧପାଇଁ ପରାଙ୍ମୁଖ ଅର୍ଜୁନଙ୍କୁ ଶ୍ରୀକୃଷ୍ଣଙ୍କର ବାଣୀ ଭଳି ଜଗନ୍ନାଥ କମିନାଙ୍କ ଚିଠି ମୋର ମୋହ ଭଙ୍ଗ କଲା । ମନ ଆଉ ଥୟ ଧରିଲା ନାହିଁକି ଘରେ ରହିବାକୁ ଇଚ୍ଛା ହେଲା ନାହିଁ ।

୧୯୪୦ ମସିହା ଫେବୃଆରୀ ମାସର ଦିନେ ସକାଳୁ ନିଜର ଲୁଗାପଟା ଧରି ପୁଣି କର୍ମକ୍ଷେତ୍ର ଆମ୍ବଯୋଡ଼ାକୁ ବାହାରି ପଡ଼ିଲି । ମୋ ବାହାରିବା ଦେଖି ଘରେ ସମସ୍ତେ କାନ୍ଦିଲେ । ସେମାନଙ୍କ କାନ୍ଦଣା ଦେଖି ମୋତେ ମଧ କାନ୍ଦ ଲାଗିଲା, ମୁଁ ବି କାନ୍ଦିଲି । ମାତ୍ର ଏଥିପାଇଁ ବିଚଳିତ ହେଲି ନାହିଁ କିମ୍ବା ଆମ୍ବଯୋଡ଼ା ଫେରି ଆସିବାର ସିଦ୍ଧାନ୍ତ ବଦଳେଇଲି ନାହିଁ । କର୍ତ୍ତବ୍ୟର ଆହ୍ୱାନ୍, ଶରତ ବାବୁଙ୍କର ଅନାବିଳ ସ୍ନେହର ଆକର୍ଷଣ, ସହକର୍ମୀମାନଙ୍କର ଆଦର ସମ୍ଭାଷଣ ଓ ପରିଶେଷରେ ଜଗନ୍ନାଥ କମିଳାଙ୍କର ଉକ୍ତ ଚିଠିର ଦଂଶନ ମୋତେ ପୁଣି ଥରେ ଘରୁ ଗୋଡ଼ କଢ଼େଇ ଆଣିଲା ।

ଆସି ବାରିପଦାରେ ପହଞ୍ଚିଲି । ସେଦିନ ଥାଏ ମୟୂରଭଞ୍ଜର ପ୍ରିୟ ମହାରାଜା ସ୍ୱର୍ଗତ ଶ୍ରୀରାମଚନ୍ଦ୍ର ଭଞ୍ଜଦେଓଙ୍କର *୬୬*ତମ ଜନ୍ମଦିବସ । ତାଙ୍କ ପ୍ରତି ଶ୍ରଦ୍ଧାଞ୍ଜଳି ଜଣାଇବାପାଇଁ ବାରିପଦା କଚେରୀ ହତାରେ ଥିବା ତାଙ୍କର ମାର୍ବଲ ପ୍ରତିକୃତି ନିକଟରେ ଶରତ ବାବୁଙ୍କ ନେତୃତ୍ୱରେ ଅନେକ ପ୍ରଜା ଆନ୍ଦୋଳନ କର୍ମୀ ଏକତ୍ରିତ ହୋଇଥିଲେ । ଏହା ଦେଖି ମୁଁ ମଧ ସେଠାକୁ ଗଲି, ସେ କାର୍ଯ୍ୟକ୍ରମରେ ନିଜକୁ ସାମିଲ୍ କଲି ଓ ଶରତ ବାବୁଙ୍କୁ ଦେଖାକଲି । ଶରତବାବୁ ଓ ଅନ୍ୟ ବନ୍ଧୁମାନେ ଏତେ ଦିନପରେ ମୋତେ ପୁଣି ଫେରିପାଇ ଆନନ୍ଦିତ ହେଲେ । ତା'ପରେ ସେମାନଙ୍କ ସହିତ ସାଙ୍ଗ ହୋଇ ମୁଁ ଆମ୍ବଯୋଡ଼ାରେ ପହଞ୍ଚିଲି । ଦ୍ୱିତୀୟ ଥର ଆମ୍ବଯୋଡ଼ା ଫେରି ଆସି ମୁଁ ପୂର୍ବପରି ମୋ କାର୍ଯ୍ୟରେ ନିୟୋଜିତ ହେଲି ।

**ବଳିଷ୍ଠ ସଙ୍ଗଠନପାଇଁ ନିର୍ଦ୍ଦିଷ୍ଟ ପଦକ୍ଷେପ**

ଲୋକଶକ୍ତି ହେଉଛି ସବୁ ସଂଗଠନର ମୂଳ ଆଧାର । ଯେଉଁ ସଂଗଠନ ପଛରେ ଯେତେ ଲୋକ ସମର୍ଥନ ଥାଏ ସେ ସଂଗଠନ ସେତେ ଲୋକପ୍ରିୟ ଓ ବଳିଷ୍ଠ ହୁଏ । ଶରତ ବାବୁ ଏହା ବେଶ୍ ଉପଲବ୍ଧି କରିଥିଲେ । ତେଣୁ ପ୍ରଜା ଆନ୍ଦୋଳନର ଦକ୍ଷତା ଓ ଲୋକପ୍ରିୟତା ବଢ଼ାଇବାପାଇଁ ସେ ଗ୍ରାମ ସଂଗଠନ ଉପରେ ବିଶେଷ ଗୁରୁତ୍ୱ ଦେଉଥିଲେ ।

ସେଇଥିପାଇଁ ବିଭିନ୍ନ ପ୍ରଗଣାରେ ପ୍ରଗଣା ସମିତିମାନ ଗଠନ କରାଯାଇ ଗ୍ରାମ ସଂଗଠନ କାର୍ଯ୍ୟ ଆରମ୍ଭ ହୋଇଥାଏ । ମୁଁ ମଧ ଏହି ସମସ୍ତ ପ୍ରଗଣାମାନଙ୍କୁ ଯାଇ ବିଭିନ୍ନ ଉନ୍ନୟନ କାର୍ଯ୍ୟରେ ଯୋଗ ଦେଉଥାଏ ।

ରାଜ୍ୟର ନ୍ୟସ୍ତ ସ୍ୱାର୍ଥ ଲୋକେ ବିଶେଷକରି ସରଦାର, ପ୍ରଧାନ ଓ ଉଚ୍ଚପଦସ୍ଥ ରାଜ କର୍ମଚାରୀମାନେ ଏହି ପ୍ରଜା ଆନ୍ଦୋଳନକୁ ବିରୋଧ କରୁଥିବାରୁ ତାର ପ୍ରତ୍ୟେକ ଜନହିତକର କାର୍ଯ୍ୟକୁ ମଧ ସେମାନେ ପସନ୍ଦ କରୁନଥିଲେ ଓ କେତେକ କ୍ଷେତ୍ରରେ ଏଥିରେ ପ୍ରବଳ ବାଧା ସୃଷ୍ଟି କରୁଥିଲେ । ଲୋକଙ୍କୁ ଭୟଭୀତ କରିବା ପାଇଁ ଉଦ୍ଦେଶ୍ୟମୂଳକ ଦମନଲୀଳାର ଅବତାରଣା କରୁଥିଲେ । ପ୍ରଜା ଆନ୍ଦୋଳନର ବିଭିନ୍ନ କର୍ମୀ ଓ ସମର୍ଥକ ମାନଙ୍କ ନାମରେ ମୋକଦ୍ଦମା କରିବାପାଇଁ ମଧ ଛାଡୁନଥିଲେ । କିନ୍ତୁ ପ୍ରଜା ଆନ୍ଦୋଳନ କର୍ମୀମାନଙ୍କର ନିର୍ଭୀକତା ଓ ନିଷ୍ଠାପରତା, ଆଗରେ ରାଜକର୍ମଚାରୀମାନଙ୍କର ମନୋବଳ ଓ ସାହସ ବଢ଼ାଇବାପାଇଁ ଏବଂ ସାଧାରଣ ପ୍ରଜାଙ୍କର ଭୟ ଭାଙ୍ଗିବାପାଇଁ ଏହା ବିଶେଷ ସହାୟକ ହୋଇଗଲା ।

ମିଥ୍ୟା ମୋକଦ୍ଦମା କରି ପୋଲିସ୍ କିପରି ପ୍ରଜା ଆନ୍ଦୋଳନ କର୍ମୀମାନଙ୍କୁ ହଇରାଣ କରୁଥିଲା ତାର ଏକ ଘଟଣା ଏଠାରେ ବର୍ଣ୍ଣନା କରିବା ଉଚିତ୍ ମନେ କରୁଛି ।

ଥରେ ଜଗନ୍ନାଥ କମିଳା, ମୁଁ ଏବଂ ଅନ୍ୟ କେତେକ କର୍ମୀ ଶିମିଳାର ଶିବରାତ୍ରି ମେଳାକୁ ଆମ ସଂଗଠନ ଦ୍ୱାରା ପ୍ରକାଶିତ କିଛି ଦେଶାତ୍ମବୋଧକ ଗୀତ ବହି ବିକ୍ରି କରିବାକୁ ଯାଇଥାଉ । ଦୁଇଟି ଦଳରେ ଭାଗ ହୋଇ ଆମେ ଗୀତ ଗାଇ ମେଳାରେ ବହି ବିକ୍ରି କରୁଥିବା ସମୟରେ ପୋଲିସ୍‌ର ଷଡ଼ଯନ୍ତ୍ରମୂଳକ ମିଥ୍ୟା ମୋକଦ୍ଦମାର ଶିକାର ହେଲୁଁ । ବାଙ୍ଗିରୀପୋଷୀ ଥାନା ଅଫିସରଙ୍କ ଶିଖାଣିରେ ଏକ ଅସାମାଜିକ ସ୍ତ୍ରୀ ଲୋକ, ତା ପ୍ରତି ଅସଦାଚରଣ କରିଥିବାର ଏକ ମିଥ୍ୟା ଅଭିଯୋଗ କଲା ଓ ଜଗନ୍ନାଥବାବୁଙ୍କୁ ଏଥିପାଇଁ ଦାୟୀ କଲା । ଫଳରେ ସେହି ମେଳାରେ ପୋଲିସ୍ ତାଙ୍କୁ ଧରି ନିସ୍ତୁକ ମାଡ଼ ଦେଲା ଓ ତାଙ୍କ ନାମରେ ମିଥ୍ୟା ମୋକଦ୍ଦମା ରୁଜୁ କଲା । ବାଙ୍ଗିରୀପୋଷୀ ଥାନାର ତତ୍‌କାଳୀନ ଥାନା ଅଫିସର ଏ ପ୍ରକାର ମିଥ୍ୟା ମୋକଦ୍ଦମା ସୃଷ୍ଟି କରିବାରେ ମୟୂରଭଂଜରେ ଖୁବ୍ ଧୁରନ୍ଧର ଥିଲେ । ଦୁଇବର୍ଷ ପୂର୍ବେ ୧୯୩୮ ମସିହାରେ ବଂଶୀଧର ବାବୁ ଶିମିଳା ସଭାକୁ ମଧ୍ୟ ଏହି ଥାନାର ଥାନା ଅଫିସର ଭଣ୍ଡୁର କରିଥିଲେ । ମୋକଦ୍ଦମା ଚାଲିଲା । ଅବଶ୍ୟ ପରେ ଜଗନ୍ନାଥ ବାବୁ ନିର୍ଦ୍ଦୋଷରେ ଏ ମୋକଦ୍ଦମାରୁ ଖଲାସ୍ ହେଲେ । ମହାରାଜାଙ୍କୁ ସନ୍ତୁଷ୍ଟ କରିବାପାଇଁ ସେ ସମୟରେ ପ୍ରଶାସନିକ ଅଧିକାରୀମାନେ କ୍ଷମତାର ଅପବ୍ୟବହାର କରୁଥିଲେ ମଧ ବିଚାର ବିଭାଗ ଅତ୍ୟନ୍ତ ନିରପେକ୍ଷ ଏବଂ ନିର୍ମଳ ଥିଲା । ସ୍ୱର୍ଗତ ମହାରାଜା ଶ୍ରୀ ରାମଚନ୍ଦ୍ର ଭଂଜଦେଓ ନିରପେକ୍ଷ ବିଚାର ବ୍ୟବସ୍ଥାରେ ଯେଉଁ ଉଚ୍ଚ ଆଦର୍ଶ ପରମ୍ପରା ସୃଷ୍ଟି କରିଯାଇଥିଲେ ତାହା ପୂର୍ବଭଳି ଅପରିବର୍ତ୍ତିତ ରହିଥିଲା । ସେଥିପାଇଁ ଜଗନ୍ନାଥ ବାବୁଙ୍କ ବିରୁଦ୍ଧରେ ପୋଲିସ୍ କରିଥିବା ମିଥ୍ୟା ମୋକଦ୍ଦମାରୁ ସେ ସହଜରେ ଖଲାସ୍ ହୋଇପାରିଲେ । କେବଳ ମୟୂରଭଂଜକୁ ଛାଡ଼ିଦେଲେ ଓଡ଼ିଶା କାହିଁକି ସାରା ଭାରତବର୍ଷର ଅନ୍ୟାନ୍ୟ ଗଡ଼ଜାତ ଗୁଡ଼ିକରେ ବିଚାର କ୍ଷେତ୍ରରେ ଏ ପ୍ରକାର ନିରପେକ୍ଷତା ପ୍ରାୟ ନଥିଲା ।

## ''ମୟୂରଭଞ୍ଜ ପ୍ରଜା ଆନ୍ଦୋଳନ''ର ପ୍ରଥମ ଅଧିବେଶନ (ତେନ୍ତଳ ଅଧିବେଶନ)

୧୯୪୧ ମସିହା ବେଳକୁ ମୟୂରଭଞ୍ଜର ସଦର (ବାରିପଦା), କପ୍ତିପଦା (ଉଦଳା) ଓ ପାଞ୍ଚପୀଢ଼ (କରଞ୍ଜିଆ) ସବ୍‌ଡ଼ିଭିଜନ୍‌ରେ ପ୍ରଗଣା ସମିତିଦ୍ୱାରା ପରିଚାଳିତ ଗ୍ରାମ ସଂଗଠନ ଜରିଆରେ ପ୍ରଜା ଆନ୍ଦୋଳନର ପ୍ରସାର ଓ ଲୋକପ୍ରିୟତା ବୃଦ୍ଧି ପାଇବାରେ ଲାଗିଥାଏ । ତା' ସହିତ ରାଜକର୍ମଚାରୀମାନଙ୍କ ଅନ୍ୟାୟ, ଅତ୍ୟାଚାର ବିରୁଦ୍ଧରେ ଏବଂ ହାଟଗୁଡ଼ିକର ଅଧିକ ମାହାସୁଲ ଆଦାୟର ପ୍ରତିବାଦ ସ୍ୱରୂପ ୧୯୧୭ ମସିହା ପ୍ରଜାମେଳୀ ଦମନର ଭୟକୁ ଭାଙ୍ଗି ଲୋକଙ୍କ ମନରେ ସାହାସ ସୃଷ୍ଟି କରାଯାଉଥିଲା । ଏହା ବ୍ୟତୀତ ଲୋକମାନଙ୍କ ଦ୍ୱାରା ଗ୍ରାମର ରାସ୍ତା ପରିଷ୍କାର ଓ ମରାମତି, ସାହୁକାର ବା ମହାଜନ କବଳରୁ ରକ୍ଷାପାଇଁ ଧାନଗୋଲା ସୃଷ୍ଟି ଓ ସର୍ବୋପରି ଆଦିବାସୀମାନଙ୍କ ନିଶା ବର୍ଜନ ପ୍ରଭୃତି ଗଠନମୂଳକ କାର୍ଯ୍ୟ ଲୋକମାନଙ୍କୁ ପ୍ରଜା ଆନ୍ଦୋଳନ ପ୍ରତି ଆକର୍ଷଣ କରୁଥିଲା । ଶାସନ କ୍ଷେତ୍ରରେ ପ୍ରତ୍ୟେକଙ୍କର ଯେ କିଛି ଅଧିକାର ଅଛି ଏ ବିଷୟରେ ମଧ

ସେମାନେ କ୍ରମଶଃ ସଚେତନ ହେଉଥିଲେ । ମାତ୍ର ଦୁଇବର୍ଷ ପୂର୍ବେ ଆରମ୍ଭ କରାଯାଇଥିବା ଏହି ପ୍ରଜା ଆନ୍ଦୋଳନ ଲୋକମାନଙ୍କ ମନରେ ଜାତୀୟତା ଓ ସଚେତନା ସୃଷ୍ଟି କରିବା ସଙ୍ଗେ ସଙ୍ଗେ ଶକ୍ତିଶାଳୀ ହେବାକୁ ଲାଗିଲା । ପ୍ରଜା ଆନ୍ଦୋଳନକୁ ଆହୁରି ବ୍ୟାପକ କରିବାପାଇଁ ଓ ରାଜ୍ୟର ସମସ୍ତ କର୍ମୀମାନଙ୍କ ମଧ୍ୟରେ ସଂପର୍କ ସ୍ଥାପନପାଇଁ ଏକ ଅଧିବେଶନ କରାଯିବାର ଚିନ୍ତା କରି ଏକ ବୈଠକ ଅନୁଷ୍ଠିତ ହେଲା । କଂଗ୍ରେସ୍ ଅଧିବେଶନ ଭଳି ପ୍ରଜା ଆନ୍ଦୋଳନର ଏକ ଅଧିବେଶନ ସେହି ବର୍ଷ 'ମେ' ମାସରେ ବେତନଟୀରୁ ମାଣତ୍ରୀ ଯାଇଥିବା ରାସ୍ତାର ପୂର୍ବପଟେ ବଡ଼ସାହି ଥାନା ଅନ୍ତର୍ଗତ ତେନ୍ତଳ ଗ୍ରାମରେ ହେବାର ଉକ୍ତ ବୈଠକରେ ସ୍ଥିର ହେଲା । କୃଷିଜାତ ଦ୍ରବ୍ୟ ଓ ହସ୍ତ ଶିଳ୍ପର ଏକ ପ୍ରଦର୍ଶନୀ ସହିତ ଏହି ଅଧିବେଶନ ତିନିଦିନ ଧରି ଚାଲିବାର ମଧ୍ୟ ସ୍ଥିର ହୋଇ ଏକ ଅଭ୍ୟର୍ଥନା କମିଟି ଗଠିତ ହେଲା । ଉକ୍ତ କମିଟିରେ ରାମଚନ୍ଦ୍ର ପଟ୍ଟନାୟକ ସଭାପତି, ଧ୍ରୁବଚରଣ ରାଉତ ସାଧାରଣ ସଂପାଦକ, ବିଶ୍ୱମ୍ଭର ମହାରଣା ଓ କେଶବ ଚନ୍ଦ୍ର ଜେନା ଯୁଗ୍ମ ସଂପାଦକ ଏବଂ ମୁଁ ଅଫିସ୍ ସଂପାଦକ ଭାବେ ରହିଲୁ । କୃଷ୍ଣଚନ୍ଦ୍ର ସ୍ୱାଇଁ, ଲକ୍ଷ୍ମଣ ପରିଡ଼ା, ଗୌରମୋହନ ପ୍ରଧାନ, ଅଦ୍ୱୈତ ଲାଲ୍, ଆର୍ତ୍ତତ୍ରାଣ ପଣ୍ଡା ପ୍ରଭୃତି ସଭ୍ୟ ରହିଲେ ।

ପ୍ରଥମକରି ଏକ ରାଜନୈତିକ ସଂସ୍ଥା ତରଫରୁ ଅଧିବେଶନ ଅନୁଷ୍ଠିତ ହେବା ମୟୂରଭଞ୍ଜର ରାଜନୈତିକ ଇତିହାସରେ ଏକ ଅଭିନବ ଘଟଣା । ଏହି ଅଧିବେଶନରେ ମୟୂରଭଞ୍ଜ ବାହାରୁ ଯେଉଁ ବିଶିଷ୍ଟ ବ୍ୟକ୍ତିମାନେ ଯୋଗ ଦେଇଥିଲେ ସେମାନଙ୍କ ମଧ୍ୟରେ ସ୍ୱର୍ଗତ ସାରଙ୍ଗଧର ଦାସ ଅନ୍ୟତମ । ସେ ଜଣେ ବିଶିଷ୍ଟ କଂଗ୍ରେସ ବ୍ୟକ୍ତିଭାବରେ ଜାତୀୟ ସ୍ତରରେ ପରିଚିତ ଥିଲେ । କଂଗ୍ରେସ ତରଫରୁ ଯେଉଁ ଗଡ଼ଜାତ ଅନୁଷ୍ଠାନ ଗଠନ କରାଯାଇଥିଲା ସେଥିଲେ ତାର ଉପ-ସଭାପତି । ସ୍ୱର୍ଗତ ନେହେରୁ ଥିଲେ ସଭାପତି । ସ୍ୱର୍ଗତ ସାରଙ୍ଗଧର ଦାସଙ୍କୁ ଲୋକେ ଶ୍ରଦ୍ଧାରେ ''ଗଡ଼ଜାତ ଗାନ୍ଧୀ'' ବୋଲି କହୁଥିଲେ । ସେ ଜଣେ ଉଚ୍ଚ ଶିକ୍ଷିତ ବ୍ୟକ୍ତି ଥିଲେ । ଆମେରିକା ଓ ଜାପାନରୁ ଶିକ୍ଷାଲାଭ କରିଥିଲେ । ଢେଙ୍କାନାଳରେ ଏକ ଚିନିକଳ ବସାଇବାପାଇଁ ଚାହିଁଥିଲେ ମାତ୍ର ରାଜା ତାଙ୍କୁ ଅନୁମତି ଦେଲେ ନାହିଁ । ପରେ ସେ କଂଗ୍ରେସ୍‌ରେ ଯୋଗ ଦେଇ ସ୍ୱାଧୀନତା ସଂଗ୍ରାମରେ ଝାସ ଦେଲେ । ସ୍ୱାଧୀନତା ପରେ ସେ କଂଗ୍ରେସ ତରଫରୁ ପାର୍ଲିଆମେଣ୍ଟକୁ ନିର୍ବାଚିତ ହୋଇଥିଲେ । ମାତ୍ର କଂଗ୍ରେସ କାର୍ଯ୍ୟରେ ଅସନ୍ତୋଷ ପ୍ରକାଶ କରି ପରେ ସେ ପ୍ରଜା ସମାଜବାଦୀ ଦଳରେ ଯୋଗ ଦେଇଥିଲେ ।

ଜାତୀୟ ସ୍ତରର କଂଗ୍ରେସ ନେତା ସାରଙ୍ଗଧର ଦାସଙ୍କର ମୁଖ୍ୟ ଅତିଥିଭାବେ ଯୋଗଦାନ ଓ ତିନିଦିନଧରି ୨୪/୨୫ହଜାର ଲୋକଙ୍କର ସମାବେଶଦ୍ୱାରା ତେନ୍ତଳ ଅଧିବେଶନ ଆଶାତୀତ ସଫଳତା ଲାଭକରି ପାରିଥିଲା ।

ଅଧିବେଶନଦ୍ୱାରା କର୍ମୀ ଓ ସାଧାରଣ ଲୋକଙ୍କ ସାହସ ଓ ଆତ୍ମଶକ୍ତି ଏପରିଭାବରେ ବୃଦ୍ଧି ପାଇଲା ଯେ ତାହା ପରବର୍ତ୍ତୀ କାଳରେ ଦରବାର ପ୍ରଶାସନକୁ ବିଚଳିତ କରିପକାଇଲା । ସାରଙ୍ଗଧର ଦାସ, ଅଧିବେଶନରେ ଶତକଡ଼ା ଅଶୀଭାଗ ଦରିଦ୍ର, ଅଶିକ୍ଷିତ ଓ ନିଷ୍ପେସିତ ଆଦିବାସୀଙ୍କ ଯୋଗଦାନ ଦେଖି ଓ ନିଶା ନିବାରଣ କ୍ଷେତ୍ରରେ ସେମାନଙ୍କର ଆନ୍ତରିକ ସହଯୋଗ ରହିଥିବା କଥା ଜାଣି ଅତିଶୟ ମୁଗ୍ଧ ହୋଇଥିଲେ । ସେ ଏଠାରୁ ଯାଇ ପଣ୍ଡିତ ନେହେରୁଙ୍କୁ ଏ ବିଷୟ ଜଣାଇବାରୁ ସେ

ଅତି ଆନନ୍ଦରେ ଶରତ ବାବୁଙ୍କ ପାଖକୁ ଏକ ପ୍ରଶଂସା ପତ୍ର ପଠାଇଥିଲେ । ତାଙ୍କର ଏହି ପତ୍ର କର୍ମୀମାନଙ୍କ ମଧରେ ଉତ୍ସାହ ଓ ଉଦ୍ଦୀପନା ସୃଷ୍ଟି କରିଥିଲା । ଫଳରେ ପ୍ରଜା ଆନ୍ଦୋଳନ ମୟୂରଭଞ୍ଜରେ ଆହୁରି ଅଧିକ ବ୍ୟାପକ ଓ ସକ୍ରିୟ ଭାବେ ଆଗେଇ ଚାଲିଲା ।

## ସେବାଦଳ ଟ୍ରେନିଂ କ୍ୟାମ୍ପ

ତେନ୍ତଳ ଅଧିବେଶନରେ ଆଶାତୀତ ଜନ ସମାଗମ ହେତୁ ଶୃଙ୍ଖଳାର ସହିତ ସବୁ କାର୍ଯ୍ୟ ସମାପନରେ ଅସୁବିଧା ଘଟିଥିଲା । ଭବିଷ୍ୟତରେ ଏଭଳି ଅସୁବିଧା ଆଉ ସୃଷ୍ଟି ନ ହେବାପାଇଁ ସମସ୍ତେ ଏକ ଶୃଙ୍ଖଳିତ ସ୍ୱେଚ୍ଛାସେବକ ବାହିନୀର ଆବଶ୍ୟକତା ଉପଲବ୍ଧି କରିଥିଲେ । ସାରଙ୍ଗଧର ଦାସ କଟକ ଫେରିଯାଇ ଓଡ଼ିଶା କଂଗ୍ରେସ କର୍ମକର୍ତ୍ତାଙ୍କ ସହିତ ଆଲୋଚନା କରି ଆମ କର୍ମୀମାନଙ୍କୁ ସ୍ୱେଚ୍ଛାସେବକ ଟ୍ରେନିଂ ଦେବାପାଇଁ ଶ୍ରୀ ବୈକୁଣ୍ଠ ନାଥ ମହାନ୍ତି ନାମକ ଜଣେ ତାଲିମପ୍ରାପ୍ତ ବ୍ୟକ୍ତିଙ୍କୁ ଆମ୍ବଯୋଡ଼ା ପଠାଇଥିଲେ । ଷାଠିଏ ଜଣ ବଛା ବଛା କର୍ମୀଙ୍କୁ ନେଇ ଏକ ମାସ ଧରି ଆମ୍ବଯୋଡ଼ା ଆଶ୍ରମରେ ଉକ୍ତ ଟ୍ରେନିଂ କ୍ୟାମ୍ପ ଚାଲିଥିଲା । ଉକ୍ତ କ୍ୟାମ୍ପ ପାଇଁ ଜଗନ୍ନାଥ କମିଳା ସଂପାଦକ, କୈଳାସ ଚନ୍ଦ୍ର ନାଏକ ଖାଦ୍ୟ ବିଭାଗ ଓ ମୁଁ ଡିଉଟିମାଷ୍ଟର ଦାୟିତ୍ୱରେ ରହିଥିଲୁ । ଟ୍ରେନିଂ ସମୟରେ ସ୍ୱେଚ୍ଛାସେବକମାନେ ଆଖପାଖ ଗାଁଗୁଡ଼ିକୁ ଯାଇ ରାସ୍ତା ପରିଷ୍କାର, ନୂତନ ରାସ୍ତା ନିର୍ମାଣ ଓ ପୋଖରୀ ପରିଷ୍କାର ପ୍ରଭୃତି କାର୍ଯ୍ୟ କରି ଲୋକମାନଙ୍କୁ ସମାଜ ସେବାପାଇଁ ଉତ୍ସାହିତ କରିଥିଲେ । ସବୁଠାରେ ଲୋକେ ସେମାନଙ୍କୁ ଅତି ଆଦରରେ ସ୍ୱାଗତ ସମ୍ବର୍ଦ୍ଧନା ଜଣାଉଥିଲେ । ଏହାଫଳରେ ପ୍ରଜା ଆନ୍ଦୋଳନ ଦିନକୁ ଦିନ ଅଧିକ ଲୋକଙ୍କର ଦୃଷ୍ଟି ଆକର୍ଷଣ କଲା ଓ ଶ୍ରଦ୍ଧାଭାଜନ ହୋଇପାରିଲା । ଏଣୁ ଅଧିକ ଲୋକ ଏହାର ସକ୍ରିୟ କର୍ମୀ ହେବାକୁ ଲାଗିଲେ ।

## ବନ୍ୟା, ରିଲିଫ୍ କାର୍ଯ୍ୟ ଓ ନିଶ୍ଚିତ ମୃତ୍ୟୁରୁ ରକ୍ଷା

ଟ୍ରେନିଂ କ୍ୟାମ୍ପ ସରିବାର ଅଳ୍ପ ଦିନ ଥାଏ । ହଠାତ୍ ବୁଢ଼ାବଳଙ୍ଗ ନଦୀରେ ପ୍ରବଳ ବନ୍ୟା ମାଡ଼ି ଆସି ଅନେକ ଘରଦ୍ୱାର ନଷ୍ଟ କଲା ଓ ଶହ ଶହ ଗୃହପାଳିତ ପଶୁ ଭାସିଗଲେ । ଦୁର୍ଗାପୁର ଓ ଅସ୍ତପୁରା ଗାଁ ବନ୍ୟାଦ୍ୱାରା ବିଶେଷ କ୍ଷତିଗ୍ରସ୍ତ ହୋଇଥିଲା । ଲୋକେ ତିନିଚାରିଦିନ ପାଣି ଘେର ମଧରେ ରହିଥିଲେ । ଏ ଖବର ପାଇ ବୈକୁଣ୍ଠ ବାବୁଙ୍କ ନେତୃତ୍ୱରେ ସ୍ୱେଚ୍ଛାସେବକମାନେ ସେଠାକୁ ଯାଇ ଲୋକମାନଙ୍କୁ ପାଣିଘେର ମଧରୁ ଉଦ୍ଧାର କରି ନିରାପଦ ସ୍ଥାନରେ ଆଶ୍ରୟ ଦେଲେ । ବଦାନ୍ୟ ବ୍ୟକ୍ତିମାନଙ୍କଠାରୁ ସାହାଯ୍ୟ ମାଗି ସେମାନଙ୍କୁ ରନ୍ଧାଖାଦ୍ୟ ଓ ଲୁଗାପଟା ପ୍ରଭୃତି ଯୋଗାଇ ଦେଲେ । ସେତେବେଳେ ଦରବାର ଶାସନ, ବନ୍ୟା ବାତ୍ୟାରେ ତୁରନ୍ତ କୌଣସି ସାହାଯ୍ୟ ପ୍ରଦାନର ବ୍ୟବସ୍ଥା କରୁନଥିଲେ କି ସେମାନଙ୍କର ଥଇଥାନ ଦିଗରେ କୌଣସି ପଦକ୍ଷେପ ନେଉନଥିଲେ ।

ଶରତବାବୁ ସାହାଯ୍ୟ ସଂଗ୍ରହ ଓ ବଣ୍ଟନ କାର୍ଯ୍ୟ ଟିକିନିଖି ତଦାରଖ କରୁଥିଲେ । ଏଥିପାଇଁ ସେ ବିଭିନ୍ନ ଅଞ୍ଚଳକୁ ସ୍ୱେଚ୍ଛାସେବକମାନଙ୍କ ସହିତ ଯାଉଥିଲେ । ବନ୍ୟାଗ୍ରସ୍ତ ଅଞ୍ଚଳର ଲୋକମାନଙ୍କୁ ସାହାଯ୍ୟ ଯୋଗାଇବା ପାଇଁ ସେ ଟ୍ରେନିଂ କ୍ୟାମ୍ପକୁ ସ୍ଥାପନ କରି ସ୍ୱେଚ୍ଛାସେବକମାନଙ୍କୁ ପାଞ୍ଚ ଦଳରେ

ବିଭକ୍ତ କରି ଦୁଇଟି ଦଳ ବୁଢ଼ାବଳଙ୍ଗ ବନ୍ୟା, ଗୋଟିଏ ଦଳ ସୋନ ବନ୍ୟା, ଗୋଟିଏ ଦଳ ଗଙ୍ଗାହାର ନଦୀ ବନ୍ୟା ଓ ଗୋଟିଏ ଦଳ ଜମ୍ବୀରାନଦୀ ବନ୍ୟାକ୍ଷତିଗ୍ରସ୍ତ ଅଞ୍ଚଳକୁ ପଠାଇ ଥିଲେ । ମୁଁ ପ୍ରଥମେ ବୁଢ଼ାବଳଙ୍ଗ ଓ ପରେ ଜମ୍ବୀରାନଦୀ ଦ୍ୱାରା କ୍ଷତିଗ୍ରସ୍ତ ଅଞ୍ଚଳକୁ ଯାଇ ସେବା କାର୍ଯ୍ୟ କରିଥିଲି ।

## ମୃତ୍ୟୁ କବଳରୁ ବଞ୍ଚିଗଲି

ଏହି ବନ୍ୟାର ପରଦିନ ମୋତେ ଓ ଶ୍ରୀ ଶ୍ୟାମସୁନ୍ଦର ମହାଲିକ ନାମକ ଜଣେ ହରିଜନ ଜାତିର ସ୍ୱେଚ୍ଛାସେବକଙ୍କୁ ଡିଙ୍ଗର ଗାଁରେ ଥିବା ଡଙ୍ଗାଟିକୁ ଆଣିବାର ଦାୟିତ୍ୱ ଦିଆଗଲା । ଆମେ ଦୁଇଜଣ ସେଠାକୁ ଯାଇ ଦେଖିଲୁ ଯେ ବନ୍ୟା ଜଳ କୂଳଠାରୁ ପ୍ରାୟ ଏକ ମାଇଲ ପର୍ଯ୍ୟନ୍ତ ମାଡ଼ିଆସି କ୍ରମଶଃ କମିବାରେ ଲାଗିଥାଏ । ଆମକୁ ଡ଼ଙ୍ଗା ଆଣିବାର ଦାୟିତ୍ୱ ଦିଆଯାଇଛି । ତେଣୁ ଦୁଇଜଣଯାକ ପହଁରି ଡଙ୍ଗା ଆଣିବାକୁ ନିଷ୍ପତ୍ତି ନେଇ ପହଁରିବାକୁ ଆରମ୍ଭ କଲୁ । କିଛି ବାଟ ଗଲାପରେ ଦୁଇଜଣଯାକ ପ୍ରବଳ ସ୍ରୋତରେ ପଡ଼ି ଭାସି ଭାସି ଯାଇ ଗୋଟିଏ ଗଛରେ ଲାଗିଲୁ ଏବଂ ଗଛ ଉପରକୁ ଉଠି ବର୍ଦ୍ଧନା ଗାଁ ମୁଣ୍ଡରେ ଏକ ଡଙ୍ଗା ଦେଖି ଆମକୁ ଉଦ୍ଧାର କର ବୋଲି ବଡ଼ ପାଟିରେ ବହୁ ସମୟ ଧରି ଡାକିଲୁଁ । ଆମ ପାଟି ଶୁଣି ସେଠାରେ କିଛି ଲୋକ କେହି ଭାସି ଯାଉଛି ଭାବି ଡଙ୍ଗା ନେଇ ଆମ ପାଖକୁ ଆସି ଆମକୁ ଉଦ୍ଧାର କଲେ । ଡିଙ୍ଗରା ଗାଁକୁ ଡଙ୍ଗା ଆଣିବାକୁ ଆମେ ଯାଉଥିଲୁ ବୋଲି ଶୁଣି ଆମକୁ ଗାଳି ଦେଲେ । ସେଦିନ ଉପରଓଳି ଉକ୍ତ ଗାଁରେ ଶରତ ବାବୁ ଓ ଅନ୍ୟାନ୍ୟ ସ୍ୱେଚ୍ଛାସେବକମାନେ ରିଲିଫ୍ ଜିନିଷ ନେଇ ପହଞ୍ଚି ଓ ଗାଁବାଲାଙ୍କ ଠାରୁ ଆମ ବିପଦ କଥା ଶୁଣି ବିଶେଷ ଦୁଃଖିତ ହେବା ସଙ୍ଗେ ସଙ୍ଗେ ଆମର କର୍ତ୍ତବ୍ୟନିଷ୍ଠାପାଇଁ ଅଶେଷ ଧନ୍ୟବାଦ ଦେଲେ । ଭଗବାନଙ୍କ କୃପାରୁ ସେଦିନ ଆମେ ଦୁଇଜଣ ନିଶ୍ଚିତ ମୃତ୍ୟୁମୁଖରୁ ଉଦ୍ଧାର ପାଇଲୁ ।

## "ପ୍ରଜା ଆନ୍ଦୋଳନ"ର ରାଜନୈତିକ ରୂପାନ୍ତର "ପ୍ରଜାମଣ୍ଡଳ"

ମୟୂରଭଞ୍ଜ ପ୍ରଜା ଆନ୍ଦୋଳନର ପ୍ରଥମ ଅଧିବେଶନର (ତେନ୍ତଳ ଅଧିବେଶନ) ଆଶାତୀତ ସଫଳତା ପଣ୍ଡିତ ନେହେରୁଙ୍କ ଆଶୀର୍ବାଦ, ଗଡ଼ଜାତ ପ୍ରଜାମଣ୍ଡଳର ପ୍ରେରଣା ଓ ସାରଙ୍ଗଧର ବାବୁଙ୍କ ପରାମର୍ଶ ମୟୂରଭଞ୍ଜ ପ୍ରଜା ଆନ୍ଦୋଳନକୁ ଯଥେଷ୍ଟ ନୈତିକ ବଳରେ ବଳୀୟାନ କରିପାରିଥିଲା । ଶରତ ବାବୁଙ୍କ ନେତୃତ୍ୱରେ ଚାଲିଥିବା ଏହି ଆନ୍ଦୋଳନଦ୍ୱାରା ମୟୂରଭଞ୍ଜର ବହୁ ଦିନର ଆଶା ଆକାଂକ୍ଷା ଯେ ପୂରଣ ହୋଇପାରିବ ବଦ୍ଧମୂଳ ଧାରଣା ଲୋକମାନଙ୍କ ମନରେ ସୃଷ୍ଟି ହୋଇଥିଲା । ଏଣୁ ୧୯୪୧ ମସିହା ଶେଷ ବେଳକୁ ରାଜ୍ୟର ଚାରୋଟି ସବ୍‌ଡ଼ିଭିଜନ୍ ମଧ୍ୟରୁ ସଦର ଓ କପ୍ତିପଦା ଏହି ଦୁଇଟି ସବ୍‌ଡ଼ିଭିଜନ୍‌ରେ ପ୍ରଜା ଆନ୍ଦୋଳନ ଯଥେଷ୍ଟ ଶକ୍ତିଶାଳୀ ହୋଇପାରିଥିଲା ।

ସେହି ବର୍ଷ ଡିସେମ୍ବର ମାସରେ ପ୍ରଜା ଆନ୍ଦୋଳନର ପ୍ରଧାନ କାର୍ଯ୍ୟାଳୟ ଆମ୍ବଯୋଡ଼ାଠାରେ ଏକ ବିରାଟ କର୍ମୀ ସମ୍ମିଳନୀ ନିରାଡ଼ମ୍ବର ଅଥଚ ଗାମ୍ଭୀର୍ଯ୍ୟପୂର୍ଣ୍ଣ ବାତାବରଣ ମଧ୍ୟରେ ଅନୁଷ୍ଠିତ ହେଲା । ଏହି ସମ୍ମିଳନୀରେ ଦୁଇ ସବ୍‌ଡ଼ିଭିଜନ୍‌ର ସମସ୍ତ ପ୍ରଗଣା ସମିତିର କର୍ମକର୍ତ୍ତାଗଣ ଯୋଗ ଦେଇ ପ୍ରଜା ଆନ୍ଦୋଳନକୁ ଏକ ରାଜନୈତିକ ସଂଗଠନରେ ପରିଣତ କରିବାପାଇଁ ସ୍ଥିର କଲେ ଓ ଏହାର

ନାମ 'ମୟୂରଭଞ୍ଜ ପ୍ରଜା ମଣ୍ଡଳ' ହେବ ବୋଲି ସର୍ବସମ୍ମତି କ୍ରମେ ନିଷ୍ପତ୍ତି ନେଲେ । ମୟୂରଭଞ୍ଜରେ ଏକ ପ୍ରତିନିଧିମୂଳକ ଶାସନ ବ୍ୟବସ୍ଥାର ପ୍ରଚଳନପାଇଁ ଓ ମହାରାଜା ସାମ୍ବିଧାନିକ ମୁଖ୍ୟ ହୋଇ ଶାସନ ଦାୟିତ୍ୱ ତୁଲାଇବାପାଇଁ ମହାରାଜାଙ୍କ ପାଖରେ ପ୍ରସ୍ତାବ ଉପସ୍ଥାପନ କରାଯିବାର ଅନ୍ୟ ଏକ ନିଷ୍ପତ୍ତି ସର୍ବସମ୍ମତି କ୍ରମେ ଗୃହୀତ ହେଲା । ଏହି ସମସ୍ତ କାର୍ଯ୍ୟ ଶାନ୍ତିପୂର୍ଣ୍ଣଭାବରେ ମହାତ୍ମାଗାନ୍ଧୀଙ୍କ ପ୍ରଦର୍ଶିତ ଅହିଂସା ମାର୍ଗରେ ହାସଲ କରାଯିବାର ମଧ୍ୟ ସ୍ଥିର ହେଲା । ଉପସ୍ଥିତ ସମସ୍ତ କର୍ମକର୍ତ୍ତା ଏହି ଲକ୍ଷ୍ୟ ହାସଲପାଇଁ ସବୁ ପ୍ରକାର ଦୁଃଖ କଷ୍ଟକୁ ସାହସର ସହିତ ସମ୍ମୁଖୀନ ହେବେ ବୋଲି ଶରତ ବାବୁଙ୍କର ନେତୃତ୍ୱରେ ସେଦିନ ଶପଥ ନେଲେ ।

## ମୋ ଉପରେ ଗୁରୁ ଦାୟିତ୍ୱ

''ପ୍ରଜା ଆନ୍ଦୋଳନ'' ''ପ୍ରଜାମଣ୍ଡଳ'' ନାମରେ ଯେଉଁ ରାଜନୈତିକ ରୂପ ଗ୍ରହଣ କଲା ତାର ନେତୃତ୍ୱ ନେଲେ ଶରତ ଚନ୍ଦ୍ର ଦାସ । ମୋତେ ଏହାର ସାଧାରଣ ସଂପାଦକଭାବରେ ସର୍ବସମ୍ମତି କ୍ରମେ ମନୋନୀତ କରାଗଲା । ଏହା ଥିଲା ମୋର ପ୍ରଥମ ରାଜନୈତିକ ଦାୟିତ୍ୱ ଗ୍ରହଣ । ସେତେବେଳେ ମୋର ବୟସ ଏକୋଇଶ ବର୍ଷ ହୋଇଥିଲେ ହେଁ ମୋର କର୍ତ୍ତବ୍ୟପରାୟଣତା ଓ ନିଷ୍ଠାପରତାପାଇଁ ମୋତେ ବୋଧହୁଏ ଏତେ ବଡ଼ ଗୁରୁ ଦାୟିତ୍ୱ ଅର୍ପଣ କରାଗଲା । ଯେଉଁମାନଙ୍କୁ ନେଇ ମୟୂରଭଞ୍ଜ ପ୍ରଜା ମଣ୍ଡଳର ପ୍ରଥମ କାର୍ଯ୍ୟକାରୀ କମିଟି ଗଠନ କରାଗଲା ସେମାନେ ହେଲେ :-

| | | |
|---|---|---|
| ୧ - | ଶ୍ରୀ ଶରତ ଚନ୍ଦ୍ର ଦାସ | ସଭାପତି |
| ୨ - | ଶ୍ରୀ ଗଜେନ୍ଦ୍ର ନାଥ ପଟ୍ଟନାୟକ | ଉପ ସଭାପତି |
| ୩ - | ଶ୍ରୀ ପ୍ରସନ୍ନ କୁମାର ଦାଶ | ସାଧାରଣ ସଂପାଦକ |
| ୪ - | ଶ୍ରୀ ଲକ୍ଷ୍ମୀଧର ତ୍ରିପାଠୀ | କୋଷାଧ୍ୟକ୍ଷ |
| ୫ - | ଶ୍ରୀ ଜଗନ୍ନାଥ କମିଲା | ସଭ୍ୟ |
| ୬ - | ଶ୍ରୀ ପୂର୍ଣ୍ଣଚନ୍ଦ୍ର ପରିଚ୍ଛା | ,, |
| ୭ - | ଶ୍ରୀ ବୈକୁଣ୍ଠ ନାଥ ସଦୁଆଳ | ,, |
| ୮ - | ଶ୍ରୀ କୃଷ୍ଣଚନ୍ଦ୍ର ସ୍ୱାଇଁ | ,, |
| ୯ - | ଶ୍ରୀ ରାମଚନ୍ଦ୍ର ପଟ୍ଟନାୟକ | ,, |
| ୧୦ - | ଶ୍ରୀ ଗୌର ମୋହନ ପ୍ରଧାନ | ,, |
| ୧୧ - | ଶ୍ରୀ ଅଦ୍ୱୈତ ନାଥ ଲାଲ | ,, |
| ୧୨ - | ଶ୍ରୀ ରାମଚନ୍ଦ୍ର ମହାପାତ୍ର | ,, |
| ୧୩ - | ଶ୍ରୀ ସୁରେନ୍ଦ୍ର ନାଥ ସାଥୁଆ | ,, |
| ୧୪ - | ଶ୍ରୀ କ୍ଷେତ୍ରମୋହନ ଦାଶ | ,, |
| ୧୫ - | ଶ୍ରୀ ସାକିଲା ସରେନ୍ | ,, |

୧୬- ଶ୍ରୀ ବାକ୍ଷିନ ଟୁଡୁ ,,
୧୭- ଶ୍ରୀ ପଞ୍ଚାନନ ପଟ୍ଟନାୟକ ,,
୧୮- ଶ୍ରୀ ଗୋବିନ୍ଦ ଚନ୍ଦ୍ର ଟୁଡୁ ,,
୧୯- ଶ୍ରୀ ରମାନାଥ ଟୁଡୁ ,,
୨୦- ଶ୍ରୀ ଲକ୍ଷ୍ମଣ ଚନ୍ଦ୍ର ପରିଡ଼ା ,,
୨୧- ଶ୍ରୀ ଧ୍ରୁବ ଚରଣ ରାଉତ ,,
୨୨- ଶ୍ରୀ ବୈଷ୍ଣବ ଚରଣ ମିଶ୍ର ,,
୨୩- ଶ୍ରୀ ହରେକୃଷ୍ଣ ସାହୁ ନିମନ୍ତ୍ରିତ ସଭ୍ୟ
୨୪- ଶ୍ରୀ ଭକ୍ତବନ୍ଧୁ ମହାନ୍ତି ,,
୨୫- ଶ୍ରୀ ଶିବପ୍ରସାଦ ମହାନ୍ତି ,,

ଏବଂ ଅଫିସ୍ ସଂପାଦକ ଦାୟିତ୍ୱ ଶ୍ରୀ ଗଙ୍ଗାଧର ଦାସଙ୍କ ଉପରେ ନ୍ୟସ୍ତ କରାଗଲା । ବେତନଟୀ ଥାନା ଅନ୍ତର୍ଗତ ଆୟଯୋଡ଼ା ଗ୍ରାମରେ ଥିବା ଶରତ ବାବୁଙ୍କ ଘରେ ମୟୂରଭଞ୍ଜ ପ୍ରଜା ମଣ୍ଡଳର ପ୍ରଧାନ କଯ୍ୟାଳୟ ଖୋଲାଗଲା ।

## ପାଞ୍ଚପୀଢ଼ ପ୍ରଜାମଣ୍ଡଳ

୧୯୪୧ ମସିହା । ହଠାତ୍ ଦିନେ ଶ୍ରୀ ଉମେଶ ଚନ୍ଦ୍ର ପାଣିଗ୍ରାହୀ (ପରେ ଜଣେ ଖ୍ୟାତନାମା ସାହିତ୍ୟିକ ହେଲେ) ଆୟଯୋଡ଼ାରେ ପହଞ୍ଚି ପାଞ୍ଚପୀଢ଼ ସବ୍‌ଡିଭିଜନ ଅଞ୍ଚଳରେ ପ୍ରଜାମଣ୍ଡଳର ପ୍ରଚାର ଓ ପ୍ରସାରପାଇଁ ଶରତ ବାବୁଙ୍କୁ ଅନୁରୋଧ କଲେ । ଉକ୍ତ ସବ୍‌ଡିଭିଜନ ଅନ୍ତର୍ଗତ ରରୁଆଁ ଗ୍ରାମରେ ତାଙ୍କର ଘର । ସେହି ବର୍ଷ ରଜସଂକ୍ରାନ୍ତି ସମୟରେ ରରୁଆଁଠାରେ ପ୍ରଜାମଣ୍ଡଳ ତରଫରୁ ଏକ ସାଧାରଣ ସଭା ହେବାର ସ୍ଥିର ହେଲା । ଏଥିପାଇଁ ଶ୍ରୀ ହୃଦୟନାଥ ଦାସ, ଶ୍ରୀ ମହେଶ ଚନ୍ଦ୍ର ପଣ୍ଡା, ଶ୍ରୀ ଦାକ୍ଷିଣ ସରେନ୍ ପ୍ରଭୃତି କେତେଜଣ କର୍ମୀ ସାଇକେଲ ଯୋଗେ ରରୁଆଁ ଗଲେ । ଶରତ ବାବୁ, ଶ୍ରୀ ଗଜେନ୍ଦ୍ର ନାଥ ପଟ୍ଟନାୟକ, ଶ୍ରୀ କୈଳାସ ଚନ୍ଦ୍ର ନାୟକ ଓ ମୁଁ ବେତନଟୀରୁ ଟ୍ରେନ୍ ଯୋଗେ ବାଙ୍ଗିରୀପୋଷୀ ଯାଇ ସେଠାରୁ ବସ୍ ଯୋଗେ ରାଇରଙ୍ଗପୁରରେ ପହଞ୍ଚି ବଳଦଗାଡ଼ିରେ ରରୁଆଁ ଯିବାର ପୋଗ୍ରାମ କରି ବାହାରିଲୁ । ସେତେବେଳେ ରାଇରଙ୍ଗପୁର ଓ ବାଙ୍ଗିରୀପୋଷୀ ମଧ୍ୟରେ ଗୋଟିଏ ମାତ୍ର ବସ ଚଳାଚଳ କରୁଥିଲା । ଆମେ ବାଙ୍ଗିରୀପୋଷୀରେ ପହଞ୍ଚି ବସ୍ ପାଖକୁ ଗଲୁ ମାତ୍ର ବସ୍ ଇଂଜିନ ଖରାପ ହେତୁ ବସ୍ ଯିବ ନାହିଁ ବୋଲି ଡ୍ରାଇଭର ପାଖରୁ ଶୁଣିଲୁ । ପ୍ରକୃତରେ ବସ୍‌ର ଇଂଜିନ ଖରାପ ନଥିଲା । ସେଠିକାର ଥାନା ଅଫିସରଙ୍କ ଧମକ ଯୋଗୁ ଡ୍ରାଇଭର ଏହା କହିବାକୁ ବାଧ ହୋଇଥିଲେ । ଏସବୁ କାର୍ଯ୍ୟପାଇଁ ଉକ୍ତ ଥାନା ଅଫିସର ଖୁବ୍ ଧୁରନ୍ଧର ଥିଲେ । ଆମ ଯିବା ଖବର ପାଇ ସେ ଏଭଳି କାର୍ଯ୍ୟ କରିଥିଲେ । ଗୋଟିଏ ନୂଆ ଅଞ୍ଚଳର ପ୍ରଥମ କାର୍ଯ୍ୟକ୍ରମକୁ ବାତିଲ ନ କରିବାର ସ୍ଥିର କରି ଯେକୌଣସି ଉପାୟରେ ସେଠାରେ ପହଞ୍ଚିବା ବୋଲି ସ୍ଥିର କଲୁ । ମୋ ନିଜ ଗାଁ କେନ୍ଦୁଗୁଣ୍ଡି ବାଙ୍ଗିରୀପୋଷୀରୁ ମାତ୍ର ଚାରି ମାଇଲି । ମୁଁ ସମସ୍ତଙ୍କୁ ଆମ ଘରକୁ

ନେଇଗଲି । ଆମେ ଅଧମାଇଲ ବାଟ ଯାଇଛୁ କି ନାହିଁ ହଠାତ୍ ବସ୍‌ଟି ରାଇରଙ୍ଗପୁର ଅଭିମୁଖେ ଯିବାର ଦେଖିଲୁ । ମୁଁ ପ୍ରାୟ ଛଅମାସ ହେବ ଘରକୁ ଯାଇ ନଥିଲି । ତେଣୁ ସେଦିନ ହଠାତ୍ ଶରତବାବୁ ଓ ଅନ୍ୟମାନଙ୍କ ସହ ମୋତେ ଦେଖି ସମସ୍ତେ ଆଶ୍ଚର୍ଯ୍ୟ ହେବା ସଙ୍ଗେ ସଙ୍ଗେ ବିଶେଷ ଆନନ୍ଦିତ ହେଲେ ଏବଂ ଅତି ଆଗ୍ରହର ସହିତ ସମସ୍ତଙ୍କର ଚର୍ଚ୍ଚା କଲେ । ତା'ପରେ ଆମ ଘର ବଳଦଗାଡ଼ିରେ ରାତି ୧୦ଟାରେ ବହଡ଼ାଗୋଡ଼ା ବାହାରି ସକାଳେ ସେଠାରେ ପହଞ୍ଚିଲୁ । ସେଠାରୁ ବସ୍‌ଯୋଗେ ଚାକୁଳିଆ ଗଲୁ ଏବଂ ଟ୍ରେନ୍‌ରେ ଯାଇ ଚାଇଁବସାରେ ପହଞ୍ଚିଲୁ । ସେଠାରୁ ଏକ କାର ଭଡା କରି ସଭାଦିନ ସକାଳେ ରରୁଆଁରେ ପହଞ୍ଚିଗଲୁ । ଆମ ପୂର୍ବରୁ ସାଇକେଲରେ ଯାଇଥିବା କର୍ମୀମାନେ ପହଞ୍ଚି ଯାଇଥିଲେ । ଆମକୁ ଦେଖି ଉମେଶବାବୁ ଓ ଅନ୍ୟମାନେ ଆନନ୍ଦିତ ଓ ଉତ୍ସାହିତ ହୋଇପଡ଼ିଲେ । ସେହିଦିନ ଉପରଓଳି ସେଠାରେ ଏକ ବିରାଟ ସାଧାରଣ ସଭା ହେଲା । ସଭାକୁ ଭଣ୍ଡୁର କରିବାପାଇଁ ସମସ୍ତ ପ୍ରକାର ସରକାରୀ ଉଦ୍ୟମ ବିଫଳ ହେଲା । ସଭାଶେଷରେ ଶ୍ରୀ ଉମେଶ ଚନ୍ଦ୍ର ପାଣିଗ୍ରାହୀଙ୍କ ନେତୃତ୍ୱରେ ପାଞ୍ଚପୀଢ଼ ସବ୍‌ଡ଼ିଭିଜନ୍ ପ୍ରଜାମଣ୍ଡଳ କମିଟି ସେଠାରେ ଗଠନ କରାଗଲା । କିଛି ଦିନ ରହି ସେ ଅଞ୍ଚଳରେ ସଂଗଠନ କାର୍ଯ୍ୟ କରିବାପାଇଁ ଶ୍ରୀ ଗଜେନ୍ଦ୍ର ନାଥ ପଟ୍ଟନାୟକ, କୈଳାସ ଚନ୍ଦ୍ର ନାୟକ, ଦକ୍ଷିଣ ସରେନ ଓ ମୁଁ ସେଠାରେ ରହିଲୁ ଏବଂ ଶରତବାବୁ ଅନ୍ୟମାନଙ୍କ ସହ ଆମ୍ବଯୋଡ଼ା ଫେରି ଆସିଲେ । ଆମେ ସେଠାରେ ଯେଉଁ ଗାଁକୁ ଯାଉ ଆମ ଆଗେ ଆଗେ ପୋଲିସ୍ ମଧ ସେହି ଗାଁକୁ ଯାଉଥାନ୍ତି ଏବଂ ଆମକୁ ଆଶ୍ରୟ ବା କୌଣସି ପ୍ରକାର ସାହାଯ୍ୟ ନଦେବାପାଇଁ ଗ୍ରାମବାସୀଙ୍କୁ ଧମକ ଦେଉଥାନ୍ତି । ପୋଲିସ୍‌ର ଧମକ ଯୋଗୁ ଗ୍ରାମବାସୀମାନେ ଆମକୁ କୌଣସି ପ୍ରକାର ସାହାଯ୍ୟ ଦେବାକୁ ସାହସ କରୁନଥାନ୍ତି । ଏଥିରେ ଅବଶ୍ୟ ଆମେ ଭାଙ୍ଗି ପଡୁନଥାଉଁ । କାରଣ ଏହି ଅବସ୍ଥାର ସମ୍ମୁଖୀନ ହେବାକୁ ପଡ଼ିବ ବୋଲି ଆମେମାନେ ଆଗରୁ ଜାଣିଥିଲୁ ଏବଂ ଅଭିଜ୍ଞତା ମଧ ଥିଲା । ଦିନେ ଆମେ ପ୍ରବଳ ଖରା ଓ ଭୋକ ହେତୁ ଏକ ଆମ୍ବତୋଟାରେ ଆଶ୍ରୟ ନେବାକୁ ବାଧ ହେଲୁ । ଗଛରୁ ପଡୁଥିବା ପାଚିଲା ଆମ୍ବ ଖାଇ ଭୋକ ମେଣ୍ଟାଇଲୁ । ଶେଷରେ ଜଣେ ଲୋକ ସାହସ କରି ଆମ ପାଖକୁ ଆସିବାରୁ ତାକୁ କିଛି ପଇସା ଦେଇ ବୁଟ ଛତୁଆ ଅଣାଇ ଖାଇଲୁ । ସେହି ଗାଁରେ ସଭା ହେବାର ଥିଲା କିନ୍ତୁ ପୋଲିସ୍ ଭୟରେ କେହି ସଭାକୁ ଆସିଲେ ନାହିଁ । ଅଳ୍ପ କିଛି ଲୋକ ଆସି ଖଣ୍ଡେ ଦୂରରେ ରହି ସଭା ସ୍ଥଳକୁ ଲକ୍ଷ୍ୟ କରୁଥାନ୍ତି । ଏହା ପରେ ଆମେ ସେଠାରୁ ପ୍ରାୟ ଚାରି ପାଞ୍ଚ ମାଇଲ ବାଟ ଚାଲିଚାଲି ଆସି ଯଶୀପୁରରେ ପହଞ୍ଚି ଶ୍ରୀକୃଷ୍ଣଚନ୍ଦ୍ର ମୃଗରାଜ (ମହାନ୍ତ)ଙ୍କ ଘରେ ଅତିଥି ହେଲୁ । ସେ ମୁନି ଧର୍ମ ଗ୍ରହଣ କରି ମୁନି ସମାଜ ଗଠନ କରିଥାନ୍ତି । ସେ ଜଣେ ଧର୍ମପରାୟଣ ଓ ସାହସୀ ବ୍ୟକ୍ତି ଥିଲେ । ତେଣୁ ଆମକୁ ଆଶ୍ରୟ ଦେଲେ । ରାତିଟି ତାଙ୍କ ଘରେ କଟାଇ ତହିଁ ପରଦିନ ଚାଲି ଚାଲି ଆସି ବାଦାମପାହାଡ଼ରେ ପହଞ୍ଚିଲୁ । ପରଦିନ ରାୟରଙ୍ଗପୁର ବାଟ ଦେଇ ବହୁ ଅସୁବିଧା ମଧ୍ୟରେ ଆମ୍ବଯୋଡ଼ା ଫେରିଆସିଲୁ । ରାୟରଙ୍ଗପୁର ଆସିବା ବେଳେ ବାଙ୍ଗିରୀପୋଷୀଠାରେ ଯେଉଁ ବସ ଅସୁବିଧା ହୋଇଥିଲା ସେହି ଅସୁବିଧା କାଳେ ହୋଇପାରେ ଏହି ଆଶଙ୍କାରେ ଆମେ ସକାଳୁ ବାରିପଦା ରାସ୍ତାରେ କିଛି ଦୂର ଆଗକୁ ଚାଲି ଆସି ବାଟରେ ବସ୍ ଧରିଲୁ । ଫଳରେ ପୋଲିସ୍ ଏ ଖବର ପାଇ ପାରିଲା ନାହିଁ । ବାଦାମ ପାହାଡ଼ ପହଞ୍ଚିବା ପର୍ଯ୍ୟନ୍ତ ପାଞ୍ଚପୀଢ଼ି ସବଡ଼ିଭିଜନର

ଶ୍ରୀଭକ୍ତବନ୍ଧୁ ମହାନ୍ତି ଓ ଶ୍ରୀ ଶିବପ୍ରସାଦ ମହାନ୍ତ (ଭଞ୍ଜକିଆ ଗ୍ରାମ) ରହିଥିଲେ । ଏହି ଦୁଇଜଣ ଶିକ୍ଷକ ପ୍ରଜା ଆନ୍ଦୋଳନରେ ଝାସ ଦେଇଥିଲେ ।

## ମୋର ବିବାହ

୧୯୪୧ ମସିହା ଜୁନ୍ ମାସ ଶେଷ ସପ୍ତାହରେ ଶ୍ରୀମତୀ କୃଷ୍ଣପ୍ରିୟା ଦେବୀ (ଡାକ ନାମ ଭାବ) ଙ୍କ ସହିତ ମୋର ହଠାତ୍ ବିବାହ ହେଲା । ତା' ପୂର୍ବରୁ ବିବାହ ବିଷୟରେ ମୁଁ କେବେହେଲେ ଭାବିନଥିଲି କି ଭାବିବାର କୌଣସି କାରଣ ବା ସୁଯୋଗ ମଧ୍ୟ ନଥିଲା । ମୁଁ କାମରେ ଏତେ ବ୍ୟସ୍ତ ଥିଲି ଯେ ଅନ୍ୟର ବିଭାଘରରେ ଯୋଗ ମଧ୍ୟ ଦେଇପାରୁନଥିଲି । ପ୍ରଜାମଣ୍ଡଳର ପ୍ରସାର ଓ ପ୍ରତିରୋଧକାରୀଙ୍କ ସାମ୍ନା ହେବାର କୌଶଳ ଚିନ୍ତା ବ୍ୟତୀତ ଅନ୍ୟ କିଛି ମୋ ମନକୁ ଛୁଇଁ ନଥିଲା । ମୋର ବୟସ ମଧ୍ୟ ସେପରି କିଛି ଅଧିକ ହୋଇନଥିଲା । ମୋର ରାଜନୈତିକ ପିତା ତଥା ପ୍ରଜାମଣ୍ଡଳ ସଭାପତି ଶ୍ରୀଯୁକ୍ତ ଶରତ ଚନ୍ଦ୍ର ଦାସ ପ୍ରଜାମଣ୍ଡଳର କୋଷାଧକ୍ଷ ଶ୍ରୀଯୁକ୍ତ ଲକ୍ଷ୍ମୀଧର ତ୍ରିପାଠୀଙ୍କ ଘରକୁ ପଠାଇଲେ । ମୁଁ ସାଇକେଲରେ ବାରିପଦାରୁ ବାହାରିବା ସମୟରେ ସେ ମୋତେ ପାଖକୁ ଡାକି କହିଲେ - ''ତୁ ଦହିକୋଟିରେ ଲକ୍ଷ୍ମୀଧର ବାବୁଙ୍କ ଝିଅକୁ ନିଶ୍ଚୟ ଦେଖି ଆସିବୁ । ମୁଁ ଏକଥା ତୋତେ କହିଛି ବୋଲି ତାଙ୍କୁ ନିଜେ କହିବୁ । ଏହା ମୋର ନିର୍ଦ୍ଦେଶ ଭାବି ନିଶ୍ଚୟ ଦେଖି ଆସିବୁ ।'' ଏ କଥା ଶୁଣି ମୁଁ ଅବାକ୍ ହୋଇଗଲି ଏବଂ ତାଙ୍କୁ ମଧ୍ୟ କିଛି ଉତ୍ତର ଦେଇ ନପାରି ଦହିକୋଟି ଅଭିମୁଖେ ବାହାରିଲି । ଭାବିଲି ଅଳ୍ପଦିନ ତଳେ ମୋର ବାପା ଶରତ ବାବୁଙ୍କ ପାଖକୁ ଆସିଥିଲେ । ସେ ବୋଧହୁଏ ମୋର ବିବାହପାଇଁ ଲାଗି ପଡ଼ିଲେଣି । ପୂର୍ବରୁ ସେ କେବେ ଏଭଳି କଥା କହିନଥିଲେ, ଏପରିକି ସୂଚନା ମଧ୍ୟ ଦେଇନଥିଲେ । ମୁଁ କାଳେ ତାଙ୍କର ଏକଥା ମାନିବି କି ନାହିଁ ଭାବି '' ଏହା ମୋର ନିର୍ଦ୍ଦେଶ'' ବୋଲି ସେ କହିଥିଲେ ।

ମୁଁ ସେଦିନ ସଂଧ୍ୟାରେ ଦହିକୋଟିରେ ପହଞ୍ଚି ଲକ୍ଷ୍ମୀଧର ବାବୁଙ୍କ ଘରେ ପୂର୍ବଭଳି ରହିଲି । ମୋର ଆସିବା ଶୁଣି ଉଦୟନାଥ ଓତା, ଉଦୟ ନାଥ ମିଶ୍ର, ଭଗବାନ ମିଶ୍ର (ବଡ଼), ଭଗବାନ ମିଶ୍ର (ସାନ) ଦଲକା ସିଂହ ପ୍ରଭୃତି ବହୁ କର୍ମୀ ଓ ସମର୍ଥକମାନେ ଆସି ପ୍ରଜାମଣ୍ଡଳ ସଂଗଠନ ସଂପର୍କରେ ମୋର ସହିତ ବହୁ ସମୟ ଧରି ଆଲୋଚନା କଲେ । ମୁଁ କିନ୍ତୁ ସେଦିନ ଏସବୁ ଆଲୋଚନା ଭିତରେ ଭାବୁଥାଏ ଶରତ ବାବୁଙ୍କ ନିର୍ଦ୍ଦେଶକୁ କିପରି ପାଳନ କରିବି । ସମସ୍ତେ ଯିବା ପରେ ମୁଁ ଏବଂ ଲକ୍ଷ୍ମୀଧର ବାବୁ ଖାଇବାକୁ ବସିଲୁ । ଏହି ସମୟରେ ଝିଅ ଦେଖିବା କଥା ତାଙ୍କୁ କହିବି କହିବି ଭାବି କହିବାକୁ ସାହସ କରିପାରିଲି ନାହିଁ । ତହିଁ ପରଦିନ ବାରିପଦା ଆସିବା ପାଇଁ ପ୍ରସ୍ତୁତି ହେଲି ତଥାପି ଏକଥା କହି ପାରୁନଥାଏ । ଯଦି ନକହି ଫେରି ଆସେ ତେବେ ଶରତ ବାବୁ ପଚାରିଲେ କଣ କହିବି ? ଶେଷରେ ସାହସ ବାନ୍ଧି କହିଲି - ''ଶରତ ବାବୁ ମୋତେ ଆପଣଙ୍କ ଝିଅକୁ ଦେଖିଯିବାପାଇଁ କହିଛନ୍ତି ।'' ଏକଥା ଶୁଣିବା ମାତ୍ରେ ଲକ୍ଷ୍ମୀଧର ବାବୁ ଘରଭିତରକୁ ଚାଲିଗଲେ ଏବଂ କିଛି ସମୟ ପରେ ତାଙ୍କ ଝିଅ ପାଣି ଓ ପାନ ଧରି ମୁହଁ ତଳକୁ କରି ମୋ ସାମନାରେ ଆସି ଛିଡ଼ା ହେଲେ । ବୟସ ୧୨/୧୩ ବର୍ଷ । ସ୍ୱଭାବ ଅତି ଧୀର ଓ ନମ୍ର । ମୁଁ ତାଙ୍କ ହାତରୁ ପାଣି

ଓ ପାନ ନେଇ ତୁମ ନାମ କଣ ବୋଲି ପଚାରିବାରୁ ''କୃଷ୍ଣପ୍ରିୟା'' କହି ଲାଜ ଓ ଭୟରେ ସଙ୍ଗେ ସଙ୍ଗେ ସେଠାରୁ ଚାଲିଗଲେ। ସେପର୍ଯ୍ୟନ୍ତ ବିବାହପାଇଁ କୌଣସି ଝିଅକୁ ମୁଁ ଦେଖିନଥିଲି କି ବିବାହ ବିଷୟରେ ଚିନ୍ତା ମଧ କରିନଥିଲି। ଏଇ ପ୍ରଥମ ଦେଖାରେ ଝିଅଟିର ଧୀର ଓ ନମ୍ର ସ୍ୱଭାବ କାହିଁକି କେଜାଣି ମୋତେ ଆକର୍ଷଣ କଲା ମୁଁ ଜାଣି ପାରିଲି ନାହିଁ। ମୁଁ ବାରିପଦା ବାହାରି ଆସିଲି। ମୋ ମନ ଝିଅ ଦେଖାପାଇଁ ନୁହେଁ ଶରତ ବାବୁଙ୍କ ନିର୍ଦ୍ଦେଶକୁ ପାଳନ କରିଥିବା ଯୋଗୁଁ ବେଶି ଆନନ୍ଦ ଥିଲା। ବାରିପଦାରେ ପହଞ୍ଚିବା ପରେ ଶରତ ବାବୁ ପଚାରିଲେ-''ଝିଅ ଦେଖିଲୁ ? ଝିଅଟି ଦେଖିବାକୁ କିପରି ?'' ମୁଁ ପ୍ରଥମ ପ୍ରଶ୍ନ ଉତ୍ତର ଦେଲି; ମାତ୍ର ଲାଜରେ ଦ୍ୱିତୀୟ ପ୍ରଶ୍ନ କ'ଣ ଉତ୍ତର ଦେବି ବୋଲି ଭାବୁଥିଲି। ମୋତେ ଚାହିଁ ସେ ମନ୍ତବ୍ୟ କଲେ ''ମୌନଂ ସମ୍ମତି ଲକ୍ଷଣଂ''। ଏହା ପରେ ସେ ବାପାଙ୍କ ପାଖକୁ ଖବର ଦେଲେ ଏବଂ ଜୁନ୍ ମାସ ଶେଷ ସପ୍ତାହରେ ମୋର ବିବାହ ଅନୁଷ୍ଠିତ ହେଲା। ଆମ ଗାଁ କେନ୍ଦୁମୁଣ୍ଡିରୁ ବରଯାତ୍ରୀ ଟ୍ରେନ୍‌ରେ ବେତନଟୀରେ ପହଞ୍ଚିଲେ। ଶରତବାବୁ ମଧ ବରଯାତ୍ରୀଭାବରେ ମୋତେ ବାହା କରେଇବାପାଇଁ ଯାଇଥିଲେ। ମାଳିକୁ ଛେଳି ଅଟୁଆ ପରି ମୋ ଭଳି ଜଣେ ଦରପାଠୁଆ, ଘରଛଡ଼ା ଏବଂ କ୍ରାନ୍ତିକାରୀ ଯୁବକପାଇଁ ଏ ବିବାହ ବନ୍ଧନ ଥିଲା ଏକ ଆହ୍ୱାନ୍। ତଥାପି କ୍ରାନ୍ତିକାରୀ ଯୁବକପାଇଁ ଏ ବିବାହ ବନ୍ଧନ ଥିଲା ଏକ ପାରିବାରିକ ଇଚ୍ଛାକୁ ସମ୍ମାନ ଦେଇ ସାଂସାରିକ ଧର୍ମ ରକ୍ଷାନିମନ୍ତେ ବାଧ ହେଇ ବାନ୍ଧି ବସିଲି ବୈରାଗୀର ସଂସାର।

## ପ୍ରଜାମଣ୍ଡଳ ଉପରେ ଦରବାରୀ ଦମନଲୀଳା

ମୟୂରଭଞ୍ଜର ରାଜଶାସନ ଅନ୍ୟ ଗଡ଼ଜାତ ରାଜ ଶାସନଠାରୁ ଅନେକ ଉନ୍ନତ ଓ ମାର୍ଜିତ ଥିଲା। ଅନ୍ୟ ଗଡ଼ଜାତରେ ହେଉଥିବା ଆନ୍ଦୋଳନକୁ ଦମନ କରିବାପାଇଁ ଯେଉଳି ନିର୍ମମ ଅତ୍ୟାଚାର କରାଯାଇଥିଲା ମୟୂରଭଞ୍ଜରେ ସେଉଳି ନ ହୋଇ ଆନ୍ଦୋଳନକୁ ଦବାଇଦେବାପାଇଁ ଏକ ପରୋକ୍ଷ କୌଶଳ ପ୍ରୟୋଗ କରାଯାଇଥିଲା। ସରକାରୀ କଳ ପ୍ରଜାମଣ୍ଡଳର ପ୍ରତିରୋଧପାଇଁ ପ୍ରତ୍ୟକ୍ଷଭାବରେ ସାମନାକୁ ନଆସି ରାଜ୍ୟର ସର୍ଦ୍ଦାର, ପ୍ରଧାନ ହାଟ ପଟ୍ଟାଦାର ଓ ଧନୀ ଲୋକମାନଙ୍କ ଜରିଆରେ ''ପ୍ରଜାମଙ୍ଗଳ'' ନାମରେ ପ୍ରଜାମଣ୍ଡଳର ଏକ ବିରୋଧୀ ଅନୁଷ୍ଠାନ ଗଢ଼ାଇ ତାକୁ ସମସ୍ତ ପ୍ରକାରର ପ୍ରୋତ୍ସାହନ ଦେଲେ। ମହାରାଜା ଓ ସରକାରୀ କଳସହିତ ନାନାଭାବେ ସଂପୃକ୍ତ ନ୍ୟସ୍ତସ୍ୱାର୍ଥ ଗୋଷ୍ଠୀର ବ୍ୟକ୍ତିମାନେ ଉକ୍ତ 'ପ୍ରଜାମଙ୍ଗଳ' ଅନୁଷ୍ଠାନର ସଭ୍ୟ ହେଲେ। ଏହି ଅନୁଷ୍ଠାନକୁ ସେମାନେ ''ମୟୂରଭଞ୍ଜ କଂଗ୍ରେସ'' ବୋଲି ମଧ ପ୍ରଚାର କରୁଥିଲେ। ଏଥିପାଇଁ କଟକ, ପୁରୀ, ବାଣପୁର, ଅଞ୍ଚଳର କେତେକ ଖଦଡ଼ପିନ୍ଧା ଟାଉଟରଙ୍କୁ ଅଣାଇ ସେହିମାନେ ହିଁ ପ୍ରକୃତ କଂଗ୍ରେସ କର୍ମୀ ବୋଲି ଜନସାଧାରଣଙ୍କୁ ପରିଚୟ ଦେଲେ ଓ ତାଙ୍କୁ ଲଗାଇ ପ୍ରଜାମଣ୍ଡଳ ବିରୁଦ୍ଧରେ ପ୍ରଚାର କରାଇଲେ। ଶରତବାବୁ ଓ ପ୍ରଜାମଣ୍ଡଳ କର୍ମୀମାନଙ୍କ ବିରୁଦ୍ଧରେ ନାନା ମିଥ୍ୟା ଓ କୁତ୍ସା ପ୍ରଚାର କରିବା ଥିଲା ସେମାନଙ୍କ ପ୍ରଧାନ କାର୍ଯ୍ୟ। ଏହାଦ୍ୱାରା ସେମାନେ ସହଜରେ ପ୍ରଜାମଣ୍ଡଳକୁ ବଦନାମ କରିପାରିବେ ବୋଲି ଆଶାପୋଷଣ କରିଥିଲେ। ରାଜ୍ୟ ପୋଲିସ୍ ବିଭାଗର ସର୍ବୋଚ୍ଚ କର୍ତ୍ତା ଶ୍ରୀରାମଚନ୍ଦ୍ର ଦାଶଙ୍କ ସାନଭାଇ ଶ୍ରୀ ହରିଶ ଚନ୍ଦ୍ର ଦାଶ 'ପ୍ରଜାମଙ୍ଗଳ'ର ନେତୃତ୍ୱ ନେଇଥିଲେ।

ଓଡ଼ିଶାର କେତେକ ଗୋଠଖଣ୍ଡିଆ କଂଗ୍ରେସ ବ୍ୟକ୍ତି ଶ୍ରୀ ହରିଶ ଚନ୍ଦ୍ର ଦାଶଙ୍କ ଜରିଆରେ ମୟୂରଭଞ୍ଜ ରାଜ ସରକାରଙ୍କ ଅର୍ଥପାଇଁ ମୟୂରଭଞ୍ଜ କଂଗ୍ରେସ ଓ ପ୍ରଜାମଣ୍ଡଳ ବିରୋଧୀ ଅନୁଷ୍ଠାନକୁ ଭିତିରିଆ ସମର୍ଥନ କରୁଥିବାର ଜଣା ପଡ଼ିଥିଲା । ମୟୂରଭଞ୍ଜ ଅର୍ଥରେ କଟକରୁ ''ଗଡ଼ଜାତ'' ନାମରେ ଏକ ସାପ୍ତାହିକ ଖବରକାଗଜ ମୁଦ୍ରଣ କରି ତହିଁରେ ପ୍ରଜାମଣ୍ଡଳ ବିରୁଦ୍ଧରେ ନାନା ମିଥ୍ୟା ଓ ଦୂରଭିସନ୍ଧିମୂଳକ ଲେଖାମାନ ପ୍ରକାଶ କରାଗଲା । ପ୍ରଜାମଣ୍ଡଳ କର୍ମୀଙ୍କୁ ସମାଜରେ ନିନ୍ଦିତ କରାଇବାପାଇଁ ଚେଷ୍ଟା ଚାଲିଲା ଓ ସେମାନଙ୍କ ପରିବାରର ଲୋକଙ୍କୁ ଭୟଭୀତ କରାଯିବାର ଉଦ୍ୟମ ଅବ୍ୟାହତ ରହିଲା । ମାତ୍ର ଏହାଦ୍ୱାରା ଭୟଭୀତ ନହୋଇ ''ପ୍ରଜାମଣ୍ଡଳ'' ର କର୍ମୀମାନେ ଜନସାଧାରଣଙ୍କ ସମର୍ଥନ ଲାଭ କରିବାପାଇଁ ଗାଁ ଗାଁ ବୁଲି ଗୋଟିଏ ପରେ ଗୋଟିଏ ଗଠନମୂଳକ କାର୍ଯ୍ୟ ହାତକୁ ନେଇ ଚାଲିଲେ । ହାଟ ପଟ୍ଟାଦାରମାନେ ଅନ୍ୟାୟଭାବରେ ଅଧିକ ମାହାସୁଲ ଆଦାୟ କରୁଥିବାରୁ ତାହା ବିରୁଦ୍ଧରେ ଏବଂ ନିଶା ନିବାରଣପାଇଁ ପ୍ରଜାମଣ୍ଡଳ କର୍ମୀମାନେ ଜୋରଦାର ପ୍ରଚାର ଆରମ୍ଭ କଲେ । ଏହା ଫଳରେ ହାଟ ପଟ୍ଟାଦାର ମାନେ ମାହାସୁଲ ଆଦାୟ କରି ନପାରି କ୍ଷତି ଗ୍ରସ୍ତ ହେଲେ ଏବଂ ପୋଲିସଙ୍କ ସହାୟତାରେ ପ୍ରଜାମଣ୍ଡଳ କର୍ମୀଙ୍କ ନାମରେ ନାନା ମିଥ୍ୟା ମୋକଦ୍ଦମା ମାନ ଆରମ୍ଭ କଲେ ।

ବାଲିଡିହାର ଭଗବାନ ଦାସ ଓ ହୁଡିଂ ସିଂ ନାମକ ଦୁଇଜଣ କର୍ମୀଙ୍କ ବିରୁଦ୍ଧରେ ଏ ପ୍ରକାର ମୋକଦ୍ଦମା ପ୍ରଥମେ ଆରମ୍ଭ ହେଲା ଏବଂ ପୋଲିସ୍ ତାଙ୍କୁ ଗିରଫ କରି ଜେଲକୁ ନେଲା । ମୁଁ ନିଜେ ଏହି ସମୟରେ ବାଲିଡିହା ଯାଇ ସେମାନଙ୍କୁ ଭୟ ନକରିବାପାଇଁ ସାହାସ ଦେଇଥିଲି । ଏହା ପରେ ପରେ ଖୁଣ୍ଟାର ପୂର୍ଣ୍ଣ ଚୌଧୁରୀ, ଇଟା ମୁଣ୍ଡିଆର ହରେକୃଷ୍ଣ ସାହୁ, ପାଞ୍ଚପୀଢ଼ର ଶିବପ୍ରସାଦ ମହାନ୍ତ । ଉକ୍ତ ବନ୍ଧୁ ମହାନ୍ତଙ୍କ ନାମରେ ମଧ୍ଯ ମିଥ୍ୟା ମୋକଦ୍ଦମା ମାନ ରୁଜୁ କରାଗଲା । ଆମ୍ବଯୋଡ଼ା ଗାଁରେ ନୂତନ ସ୍କୁଲ ଘର ତିଆରି କରିବା ଅପରାଧରେ ଶରତବାବୁ ତଥା ଗ୍ରାମବାସୀଙ୍କ ନାମରେ ଚୋରୀ ଅଭିଯୋଗରେ ଗିରିଶ ରାୟଙ୍କ ନାମରେ ଷଡ଼ଯନ୍ତ୍ରମୂଳକ ମୋକଦ୍ଦମା ଦାୟେର ହେଲା । ଏତଦ୍ ବ୍ୟତୀତ ପ୍ରଜାମଣ୍ଡଳ ତରଫରୁ ବିଭିନ୍ନ ସ୍ଥାନରେ ହେଉଥିବା ସଭାଗୁଡ଼ିକ ପୋଲିସ୍ ସହାୟତାରେ ''ପ୍ରଜାମଣ୍ଡଳ'' ଦଳର ଭଡ଼ାଟିଆ ଗୁଣ୍ଡାଙ୍କ ଦ୍ୱାରା ଗଣ୍ଡଗୋଳ କରାଯାଉଥିଲା ଓ ଅଧିକ ଗଣ୍ଡଗୋଳ ହେବାର ଆଳ ଦେଖାଇ ସଭାକୁ ଭଣ୍ଡୁର କରିବାପାଇଁ ୧୪୪ ଧାରା ଜାରି କରାଯାଉଥିଲା । ସେହିପରି ଖୁଣ୍ଟାର ଶିଳଘାଟି ମୌଜାରେ ବନ୍ଧ ବନ୍ଧା ଯାଉଥିଲାବେଳେ ସେଠାରେ ମଧ୍ୟ ୧୪୪ ଧାରା ଲାଗୁ କରାଯାଇଥିଲା, ମାତ୍ର ''ପ୍ରଜାମଣ୍ଡଳ'' କର୍ମୀମାନେ ୧୪୪ ଧାରା ଭଙ୍ଗକରି ବନ୍ଧ ବନ୍ଧାଇବା କାର୍ଯ୍ୟ ଚାଲୁ ରଖିବାରୁ ୧୪୪ ଧାରା ଭଙ୍ଗ ଅପରାଧରେ ବହୁ କର୍ମୀଙ୍କୁ ଗିରଫ କରାଗଲା ଏବଂ ଏହି ଅଞ୍ଚଳର ଅବସ୍ଥା ଅତ୍ୟନ୍ତ ଉତ୍ତେଜନାପୂର୍ଣ୍ଣ ରହିଲା । ଏହି ସମୟରେ ମୋର ପୁନର୍ବିବାହ(ପୁଆଣୀଘର) ପାଇଁ ମୁଁ କେନ୍ଦୁମୁଣ୍ଡିରେ ଥିଲି । ମାତ୍ର ମୋର ଉପସ୍ଥିତି ସେଠାରେ ଅତ୍ୟନ୍ତ ଜରୁରୀ ହୋଇପଡ଼ିବାରୁ ଆମ୍ବଜୋଡ଼ାରୁ ମୋ ପାଖକୁ ଖବର ଗଲା । ଏଣୁ ପୁନର୍ବିବାହର ୪ର୍ଥ ଦିନରେ ମୋତେ କେନ୍ଦୁମୁଣ୍ଡିରୁ ଚାଲିଆସି ଏଇ ଗୁରୁତର ପରିସ୍ଥିତିର ସମ୍ମୁଖୀନ ହେବାକୁ ପଡ଼ିଲା । ଉକ୍ତ ଶିଳଘାଟି ବନ୍ଧ ନିର୍ମାଣ ବିଷୟରେ ପରବର୍ତ୍ତୀ ପର୍ଯ୍ୟାୟରେ ଆଲୋଚନା କରାଯାଇଛି ।

# ଖୁଣ୍ଟାରେ ଗୁଣ୍ଡାମୀ ଓ ଚଳନ୍ତା ସଭା

ଖୁଣ୍ଟା ଥାନାର ଖୁଣ୍ଟାଠାରେ ପ୍ରଜାମଣ୍ଡଳ ତରଫରୁ ହେବାକୁ ଥିବା ଏକ ସାଧାରଣ ସଭାରେ ଯୋଗଦେବାପାଇଁ ମୁଁ ଜୟପୁର ଦେଇ ସେଠାକୁ ଯାଉଥିବା ବେଳେ ହଠାତ୍ ଶ୍ରୀ ଗିରୀଶଚନ୍ଦ୍ର ରାୟଙ୍କ ସହିତ ଦେଖାହେଲା । ସେ ଥିଲେ ପ୍ରଜା ଆନ୍ଦୋଳନର ଉଦ୍ୟୋକ୍ତାମାନଙ୍କ ମଧ୍ୟରେ ଅନ୍ୟତମ । ମୁଁ ଆନ୍ଦୋଳନରେ ଯୋଗଦେବା ବେଳକୁ ସେ ପଢ଼ିବାପାଇଁ କଟକ ଯାଇଥିଲେ । ସେଦିନର ସଭାରେ ସେ ଯୋଗଦେବେ ଓ ପ୍ରଜାମଣ୍ଡଳରେ ସାମିଲ ହେବେ ବୋଲି ମୋତେ ଜବାବ୍ ଦେଲେ ଓ ମୁଁ ସଭାରେ ପହଞ୍ଚିଲି ଓ ମୋ ପରେ ପରେ ଗିରୀଶବାବୁ ମଧ ପହଞ୍ଚିଲେ । ସଭା ହେବା ସ୍ଥାନରେ କିଛି ହରିଜନ ଲୋକ ମଦ ଖାଇ ରୀତିମତ୍ ତାମସା ଆରମ୍ଭ କରିଦେଇଛନ୍ତି । ସଭାକୁ ଭଣ୍ଡୁର କରିବା ଓ ସଭାରେ ଗୁଣ୍ଡାମୀ କରିବାପାଇଁ ପ୍ରଜାମଣ୍ଡଳରେ ଘୋର ବିରୋଧୀ ସ୍ଥାନୀୟ ସର୍ଦ୍ଦାର ଶ୍ରୀ ପିତାମ୍ବର ଚୌଧୁରୀଙ୍କ ଇଙ୍ଗିତରେ ଏସବୁ କରାଯାଇଥିଲା । ଲୋକେ ବହୁ ସଂଖ୍ୟାରେ ଶୋଭାଯାତ୍ରାରେ ସଭାରେ ଯୋଗ ଦେବାପାଇଁ ଆସୁଥିବାର ଦେଖି ମୁଁ ଆମ କର୍ମୀମାନଙ୍କୁ କହିଲି "ମୁଁ ଏବଂ ଗିରୀଶବାବୁ ଯେଉଁଠି ଠିଆ ହୋଇଯିବୁ ସମସ୍ତେ ଆମ ଦୁଇଜଣଙ୍କୁ ଘେରି ଯାଇ ଭିଡ଼ାଭିଡ଼ି ହୋଇ ବସି ଯିବେ ଓ ଗୁଣ୍ଡାମାନଙ୍କୁ ଭିତରକୁ ଛାଡ଼ିବେ ନାହିଁ ।" ସମସ୍ତେ ତାହାହିଁ କଲେ ଓ ମୋ ସଭାପତିତ୍ୱରେ ସଭା କାର୍ଯ୍ୟ ଆରମ୍ଭ ହେଲା । ଏହା ଦେଖି ସେଠା ସର୍ଦ୍ଦାର ଶ୍ରୀ ପିତାମ୍ବର ଚୌଧୁରିଙ୍କ ନେତୃତ୍ୱରେ ପ୍ରଜାମଙ୍ଗଳ କର୍ମୀ ଓ ଗୁଣ୍ଡାମାନେ ସଭା ଭିତରକୁ ପଶିବାକୁ ଉଦ୍ୟମ କଲେ ମାତ୍ର ଆମ ଲୋକମାନେ ବାଟ ନ ଛାଡ଼ିବାରୁ ସେମାନେ ଲୋକଙ୍କ ଉପରେ ମାଡ଼ି ଭିତରକୁ ପଶି ମୋତେ ଧରିବାପାଇଁ ଆସିବାମାତ୍ରେ ସମସ୍ତେ ଘେରିଯାଇ ସେମାନଙ୍କୁ ବାଧା ଦେଲେ । ସଙ୍ଗେ ସଙ୍ଗେ ଆମ ଲୋକେ ମୋତେ ଓ ଗିରୀଶବାବୁଙ୍କୁ କାନ୍ଧରେ ବସାଇ ନେଇ ଗଲେ ଏବଂ ସେହି ଚାଲିବା ଅବସ୍ଥାରେ ସଭାକାର୍ଯ୍ୟ ଚାଲିଲା । ଏହିପରି ଆମେ ଚାଲି ଚାଲି ପ୍ରଜାମଣ୍ଡଳର ଏକ ବଡ଼ ସମର୍ଥକ ଗାଁ ଶିମଗଡ଼ିଆରେ ପହଞ୍ଚିଲୁ । ସେଠାରେ ପୁଣି ଏକ ସଭା ହେଲା । ଉକ୍ତ ସଭାରେ ସେ ଅଞ୍ଚଳର ପ୍ରତି ଗାଁରେ ପ୍ରତି ଘର କାନ୍ଥରେ "ସର୍ଦ୍ଦାର ଓ ପୋଲିସ୍ ଆମର ଚାକର" ବୋଲି ଲେଖା ଯିବାର ଓ ଖୁଣ୍ଟାର ହରିଜନମାନଙ୍କଠାରୁ ତାଙ୍କ ତିଆରି ପାଛିଆ, ଟୋକେଇ ଓ କୁଲା ପ୍ରଭୃତି କେହି କିଣିବେ ନାହିଁ ବୋଲି ନିଷ୍ପତ୍ତି ନିଆଗଲା । ପ୍ରଜାମଣ୍ଡଳର ଏଭଳି ପ୍ରଭାବ ଓ ସଂଗଠନ ଥିଲା ଯେ, ତହିଁ ପରଦିନ ସେ ଅଞ୍ଚଳର ପ୍ରାୟ ସବୁ କାନ୍ଥରେ ଏକଥା ଲେଖା ହୋଇଗଲା ଓ ଖୁଣ୍ଟାର ହରିଜନମାନଙ୍କଠାରୁ କେହି କୌଣସି ଜିନିଷ କିଣିଲେ ନାହିଁ । ଏହା ପରେ ପରେ ଖୁଣ୍ଟା ଲୋକଙ୍କ ଅନୁରୋଧକ୍ରମେ ଆଠ ଦିନ ପରେ ପୁଣି ସେହି ସ୍ଥାନରେ ଏକ ବିରାଟ ସାଧାରଣ ସଭା ହେଲା । ଉକ୍ତ ସଭାରେ ପ୍ରଜାମଣ୍ଡଳର ସଭାପତି ଶରତବାବୁ ଯୋଗ ଦେଇଥିଲେ । ସଭାରେ ପୂର୍ବ ଘଟଣାର ତୀବ୍ର ନିନ୍ଦା କରାଗଲା । ସେଠା ହରିଜନମାନେ ସେମାନଙ୍କ ସେଦିନ ଆଚରଣପାଇଁ ସଭାରେ ଛିଡ଼ା ହୋଇ ଭୁଲ୍ ସ୍ୱୀକାର କରି କ୍ଷମା ଭିକ୍ଷା କରିବାରୁ ସେମାନଙ୍କ ଉପରୁ ବାସନ୍ଦ ବ୍ୟବସ୍ଥା ଉଠାଇ ନିଆଗଲା । ଖୁଣ୍ଟାରେ ପ୍ରଜାମଣ୍ଡଳର ସ୍ଥିତି ଆହୁରି ମଜଭୁତ ହେବାକୁ ଲାଗିଲା । ଗିରୀଶବାବୁ ପଢ଼ା ଛାଡ଼ି ଜଣେ ସକ୍ରିୟ କର୍ମୀଭାବେ ପ୍ରଜାମଣ୍ଡଳର ସମସ୍ତ କାର୍ଯ୍ୟରେ ନିଜକୁ ନିୟୋଜିତ କଲେ ।

## ‘ଗୟଳମରା’ ବନ୍ଧ ନିର୍ମାଣ

ଖୁଣ୍ଟା ଥାନାର ଆଦିବାସୀ-ବହୁଳ ଅଞ୍ଚଳଗୁଡ଼ିକରେ ପ୍ରଜାମଣ୍ଡଳର ସବୁଠାରୁ ଦୃଢ଼ ସଂଗଠନ ଥିଲା । ତେଣୁ ସେ ଅଞ୍ଚଳରେ ପ୍ରଜାମଣ୍ଡଳର ସଂଗଠନକୁ ଭାଙ୍ଗିଦେବାପାଇଁ ‘ପ୍ରଜାମଙ୍ଗଳ’ ତରଫରୁ ବେଶୀ ଉଦ୍ୟମ ଚାଲିଥାଏ । ସେଠା ସର୍ଦ୍ଦାର ଶ୍ରୀ ପୀତାମ୍ବର ଚୌଧୁରୀ ଖୁଣ୍ଟାଠାରେ ‘ପ୍ରଜାମଙ୍ଗଳ’ ତରଫରୁ ଏକ ଅଧିବେଶନ କରିବାର ଆୟୋଜନ କଲେ । ଏଥିରେ ତାଙ୍କୁ ସହଯୋଗ କରିଥିଲେ ପ୍ରଜାମଙ୍ଗଳର ନେତା ଶ୍ରୀ ହରୀଶ ଚନ୍ଦ୍ର ଦାସ । ପ୍ରଜାମଣ୍ଡଳକୁ ଭାଙ୍ଗିବାପାଇଁ ଶ୍ରୀ ଦାସ ମହାରାଜାଙ୍କ ପାଖରୁ ପ୍ରଚୁର ଅର୍ଥ ପାଉଥିଲେ । ଉକ୍ତ ଅର୍ଥରୁ ଅଳ୍ପକିଛି ଏଥିପାଇଁ ଖର୍ଚ୍ଚ କରି ଅବଶିଷ୍ଟ ଅର୍ଥରେ ବ୍ୟକ୍ତିଗତ ସ୍ୱାର୍ଥସିଦ୍ଧି କରୁଥିଲେ । ସେ ଉକ୍ତ ଅଧିବେଶନପାଇଁ ଖୁଣ୍ଟା ସରଦାର ଶ୍ରୀ ପୀତାମ୍ବର ଚୌଧୁରୀଙ୍କୁ କିଛି ଅର୍ଥ ପ୍ରଦାନ କଲେ । ‘ପ୍ରଜାମଙ୍ଗଳ’ର ଅଧିବେଶନର ଅଳ୍ପ କିଛିଦିନ ପୂର୍ବରୁ ‘ପ୍ରଜାମଣ୍ଡଳ’ ତରଫରୁ ‘‘ହୋସିଆର’’ ନାମରେ ଏକ ପ୍ରଚାରପତ୍ର ବଣ୍ଟାଯାଇ ରାଜାଙ୍କ ପାଖଲଗା ଲୋକଙ୍କ ଚାଲବାଜି ପ୍ରତି ଲୋକଙ୍କୁ ସତର୍କ କରାଇ ଦିଆଗଲା । ଫଳରେ ‘ପ୍ରଜାମଙ୍ଗଳ’ର ଆଡ଼ମ୍ବରପୂର୍ଣ୍ଣ ଅଧିବେଶନକୁ ଲୋକେ ଗଲେ ନାହିଁ । ସେମାନଙ୍କ ସମସ୍ତ ଚେଷ୍ଟା ଫସର ଫାଟିଗଲା । ଠିକ୍ ସେତିକିବେଳେ ଖୁଣ୍ଟାଠାରୁ ଦୁଇ ମାଇଲ ଦୂରରେ ଅବସ୍ଥିତ ଗୟଳମରା ଗ୍ରାମରେ ଗ୍ରାମବାସୀଙ୍କ ବ୍ୟବହାର ଓ ଚାଷଜମିକୁ ପାଣି ଯୋଗାଇବାପାଇଁ ପ୍ରଜାମଣ୍ଡଳର ଡାକରାରେ ହଜାର ହଜାର ଲୋକ ଆସି ଏକ ମାଟିବନ୍ଧ ନିର୍ମାଣରେ ଲାଗିପଡ଼ିଲେ ଏବଂ ଅଳ୍ପ ଦିନମଧ୍ୟରେ ବନ୍ଧଟି ସଂପୂର୍ଣ୍ଣ ହୋଇ ଲୋକଙ୍କ ବ୍ୟବହାରରେ ଲାଗିଲା । ଏହି ବନ୍ଧ ନିର୍ମାଣ ପ୍ରଜାମଙ୍ଗଳର ମନୋବଳ ବଢ଼ିବାରେ ସହାୟକ ହେଲା ।

## ଆମ୍ବଯୋଡ଼ାରେ ଦମନଲୀଳା

ପ୍ରଜାମଣ୍ଡଳର ମୁଖ୍ୟ କାର୍ଯ୍ୟାଳୟ ଥିବା ଆମ୍ବଯୋଡ଼ା ଗ୍ରାମଟି ଶ୍ରୀ ଶ୍ରୀ ରଘୁନାଥ ଜୀଉ ଠାକୁରଙ୍କ ଲାଖରାଜ ମୌଜା ଥିଲା । ଗ୍ରାମବାସୀମାନେ ଠାକୁରଙ୍କ ଜମି ଚାଷ କରି ଠାକୁରଙ୍କ ମଠକୁ ଧାନ ଦିଅନ୍ତି ଏବଂ ତାଙ୍କ ଅମାରରୁ ଧାନ କରଜ କରି ଅଭାବ ବେଳେ ଚଳନ୍ତି । ଗ୍ରାମରେ ବିଭିନ୍ନ ଜାତିର ପ୍ରାୟ ୪୦୦ରୁ ଊର୍ଦ୍ଧ୍ୱ ଲୋକ ଥିଲେ । ଏହି ଗ୍ରାମରେ ଶରତବାବୁଙ୍କର ଚାଷଜମି ସହ ନିଜର ଘର ଥିଲା । ଶିକ୍ଷାନୁଷ୍ଠାନଟିଏ ନଥିବାରୁ ଶରତବାବୁଙ୍କ ଉଦ୍ୟମରେ ଓ ଜନସାଧାରଣଙ୍କ ସହଯୋଗରେ ଗୋଟିଏ ଚାଳଘର ତିଆରି କରାଯାଇ ପାଠଶାଳା ଆରମ୍ଭ କରାଗଲା । ଶରତବାବୁ କିମ୍ବା ପ୍ରଜାମଣ୍ଡଳର ଜନହିତକର କାମକୁ ମଧ୍ୟ ସରକାରୀ ମହଲରେ ସନ୍ଦେହ କରାଯାଉଥିଲା । ସେହି ହେତୁରୁ ସରକାରୀ ଜମିରେ ବିନା ଅନୁମତିରେ ପାଠଶାଳା ପାଇଁ ଘର ତିଆରି କରାଯାଇଥିବାରୁ ଶରତବାବୁଙ୍କ ସମେତ ୧୭/୧୮ଜଣ ଲୋକଙ୍କ ବିରୁଦ୍ଧରେ ଏକ ମୋକଦ୍ଦମା ରୁଜୁ ହେଲା । ସେତେବେଳେ ଶ୍ରୀଯୁକ୍ତ ବିଦ୍ୟାଧର ମହାପାତ୍ର ନାମକ ଜଣେ ଅତି ଦକ୍ଷ ଅଫିସର ବାରିପଦାରେ ଏସ୍.ଡ଼ି.ଓ. ଥିଲେ । ସେ ଶରତବାବୁଙ୍କ ଅନ୍ତରଙ୍ଗ ବନ୍ଧୁ ଥିଲେ ଓ ପ୍ରଜାମଣ୍ଡଳକୁ ଆନ୍ତରିକ ସମର୍ଥନ କରୁଥିଲେ । ଉକ୍ତ ମୋକଦ୍ଦମାର ବିଚାର କରି ସେ ନିର୍ଦ୍ଦୋଷରେ ସମସ୍ତଙ୍କୁ ଖଲାସ୍ କରି ନିଜର

ସତ୍‌ସାହସର ପରିଚୟ ଦେଇଥିଲେ । ଏହି ଖଲାସ୍ ହେବା ଘଟଣାରେ ରାଜ୍ୟର ଦେଓ୍ୱାନ୍ ଓ ସର୍ବୋଚ୍ଚ ପୋଲିସ୍ କର୍ତ୍ତା ବିଶେଷଭାବେ ମର୍ମାହତ ହେଲେ । କାରଣ ସେମାନେ ଏହି ମିଥ୍ୟା ମୋକଦ୍ଦମାର ସ୍ରଷ୍ଟା ଥିଲେ ।

ଏହି ଐତିହାସିକ ମୋକଦ୍ଦମାର ରାୟ ପରେ ସେଦିନ ରାତିରେ ଆମ୍ୱଯୋଡ଼ା ଲୋକେ ଘରେ ପହଞ୍ଚିବା ପୂର୍ବରୁ ରାଜ୍ୟର ଦେଓ୍ୱାନ୍ ଓ ପୋଲିସ୍ ମୁଖ୍ୟଙ୍କ ପରାମର୍ଶରେ ବେତନଟୀ ତହସିଲଦାର ଓ ମଠ ମେନେଜର, କୁଲି ଶ୍ରେଣୀର କେତେକ ଲୋକଙ୍କୁ ଅଧିକ ମଜୁରୀ ଦେଇ ସରକାରୀ ଜମିରେ ତିଆରି ହୋଇଥିବା ଉକ୍ତ ପାଠଶାଳା ଗୃହଟିକୁ ଭାଙ୍ଗି ଦେବାପାଇଁ ସେହି ରାତିରେ ଆଲୁଅ ଧରି ସେଠାରେ ପହଞ୍ଚିଲେ । ଭାଙ୍ଗିବା କାମ ଆରମ୍ଭ କଲା ମାତ୍ରେ ଗ୍ରାମରକ୍ଷୀମାନଙ୍କ ହାବୁଡ଼ରେ ପଡ଼ିଗଲେ । ଗ୍ରାମରକ୍ଷୀମାନଙ୍କ ଡାକରାରେ ସଙ୍ଗେ ସଙ୍ଗେ ସେଠାରେ ବହୁ ଲୋକ ଜମା ହୋଇ ଏହି ଅନ୍ୟାୟ କାର୍ଯ୍ୟର ପ୍ରତିରୋଧ କରିବା ସମୟରେ ମାରପିଟ୍ ହେବାରୁ ଘରଭାଙ୍ଗିବା ପାଇଁ ଯାଇଥିବା କୁଲିମାନେ ଭୟରେ ସେଠାରୁ ପଳାଇଗଲେ । ମଠ ମେନେଜର ଜଣେ ବୁଢ଼ା ଲୋକ ହୋଇଥିବାରୁ ସେ ପଳାଇ ଯାଇ ନପାରି ଅଟକ ରହିଲେ । ସ୍କୁଲଘର ତିଆରି ମୋକଦ୍ଦମା ବିଚାର ଚାଲିଥିବା ବେଳେ ଗ୍ରାମର ମୁଖିଆ ମୁଖିଆ ଲୋକମାନେ ପ୍ରାୟ ସବୁବେଳେ ବାରିପଦା ଆସୁଥିବାରୁ ଗ୍ରାମରକ୍ଷା ପାଇଁ ଅନ୍ୟମାନଙ୍କୁ ରାତିରେ ପହରା ଦେବାପାଇଁ କୁହାଯାଇଥିଲା । ସେହି ହେତୁ ପାଠଶାଳା ଗୃହ ଭାଙ୍ଗିବାକୁ ଆସିଥିବା ଲୋକମାନେ ସେମାନଙ୍କ ହାବୁଡ଼ରେ ପଡ଼ିଥିଲେ ଓ ଭୟରେ ପଳାଇଯାଇଥିଲେ ।

ଏହି ଖବର ବାରିପଦାରେ ପହଞ୍ଚିବାମାତ୍ରେ ଶରତବାବୁ ଏବଂ ଆମେ ସମସ୍ତେ ସକାଳ ୧୦ଟା ବେଳକୁ ଆମ୍ୱଯୋଡ଼ାରେ ପହଞ୍ଚିଲୁ । ସେତେବେଳକୁ ଆମ୍ୱଯୋଡ଼ା ଏକ ପୋଲିସ୍ ଛାଉଣୀରେ ପରିଣତ ହୋଇଯାଇଥାଏ । ପୋଲିସ ଗ୍ରାମର ୨୦ଜଣ ଲୋକଙ୍କୁ ଗିରଫ କରି ବାରିପଦା ପଠାଇଲା ଏବଂ ପୋଲିସ୍‌ର ଉପସ୍ଥିତିରେ ଭଡ଼ାଟିଆ ଲୋକଙ୍କ ସାହାଯ୍ୟରେ ପାଠଶାଳାକୁ ଭଙ୍ଗାଯାଇ ବ୍ୟବହୃତ କାଠ ବାଉଁଶ କୁଟା ପ୍ରଭୃତି ଜବତ କରାଗଲା । ଲୋକଙ୍କ ସାହାଯ୍ୟ ସହଯୋଗରେ ତିଆରି ହୋଇଥିବା ଗୋଟିଏ ଶିକ୍ଷାନୁଷ୍ଠାନକୁ ସରକାରୀ କଳ ସାହାଯ୍ୟରେ ଭଙ୍ଗାଯିବା ମୟୂରଭଞ୍ଜରେ ପ୍ରଥମ ଥରପାଇଁ ହେଲା । ଗିରଫ ହୋଇଥିବା ଲୋକମାନଙ୍କୁ ଜିମାରେ ନ ଆଣିବା ପାଇଁ ଗ୍ରାମବାସୀ ନିଷ୍ପତ୍ତି ନେଲେ । ତିନିମାସ ଜେଲ ହାଜତରେ ରହିବା ପରେ ଉଚ୍ଚ ଅଦାଲତରେ ସମସ୍ତେ ଖଲାସ ହେଲେ । ଏହା ୧୯୪୨ ମସିହାର ଘଟଣା । ୧୯୪୮ମସିହାରେ ଶରତବାବୁଙ୍କ ନେତୃତ୍ୱରେ ମୟୂରଭଞ୍ଜ ମନ୍ତ୍ରୀମଣ୍ଡଳ ଗଠନ ହେଲା । ପରେ ପରେ ଆମ୍ୱଯୋଡ଼ାର ସେହି ସ୍ଥାନରେ ଏକ ସରକାରୀ ଉଚ୍ଚ ପ୍ରାଥମିକ ସ୍କୁଲ ପ୍ରତିଷ୍ଠା କରାଗଲା । ଶରତବାବୁଙ୍କର ଯେଉଁ ଚାଳଛପର ଘରଟିରେ ପ୍ରଜାମଣ୍ଡଳ ଆଶ୍ରମ ପ୍ରତିଷ୍ଠା ହୋଇ ସେଠାରୁ ଜାତୀୟ ଆନ୍ଦୋଳନ ଆରମ୍ଭ କରାଯାଇଥିଲା, ସେହି ଘରଟି ଠିକ୍ ପୂର୍ବ ପରି ରହିଛି । ତାଙ୍କ ସହିତ ସଂପୃକ୍ତ ଥିବା ଗ୍ରାମର ସେ କାଳର ଲୋକେ ପ୍ରାୟ ବିଦାୟ ନେଇ ଗଲେଣି । ସ୍ମୃତି ସ୍ୱରୂପ ପ୍ରତିବର୍ଷ ଅଗଷ୍ଟ୧୫ ଓ ଜାନୁୟାରୀ ୨୬ରେ ବେତନଟୀରେ ବ୍ଲକ ସ୍ତରୀୟ ପତାକା ଉତ୍ତୋଳନର ଅବ୍ୟବହିତ ପୂର୍ବରୁ ପ୍ରଥମେ ଆମ୍ୱଯୋଡ଼ାର ସେହି ସ୍ଥାନରେ ଜାତୀୟ ପତାକା

ଉତ୍ତୋଳନ କରାଯାଇ ଶରତବାବୁଙ୍କ ଫଟୋ ଚିତ୍ରରେ ମାଲ୍ୟାର୍ପଣ କରାଯାଏ । ଉକ୍ତ ଗୃହଟିକୁ ଆନ୍ଦୋଳନର ସ୍ମୃତି ମନ୍ଦିର ରୂପେ କୌଣସି ପରିବର୍ତ୍ତନ ନକରି ସେହିପରି ରଖାଯିବାର ମଧ୍ୟ ସ୍ଥିର୍ ହୋଇଛି ।

## ଭାରତରକ୍ଷା ଆଇନ୍‌ରେ ଗିରଫଦାରି

୧୯୪୦-୪୧ ମସିହାରେ କଂଗ୍ରେସ୍ ବ୍ୟକ୍ତିଗତ ସତ୍ୟାଗ୍ରହ ଆରମ୍ଭ କରିବାରୁ ସରକାର ଭାରତରକ୍ଷା ଆଇନ୍ ବଳରେ ବହୁ ଲୋକଙ୍କୁ ଗିରଫ କରିଥିଲେ । ୧୯୪୨ ମସିହା ପ୍ରାରମ୍ଭରେ ମୟୂରଭଞ୍ଜର ଦରବାର ଶାସନ, ଏହି ଆଇନ୍ ବଳରେ କେବଳ ମାତ୍ର ଦୁଇଜଣଙ୍କୁ ଗିରଫ କରିଥିଲେ ହେଁ କାହାରିକୁ ଅଟକ ରଖିନଥିଲେ । ଗିରଫ ହୋଇଥିବା ଦୁଇଜଣ ହେଲେ ଶ୍ରୀ ଜଗନ୍ନାଥ କମିଳା ଓ ଶ୍ରୀ ବଂଶୀଧର ରାଜ । ଏହି ଆଇନ୍ ବଳରେ ପ୍ରଜାମଣ୍ଡଳର ନେତା ଓ କର୍ମୀମାନଙ୍କୁ ବହୁସଂଖ୍ୟାରେ ଗିରଫ କରିଦେଲେ ଆନ୍ଦୋଳନ ଆପେ ଆପେ ବନ୍ଦ ହୋଇଯିବ ବୋଲି ମହାରାଜାଙ୍କୁ ବୁଝାଇବାର ଉଦ୍ୟମ ହୋଇଥିଲେ ହେଁ ତାହା ଫଳପ୍ରଦ ହୋଇନଥିଲା । ଉପରୋକ୍ତ ଦୁଇଜଣଙ୍କୁ ଗିରଫ କରାଯିବା ପରେ ପ୍ରଜାମଣ୍ଡଳ ଆନ୍ଦୋଳନ ଧିମେଇ ନଯାଇ ବରଂ ଅଧିକ ଶକ୍ତିଶାଳୀ ହେବାକୁ ଲାଗିଲା ।

## ମୟୂରଭଞ୍ଜ ପ୍ରଜା ପରିଷଦ ଓ ମୋର ପରାଜୟ

ସମଗ୍ର ଭାରତବର୍ଷରେ ଓ ଓଡ଼ିଶାର କେତେକ ଗଡ଼ଜାତ ରାଜ୍ୟରେ ଜାତୀୟ ମୁକ୍ତି ଆନ୍ଦୋଳନ ବ୍ୟାପକ ଆକାର ଧାରଣ କରୁଥିବାର ଜାଣି ଓ ମୟୂରଭଞ୍ଜ ରାଜ୍ୟରେ ତାହାର ପ୍ରଭାବ କ୍ରମଶଃ ବଢୁଥିବାର ଦେଖି ମହାରାଜା ବିଚଳିତ ହୋଇପଡ଼ିଲେ । ଏଥିରୁ ଲୋକମାନଙ୍କୁ ଦୂରେଇ ରଖିବାପାଇଁ ଏବଂ ସେମାନଙ୍କ ମଧ୍ୟରେ ସୃଷ୍ଟି ହୋଇଥିବା ରାଜନୈତିକ ଚେତନାକୁ ବିଭ୍ରାନ୍ତ କରିବାପାଇଁ ଅପଚେଷ୍ଟା ସ୍ୱରୂପ, ରାଜ୍ୟର ଚାରିଟି ସବ୍‌ଡ଼ିଭିଜନ୍‌ରେ ଚାରିଗୋଟି 'ପ୍ରଜାସଭା' ଗଠନ କରାଯାଇ ପ୍ରତ୍ୟେକ ''ପ୍ରଜାସଭା''ରୁ ସାବାଳକ ଭୋଟ ଜରିଆରେ ନିର୍ବାଚିତ ହୋଇଥିବା ତିନିଜଣ ଲେଖାଏଁ ପ୍ରତିନିଧିଙ୍କୁ ନେଇ ଏକ ''ପ୍ରଜା ପରିଷଦ'' ବା ''କେନ୍ଦ୍ର ପରିଷଦ'' ଗଠନ କରାଯିବାର ଘୋଷଣା କଲେ । ମାତ୍ର ମହାରାଜାଙ୍କ ଏ ଘୋଷଣା ଲୋକମାନଙ୍କ ଉପରେ ପ୍ରଭାବ ପକାଇ ପାରିଲା ନାହିଁ । ଲୋକେ ମହାରାଜାଙ୍କ ଏ ଘୋଷଣାକୁ ଏକ ରାଜନୈତିକ ଚାଲବାଜି ବୋଲି ଗ୍ରହଣ କଲେ । ଏହି ଘୋଷଣାନାମାରେ ଲୋକଙ୍କୁ ଭୋଟ ଅଧିକାର ଦେଇଥିଲେ ହେଁ ନିରପେକ୍ଷ ନିର୍ବାଚନ ଓ ଗୁପ୍ତଭୋଟର ବ୍ୟବସ୍ଥା ନଥିଲା । ସେଥିପାଇଁ ଲୋକମାନଙ୍କ ମନରେ ସନ୍ଦେହ ସୃଷ୍ଟି ହେଲା । ତଥାପି ଭାରତବର୍ଷର କୌଣସି ଗଡ଼ଜାତରେ ଏଭଳି ଅଧିକାର ଲୋକମାନଙ୍କୁ ଦିଆଯାଇନଥିଲା । ଏ ଦୃଷ୍ଟିରୁ ଏହା ପ୍ରଶଂସନୀୟ ଏବଂ ଅନ୍ୟମାନଙ୍କ ପାଇଁ ମୟୂରଭଞ୍ଜ ପଥପ୍ରଦର୍ଶକ । ୧୯୩୯ ମସିହାରୁ ଏହି ବ୍ୟବସ୍ଥା କାର୍ଯ୍ୟକାରୀ ହେବ ବୋଲି ମହାରାଜା ପୂର୍ବରୁ ଘୋଷଣା କରିଥିଲେ ମଧ୍ୟ ଦୀର୍ଘ ୭ବର୍ଷ ଧରି ଏ ଦିଗରେ କୌଣସି ପଦକ୍ଷେପ ନେଇ ନଥିଲେ । ୧୯୪୬ ମସିହାରେ ଏହି 'କେନ୍ଦ୍ର ପରିଷଦ' ଗଠନ କରାଯିବାପାଇଁ ନିର୍ବାଚନ ହେଲା । ପ୍ରଜାମଣ୍ଡଳ ତରଫରୁ ବେତନଟୀରୁ ଶ୍ରୀ ଶରତଚନ୍ଦ୍ର ଦାସ, କପ୍ତିପଦାରୁ ଶ୍ରୀ ଗିରୀଶ ଚନ୍ଦ୍ର ରାୟ ଏବଂ ପାଞ୍ଚପୀଢ଼ରୁ ଶ୍ରୀ ଶିବପ୍ରସାଦ ମହାନ୍ତି ମୟୂରଭଞ୍ଜ

'ପ୍ରଜାପରିଷଦ' ବା 'କେନ୍ଦ୍ର ପରିଷଦ' କୁ ନିର୍ବାଚିତ ହେଲେ । ବାମନ ଘାଟି ପ୍ରଜାସଭା ପାଇଁ ପ୍ରଜାମଣ୍ଡଳ ପ୍ରାର୍ଥୀ ଦେଇ ନଥିଲା । ମୁଁ ବାରିପଦା ପ୍ରଜାସଭାପାଇଁ ମାଝିଖଣ୍ଡ ପୀଢ଼ିରୁ ପ୍ରାର୍ଥୀ ହୋଇ ହାରିଗଲି । ପ୍ରଜାମଣ୍ଡଳ ତରଫରୁ ''କେନ୍ଦ୍ର ପରିଷଦ''କୁ ଉପଯୁକ୍ତ ପ୍ରାର୍ଥୀ ନିର୍ବାଚିତ ହୋଇପାରିଥିବାରୁ କର୍ମୀମାନଙ୍କ ମଧ୍ୟରେ ବିଶେଷ ଆନନ୍ଦ ଓ ଉତ୍ସାହ ପ୍ରକାଶ ପାଇଲା ।

## ଐତିହାସିକ ବେତନଟି ସଭା ଓ ବାରିପଦା ଚାଲ

ଖୁଣ୍ଟା ସଭାର ଆଠ ବା ଦଶ ଦିନ ପରେ ସେପ୍ଟେମ୍ବର ମାସର ପ୍ରଥମ ସପ୍ତାହରେ ବେତନଟି ଠାରେ ଏକ ବିରାଟ ସାଧାରଣ ସଭା ଅନୁଷ୍ଠିତ ହୋଇଥିଲା । ରୀତିମତ ପ୍ରଚାର ଓ ଜାତୀୟ ସ୍ତରରେ ଘଟୁଥିବା ଘଟଣାବଳୀର ପ୍ରଭାବ ହେତୁ ଏ ସଭାରେ ବହୁଜନ ସମାଗମ ହୋଇଥିଲା । ସଭାସ୍ଥଳ ଲୋକାରଣ୍ୟ ହୋଇ ପଡ଼ିଲା, ପ୍ରାୟ ପଚାଶ ହଜାର ଲୋକ ଏହି ସଭାରେ ଯୋଗ ଦେଇଥିଲେ । ସେତେବେଳେ ଡାକବାଜି ଯନ୍ତ୍ରର ବହୁଳ ପ୍ରଚଳନ ନ ଥିବାରୁ ଲୋକେ ଭାଷଣ ଶୁଣି ପାରି ନ ଥିଲେ । ଉକ୍ତ ସଭାରେ ପ୍ରଜାମଣ୍ଡଳର ସଭାପତି ଶ୍ରୀଯୁକ୍ତ ଶରତ୍ ଚନ୍ଦ୍ର ଦାସ ସଭାପତିତ୍ୱ କରିଥିଲେ । ଉପସ୍ଥିତ ସମସ୍ତ ଜନତାଙ୍କୁ ଏକ ପଟୁଆରରେ ଶୃଙ୍ଖଳିତ ଭାବରେ ବାରିପଦା ଯିବାପାଇଁ ସଭାପତି ମହୋଦୟ ନିର୍ଦ୍ଦେଶ ଦେଲେ । ଉକ୍ତ ପଟୁଆରର ନେତୃତ୍ୱ ନେବାପାଇଁ ମୋତେ ନିର୍ଦ୍ଦେଶ ଦିଆଗଲା । ମୁଁ ପ୍ରଜା ଆନ୍ଦୋଳନରେ ଯୋଗ ଦେବାର ମାତ୍ର ଅଳ୍ପ କେତେଦିନ ହୋଇଥାଏ ମୁରୁଡ଼ାଠାରେ ହେଉଥିବା ସଭାର ପ୍ରଚାର କରିବାପାଇଁ ହାଟ ହାଟ ବୁଲି ଡେଙ୍ଗୁରା ଦେବାପାଇଁ ମୋତେ ସଭାପତିଙ୍କର ନିର୍ଦ୍ଦେଶ ହେଲା । ମୁଁ ତାଙ୍କ ନିର୍ଦ୍ଦେଶ ମାନି କାନ୍ଧରେ ଢୋଲ ପକାଇ ଗାଁ ଗାଁ ଓ ହାଟକୁ ହାଟ ଯାଇ ଡେଙ୍ଗୁରା ଦେଇଥିଲି । ସେହି ଦିନଠାରୁ ମୋ ପ୍ରତି ତାଙ୍କର ଦୃଢ଼ବିଶ୍ୱାସ ସୃଷ୍ଟି ହୋଇଥିଲା । ତା ନ ହୋଇଥିଲେ ମୋ ପରି ଜଣେ ମାତ୍ର ୨୩ବର୍ଷର ଯୁବକକୁ ଏପରି ଏକ ଗୁରୁ ଦାୟିତ୍ୱ ଅର୍ପଣ କରି ନଥାଆନ୍ତେ । ତାଙ୍କ ସହିତ ମୋର ପ୍ରଥମ ସାକ୍ଷାତ ଦିନରେ ହିଁ ସେ ମୋତେ କହିଥିଲେ, ''ତୁମେ ଜଣେ ଶୃଙ୍ଖଳିତ ସୈନିକ ହୋଇପାରିଲେ, ଦିନେ ତୁମେ ହିଁ ସେନାପତି ହେବ ।'' ତାଙ୍କର ଏହି ଉକ୍ତି ମୋର ପ୍ରାଣକୁ ମନ୍ଥନ କରି ପକାଇଲା ।

ସଭା ଶେଷ ହେବାପରେ ମହାରାଜାଙ୍କ ଏକ ପ୍ରତିନିଧି ଦଳ ଶରତ୍‌ବାବୁଙ୍କୁ ସାକ୍ଷାତ କରି ଏହି ପଟୁଆର ବାରିପଦା ପର୍ଯ୍ୟନ୍ତ ନ ଯାଇ ସହରର ଅନତିଦୂରରୁ ଫେରାଇ ନେବାକୁ ଅନୁରୋଧ କଲେ । ଏହି ଅନୁରୋଧ ମହାରାଜାଙ୍କର ବୋଲି ସେମାନେ ପ୍ରକାଶ କରି କହିଲେ । ମହାରାଜା ମୟୂରଭଞ୍ଜ ମାଟିରେ ରକ୍ତପାତ କରାଇବାକୁ ଚାହାନ୍ତି ନାହିଁ । ତେଣୁ ଅନ୍ୟ ଗଡ଼ଜାତ ଅଂଚଳ ଭଳି କୌଣସି ପ୍ରକାର ଦମନମୂଳକ କାର୍ଯ୍ୟାନୁଷ୍ଠାନ ଗ୍ରହଣ ନ କରିବାକୁ ସ୍ଥିର କରିଛନ୍ତି । ତାଙ୍କର ଏହି କାର୍ଯ୍ୟରେ ମହାରାଜାଙ୍କୁ ସାହାଯ୍ୟ କରିବାକୁ ଅନୁରୋଧ କରିଥିବା ବିଷୟ ମଧ୍ୟ ପ୍ରତିନିଧି ଦଳ ଶରତ୍ ବାବୁଙ୍କ ଠାରେ ପ୍ରକାଶ କଲେ । ପ୍ରତିନିଧି ଦଳ ଚାଲିଗଲା ପରେ ଶରତ୍‌ବାବୁ ମୋତେ, ଗିରୀଶବାବୁ ଓ ଅନ୍ୟ କେତେକ ମୁଖ୍ୟ କର୍ମୀଙ୍କୁ ନେଇ ମହାରାଜାଙ୍କ ଅନୁରୋଧ ବିଷୟରେ ଆଲୋଚନା କଲେ । ଆଲୋଚନାରେ ସ୍ଥିର କରାଗଲା ଯେ, ଯେଉଁଠାରେ ପଟୁଆର ଆଗକୁ ଯିବାପାଇଁ ସରକାର ବାଧା

ଦେବେ ସେହିଠାରୁ ହିଁ ପଟୁଆର ଫେରିଆସିବ । ତଦନୁଯାୟୀ ପଟୁଆରର ନେତୃତ୍ୱ ନେଉଥିବା ସମସ୍ତଙ୍କୁ ନିର୍ଦ୍ଦେଶ ଦିଆଗଲା ।

ସେଦିନ ଠିକ୍ ଅର୍ଦ୍ଧରାତ୍ରରୁ ପଟୁଆର ବାରିପଦା ଅଭିମୁଖେ ବାହାରିଲା । ମୁଁ ପଟୁଆରର ପଛରେ ରହି ବାଟରେ ଯୋଗ ଦେଉଥିବା ବିଭିନ୍ନ ଗ୍ରାମର ଲୋକମାନଙ୍କୁ ଶୃଙ୍ଖଳିତଭାବରେ ପଟୁଆରରେ ସାମିଲ କରୁଥିବାର ବ୍ୟବସ୍ଥା କରୁଥାଏଁ ଓ ଗିରୀଶବାବୁ ଅଗ୍ରଗାମୀ ହୋଇ ପଟୁଆର ପରିଚାଳନା କରୁଥାଆନ୍ତି । ପ୍ରତି ପ୍ରଗଣାର ମୁଖ୍ୟ କର୍ମୀମାନେ ତାଙ୍କ ପ୍ରଗଣା ସମିତିର ଲୋକମାନଙ୍କ ସହ ପତାକା ଓ ନିଜ ନିଜ ଅଂଚଳର ନାମ ଲେଖା ଥିବା ପୋଷ୍ଟରମାନ ଧରି ପଟୁଆରରେ ଚାଲିଥାଆନ୍ତି । ରାସ୍ତା ପାଖ ଗ୍ରାମଗୁଡ଼ିକର ଲୋକମାନେ ଏଥିରେ ପ୍ରଭାବିତ ହୋଇ ଆପେ ଆପେ ଆସି ଏଥିରେ ଯୋଗ ଦେଇ ସଂଖ୍ୟା ବଢ଼ାଇବାରେ ଲାଗିଲେ । ବାରିପଦା ପହଞ୍ଚିବା ପାଇଁ ଅଳ୍ପ କେତେ ମାଇଲ ବାକି ଥାଏ ହଠାତ୍ ପଟୁଆର ଅଟକି ଗଲା, ଏବଂ ମୋତେ ଆଗକୁ ଯିବାପାଇଁ ଖବର ଆସିଲା । ମୁଁ ଆଗକୁ ଯାଇ ଦେଖେଁ ତ ପୋଲିସ୍ ବାହିନୀ ଓ ଅଫିସରମାନେ ଆମର ପଥରୋଧ କରି ରହିଛନ୍ତି । ସେଠାରେ ୧୪୪ଧାରା ଜାରୀ କରାଯାଇଥିବାରୁ ପଟୁଆର ଆଉ ଆଗକୁ ଯାଇ ପାରିବ ନାହିଁ ବୋଲି ସେମାନେ ମୋତେ ଜଣାଇଲେ । ଶରତ୍‌ବାବୁଙ୍କ ଉପଦେଶ ଅନୁସାରେ ଏବଂ ପଟୁଆରର ମୁଖ୍ୟ ହିସାବରେ ଆଉ ଆଗକୁ ନ ଯିବାକୁ ପଟୁଆର ଯାତ୍ରୀମାନଙ୍କୁ ଅନୁରୋଧ କଲି । ମୋଠାରୁ ଏଭଳି କଥାଶୁଣି ସମସ୍ତେ ବିଚଳିତ ହୋଇପଡ଼ିଲେ ଏବଂ ପରିଣତି ଯାହା ହେଉନା କାହିଁକି ସେଠାରୁ ଫେରି ଆସିବେ ନାହିଁ ବୋଲି ସମସ୍ୱରରେ ଜବାବ୍ ଦେଲେ । ଲୋକଙ୍କର ଏଭଳି ମନୋଭାବ ଦେଖି ଶେଷରେ ମୁଁ ଜଣାଇବାକୁ ବାଧ ହେଲି ''ଏହା ମୋର ଅନୁରୋଧ ନୁହେଁ, ପ୍ରଜାମଣ୍ଡଳର ସଭାପତି ଶରତ୍ ବାବୁଙ୍କର ଆପଣମାନଙ୍କୁ ଅନୁରୋଧ ।'' ମୋଠାରୁ ଏପରି କଥା ଶୁଣି ସମସ୍ତେ ସେହିଠାରୁ ଫେରି ଆସିବାକୁ ରାଜି ହେଲେ । ଏହି ଅବସରରେ ମୁଁ ସେଠାରେ ଘୋଷଣା କଲି ଯେ, ଏହାର ପ୍ରତିବାଦସ୍ୱରୂପ ସମସ୍ତ ହାଟରେ ହରତାଳ କରାଯିବ । ତା ପରଠାରୁ ଉଦଳା ଓ ବେତନଟି ଅଂଚଳର ସମସ୍ତ ହାଟରେ ହରତାଳ କଲେ ମଧ ସରକାରଙ୍କ ତରଫରୁ କୌଣସି ପ୍ରକାର ଦମନମୂଳକ ପଦକ୍ଷେପ ଗ୍ରହଣ କରାଗଲା ନାହିଁ । ଅବଶ୍ୟ ସରକାରଙ୍କ ଏ ପ୍ରକାର ନୀତି ଯୋଗୁଁ ସ୍ୱାଧୀନତା ଆନ୍ଦୋଳନ ବେଳେ ଭଞ୍ଜଭୂମିରେ ରକ୍ତପାତ ହୋଇ ନାହିଁ ସତ ମାତ୍ର ଜାତୀୟ ସ୍ତରରେ ଦେଶର ମୁକ୍ତିପାଇଁ ଲୋକେ ଯେଉଁ ଅସୀମ ତ୍ୟାଗ ପ୍ରଦର୍ଶନପୂର୍ବକ ଆତ୍ମବଳୀ ଦେଲେ ତାହା ଦେଶବାସୀଙ୍କ ପାଇଁ ଯେଭଳି ଗର୍ବ ଓ ଗୌରବର ବିଷୟ, ସେଦିନ ଲକ୍ଷ୍ୟସ୍ଥଳରେ ପହଞ୍ଚିବାପାଇଁ ଆଗକୁ ମାଡ଼ିଯାଉଥିବା ଏକ ବିରାଟ ପଟୁଆରକୁ ପଛକୁ ଫେରି ଆସିବାକୁ ନିର୍ଦ୍ଦେଶ ଦେବା ମୋ ପକ୍ଷରେ ସେହିଭଳି ଦୁଃଖ ଓ ଅପମାନର ବିଷୟ । ମୋର ସେଦିନର ସେହି ଭୁଲପାଇଁ ମୁଁ ଅନୁତପ୍ତ । ସେହି ବିରାଟ ପଟୁଆରକୁ ଫେରାଇ ଆଣି ନ ଥିଲେ ତାହା ଲୋକମାନଙ୍କୁ ମୁକ୍ତି ଆନ୍ଦୋଳନରେ ଝାସ ଦେବାପାଇଁ ନିଶ୍ଚିତଭାବରେ ପ୍ରଭାବିତ କରିବା ସଙ୍ଗେ ସଙ୍ଗେ ଆନ୍ଦୋଳନକୁ ଆହୁରି ଜୋରଦାର କରିପାରିଥାଆନ୍ତା ।

ଇଂରେଜ ଶାସନର ଭାରତ ବ୍ୟାପୀ ଦମନଲୀଳା ଓ ଗୁଳିକାଣ୍ଡ ଘଟିଲାବେଳକୁ ଭାରତର ସମସ୍ତ ନେତୃବର୍ଗ ଜେଲରେ ଥିବା ହେତୁ ଜନ ଜାଗରଣକୁ ଠିକ୍ ବାଟରେ ଆଗେଇନେବାକୁ କେହି ନ ଥିଲେ । ମହାତ୍ମା ଗାନ୍ଧୀ ଜେଲକୁ ଗଲାବେଳେ କହିଥିବା ଅମର ବାଣୀ ''କର ବା ମର'' ର ପ୍ରେରଣାରେ ମୁକ୍ତି ଆନ୍ଦୋଳନ କିଛିଦିନ ଚାଲି ଦେଶ ବ୍ୟାପୀ ନିରବତା ଦେଖାଦେଲା । ସଂଗଠନକୁ ବଂଚାଇ ରଖିବାପାଇଁ ବିଚାରକରି ଶେଷରେ କିଛି ଗଠନମୂଳକ କାର୍ଯ୍ୟ ଆରମ୍ଭ କରିବାର ସ୍ଥିର କଲୁଁ ।

## ''ନରଣ ଗାଁ ବନ୍ଧ''

୧୯୪୩ ମସିହା ଜାନୁୟାରୀ ୨୬ ତାରିଖକୁ ସ୍ୱାଧୀନତା ଦିବସରୂପେ ପାଳନ କରିବାପାଇଁ ମୟୂରଭଞ୍ଜ ପ୍ରଜାମଣ୍ଡଳ ନିଷ୍ପତ୍ତି ଗ୍ରହଣ କଲା । ସେଦିନ ଅନ୍ୟ କୌଣସି କାର୍ଯ୍ୟ ରଖାନଯାଇ ମାଣଡ୍ରୀ ପ୍ରଗଣାର ନରଣ ଗାଁଠାରେ ପ୍ରବାହିତ ବୁଢ଼ୀ ନଦୀ ନାମରେ ଏକ ଛୋଟ ନଦୀ ଉପରେ ଏକ ବନ୍ଧ ବାନ୍ଧିବାର ସ୍ଥିର କରାଗଲା । ବର୍ଷାଦିନେ ଏହି ନଦୀର ବନ୍ୟା ଜଳରେ ମୟୂରଭଞ୍ଜ ଓ ବାଲେଶ୍ୱର ଜିଲ୍ଲାର ବ୍ୟାପକ ଅଞ୍ଚଳରେ ପ୍ରତି ବର୍ଷ ଧାନ ଫସଲ ଧୋଇ ହୋଇଯାଏ । ଏହି ବନ୍ଧ ନିର୍ମାଣପାଇଁ ପ୍ରଜାମଣ୍ଡଳର ଆହ୍ୱାନରେ ଭୀଷଣ ଶୀତ ସତ୍ତ୍ୱେ ଚାରିଆଡୁ ହଜାର ହଜାର କର୍ମୀ ଆସି ବନ୍ଧ କାମରେ ଲାଗି ପଡ଼ିଲେ । ସେଠାରେ ଥିବା ଏକ ଆମ୍ବ ବଗିଚାରେ ତାଳପତ୍ର କୁଡ଼ିଆ ତିଆରି କରାଯାଇ କର୍ମୀମାନଙ୍କର ରହିବାର ବନ୍ଦୋବସ୍ତ କରାଯାଇଥାଏ । ପ୍ରତିଦିନ ବିଭିନ୍ନ ଗ୍ରାମରୁ ଚାଉଳ, ପରିବା ଓ ପଇସାପତ୍ର ସଂଗୃହୀତ ହୋଇଆସୁଥିଲା । ରାତିରେ କର୍ମୀମାନଙ୍କର ମନୋରଂଜନ ପାଇଁ ବିଭିନ୍ନ ଅପେରା ଦଳଗୁଡ଼ିକ ମାଗଣାରେ ନାଟକ ପ୍ରଦର୍ଶନ କରୁଥିଲେ । ସଂଧ୍ୟା ହେଲେ ଆଖପାଖ ଗ୍ରାମର ସ୍ତ୍ରୀଲୋକମାନେ ଆସି ବନ୍ଧ ନିର୍ମାଣକୁ ଧର୍ମ କାର୍ଯ୍ୟ ମନେକରି ମାଟି ବୋହି ବନ୍ଧରେ ପକାଉଥିଲେ । ପ୍ରଥମ ଦିନ କାମ ଆରମ୍ଭ ବେଳକୁ କେତେକ ଗଣ୍ଡଗୋଳକାରୀ ରାଜଦଲାଲ ସେଠାରେ ଯାଇ ପହଞ୍ଚିଥିଲେ ଏବଂ ସେମାନଙ୍କୁ ସାହାଯ୍ୟ କରିବାପାଇଁ ବାରିପଦାରୁ ପୋଲିସ୍ ବାହିନୀ ମଧ୍ୟ ସେଠାକୁ ଯାଇଥିଲେ । ଗିରୀଶବାବୁ ଓ ମୋ ଦାୟିତ୍ୱରେ ବନ୍ଧ କାମ ଚାଲିଥାଏ । ସେଠାକାର ସ୍ଥାନୀୟ ଶ୍ରୀ କୃଷ୍ଣଚନ୍ଦ୍ର ସ୍ୱାଇଁ, ଶ୍ରୀ ଗୌରମୋହନ ପ୍ରଧାନ, ଶ୍ରୀ ଅଦ୍ୱୈତ ନାଥ ଲାଲ୍, ଶ୍ରୀ ଧ୍ରୁବଚରଣ ରାଉତ, ଶ୍ରୀ ଲକ୍ଷ୍ମଣ ପରିଡ଼ା ପ୍ରଭୃତି ପ୍ରଜାମଣ୍ଡଳର କର୍ମୀମାନେ ସଦାସର୍ବଦା ବନ୍ଧ ନିକଟରେ ଉପସ୍ଥିତ ରହୁଥିଲେ । ଏହା ବ୍ୟତୀତ ଖୁଣ୍ଟା, ବଡ଼ସାହି, ଶୂଳିଆପଦା, ମୋରଡ଼ା, ଉଦଳା ଓ ପାଞ୍ଚପୀଢ଼ ପ୍ରଭୃତି ଅଂଚଳରୁ ବହୁ କର୍ମୀ ଆସି ବନ୍ଧ କାମରେ ସାହାଯ୍ୟ କରିଥିଲେ ।

ପାଣି ଭିତରେ ପଡୁଥିବା ମାଟିତକ ପ୍ରଥମେ ଧୋଇ ହୋଇ ଯାଉଥିବାର ଦେଖି ଗଣ୍ଡଗୋଳକାରୀ ରାଜାଙ୍କ ଦଲାଲ୍ ଓ ପୋଲିସ୍‌ବାଲା ବେଶ୍ ଖୁସିରେ ବନ୍ଧ ହୋଇ ପାରିବ ନାହିଁ ବୋଲି ନିଜ ନିଜ ଭିତରେ ଆଲୋଚନା କରୁଥିଲେ । ମାତ୍ର ପ୍ରଚୁର ମାଟି ପକାଇବାରୁ ପାଣି ଉପରକୁ ମାଟି ଦେଖାଗଲା । କର୍ମୀମାନେ ମହତ୍ ଉଦ୍ଦେଶ୍ୟରେ କରିଥିବା ଶ୍ରମଦାନ ସଫଳ ହେଲା । ସେମାନେ ଉତ୍‌ଫୁଲ୍ଲିତ ହୋଇ ମହାତ୍ମା ଗାନ୍ଧୀ, ଶରତ୍ ଗାନ୍ଧୀ ଓ ପ୍ରଜାମଣ୍ଡଳର ଜୟଧ୍ୱନୀ ଦେବା ସଙ୍ଗେ ସଙ୍ଗେ ପୂର୍ବାପେକ୍ଷା ଅଧିକ ଉତ୍ସାହରେ କାମରେ ଲାଗିପଡ଼ିଲେ । ଯେଉଁମାନେ ବନ୍ଧ କାର୍ଯ୍ୟରେ ଗଣ୍ଡଗୋଳ

ସୃଷ୍ଟି କରିବାକୁ ଆସିଥିଲେ ଶେଷରେ ସେମାନେ ମଧ୍ୟ ଆମ ସଙ୍ଗରେ ମିଶି ମାଟି ପକାଇବାକୁ ଲାଗିଲେ । ଏହିପରି ଦୁଇଦଫା କାମ କରି ବନ୍ଧ ନିର୍ମାଣ ସଂପୂର୍ଣ୍ଣ ହେଲା । ତାପରେ ବନ୍ଧର ପ୍ରତିଷ୍ଠା କରାଗଲା । ମୁଁ ଏ କାର୍ଯ୍ୟରେ କର୍ତ୍ତା ହେଲି । ପୂଜାପାଠ ଓ ହୋମ ହେଲା । ଆଖପାଖ ଗାଁର ବହୁ ସ୍ତ୍ରୀ ଲୋକ ସେଠାକୁ ଆସି ବନ୍ଦାପନା କଲେ । ସେଦିନର ସ୍ତ୍ରୀ ଲୋକମାନଙ୍କର ବନ୍ଦାପନା ଚାଉଳ ପ୍ରାୟ ଚାରି ମହଣରୁ ଊର୍ଦ୍ଧ୍ୱ ହୋଇଥିଲା । ''ଶରତ୍‌ଚନ୍ଦ୍ର ବନ୍ଧ'' ନାମରେ ଏ ବନ୍ଧର ନାମ ରଖାଗଲା । ବର୍ତ୍ତମାନ ସରକାରୀ ଅର୍ଥରେ ଉକ୍ତ ବନ୍ଧର ପ୍ରଭୂତ ଉନ୍ନତି ସାଧିତ ହୋଇ ସେ ଅଞ୍ଚଳର ଲୋକଙ୍କର ଅଶେଷ ମଙ୍ଗଳ ସାଧନ କରୁଛି । ସେହି ବନ୍ଧପାଇଁ ସେ ଅଞ୍ଚଳର ଲୋକେ ଏବେ ବି ପ୍ରଜାମଣ୍ଡଳକୁ ମନେ ରଖିଛନ୍ତି ।

## ''ପାଞ୍ଚପୀଢ଼ ସବ୍‌ଡ଼ିଭିଜନରେ ପାଇକିଆ ଆନ୍ଦୋଳନ ଓ ସେଥିରେ ମୋର ଭୂମିକା''

ପାଞ୍ଚପୀଢ଼ ସବ୍‌ଡ଼ିଭିଜନରେ ଯଶୀପୁରଠାରେ ଥିବା ମଠ ମହନ୍ତଙ୍କର ମହାରାଜାଙ୍କ ଉପରେ ଯଥେଷ୍ଟ ପ୍ରଭାବ ଥିବାରୁ ମଠ ନାମରେ ସେ ଅନ୍ୟାୟ ପାଉଣା ଆଦାୟ କରୁଥିଲେ । ମଠ ସଂପତ୍ତିରୁ ଯଥେଷ୍ଟ ଆୟ ହେଉଥିଲେ ମଧ୍ୟ ସମଗ୍ର ସବ୍‌ଡ଼ିଭିଜନର ପ୍ରତ୍ୟେକ ଚାଷୀଙ୍କ ଠାରୁ ହଳ ପ୍ରତି ଏକପାଇ (ଦେଢ଼ କିଲୋଗ୍ରାମ )ଚାଉଳ ଗାଁ ପ୍ରଧାନ  (ଖଜଣା ଆଦାୟକାରୀ ) ଙ୍କ ଜରିଆରେ ଆଦାୟ କରାଉଥିଲେ । ଏହା ଏକ ବେଆଇନ୍ କାର୍ଯ୍ୟ ହେଲେ ବି ଏଥିରେ କେହି ପ୍ରତିବାଦ କରୁନଥିଲେ । ତେଣୁ ପ୍ରଜାମଣ୍ଡଳର ପାଞ୍ଚପୀଢ଼ ଶାଖା ଏହି ଅନ୍ୟାୟ ପାଉଣା ଆଦାୟର ବିରୋଧ କରିବାରୁ ମଠ ମହନ୍ତଙ୍କ କୋପ ଦୃଷ୍ଟି  ପ୍ରଜାମଣ୍ଡଳ ଉପରେ ପଡିଲା । କର୍ମ୍ମୀ ମାନଙ୍କୁ ଅସୁବିଧାରେ ପକାଇବାପାଇଁ ନାନାପ୍ରକାର ମିଥ୍ୟା ମୋକଦ୍ଦମାର ଆଶ୍ରୟ ନେଲେ । ଏଥିରେ ସରକାରୀ ଅଫିସର ଓ ପୋଲିସବାଲା ମହନ୍ତଙ୍କୁ ରୀତିମତ ସାହାଯ୍ୟ କଲେ । ଏହି ସମ୍ବାଦ ପାଇ ମୁଁ ଏବଂ ଶ୍ରୀ ଜଗନ୍ନାଥ କମିଳା ବେତନଟୀରୁ ସାଇକେଲ ଯୋଗେ ନାନା ଅସୁବିଧାର ସମ୍ମୁଖୀନ ହୋଇ ମଧ୍ୟ ପାଞ୍ଚପୀଢ଼ ଗଲୁଁ । ଏହା ୧୯୪୩ ମସିହା ଜୁନ୍ ମାସର ଘଟଣା । ପାଞ୍ଚପୀଢ଼ରେ ପହଁଞ୍ଚି  ଶ୍ରୀ ଭକ୍ତବନ୍ଧୁ ମହାନ୍ତ, ଭଞ୍ଜକିଆର ଶ୍ରୀ ଶିବପ୍ରସାଦ ମହାନ୍ତ, ଶ୍ରୀ ବୈଦ୍ୟନାଥ ମହାନ୍ତ, ଶ୍ରୀ ଦୈତାରି ସିଂହ ଓ ଭୈରବଚନ୍ଦ୍ର ମହାନ୍ତ ପ୍ରଭୃତି ମୁଖ୍ୟ କର୍ମ୍ମୀମାନଙ୍କ ସହ ଏ ବିଷୟରେ ଆଲୋଚନା କଲୁଁ ଏବଂ ଏଥିପାଇଁ ଭଞ୍ଜକିଆଠାରେ ଏକ ସାଧାରଣ ସଭାର ଆୟୋଜନ କରିବାପାଇଁ ସେମାନଙ୍କୁ ଦାୟିତ୍ୱ ଦିଆଗଲା । ସମସ୍ତେ ସଭାପାଇଁ ପ୍ରଚାର କାର୍ଯ୍ୟରେ ଜୋରସୋର ଲାଗିପଡିଲେ । ନିର୍ଦ୍ଧାରିତ ଦିନ ସଭା କାର୍ଯ୍ୟ ଆରମ୍ଭ ହେଲା ବେଳକୁ ବାରିପଦାରୁ କେତେକ ରାଜଦଲାଲ ଏବଂ ଯଶୀପୁର ମଠ ମହନ୍ତଙ୍କ ତରଫରୁ କେତେକ ଭଡ଼ାଟିଆ ଗୁଣ୍ଡା ସଭାସ୍ଥଳରେ ପହଞ୍ଚି ଗଣ୍ଡଗୋଳ କରିବାରୁ  ପୋଲିସ୍‌କୁ ହସ୍ତକ୍ଷେପ କରିବାକୁ ସୁବିଧା ମିଳିଲା ଏବଂ ଶେଷରେ ପୋଲିସ୍ ସଭାକୁ ବନ୍ଦ କରିଦେଲେ ।

ଏ ସଂକ୍ରାନ୍ତରେ ପରାମର୍ଶ କରିବାପାଇଁ ଶ୍ରୀ ଶିବପ୍ରସାଦ ମହାନ୍ତଙ୍କ ସହିତ ସାଇକେଲରେ ବେତନଟୀ ଫେରି ଆସିବାକୁ ହେଲା । ଶରତ୍ ବାବୁଙ୍କ ସହିତ ଆଲୋଚନା କରି ପୁଣି ପାଞ୍ଚପୀଢ଼

ଫେରିଗଲି । ମାତ୍ର ତିନିଦିନ ବ୍ୟବଧାନରେ ମୋତେ ଦୀର୍ଘ ଦୁଇଶହ ମାଇଲରୁ ଅଧିକ ବାଟ ସାଇକେଲ କରିବାକୁ ପଡିଥିଲା , ଇତିମଧ୍ୟରେ ଜଗନ୍ନାଥ କାମିଲା ମୋତେ କିଛି ନ ଜଣାଇ ସେଠାରୁ ଚାଲି ଆସିଲେ । ତେଣୁଁ ମୁଁ ଏକୁଟିଆ ସେ ଅଂଚଳରେ ପ୍ରାୟ ୧୫ ଦିନ ରହି ଛୋଟ ଛୋଟ ଗାଉଁଲୀ ସଭାମାନ କରି ପାଇକିଆ ବିରୋଧରେ ଜନମତ ସୃଷ୍ଟି କଲି, ଏଣେ ମଠମହନ୍ତଙ୍କ ଗୁଣ୍ଡାମାନେ ବି ଆମ ବିପକ୍ଷରେ ରୀତିମତ ଲାଗି ପଡିଲେ । ସବୁ କ୍ଷେତ୍ରରେ ସତ୍ୟ ଓ ନ୍ୟାୟର ହିଁ ବିଜୟ ହୁଏ । ଶେଷରେ ଆମେ ସଫଳ ହେଲୁଁ । ବହୁଦିନ ଧରି ଅନ୍ୟାୟଭାବରେ ଆଦାୟ ହେଉଥିବା ପାଇକିଆ ପ୍ରଥା ଲୋପହେଲା ଓ ସଙ୍ଗେ ସଙ୍ଗେ ଲୋକ ଶକ୍ତି ମଧ୍ୟ ଅଧିକ ସଂଗଠିତ ହେଲା । ପାଞ୍ଚପୀଢ଼ରେ ଏପରି ଏକ ଅନ୍ୟାୟ ପାଉଣା ବିରୋଧରେ ଆନ୍ଦୋଳନର ନେତୃତ୍ୱ ନେଇଥିବାରୁ ମୋତେ ଜୀବନରେ ମାରିଦେବାର ଗୁଜବ ମଧ୍ୟ ଶୁଣାଯାଇଥିଲା ; ମାତ୍ର ସେଠାରେ ମୁଁ ୧୫।୨୦ ଦିନ ରହି ସଫଳତା ହାସଲ ପରେ ସାଇକେଲ ଯୋଗେ ହିଁ ଏକୁଟିଆ ଭୀଷଣ ଜଙ୍ଗଲ ଓ ଦୁର୍ଗମ ପାହାଡିଆ ପଥ ଅତିକ୍ରମ କରି ବେତନଟୀ ଫେରି ଆସିଲି ।

## "ଶୂଳିଆପଦାରେ ପୋଲିସ୍ ହଇରାଣ ହେଲେ "

୧୯୪୪ ମସିହା ବେଳକୁ ସାରା ଦେଶରେ ରାଜନୈତିକ ମାନ୍ଦାବସ୍ଥା । ଚାରିଆଡେ ନୀରବ । ସବୁ ନେତୃବୃନ୍ଦ ଜେଲରେ ଥାଆନ୍ତି । କେଉଁଠାରେ ବି କୌଣସି ପ୍ରକାରର ସଭା ସମିତି ନାହିଁ । ମୟୂରଭଞ୍ଜରେ କିନ୍ତୁ ସଭା ସମିତି ଚାଲିଥାଏ । ଶୂଳିଆପଦାର ଖାଡିଆଶୋଳଠାରେ ଏକ ସାଧାରଣ ସଭା ହେଲା । ଶରତ୍ ବାବୁଙ୍କ ସହିତ ମୁଁ ସେ ସଭାକୁ ଯାଇଥାଏ ମାତ୍ର ସେଠାକାର ପୋଲିସ୍ ସାହାଯ୍ୟରେ ରାଜଦଲାଲମାନେ ବହୁ ଗଣ୍ଡଗୋଳ ସୃଷ୍ଟି କଲେ । ଶରତ୍ ବାବୁ ସେଠାରୁ ଫେରି ଆସିଲେ । ମୁଁ ସେ ଅଂଚଳରେ ପ୍ରଚାର କାର୍ଯ୍ୟପାଇଁ ସେଠାରେ ରହିଲି । ପୋଲିସ୍ ଓ ରାଜଦଲାମାନଙ୍କୁ ହଇରାଣ କରିବାର ଉଦ୍ଦେଶ୍ୟ ଥାଏ । ତେଣୁଁ ସ୍ଥାନୀୟ କର୍ମୀ ଶ୍ରୀ ସୁରେନ୍ଦ୍ରନାଥ ସାତୁଆ, ଲକ୍ଷ୍ମୀଧର ଧଳ, ବନମାଳୀ ନାଏକ ପ୍ରଭୃତି ୮।୧୦ ଜଣଙ୍କୁ ସଙ୍ଗରେ ଧରି ବଡ ବଡ ସଭାର ଆୟୋଜନ ନ କରି ଛୋଟ ଛୋଟ ସଭାମାନ କଲି । ପ୍ରତିଦିନ ୧୦ଟା ସୁଦ୍ଧା ଖିଆପିଆ ସାରି କର୍ମୀଙ୍କ ସହିତ ଯାଇ ଦିନ ୨ଟା ସୁଦ୍ଧା କୌଣସି ଏକ ଗ୍ରାମରେ ପହଞ୍ଚି କର୍ମୀମାନଙ୍କୁ ଭାଗକରି ବିଭିନ୍ନ ଦିଗକୁ ପ୍ରଚାର କାର୍ଯ୍ୟପାଇଁ ପଠାଇ ଦିଏ ଏବଂ ସଂଧ୍ୟା ବେଳକୁ ଛୋଟ ଛୋଟ ସଭାମାନ ଅନୁଷ୍ଠିତ ହୁଏ । ପୋଲିସ୍ ଖବର ପାଇ ପହୁଞ୍ଚିଲା ବେଳକୁ ସଭା କାର୍ଯ୍ୟ ସରି ଯାଇଥାଏ । ମୟୂରଭଞ୍ଜର ଏହି ସୀମାନ୍ତ ଅଂଚଳରେ ପ୍ରତିଦିନ ସଂଧ୍ୟାବେଳକୁ ବିଭିନ୍ନ ସ୍ଥାନରେ ଏହିପରି ସଭାମାନ ହେଲା । ଶେଷରେ ପୋଲିସ୍ ବିଶେଷଭାବରେ ହନ୍ତସନ୍ତ ହୋଇ ଆଉ ହଇରାଣ ନ କରିବାକୁ ଆମକୁ ଅନୁରୋଧ କଲେ । ମାତ୍ର ଆମ କାମରେ ଆମେ ବିଧିବଦ୍ଧଭାବେ ଲାଗିଥାଉ ।

## " ପ୍ରଜାମଣ୍ଡଳର ୨ୟ ଅଧିବେଶନ "

୧୯୪୦ ମସିହା ତେନ୍ତୁଳଠାରେ ପ୍ରଜାମଣ୍ଡଳର ପ୍ରଥମ ଅଧିବେଶନ ପରେ ନାନା କାରଣରୁ

କୌଣସି ସାଧାରଣ ଅଧିବେଶନ ହୋଇପାରି ନ ଥିଲା । ୧୯୪୫ ମସିହା ବେଳକୁ ଭାରତ ତଥା ଓଡିଶାର କେତେକ କଂଗ୍ରେସ ନେତାଙ୍କୁ ଜେଲମୁକ୍ତ କରାଗଲା । ମାଣତ୍ରୀ ପ୍ରଗଣାର ମଧୁନଣ୍ଡା ଗ୍ରାମର ଆମ୍ବବଗିଚାରେ ୧୯୪୫ ରେ ପ୍ରଜାମଣ୍ଡଳର ଏକ ସାଧାରଣ ଅଧିବେଶନ ସହିତ ଏକ କୃଷିଜାତ ଓ ହସ୍ତଶିଳ୍ପ ପ୍ରଦର୍ଶନୀ ଅନୁଷ୍ଠିତ ହେବାର ଆୟୋଜନ କରାଗଲା । ସ୍ଥାନୀୟ କର୍ମୀ ମଦନମୋହନ ପଣ୍ଡା, ଗୋପବନ୍ଧୁ ମହାନ୍ତି, ଅଦ୍ୱୈତ ନାଥ ଲାଲ, ଗୌରମୋହନ ପ୍ରଧାନ, ଚକ୍ରଧର ମହାପାତ୍ର, ଧ୍ରୁବଚରଣ ରାଉତ, ଲକ୍ଷ୍ମଣ ଚନ୍ଦ୍ର ପରିଡା ଓ ଆର୍ତ୍ତତ୍ରାଣ ପଣ୍ଡା ପ୍ରଭୃତିଙ୍କ ସାହାଯ୍ୟରେ ସେହି ଆମ୍ବବଗିଚାରେ କର୍ମୀମାନଙ୍କର ରହିବାପାଇଁ ତାଳପତ୍ର ସାହାଯ୍ୟରେ ଛୋଟ ଛୋଟ କୁଡ଼ିଆ ଏବଂ ପ୍ରଦର୍ଶନୀପାଇଁ ଚାଳିଆମାନ ପ୍ରସ୍ତୁତ କରାଗଲା ! ଅଧିବେଶନର ୭ମ ବା ୮ମ ଦିନ ପୂର୍ବରୁ ମୁଁ ଏବଂ ଶ୍ରୀ ଗିରୀଶଚନ୍ଦ୍ର ରାୟ ସେଠାରେ ପହଞ୍ଚି ଏକ ସେବାଦଳ ଗଠନ କଲୁ । ଅଧିବେଶନ ତିନିଦିନ ଧରି ଚାଲିଲା । ମୟୂରଭଞ୍ଜର ସବୁ ଅଂଚଳରୁ ପ୍ରାୟ ଦୁଇତିନି ହଜାର କର୍ମୀ ଯୋଗ ଦେଇଥିଲେ । ସାଧାରଣ ସଭାରେ ପ୍ରାୟ ଦଶହଜାର ଲୋକ ସମାଗମ ହୋଇଥିଲା । ତେନ୍ତଳ ଅଧିବେଶନ ଭଳି ବହୁ ଲୋକ ସମାଗମ ହୋଇନ ପାରିଥିଲେ ବି ସର୍ବ ଭାରତୀୟ ସ୍ତରରେ ଏକ ନୀରବ ଅବସ୍ଥା ସମୟରେ ଏହି ଅଧିବେଶନ ମୟୂରଭଞ୍ଜ ପ୍ରଜାମଣ୍ଡଳକୁ ଏକ ସକ୍ରିୟ ଅବସ୍ଥାକୁ ଆଣିବାରେ ବିଶେଷ ସହାୟକ ହୋଇପାରିଥିଲା । ଏହି ଅଧିବେଶନକୁ ଜେଲମୁକ୍ତ ଓଡିଶାର ବିଭିନ୍ନ ନେତୃବର୍ଗଙ୍କୁ ନିମନ୍ତ୍ରଣ କରାଯାଇଥିଲେ ମଧ କେବଳ ଓଡିଶାରେ ଅତି ନିଷ୍ଠାପର ଓ ନିଃସ୍ୱାର୍ଥପର ନେତା ଶ୍ରୀଯୁକ୍ତ ଲକ୍ଷ୍ମୀନାରାୟଣ ସାହୁ ଯୋଗ ଦେଇଥିଲେ । ସେ ସେଭଳି କୈଣସି ରାଜନୈତିକ ଦଳର ନେତା ନ ଥିଲେ ହେଁ ଭାରତ ସେବକ ସମାଜର ସର୍ବ ଭାରତୀୟ ନେତା ଥିଲେ । ଅଧିବେଶନର ପରିବେଶ ଓ ପ୍ରଜାମଣ୍ଡଳ କର୍ମୀମାନଙ୍କର ଆଚରଣରେ ବିଶେଷ ମୁଗ୍ଧ ହୋଇ ସେ ସ୍ଥାନର ନାମ 'ମଧୁନଣ୍ଡା' ନ ରଖି 'ମଦୁଭଣ୍ଡାର' ନାମ ଦେବାପାଇଁ ପରାମର୍ଶ ଦେଇଥିଲେ ।

## " ଓଡିଶାର କଂଗ୍ରେସ ନେତାଙ୍କ ସହ କଟକରେ ସାକ୍ଷାତ "

୧୯୪୫ ମସିହା ଶେଷ ଆଡକୁ ଜେଲରୁ ଖଲାସ ହୋଇଥିବା ଓଡିଶା କଂଗ୍ରେସ ନେତାମାନଙ୍କର ଏକ ବନ୍ଧୁମିଳନ ବିଖ୍ୟାତ ଆଇନଜ୍ଞ ଓ କଂଗ୍ରେସ୍ ନେତା ଶ୍ରୀଯୁକ୍ତ ସ୍ୱାମୀ ବିଚିତ୍ରାନନ୍ଦ ଦାସଙ୍କ ଦ୍ୱାରା ଆୟୋଜିତ ହୋଇଥିଲା । ଏହି ବନ୍ଧୁମିଳନକୁ ଶରତ୍‌ବାବୁଙ୍କ ସହିତ ଆମେ ପ୍ରାୟ ୧୦।୧୨ ଜଣ କର୍ମୀ ଯାଇଥିଲୁଁ । ସେଠାରେ ସେପରି କୈଣସି ବିଶେଷ ଆଲୋଚନା ହୋଇ ନ ଥିଲେ ହେଁ କେବଳ ପରସ୍ପର ମଧରେ ଦୀର୍ଘ ଦିନର ବ୍ୟବଧାନ ପରେ ଦେଖା ସାକ୍ଷାତ ଓ ଭାବର ଆଦାନ ପ୍ରଦାନ ହୋଇଥିଲା । ମୋର ପ୍ରଥମକରି ସେଠାରେ ଓଡିଶାର ନେତୃବୃନ୍ଦ ଶ୍ରୀଯୁକ୍ତ ନନ୍ଦକିଶୋର ଦାସ, ଶ୍ରୀମତୀ ରମା ଦେବୀ , ଶ୍ରୀମତୀ ମାଳତୀ ଚୈଧୁରୀ, ଶ୍ରୀଯୁକ୍ତ ନେତ୍ରାନନ୍ଦ ଦାସ ଓ ଯୁବନେତା ଶ୍ରୀଯୁକ୍ତ ନୀଳମଣି ରାଉତରାୟଙ୍କ ସହିତ ସାକ୍ଷାତ ହୋଇଥିଲା ।

## " ବାରିପଦାରେ ପ୍ରଜାମଣ୍ଡଳ ଅଫିସ "

୧୯୪୬ ମସିହା ବେଳକୁ ମୟୂରଭଞ୍ଜ ପ୍ରଜାମଣ୍ଡଳର ଅବସ୍ଥା ପୂର୍ବପରି ଫେରିଆସିଲା,

ଭାରତର ପ୍ରାୟ ସମସ୍ତ ନେତୃବୃନ୍ଦ ଜେଲମୁକ୍ତ ହେଲେ । ଭାରତକୁ ପୂର୍ଣ୍ଣ ସ୍ୱାଧୀନତା ମିଳିବା ସଂପର୍କରେ ସୂଚନା ମଧ୍ୟ ପ୍ରକାଶ ପାଇଲା, ସେ ପର୍ଯ୍ୟନ୍ତ ମୟୂରଭଞ୍ଜ ପ୍ରଜାମଣ୍ଡଳ ପ୍ରଧାନ କାର୍ଯ୍ୟାଳୟ ବେତନଟୀର ଆମ୍ଭଯୋଡ଼ାଠାରେ ଚାଲିଥାଏ । ୧୯୪୬ ମସିହା ବେଳକୁ ମୟୂରଭଞ୍ଜର ଚାରୋଟିଯାକ ସବ୍‌ଡିଭିଜନରେ ପ୍ରଜାମଣ୍ଡଳର ଶାଖା କାର୍ଯ୍ୟାଳୟମାନ ପ୍ରତିଷ୍ଠିତ ହୋଇ ସାରିଥିଲା, ବାମନଘାଟୀ ସବ୍‌ଡିଭିଜନ୍‌ରେ ମୁଁ ପ୍ରାୟ ୧୦।୧୨ ଜଣ କର୍ମୀଙ୍କୁ ନେଇ ପ୍ରଚାର ଆରମ୍ଭ କଲି । ଶେଷରେ ରାଇରଙ୍ଗପୁରର ଶ୍ରୀ ଚିତମୋହନ ମହାନ୍ତଙ୍କ ସଭାପତିତ୍ୱରେ ଏକ ଶାଖା ସଂଗଠନ ପ୍ରତିଷ୍ଠିତ ହେଲା । ଏତଦ୍ ବ୍ୟତୀତ ସେହି ସମୟରେ ବାଙ୍ଗିରୀପୋଷୀଠାରେ ଉପର ଭାଗ ପ୍ରଗନ୍ନା ସମିତି ଶ୍ରୀ ପୂର୍ଣ୍ଣଚନ୍ଦ୍ର ପାଣିଙ୍କ ନେତୃତ୍ୱରେ ଗଠିତ ହେଲା ଏବଂ ମୋର ସାନଭାଇ ଶ୍ରୀ ସତ୍ୟନାରାୟଣ ଦାଶ ଏହାର ସଂଗଠନ ଦାୟିତ୍ୱରେ ରହିଲେ । ସେହିପରି ରାସଗୋବିନ୍ଦପୁର ଓ ଖୁଣ୍ଟା ଅଂଚଳରେ ଶ୍ରୀ ଅମରେନ୍ଦ୍ର କୁମାର ଦାଶ ଓ ଅମର୍ଦ୍ଦା ଅଞ୍ଚଳରେ ଶ୍ରୀ ହରେକୃଷ୍ଣ ତ୍ରିପାଠୀଙ୍କ ନେତୃତ୍ୱରେ ସଂଗଠନମାନ ଗଢ଼ାଯାଇ ମୟୂରଭଞ୍ଜ ରାଜ୍ୟର ସମଗ୍ର ଅଂଚଳକୁ ପ୍ରଜାମଣ୍ଡଳ ସଂଗଠନର ଅନ୍ତର୍ଭୁକ୍ତ କରାଗଲା । ସୁତରାଂ ରାଜ୍ୟର ରାଜଧାନୀ ବାରିପଦାଠାରେ ପ୍ରଧାନ କାର୍ଯ୍ୟାଳୟ ସ୍ଥାପିତ ନ ହେଲେ ଜିଲ୍ଲାର ସବୁ ଅଞ୍ଚଳସହିତ ଯୋଗସୂତ୍ର ରକ୍ଷା କରିବା ସମ୍ଭବପର ହେବ ନାହିଁ ବୋଲି ସମସ୍ତେ ଉପଲବ୍ଧି କରିବାରୁ ବାରିପଦାଠାରେ ମୟୂରଭଞ୍ଜ ପ୍ରଜାମଣ୍ଡଳର ପ୍ରଧାନ କାର୍ଯ୍ୟାଳୟ ସ୍ଥାପନ କରାଗଲା, ମାତ୍ର ବାରିପଦାରେ ଆମକୁ ଅଫିସ୍ କରିବାପାଇଁ ଘରଭଡ଼ା ଦେବାକୁ ଲୋକେ ଭୟ କରୁଥିଲେ । ତେଣୁ ପ୍ରଥମେ ଆମେ ଯେଉଁ ଘରେ ଅଫିସ କରିଥିଲୁ ମାତ୍ର କେତେଘଣ୍ଟା ପରେ ସେ ଘର ଛାଡିବାକୁ ବାଧ ହେଲୁ । ଶେଷରେ ବାରିପଦାର ଜଣେ ବ୍ୟକ୍ତି ଶ୍ରୀ ବ୍ରଜବନ୍ଧୁ ରଥ, ଯେ କି ପ୍ରଜାମଣ୍ଡଳର ଜଣେ ଟାଣୁଆଁ ସମର୍ଥକ ଥିଲେ ତାଙ୍କ ଦାୟିତ୍ୱରେ ମାର୍କେଟ ଛକଠାରେ ଗୋଟିଏ ଘରଭଡା ନେଇ ଅଫିସ୍ ଆରମ୍ଭ କରାଗଲା । ମୁଁ ଏବଂ ଶ୍ରୀ ଗିରୀଶଚନ୍ଦ୍ର ରାୟ ଅଫିସ୍ ଦାୟିତ୍ୱରେ ରହିଲୁଁ । ଆମ ସଙ୍ଗରେ ଶ୍ରୀ ନରେନ୍ଦ୍ର ମାରାଣ୍ଡି ନାମକ ଜଣେ ସାହସୀ ଆଦିବାସୀ ଯୁବକର୍ମୀ ସହଯୋଗୀଭାବେ ରହିଲେ । ସେ ପର୍ଯ୍ୟନ୍ତ କୌଣସି ଓକିଲ ପ୍ରଜାମଣ୍ଡଳ ସଙ୍ଗଠନରେ ଯୋଗ ଦେଇ ନ ଥାଆନ୍ତି । ୧୯୪୬ ମସିହାରେ ଓକିଲାତି ପାଶ କରି ଶ୍ରୀ ହରିହର ମହାନ୍ତି ଜଣେ ସକ୍ରିୟ କର୍ମୀଭାବରେ ପ୍ରଜାମଣ୍ଡଳରେ ଯୋଗଦାନ କଲେ । ସେ ରେଭେନସା କଲେଜରେ ପଢୁଥିବା ସମୟରେ ମଧ୍ୟ ଛୁଟିରେ ଆସି ପ୍ରଜାମଣ୍ଡଳର ସଭାମାନଙ୍କରେ ଯୋଗ ଦେଉଥିଲେ । ଛାତ୍ରାବସ୍ଥାରେ ସେ ସ୍ୱାଧୀନଚେତା ଓ ନିର୍ଭୀକ ଥିଲେ । ପ୍ରଜାମଣ୍ଡଳକୁ ବ୍ୟାପକ ଓ ଅଧିକ ଶକ୍ତିଶାଳୀ କରିବାରେ ତାଙ୍କର ଗୁରୁତ୍ୱପୂର୍ଣ୍ଣ ଭୂମିକା ଥିଲା । ଶ୍ରୀଯୁକ୍ତ ହରିହର ମହାନ୍ତି ବାରିପଦାରେ ଓକିଲାତି ଆରମ୍ଭ କରି ପ୍ରଜାମଣ୍ଡଳ ଆନ୍ଦୋଳନରେ ସକ୍ରିୟ ଅଂଶ ଗ୍ରହଣ କରିବାରୁ ସହରର ଶିକ୍ଷିତ ଲୋକ ଓ ବିଶେଷଭାବରେ ବୁଦ୍ଧିଜୀବୀଙ୍କ ମହଲରେ ଏହାର ପ୍ରଭାବ ପଡ଼ିଲା ଓ କ୍ରମେ କେତେକ ଓକିଲ ଏହି ସଂଗଠନର ଅନ୍ତର୍ଭୁକ୍ତ ହେଲେ । ସେମାନେ ହେଲେ ଶ୍ରୀ ପୂର୍ଣ୍ଣଚନ୍ଦ୍ର ମହାନ୍ତ, ଶ୍ରୀଯୁକ୍ତ ଗୌର ମୋହନ ମହାପାତ୍ର, ଶ୍ରୀଯୁକ୍ତ ସତୀଶଚନ୍ଦ୍ର ଦାସ ପଟ୍ଟନାଏକ ପ୍ରଭୃତି ଅନ୍ୟତମ, ଏତଦ୍‌ବ୍ୟତୀତ ବାରିପଦାର ବିଶିଷ୍ଟ ବ୍ୟକ୍ତି ଯଥା ବ୍ରଜବଂଧୁ ରଥ, ଶ୍ରୀ ଅନନ୍ତ ପ୍ରସାଦ ରଥ ଚାକିରିରୁ ଅବସର ନେଇ ବାରିପଦାର ପୂର୍ବତନ ଏସ୍. ଡି. ଓ. ତଥା ସବ୍‌ଜଜ୍ ଶ୍ରୀ ବିଦ୍ୟାଧର ମହାପାତ୍ର, ପୂର୍ବତନ ସମବାୟ ରେଜିଷ୍ଟ୍ରାର

ଶ୍ରୀ ମହେଶ୍ୱର ନାଏକ ପ୍ରଭୃତି ଅନେକ ଏହି ଅନୁଷ୍ଠାନରେ ଯୋଗଦାନ କରିବାରୁ ଏହା ଏକ ସୁଦୃଢ଼ ଗଣ ଅନୁଷ୍ଠାନରେ ପରିଣତ ହେଲା ।

## "ପାଇକ ଆନ୍ଦୋଳନ"

ବାଲେଶ୍ୱର ସୀମାକୁ ଲାଗିଥିବା ପୂର୍ବତନ ମୟୂରଭଞ୍ଜ ରାଜ୍ୟର ସାଇଁକୁଳା, କୁଆମରା, ଚିଲିମା, ମାନଗୋବିନ୍ଦପୁର, ଆରପଟା, କାଠପାଳ ଓ କଳମା ପ୍ରଭୃତି ଗ୍ରାମଗୁଡ଼ିକରେ ରହୁଥିବା ଖଣ୍ଡାୟତ ଜାତିର କିଛି ଲୋକ ନିଷ୍କର ଜାଗିରି ଜମି ଭୋଗ କରୁଥିଲେ । ଏମାନଙ୍କୁ ପାଇକ କୁହାଯାଉଥିଲା । ଏମାନେ ଯୁଦ୍ଧ ସମୟରେ ଯୁଦ୍ଧ କରୁଥିଲେ ଏବଂ ଅନ୍ୟ ସମୟରେ ଚାଷବାସ କରି ଚଳୁଥିଲେ । ସେଥିପାଇଁ ସେମାନଙ୍କ ଦରମା ବାବଦକୁ ନିଷ୍କର ଚାଷ ଜମି ଦିଆଯାଇଥିଲା । ଏହି ଜମି ଏମାନେ ବଂଶାନୁକ୍ରମେ ଭୋଗ ଦଖଲ କରିଆସୁଥିଲେ । ଅନ୍ୟାନ୍ୟ ଗଡ଼ଜାତ ରାଜ୍ୟ ଭଳି ମୟୂରଭଞ୍ଜ ମଧ୍ୟ ଇଂରେଜ ଶାସନାଧୀନ ହେଲାପରେ ପ୍ରତିରକ୍ଷା ବିଭାଗ ଇଂରେଜ ସରକାରଙ୍କ ହାତରେ ରହିଲା । ସୁତରାଂ ଆଉ ଯୁଦ୍ଧର ଆବଶ୍ୟକତା ରହିଲା ନାହିଁ । ରାଜ୍ୟଟି ଗୋଟିଏ କରଦ ରାଜ୍ୟରେ ପରିଣତ ହୋଇ ଇଂରେଜ ସରକାରଙ୍କ ପରୋକ୍ଷ ଶାସନରେ ରହିଲା । ରାଜା ଇଂରେଜ ସରକାରଙ୍କ ଅଧୀନରେ ରହି ଶାସନ କାର୍ଯ୍ୟ ବୁଝିଲେ । ଯୁଦ୍ଧର ସମ୍ଭାବନା ନ ଥିଲେ ବି ପାଇକମାନେ ଭୋଗଦଖଲ କରୁଥିବା ଉକ୍ତ ଜମିରୁ ରାଜା ସେମାନଙ୍କୁ ଉଚ୍ଛେଦ କଲେ ନାହିଁ । ପୂର୍ବପରି ଉକ୍ତ ଜମି ସେମାନଙ୍କ ଭୋଗଦଖଲରେ ରହିଲା । ମାତ୍ର ଏଥିପାଇଁ ବର୍ଷରେ ମାତ୍ର ଗୋଟିଏ ମାସ ରାଜ ପ୍ରସାଦରେ ସେମାନେ କାର୍ଯ୍ୟ କରିବେ ବୋଲି ରାଜାଙ୍କ ତରଫରୁ ଏକ ଆଦେଶ ଜାରି କରାଗଲା । ପାଇକମାନଙ୍କ ବଂଶଧରମାନେ ସେହିଦିନଠାରୁ ପ୍ରତିବର୍ଷ ଗୋଟିଏ ମାତ୍ର ମାସ ପ୍ରାସାଦରେ କାର୍ଯ୍ୟ କରିଆସୁଥିଲେ । ସେମାନଙ୍କ ମଧ୍ୟରୁ କେତେକ ପରବର୍ତ୍ତୀ କାଳରେ ବେଶ ସଂଭ୍ରାନ୍ତ ପରିବାରରେ ପରିଣତ ହୋଇଯିବାରୁ ନିଜେ ପ୍ରାସାଦକୁ କାର୍ଯ୍ୟ କରିବାକୁ ନ ଯାଇ ଅନ୍ୟ ଲୋକଙ୍କୁ ମଜୁରି ଦେଇ ପ୍ରାସାଦକୁ କାର୍ଯ୍ୟ କରିବାପାଇଁ ପଠାଇ କାର୍ଯ୍ୟ ତୁଲାଉ ଥିଲେ । ଏହି ପାଇକମାନଙ୍କ ବଂଶଧର ମଧ୍ୟରୁ ଅନେକ ପ୍ରଜାମଣ୍ଡଳରେ ଯୋଗ ଦେଇ ମୁଖ୍ୟ ସ୍ଥାନ ଅଧିକାର କରିଥିଲେ । ସେମାନେ ହେଲେ ଶ୍ରୀ ବୈକୁଣ୍ଠନାଥ ସଦୁଆଳ (ଦେଉଳିଆ), ଶ୍ରୀ ରାମଚନ୍ଦ୍ର ମହାପାତ୍ର(ସାଇଁକୁଳା) ଶ୍ରୀ ଚକ୍ରଧର ମହାପାତ୍ର(ମାନଗୋବିନ୍ଦପୁର), ଶ୍ରୀ ବୈଷ୍ଣବଚରଣ ନାୟକ(ଚିଲିମା) । ତେଣୁ ପ୍ରଜାମଣ୍ଡଳରୁ ସେମାନଙ୍କୁ ଅଲଗା କରି ରଖିବାପାଇଁ ପ୍ରଶାସନ ତରଫରୁ ହୋଇଥିବା ପ୍ରଚେଷ୍ଟା ବିଫଳ ହେବାରୁ ସେମାନଙ୍କୁ ଭୟଭୀତ କରିବାପାଇଁ ପ୍ରାସାଦକୁ ଅନ୍ୟ ଲୋକ ନ ପଠାଇ ନିଜେ ଆସି ମାସଟିଏ କାର୍ଯ୍ୟ କରିବାକୁ ବାଧ କରାଗଲା । ମାତ୍ର ତାର ଫଳ ବିପରୀତ ହେଲା । ଏହାର ପ୍ରତିବାଦ ସ୍ୱରୂପ କୌଣସି ପାଇକ ଆଉ ପ୍ରାସାଦକୁ ଗଲେ ନାହିଁ ବା ଅନ୍ୟ ଲୋକ ମଧ୍ୟ ପ୍ରତିବଦଳରେ ପଠାଇଲେ ନାହିଁ । ୧୯୪୬ ମସିହାର ଶେଷ ଭାଗରେ ପାଇକମାନଙ୍କର ଏକ ସଭା ଶ୍ରୀ ବୈକୁଣ୍ଠନାଥ ସଦୁଆଳଙ୍କ ସଭାପତିତ୍ୱରେ ଅନୁଷ୍ଠିତ ହେଲା । ପାଇକମାନେ ଭୋଗ ଦଖଲ କରୁଥିବା ସମସ୍ତ ଜାଗିରି ଜମିମାନଙ୍କ ନାମରେ ଦାଏର କରି ଖଜଣା ଧାର୍ଯ୍ୟ କରିବା ପାଇଁ ଉକ୍ତ ସଭାରେ ସରକାରଙ୍କ ନିକଟରେ ଦାବି କରାଗଲା । ଦରବାର ପ୍ରଶାସନ ଏଥିରେ କ୍ରୋଧାନ୍ୱିତ ହୋଇ ପାଇକ ନେତା ଶ୍ରୀ ବୈକୁଣ୍ଠନାଥ

ସଦୁଆଳଙ୍କ ଜାଗିରି ଜମି ବାଜ୍ୟାପ୍ତ କରିବା ସଙ୍ଗେ ସଙ୍ଗେ ତାଙ୍କୁ ୨୪ ଘଣ୍ଟା ମଧ୍ୟରେ ମୟୂରଭଞ୍ଜ ଛାଡ଼ି ଚାଲିଯିବାପାଇଁ ଆଦେଶ ଜାରି କଲେ । ଉକ୍ତ ଆଦେଶ ଫଳରେ ପାଇକମାନଙ୍କ ମଧ୍ୟରୁ ଅନେକ ପ୍ରଜାମଣ୍ଡଳରେ ଯୋଗ ଦେଇଥିବାରୁ ପ୍ରଜାମଣ୍ଡଳ ତରଫରୁ ସେମାନଙ୍କ ଦାବିପ୍ରତି ସମର୍ଥନ ଜଣାଇ ବିଭିନ୍ନ ସ୍ଥାନରେ ସଭାମାନ କରାଗଲା । ସରକାରୀ ଆଦେଶ ଅବମାନନା କରିଥବା ଅଭିଯୋଗରେ ଶ୍ରୀ ସଦୁଆଳଙ୍କୁ ଅଟକ ରଖାଗଲା । ଏଥିରେ ମଧ୍ୟ ପାଇକମାନେ ଭୟଭୀତ ନ ହୋଇ ପୂର୍ବ ନିଷ୍ପତ୍ତିରେ ଅଟଳ ରହିଲେ । ମୟୂରଭଞ୍ଜରେ ଶରତ ବାବୁଙ୍କ ନେତୃତ୍ୱରେ ସରକାର ଗଠିତ ହେଲା ପରେ ସମସ୍ତ ପାଇକାଳୀ ଜାଗିରି ଜମିକୁ ସେମାନଙ୍କ ନାମରେ ଦାଏର କରି ଖଜଣା ଧାର୍ଯ୍ୟ କରାଗଲା ।

## "ପୂର୍ବାଞ୍ଚଳ ଗଡ଼ଜାତ ସମ୍ମିଳନୀ"

ଭାରତର ଗଡ଼ଜାତଗୁଡ଼ିକରେ ସିଧା ସଳଖଭାବରେ କଂଗ୍ରେସ ସଂଗଠନ କରା ନଯାଇ ସାରା ଭାରତର ଗଡ଼ଜାତଗୁଡ଼ିକପାଇଁ "ନିଖିଳ ଭାରତ ଗଡ଼ଜାତ ସଂଗଠନ" ନାମକ ଏକ ସଂଗଠନ ଗଠିତ ହୋଇଥିଲା । ପଣ୍ଡିତ ଜବାହାରଲାଲ୍ ନେହେରୁ ତାର ସଭାପତି ଥିଲେ । ତହିଁର ପୂର୍ବାଞ୍ଚଳର (ଓଡ଼ିଶା, ମଧ୍ୟପ୍ରଦେଶ ଓ ଆସାମ) ଦେଶୀୟ ରାଜ୍ୟଗୁଡ଼ିକ ପାଇଁ ଏକ ଶାଖା ସଂଗଠନ ଗଠନ ଉଦ୍ଦେଶ୍ୟରେ ସଂପୃକ୍ତ ଅଞ୍ଚଳର ଦେଶୀୟ ରାଜ୍ୟଗୁଡ଼ିକରେ ଚାଲିଥିବା ପ୍ରଜାମଣ୍ଡଳ ପ୍ରତିନିଧିମାନଙ୍କର ଏକ ସମ୍ମିଳନୀ କଟକଠାରେ ଡକାଯାଇଥିଲା । ଏହି ବୈଠକରେ ପୂର୍ବାଞ୍ଚଳ ଦେଶୀୟ ରାଜ୍ୟ ପ୍ରଜା ସମ୍ମିଳନୀ ଗଠନ କରାଗଲା । ଏଥିରେ ଶ୍ରୀ ସାରଙ୍ଗଧର ଦାସ ସଭାପତି, ଶ୍ରୀ ପବିତ୍ରମୋହନ ପ୍ରଧାନ ଉପ ସଭାପତି ଶ୍ରୀ ମଦନ ମୋହନ ପ୍ରଧାନ ସାଧାରଣ ସଂପାଦକ ରୂପେ ମଧ୍ୟପ୍ରଦେଶ ଗଡ଼ଜାତ ଗୁଡ଼ିକରୁ ଜଣେ ଓ ଓଡ଼ିଶା ରାଜ୍ୟ ତରଫରୁ ମୁଁ ଏହିପରି ଦୁଇଜଣ ଯୁଗ୍ମ ସଂପାଦକ ରୂପେ ନିର୍ବାଚିତ ହେଲୁଁ । ମୁଁ ଏପରି ଏକ ସମ୍ମାନଜନକ ସଂଗଠନକୁ ନିର୍ବାଚିତ ହୋଇଥିବାରୁ ମୟୂରଭଞ୍ଜ କର୍ମୀମାନଙ୍କ ମଧ୍ୟରେ ବେଶ ଉତ୍ସାହ ଜନ୍ମିଲା ।

## ପ୍ରଜାମଣ୍ଡଳର ତୃତୀୟ ଅଧିବେଶନ-ପ୍ରତାପପୁର - ୧୯୪୬

୧୯୪୬ ମସିହାର ମେ ମାସ ବେଳକୁ ଭାରତର ପ୍ରାୟ ସମସ୍ତ ନେତୃବର୍ଗ ମୁକ୍ତିଲାଭ କରିସାରିଲେଣି । ଏତିକିବେଳେ ପ୍ରଜାମଣ୍ଡଳର ଏକ ସାଧାରଣ ଅଧିବେଶନ ବଡ଼ସାହି ଥାନାର ପ୍ରତାପପୁରଠାରେ ବୁଢ଼ାବଳଙ୍ଗ ନଦୀ କୂଳରେ ଅନୁଷ୍ଠିତ ହୋଇଥିଲା । ଏହି ଅଧିବେଶନରେ ଏକ ସ୍ୱେଚ୍ଛାସେବକ ବାହିନୀ ପ୍ରଜାମଣ୍ଡଳ ତରଫରୁ ଗଢ଼ାଗଲା ଏବଂ ଶ୍ରୀ ଗିରୀଶ ଚନ୍ଦ୍ର ରାୟଙ୍କୁ ସ୍ଥାୟୀଭାବେ ଏହାର ଦାୟିତ୍ୱ ଅର୍ପଣ କରାଗଲା । ଏଥର ମଧ୍ୟ ଶ୍ରୀ ଶରତ୍ ଚନ୍ଦ୍ର ଦାସ ସଭାପତି ରୂପେ ଓ ମୁଁ ସାଧାରଣ ସଂପାଦକରୂପେ ନିର୍ବାଚିତ ହୋଇଥିଲୁ । ଏଥର ସମ୍ମିଳନୀରେ ରାଜନୈତିକ ବିଚାରଧାରାର ସବିଶେଷ ଆଲୋଚନା ହୋଇଥିଲା । ସେତେବଳେ ଓଡ଼ିଶାର କଂଗ୍ରେସ ଭିତରେ ଥିବା ସମାଜବାଦୀ ସଂଗଠନର କେତେକ ମୁଖ୍ୟ ନେତା ଯଥା ଶ୍ରୀ ବିଶ୍ୱନାଥ ପଣ୍ଡିତ ଓ ବୈକୁଣ୍ଠନାଥ ମହାନ୍ତି ପ୍ରମୁଖ ବିଶେଷଭାବେ ନିମନ୍ତ୍ରିତ ହୋଇ ଏହି ଅଧିବେଶନରେ ଯୋଗ ଦେଇଥିଲେ । ସମାଜବାଦୀ ଚିନ୍ତାଧାରାର ପ୍ରଚାର କରାଯାଇ ଏକ ଲକ୍ଷ୍ମୁଆ କାର୍ଯ୍ୟକ୍ରମ ଗ୍ରହଣ କରାଯାଇଥିଲା ।

ମୟୂରଭଞ୍ଜର ସୀମାନ୍ତ ଅଂଚଳକୁ ପ୍ରଜାମଣ୍ଡଳ ଆନ୍ଦୋଳନ ପ୍ରସାର କରିବାର ସ୍ଥିର କରାଯାଇଥିଲା । ତହିଁ ପୂର୍ବରୁ ଉକ୍ତ ପୂର୍ବାଞ୍ଚଳ ସମ୍ମିଳନୀପାଇଁ ପ୍ରତି ଗଡ଼ଜାତରୁ ପ୍ରତିନିଧି ନିର୍ବାଚନପାଇଁ ନିର୍ଦ୍ଦେଶ ଆସିଥାଏ । ତେଣୁ ଲୋକସଂଖ୍ୟା ଅନୁପାତରେ ମୟୂରଭଞ୍ଜରୁ ୮ ଜଣ ପ୍ରତିନିଧି ନିର୍ବାଚିତ ହୋଇଥିଲେ । ସେଥିପାଇଁ ବିଧିବଦ୍ଧ ପ୍ରାର୍ଥୀ ହୋଇ ଭୋଟର ତାଲିକା (ପ୍ରଜାମଣ୍ଡଳ ସଭ୍ୟ ମଧ୍ୟରୁ) ପ୍ରସ୍ତୁତ ହୋଇ ଗୁପ୍ତ ଭୋଟର ନିର୍ବାଚନ କରାଯାଇ ନିମ୍ନଲିଖିତ ପ୍ରତିନିଧିମାନେ ନିର୍ବାଚିତ ହୋଇଥିଲେ । ଯଥା- ଶ୍ରୀଯୁକ୍ତ ଶରତଚନ୍ଦ୍ର ଦାସ, ଶ୍ରୀ ପ୍ରସନ୍ନ କୁମାର ଦାଶ, ଶ୍ରୀ ହରିହର ମହାନ୍ତି, ଶ୍ରୀ ଜଗନ୍ନାଥ କମିଳା, ଶ୍ରୀ ଗିରୀଶ ଚନ୍ଦ୍ର ରାୟ, ଶ୍ରୀ ସାକିଲା ସରେନ୍, ଶ୍ରୀ ପୂର୍ଣ୍ଣଚନ୍ଦ୍ର ପରିଚ୍ଛା ଓ ଶ୍ରୀ ବୈକୁଣ୍ଠନାଥ ସଦୁଆଳ ।

୧୯୪୬ ମସିହାରେ State Peoples Conference ର ଗୋଆଲିଅର ଠାରେ ଯେଉଁ ଅଧିବେଶନ ହୋଇଥିଲା ସେଥିରେ ପ୍ରଜାମଣ୍ଡଳ ଆନ୍ଦୋଳନର ବହୁ କର୍ମୀ ଯୋଗ ଦେଇଥିଲେ ଏବଂ ମୟୂରଭଞ୍ଜରୁ ଶ୍ରୀ ଶରତ ଚନ୍ଦ୍ର ଦାସ୍, ଶ୍ରୀ ହରିହର ମହାନ୍ତ ଓ ଶ୍ରୀ ପ୍ରସନ୍ନ କୁମାର ଦାଶ ଏହି ସମ୍ମିଳନୀରେ ଯୋଗଦାନ କରିଥିଲେ । ପଣ୍ଡିତ ଜବାହରଲାଲ ନେହେରୁ ଏହି ସମ୍ମିଳନୀରେ ସଭାପତିତ୍ୱ କରିଥିଲେ । ଏହି ସମ୍ମିଳନୀରେ ଶ୍ରୀଯୁକ୍ତ ପବିତ୍ର ମୋହନ ପ୍ରଧାନଙ୍କ ସହିତ ମୋର ପ୍ରଥମ ସାକ୍ଷାତ ହୋଇଥିଲା । ସେ ତାଳଚେରରୁ ଫେରାର ଥିଲେ ଏବଂ ତାଙ୍କୁ ଧରି ଦେବାପାଇଁ ସେଠା ସରକାର ପୁରସ୍କାର ଘୋଷଣା କରିଥିଲେ । ସେ ନିଜ ନାମ ବଦଳାଇ ଛଦ୍ମ ବେଶରେ ଭାରତର ବିଭିନ୍ନ ଅଞ୍ଚଳରେ ବୁଲୁଥିଲେ ।

## ଭାରତର ସ୍ୱାଧୀନତା ପ୍ରାପ୍ତି

୧୯୪୭ ମସିହା ଅଗଷ୍ଟ ମାସ ୧୫ ତାରିଖରେ ଭାରତ ସ୍ୱାଧୀନ ହେଲା । ସେତେବେଳକୁ କେନ୍ଦ୍ରରେ ପଣ୍ଡିତ ନେହେରୁଙ୍କ ନେତୃତ୍ୱରେ କଂଗ୍ରେସ ଓ ମୁସ୍‌ଲିମ୍ ଲିଗ୍ ମିଳିତ ମନ୍ତ୍ରିମଣ୍ଡଳ ଓ ଅଳ୍ପ କେତୋଟି ରାଜ୍ୟ ଛାଡ଼ି ଅନ୍ୟ ସମସ୍ତ ପ୍ରଦେଶମାନଙ୍କରେ କଂଗ୍ରେସ ସରକାର ଚାଲିଥିଲା । ଅବଶ୍ୟ ଗଡ଼ଜାତ ବା ଦେଶୀୟ ରାଜ୍ୟ ଗୁଡ଼ିକର ଶାସନରେ ସେପରି କୌଣସି ପରିବର୍ତ୍ତନ ଘଟିବାକୁ ଯାଉନଥିଲା । କାରଣ ଇଂରେଜ ସରକାର ସେତେବେଳକୁ ଭାରତକୁ ହିନ୍ଦୁସ୍ଥାନ ଓ ପାକିସ୍ଥାନରେ ଭାଗ ଭାଗ କଲାପରେ ଗଡ଼ଜାତ ଅଂଚଳଗୁଡ଼ିକୁ ନେଇ ରାଜସ୍ଥାନ ସୃଷ୍ଟି କରିବାର ମତଲବ ରଖିଥିବାରୁ ଗଡ଼ଜାତ ଅଂଚଳର ରାଜାମାନେ ୧୯୪୭ ଅଗଷ୍ଟ ପର୍ଯ୍ୟନ୍ତ ଅତି ଦମ୍ଭରେ ପ୍ରଜା ଆନ୍ଦୋଳନକୁ ଦମନ କରିବାରେ ଲାଗିଥିଲେ । ଇଂରେଜ ସରକାର ଦେଶର ସ୍ୱାଧୀନତା ଅର୍ପଣ କରି ଏଭଳିଭାବରେ ଚାଲିଯିବେ ବୋଲି କେହି ବିଶ୍ୱାସ ବି କରିପାରୁ ନଥିଲେ । ମୟୂରଭଞ୍ଜ ପ୍ରଜାମଣ୍ଡଳ ତରଫରୁ ଉକ୍ତ ସ୍ୱାଧୀନତା ଉତ୍ସବ ବାରିପଦାଠାରେ ପାଳନ କରିବାର ସ୍ଥିର କରାଯାଇ ପ୍ରଚାର କରାଗଲା । ତା୧୫ରିଖ ସକାଳେ ବାରିପଦା ସହର ଉପକଣ୍ଠସ୍ଥ ମଧୁବନଠାରେ ପତାକା ଉତ୍ତୋଳନ ଉତ୍ସବରେ ପ୍ରାୟ ୪୦ ରୁ ୫୦ ହଜାର ଲୋକ ଯୋଗ ଦେଇଥିଲେ । ତହିଁ ପୂର୍ବରୁ ଯେଉଁ ଶୋଭାଯାତ୍ରା ହୋଇଥିଲା ତାହା ମଧୁବନ ଠାରୁ ଆରମ୍ଭ ହୋଇ ସମଗ୍ର ବାରିପଦା ସହର ଅତିକ୍ରମ କରି ମଧୁବନର

ସଭାସ୍ଥଳକୁ ପହଞ୍ଚିଲା ବେଳକୁ ଶୋଭାଯାତ୍ରାର ଲାଞ୍ଜ ମଧୁବନ ଛାଡ଼ି ନଥିଲା । ଏପରି ବିରାଟ ସଭା ବା ଶୋଭାଯାତ୍ରା ବାରିପଦାଠାରେ ପୂର୍ବରୁ କେବେ ହେଲେ ହୋଇ ନଥିଲା ।

## ପ୍ରଜାମଣ୍ଡଳ ତରଫରୁ ପୂର୍ଣ୍ଣ ସ୍ୱାଧୀନତା ଓ ସତ୍ୟାଗ୍ରହ ଆନ୍ଦୋଳନ

ବ୍ରିଟିଶ ଶାସିତ ଅଂଚଳରେ ପୂର୍ଣ୍ଣ ସ୍ୱାଧୀନତା ଲାଭ ହୋଇଥିଲେ ହେଁ ଗଡ଼ଜାତଗୁଡ଼ିକରେ ପୂର୍ବଭଳି ଏକଛତ୍ର ଶାସନ ଚାଲିଥାଏ । ଅଗଷ୍ଟ ୧୫ ତାରିଖ ଭାରତର ସ୍ୱାଧୀନତା ପ୍ରାପ୍ତି ପରେ ଗଡ଼ଜାତମାନଙ୍କରେ ଚାଲିଥିବା ପ୍ରଜାମଣ୍ଡଳ ଆନ୍ଦୋଳନ ଅଧିକ ତୀବ୍ର ହୋଇଉଠିଲା । ମୟୂରଭଞ୍ଜରେ ପ୍ରଜାମଣ୍ଡଳ ତରଫରୁ ଉଦଳା, ଖୁଣ୍ଟା, ବେତନଟୀ, ବାରିପଦା, କରଂଜିଆ ଓ ରାଇରଙ୍ଗପୁରଠାରେ ପ୍ରଜାମଣ୍ଡଳର ଶିବିରମାନ ପଡ଼ି ମଦ ଓ ଅନ୍ୟାନ୍ୟ ନିତ୍ୟ ବ୍ୟବହାର୍ଯ୍ୟ ଦୋକାନମାନଙ୍କରେ ସତ୍ୟାଗ୍ରହ ଆରମ୍ଭ କରାଗଲା । ଉଦଳାଠାରେ ଏକ ଜନତା ଅଦାଲତ ପ୍ରତିଷ୍ଠିତ ହୋଇ ମାଲି ମୋକଦ୍ଦମାଗୁଡ଼ିକର ବିଚାର ମଧ କରାଗଲା । ଏପରି ଆନ୍ଦୋଳନ ପ୍ରାୟ ଦୁଇ ତିନିମାସ ଧରି ଚାଲିଲା । ସତ୍ୟାଗ୍ରହ କରି ରାଜଦରବାରଙ୍କ ଦ୍ୱାରା ପ୍ରତିଷ୍ଠିତ ପ୍ରଜାସଭାକୁ ବନ୍ଦ କରି ଦିଆଗଲା । ତଥାପି ରାଜ୍ୟସରକାରଙ୍କ ତରଫରୁ କୌଣସି ପ୍ରକାର ଦମନମୂଳକ କାର୍ଯ୍ୟପନ୍ଥା ଗ୍ରହଣ କରାଯାଉନଥାଏ । ଏହା ଭିତରେ ଓଡ଼ିଶାର ନୟାଗଡ଼ ଦେଶୀୟ ରାଜ୍ୟରେ ପ୍ରଜାମଣ୍ଡଳର ଏକ ମନ୍ତ୍ରିମଣ୍ଡଳ ଗଠିତ ହେବାର ଦେଖାଗଲା । ତେଣୁ ଆମର ଆନ୍ଦୋଳନ ବଢ଼ି କ୍ରମେ ବ୍ୟାପକ ଅବସ୍ଥା ଧାରଣ କଲା ।

## ପ୍ରଜାମଣ୍ଡଳକୁ କ୍ଷମତା ହସ୍ତାନ୍ତର - ଶରତ୍‌ବାବୁଙ୍କ ମନ୍ତ୍ରୀମଣ୍ଡଳ

ଭାରତ ପୂର୍ଣ୍ଣ ସ୍ୱାଧୀନତା ଲାଭ କଲାପରେ ମଧ କେତେ ଦେଶୀୟ ରାଜ୍ୟର ରାଜା ମହାରାଜାମାନେ ଇଂରେଜ ସରକାରଙ୍କ ସହାୟତାରେ କିଛିଦିନ ଶାସନ ଚଳାଇବାର ପ୍ରୟାସ ଜାରି ରଖିଥିଲେ । ଇଂରେଜ ସରକାର ଏପରିଭାବରେ କ୍ଷମତା ହସ୍ତାନ୍ତର କରି ଚାଲିଯିବା ସେମାନେ ବିଶ୍ୱାସ କରିପାରୁନଥିଲେ । କେନ୍ଦ୍ରରେ ସଂପୂର୍ଣ୍ଣ ସ୍ୱାଧୀନ ସରକାର ପ୍ରତିଷ୍ଠିତ ହେବାପରେ ଦେଶୀୟ ରାଜ୍ୟର ରାଜାମାନେ ଅତି ଚତୁରତାର ସହ ନିଜର ସ୍ଥିତି ରକ୍ଷା କରିବାପାଇଁ ରାଜ୍ୟରେ ଚାଲିଥିବା ଆନ୍ଦୋଳନକାରୀଙ୍କ ହାତକୁ କ୍ଷମତା ହସ୍ତାନ୍ତର କରି ନିଜେ ଶାସନ ମୁଖ୍ୟ ହୋଇ ରହିବାର କୌଶଳ ଅବଲମ୍ବନ କଲେ । ଏମାନଙ୍କ ମଧରୁ ମୟୂରଭଞ୍ଜର ମହାରାଜା ଅନ୍ୟତମ । ପ୍ରଜାମଣ୍ଡଳ ଆନ୍ଦୋଳନ କ୍ରମେ ବ୍ୟାପକ ହେବାରୁ ମହାରାଜାଙ୍କଠାରୁ ହସ୍ତାନ୍ତର ସୂଚନା ମିଳିଲା । ପ୍ରଜାମଣ୍ଡଳ ଏକ ସ୍ୱତନ୍ତ୍ର ଅଧିବେଶନରେ ଏ ବିଷୟର ଆଲୋଚନା କରାଯାଇ ସ୍ୱାଗତ କରାଗଲାପରେ ୧୯୪୭ ମସିହା ଡିସେମ୍ବର ମାସରେ ପ୍ରଜାମଣ୍ଡଳର ସଭାପତି ଶ୍ରୀଯୁକ୍ତ ଶରତ୍‌ଚନ୍ଦ୍ର ଦାସଙ୍କୁ ଡାକି ମନ୍ତ୍ରୀମଣ୍ଡଳ ଗଠନ କରିବା ପାଇଁ ମହାରାଜା ଅନୁରୋଧ କଲେ । ସୁତରାଂ ପ୍ରଜାମଣ୍ଡଳର ନିଷ୍ପତ୍ତି ଅନୁଯାୟୀ ଶ୍ରୀଯୁକ୍ତ ଶରତ୍‌ଚନ୍ଦ୍ର ଦାସ ମୁଖ୍ୟମନ୍ତ୍ରୀ ରୂପେ ଶପଥ ଗ୍ରହଣ କଲେ । ପୂର୍ବରୁ ରାଜ ସରକାରଙ୍କ ଅଧୀନରେ ଏସ୍.ଡ଼ି.ଓ. ପଦବୀରେ କାର୍ଯ୍ୟକରି ଅବସର ଗ୍ରହଣ କରିଥିବା ଜଣେ ଦକ୍ଷ ପ୍ରଶାସକ ଶ୍ରୀଯୁକ୍ତ ବିଦ୍ୟାଧର ମହାପାତ୍ର ଓ ଶ୍ରୀଯୁକ୍ତ ମହେଶ୍ୱର ନାଏକ ସହଯୋଗୀ ମନ୍ତ୍ରୀ ହିସାବରେ ଶପଥ ଗ୍ରହଣ

କରି ମନ୍ତ୍ରୀମଣ୍ଡଳ ଗଠନ କଲେ । ଲୋକଙ୍କର ବହୁଦିନର ଆଶା ଓ ଆକାଂକ୍ଷା ପୂରଣ ହେଲା । ସମଗ୍ର ରାଜ୍ୟରେ ଏକ ଅଭିନବ ବିଜୟ ଉନ୍ମାଦନା ଖେଳିଗଲା । ୧୯୩୯ ମସିହାରେ ସାଧାରଣ ଲୋକେ ପ୍ରଜା ଆନ୍ଦୋଳନ ଆରମ୍ଭ କଲାବେଳେ ରାଜ୍ୟର ଧନୀ, ମହାଜନ ଓ ସରକାରୀ କର୍ମଚାରୀ ବିଶେଷ କରି ସରକାରୀ ପ୍ରଧାନ ଓ ଠିକାଦାରମାନେ ବିଶେଷ ବିରୋଧ କରି ପ୍ରଜାମଣ୍ଡଳର ସମର୍ଥକମାନଙ୍କୁ ବହୁ ନିର୍ଯ୍ୟାତନା ଦେଉଥିଲେ । ମିଥ୍ୟା ମୋକଦ୍ଦମା ସୃଷ୍ଟି କରିବାରେ ପୋଲିସ୍‌କୁ ସାହାଯ୍ୟ କରୁଥିଲେ, ସେମାନଙ୍କ ଦମ୍ଭ ଓ ସାହସ ଆଜି ଭାଙ୍ଗି ପଡ଼ିଲା । ସାଧାରଣ ପ୍ରଜାମଣ୍ଡଳ କର୍ମୀଙ୍କ ନିକଟରେ ସେମାନେ ନତମସ୍ତକ ହେଲେ ।

ପ୍ରଜାମଣ୍ଡଳର ପ୍ରସ୍ତାବକ୍ରମେ ୫୧ଜଣ ସଭ୍ୟଙ୍କୁ ନେଇ ପ୍ରଜାପରିଷଦ ବା ବିଧାନସଭା ଗଠନ ପ୍ରସ୍ତାବ ମହାରାଜା ଗ୍ରହଣ କଲାପରେ ପ୍ରଜାମଣ୍ଡଳରୁ ୩୧ ଜଣ କର୍ମୀ ଓ ସମର୍ଥକଙ୍କ ବ୍ୟତୀତ ଶ୍ରୀ ସୋନାରାମ ସରେନ୍‌ଙ୍କ ଆଦିବାସୀ ଦଳ ଓ ପ୍ରଜାମଣ୍ଡଳକୁ ବିରୋଧ କରିବାପାଇଁ ରାଜ୍ୟସରକାରଙ୍କ ତରଫରୁ ଗଠିତ ପ୍ରଜାମଙ୍ଗଳ ଦଳରୁ ୨୦ ଜଣ ସଭ୍ୟଙ୍କୁ ନେଇ ଏକ ତାଲିକା ପ୍ରସ୍ତୁତ କରାଗଲା ଏବଂ ସେହିମାନଙ୍କୁ ହିଁ ବିଧାନ ସଭାର ସଭ୍ୟଭାବରେ ମନୋନୀତ କରାଗଲା । ପ୍ରଜାମଣ୍ଡଳର ୩ଜଣ ମନ୍ତ୍ରୀଙ୍କ ବ୍ୟତୀତ ସର୍ବଶ୍ରୀ ପ୍ରସନ୍ନ କୁମାର ଦାଶ, ଶ୍ରୀ ଗୌରମୋହନ ପ୍ରଧାନ, ହରିହର ମହାନ୍ତ, ଭକ୍ତବଂଧୁ ମହାନ୍ତ, ଶିବ ପ୍ରସାଦ ମହାନ୍ତ, ଜିତ ମୋହନ ମହାନ୍ତ, ଗିରିଶ ଚନ୍ଦ୍ର ରାୟ, ସାକିଲା ସୋରେନ୍, ରମାନାଥ ଟୁଡୁ, ପୂର୍ଣ୍ଣଚନ୍ଦ୍ର ପାଣି, ଲକ୍ଷ୍ମୀଧର ଧଳ, ଅମରେନ୍ଦ୍ର କୁମାର ଦାଶ, ବୈକୁଣ୍ଠନାଥ ସଦୁଆଳ, ଗୌରମୋହନ ମହାପାତ୍ର ପ୍ରଭୃତି ବ୍ୟକ୍ତିମାନେ ବିଧାନସଭାର ସଭ୍ୟ ଥିଲେ ।

ଏତିକିବେଳେ ସାରା ଭାରତରେ ସମସ୍ତ ଦେଶୀୟ ରାଜ୍ୟଗୁଡ଼ିକର ସ୍ୱାଧୀନ ଭାରତ ସରକାରଙ୍କ ସହିତ ସଂପୂର୍ଣ୍ଣ ମିଶ୍ରଣ କଂଗ୍ରେସର ଲୌହମାନବ କେନ୍ଦ୍ରର ତଦାନୀନ୍ତନ ସ୍ୱରାଷ୍ଟ୍ରମନ୍ତ୍ରୀ ଶ୍ରୀଯୁକ୍ତ ସର୍ଦ୍ଦାର ବଲ୍ଲଭଭାଇ ପଟେଲଙ୍କ ନେତୃତ୍ୱରେ ଆରମ୍ଭ ହେଲା । ଇଂରେଜମାନେ ଗଲା ପରେ ମଧ୍ୟ ବାହାର ଶକ୍ତି ସହିତ ଗୁପ୍ତ ସଂପର୍କ ପ୍ରତିଷ୍ଠା କରି କେତେକ ବଡ଼ ବଡ଼ ଦେଶୀୟ ରାଜ୍ୟ ଭାରତ ସରକାରଙ୍କ ବିରୁଦ୍ଧରେ ଯେଉଁଭଳି ଷଡ଼ଯନ୍ତ୍ର ଆରମ୍ଭ କଲେ ତହିଁର ନିରାକରଣପାଇଁ ସମସ୍ତ ଦେଶୀୟ ରାଜ୍ୟଗୁଡ଼ିକର ସ୍ୱତନ୍ତ୍ର ସ୍ଥିତି ଲୋପକରି ସଂପୃକ୍ତ ରାଜା  ମହାରାଜାଙ୍କ ଠାରୁ କ୍ଷମତା କାଢ଼ି ନେବା ଛଡ଼ା ଅନ୍ୟ କୌଣସି ପନ୍ଥା ଭାରତ ସରକାରଙ୍କ ପକ୍ଷରେ ନଥିଲା । ଏପରିକି ହାଇଦ୍ରାବାଦ୍, ଯାମନଗର ପ୍ରଭୃତି କେତେକ ଦେଶୀୟ ରାଜ୍ୟର ପାକିସ୍ଥାନ ସହିତ ଷଡ଼ଯନ୍ତ୍ର ଥିବାର ଜାଣି ଭାରତ ସରକାରଙ୍କୁ ସୈନ୍ୟ ଚାଳନାପୂର୍ବକ କ୍ଷମତା କାଢ଼ି ନିଆଯାଇଥିଲା । କାଶ୍ମୀରପାଇଁ ପାକିସ୍ଥାନ ସହିତ ଯୁଦ୍ଧ କରି ବର୍ତ୍ତମାନର ଜାମ୍ମୁ ଓ କାଶ୍ମୀର ଅଂଚଳ ଦଖଲ କରିନିଆଗଲା । ୧୯୪୮ ମସିହା ଆରମ୍ଭରେ ସ୍ୱରାଷ୍ଟ୍ରମନ୍ତ୍ରୀ ଓଡ଼ିଶାକୁ ଆସି ସମସ୍ତ ଗଡ଼ଜାତ ରାଜାମାନଙ୍କୁ ଡାକି କ୍ଷମତା ହସ୍ତାନ୍ତର କରିବାର ପରାମର୍ଶ ଦେବାମାତ୍ରେ ସମସ୍ତ ରାଜା, ମହାରାଜା ସଙ୍ଗେ ନିଜ ନିଜ ରାଜ୍ୟର କ୍ଷମତା ଓଡ଼ିଶା ସରକାରଙ୍କୁ ହସ୍ତାନ୍ତର କରିଦେଲେ । ମାତ୍ର ସେତେବେଳକୁ ମୟୂରଭଞ୍ଜରେ ଏକ ଲୋକପ୍ରିୟ ସରକାର ଗଠିତ ହୋଇଥିବାରୁ ଏଠାକାର କ୍ଷମତା ହସ୍ତାନ୍ତର ପ୍ରଶ୍ନ ଉଠିଲା ନାହିଁ । ତେଣୁ ଓଡ଼ିଶାର ୨୪ଟି ଗଡ଼ଜାତ ମଧ୍ୟରୁ କେବଳ ମୟୂରଭଂଜ ବ୍ୟତୀତ ଅନ୍ୟ ସମସ୍ତ ଗଡ଼ଜାତ ଅଂଚଳଗୁଡ଼ିକ ଓଡ଼ିଶାରେ ମିଶିଗଲା ।

ମୟୂରଭଞ୍ଜରେ ମନ୍ତ୍ରୀମଣ୍ଡଳ ଗଠିତ ହୋଇଥିବାରୁ ଏଠା ଲୋକପ୍ରିୟ ସରକାର ନିଜର ସ୍ଥିତି ବଜାୟ ରଖି ବିଭିନ୍ନ ଉନ୍ନୟନ ଓ ପ୍ରଗତିଶୀଳ କାର୍ଯ୍ୟ ଆରମ୍ଭ କରିଦେଲେ । ଓଡ଼ିଶାରେ ଓଡ଼ିଆ ଭାଷାଭାଷୀ ଅଂଚଳ ମଧ୍ୟରେ ଓଡ଼ିଶା ଓ ମୟୂରଭଞ୍ଜ ଦୁଇଟି ରାଜ୍ୟ ରହିବ ଏହା କେତେକଙ୍କ ମତରେ ଠିକ୍ ହେଲା ନାହିଁ । ମୟୂରଭଞ୍ଜ ସ୍ୱତନ୍ତ୍ର ରହି ଅଳ୍ପ କେତେ ଦିନ ମଧ୍ୟରେ ଯେଉଁସବୁ ପ୍ରଗତିଶୀଳ କାର୍ଯ୍ୟ କରିଥିଲା ତାର ପଟାନ୍ତର ଅନ୍ୟତ୍ର ବିରଳ । ନିଶା ନିବାରଣ କଂଗ୍ରେସର ଏକ ପ୍ରଧାନ କାର୍ଯ୍ୟ ଥିଲେ ହେଁ ଯାହା ଆଜି ପର୍ଯ୍ୟନ୍ତ ସ୍ୱାଧୀନତା ପ୍ରାପ୍ତିର ୪୭ବର୍ଷ କାଳ ମଧ୍ୟରେ ହୋଇପାରି ନାହିଁ ତାହା ଅଳ୍ପ କେତେ ମାସ ମଧ୍ୟରେ ମୟୂରଭଞ୍ଜର ଲୋକପ୍ରିୟ ସରକାର ଅନାୟାସରେ କାର୍ଯ୍ୟକାରୀ କରିପାରିଥିଲେ । ମୟୂରଭଞ୍ଜର ଆଦିବାସୀମାନେ ହାଣ୍ଡିଆ ନାମକ ଯେଉଁ ନିଶା ଘରେ ଘରେ ତିଆରି କରି ଖାଉଥିଲେ ଓ ହାଟବାଟରେ ବିକ୍ରି କରୁଥିଲେ ଏବଂ ଅଧିକାଂଶ ସମୟ ନିଶାଗ୍ରସ୍ତ ହୋଇ ରହୁଥିବାରୁ ତାଙ୍କର ଆର୍ଥିକ ଦୁର୍ଗତି ଘଟୁଥିଲା ସେହି ହାଣ୍ଡିଆ ନିଶାକୁ ମୟୂରଭଞ୍ଜ ମନ୍ତ୍ରୀମଣ୍ଡଳ ସଫଳତାର ସହିତ ଉଠାଇ ଦେଇ ଆନ୍ଦୋଳନ ବେଳର ପ୍ରତିଶ୍ରୁତି ରକ୍ଷା କରିଥିଲେ । ମୟୂରଭଞ୍ଜରେ ମହାରାଜାଙ୍କ ଅମଳରେ ଯେଉଁ ସର୍ଦ୍ଦାରୀ ପ୍ରଥା (Revenue Collecting Agency) ଥିଲା ଓ ସର୍ଦ୍ଦାରମାନେ ଜମିଦାରଙ୍କ ଭଳି ପ୍ରଜାମାନଙ୍କ ଉପରେ ଅତ୍ୟଧିକ ଅତ୍ୟାଚାର କରି ଚାଲିଥିଲେ ଓ ପ୍ରଜାମଣ୍ଡଳର ସବୁଠାରୁ ଅଧିକ ବିରୋଧ କରୁଥିଲେ ମନ୍ତ୍ରୀମଣ୍ଡଳ ଅନାୟାସରେ ଏ ପ୍ରଥାର ବିଲୋପ ସାଧନ ଘଟାଇଲେ । ଏହି କାର୍ଯ୍ୟର ସମକକ୍ଷ ପଦକ୍ଷେପ ଆଜି ପର୍ଯ୍ୟନ୍ତ କୌଣସି ସରକାର କରି ପାରିନାହାନ୍ତି । କଂଗ୍ରେସ ସରକାର ଜମିଦାରୀ ପ୍ରଥା ଉଚ୍ଛେଦକରି ଓ ରାଜତନ୍ତ୍ରର ବିଲୋପସାଧନ କରି ଅତ୍ୟାଚାରି ଜମିଦାର ଓ ରାଜା ମହାରାଜାମାନଙ୍କୁ ରାଜକୋଷରୁ କୋଟି କୋଟି ଟଙ୍କା କ୍ଷତିପୂରଣ ଦେଇଛନ୍ତି । ଅଥଚ ମୟୂରଭଞ୍ଜର ଲୋକପ୍ରିୟ ସରକାର ସର୍ଦ୍ଦାରୀ ପ୍ରଥା ଉଚ୍ଛେଦ କରି ପଇସାଟିଏ ବି କ୍ଷତିପୂରଣ ଦେଇ ନାହାନ୍ତି । ଏହାଠାରୁ ଅଧିକ ପ୍ରଗତିଶୀଳ କାର୍ଯ୍ୟ ଆଉ କ'ଣ ହୋଇପାରେ ?

ସେହିପରି ମୟୂରଭଞ୍ଜରେ ଉଚ୍ଚଶିକ୍ଷାର କୌଣସି ବ୍ୟବସ୍ଥା ନଥିବାରୁ ଏଠାକାର ଛାତ୍ରମାନଙ୍କୁ ଉଚ୍ଚଶିକ୍ଷା ପାଇଁ ରେଭେନ୍‌ସା କଲେଜ ଉପରେ ନିର୍ଭର କରିବାକୁ ପଡୁଥିଲା । ଏତିକିବେଳେ ମୟୂରଭଞ୍ଜର ଛାତ୍ରମାନଙ୍କୁ ରେଭେନ୍‌ସା କଲେଜ୍‌ରେ ନାମ ଲେଖାରେ କେତେକ କଟକଣା କଲାରୁ ବାରିପଦାରେ ଏକ ବିଜ୍ଞାନ କଲେଜ ମଧ୍ୟ ପ୍ରତିଷ୍ଠା କରାଗଲା । ଓଡ଼ିଶାରେ ବ୍ରିଟିଶ୍ ଶାସନ କାଳରେ ଯେତେବେଳେ ବର୍ତ୍ତମାନର ରେଭେନ୍‌ସା କଲେଜ୍ ଅର୍ଥାଭାବରୁ Affiliation fee ନ ଦେଇ ପାରିବାରୁ ଭାଙ୍ଗି ଯାଉଥିଲା ସେତେବେଳେ ମୟୂରଭଞ୍ଜର ପ୍ରାତଃ ସ୍ମରଣୀୟ ରାଜା ଶ୍ରୀରାମଚନ୍ଦ୍ର ଭଞ୍ଜଦେଓ ଆର୍ଥିକ ସାହାଯ୍ୟ ଦେଇ ଉକ୍ତ କଲେଜକୁ ରକ୍ଷା କରିଥିଲେ ହେଁ ଓଡ଼ିଶାର ଲୋକେ ଉକ୍ତ ମହାଦାନ ଭୁଲିଯାଇ ମୟୂରଭଞ୍ଜର ପିଲାଙ୍କୁ ଉକ୍ତ କଲେଜ୍‌ରେ ଶିକ୍ଷାଲାଭ କରିବାର ସୁଯୋଗରୁ ବଂଚିତ କରିବାକୁ ପଛାଇ ନଥିଲେ ।

ଯେଉଁ ଧାନ ଅମାରମାନଙ୍କରୁ ଚାଷୀମାନଙ୍କୁ ଋଣ ଦିଆଯାଉଥିଲା ସେଗୁଡ଼ିକ ସବୁ ସେହି ପୂର୍ବତନ ସର୍ଦ୍ଦାର ମାନଙ୍କ ହାତରେ ଥିଲା । ତେଣୁ ମୟୂରଭଞ୍ଜର ଲୋକପ୍ରିୟ ସରକାର ସେହିସବୁ

ଧାନ ଅମାରଗୁଡ଼ିକ ସେମାନଙ୍କ ହାତରୁ କାଢ଼ିଆଣି ନିଜ ଶାସନାଧୀନରେ ରଖିଲେ । ଖୁଣ୍ଟା ଥାନାର ଶୀଳାଘାଟି ବନ୍ଧ ନିର୍ମାଣ ବେଳେ ପ୍ରଜାମଣ୍ଡଳ କର୍ମୀମାନଙ୍କ ଉପରେ ଅକଥନୀୟ ଅତ୍ୟାଚାର କରାଯାଇ ସେମାନଙ୍କୁ ଗିରଫ କରାଯାଇଥିଲା । ଲୋକପ୍ରିୟ ସରକାର ଗଠିତ ହେବା ସଙ୍ଗେ ସଙ୍ଗେ ସେ ବନ୍ଧ ତିଆରିପାଇଁ ଅର୍ଥ ମଂଜୁର କରାଗଲା ଓ ପ୍ରଧାନମନ୍ତ୍ରୀ ଶରତ୍‌ଚନ୍ଦ୍ର ଦାସ୍ ମହାରାଜାଙ୍କ ଦୁଇ ପୁଅଙ୍କୁ ନେଇ ସେଠାରେ ପ୍ରଥମେ ମାଟି ପକାଇଥିଲେ । କ୍ରମେ ଅବସ୍ଥା ଚକ୍ରର ପରିବର୍ତ୍ତନ ଘଟିଲା । ରାଜ୍ୟ ଭିତରେ ଓ ବାହାରେ ମୟୂରଭଞ୍ଜର ଏପରି ଏକ ଲୋକପ୍ରିୟ ସରକାରକୁ ଭାଙ୍ଗିବାପାଇଁ ଚେଷ୍ଟା ଆରମ୍ଭ ହୋଇଥିଲା ।

## ମୟୂରଭଞ୍ଜର ସ୍ୱତନ୍ତ୍ରତା ବିରୁଦ୍ଧରେ ଷଡ଼ଯନ୍ତ୍ର

ମୟୂରଭଞ୍ଜ କ୍ରମେ ଲୋକପ୍ରିୟ ହୋଇ ଉଠୁଥିବା ହେତୁ ସ୍ୱାଧୀନତା ପ୍ରାପ୍ତି ପୂର୍ବରୁ ଦରବାର ଶାସନର ସମସ୍ତ ଉଦ୍ୟମ ତହିଁର ବିରୁଦ୍ଧାଚରଣ କରି ଚରମ ବିଫଳତା ଲାଭ କରିବାରୁ ଠିକ୍ ମୁସଲିମ୍ ଲିଗ୍ ଭଳି ଆଦିବାସୀ ଓ ଅଣଆଦିବାସୀଙ୍କ ମଧ୍ୟରେ ଏକ ଜାତିଆଣ ବିଭେଦ ସୃଷ୍ଟିପାଇଁ ଏକ ଅତି ଜଘନ୍ୟ ପଦକ୍ଷେପ ଗ୍ରହଣ କରାଗଲା । ସେତେବେଳେ ଶ୍ରୀ ସୋନାରାମ ସରେନ୍ ନାମକ ଏକ ଆଦିବାସୀ ଯୁବକ ପ୍ରଥମ କରି ଓକିଲାତି ଆରମ୍ଭ କରିଥାଆନ୍ତି । ତାଙ୍କୁ ହିଁ ମୁଖ୍ୟ ଭାବରେ ଛିଡ଼ା କରାଇ ବିହାରର ଆଦିବାସୀଙ୍କ ସହାୟତାରେ ଏକ ଆଦିବାସୀ ସଂଗଠନ ଆରମ୍ଭ କରାଗଲା । ଲୋକପ୍ରିୟ ସରକାର ଗଠନ ପରେ ମଧ ଓଡ଼ିଶା ସହିତ ମୟୂରଭଞ୍ଜର ଯେପରି ମିଶ୍ରଣ ହୋଇ ନପାରିବ ସେଥିପାଇଁ ତୁମୁଳ ଆନ୍ଦୋଳନ ଆରମ୍ଭ ହୋଇଥିଲା । ତେଣେ ଓଡ଼ିଶାର ତଦାନୀନ୍ତନ ପ୍ରଧାନମନ୍ତ୍ରୀ ଶ୍ରୀଯୁକ୍ତ ହରେକୃଷ୍ଣ ମହତାବ ନିଜର କାର୍ଯ୍ୟକଳାପ ଯୋଗୁ ହିଁ ଷଢେଇକଳା ଓ ଖରସୁଆଁ ଭଳି ଦୁଇଟି ଓଡ଼ିଆ ଭାଷାଭାଷୀ ଅଂଚଳକୁ ହରାଇ ଥାଆନ୍ତି । ମୟୂରଭଞ୍ଜର ସର୍ଦ୍ଦାର ଓ ଅନ୍ୟ କେତେକ ନ୍ୟସ୍ତ ସ୍ୱାର୍ଥ ବ୍ୟକ୍ତି ପ୍ରଜାମଣ୍ଡଳ ସରକାରଙ୍କର ପ୍ରଗତିଶୀଳ କାର୍ଯ୍ୟକଳାପରେ ଅସହିଷ୍ଣୁ ହୋଇ ପଡୁଥାଆନ୍ତି, ସେହିମାନଙ୍କ ସହାୟତାରେ ମନ୍ତ୍ରୀମଣ୍ଡଳ ବିରୁଦ୍ଧରେ ନାନା ଷଡ଼ଯନ୍ତ୍ରମୂଳକ କାର୍ଯ୍ୟ ଆରମ୍ଭ ହୋଇଗଲା । ଓଡ଼ିଶା ସମାଜବାଦୀ ଅନୁଷ୍ଠାନର ନେତା ଶ୍ରୀଯୁକ୍ତ ସୁରେନ୍ଦ୍ରନାଥ ଦ୍ୱିବେଦୀଙ୍କ ନେତୃତ୍ୱରେ ମଧ ମୟୂରଭଞ୍ଜର ସ୍ୱତନ୍ତ୍ରତା ବିରୁଦ୍ଧରେ ଅନ୍ୟ ଏକ ଆନ୍ଦୋଳନ ଆରମ୍ଭ ହେଲା । ଯଦିଓ ସେତେବେଳେ ଭାରତର ପୂର୍ବାଞ୍ଚଳରେ ଦେଶୀୟ ରାଜ୍ୟ ମଧ୍ୟରୁ ମୟୂରଭଞ୍ଜ ବ୍ୟତୀତ ତ୍ରିପୁରା ଓ ମଣିପୁର ଭଳି ଛୋଟ ଛୋଟ ଦେଶୀୟ ରାଜ୍ୟ ସ୍ୱତନ୍ତ୍ର ରହିଥିଲା ଏବଂ ଏବେ ମଧ ସ୍ୱତନ୍ତ୍ର ହୋଇ ରହିପାରିଛନ୍ତି । ମୟୂରଭଞ୍ଜ ସ୍ୱତନ୍ତ୍ର ରହି ଓଡ଼ିଶାର ଉନ୍ନତିରେ କେବେହେଲେ ଅନ୍ତରାୟ ହୋଇ ନଥିଲା ବରଂ ଓଡ଼ିଶାର ପ୍ରଶାସନ କ୍ଷେତ୍ରରେ ଷଢ଼େଇକଳା ଓ ଖରସୁଆଁକୁ ମୟୂରଭଂଜ ଦେଇ ଯିବା ଆସିବା କରିବାରେ କୌଣସି ପ୍ରକାର ଅସୁବିଧା କରି ନଥିଲା । ହିନ୍ଦୀ ଭାଷାଭାଷୀ ଏକାଧିକ ରାଜ୍ୟ ଥିଲେ ହେଁ ସେଗୁଡ଼ିକର ଅଗ୍ରଗତିରେ ପରସ୍ପର ମଧ୍ୟରେ କୌଣସି ବିବାଦ ଉପୁଜି ଥିବାର କେବେହେଲେ ଶୁଣାଯାଇ ନାହିଁ । ମୟୂରଭଞ୍ଜ ଏକ ସ୍ୱତନ୍ତ୍ର ରାଜ୍ୟ ହୋଇ ରହିଥିଲେ ଯେଉଁ ଆଦିବାସୀମାନେ ବିହାର ସହିତ ମିଶିବାର ଆନ୍ଦୋଳନ କରୁଥିଲେ ସେମାନଙ୍କ ପକ୍ଷରେ ସେପରି ଆନ୍ଦୋଳନର ସୁଯୋଗ ରହି ନଥାଆନ୍ତା । ମୟୂରଭଞ୍ଜରେ ମହାରାଜାଙ୍କ ମନୋନୀତଭାବେ ପ୍ରଥମେ

ଯେଉଁ ବିଧାନସଭା ବା ପ୍ରଜା ପରିଷଦ ଗଠିତ ହୋଇଥିଲା ତାହାକୁ ଏକ Constituent Assembly ନାମ ରଖାଯାଇ ଏକ ସଂବିଧାନ ପ୍ରସ୍ତୁତ ପାଇଁ ମଧ ପଦକ୍ଷେପ ଗ୍ରହଣ କରାଯାଉଥିଲା । ମାତ୍ର ଯେତେବେଳେ ଭିତରୁ ଓ ବାହାରୁ ଏପରି ଷଡ଼ଯନ୍ତ୍ର ଆରମ୍ଭ ହେଲା ଆଉ ଅଧିକ କାଳ ବିଳମ୍ବ ନ କରି ଶ୍ରୀଯୁକ୍ତ ଶରତବାବୁ ଓ କେତେକ ବିଧାନ ସଭା ସଭ୍ୟ ଯଥା ସର୍ବଶ୍ରୀ ହରିହର ମହାନ୍ତି, ସାକିଲା ସୋରେନ୍, ଗୌରମୋହନ୍ ମହାପାତ୍ର, ତ୍ରିଲୋଚନ ମହାପାତ୍ର, ପ୍ରସନ୍ନ କୁମାର ଦାଶ ପ୍ରମୁଖ ଦିଲ୍ଲୀରେ ସ୍ୱରାଷ୍ଟ୍ରମନ୍ତ୍ରୀ ଶ୍ରୀଯୁକ୍ତ ବଲ୍ଲଭଭାଇ ପଟେଲ ଓ ସେକ୍ରେଟେରୀ ଶ୍ରୀଯୁକ୍ତ ମେନନଙ୍କ ସହ ସାକ୍ଷାତ କରି ମୟୂରଭଞ୍ଜର ଓଡ଼ିଶା ସହିତ ମିଶ୍ରଣ ପ୍ରସ୍ତାବ ଉପସ୍ଥାପନା କଲେ । ମୟୂରଭଞ୍ଜର ସ୍ୱାର୍ଥରକ୍ଷା ପାଇଁ କେତେକ ସର୍ତ୍ତ (Instrument of Marger) ସ୍ଥିର କରାଗଲା ଓ ସେଠାରୁ ଫେରି ପ୍ରଜାମଣ୍ଡଳର ଏକ ସମ୍ମିଳନୀ ଡ଼କାଇ ସେଠାରେ ମିଶ୍ରଣ ପ୍ରସ୍ତାବ ଗ୍ରହଣ କରାଗଲା । ପରିଣାମରେ ଦଶମାସର ପ୍ରଗତିଶୀଳ ଶାସନର ଅବସାନ ଘଟିଲା । ପ୍ରଥମେ କେନ୍ଦ୍ର ସରକାର ଲୋକପ୍ରିୟ ମୟୂରଭଞ୍ଜ ସରକାରଙ୍କ ଠାରୁ ୧୯୪୮ ମସିହା ନଭେମ୍ବର ମାସରେ ଦାୟିତ୍ୱ ଗ୍ରହଣ କଲେ ଓ କେନ୍ଦ୍ର ସରକାରଙ୍କ ତରଫରୁ ଜଣେ I.C.S. officer Mr. Regay ପ୍ରଥମେ Administrator ଭାବେ ମୟୂରଭଞ୍ଜକୁ ଆସିଲେ । ୧୯୪୯ ମସିହା ଜାନୁୟାରୀ ଆରମ୍ଭରେ ହିଁ ମୟୂରଭଞ୍ଜ ରାଜ୍ୟର ଓଡ଼ିଶାସହିତ ମିଶ୍ରଣ ସଂପନ୍ନ ହେଲା । କେନ୍ଦ୍ର ସରକାରଙ୍କ ଦ୍ୱାରା ଗୃହୀତ ମିଶ୍ରଣ ସର୍ତ୍ତ ଗୁଡ଼ିକୁ ଓଡ଼ିଶା ସରକାର ପାଳନ ଓ ସମ୍ମାନ ଦେବାର ମଧ ସ୍ଥିରୀକୃତ ହେଲା । ଏଥିପୂର୍ବରୁ ଅନ୍ୟସବୁ ଗଡ଼ଜାତ ଗୁଡ଼ିକର ଯେଉଁ ମିଶ୍ରଣ ହୋଇଥିଲା ସେଥିରେ କୌଣସି ପ୍ରକାରର ସର୍ତ୍ତାରୋପ କରାଯାଇ ନଥିଲା କିନ୍ତୁ ମୟୂରଭଂଜ କେତେକ ଲୋକ ସ୍ୱାର୍ଥରକ୍ଷାକାରୀ ସର୍ତ୍ତରେ ସମ୍ମାନର ସହିତ ଓଡ଼ିଶା ସହିତ ମିଶ ଥିଲା । ଏହା ହିଁ ଅନ୍ୟାନ୍ୟ ଗଡ଼ଜାତମାନଙ୍କ ଠାରୁ ମୟୂରଭଞ୍ଜର ମିଶ୍ରଣରେ ବିଶେଷତ୍ୱ । ପ୍ରଜାମଣ୍ଡଳ ଆନ୍ଦୋଳନ ବେଳେ ମଧ ଅନ୍ୟାନ୍ୟ ଗଡ଼ଜାତମାନଙ୍କଠାରୁ ମୟୂରଭଞ୍ଜର ଆନ୍ଦୋଳନରେ ସ୍ୱତନ୍ତ୍ରତା ରହିଥିଲା ।

## "୧୯୪୮ ମେ' ମାସରେ ସିମିଳାଠାରେ ପ୍ରଜାମଣ୍ଡଳର ଶେଷ ଅଧିବେଶନ"

୧୯୪୮ ମସିହା ମେ ମାସରେ ମୟୂରଭଞ୍ଜ ପ୍ରଜାମଣ୍ଡଳର ଶେଷ ଅଧିବେଶନ ବାଙ୍ଗିରୀପୋଷୀ ଥାନା ଅନ୍ତର୍ଗତ ସିମିଳ: ଶିବ ମନ୍ଦିର ସନ୍ନିକଟସ୍ଥ ବୁଢ଼ାବଳଙ୍ଗ ନଦୀ କୂଳରେ ବେଶ ସମାରୋହରେ ଅନୁଷ୍ଠିତ ହୋଇଥିଲା । ସେତେବେଳକୁ ମୟୂରଭଞ୍ଜରେ ପ୍ରଜାମଣ୍ଡଳର ସରକାର । ରାଜ୍ୟର ସବୁ ଅଂଚଳର ଏହାର ସଙ୍ଗଠନ, ସୁତରାଂ ପ୍ରାୟ ସବୁ ଅଂଚଳରୁ ବହୁ ପ୍ରତିନିଧି ଏଥିରେ ଯୋଗଦାନ କରିଥିଲେ । ଏହି ସମ୍ମିଳନୀରେ ପ୍ରଜାମଣ୍ଡଳ ନାମ ବଦଳାଇ "ମୟୂରଭଞ୍ଜ ଷ୍ଟେଟ୍ କଂଗ୍ରେସ" ନାମ ରଖାଗଲା । ଏଥର ମୟୂରଭଞ୍ଜ ଷ୍ଟେଟ୍ କଂଗ୍ରେସରେ ବାରିପଦାର ବିଶିଷ୍ଟ ଓକିଲ ତଥା ଯୁବନେତା ଶ୍ରୀଯୁକ୍ତ ହରିହର ମହାନ୍ତି ସଭାପତିରୂପେ, ଶ୍ରୀ ପ୍ରସନ୍ନ କୁମାର ଦାଶ ଉପସଭାପତିରୂପେ ଶ୍ରୀ ଗୌରମୋହନ ପ୍ରଧାନ ସାଧାରଣ ସଂପାଦକ ଓ ଶ୍ରୀ ବୈକୁଣ୍ଠନାଥ ସଦୁଆଳ କୋଷାଧକ୍ଷରୂପେ ନିର୍ବାଚିତ ହୋଇଥିଲେ ।

# ମୟୂରଭଞ୍ଜ ପ୍ରଜାମଣ୍ଡଳ ଆନ୍ଦୋଳନର ବୈଶିଷ୍ଟ୍ୟ

୧୯୩୯ ମସିହା ଏପ୍ରିଲ ୧୬ ତାରିଖ ଠାରୁ ଆରମ୍ଭ କରି ୧୯୪୮ ମସିହା ଡିସେମ୍ବର ମାସ ସୁଦ୍ଧା ଶରତ୍ ବାବୁଙ୍କ ନେତୃତ୍ୱରେ ପରିଚାଳିତ ପ୍ରଜା ଆନ୍ଦୋଳନରେ ମୁଁ ପ୍ରଥମେ ପ୍ରଗଣା, ସମିତି ଓ ପରେ ୧୯୪୦ ଡିସେମ୍ବର ଠାରୁ ପ୍ରଜାମଣ୍ଡଳ ନାମରେ ଆନ୍ଦୋଳନ, ଶରତ୍ ବାବୁଙ୍କ ନେତୃତ୍ୱରେ ୧୯୪୮ ମସିହାରେ ଏକ ଲୋକପ୍ରିୟ ସରକାର ଗଠନ, ସେହି ବର୍ଷ ମେ ମାସରେ ସିମିଳାଠାରେ ଶେଷ ଅଧିବେଶନ ହୋଇ ମୟୂରଭଞ୍ଜ ଷ୍ଟେଟ୍ କଂଗ୍ରେସରେ ପରିଣତ ତଥା ପରିଶେଷରେ ୧୯୪୯ ଜାନୁୟାରୀ ମାସରେ ମୟୂରଭଞ୍ଜର ଓଡ଼ିଶା ସହିତ ମିଶ୍ରଣ ପର୍ଯ୍ୟନ୍ତ ପ୍ରତ୍ୟେକଟି ଘଟଣା ସହିତ ଓତଃପ୍ରୋତଃ ଭାବରେ ସଂପୃକ୍ତ ଥିଲି । ପ୍ରଥମେ ପ୍ରଜାମଣ୍ଡଳର ସାଧାରଣ ସଂପାଦକରୂପେ ସମସ୍ତ ସଂଗଠନ ପରିଚାଳନାରେ ଏବଂ ସରକାର ଗଠନରେ ଜଣେ ବିଧାୟକ ଏବଂ ଶେଷ ଅଧିବେଶନ ସିମଳାଠାରେ ଗଠିତ ମୟୂରଭଞ୍ଜ ଷ୍ଟେଟ୍ କଂଗ୍ରେସ୍‌ର ଉପସଭାପତିଭାବେ ଆନ୍ଦୋଳନ ସହିତ ସଂପୂର୍ଣ୍ଣଭାବେ ସଂଶ୍ଳିଷ୍ଟ ରହି ଯେଉଁ ପ୍ରତ୍ୟକ୍ଷ ଅନୁଭୂତି ଉପଲବ୍ଧ କରିଛି ସେଥିରୁ ସ୍ପଷ୍ଟଭାବରେ କହିବାକୁ ଚାହେଁ ଯେ, ମୟୂରଭଞ୍ଜ ପ୍ରଜାମଣ୍ଡଳର ସମସ୍ତ କାର୍ଯ୍ୟକ୍ରମ କେବଳ ଶରତ୍ ବାବୁଙ୍କ ଚିନ୍ତା, ଭାବନା ଓ ଆଦର୍ଶରେ ପ୍ରଭାବିତ ହୋଇଥିଲା । ଶରତ୍ ବାବୁ ମହାତ୍ମାଗାନ୍ଧୀଙ୍କ ଆଦର୍ଶରେ ପ୍ରଭାବିତ ହୋଇଥିଲେ, ଆଦର୍ଶବାଦରେ ବିଶ୍ୱାସ କରୁଥିଲେ ଓ ଗାନ୍ଧୀବାଦୀ ଚିନ୍ତାଧାରାର ଜଣେ ପ୍ରଧାନ ଭକ୍ତ ଥିଲେ । ତାଙ୍କର ତ୍ୟାଗ ଓ ଆଦର୍ଶ ଅତ୍ୟନ୍ତ ମହନୀୟ । ସେ ମୟୂରଭଞ୍ଜ ଭଳି ଏକ ଗଡ଼ଜାତରେ ତାଙ୍କର କର୍ମମୟ ଜୀବନ ଆରମ୍ଭ କରି ଶେଷରେ ଅତି ଦୁଃସ୍ଥ ଅବସ୍ଥାରେ ଥାଇ ଯେଉଁ ମହାନ୍ ଆଦର୍ଶ ଦେଖାଇଛନ୍ତି ତାର ଯଥାର୍ଥ ପ୍ରକାଶ ବିଶେଷଭାବରେ ହୋଇ ପାରି ନଥିବାରୁ ସେ ବିଶେଷଭାବରେ ବାହାରେ ଜଣାଶୁଣା ହୋଇ ପାରି ନଥିଲେ । ସେତକ କାର୍ଯ୍ୟ ସେ ଅନ୍ୟତ୍ର କରିଥିଲେ ଓଡ଼ିଶାର ଜଣେ ମୁଖ୍ୟ ନେତା ହୋଇ ପାରି ଥାଆନ୍ତେ । ତାଙ୍କରି ଆଦର୍ଶ ମୋତେ ବିଶେଷ ଭାବେ ପ୍ରଭାବିତ କରି କର୍ତ୍ତବ୍ୟ ପଥରେ ସଦା ମୋର ପଥ ପ୍ରଦର୍ଶକ ହୋଇ ରହିଛି - କହିବା ବାହୁଲ୍ୟ ମାତ୍ର ।

ମୟୂରଭଞ୍ଜ ପ୍ରଜାମଣ୍ଡଳର ଆରମ୍ଭ ଗାଁରୁ ଓ ଗାଁର ଗରିବ ନିଷ୍ପେଷିତ ଲୋକଙ୍କଠାରୁ । ସମାଜର ଧନୀ ସ୍ୱାର୍ଥପର ଗୋଷ୍ଠୀ ତଥା ସହର ବଜାରର ଲୋକେ ଏହି ଆନ୍ଦୋଳନର ବିରୋଧୀ ହୋଇ ରାଜ ଶାସନର ପ୍ରିୟପାତ୍ର ହେବାକୁ ଚେଷ୍ଟା କରିଥିଲେ । ତେଣୁ ଏ ଆନ୍ଦୋଳନ ପ୍ରଥମରୁ ହିଁ ଏକ ସମାଜବାଦୀ ଢ଼ଙ୍ଗରେ ଚାଲିଥିଲା ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ଅନ୍ୟାନ୍ୟ ଗଡ଼ଜାତ ଅଂଚଳରେ ଦେଶୀୟ ରାଜା ଓ ମହାରାଜାମାନଙ୍କର ନଗ୍ନ ଅତ୍ୟାଚାରପାଇଁ ସମାଜର ଶିକ୍ଷିତ ଓ ସହରର ଧନୀ ଲୋକମାନେ ରାଜତନ୍ତ୍ରର ଅବସାନପାଇଁ ଆନ୍ଦୋଳନ କରିଥିଲେ । ଗ୍ରାମାଞ୍ଚଳରେ ଧନୀ ମହାଜନଙ୍କ ଶୋଷଣ ଉପରେ ପ୍ରଭାବ ପଡ଼ି ନଥିବାରୁ ସେ ଆନ୍ଦୋଳନରେ ଗ୍ରାମାଞ୍ଚଳର ଲୋକେ ବିଶେଷଭାବରେ ସଂପୃକ୍ତ ନଥିଲେ । ତେଣୁ ଅନ୍ୟାନ୍ୟ ଗଡ଼ଜାତଗୁଡ଼ିକର ଆନ୍ଦୋଳନ କେବଳ ସହର, ବଜାର ଓ ଧନୀ ଲୋକମାନଙ୍କ ମଧ୍ୟରେ ଧନୀ ମହାଜନ ଓ ସରକାରୀ କର୍ମଚାରୀମାନଙ୍କ ଶୋଷଣ ଓ ଅତ୍ୟାଚାର ଥିବାରୁ ଏଠାକାର ଆନ୍ଦୋଳନ ଗ୍ରାମରୁ ଆରମ୍ଭ ହୋଇଥିଲା । ଏହା ହିଁ ବିଶେଷତ୍ୱ ।

# ଓଡ଼ିଶା ଶାସନ ଆରମ୍ଭ

୧୯୪୯ ମସିହା ଫେବୃୟାରୀ ମାସରେ ମୟୂରଭଞ୍ଜର ଓଡ଼ିଶା ସହିତ ଆନୁଷ୍ଠାନିକଭାବେ ମିଶ୍ରଣ ହେଲା । ଏଥି ପୂର୍ବରୁ ପ୍ରାୟ ଦୁଇମାସ କାଳ ମୟୂରଭଞ୍ଜ ଏକ କେନ୍ଦ୍ର ଶାସିତ ଅଂଚଳ ହୋଇ ରହିବାପରେ ଏଠା ଶାସନ ଦାୟିତ୍ୱ ରାଜ୍ୟ ସରକାରଙ୍କୁ ହସ୍ତାନ୍ତରିତ ହେଲା । ମୟୂରଭଞ୍ଜକୁ କେନ୍ଦ୍ର ଶାସନ ଗଲାବେଳେ ଯେଉଁସବୁ ସର୍ତ୍ତମାନ କେନ୍ଦ୍ର ସରକାର ଗ୍ରହଣ କରିଥିଲେ । ଉକ୍ତ ସର୍ତ୍ତଗୁଡ଼ିକ ରାଜ୍ୟ ସରକାର ଗ୍ରହଣ କଲା ପରେ ପ୍ରଶାସନିକ କ୍ଷମତା ରାଜ୍ୟ ସରକାରଙ୍କୁ ଅର୍ପଣ କରାଗଲା । ଏହି ସବୁ ସର୍ତ୍ତଗୁଡ଼ିକ ସହ ମିଶ୍ରଣକୁ ବୃହତ୍ତର ସ୍ୱାର୍ଥଦୃଷ୍ଟିରୁ ଏଠା ଜନସାଧାରଣ ସ୍ୱାଗତ ଜଣାଇଥିଲେ ହେଁ ମିଶ୍ରଣ ହେଲା ପରେ ପ୍ରଶାସନିକ କ୍ଷେତ୍ରରେ ବିଭିନ୍ନ ବିଭାଗରୁ ଓଡ଼ିଶା ସରକାରଙ୍କ ଯେଉଁ ସବୁ କର୍ମଚାରୀମାନେ ଆସିଲେ ସେମାନେ ପ୍ରଥମେ ବିଜେତା ମନୋବୃତ୍ତି ପୋଷଣ କରି ମୟୂରଭଞ୍ଜ ଦରବାର ଶାସନର କର୍ମଚାରୀ ତଥା ଜନସାଧାରଣଙ୍କୁ ଅତି ନ୍ୟୁନ ଚକ୍ଷୁରେ ଦେଖିବାରୁ ଲୋକଙ୍କ ମଧ୍ୟରେ ଘୋର ଅସନ୍ତୋଷ ସୃଷ୍ଟି ହେଲା । ଦରବାର ଶାସନ ସମୟରେ ମୟୂରଭଞ୍ଜର ଶାସନ ପଦ୍ଧତି କେବଳ ଯେ ଅନ୍ୟ ଗଡ଼ଜାତ ଶାସନଠାରୁ ଉନ୍ନତ ଥିଲା ତା ନୁହେଁ ବରଂ ସେତେବେଳର ଓଡ଼ିଶା ରାଜ୍ୟ ଶାସନଠାରୁ ମଧ୍ୟ ଅନେକ କ୍ଷେତ୍ରରେ ଉନ୍ନତ ଥିଲା । ଓଡ଼ିଶାସହିତ ଅନ୍ୟ ରାଜ୍ୟଗୁଡ଼ିକର ମିଶ୍ରଣ ପୂର୍ବରୁ ସରକାରୀ ଟ୍ରେଜେରୀର ସମସ୍ତ ଅର୍ଥ କାଢ଼ି ନେଇ ଯେପରି ଶୂନ୍ୟ ଟ୍ରେଜେରୀ ଦିଆଯାଇଥିଲା । ମୟୂରଭଞ୍ଜରେ ତା ନହୋଇ ଠିକ୍ ଠିକ୍ ଭାବରେ ଯାହା ଥିଲା ମିଶ୍ରଣ ବେଳକୁ ତାହା ହିଁ ରହିଥିଲା । ଅନ୍ୟ ଗଡ଼ଜାତଗୁଡ଼ିକରେ ଯେପରି ଅନେକ ସରକାରୀ ସଂପତ୍ତି ଓ ଘରବାଡ଼ି ନିଜ ନିଜର ପ୍ରିୟ ଲୋକଙ୍କ ନାମରେ ମିଶ୍ରଣର ଅବ୍ୟବହିତ ପୂର୍ବରୁ ଦରଜ କରି ଦେଇଥିଲେ ତାହା ମୟୂରଭଞ୍ଜରେ ହୋଇ ନଥିଲା । ତାର କାରଣ କେନ୍ଦ୍ର ସରକାର ଅଧୀନକୁ ପ୍ରଥମେ ରାଜ୍ୟ ହସ୍ତାନ୍ତର ହେଲା ବେଳକୁ ଏଠାରେ ଶ୍ରୀଯୁକ୍ତ ଶରତ୍‌ଚନ୍ଦ୍ର ଦାସଙ୍କ ଲୋକପ୍ରିୟ ସରକାର ଶାସନ ଦାୟିତ୍ୱରେ ରହିଥିଲା । ଓଡ଼ିଶାସହିତ ମିଶ୍ରଣ ହେବାର ସ୍ଥିର ହେବା ପରେ ବାରିପଦାରେ ଥିବା ମୟୂରଭଞ୍ଜ ଷ୍ଟେଟ୍ ପ୍ରେସ୍ ଓଡ଼ିଶା ସରକାରଙ୍କ ହାତରେ ସମର୍ପଣ କରାଯାଇଥିଲା ଏବଂ ଏହା ବର୍ତ୍ତମାନ ଉତ୍କଳ ବିଶ୍ୱବିଦ୍ୟାଳୟର ଏକ ସଂପତ୍ତି ହୋଇ ରହିଛି । ଏହାର ସେତେବେଳର ମୂଲ୍ୟ ପ୍ରାୟ ସାତ ଆଠ ଲକ୍ଷ ଟଙ୍କାରୁ କମ୍ ନଥିଲା । ଭଦ୍ରକଠାରେ ଏକ ଆନୁଷ୍ଠାନିକ ପଦ୍ଧତିରେ ମୟୂରଭଞ୍ଜର ପ୍ରଧାନମନ୍ତ୍ରୀ ଶ୍ରୀଯୁକ୍ତ ଶରତ୍ ଚନ୍ଦ୍ର ଦାସ୍ ଓଡ଼ିଶାର ତଦାନୀନ୍ତନ ପ୍ରଧାନ ମନ୍ତ୍ରୀ ଶ୍ରୀଯୁକ୍ତ ହରେକୃଷ୍ଣ ମହତାବଙ୍କ ହାତରେ ସମର୍ପଣ କଲାବେଳେ ମୋସହିତ ମୟୂରଭଞ୍ଜ ଷ୍ଟେଟ୍ କଂଗ୍ରେସର ସଭାପତି ଶ୍ରୀଯୁକ୍ତ ହରିହର ମହାନ୍ତି ଓ କେତେଜଣ ଉଚ୍ଚପଦସ୍ଥ କର୍ମଚାରୀ ମଧ୍ୟ ଏହି ଉତ୍ସବରେ ଉପସ୍ଥିତ ଥିଲେ ।

ଏତଦ୍ ବ୍ୟତୀତ ପ୍ରାତଃ ସ୍ମରଣୀୟ ମୟୂରଭଞ୍ଜର ସ୍ୱର୍ଗୀୟ ମହାରାଜା ଶ୍ରୀରାମଚନ୍ଦ୍ର ଭଞ୍ଜଦେଓଙ୍କ ସଭାପତିତ୍ୱରେ ପ୍ରଥମ ଉତ୍କଳ ସମ୍ମିଳନୀ ହୋଇ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନର ଉଦ୍ୟମ ଆରମ୍ଭ ହୋଇଥିଲା । ଆଜିର ବିଖ୍ୟାତ ରେଭେନ୍ସା କଲେଜ ପ୍ରଥମେ ସ୍ୱୀକୃତି ପାଇପାରୁନଥିବା ବେଳେ ମୟୂରଭଞ୍ଜର ଅର୍ଥ ସାହାଯ୍ୟରେ ତାହା ସହଜରେ ମିଳି ପାରିଥିଲା । କଟକର ରାମଚନ୍ଦ୍ର ଭବନ ନାମରେ ନାମିତ ମହାରାଜା ଶ୍ରୀ ରାମଚନ୍ଦ୍ର ଭଞ୍ଜଙ୍କର ଅବଦାନ, ସେତେବେଳର କଟକର

ମୟୂରଭଞ୍ଜର ଅର୍ଥରେ ଅବସ୍ଥାପିତ ହୋଇଥିଲା । ଓଡ଼ିଶାର ଉନ୍ନତି ତଥା ଓଡ଼ିଆ ଜାତିର ଏକତ୍ରୀକରଣପାଇଁ ମୟୂରଭଞ୍ଜର ପ୍ରଚୁର ଅବଦାନ ଥିଲେ ହେଁ ଓଡ଼ିଶା ସରକାର ତଥା ତାଙ୍କ ପ୍ରଶାସନିକ କର୍ମଚାରୀଙ୍କ ଦୂରଦୃଷ୍ଟି ଅଭାବରୁ ମୟୂରଭଞ୍ଜ ଲୋକଙ୍କ ମନରେ ଘୋର ଅସନ୍ତୋଷ ସୃଷ୍ଟି ହେଲା । ଏହିଭଳି କାରଣରୁ ମଧ ଷଢ଼େଇକଲା ଓ ଖରସୁଆଁ ନାମକ ଦୁଇଟି ପୂର୍ବତନ ଦେଶୀୟ ରାଜ୍ୟ ଓଡ଼ିଶାରୁ ବାଦ ପଡ଼ି ବିହାରସହିତ ମିଶିଗଲା । ଏଥିପାଇଁ ଅବଶ୍ୟ କେତେକ ମୟୂରଭଞ୍ଜ ମିଶି ନଥିବାରୁ ଉକ୍ତ ଦୁଇଟି ଗଡ଼ଜାତ ଓଡ଼ିଶାରୁ ବାଦ ଯିବାର କାରଣ ଦେଖାନ୍ତି । ମାତ୍ର ମୟୂରଭଞ୍ଜ ସେତେବେଳେ ଓଡ଼ିଶାରେ ମିଶି ନଥିଲେ ମଧ ଉକ୍ତ ଅଞ୍ଚଳକୁ ଯାତାୟାତରେ ପ୍ରଶାସନିକ କ୍ଷେତ୍ରରେ କୌଣସି ପ୍ରକାର ଅସୁବିଧା ସୃଷ୍ଟି କରି ନଥିଲା । ଆଦିବାସୀ ଆନ୍ଦୋଳନକୁ ଅଲଗା କରି ଜାତୀୟ ଆନ୍ଦୋଳନକୁ ଦୁର୍ବଳ କରିବାର ଯେଉଁ ପ୍ରୟାସ ହୋଇଥିଲା ତାହା କ୍ରମେ ଏକ ବିଷବୃକ୍ଷରେ ପରିଣତ ହେଲା । ମୟୂରଭଞ୍ଜର ଓଡ଼ିଶାସହିତ ମିଶ୍ରଣ ଉଦ୍ୟମକୁ ପଣ୍ଡକରି ବିହାର ସହିତ ମିଶ୍ରଣପାଇଁ ଆନ୍ଦୋଳନ କରିବା ଦିଗରେ ବିହାରର ଆଦିବାସୀ ନେତା ଶ୍ରୀ ଜୟପାଳ ସିଂହ ଏଠା ଆଦିବାସୀମାନଙ୍କୁ ପ୍ରଭାବିତ କରିପକାଇଲେ । ବିହାର ରାଜ୍ୟର ଅନ୍ୟ ନ୍ୟସ୍ତ ସ୍ୱାର୍ଥ ଗୋଷ୍ଠୀଙ୍କର ଏ ଦିଗରେ ପ୍ରଚ୍ଛନ୍ନ ହାତ ଥିବାର ମଧ ଜଣାଯାଉଥିଲା । ୧୯୪୯ ମସିହା ବେଳକୁ ଏହି ଆଦିବାସୀ ଆନ୍ଦୋଳନ କ୍ରମେ ବୃଦ୍ଧି ପାଇଲା । ମୟୂରଭଞ୍ଜର ବାମନଘାଟି ସବ୍‌ଡ଼ିଭିଜନ୍ ବିହାରର ଛୋଟନାଗପୁର ଓ ଟାଟା ଅଞ୍ଚଳର ସନ୍ନିକଟ ହୋଇଥିବାରୁ ବିହାର ରାଜ୍ୟର ଆଦିବାସୀମାନଙ୍କ ଦ୍ୱାରା ଝାଡ଼ଖଣ୍ଡ ରାଜ୍ୟ ଗଠନର ଯେଉଁ ଆନ୍ଦୋଳନ ହେଉଥିଲା ତାର ପ୍ରଭାବ ଏହି ସବ୍‌ଡ଼ିଭିଜନ ଉପରେ ଅତ ମାତ୍ରାରେ ପଡ଼ିଲା । ତେଣୁ ମୟୂରଭଞ୍ଜର ଓଡ଼ିଶାସହିତ ମିଶ୍ରଣ ହୋଇଯିବା ମାତ୍ରେ ୧୯୪୯ ମସିହା ବେଳକୁ ଏହି ଆନ୍ଦୋଳନ ଅତ୍ୟନ୍ତ ତୀବ୍ର ହୋଇ ଅନ୍ୟ ତିନିଗୋଟି ସବ୍‌ଡ଼ିଭିଜନ୍‌କୁ ମଧ କିଛି ମାତ୍ରାରେ ବ୍ୟାପୀ ଗଲା । ଠିକ୍ ଏହା ପୂର୍ବରୁ ଓଡ଼ିଶା ସରକାରଙ୍କ ନୀତି ଯୋଗୁଁ ଷଢ଼େଇକଲା ଓ ଖରସୁଆଁ ଓଡ଼ିଶାରୁ ବାଦ୍ ପଡ଼ି ବିହାରରେ ମିଶିଥିବାରୁ ମୟୂରଭଞ୍ଜରେ ମଧ ସେହିପରି ଅନୁରୂପ ଅବସ୍ଥା ସୃଷ୍ଟିକରି ବିହାରରେ ମିଶାଇ ଦେବାର ଷଡ଼ଯନ୍ତ୍ର ହୋଇଥିଲା ।

ଓଡ଼ିଶା ତଥା ଓଡ଼ିଆ ଜାତିର ଉନ୍ନତିପାଇଁ ମୟୂରଭଞ୍ଜର ଅବଦାନ ଯଥେଷ୍ଟ ଥିଲେ ହେଁ, ଓଡ଼ିଶା ସରକାରରେ, ଯେ ଯେତେବେଳେ ଅଧିଷ୍ଠିତ ହୋଇଥାଆନ୍ତୁ ନା କାହିଁକି, ମୟୂରଭଞ୍ଜ ଜିଲ୍ଲାର ଯଥାର୍ଥ ଉନ୍ନତି ପାଇଁ ଧ୍ୟାନ ଦିଆଯାଇନଥିବା ଅତ୍ୟନ୍ତ କ୍ଷୋଭର ବିଷୟ । ଗତ କେତେବର୍ଷ ତଳେ ଏକ ସରକାରୀ ସମୀକ୍ଷାରେ ମୟୂରଭଞ୍ଜର ସ୍ଥାନ ଓଡ଼ିଶାର ୧୩ଟି ଜିଲ୍ଲା ମଧରେ ଦ୍ୱାଦଶରେ ଥିବାର ଜଣା ଯାଇଥିଲା । ମିଶ୍ରଣର ୩୨/୩୩ ବର୍ଷ ପରେ ବିଶାଳ ଉତ୍କଳରେ ମୟୂରଭଞ୍ଜ ଜିଲ୍ଲାର ଏହି ଦୁରାବସ୍ଥା ଓ ଏ ଜିଲ୍ଲା ପ୍ରତି ସରକାରଙ୍କର ପାତର ଅନ୍ତର ବ୍ୟବହାର ଏବେ ବି କେତେକ ମାତ୍ରାରେ ରହିଛି । ମୟୂରଭଞ୍ଜର ସମସ୍ତ ଅଂଚଳକୁ ନେଇ ପ୍ରଥମେ ଗୋଟିଏ ଜିଲ୍ଲା କରାଯାଇଥିଲା, ମାତ୍ର ମିଶ୍ରଣର କିଛିଦିନ ପରେ ଓଲମଖ୍ ଓ ନାରଙ୍ଗାବାଦ ପ୍ରଗନ୍ନାର ଛଅ, ସାତ ହଜାର ଜନବସତି ବିଶିଷ୍ଟ କେତେକ ଗ୍ରାମ ସଦର ସବ୍‌ଡ଼ିଭିଜନରୁ କାଢ଼ି ନେଇ ବାଲେଶ୍ୱର ସହିତ ମିଶାଇ ଦିଆଗଲା ।

## ଆଦିବାସୀ ଆନ୍ଦୋଳନ ଓ ମୟୂରଭଞ୍ଜ ମାଟିରେ ରକ୍ତଦାନ

ମୁଖ୍ୟତଃ ମୟୂରଭଞ୍ଜରେ ପ୍ରଜାମଣ୍ଡଳ ଆନ୍ଦୋଳନକୁ ଦବାଇ ଦେବାପାଇଁ ସେତେବେଳେ କେତେକ କୁଚକ୍ରୀ ରାଜକର୍ମଚାରୀଙ୍କ ପ୍ରରୋଚନାର ଫଳସ୍ୱରୂପ ଜଣେ ଆଦିବାସୀ ଯୁବ ଓକିଲ ଶ୍ରୀ ସୋନାରାମ୍ ସରେନ୍‌ଙ୍କ ନେତୃତ୍ୱରେ ଯେଉଁ ଆଦିବାସୀ ଆନ୍ଦୋଳନର ଆରମ୍ଭ କରି ତଦ୍ୱାରା ଆଦିବାସୀମାନଙ୍କ ମଧ୍ୟରେ ସାମ୍ପ୍ରଦାୟିକ ଭାବ ସୃଷ୍ଟି କରି ପ୍ରଜାମଣ୍ଡଳ ଆନ୍ଦୋଳନରୁ ଆଦିବାସୀମାନଙ୍କୁ ଅଲଗା ରଖି ଜାତୀୟ ଆନ୍ଦୋଳନକୁ ଦୁର୍ବଳ କରିଦେବାର ଯେଉଁ ପ୍ରୟାସ ଆରମ୍ଭ ହୋଇଥିଲା, ତାହା କ୍ରମେ ଏକ ବିଷବୃକ୍ଷରେ ପରିଣତ ହେଲା । ମୟୂରଭଞ୍ଜର ଓଡ଼ିଶାସହିତ ମିଶ୍ରଣ ଉଦ୍ୟମକୁ ପଣ୍ଡକରି ବିହାରସହିତ ମିଶ୍ରଣପାଇଁ ଆନ୍ଦୋଳନ କରିବା ପାଇଁ ବିହାରର ଆଦିବାସୀ ନେତା ଶ୍ରୀ ଜୟପାଳ ସିଂହଙ୍କ ମାଧ୍ୟମରେ ପ୍ରଭାବିତ କରାଗଲା । ୧୯୪୯ ବେଳକୁ ଏହି ଆଦିବାସୀ ଆନ୍ଦୋଳନ କ୍ରମେ ବୃଦ୍ଧି ପାଇବାକୁ ଲାଗିଲା । ବିହାରର ଛୋଟନାଗପୁର ଓ ଟାଟା ଅଞ୍ଚଳ ମୟୂରଭଞ୍ଜର ବାମନଘାଟି ସବ୍‌ଡ଼ିଭିଜନର ନିକଟବର୍ତ୍ତୀ ହୋଇଥିବାରୁ ଏହି ଆନ୍ଦୋଳନର ପ୍ରଭାବ ଏହି ସବ୍‌ଡ଼ିଭିଜନ୍‌ରେ ବିଶେଷ ଭାବରେ ଅନୁଭୂତ ହେଲା ଓ ଏହା କ୍ରମେ ଅନ୍ୟ ତିନୋଟି ସବ୍‌ଡ଼ିଭିଜନ୍‌ରେ ବିଶେଷ ଭାବରେ ଅନୁଭୂତ ହେଲା ଓ ଏହା କ୍ରମେ ଅନ୍ୟ ତିନୋଟି ସବ୍‌ଡ଼ିଭିଜନକୁ ବ୍ୟାପୀବାକୁ ଲାଗିଲା । ଏହା ପୂର୍ବରୁ ଓଡ଼ିଶା ସରକାରଙ୍କର ଅବିମର୍ଶତା ହେତୁ ଷଢ଼େଇକଳା ଓ ଖରସୁଆଁ ଅଂଚଳ ଓଡ଼ିଶାରୁ ବାଦ୍‌ପଡ଼ି ବିହାରରେ ମିଶି ଯାଇଥାଏ, ସୁତରାଂ ଏଠାରେ ମଧ୍ୟ ଏକ ଅନୁରୂପ ଘଟଣା ସୃଷ୍ଟିକରି ମୟୂରଭଞ୍ଜ ବିହାରସହିତ ମିଶ୍ରଣ କରିବାର ଏକ ବ୍ୟର୍ଥ ପ୍ରୟାସ ଆରମ୍ଭ ହୋଇଗଲା । ସେହି ୧୯୪୯ ମସିହାର ମାର୍ଚ୍ଚ ବେଳକୁ ବାଙ୍ଗିରିପୋଷୀ ଘାଟିର ଦେପଟା ଠାରେ ଓ ରାଇରଙ୍ଗପୁର ସନ୍ନିକଟ ଦୁବଲାବେଡ଼ାଠାରେ ସଙ୍ଗଠିତ ଆଦିବାସୀମାନଙ୍କ ଉପରେ ଓଡ଼ିଶା ପୋଲିସ୍ ପକ୍ଷରୁ ଏକ ଭୟାବହ ଗୁଳିକାଣ୍ଡ ଘଟି ବହୁ ଆଦିବାସୀ ଲୋକଙ୍କ ଜୀବନ ହାନୀ ଘଟିଲା । କେତେକ ଆଦିବାସୀ ଲୋକ କଣ୍ଟ୍ରାକ୍ଟରଙ୍କୁ ଅଟକ ରଖିବାରୁ ଏହି ଗୁଳିକାଣ୍ଡ ଘଟିଥିଲା । ଶ୍ରୀ ସୋନାରାମ ସୋରେନ୍‌ଙ୍କ ସମେତ କେତେକ ନେତାଙ୍କୁ ଗିରଫ କରି ଅଟକ ବନ୍ଦୀ କରାଗଲା ପରେ ଏ ଆନ୍ଦୋଳନ ବନ୍ଦ ହୋଇଗଲେ ହେଁ ଆଦିବାସୀମାନଙ୍କ ମଧ୍ୟରେ ଘୋର ଅସନ୍ତୋଷ ଓ ଉତ୍ତେଜନା ଲାଗିରହିଲା ।

## ପ୍ରଜାମଣ୍ଡଳ ଲୋକଙ୍କ ପ୍ରତି ଅବିଚାର

ମୟୂରଭଞ୍ଜର ମିଶ୍ରଣ ପରେ ପ୍ରଜାମଣ୍ଡଳ ସଂଗଠନର ମିଶ୍ରଣ ମଧ୍ୟ ଓଡ଼ିଶା କଂଗ୍ରେସ ସହିତ ହୋଇଗଲା । ମୟୂରଭଞ୍ଜରେ ଯେଉଁ ଅସ୍ଥାୟୀ ଜିଲ୍ଲା କଂଗ୍ରେସ (ମନୋନୀତ) କମିଟି ଗଠିତ ହେଲା ସେଥିରେ ଶ୍ରୀଯୁକ୍ତ ଶରତ୍‌ଚନ୍ଦ୍ର ଦାସ ସଭାପତି, ଶ୍ରୀ ଗୌରମୋହନ ପ୍ରଧାନ ସଂପାଦକ ଏବଂ ମୋ ସହ ଶ୍ରୀ ହରିହର ମହାନ୍ତି, ଶ୍ରୀ ବୈକୁଣ୍ଠନାଥ ସଦୁଆଳ ଓ ଶ୍ରୀ ପୂର୍ଣ୍ଣଚନ୍ଦ୍ର ପରିଚ୍ଛା ପ୍ରଭୃତି କେତେକ କର୍ମୀ ରହିଥିଲେ ମଧ୍ୟ ରାଜଶାସନ ସମୟରେ ପ୍ରଜାମଣ୍ଡଳ ଆନ୍ଦୋଳନକୁ ଭଣ୍ଡୁର କରିବା ନ୍ୟସ୍ତ ସ୍ୱାର୍ଥ ଗୋଷ୍ଠୀଙ୍କ ତରଫରୁ ପ୍ରଜାମଙ୍ଗଳ ନାମକ ଯେଉଁ ପ୍ରତିକ୍ରିୟାଶୀଳ ଦଳ ଗଠନ କରାଯାଇଥିଲା ସେଥିରୁ

କେତେକ ସଭ୍ୟଙ୍କୁ ମନୋନୀତ କରି ଜିଲ୍ଲା କଂଗ୍ରେସ କମିଟି ଗଠିତ ହେଲା । ଏପରି ମିଶ୍ରଣ ଦ୍ୱାରା ପ୍ରଜାମଣ୍ଡଳ କର୍ମୀମାନଙ୍କ ମଧ୍ୟରେ ଅସନ୍ତୋଷ ଦେଖାଗଲା । ଏମାନେ କେବଳ ଯେ ପ୍ରଜାମଣ୍ଡଳ ଆନ୍ଦୋଳନକୁ ବିରୋଧ କରୁଥିଲେ ସେତକ ନୁହେଁ ବରଂ ମହାରାଜାଙ୍କୁ ସନ୍ତୁଷ୍ଟ କରିବାପାଇଁ ଅତି ନିମ୍ନ ସ୍ତରକୁ ଚାଲିଯିବାପାଇଁ ପଶ୍ଚାତ୍‌ପଦ ହେଉ ନଥିଲେ । ଦିନକର ଘଟଣା । ପ୍ରଜାମଣ୍ଡଳ ତରଫରୁ ଗାନ୍ଧିଜୟନ୍ତୀ ପାଳନପାଇଁ ମଧୁବନ ପଡ଼ିଆରେ ଏକ ସଭାର ଆୟୋଜନ ହୋଇଥାଏ । କର୍ମୀମାନେ ଏଥିରେ ଯୋଗ ଦେବାକୁ ଯାଉଥିବାବେଳେ ସେମାନେ ଧରିଥିବା ଜାତୀୟ ପତାକା ଓ ପରିଧାନ କରିଥିବା ଟୋପୀ ଛଡ଼ାଇନେଇ ଏଇ ପ୍ରଜାମଙ୍ଗଳବାଲା ତା ଉପରେ ପରିଶ୍ରା କରିଦେଇଥିଲେ । ଶୂନଗଡ଼ିଆଠାରେ ହରିଜନ ବସ୍ତି ସଫା କରୁଥିବାବେଳେ ତାଙ୍କଠାରୁ କୋଡ଼ି ଓ ଝୁଡ଼ି ଛଡ଼ାଇ ନେଇଥିଲେ । ସୁତରାଂ ଏହିପରି ବ୍ୟକ୍ତିମାନଙ୍କୁ କଂଗ୍ରେସରେ ସାମିଲ କରାଯିବାରୁ ପ୍ରଜାମଣ୍ଡଳ କର୍ମୀମାନେ ସେମାନଙ୍କ ସହିତ କାମ କରିବାକୁ ରାଜି ହେଲେ ନାହିଁ । ଏତଦ୍‌ବ୍ୟତୀତ ଆଦିବାସୀ ଆନ୍ଦୋଳନକୁ ଦବାଇବା ଉଦ୍ଦେଶ୍ୟରେ କେତେକ ପ୍ରଜାମଣ୍ଡଳ କର୍ମୀ ଯଥା ଶ୍ରୀ ଅମରେନ୍ଦ୍ର ଦାସ୍, ଶ୍ରୀ ରାମଚନ୍ଦ୍ର ମହାପାତ୍ର, ଶ୍ରୀ ରାମଚନ୍ଦ୍ର ମିଶ୍ର, ଶ୍ରୀ ବୈଷ୍ଣବ ଚରଣ ମିଶ୍ର, ଶ୍ରୀ ସାକିଲା ସୋରେନ୍ ଓ ଶ୍ରୀ ଦୈତାରି ଜେନା ପଭୃତିଙ୍କୁ ଆଦିବାସୀମାନଙ୍କ ସହିତ ସଂପୃକ୍ତ ଥିବାର ଅଭିଯୋଗ କରି ଅଟକ ରଖାଗଲା । ମୋତେ ମଧ ଉକ୍ତ କାରଣରୁ ଅଟକ ରଖାଯିବାର ସମସ୍ତ ବ୍ୟବସ୍ଥା ହୋଇଥିଲେ ହେଁ କେତେକ କାରଣରୁ ତାହା ବନ୍ଦ ରଖାଗଲା ।

## ଆମେ କଂଗ୍ରେସ୍ ଛାଡ଼ିଲୁଁ :-

ଏହି ସମସ୍ତ ଉଲ୍ଲିଖିତ କାରଣରୁ ୧୯୪୯ ମସିହାର ସେପ୍ଟେମ୍ବର ମାସ ବେଳକୁ ପୂର୍ବତନ ପ୍ରଜାମଣ୍ଡଳର ମୁଖ୍ୟ କର୍ମୀମାନଙ୍କୁ ନେଇ ବାରିପଦାଠାରେ ଏକ ବୈଠକରେ ସମସ୍ତ ବିଷୟର ଆଲୋଚନା ପରେ କଂଗ୍ରେସ ଛାଡ଼ିବାର ନିଷ୍ପତ୍ତି ଗ୍ରହଣ କଲୁ । ଯେଉଁ କଂଗ୍ରେସ ଦଳରେ ଥାଇ ଜାତୀୟ ମୁକ୍ତି ଆନ୍ଦୋଳନ ବେଳେ ଅପରିସୀମ କଷ୍ଟ ଭୋଗ କରିଥିଲୁଁ ଅତି ଦୁଃଖରସହିତ ସେହି ଦଳରୁ ଶ୍ରୀଯୁକ୍ତ ଶରତ୍ ଚନ୍ଦ୍ର ଦାସଙ୍କ ସହିତ ସମସ୍ତ ପ୍ରଜାମଣ୍ଡଳ କର୍ମୀମାନେ ଏକକାଳୀନ ଇସ୍ତଫା ପ୍ରଦାନ କଲୁ ଓ ''ଆମେ କାହିଁକି କଂଗ୍ରେସ ଛାଡ଼ିଲୁଁ'' ନାମକ ଏକ ପୁସ୍ତିକାରେ ସମସ୍ତ ବିଷୟ ପ୍ରକାଶ କଲୁଁ । ଏହାର ପରିଣାମରେ ମୟୂରଭଞ୍ଜ ଜିଲ୍ଲା କଂଗ୍ରେସ କମିଟିରେ ରହିଲେ କେବଳ କେତେଜଣ ପୂର୍ବତନ ଅତ୍ୟାଚାରୀ ସର୍ଦ୍ଦାର ଓ ଧନୀ ମହାଜନ ଯେଉଁମାନଙ୍କର କି ଜାତୀୟ ଆନ୍ଦୋଳନ ପ୍ରତି ନଥିଲା କୌଣସି ଅବଦାନ ବରଂ ଥିଲା ଆନ୍ଦୋଳନକୁ ଭଣ୍ଡୁର କରି ଲୋକଙ୍କ ଉପରେ ନାନା ଅତ୍ୟାଚାର କରିବାର କଳଙ୍କମୟ ଚରିତ୍ରର ବହୁ ଉଦାହରଣ । ଚିରଦିନପାଇଁ ସମସ୍ତ ସୁଖସ୍ୱାଚ୍ଛନ୍ଦ୍ୟ ତ୍ୟାଗକରି ଯେଉଁ କଂଗ୍ରେସ ଅନୁଷ୍ଠାନରେ ଝାସ ଦେଇଥିଲି ପରିସ୍ଥିତି ଦୃଷ୍ଟିରୁ ସେହି ଅନୁଷ୍ଠାନକୁ ଛାଡ଼ିବା ବେଳକୁ କେତେ ଦୁଃଖ ଓ ସନ୍ତର୍ପଣର ସହିତ ଛାଡ଼ିବାକୁ ପଡ଼ିଥିଲା ତାହା ଅନ୍ୟ କେହି ଅନୁଭବ କରିପାରିବ ନାହିଁ । ଘରଛାଡ଼ି ପ୍ରଥମେ କଂଗ୍ରେସକୁ ଚାଲି ଆସିବା ବେଳର ସମସ୍ତ ପରିବାର ଲୋକଙ୍କର କ୍ରନ୍ଦନ ମନେପଡ଼ି ହୃଦୟରେ ବହୁ ଆଘାତ ଲାଗିଥିଲେ ହେଁ ସେ ସମସ୍ତ ଅତିକ୍ରମ କରି

କଂଗ୍ରେସ ଛାଡ଼ିବାର ନିଷ୍ପତ୍ତି ନେବାକୁ ପଡ଼ିଥିଲା । ସବୁଠାରୁ ବେଶି ଦୁଃଖଦାୟକ ଥିଲା, ଯେଉଁମାନେ କଂଗ୍ରେସ ବା ପ୍ରଜାମଣ୍ଡଳ ଆନ୍ଦୋଳନର ସବୁଠାରୁ ବଡ଼ ଶତ୍ରୁ ଥିଲେ ଓ ଜାତୀୟ ଆନ୍ଦୋଳନକୁ ବିଘ୍ନିତ କରାଇ ଆମ ଉପରେ ନାନା ପ୍ରକାର ଅତ୍ୟାଚାର କରୁଥିଲେ ସେହିମାନଙ୍କ ହାତରେ କଂଗ୍ରେସ ସଂଗଠନକୁ ଛାଡ଼ିଦେଇ ପୁଣି ଏକ ନୂତନ ଆଲୋକର ସନ୍ଧାନରେ ଆଗୁଆ ସୈନିକ ଭଳି ଆସିବାକୁ ପଡ଼ିଥିଲା । ୧୯୩୯ ମସିହା ଏପ୍ରିଲ ୧୬ ତାରିଖ, ଯେଉଁ ଦିନ ଏକ ଅଦୃଶ୍ୟ ଶକ୍ତିର ଆହ୍ୱାନ୍ ଏହି କଂଗ୍ରେସକୁ ଟାଣି ଆଣିଥିଲା ଏବଂ ଶରତ୍‌ବାବୁ ମୋର ରାଜନୈତିକ ପିତାଙ୍କ ଆଦର୍ଶ ମୋତେ ଏକ ଶୃଙ୍ଖଳିତ ସୈନିକ ହିସାବରେ ଆଗେଇ ନେଇଥିଲା, ୧୯୪୯ ମସିହା ସେପ୍ଟେମ୍ବର ମାସ ପର୍ଯ୍ୟନ୍ତ ଦୀର୍ଘ ଦଶବର୍ଷଧରି ସେହି କଂଗ୍ରେସ ଭିତରେ ନିଜକୁ ସଂପୂର୍ଣ୍ଣଭାବରେ ସାମିଲ କଲାପରେ ପୁଣି ତାକୁ ଛାଡ଼ିବାକୁ ପଡ଼ିଲା । ''ଆମେ କାହିଁକି କଂଗ୍ରେସ ଛାଡ଼ିଲୁଁ'' ନାମକ ପୁସ୍ତିକାରେ ପ୍ରଜାମଣ୍ଡଳ କର୍ମୀମାନଙ୍କୁ କିପରି ପାତର ଅନ୍ତର ବ୍ୟବହାର କରାଗଲା, ସ୍ୱାଧୀନତା ସଂଗ୍ରାମରେ ଯେଉଁମାନଙ୍କର ନାମଗନ୍ଧ ନଥିଲା ସେମାନଙ୍କୁ କିପରି ସମ୍ମାନିତ କରାଗଲା ଇତ୍ୟାଦି ସମସ୍ତ ବିଷୟ ତନ୍ନ ତନ୍ନ କରି ଉଲ୍ଲେଖ କରାଗଲା । ଗଡ଼ଜାତ ମିଶ୍ରଣ ପରେ ପରେ ଭୁବନେଶ୍ୱରରେ ନୂତନ ବିଧାନ ସଭାର ବୈଠକ ବସିଲା । ଶ୍ରୀଯୁକ୍ତ ଶରତ ଚନ୍ଦ୍ର ଦାସ ମୟୂରଭଞ୍ଜର ଛଅ ଜଣ ମନୋନୀତ ସଭ୍ୟଙ୍କ ମଧ୍ୟରୁ ଜଣେ ଥିଲେ । ସେ ବିଧାନ ସଭା ବୈଠକକୁ ଯାଇଥିଲାବେଳେ ମୁଁ ମଧ ତାଙ୍କ ସହିତ ଯାଇ ''ଆମେ କାହିଁକି କଂଗ୍ରେସକୁ ଛାଡ଼ିଲୁଁ'' ପୁସ୍ତିକାଗୁଡ଼ିକ ସେତେବେଳର ବିଧାନ ସଭା ସଦସ୍ୟ ତଥା ଅନ୍ୟମାନଙ୍କ ମଧ୍ୟରେ ବାଣ୍ଟିଥିଲି ।

## ୧୯୪୯ ସୋସାଲିଷ୍ଟ ପାର୍ଟିରେ ଯୋଗଦାନ

କଂଗ୍ରେସ ଛାଡ଼ିବାର ନିଷ୍ପତ୍ତି ଗ୍ରହଣ କରି ଇସ୍ତଫା ପତ୍ର ପଠାଇଦେବା ପରେ କେବଳ ଶରତ୍‌ବାବୁଙ୍କ ବ୍ୟତୀତ ଅନ୍ୟ ସମସ୍ତ ପ୍ରଜାମଣ୍ଡଳ ବା ଷ୍ଟେଟ୍ କଂଗ୍ରେସ୍ କର୍ମୀମାନେ ମୋ ନେତୃତ୍ୱରେ ଦଳ ଛାଡ଼ି, ଏହା ପୂର୍ବରୁ ଶ୍ରୀ ଗିରୀଶ ଚନ୍ଦ୍ର ରାୟ ପ୍ରଜାମଣ୍ଡଳରୁ ବାହାରି ଯାଇ ସୋସାଲିଷ୍ଟ ପାର୍ଟିରେ ଯୋଗ ଦେଇ ମୟୂରଭଞ୍ଜ ଜିଲ୍ଲା ସଂଗଠନ ଦାୟିତ୍ୱରେ ଥିଲେ, ଏବଂ ତାଙ୍କସହିତ ଯେଉଁ କ୍ଷୁଦ୍ର ସଂଗଠନ ଥିଲା ତହିଁର ପ୍ରାୟ ସମସ୍ତ ସଭ୍ୟ ପୂର୍ବତନ ପ୍ରଜାମଣ୍ଡଳ ସଂଗଠନର କର୍ମୀମାନେ ହିଁ ରହିଥିଲେ । ତେଣୁ ଆମର ଯୋଗଦାନକୁ ସେମାନେ ଆନନ୍ଦର ସହିତ ସ୍ୱାଗତ ଜଣାଇଲେ । କ୍ରମେ ପ୍ରଜା ସୋସାଲିଷ୍ଟ ପାର୍ଟି ମୟୂରଭଞ୍ଜ ଜିଲ୍ଲାରେ ଏକ ଦୃଢ଼ ସଂଗଠନରେ ପରିଣତ ହେଲା । ଏଥିପାଇଁ ଓଡ଼ିଶାରେ ସୋସାଲିଷ୍ଟ ପାର୍ଟିର ସେତେବେଳର ନେତୃତ୍ୱରେ ଥିବା ଶ୍ରୀଯୁକ୍ତ ସୁରେନ୍ଦ୍ରନାଥ ଦ୍ୱିବେଦୀ, ଶ୍ରୀଯୁକ୍ତ ରବୀନ୍ଦ୍ର ମୋହନ ଦାସ, ଶ୍ରୀଯୁକ୍ତ ସାରଙ୍ଗ ଧର ଦାସ ଓ ଶ୍ରୀଯୁକ୍ତ ବାଙ୍କାବିହାରୀ ଦାସ ପ୍ରଭୃତି ବ୍ୟକ୍ତିମାନେ ବିଶେଷ ଭାବେ ସ୍ୱାଗତ ଜଣାଇଥିଲେ । ଏହା ପରେ ମୁଁ ମୟୂରଭଞ୍ଜର ଚାରୋଟିଯାକ ସବ୍‌ଡ଼ିଭିଜନ୍‌ରେ ବୁଲି ପ୍ରଜାମଣ୍ଡଳ ସଂଗଠନରେ ଥିବା ସମସ୍ତ କର୍ମୀଙ୍କୁ ଭେଟି ସୋସାଲିଷ୍ଟ ପାର୍ଟିର ଅନ୍ତର୍ଭୁକ୍ତ କରାଇଥିଲି ।

ସୋସାଲିଷ୍ଟ ପାର୍ଟିରେ ଯୋଗଦାନ କଲାପରେ ଶ୍ରୀ ଗିରୀଶଚନ୍ଦ୍ର ରାୟ ପୂର୍ବପରି ଜିଲ୍ଲା ସଂପାଦକ ରହିଲେ । ମୁଁ ମୟୂରଭଞ୍ଜ ଜିଲ୍ଲା କୃଷକ ସଂଗଠନରେ ସଭାପତି ଦାୟିତ୍ୱ ଗ୍ରହଣ କରି ଭାଗଚାଷ ଆନ୍ଦୋଳନ ପରିଚାଳନା କଲି ଏବଂ ମୋତେ ମଧ୍ୟ ପ୍ରଜା ସୋସାଲିଷ୍ଟ ପାର୍ଟିର ପ୍ରାଦେଶିକ ସଂଗଠନର କାର୍ଯ୍ୟକାରୀ କମିଟିର ପ୍ରଥମେ ନିମନ୍ତ୍ରିତ ସଭ୍ୟରୂପେ ମନୋନୀତ କରାଯାଇ ପରେ ଉକ୍ତ କମିଟିର ସ୍ଥାୟୀ ସଭ୍ୟରୂପେ ନିର୍ବାଚିତ କରାଗଲା ।

## ଜୟପ୍ରକାଶ ନାରାୟଣଙ୍କ ମୟୂରଭଞ୍ଜ ଆଗମନ

୧୯୪୯ ମସିହାର ନଭେମ୍ବର ଶେଷଆଡକୁ ଭାରତର ବିପ୍ଲବୀ ନେତା ତଥା ଭାରତୀୟ ସୋସାଲିଷ୍ଟ ପାର୍ଟିର ସାଧାରଣ ସଂପାଦକ ଶ୍ରୀଯୁକ୍ତ ଜୟପ୍ରକାଶ ନାରାୟଣଙ୍କ ଓଡିଶା ଆଗମନ ହେଲା ଏବଂ ତାଙ୍କର ଗ୍ରସ୍ତକ୍ରମ ମଧ୍ୟରେ ପ୍ରଥମେ ବାରିପଦାଠାରେ ଏକ ସାଧାରଣ ସଭା ରଖାଗଲା । ଏହି ଉଦ୍ଦେଶ୍ୟରେ ବାରିପଦାରେ ଶ୍ରୀଯୁକ୍ତ ଶରତ ଚନ୍ଦ୍ର ଦାସଙ୍କ ନେତୃତ୍ୱରେ ଏକ ଅଭ୍ୟର୍ଥନା ସମିତି ଗଠିତ ହେଲା । ଏଥି ପୂର୍ବରୁ କେହି ଜଣେ ହେଲେ ସର୍ବଭାରତୀୟ ନେତା ମୟୂରଭଞ୍ଜକୁ ଆସି ନ ଥିଲେ ଏବଂ ଜୟପ୍ରକାଶ ହିଁ ମୟୂରଭଞ୍ଜ ପରିଦର୍ଶନ କରିଥିବା ପ୍ରଥମ ସର୍ବଭାରତୀୟ ନେତା । ଆମେ ସବୁ ସୋସାଲିଷ୍ଟ ପାର୍ଟିରେ ଯୋଗ ଦେବା ପରେ ଏରେ ଜୟପ୍ରକାଶଙ୍କ ମୟୂରଭଞ୍ଜ ଆଗମନ ଏହି ପାର୍ଟିକୁ ଅଧିକ ଶକ୍ତିଶାଳୀ କରି ଗଢି ତୋଳିଲା ଏବଂ ଏହା ସମସ୍ତ କଂଗ୍ରେସ ଛାଡି ଆସିବାପରେ କଂଗ୍ରେସ ଅନୁଷ୍ଠାନ ଅତି ଦୁର୍ବଳ ଓ ନାମକୁମାତ୍ର ଅନୁଷ୍ଠାନ ହୋଇ ରହିଲା । ଜୟପ୍ରକାଶ ଅମର୍ଦ୍ଦାରୋଡରେ ଓହ୍ଲାଇ ଚିତ୍ରଡାଠାରେ ମଧ୍ୟାହ୍ନ ଭୋଜନ ଓ ବିଶ୍ରାମ ପରେ ବାରିପଦାରେ ଆସି ପହଞ୍ଚିଲେ । ସେ ଦିନ ସଭାରେ ତାଙ୍କୁ ଏକ ହଜାର ଟଙ୍କାର ଏକ ଥଳି ଭେଟି ଦିଆଯାଇଥିଲା । ମୁଁ ଅଭ୍ୟର୍ଥନା ସମିତିର ସଂପାଦକ ନିର୍ବାଚିତ ହୋଇ ସଭାକୁ ସଫଳ କରାଇବାରେ ବିଶେଷ ଭାଗ ନେଇଥିଲି । ମଧୁବନ ପଡିଆରେ ଏକ ବିରାଟ ସାଧାରଣ ସଭାରେ ପ୍ରାୟ ୧୫ ରୁ ୨୦ ହଜାର ଲୋକ ଯୋଗ ଦେଇଥିଲେ । ଶ୍ରୀଯୁକ୍ତ ଜୟପ୍ରକାଶ ବାରିପଦାରେ କୌଣସି ଡାକବଙ୍ଗଳା ବା ସର୍କିଟ ହାଉସରେ ନ ରହି ସୋସାଲିଷ୍ଟ ପାର୍ଟିର ଜଣେ ଉଚ୍ଚ ସମର୍ଥକ ଶ୍ରୀଯୁକ୍ତ ବ୍ରଜବନ୍ଧୁ ରଥଙ୍କ ଘରେ ତାଙ୍କ ସହଧର୍ମିଣୀ ପ୍ରଭାବତୀ ଦେବୀଙ୍କ ସହ ରହିଥିଲେ । ମଧୁବନଠାରେ ହୋଇଥିବା ବିରାଟ ସାଧାରଣ ସଭାରେ ଶ୍ରୀଯୁକ୍ତ ଶରତ ଚନ୍ଦ୍ର ଦାସ ସଭାପତିତ୍ୱ କରିଥିଲେ । ଜୟପ୍ରକାଶଙ୍କ ପରିଦର୍ଶନ ପରେ ପରେ ସମଗ୍ର ମୟୂରଭଞ୍ଜ ଜିଲ୍ଲାରେ ପ୍ରଜା ସୋସାଲିଷ୍ଟ ପାର୍ଟିର ସଂଗଠନ କ୍ରମେ ଦୃଢ଼ତର ହୋଇ ପୂର୍ବ ପ୍ରଜାମଣ୍ଡଳ ପରି ଶକ୍ତିଶାଳୀ ହୋଇଉଠିଲା ଏବଂ ଜିଲ୍ଲାର ପ୍ରାୟ ସମସ୍ତ ଥାନା ଇଲାକାରେ ୧୯୫୦ ମସିହାର ଶେଷ ବେଳକୁ ଥାନା କମିଟିମାନ ଗଠିତ ହୋଇଗଲା । ସେହିପରି ମୋର ସଭାପତିତ୍ୱରେ ଗଠିତ କୃଷକ ସଂଗଠନ ଜରିଆରେ ଭାଗଚାଷୀ ଆନ୍ଦୋଳନ ଆରମ୍ଭ ହୋଇ କ୍ରମେ ଗ୍ରାମାଞ୍ଚଳରେ ଛୋଟ ଚାଷୀ ଓ ଭାଗଚାଷୀ ମଧ୍ୟରେ ଅଧିକ ପ୍ରସାରଲାଭ କଲା ।

## ଶ୍ରୀ ଅଶୋକ ମେହେଟ୍ଟାଙ୍କ ଆଗମନ

୧୯୫୦ ମସିହାରେ ଆଉ ଜଣେ ସର୍ବଭାରତୀୟ ଯୁବସମାଜବାଦୀ ନେତାଙ୍କ ମୟୂରଭଞ୍ଜ ଆଗମନ ହେଲା । ଏଥର ଓଡିଶା ପ୍ରାଦେଶିକ କମିଟିର ଏକ ସାଧାରଣ ବୈଠକ ବାରିପଦାରେ ଅନୁଷ୍ଠିତ ହେବାରୁ ଓଡିଶାର ଅନ୍ୟ ଜିଲ୍ଲାମାନଙ୍କରୁ ମଧ୍ୟ ପ୍ରତିନିଧିମାନେ ଯୋଗ ଦେଇଥିଲେ । ଅଶୋକ ମେହେଟାଙ୍କ ଆଗମନ ୨ୟ ସର୍ବଭାରତୀୟ ନେତାଙ୍କ ମୟୂରଭଞ୍ଜ ପରିଦର୍ଶନ । ସେ ପର୍ଯ୍ୟନ୍ତ କଂଗ୍ରେସରୁ କୌଣସି ସର୍ବଭାରତୀୟ ନେତା ମୟୂରଭଞ୍ଜ ପରିଦର୍ଶନ କରିନଥିଲେ ।

## ପୂଜ୍ୟ ଶରତଚନ୍ଦ୍ର ଦାସଙ୍କ ବିୟୋଗ

୧୯୫୦ ମସିହା ମେ ମାସ ପହିଲା ତାରିଖରେ ପୂଜ୍ୟ ଶରତଚନ୍ଦ୍ର ଦାସ ବାରିପଦା ହାସପାତାଳରେ ଶେଷ ନିଃଶ୍ୱାସ ତ୍ୟାଗ କରିଲେ । ଅବଶ୍ୟ ଏଥିପୂର୍ବରୁ ସେ ରୋଗାକ୍ରାନ୍ତ ହୋଇ ବାରିପଦା ହାସପାତାଳରେ ପ୍ରାୟ ଦୁଇମାସ ଧରି ରହିଥିଲେ । ମୁଁ ସବୁଦିନେ ତାଙ୍କ ପାଖେ ପାଖେ ରହି ତାଙ୍କର ସେବା ଶୁଶ୍ରୂଷା କରୁଥିଲି, ତାଙ୍କ

ପୁଅମାନଙ୍କ ଅପେକ୍ଷା ସେ ମୋତେ ଅଧିକ ଭଲ ପାଉଥିଲେ । ତେଣୁ ରୋଗ ଶଯ୍ୟାରେ ସର୍ବଦା ମୋର ଉପସ୍ଥିତି ସେ ଚାହୁଁଥିଲେ । ସେ ଥିଲେ ମୋର ରାଜନୈତିକ ପିତା । କିନ୍ତୁ ତାଙ୍କର ମୃତ୍ୟୁବେଳକୁ ମୁଁ ତାଙ୍କ ପାଖରେ ରହି ନ ପାରିବାରୁ ମୋର ସାରା ଜୀବନରେ ଏକ ଅବଶୋଷ ରହିଗଲା । ସେଦିନ ସକାଳେ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ହରେକୃଷ୍ଣ ମହତାବ ବେତନଟୀ ଆସୁଥିବାରୁ ମୁଁ ଓ ଶ୍ରୀ ଗିରୀଶ ଚନ୍ଦ୍ର ରାୟ ତହିଁ ପୂର୍ବଦିନ ବାରିପଦା ଫେରି ଆସି ବାରୁଣୀଘାଟଠାରେ ତାଙ୍କୁ ଶ୍ରଦ୍ଧାଞ୍ଜଳୀ ଦେଇଥିଲୁ । ଶରତ ବାବୁଙ୍କ ମୃତ୍ୟୁ ସଂବାଦ ପାଇ ବେତନଟୀଠାରେ ହେବାକୁ ଯାଉଥିବା ଶ୍ରୀଯୁକ୍ତ ହରେକୃଷ୍ଣ ମହତାବଙ୍କ ସମ୍ବର୍ଦ୍ଧନା ସଭା ବନ୍ଦ ହୋଇଯାଇଥିଲା ।

ଶରତବାବୁ ଥିଲେ ତ୍ୟାଗର ଏକ ପ୍ରତୀକ । ତାଙ୍କର ନିଜର ସେଭଳି କିଛି ସଂପତ୍ତି ନ ଥିଲା । ସେ ଓକିଲାତି ଛାଡ଼ି ପ୍ରଜା ଆନ୍ଦୋଳନରେ ଯୋଗ ଦେବାପରେ ତାଙ୍କର ବାରିପଦା ଘରେ ଥିବା ପରିବାରର ଲୋକେ ବହୁ ସମୟରେ ଭୋକ ଉପାସରେ ଦିନ କାଟୁଥିଲେ । ଲୋକେ ଆମ୍ବଯୋଡ଼ା ଆଶ୍ରମକୁ ଦେଇଥିବା ସାହାଯ୍ୟରୁ ବେଳେବେଳେ କିଛି ସାହାଯ୍ୟ ଓ ଆମ୍ବଯୋଡ଼ାରେ ଥିବା ଜମିରୁ ମିଳୁଥିବା ଧାନରେ ଦିନ କାଟୁଥିଲେ । ମନ୍ତ୍ରୀତ୍ୱ ଛାଡ଼ିବା ପରେ ରୋଗାକ୍ରାନ୍ତ ହୋଇ ଚିକିତ୍ସିତ ହେଉଥିଲା ବେଳେ ଔଷଧ କିଣିବାକୁ ପଡୁଥିବାରୁ ମୁଁ ବାରିପଦାର କେତେକ ବିଶିଷ୍ଟ ଲୋକଙ୍କଠାରୁ ଅର୍ଥ ସାହାଯ୍ୟ ଆଣି ଔଷଧ କିଣିଥିଲି । ବିଶେଷ କରି ତାଙ୍କର ସମସ୍ତ ତ୍ୟାଗ ଓ ଦୁଃଖ କଷ୍ଟରେ ଗଠିତ ପ୍ରଜାମଣ୍ଡଳ ଅନୁଷ୍ଠାନକୁ ଜବରଦସ୍ତ ପ୍ରଜାମଣ୍ଡଳ ବିରୋଧି ତଥା ଜାତୀୟତା ବିରୁଦ୍ଧରେ କାର୍ଯ୍ୟ କରୁଥିବା ଓ ତାଙ୍କୁ ଅତି ଲାଞ୍ଛିତ ଅପମାନିତ କରୁଥିବା ବ୍ୟକ୍ତିଙ୍କ ସହିତ ଜିଲ୍ଲା କଂଗ୍ରେସ ପୁନର୍ଗଠନ କରାଯିବାରୁ ସେ ବିଶେଷ ମର୍ମାହତ ହୋଇପଡ଼ିଥିଲେ । ଏହି ମର୍ମବେଦନା ହିଁ ତାଙ୍କ ମୃତ୍ୟୁର କାରଣ ହୋଇଥିଲା । ମୃତ୍ୟୁ ବେଳକୁ ତାଙ୍କୁ ମାତ୍ର ୬୨ ବର୍ଷ ବୟସ ହୋଇଥିଲା । ସେ ଶ୍ରୀଯୁକ୍ତ ମହତାବ ତଥା ଓଡ଼ିଶା ସରକାରଙ୍କ କର୍ମଚାରୀମାନଙ୍କର ମୟୂରଭଞ୍ଜ ଲୋକଙ୍କ ଉପରେ ବିଜେତା ମନୋଭାବ ପ୍ରଦର୍ଶନର ଘୋର ବିରୋଧି ଥିଲେ । ସେ ହାସପାତାଳରେ ଚିକିତ୍ସାଧୀନ ଥିବା ସମୟରେ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ମହତାବ ତାଙ୍କ ପାଇଁ ସ୍ୱତନ୍ତ୍ର ଔଷଧପତ୍ର ଇତ୍ୟାଦିର ବ୍ୟବସ୍ଥା କରିବାପାଇଁ ହାସପାତାଳ କର୍ତ୍ତୃପକ୍ଷଙ୍କୁ ନିର୍ଦ୍ଦେଶ ଦେଇଥିଲେ ହେଁ ସେ ତାଙ୍କ ସରକାରଙ୍କ ଦୟାର ପାତ୍ର ହେବେ ନାହିଁ ବୋଲି କହି ଔଷଧ ଇତ୍ୟାଦି ବ୍ୟବହାର ନ କରିବାରୁ ମୁଁ ଲୋକଙ୍କଠାରୁ ଚାନ୍ଦା ମାଗି ତାଙ୍କପାଇଁ ଔଷଧ କିଣି ଆଣୁଥିଲି ।

## ଶରତ ବାବୁଙ୍କ ସହିତ ମୋର ସମ୍ପର୍କ

ଶ୍ରୀଯୁକ୍ତ ଶରତ ବାବୁଙ୍କ ସହିତ ମୋର ସମ୍ପର୍କ ଗୁରୁଶିଷ୍ୟ ବା ପିତାପୁତ୍ରର ସଂପର୍କଠାରୁ ଅଧିକ ଥିଲା । ସେ ମୋର ଅନ୍ତର୍ନିହିତ ପ୍ରେରଣା ଓ ନିଷ୍ଠାର ପରିଚୟ ପାଇ ତାଙ୍କର ଯଥାର୍ଥ ଦାୟାଦ ହେବାର ଆଶା ରଖି ମୋତେ ସଦାସର୍ବଦା ତାଙ୍କ ପାଖେ ପାଖେ ରଖୁଥିଲେ । ମୋର ଶକ୍ତି ଓ ସାମର୍ଥ୍ୟ ବଢ଼ାଇବାପାଇଁ ଅନେକ ସମୟରେ ଅତି କଠିନ ପରୀକ୍ଷାର ସମ୍ମୁଖୀନ କରାଇବାକୁ ପଶ୍ଚାତପଦ ହେଉନଥିଲେ । କେବଳ ଯେ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟ ନେଇ ପରୀକ୍ଷା କରୁଥିଲେ ତା ନୁହେଁ ସମୟ ସମୟରେ ଅତି ସାଧାରଣ ଓ ଛୋଟ କାମ ଦେଇ ତାହା କିପରି ନିଷ୍ଠା ଓ ଆନ୍ତରିକାତର ସହ ତୁଲାଉଥିଲି ତାହା ସେ ସବୁବେଳେ ଲକ୍ଷ୍ୟ କରୁଥିଲେ । ଥରେ ସେ ପ୍ରଜାମଣ୍ଡଳର ସଭା ପାଇଁ ହାଟରେ ଢ଼େଙ୍ଗୁରା ଦେବାକୁ ମୋତେ ନିର୍ଦ୍ଦେଶ ଦେଲେ, କାଳେ ଏପରି ଏକ ଛୋଟ କାମ କରିବାକୁ ମୁଁ ସଂକୋଚ ମନେ କରିବି ସେଥିପାଇଁ ସେ ମୋତେ କହିଥିଲେ, ତୁମେ ଯଦି ସେନାପତି ହେବକୁ ଚାହଁ ତେବେ ପ୍ରଥମେ ଏକ ଶୃଙ୍ଖଳିତ ସୈନିକ ହେବାକୁ ଚେଷ୍ଟାକର । ଏହି ଉପଦେଶ ପଛରେ ତାଙ୍କର ମୋ ପ୍ରତି ଏକ ଅନ୍ତର୍ନିହିତ ଆଶୀର୍ବାଦ ଥିଲା ଯାହାକି ଆଜୀବନ ମୋର କର୍ତ୍ତବ୍ୟ ପଥରେ ଏକ ପାଥେୟ ହୋଇ ରହିଅଛି । ସେହିପରି ମୋତେ ନିଜର ପୁଅଭଳି ମନେ କରି ତାଙ୍କର ଗୋଡ଼ ମୋଡ଼ି ଦେବାକୁ କହିବାଠାରୁ ଆରମ୍ଭ କରି ରୋଗବେଳେ ପାଖରେ ବସାଇ ରଖିବା, କୌଣସି ଲେଖାଲେଖିରେ ତ୍ରୁଟି ଦେଖିଲେ ଶ୍ରଦ୍ଧାରେ ଗାଲରେ ଚାପୁଡ଼ାଏ ମାରିବା ଓ କେତେବେଳେ ଖାଉଥିବା ବେଳେ ମୋତେ ଡାକି ଗୋଟିଏ ଥାଳୀରେ ଖୁଆଇବାଆଦି ସମସ୍ତ କାର୍ଯ୍ୟ ନିର୍ବିକାରଭାବରେ କରୁଥିଲେ ।

ଥରେ Political Agent ଙ୍କୁ ଭେଟି ତାଙ୍କୁ Memorandum on the administration of Mayurbhanj ଦେବା ଭଳି ଅତି ଗୁରୁତ୍ୱପୂର୍ଣ୍ଣ ଓ କଠିନ କାମ କରିବାକୁ ନିର୍ଦ୍ଦେଶ ଦେଲେ । ପୁଣି ଥରେ ମୁଁ କୌଣସି କାମରେ ପ୍ରଜାମଣ୍ଡଳରେ କୋଷାଧ୍ୟକ୍ଷ ଶ୍ରୀଯୁକ୍ତ ଲକ୍ଷ୍ମୀଧର ତ୍ରିପାଠୀଙ୍କ ନିକଟକୁ ଦହିକୋଟୀ ଯାଉଥାଏ । ସେତିକିବେଳେ ଶରତବାବୁ ଶ୍ରୀଯୁକ୍ତ ତ୍ରିପାଠୀଙ୍କ କନ୍ୟାକୁ ଦେଖି ଆସି ତାଙ୍କୁ ବିବାହ କରିବା ସଂପର୍କରେ ମୋର ମତାମତ ଦେବାପାଇଁ ଏକ ଲଜ୍ଜାଶୀଳ କାମ ନ୍ୟସ୍ତ କଲେ । ଅବଶ୍ୟ ପରବର୍ତ୍ତୀ କାଳରେ ସେ ମୋର ବିବାହିତା ଧର୍ମପତ୍ନୀ ହେଲେ । ଏହିପରି ବିଭିନ୍ନ ଢଙ୍ଗରେ ନାନା ପ୍ରକାର କାମ ମୋ ଉପରେ ନ୍ୟସ୍ତ କରି ସେଗୁଡ଼ିକ ମାଧ୍ୟମରେ ମୋତେ ପରୀକ୍ଷା କରିବାକୁ ପଶ୍ଚାତପଦ ହେଉ ନ ଥିଲେ । ମୁଁ ମଧ୍ୟ ସମସ୍ତ କାମ ଅତି ଆନ୍ତରିକତା ଓ ନିଷ୍ଠାର ସହିତ ସଂପାଦନ କରି ସମସ୍ତ ପରୀକ୍ଷାରେ ସଫଳତାର ସହ ଉତ୍ତୀର୍ଣ୍ଣ ହୋଇପାରୁଥିଲି । ତେଣୁ ତାଙ୍କର ଆଶୀର୍ବାଦ କେବଳ ଯେ ଜୀବିତାବସ୍ଥାରେ ମୋ ଉପରେ ଥିଲା ତା ନୁହେଁ, ତାଙ୍କର ମୃତ୍ୟୁପରେ ମଧ୍ୟ ତାହା ଥିବାର ମୁଁ ଅନୁଭବ କରେ । ୧୯୫୭ ମସିହାରେ ବିଧାନସଭା ନିର୍ବାଚନରେ ବୈଶିଙ୍ଗା ନିର୍ବାଚନ ମଣ୍ଡଳୀରୁ ମୁଁ ଜଗନ୍ନାଥ କମିଳା ଓ ଗିରୀଶଚନ୍ଦ୍ର ରାୟ ଯଥାକ୍ରମେ ପ୍ରଜା ସୋସାଲିଷ୍ଟ ପାର୍ଟି, ଜାତୀୟ କଂଗ୍ରେସ ଓ କମ୍ୟୁନିଷ୍ଟ ପାର୍ଟି ତରଫରୁ ପ୍ରାର୍ଥୀରୂପେ ଛିଡା ହେଲୁ । ଏହି ତିନିଜଣ ଯାକ ଦିନେ ପ୍ରଜାମଣ୍ଡଳ ଆନ୍ଦୋଳନ ବେଳେ ଶରତବାବୁଙ୍କର ଯିଏ ସବୁଠାରୁ ପ୍ରିୟ ଶିଷ୍ୟ ହୋଇଥିବେ ସେ ହିଁ ନିର୍ବାଚନରେ ବିଜୟଲାଭ କରିବ । ନିର୍ବାଚନର ଫଳାଫଳ ତାହାହିଁ ହେଲା ବୋଲି କେବଳ ମୁଁ ଏକୁଟିଆ ନୁହେଁ ବହୁ ଲୋକ ଅନୁଭବ କଲେ । ମୁଁ ବିଜୟୀ ହେଲି, ଅନ୍ୟ ଦୁଇଜଣ ହାରିଲେ ଓ ଏପରିକି ଗିରୀଶଚନ୍ଦ୍ର ରାୟଙ୍କର ଅମାନତ ଉଡ଼ିଗଲା । ଏହା ଶରତ ବାବୁଙ୍କର ଅମର ଆତ୍ମାର ତାଙ୍କ ଶ୍ରେଷ୍ଠ ଶିଷ୍ୟ ପ୍ରତି ନିଶ୍ଚିତଭାବେ ଆଶୀର୍ବାଦ ଛଡା ଆଉ କ'ଣ ହୋଇପାରେ ? ଶରତ ବାବୁଙ୍କ ବ୍ୟତୀତ ତାଙ୍କ ସ୍ତ୍ରୀ ମଧ୍ୟ ମୋତେ ନିଜର ପୁଅ ବୋଲି ମନେ କରୁଥିଲେ । ଥରେ ମୋ ନିଜ ମା ଙ୍କ ମୃତ୍ୟୁପରେ ଦିନେ ହଠାତ ତାଙ୍କ ବାରିପଦା ଘରଠାରେ ଥିବାବେଳେ ମୋ ମା'ଙ୍କ କଥା ମନେପଡିବାରୁ ମୋତେ କାନ୍ଦିବାର ଦେଖି ତାଙ୍କ କୋଳରେ ଶୁଆଇ ମୁଁ ତୋର ମା' ବୋଲି କହିଥିଲେ । ତାଙ୍କ ଚାରିପୁଅ ମୋତେ ନିଜ ଭାଇ ଭଳି ବ୍ୟବହାର ଓ ସ୍ନେହ କରୁଥିଲେ । ଆମ୍ବଯୋଡାରେ ଶରତବାବୁ ତାଙ୍କର ଜଣେ ପୁଅ ଓ ଝିଆରୀ ଶ୍ରୀମତୀ ଯଶୋଦାମଣି ଦେଇ ରହୁଥିଲେ । ତାଙ୍କ ଘର ପ୍ରଜାମଣ୍ଡଳର କାର୍ଯ୍ୟାଳୟ ହୋଇଥିବାରୁ କର୍ମୀମାନେ ଚାରିଆଡୁ ଆସି ସେଠାରେ ରହୁଥିଲେ ଏବଂ ଯଶୋଦା ସମସ୍ତଙ୍କ ଚର୍ଚ୍ଚା କରୁଥିଲେ । ପ୍ରଜାମଣ୍ଡଳ ଆରମ୍ଭବେଳୁ ଆମ୍ବଯୋଡା ଆଶ୍ରମରେ ଶ୍ରୀଜଗନ୍ନାଥ କମିଳା, ଶ୍ରୀ କୈଳାସ ଚନ୍ଦ୍ର ନାଏକ, ଶ୍ରୀଗଙ୍ଗାଧର ଦାସ ପ୍ରଭୃତିଙ୍କ ସହ ମୁଁ ସଦାବେଳେ ସେଠାରେ ରହୁଥିଲି । ଅନ୍ୟମାନେ ଅନ୍ୟତ୍ର ନିଜ ନିଜ ଅଞ୍ଚଳକୁ ଯାଇ ସେଠାରେ ସଂଗଠନ କାମ କରୁଥିଲେ । ମୁଁ କିନ୍ତୁ ଆମ୍ବଯୋଡା ଛାଡି ଯାଉ ନ ଥିଲି । ଶରତ ବାବୁଙ୍କର ଅତି ଦୁଃସମୟବେଳେ ମଧ୍ୟ ତାଙ୍କ ପାଖେ ପାଖେ ରହି ପ୍ରଜାମଣ୍ଡଳର ସଂପାଦକରୂପେ ଆନ୍ଦୋଳନକୁ ବଞ୍ଚାଇ ରଖିଥିଲି । ୧୯୪୨ ମସିହାରେ ଭାରତଛାଡ ଆନ୍ଦୋଳନ ପରେ ସାରା ଭାରତରେ ଅକଥନୀୟ ଦମନଲୀଳା ଚାଲି ଉଭୟ ଜାତୀୟ ଓ ରାଜ୍ୟ ସ୍ତରର ନେତାମାନଙ୍କୁ ଅଟକବନ୍ଦୀ କରିଦେବା ଫଳରେ ସମଗ୍ର ଦେଶରେ ଜାତୀୟ ଆନ୍ଦୋଳନ କିଛିଦିନ ପାଇଁ ନୀରବ ହୋଇଗଲା । ମୟୂରଭଞ୍ଜରେ ମଧ୍ୟ ମହାରାଜଙ୍କ ତରଫରୁ ଭାରତଛାଡ ଆନ୍ଦୋଳନ ବିରୁଦ୍ଧରେ କୌଣସି ପ୍ରକାର କାର୍ଯ୍ୟାନୁଷ୍ଠାନ ଗ୍ରହଣ କରାନଯିବାରୁ ଆନ୍ଦୋଳନକୁ ବଞ୍ଚାଇ ରଖିପାରିଥିଲେ । କର୍ମୀମାନଙ୍କ ମଧ୍ୟରେ ଆନ୍ଦୋଳନକୁ ବଞ୍ଚାଇ ରଖିବାପାଇଁ ବିଭିନ୍ନ ଗଠନମୂଳକ କାର୍ଯ୍ୟମାନ ଆରମ୍ଭ କଲେ । ଏସବୁ କାର୍ଯ୍ୟରେ ମୁଁ ସବୁବେଳେ ପାଖେ ପାଖେ ରହି ବାର୍ତ୍ତାବହ ରୂପେ କାର୍ଯ୍ୟ କରୁଥିଲି । ବେତନଟୀ ଥାନାର ଆମ୍ବଯୋଡ଼ା ଗ୍ରାମର ଧୂଳିତ ମାଟିରେ ମୋର ସାଧନାରେ ବର୍ଷ ପରେ  ମୋତେ ଓଡ଼ିଶାର ଶାସନ କ୍ଷେତ୍ରରେ ଏକ ଉଚ୍ଚ ସ୍ଥାନକୁ ନେଇ ପହଞ୍ଚାଇ ପାରିବ ତାହା ସେତେବେଳେ ମୁଁ କେବେ କଳ୍ପନା ମଧ୍ୟ କରିପାରି ନ ଥିଲି । ଏପରିକି ମୁଁ ୧୯୫୨ ମସିହାରେ ପ୍ରଥମ ବିଧାନ ସଭା ସଭ୍ୟ ହେଲାବେଳେ ବି ଶରତବାବୁ ବଞ୍ଚି ନ ଥିଲେ । ତାର ପ୍ରାୟ ଦେଢବର୍ଷ ପୂର୍ବରୁ ୧୯୫୦ ମସିହାର  ମେ  ମାସ ପହିଲାଦିନ ସେ ଇହଧାମ ତ୍ୟାଗ କରିଥିଲେ । ମୁଁ ତାଙ୍କ ଜୀବଦ୍ଦଶା ମଧ୍ୟରେ ଏପରି ଏକ ଉଚ୍ଚ ପଦାଧିରୂଢ

ହୋଇଥିଲେ ସେ ସବୁଠାରୁ ବେଶି ଆନନ୍ଦିତ ହୋଇଥାନ୍ତେ । ତାଙ୍କ ମୃତ୍ୟୁପରେ ମଧ୍ୟ ମୁଁ ବହୁଦିନ ତାଙ୍କ ବାରିପଦା ଘରେ ତାଙ୍କ ପୁଅମାନଙ୍କ ସହିତ ରହୁଥିଲି । ସେମାନେ ମଧ୍ୟ ନିଜ ଭାଇ ଭଳି ନିର୍ବିଶେଷରେ ମୋତେ ଆଦର କରୁଥିଲେ । ତାଙ୍କ ଆମ୍ବଯୋଡା ଘରର ଆକର୍ଷଣ ଛିଣ୍ଡାଇ ନ ପାରି ମଝିରେ ମଝିରେ ସେଠାକୁ ଯାଉଥିଲି ଓ ଯଶୋଦା ଦେବୀଙ୍କୁ ଦେଖାକରି ତାଙ୍କ କଥା ମଧ୍ୟ ବୁଝୁଥିଲି । ସେ ୧୯୭୫ ବେଳକୁ ସଂସାରରୁ ଚାଲିଗଲେ ।

ଓଡ଼ିଶାର ଅନ୍ୟ ଗଡ଼ଯାତଗୁଡିକ ଓଡ଼ିଶାସହିତ ମିଶ୍ରଣ ହେବାର ପ୍ରାୟ ଏକବର୍ଷ ପରେ ମୟୂରଭଞ୍ଜ ରାଜ୍ୟର ମିଶ୍ରଣ ହେଲା । ଅବଶ୍ୟ ପ୍ରକୃତ ତଥ୍ୟ ବୁଝି ନ ପାରି କେତେକ ଏହି କାରଣରୁ ଷଢେଇକଳା ଖରସୁଆଁ ଓଡିଶାରୁ ବାଦ ପଡିଲା ବୋଲି ମୟୂରଭଞ୍ଜ ଉପରେ ଦୋଷାରୋପ କରନ୍ତି । ମାତ୍ର ମୟୂରଭଞ୍ଜ ଓଡ଼ିଶାର ମିଶି ନ ଥିଲେ ହେଁ ମୟୂରଭଞ୍ଜ ଦେଇ ଷଢେଇକଳା ଖରସୁଆଁକୁ ଯିବା ଆସିବାରେ ବା ସଂଯୋଗ ସ୍ଥାପନ କରିବାରେ କେବେହେଲେ କୌଣସି ପ୍ରକାର ଅସୁବିଧା ସୃଷ୍ଟି କରି ନାହିଁ ବରଂ ସହଯୋଗ କରିଛି । ସେତେବେଳର ସ୍ୱରାଷ୍ଟ୍ରମନ୍ତ୍ରୀ ଶ୍ରୀଯୁକ୍ତ ବଲ୍ଲଭ ଭାଇ ପଟେଲ ୧୯୪୮ ମସିହାରେ କଟକ ଆସି ଓଡ଼ିଶାର ସମସ୍ତ ଗଡ଼ଜାତର ରାଜାମାନଙ୍କ ସହିତ ଆଲୋଚନା କରି ଓଡ଼ିଶା ସହିତ ମିଶ୍ରଣର ପ୍ରସ୍ତାବ ଦେଲାବେଳକୁ ମୟୂରଭଞ୍ଜ ସେତେବେଳେର ପ୍ରଧାନମନ୍ତ୍ରୀ ଶ୍ରୀଯୁକ୍ତ ଶରତ ଚନ୍ଦ୍ର ଦାସ ଶ୍ରୀଯୁକ୍ତ ପଟେଲଙ୍କ ସହିତ ସାକ୍ଷାତ କରି ମୟୂରଭଞ୍ଜର ଅବସ୍ଥା ବିଶେଷତଃ ଆଦିବାସୀମାନଙ୍କର ମିଶ୍ରଣ ବିରୋଧୀ ଆନ୍ଦୋଳନ ସଂପର୍କରେ ଆଲୋଚନା କରିଥିଲେ । ତେଣୁକରି ଶ୍ରୀଯୁକ୍ତ ପଟେଲ ଅନ୍ୟ ସମସ୍ତ ରାଜାମାନଙ୍କୁ ମିଶ୍ରଣପାଇଁ ଇଙ୍ଗିତ ଦେଇଥିଲେ ହେଁ ମୟୂରଭଞ୍ଜର ସ୍ଥିତାବସ୍ଥାକୁ ମଞ୍ଜୁର କରିଥିଲେ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ ।

ପ୍ରାୟ ଦଶମାସ ହେବ ଶ୍ରୀଯୁକ୍ତ ଶରତ ଚନ୍ଦ୍ର ଦାସଙ୍କ ନେତୃତ୍ୱରେ ମୟୂରଭଞ୍ଜ ମନ୍ତ୍ରୀମଣ୍ଡଳ ଶାସନ କ୍ଷମତାରେ ରହି ବିନା କ୍ଷତିପୂରଣରେ ସରକାରୀ ପ୍ରଥାର ବିଲୋପ, ସଂପୂର୍ଣ୍ଣ ନିଶାନିବାରଣ ଓ ମୟୂରଭଞ୍ଜରେ ଉଚ୍ଚଶିକ୍ଷାପାଇଁ ମହାରାଜା ପୂର୍ଣ୍ଣଚନ୍ଦ୍ର ମହାବିଦ୍ୟାଳୟ ପ୍ରତିଷ୍ଠା ପ୍ରଭୃତି ବିବିଧ ଉନ୍ନୟନମୂଳକ କାର୍ଯ୍ୟମାନ କରିବାରେ ସଫଳ କାମ ହୋଇପାରିଥିଲେ । ଯେଉଁ ଜମିଦାରୀ ପ୍ରଥା ଉଚ୍ଛେଦ କରିବାରେ ଅନ୍ୟତ୍ର ସରକାର ଲକ୍ଷ ଲକ୍ଷ ଟଙ୍କା କ୍ଷତିପୂରଣ ଦେଇଥିଲେ ମୟୂରଭଞ୍ଜରେ ସେହି ସରକାରୀ ପ୍ରଥା ବିନା କ୍ଷତି ପୂରଣରେ ଉଚ୍ଛେଦ କରାଯାଇଥିଲା । ସ୍ୱାଧୀନତା ଆନ୍ଦୋଳନ ବେଳେ ପିକେଟିଂ କରି ଯେଉଁ କଂଗ୍ରେସ ଲୋକେ ନିଶା ନିବାରଣ ପାଇଁ ଘୋଷଣା କରିଥିଲେ, ସେହି କଂଗ୍ରେସ ସ୍ୱାଧୀନତା ପ୍ରାପ୍ତି ପରେ ଶାସନ କ୍ଷେତ୍ରରେ ରହି ରାଜସ୍ୱ ବୃଦ୍ଧି ଆଳରେ ନିଶା ପ୍ରବର୍ତ୍ତନ କଲେ । ଏହିପରି ଭାବରେ ଅଳ୍ପ କେତେଦିନ ମୟୂରଭଞ୍ଜ ସ୍ୱତନ୍ତ୍ର ହୋଇ ରହିଲା ପରେ ପରିଶେଷରେ ଏକ ବୃହତ୍ତର ଓଡ଼ିଶା ଗଠନରେ ଭାଗନେବାର ସ୍ଥିର କରି ଶରତ ବାବୁଙ୍କ ନେତୃତ୍ୱରେ ଏଠାକାର କେତେକ ବିଶିଷ୍ଟ ବ୍ୟକ୍ତିଙ୍କ ସହ ସ୍ୱରାଷ୍ଟ୍ର ମନ୍ତ୍ରୀ ଶ୍ରୀଯୁକ୍ତ ପଟେଲ ଓ ସ୍ୱରାଷ୍ଟ୍ର ସଚୀବ ଶ୍ରୀଯୁକ୍ତ ମେନନଙ୍କ ସହିତ ଦୀଲ୍ଲୀରେ ଦେଖାକରି ମୟୂରଭଞ୍ଜର ଓଡ଼ିଶା ସହିତ ମିଶ୍ରଣ ସ୍ଥିରୀକୃତ ହେଲା । ଅବଶ୍ୟ ଓଡ଼ିଶାର ଅନ୍ୟ ଗଡ଼ଯାତଗୁଡିକ କୌଣସି ସର୍ତ୍ତ ନ ରଖି ମିଶ୍ରଣରେ ରାଜି ହୋଇଥିଲେ, ମାତ୍ର ମୟୂରଭଞ୍ଜ ନିଜ ରାଜ୍ୟର ଜନସାଧାରଣ, ଉନ୍ନୟନ ସଂସ୍ଥା ଓ ରାଜ୍ୟ କର୍ମଚାରୀ ସମୂହଙ୍କ ସ୍ୱାର୍ଥରକ୍ଷାକାରୀ କେତେକ ସର୍ତ୍ତରେ (Instrument of Merger) ସ୍ୱାକ୍ଷର ପରେ ସମ୍ମାନର ସହିତ ଓଡ଼ିଶା ସହିତ ମିଶିଥିଲେ । ପ୍ରଥମେ ମୟୂରଭଞ୍ଜ ସରକାରଙ୍କୁ କେନ୍ଦ୍ର ସରକାର କର୍ମଚାରୀ ପ୍ରାୟ ଦୁଇ ମାସକାଳ ଶାସନ ଦାୟିତ୍ୱରେ ରହିଲାପରେ ଓଡିଶା ସହିତ ମୟୂରଭଞ୍ଜର ସଂପୂର୍ଣ୍ଣ ମିଶ୍ରଣ ଘଟିଲା । ବହୁଦିନର ମୟୂରଭଞ୍ଜ ରାଜ୍ୟର ସ୍ୱତନ୍ତ୍ର ସତ୍ତା ସବୁଦିନ ପାଇଁ ଇତିହାସ ପୃଷ୍ଠାରୁ ଲୋପ ପାଇଲା । ଅବଶ୍ୟ ଭାରତରେ ପୂର୍ବାଞ୍ଚଳରେ ମଣିପୁର ଭଳି ଛୋଟ ରାଜ୍ୟ ଏବେ ବି ନିଜର ସ୍ୱତନ୍ତ୍ର ସତ୍ତା ନ ହରାଇ ପୂର୍ବବତ ରହିଅଛି । ମୟୂରଭଞ୍ଜ ରାଜ ପରିବାର ଇତିହାସ ଅନୁଶୀଳନ କଲେ ଜଣାଯାଏ ମୟୂରଭଞ୍ଜର ପୂର୍ବତନ ରାଜ ପରିବାର ବହୁଦିନ ଧରି ଏହି ରାଜ୍ୟର ଏକ ସ୍ୱତନ୍ତ୍ର ସତ୍ତା ବାଜୟ ରଖି ବହୁ ଐତିହାସିକ ଓ ଗୌରବମୟ ପରଂପରାର ଦାୟାଦରୂପେ ପ୍ରତିପାଦିତ ହୋଇପାରିଛନ୍ତି ।




ପରିବାର ବର୍ଗଙ୍କ ସହ

# କଂଗ୍ରେସ ଛାଡି ସୋସାଲିଷ୍ଟ ପାର୍ଟିରେ ଯୋଗଦେଲି

ମାନବର ଇଚ୍ଛା ଏବଂ ଅଭିଳାଷ ବା ଆକାଂକ୍ଷାର ପଛଭୂମିରେ ଏକ ପ୍ରକାର ପ୍ରେରକ ଶକ୍ତି ନିହିତ ହୋଇ ରହିଥାଏ । ଇଚ୍ଛା ବା ଆକାଂକ୍ଷାର ଗତିର ଅନୁକୂଳରେ ମଣିଷର ମସ୍ତିଷ୍କ ଓ ଚିନ୍ତାଧାରା ପ୍ରବାହିତ ହୋଇଥାଏ । ଜୀବନ ଏକ ନିଘଞ୍ଚ ବନାନୀ ସଦୃଶ । ବନାନୀ ଅତି ସୁରମ୍ୟ ହେଲେ ହେଁ ଏହା ସ୍ଥଳବିଶେଷରେ କଣ୍ଟକ ପୂର୍ଣ୍ଣ ମଧ୍ୟ ହୋଇଥାଏ । ସାଧକପାଇଁ ସିଦ୍ଧିଲାଭ ସଦା ସୁନିଶ୍ଚିତ ହୋଇ ରହିଥାଏ । ସାଧନାର ମାର୍ଗ ଓ ପ୍ରକାର ଭିନ୍ନ ହେଲେ ମଧ୍ୟ ନିର୍ମଳ ବ୍ୟକ୍ତିତ୍ୱ ସଂପନ୍ନ ସାଧକ ଲୋକମଙ୍ଗଳକୁ ନିଜର ପ୍ରଧାନ ଲକ୍ଷ୍ୟ ମାନି କାର୍ଯ୍ୟରତ ଥିଲେ ନିଜର ପୁରୁଷାର୍ଥ ଓ ପାତ୍ର ତାର ବିକାଶଲାଭ କରି ପାରିଥାଏ । ରାଜନୈତିକ ଜୀବନର ପ୍ରାରମ୍ଭରୁ ଜାତୀୟ କଂଗ୍ରେସର ଏକ ସଚ୍ଚୋଟ କର୍ମୀ ହିସାବରେ କାର୍ଯ୍ୟ କରୁଥିଲେ ହେଁ ଘଟଣାଚକ୍ରରେ ପଡ଼ି ୧୯୪୯ ମସିହାରେ ମୁଁ କଂଗ୍ରେସ ଛାଡି ସୋସାଲିଷ୍ଟ ପାର୍ଟିରେ ଯୋଗଦାନ କଲି । କ୍ରମେ ମୟୂରଭଞ୍ଜର ପ୍ରଜାମଣ୍ଡଳରେ କାର୍ଯ୍ୟ କରୁଥିବା ମୋର ସମସ୍ତ ସହକର୍ମୀ ମଧ୍ୟ ମୋସହିତ ଆସି ସେହି ସୋସାଲିଷ୍ଟ ପାର୍ଟିରେ ଯୋଗ ଦେଲେ ଏବଂ ପରିଣାମରେ ମୟୂରଭଞ୍ଜ ସମଗ୍ର ରାଜ୍ୟରେ ଉକ୍ତ ରାଜନୈତିକ ଦଳର ଏକ ଦୃଢ଼ ଭିତ୍ତିଭୂମିରେ ପରିଣତ ହେଲା ।

ଏତେବେଳକୁ ମୟୂରଭଞ୍ଜର ରାଜନୈତିକ ପରିସ୍ଥିତି ଅତି ନିମ୍ନସ୍ତରକୁ ଚାଲିଯାଇଥାଏ । କଂଗ୍ରେସ ସଂଗଠନ ମୁଷ୍ଟିମେୟ କେତେକ ଧନୀ, ମାନୀ ଓ ସାମନ୍ତ ପରିବାର ମଧ୍ୟରେ ସୀମିତ ହୋଇ ରହିଥାଏ । ସର୍ବସାଧାରଣ ଏ ସଂଗଠନକୁ ନିଜର ବୋଲି ମନେ କରିପାରୁ ନଥାନ୍ତି । ଦ୍ୱିତୀୟତଃ ଶ୍ରୀ ସେନାରାମ ସୋରେନ୍‌ଙ୍କ ନେତୃତ୍ୱାଧିନ ଆଦିବାସୀ ସଂଗଠନ ସେତେବେଳକୁ ଅତ୍ୟନ୍ତ ଦୁର୍ବଳ ହୋଇପଡ଼ିଲାଣି । ଠିକ୍ ଏତିକିବେଳେ ଭାରତରେ ନୂତନ ସଂବିଧାନ ପ୍ରଣୀତ ହୋଇ ସେ ଅନୁସାରେ ପ୍ରଥମ ସାବାଳକ ଭୋଟରେ ସାଧାରଣ ନିର୍ବାଚନ ହେବାର ସ୍ଥିରୀକୃତ ହେଲା । ଏହି ନିର୍ବାଚନରେ କେବଳ ଆମ ରାଜ୍ୟରେ କାହିଁକି ସମଗ୍ର ଦେଶରେ ସୋସାଲିଷ୍ଟ ଦଳ ହିଁ କଂଗ୍ରେସର ଏକମାତ୍ର ପ୍ରତିଦ୍ୱନ୍ଦୀ ରାଜନୈତିକ ଦଳଭାବରେ ସ୍ୱୀକୃତି ଲାଭ କରିପାରିଥିଲା । ସେତେବେଳେ ଆଚାର୍ଯ୍ୟ ନରେନ୍ଦ୍ର ଦେବ, ଜୟପ୍ରକାଶ ନାରାୟଣ, ଡ଼କ୍ଟର ରାମମନୋହର ଲୋହିଆ, ଅଶୋକ ମେହେଟ୍ଟା, ଅରୁଣା ଆସଫ ଆଲ୍ଲୀ ପ୍ରଭୃତି ବିଶିଷ୍ଟ ଆନ୍ତର୍ଜାତିକ ଖ୍ୟାତିସଂପନ୍ନ ବ୍ୟକ୍ତିମାନେ ଏହି ରାଜନୈତିକ ଦଳର ନେତୃତ୍ୱରେ ଥାଆନ୍ତି ।

୧୯୫୧ରେ ପ୍ରଥମ ନିର୍ବାଚନର ଡାକରା । ଏଥିରେ ମୟୂରଭଞ୍ଜ ଜିଲ୍ଲାରୁ ପ୍ରାର୍ଥୀ ହେବାର ଅଭିଳାଷ ପୋଷଣ କରି ଲମ୍ଫପ୍ରଦାନ କଲି । ବିଧାନ ସଭାରେ ମୟୂରଭଞ୍ଜ ଜିଲ୍ଲାପାଇଁ ୧୦ଟି ଆସନ ଏବଂ ଲୋକସଭା ପାଇଁ ଗୋଟିଏ ମାତ୍ର ଆସନ ନିର୍ଦ୍ଦିଷ୍ଟ ଥାଏ । ପୁଣି ଏହି ଦଶଟି ବିଧାନ ଆସନ ମଧ୍ୟରୁ ମାତ୍ର ୩ଟିକୁ ଛାଡ଼ି ଅନ୍ୟ ସାତଟି ଆସନ ଥାଏ ସଂରକ୍ଷିତ । ଏହି ଜିଲ୍ଲାର ସଦର ସବ୍‌ଡ଼ିଭିଜନ୍‌ର ବାରିପଦା ଓ ମୋରଡ଼ା ଏହି ଦୁଇଟି ଆସନ ସାଧାରଣ ପ୍ରାର୍ଥୀଙ୍କ ପାଇଁ ଉଦ୍ଦିଷ୍ଟ ଥାଏ ।

ବାରିପଦାରୁ ଶ୍ରୀ ଗିରିଶ୍ଚନ୍ଦ୍ର ରାଏ, ମୋରଡ଼ା ଆସନରୁ ମୋତେ ଏବଂ ଏହିପରିଭାବରେ ଲୋକସଭା ଆସନ ସହ ସମସ୍ତ ବିଧାନସଭା ଆସନରୁ ସୋସାଲିଷ୍ଟ ପାର୍ଟି ତରଫରୁ ପ୍ରାର୍ଥୀ ଦେବାର ସ୍ଥିର କରାଗଲା । ନିର୍ବାଚନ ରଣାଙ୍ଗନରେ ଅବତୀର୍ଣ୍ଣ କରିସାରିଲିଣି । ନିର୍ବାଚନ ଲଢ଼ିବାର ନା ଅଛି କିଛି ଅଭିଜ୍ଞତା ନା ଜଣା ଅଛି କିଛି କୌଶଳ । ଖାଲି ସେତିକି ନୁହେଁ, ନିର୍ବାଚନପାଇଁ ସର୍ବନିମ୍ନ ଆବଶ୍ୟକ ସମ୍ବଳର ମଧ୍ୟ ଅଭାବ । ଏପରିକି ପ୍ରାର୍ଥୀତ୍ୱପାଇଁ ନିର୍ଦ୍ଧାରିତ ଦେୟ ଟ୨୫୦/- ଦେବାପାଇଁ ମଧ୍ୟ ମୋଠାରେ ସମ୍ବଳର ଅଭାବ । ମାତ୍ର ଥାଏ ମୋର ମନର ବଳ ଓ ଆତ୍ମୋତ୍କର୍ଷ ପାଇଁ ସାଧନାରେ ପୂର୍ଣ୍ଣ ବିଶ୍ୱାସ । ଏହି ମନୋବଳ ଓ ବିଶ୍ୱାସକୁ ପାଥେୟକରି ନିର୍ବାଚନର ୬ମାସ ପୂର୍ବରୁ ଆଗେଇ ଚାଲିଲି । "ଚରୈବେତି-ଚରୈବେତି- ନାନ୍ୟଃ ପନ୍ଥା ବିଦ୍ୟତେ ଅୟନାୟ" । ମୋରଡ଼ା ନିର୍ବାଚନ ମଣ୍ଡଳୀର ମୋରଡ଼ା ଓ ବୈଶିଙ୍ଗା ଥାନାର ପ୍ରାୟ ପ୍ରତ୍ୟେକ ଗ୍ରାମକୁ ଯାଇ ଜନସାଧାରଣଙ୍କ ସହିତ ଘନିଷ୍ଠତା ରକ୍ଷାକରି ଏମାନଙ୍କର ସମର୍ଥନ ଲାଭ କରିବାର ପ୍ରୟାସ ଆରମ୍ଭ କରିଦେଲି । ପୁଣି ଜନସାଧାରଣଙ୍କ ପ୍ରତିନିଧିତ୍ୱ କରିବାକୁ ହେଲେ ଜନସାଧାରଣ ହିଁ ଅର୍ଥ ଯୋଗାଇବା ଶ୍ରେୟ ମନେ କରି ସେମାନଙ୍କ ଠାରୁ କିଛି କିଛି ଅର୍ଥ ସଂଗ୍ରହ କଲି ଓ ମୋର ପ୍ରାର୍ଥୀତ୍ୱ ପାଇଁ ଦେୟ ପରିମାଣର ଅର୍ଥସହ ପ୍ରଚାର ପାଇଁ ଯତ୍‌ସାମାନ୍ୟ ଅର୍ଥ ସଂଗ୍ରହ କରିପାରିଲି ।

୧୯୫୧ ଡିସେମ୍ବର ୨୩ ତାରିଖରୁ ୧୯୫୨ ଜାନୁୟାରୀ ୧୮ତାରିଖ ପର୍ଯ୍ୟନ୍ତ ମୟୂରଭଞ୍ଜର ବିଭିନ୍ନ ନିର୍ବାଚନ ମଣ୍ଡଳୀରେ ଭୋଟ ଗ୍ରହଣ କରିବାର କାର୍ଯ୍ୟକ୍ରମ ସ୍ଥିର ହୋଇଥାଏ । କ୍ରମେ ନିର୍ବାଚନ ଦିବସ ପାଖେଇ ଆସିଲା । ଦେଖାଗଲା ମୋରିଡ଼ା ନିର୍ବାଚନ ମଣ୍ଡଳରିରୁ ସ୍ଥାନୀୟ ପ୍ରତିଷ୍ଠିତ ମୋରିଡ଼ା ସରଦାରଙ୍କ ପୁଅ ଓକିଲ ଶ୍ରୀ କାମିନୀକାନ୍ତ ପଟ୍ଟନାୟକ କଂଗ୍ରେସ ତରଫରୁ ଓ ଅନ୍ୟଜଣେ ବିଶିଷ୍ଟ ଓକିଲ ଶ୍ରୀ ହରିରାମ ମହାନ୍ତ ଗଣତନ୍ତ୍ର ଦଳରୁ (ପାଟଣା ମହାରାଜାଙ୍କ ନେତୃତ୍ୱରେ ନୂତନଭାବେ ଗଠିତ ଏକ ରାଜାମହାରାଜାଙ୍କ ଦଳ), ଆଉ ଜଣେ ସ୍ୱାଧୀନ ସଭ୍ୟଙ୍କ ସମେତ ଦୁଇଜଣ ଆଦିବାସୀ ପ୍ରାର୍ଥୀ ମୋର ପ୍ରତିଦ୍ୱନ୍ଦୀଭାବରେ ନିର୍ବାଚନ ରଣାଙ୍ଗନରେ ଅବତୀର୍ଣ୍ଣ ହୋଇଅଛନ୍ତି । ନିର୍ବାଚନ ପ୍ରଚାରପାଇଁ ବାହାରିପଡ଼ିଲି । ଏ କାର୍ଯ୍ୟ ତୁଲାଇବାପାଇଁ ନା ଅଛି ମୋର ମାଇକ୍ ନା କୌଣସି ଯାନବାହାନ । ନିଜସ୍ୱ ସାଇକେଲଟି ବ୍ୟତୀତ ଅନ୍ୟ କିଛି ସମ୍ବଳ ନାହିଁ । ସେଇ ସାଇକେଲଟିକୁ ଭରସା କରି ଦୃଢ଼ମନୋବଳ ନେଇ ପ୍ରଚାର କାର୍ଯ୍ୟରେ ଅଗ୍ରସର ହେଲି ।

ବାରିପଦା ନିର୍ବାଚନ ମଣ୍ଡଳୀରୁ ମୋର ଜନୈକ ପ୍ରଜାମଣ୍ଡଳର ପୁରାତନ ସହକର୍ମୀ ଶ୍ରୀ ଗଜେନ୍ଦ୍ରନାଥ ପଟ୍ଟନାୟକ କଂଗ୍ରେସ ତରଫରୁ ପ୍ରାର୍ଥୀ ହୋଇଥିଲେ ହେଁ ପରବର୍ତ୍ତୀ ସମୟରେ କଂଗ୍ରେସ ଉଚ୍ଚକର୍ତ୍ତୃପକ୍ଷଙ୍କ ନିର୍ଦ୍ଦେଶ କ୍ରମେ ନିଜର ପ୍ରାର୍ଥୀତ୍ୱ ପ୍ରତ୍ୟାହାର କରିନେଲେ ଏବଂ ତାଙ୍କ ସ୍ଥାନରେ ବିରଳାଙ୍କ ସମ୍ପର୍କୀୟ ଜଣେ ମାରୁଆଡ଼ି ବ୍ୟବସାୟୀ ଉକ୍ତ ଦଳ ତରଫରୁ ପ୍ରାର୍ଥୀରୂପେ ଛିଡାହେଲେ । ଉକ୍ତ ବ୍ୟବସାୟୀ ଜଣକ ବହୁ ଅର୍ଥ ବ୍ୟୟକରି ଭୋଟ ଦାତାମାନଙ୍କୁ ପ୍ରଲୋଭିତ କରିବାର ଚେଷ୍ଟାକଲେ । ତେଣୁ ଆମେ ଏ ଘଟଣାକୁ ଏକ ଆହ୍ୱାନ ରୂପରେ ଗ୍ରହଣ କଲୁ । ଆମ ସୋସାଲିଷ୍ଟ ଦଳରୁ ଶ୍ରୀ ଗରିଶ୍ଚନ୍ଦ୍ର ରାୟ ବାରିପଦା ନିର୍ବାଚନ ମଣ୍ଡଳୀରୁ ପ୍ରାର୍ଥୀ ହୋଇଥାଆନ୍ତି । ତେଣୁ ମୋ ନିର୍ବାଚନ ମଣ୍ଡଳୀ ସହ ବାରିପଦା ନିର୍ବାଚନ ମଣ୍ଡଳୀରେ ମଧ୍ୟ ବୁଲି ପ୍ରଚାର ଓ ସଂଗଠନ କାର୍ଯ୍ୟ

କରିବାକୁ ମୋତେ ପଡ଼ିଲା । ମୟୂରଭଞ୍ଜର ପ୍ରଜା ସାଧାରଣତଃ ଅତ୍ୟନ୍ତ ରାଜଭକ୍ତ । ଏଇ ଦୁର୍ବଳତାର ସୁଯୋଗନେଇ ଗଣତନ୍ତ ଦଳ ତରଫରୁ ତାଙ୍କ ପ୍ରାର୍ଥୀ ଜୟଯୁକ୍ତ ହେଲେ ରାଜା ପୁଣି ଶାସନଗାଦୀକୁ ଫେରିଆସିବାର ପ୍ରଚାର ଜୋରଦାର ଆରମ୍ଭ ହୋଇଗଲା । ଫଳରେ ଆମକୁ ଏକ ପ୍ରବଳ ପ୍ରତିଦ୍ୱନ୍ଦିତାର ସମ୍ମୁଖୀନ ହେବାକୁ ପଡ଼ିଲା । ସେତେବେଳେ ଓଡ଼ିଶାରେ ଗାନ୍ଧିବାଦୀ ନେତା ଶ୍ରୀଯୁକ୍ତ ନବକୃଷ୍ଣ ଚୌଧୁରୀଙ୍କ ମନ୍ତ୍ରୀମଣ୍ଡଳ ଥାଏ । ଶ୍ରୀଯୁକ୍ତ ହରେକୃଷ୍ଣ ମହତାବ ଥାଆନ୍ତି କେନ୍ଦ୍ରରେ ଶିକ୍ଷମନ୍ତ୍ରୀ । ଶ୍ରୀଯୁକ୍ତ ଚୌଧୁରୀ ମୋତେ କଂଗ୍ରେସ୍‌କୁ ଫେରିଆସିବାକୁ ଅନୁରୋଧ କରି ଏକ ବ୍ୟକ୍ତିଗତ ଚିଠି ଦେଲେ । କଂଗ୍ରେସ୍‌କୁ ଫେରି ଆସିଲେ ମୋ ଅନୁରୋଧ କ୍ରମେ ନିର୍ବାଚନ ମଣ୍ଡଳୀରେ ସମସ୍ତ କାର୍ଯ୍ୟ କରାଯିବାର ପ୍ରତିଶ୍ରୁତି ମଧ୍ୟ ମିଳିଥିଲା । ମାତ୍ର ନୀତି ଦୃଷ୍ଟିରୁ ଏପରି ଦଳ ପରିବର୍ତ୍ତନ ମୋର ଅନୁକୂଳ ନ ହେବାରୁ ଶ୍ରୀଯୁକ୍ତ ଚୌଧୁରୀଙ୍କୁ କୃତଜ୍ଞତା ଜଣାଇ ତାଙ୍କର ନିମନ୍ତ୍ରଣ ପ୍ରତ୍ୟାଖ୍ୟାନ କରିଥିଲି । ନିର୍ବାଚନ ସମୟରେ କଂଗ୍ରେସ୍ ତରଫରୁ ପ୍ରଚାରରେ ଆସିଥିବା ବେଳେ ମୋର ଜଣେ ସହକର୍ମୀ ଶ୍ରୀ ଭାଗବତ ପ୍ରସାଦ ପରିଡ଼ା ତାଙ୍କୁ ଏ ଚିଠି ସମ୍ପର୍କରେ ପ୍ରଶ୍ନ କଲାରୁ ସେ ରାଗିଯାଇ ମୋ ବିରୁଦ୍ଧରେ ପ୍ରଚାର ପରିବର୍ତ୍ତେ ପ୍ରଶଂସା କରି ମୋତେ ସୁହାଇଲା ଭଳି ପ୍ରଚାର କରି ପକାଇଲେ । ଆର୍ଥିକ ଅନାଟନ ଯୋଗୁ ପ୍ରଚାର କାର୍ଯ୍ୟରେ କେବଳ ସାଇକେଲ ବ୍ୟତୀତ ଅନ୍ୟ କୌଣସି ଯାନ ବ୍ୟବହାର କରିପାରୁ ନଥାଏ । ଅବଶ୍ୟ ବାରିପଦା ନିର୍ବାଚନ ମଣ୍ଡଳୀପାଇଁ ଆମର ଜଣେ ସମର୍ଥକ ଓଡ଼ିଆ ବ୍ୟବସାୟୀ ତାଙ୍କର ଗୋଟିଏ ମୋଟର ଗାଡ଼ି ବିଦେଶୀ ମାରୁୱାଡ଼ୀ ପ୍ରାର୍ଥୀଙ୍କୁ ହରାଇବାର ସର୍ତ୍ତରଖି କେବଳ ବାରିପଦାପାଇଁ ଦେଇ ଥାଆନ୍ତି । ଏହି ଗାଡ଼ିଟି କେବଳ ବାରିପଦା ନିର୍ବାଚନ ମଣ୍ଡଳୀର ପ୍ରଚାର କାର୍ଯ୍ୟରେ ସୀମିତ ରହିଥାଏ । ମୋତେ ମୋ ନିର୍ବାଚନ ମଣ୍ଡଳୀରେ କେବଳ ସାଇକେଲଦ୍ୱାରା ହିଁ ସମସ୍ତ ପ୍ରଚାର କାର୍ଯ୍ୟ ତୁଲାଇବାକୁ ପଡ଼ିଥିଲା । ଆମ ନିଜ ଦଳର ମଧ୍ୟ ଆର୍ଥିକ ପରିସ୍ଥିତି ଭଲ ନଥିବାରୁ ଦଳ ତରଫରୁ କେବଳ କେତେକ ପୋଷ୍ଟର ଓ ପତାକା ବ୍ୟତୀତ ଅନ୍ୟ କୌଣସି ପ୍ରକାର ଆର୍ଥିକ ସାହାଯ୍ୟ ମିଳିନଥିଲା । ଏହି ନିର୍ବାଚନରେ ମୁଁ ସର୍ବମୋଟ ମାତ୍ର ପାଞ୍ଚଶହ ଟଙ୍କା ଖର୍ଚ୍ଚ କରିଥିଲି । ଭୋଟ କେନ୍ଦ୍ରର କର୍ମୀମାନେ ନିଜ ଘରେ ବା ଅନ୍ୟ ବଂଧୁ ବାନ୍ଧବଙ୍କ ଘରେ ଖାଇ ନିଜ ନିଜର ଦାୟିତ୍ୱ ତୁଲାଇଥିଲେ । ମୁଁ ମୋରଡ଼ା ଥାନାରୁ ଅଧିକ ଭୋଟ ପାଇ ଜୟଯୁକ୍ତ ହେଲି । ବୈଶିଙ୍ଗା ଥାନାର ଭୋଟ ମିଶିବାରୁ ମୁଁ ସର୍ବମୋଟ ପ୍ରାୟ ୩୦୦୦ ଅଧିକ ଭୋଟ ପାଇଥିଲି । ଗିରିଶ ବାବୁ ମଧ୍ୟ ବାରିପଦା ନିର୍ବାଚନ ମଣ୍ଡଳୀର କଂଗ୍ରେସ୍ ପ୍ରାର୍ଥୀର ଅମାନତ ହରାଇ ଉଦଳାରୁ ଶ୍ରୀ ଦୋଖାଚାନ୍ଦ ହାଁସଦା ଏବଂ ଖୁଣ୍ଟା ନିର୍ବାଚନ ମଣ୍ଡଳୀରୁ ଶ୍ରୀ ସାକିଲା ସରେନ୍ ସୋସାଲିଷ୍ଟ ଦଳ ତରଫରୁ ନିର୍ବାଚିତ ହୋଇଥିଲେ । ମୟୂରଭଞ୍ଜ ଜିଲ୍ଲାର ଦଶଟି ଆସନ ମଧ୍ୟରୁ ଚାରିଟିରେ ଆମ ଦଳ ପକ୍ଷରୁ ବିଧାନ ସଭାକୁ ୧୦ଜଣ ନିର୍ବାଚିତ ସଭ୍ୟଙ୍କ ମଧ୍ୟରୁ ମୋ ସମେତ ଆମେ ଚାରିଜଣ ସଭ୍ୟ ମୟୂରଭଞ୍ଜରୁ ନିର୍ବାଚିତ ହେବାର ଗୌରବ ହାସଲ କରିପାରିଥିଲୁ ।

## ବିଧାନସଭା

ନିର୍ବାଚନ ପରେ ପରେ ଶ୍ରୀଯୁକ୍ତ ନବକୃଷ୍ଣ ଚୌଧୁରୀଙ୍କ ନେତୃତ୍ୱରେ ଓଡ଼ିଶାର ନୂତନ ମନ୍ତ୍ରୀମଣ୍ଡଳ ଯଥାବିଧି ଗଠିତ ହେଲା ଓ ୧୯୫୨ ମସିହା ଫେବୃୟାରୀ ମାସରେ ବିଧାୟକମାନଙ୍କର

ଶପଥ ଗ୍ରହଣ ଉତ୍ସବ ଅନୁଷ୍ଠିତ ହେଲା । ବିଧାନ ସଭାରେ ସୋସାଲିଷ୍ଟ ଦଳ ଏକ ବିରୁଦ୍ଧ ଦଳଭାବରେ ନିଜର ଭୂମିକା ଗ୍ରହଣ କରିବାର ସ୍ଥିର କରାଗଲା । ଶ୍ରୀଯୁକ୍ତ ନିଶାମଣି ଖୁଣ୍ଟିଆ ଏହି ଦଳର ନେତାରୂପେ ଓ ମୁଁ ନିଜେ ଦଳର ସହକାରୀ ନେତା ଓ ଛାଟିଆ (wheep) ଭାବରେ ଦଳର ବୈଠକରେ ବିଧିବଦ୍ଧଭାବରେ ନିର୍ବାଚିତ ହେଲୁଁ । ସେତେବେଳେ ବିଧାନ ସଭାର ସଭ୍ୟମାନଙ୍କୁ ମାସିକ ମାତ୍ର ଟ୧୫୦/ ଓ ବୈଠକ ବେଳେ ଦୈନିକ ଟ୧୦/- (ଦଶଟଙ୍କା) ଲେଖାଏଁ ଭତ୍ତା ମିଳୁଥିଲା । ଆମ ଦଳର ରାଜ୍ୟ ଶାଖାର ନିଷ୍ପତ୍ତିକ୍ରମେ ଠିକଣା କରାଗଲା ଯେ ବିଧାନ ସଭାର କୌଣସି ସଭ୍ୟ ନିଜେ ଦରମା ଆଣିବେ ନାହିଁ । ଦଳର ସଂପାଦକ କ୍ଷମତାପ୍ରାପ୍ତ ହୋଇ (authorisation) ସମସ୍ତଙ୍କ ଦରମା ଆଣିବେ ଓ ତନ୍ମଧ୍ୟରୁ ପ୍ରତ୍ୟେକ ସଭ୍ୟଙ୍କୁ ମାସିକ ମାତ୍ର ଟ୪୦/-(ଚାଳିଶ ଟଙ୍କା) ଲେଖାଏଁ ଦିଆଯିବ, ତଦନୁଯାୟୀ ମୋତେ ଟ୧୫୦/- ମଧ୍ୟରୁ ମାତ୍ର ଟ୪୦/- ଦରମା ପ୍ରତିମାସରେ ମିଳୁଥିଲା । ଏପରି କଠୋର ନିୟମ ଅନ୍ୟ କୌଣସି ରାଜନୈତିକ ଦଳରେ ନ ଥିଲା ବା ଆମ ନିଜ ଦଳ ମଧ୍ୟ ଅନ୍ୟ କୌଣସି ରାଜ୍ୟରେ ଅନୁସରଣ କରୁ ନ ଥିଲା । ଏତଦ୍ ବ୍ୟତୀତ ପ୍ରତ୍ୟେକ ବିଧାୟକଙ୍କୁ ପ୍ରତିମାସ ଦୁଇଟି କୃଷକର (ପ୍ରଜା ସୋସାଲିଷ୍ଟ ପାର୍ଟିର ପାକ୍ଷିକ ପତ୍ରିକା) ଗ୍ରାହକ ଠିକ୍ କରିବାର ଭାର ନ୍ୟସ୍ତ କରାଯାଇଥିଲା । ପୁଣି ଏହି ଗ୍ରାହକ ସଂଗ୍ରହ କରି ନ ପାରିଲେ ତାର ବାର୍ଷିକ ଗ୍ରାହକ ଦେୟ (ଫିସ୍) ଟ.୬/- ଲେଖାଏଁ ଦେବାକୁ ପଡୁଥିଲା ।

ବିଧାନ ସଭା ବୈଠକ ଚାଲିଥିଲା ବେଳେ ପ୍ରତିଦିନ ରାତ୍ରିରେ ଦଳର ବୈଠକ ବସି ପରଦିନ ଆଲେଚନା ସଂପର୍କରେ ପ୍ରସ୍ତୁତ ହେବାକୁ ପଡୁଥିଲା । ଏଥିପାଇଁ ସଭ୍ୟମାନଙ୍କ ମଧ୍ୟରେ ବିଶେଷ ଜ୍ଞାନ ଅର୍ଜନପାଇଁ ବିଭିନ୍ନ ବିଭାଗ ସବୁ ବଣ୍ଟନ କରାଯାଇଥିଲା । ମୁଁ ପ୍ରଥମେ ଜଙ୍ଗଲ ବିଭାଗ ଉପରେ ଆଲୋଚନା ଦାୟିତ୍ୱରେ ରହିଥିଲି । ଓଡ଼ିଶା ବିଧାନ ସଭାରେ ବିରୁଦ୍ଧ ଦଳର ନେତାଭାବରେ ଶ୍ରୀଯୁକ୍ତ ନିଶାମଣି ଖୁଣ୍ଟିଆ ନିର୍ବାଚିତ ହୋଇଥିଲେ ହେଁ ମୋତେ ଉପଦଳପତି ଭାବରେ ସମସ୍ତ ଦାୟିତ୍ୱ ତୁଲାଇବାକୁ ପଡୁଥିଲା । ମୋର ବା ଅନ୍ୟ କାହାର ବିଧାନସଭାର କାର୍ଯ୍ୟ ସଂପର୍କରେ ସେପରି ଅଭିଜ୍ଞତା ନ ଥିଲା । ତେଣୁ ଅନେକ ସମୟରେ ଅଭିଜ୍ଞ ବ୍ୟକ୍ତିଙ୍କଠାରୁ କିପରି ବଜେଟ୍ ଆଗତ କରାଯାଏ, ତାର ତାତ୍ପର୍ଯ୍ୟ କ'ଣ ? ମୁଲତବୀ ପ୍ରସ୍ତାବ କିପରି ଅଣାଯାଏ ଇତ୍ୟାଦି ବିଷୟମାନ ଜାଣିବାକୁ ଚେଷ୍ଟା କରୁଥିଲୁ, ମୋର ମନେ ଅଛି ଥରେ କଟକରୁ ଭାରତ ସେବକ ସମିତିର ସଭ୍ୟ ଶ୍ରୀଯୁକ୍ତ ଶ୍ୟାମ ସୁନ୍ଦର ମିଶ୍ରଙ୍କୁ ଡାକି ତାଙ୍କଠାରୁ ଜାଣିବାକୁ ଚେଷ୍ଟା କରିଥିଲୁ । ଅନେକ ସମୟରେ ବିଧାନସଭାର ପୂର୍ବ ବିବରଣୀମାନ ଆଣି ସେଥିରୁ ବିଭିନ୍ନ ବିଭାଗର ଆଲୋଚନାମାନ ଅନୁଧ୍ୟାନ କରୁଥିଲୁ । ବେଳେ ବେଳେ ଛାୟା ମନ୍ତ୍ରୀମଣ୍ଡଳ ଭାବରେ ବିଭିନ୍ନ ବିଭାଗମାନ ସଭ୍ୟମାନଙ୍କ ମଧ୍ୟରେ ବଣ୍ଟନ କରି ଅଭିଜ୍ଞତା ଅର୍ଜନ ଉଦ୍ଦେଶ୍ୟରେ ପରସ୍ପର ମଧ୍ୟରେ ଆଲୋଚନାରତ ହେଉଥିଲୁ । ମୁଁ ଜଙ୍ଗଲ ବିଭାଗର ଦାୟିତ୍ୱ ନେଇ ସେ ସଂପର୍କରେ ଏଭଳି ଆଲୋଚନା ଓ ସମାଲୋଚନା କଲି ଯେ ମୋତେ ବିରୁଦ୍ଧ ଦଳର ଜଙ୍ଗଲ ବିଶେଷଜ୍ଞ ବୋଲି କହୁଥିଲେ । ପ୍ରତି ବଜେଟ୍ ଅଧିବେଶନ ବେଳେ ଜଙ୍ଗଲ ବିଭାଗ ଆଲୋଚନା ସମୟରେ ମୁଁ ପ୍ରଥମ କହିବାର ଗୌରବ ଅର୍ଜନ କରିପାରିଥିଲି । ଏତଦ୍ ବ୍ୟତୀତ ମୋର ଭାଷଣ ଦେବାର ଦକ୍ଷତା

ଥିବା ହେତୁରୁ ବିଧାନ ସଭାର ସଭ୍ୟ ହେବାର ପ୍ରାରମ୍ଭରୁ ହିଁ ଜଣେ ଦକ୍ଷ ବିଧାୟକଭାବରେ ସମସ୍ତଙ୍କର (ସଭ୍ୟ ଓ ସାମ୍ବାଦିକଙ୍କ) ଦୃଷ୍ଟି ଆକର୍ଷଣ କରିପାରିଥିଲି ।

## ଈର୍ଷାନ୍ୱିତ ଗିରିଶଚନ୍ଦ୍ର ରାୟଙ୍କର କମ୍ୟୁନିଷ୍ଟ ପାର୍ଟିରେ ଯୋଗଦାନ

୧୯୫୧-୫୨ ମସିହାର ପ୍ରଥମ ସାଧାରଣ ନିର୍ବାଚନରେ ଶ୍ରୀ ଗିରିଶଚନ୍ଦ୍ର ରାୟ ଓ ମୁଁ ଯଥାକ୍ରମେ ବାରିପଦା ଓ ମୋରଡ଼ା ନିର୍ବାଚନ ମଣ୍ଡଳୀରୁ ବିପୁଳ ସଂଖ୍ୟାରେ ଭୋଟ ପାଇ ଜୟଯୁକ୍ତ ହେଲୁ । ବାରିପଦା, ଶୂଳିଆପଦା, ବେତନଟୀ ଓ ବଉସାହି ଏହି ୪ଟି ଯାକ ଥାନା ଇଲାକାରେ ଶ୍ରୀଯୁକ୍ତ ରାୟଙ୍କର ସେପରି କୌଣସି ବିଶେଷ ପରିଚୟ ବା ଜଣାଶୁଣା ନ ଥିଲା । କିନ୍ତୁ ସେସବୁ ଅଞ୍ଚଳର ଲୋକଙ୍କ ସହିତ ପ୍ରଜାମଣ୍ଡଳରେ କାମକଲା ଦିନଠାରୁ ମୋର ବେଶ୍ ପରିଚୟ ଓ ଘନିଷ୍ଠତା ରହିଥାଏ । ତେଣୁ ମୁଁ କଂଗ୍ରେସ ଛାଡ଼ି ସମାଜବାଦୀ ଦଳକୁ ଆସିବାରୁ ମୋସହିତ ଏ ଅଂଚଳର ପ୍ରାୟ ସମସ୍ତ ପୁରୁଷ କଂଗ୍ରେସ କର୍ମୀ ଏହି ଦଳକୁ ଆସିଥିଲେ । ନିର୍ବାଚନ ବେଳେ ଉଭୟ ବାରିପଦା ଓ ମୋରଡ଼ା ନିର୍ବାଚନ ମଣ୍ଡଳୀର ସଭ୍ୟମାନେ ମୋତେ ସେହି ସେହି ଅଂଚଳରୁ ପ୍ରାର୍ଥୀ ହେବାପାଇଁ ଦାବି କରିଥିଲେ ହେଁ ମୁଁ ମୋରଡ଼ା ନିର୍ବାଚନ ମଣ୍ଡଳୀରୁ ପ୍ରାର୍ଥୀ ହୋଇ ଗିରିଶ୍ ବାବୁଙ୍କୁ ବାରିପଦାରୁ ପ୍ରାର୍ଥୀ ହେବାପାଇଁ ସମସ୍ତଙ୍କୁ ସମ୍ମତ କରାଇପାରିଥିଲି । ପ୍ରଥମେ ମୋରଡ଼ା ନିର୍ବାଚନ ମଣ୍ଡଳୀର ଭୋଟ ଗ୍ରହଣ ସରିଲାରୁ ମୁଁ ନିଜେ ବଡ଼ସାହି ଥାନା ଦାୟିତ୍ୱରେ ଥାଇ ଗିରିଶ୍ ବାବୁଙ୍କୁ ବିପୁଳ ଭୋଟରେ ଜୟଯୁକ୍ତ କରିବାରେ ସାହାଯ୍ୟ କରିଥିଲି । ଅପରପକ୍ଷରେ ମୋରଡ଼ା ନିର୍ବାଚନ ମଣ୍ଡଳୀ ଅନ୍ତର୍ଗତ ବୈଶିଙ୍ଗା ଥାନା ଇଲାକାରେ ଭୋଟ ଗ୍ରହଣ ଦିନ ବାରିପଦା ନିର୍ବାଚନ ମଣ୍ଡଳୀର ବେତନଟୀ ଥାନା ଇଲାକାରେ କର୍ମୀମାନଙ୍କୁ କାମ କରିବାକୁ ଶ୍ରୀଯୁକ୍ତ ରାୟ ନିଷେଧ କରିଥିଲେ । କର୍ମୀମାନେ କିନ୍ତୁ ତାଙ୍କର ଏହି ନିଷେଧାଜ୍ଞା ପାଳନ ନକରି ପୂର୍ଣ୍ଣପ୍ରାଣରେ ବୈଶିଙ୍ଗା ଥାନା ଇଲାକାରେ ସାହାଯ୍ୟ କରିଥିଲେ । ମୋରଡ଼ା ନିର୍ବାଚନ ମଣ୍ଡଳୀର ଭୋଟ ଗ୍ରହଣ କାର୍ଯ୍ୟ ଆଗ ସରିଲାରୁ ମୋସହିତ ସମସ୍ତ କର୍ମୀ ବାରିପଦା ନିର୍ବାଚନ ମଣ୍ଡଳୀରେ ପୂର୍ଣ୍ଣପ୍ରାଣରେ କାମ କରିଥିଲୁ । କର୍ମୀମାନେ ଶ୍ରୀଯୁକ୍ତ ରାୟଙ୍କର ଏପରି ନୀଚ ମନୋବୃତ୍ତି ବିଷୟ ସେତେବେଳେ ମୋଠାରେ ପ୍ରକାଶ ନକରି ପରବର୍ତ୍ତୀ ସମୟରେ ଏହା ମୋତେ ଜଣାଇଥିଲେ ।

ବ୍ୟକ୍ତି ଯେତେବେଳେ ନିଜର ଚରିତ୍ରବତ୍ତା, ସତ୍ ସାହସ ଓ ଅସାଧାରଣ ବ୍ୟକ୍ତିତ୍ୱ ବଳରେ କିଛି ଅସାଧ୍ୟ ସାଧନ କରିପାରେ ସେତେବେଳେ ସେ ହୁଏ ଅନନ୍ୟ । ନିଜର ଉଚ୍ଚଚିନ୍ତା, ସୁଚରିତ୍ର, ଗଭୀର ଆତ୍ମତ୍ୟାଗ ପ୍ରଭୃତି ସଦ୍‌ଗୁଣ ବଳରେ ବ୍ୟକ୍ତି ସମାଜରେ ପ୍ରତିଷ୍ଠା ଲାଭକରେ । ମୁଁ ଯେତେବେଳେ ସବୁ ବିଷୟରେ ପ୍ରତ୍ୟକ୍ଷ ଜ୍ଞାନ ଅର୍ଜନ କରି ବିଧାନ ସଭାରେ ମୋର କର୍ତ୍ତବ୍ୟ ଓ ଦାୟିତ୍ୱଗୁଡ଼ିକ ନିଷ୍ଠାର ସହିତ ଆଲୋଚନାଦ୍ୱାରା ସୁନାମ ଅର୍ଜନ କଲି , ସେତେବେଳେ ମୋର ପୁରୁଣା ସହକର୍ମୀ ଶ୍ରୀ ଗିରିଶଚନ୍ଦ୍ର ରାୟ ସେଥିରେ ଅସୂୟାପରବଶ ହୋଇପଡ଼ିଲେ । ତେଣୁଁ ବିଭିନ୍ନ ଆଳ ଦେଖାଇ ସୋସାଲିଷ୍ଟ ପାର୍ଟି ଚିହ୍ନରେ ବିଧାନସଭାକୁ ନିର୍ବାଚିତ ହୋଇଥିଲେ ହେଁ ସେହି ୧୯୫୨ମସିହାର ଶେଷ ଆଡ଼କୁ ଦଳ ପରିବର୍ତ୍ତନକରି କମ୍ୟୁନିଷ୍ଟ ପାର୍ଟିରେ ଯୋଗ ଦେଲେ ଓ ପରବର୍ତ୍ତୀ ସମୟରେ ମୋର ସବୁଠାରୁ ବଡ଼ ଶତ୍ରୁଭାବରେ ଛିଡ଼ା ହେଲେ । ତେଣୁଁ ମୋତେ ମୋ

ନିର୍ବାଚନ ମଣ୍ଡଳୀରେ ଲୋକଙ୍କ କାମ କରିବା ସଙ୍ଗେ ସଙ୍ଗେ ବାରିପଦା ନିର୍ବାଚନ ମଣ୍ଡଳୀର ଲୋକଙ୍କ ପାଇଁ ମଧ୍ୟ କାମ କରିବାକୁ ପଡ଼ିଲା । ଏଥିସହିତ ପାର୍ଟି ତରଫରୁ ସମଗ୍ର ଜିଲ୍ଲାରେ କଂଗ୍ରେସ ଓ କମ୍ୟୁନିଷ୍ଟ ପାର୍ଟିର ମୁକାବିଲା ମଧ୍ୟ କରିବାକୁ ପଡୁଥିଲା । ପାର୍ଟିର ଆର୍ଥିକ ସମ୍ବଳ ନ ଥିବାରୁ ସାଇକେଲରେ ବୁଲି ବହୁ ଶ୍ରମସ୍ୱୀକାର କରିବାକୁ ପଡ଼ିଲେ ମଧ୍ୟ ମୋର କର୍ମନିଷ୍ଠା ଓ ସାଧନାର ଫଳ ସ୍ୱରୂପ କ୍ରମେ ପ୍ରତିଷ୍ଠା ବଢ଼ିବାକୁ ଲାଗିଲା । ଏଣେ ଶ୍ରୀ ଗିରିଶଚନ୍ଦ୍ର ରାୟଙ୍କ ପ୍ରଭାବ କ୍ରମଶଃ ହ୍ରାସ ପାଇବାରେ ଲାଗିଲା । ମୁଁ ବିଧାନସଭାର ସଭ୍ୟ ହୋଇଥିଲେ ହେଁ ମୋର ନିଜପାଇଁ ଘରଟିଏ ବି କରିପାରି ନ ଥିଲି । ମୋର ସ୍ତ୍ରୀ ଓ ପିଲାମାନେ ଦହିକୋଟୀରେ ମୋ ଶ୍ୱଶୁରଙ୍କ ଘରେ ରହୁଥାଆନ୍ତି । ବିଧାନସଭାର ସଭ୍ୟ ହିସାବରେ ଯେଉଁ ସାମାନ୍ୟ ଅର୍ଥ ପାଉଥିଲି ତା ମଧ୍ୟ ଦଳୀୟ କାର୍ଯ୍ୟରେ ବିନିଯୋଗ ହୋଇଯାଉଥିଲା । ଏତିକିବେଳେ ମୋର ସ୍ତ୍ରୀ ଭୀଷଣ ଅସୁସ୍ଥ ହୋଇପଡ଼ିଲେ । ତାଙ୍କୁ ତିନି ଚାରିମାସ ଧରି ବାରିପଦା ହାସପାତାଳରେ ଚିକିତ୍ସା କଲେ ମଧ୍ୟ ବିଶେଷ କିଛି ଫଳ ମିଳିଲାନି ଏବଂ ପରିଶେଷରେ ୧୯୫୩ ମସିହାରେ କଟକ ବଡ଼ ଡ଼ାକ୍ତରଖାନାରେ ଏକ ଅସ୍ତ୍ରୋପଚାର କରିବାକୁ ପଡ଼ିଥିଲା ।

## ଏହ୍ଲାବାଦ ଅଧିବେଶନରେ ପ୍ରଜା ସୋସାଲିଷ୍ଟ ପାର୍ଟି ଗଠନ

୧୯୫୨ ମସିହାର ପ୍ରଥମ ସାଧାରଣ ନିର୍ବାଚନରେ ଜାତୀୟ ସ୍ତରରେ ସୋସାଲିଷ୍ଟ ପାର୍ଟି ଆଶାନୁରୂପ ଫଳ ପାଇବା ଦୂରେ ଥାଉ ଅତି ଶୋଚନୀୟ ପରାଜୟ ଲାଭକଲା । କେବଳ ସେତିକି ନୁହେଁ ଅନ୍ୟ ଗଣତାନ୍ତ୍ରିକ ଦଳଗୁଡ଼ିକ ମଧ୍ୟ ଅନୁରୂପ ପରାଜୟ ସ୍ୱୀକାର କଲେ । ତେଣୁଁ ଉକ୍ତ ବିରୋଧୀ ଦଳଗୁଡ଼ିକ ଐକ୍ୟବଦ୍ଧ ହେବାର ଆଲୋଚନା ଆରମ୍ଭ କଲେ । ଭାରତୀୟ ସୋସାଲିଷ୍ଟ ପାର୍ଟି, କୃଷକ ମଜଦୂର ପ୍ରଜାପାର୍ଟି ଓ ଫରୱାଡ଼ିବ୍ଲକ ଏହି ତିନି ଦଳର ପ୍ରଥମ ମିଶ୍ରଣ ହେଲା ଓ ଭାରତର ବିଖ୍ୟାତ ନେତା ଜେ.ବି. କୃପାଳିନୀ ତାର ସଭାପତି ହେଲେ । ଡ଼କ୍ଟର ରାମମନୋହର ଲୋହିୟା ଏହାର ସାଧାରଣ ସଂପାଦକ ହେଲେ । ଏ ସବୁର ଏକ ସଂପୂର୍ଣ୍ଣ ଓ ସ୍ଥାୟୀ ତଥା ଗଣତାନ୍ତ୍ରିକଭାବେ ସମ୍ମିଶ୍ରଣପାଇଁ ଏହ୍ଲାବାଦଠାରେ ପ୍ରଥମ ଅଧିବେଶନ ହେଲା ଏବଂ ସେଠାକୁ ମୁଁ ମୟୂରଭଞ୍ଜର ପ୍ରତିନିଧିତ୍ୱ କରିଥିଲି । ଏକ ସର୍ବଭାରତୀୟ ଅଧିବେଶନରେ ଯୋଗ ଦେବା ଏହା ହିଁ ଥିଲା ମୋର ପ୍ରଥମ । ଏହି ଅଧିବେଶନ ପରେ ଓଡ଼ିଶାର ଅନ୍ୟ ବନ୍ଧୁମାନଙ୍କ ସହ ବନାରସ ପ୍ରଭୃତି ଉତ୍ତର ଭାରତର କେତେକ ସ୍ଥାନ ପରିଦର୍ଶନ କରିବାର ସୁଯୋଗ ମିଳିଥିଲା । ଅବଶ୍ୟ ପୂର୍ବରୁ ଥରେ ପୂର୍ବତନ ଗଡ଼ଜାତଗୁଡ଼ିକରେ ହୋଇଥିବା ପ୍ରଜା ଆନ୍ଦୋଳନର ପ୍ରତିନିଧିମାନଙ୍କର ଏକ ଅଧିବେଶନରେ ଯୋଗଦେବାପାଇଁ ଗୁଆଲିଆର ଯାଇଥିଲି ଏବଂ ତାହାପରେ ଏହା ଥିଲା ଦ୍ୱିତୀୟ ପରିଭ୍ରମଣ । ଅଧିବେଶନରୁ ଫେରିବାର ଅଳ୍ପଦିନ ପରେ ଡ଼କ୍ଟର ଲୋହିୟା ମୟୂରଭଞ୍ଜ ପରିଦର୍ଶନରେ ଆସିଥିଲେ । ବାରିପଦାଠାରେ ତାଙ୍କୁ ସମ୍ବର୍ଦ୍ଧନା ଜଣାଇବାପାଇଁ ଏକ ବିରାଟ ସାଧାରଣ ସଭାର ଆୟୋଜନ କରାଯାଇଥିଲା । ମାତ୍ର ଦୁଃଖ ଓ ପରିତାପର ବିଷୟ ଯେ ଏକବର୍ଷ ନ ପୂରୁଣୁଁ ପ୍ରଜା ସୋସାଲିଷ୍ଟ ପାର୍ଟିର ବିଭାଜନ ହେଲା ।

ମୟୂରଭଞ୍ଜ ଜିଲ୍ଲାରେ ମୁଁ ଏବଂ ଶ୍ରୀ ଗିରିଶଚନ୍ଦ୍ର ରାୟ ଉଭୟେ ସୋସାଲିଷ୍ଟ ପାର୍ଟିକୁ

ସଂଗଠିତ କରିଥିଲୁଁ । ତେଣୁଁ ଶ୍ରୀ ରାୟ ପାର୍ଟି ଛାଡ଼ି କମ୍ୟୁନିଷ୍ଟ ଦଳକୁ ଚାଲିଗଲା ପରେ କିଛି କର୍ମୀ ମଧ୍ୟ ତାଙ୍କସହ ସେହି ଦଳକୁ ଚାଲିଗଲେ । ମାତ୍ର ବାରିପଦା ବିଧାନସଭା ଅଞ୍ଚଳରୁ ସେପରି କେହି ଦଳତ୍ୟାଗ କରି ନ ଥିଲେ । ସୁତରାଂ ମୋତେ ମୋର ନିଜ ମୋରଡ଼ା ନିର୍ବାଚନ ମଣ୍ଡଳୀ ସହ ବାରିପଦା ଦ୍ୱୈତ ନିର୍ବାଚନ ମଣ୍ଡଳୀର ବିରାଟ ଅଂଚଳକୁ ମଧ୍ୟ ଦେଖିବାକୁ ପଡ଼ିଲା ଓ ତାସହିତ ସମଗ୍ର ଜିଲ୍ଲାରେ ସାମ୍ୟବାଦୀ (ସୋସାଲିଷ୍ଟ) ସଂଗଠନକୁ ମଧ୍ୟ ବଞ୍ଚାଇ ରଖିବାକୁ ପଡ଼ିଲା । ଅଳ୍ପ କେତେ ଅଞ୍ଚଳକୁ ଛାଡ଼ିଦେଲେ ଜିଲ୍ଲାର ଚାରିଟିଯାକ ସବ୍‌ଡ଼ିଭିଜନକୁ ଏହି ସଂଗଠନ ବ୍ୟାପି ଯାଇଥିଲା । ଓଡ଼ିଶା ରାଜ୍ୟର ଅନ୍ୟ ଜିଲ୍ଲା ଅପେକ୍ଷା ମୟୂରଭଞ୍ଜରେ ଦଳର ସଂଗଠନ ବେଶ ଶକ୍ତିଶାଳୀ ଥିଲା । ସେଥିପାଇଁ ୧୯୫୨ ପ୍ରଥମ ସାଧାରଣ ନିର୍ବାଚନରେ ଓଡ଼ିଶା ବିଧାନ ସଭାକୁ ଏହି ଦଳରୁ ନିର୍ବାଚିତ ଦଶଜଣ ସଭ୍ୟଙ୍କ ମଧ୍ୟରେ କେବଳ ମୟୂରଭଞ୍ଜରୁ ଆମେ ଥିଲୁଁ ଚାରିଜଣ । ଦୁର୍ଭାଗ୍ୟବଶତଃ ବାରିପଦା ଦ୍ୱୈତ (double) ନିର୍ବାଚନ ମଣ୍ଡଳୀର ହରିଜନ ସଂରକ୍ଷିତ ସ୍ଥାନପାଇଁ ପ୍ରାର୍ଥୀପତ୍ର ସାମାନ୍ୟ ଭୁଲ୍ ପାଇଁ କାଟ ଖାଇ ଯାଇ ନ ଥିଲେ ଏ ଜିଲ୍ଲାର ଦଶଟି ସ୍ଥାନରୁ ଆମକୁ ପାଞ୍ଚଟି ସ୍ଥାନ ନିଶ୍ଚୟ ମିଳିଥାଆନ୍ତା । ସେତେବେଳେ ମୟୂରଭଞ୍ଜ ଜିଲ୍ଲାରେ ସଙ୍ଗଠିତ ଦଳଭାବରେ ଏହି ଦଳର ପ୍ରଭାବ ମଧ୍ୟ ଖୁବ୍ ବେଶି ଥିଲା । ଶ୍ରୀ ବିଶ୍ୱନାଥ ପଣ୍ଡିତ ଓ ଶ୍ରୀ ସୁରେନ୍ଦ୍ରନାଥ ଦ୍ୱିବେଦୀ ପ୍ରଭୃତି ପ୍ରାଦେଶିକ ନେତୃବର୍ଗ ଘନ ଘନ ଏହି ଜିଲ୍ଲାକୁ ଆସି ମୋତେ ସାହାଯ୍ୟ କରୁଥିବାରୁ ସଂଗଠନକୁ ଦୃଢ଼ ରଖିପାରିଥିଲି । ୧୯୪୯ରେ ସୋସାଲିଷ୍ଟ ପାର୍ଟିରେ ଯୋଗଦେବା ଫଳରେ ଏହି ସଂଗଠନ ସମଗ୍ର ଜିଲ୍ଲାରେ ପ୍ରସାର ଲାଭ କରିପାରିଥିଲା ।

ଏହାପରେ ୧୯୫୩ ମସିହା ବେଳକୁ ପ୍ରଜା ସୋସାଲିଷ୍ଟ ପାର୍ଟିରେ ଜୟପ୍ରକାଶ, ଅଶୋକ ମେହେଟ୍ଟା ଓ ଆଚାର୍ଯ୍ୟ କୃପାଳିନୀଙ୍କ ସହିତ ମତଭେଦ ଘଟି ଡ଼କ୍ଟର ରାମମନୋହର ଲୋହିଆଙ୍କ ନେତୃତ୍ୱରେ କିଛି ସଂଖ୍ୟକ ସଭ୍ୟ ଦଳରୁ ଅଲଗା ହୋଇଗଲେ । ସେହି ୧୯୫୩ ମସିହାରେ ନାଗପୁରଠାରେ ଦଳର ଏକ ଅଧିବେଶନ ହେଲା । ମୁଁ ଏହି ଅଧିବେଶନରେ ଯୋଗ ଦେଇଥିଲି । ଦଳର ଏହି ବିଭାଜନ କେବଳ ମୋତେ ନୁହେଁ ବହୁ ସମାଜବାଦପ୍ରେମୀ ଲୋକଙ୍କୁ ବିଶେଷ ଆଘାତ ଦେଲା । ସମଗ୍ର ଦେଶରେ ଜାତୀୟ କଂଗ୍ରେସ୍ ପଛକୁ ସୋସାଲିଷ୍ଟ ପାର୍ଟିର ଅତି ଗୁରୁତ୍ୱପୂର୍ଣ୍ଣ ସ୍ଥାନ ସମାଜବାଦ ଆନ୍ଦୋଳନ ଚିରଦିନ ପାଇଁ କ୍ଷୁଣ୍ଣ ହେଲା । ଆଜି ଏହି ଜନପ୍ରିୟ ସୋସାଲିଷ୍ଟ ପାର୍ଟି ତଥା ସମାଜବାଦ ଚିନ୍ତାଧାରା ସଂପୂର୍ଣ୍ଣ ବିଲୟ ଘଟିଛି କହିଲେ ଅତ୍ୟୁକ୍ତି ହେବ ନାହିଁ । ଡକ୍ଟର ଲୋହିଆ ଏଥିପାଇଁ ସଂପୂର୍ଣ୍ଣ ଦାୟୀ । ସେତେବେଳେ ପ୍ରଜା ସୋସାଲିଷ୍ଟ ପାର୍ଟିରେ ଆଚାର୍ଯ୍ୟ କୃପାଳିନୀ, ଆଚାର୍ଯ୍ୟ ନରେନ୍ଦ୍ର ଦେବ, ଶ୍ରୀଯୁକ୍ତ ଜୟପ୍ରକାଶ ନାରାୟଣ, ଡକ୍ଟର ରାମମନୋହର ଲୋହିଆ, ଅଶୋକ ମେହେଟ୍ଟା, କମଳାଦେବୀ ଚଟୋପାଧ୍ୟାୟ ଭଳି ଆନ୍ତର୍ଜାତିକ ଖ୍ୟାତି ସଂପନ୍ନ ବ୍ୟକ୍ତିଗଣ ନେତା ଥିଲେ ହେଁ ବିଧିର ଏଭଳି ବିଡ଼ମ୍ବନା ଯେ ଏହି ଦଳର ବିଭାଜନ ଘଟିଲା ।

ଏହିଠାରୁ ୧୯୫୬ ମସିହା ଶେଷ ପର୍ଯ୍ୟନ୍ତ ଅର୍ଥାତ୍ ୧୯୫୬ ମସିହାର ଦ୍ୱିତୀୟ ସାଧାରଣ ନିର୍ବାଚନ ପର୍ଯ୍ୟନ୍ତ ଶ୍ରୀ ଗିରିଶଚନ୍ଦ୍ର ରାୟ ଏ ଦଳକୁ ଭାଙ୍ଗି ଦେବାକୁ ପ୍ରଗାଢ଼ ଚେଷ୍ଟା କରୁଥାଆନ୍ତି । ଏଣେ ଦଳର ବିଭାଜନ ହେତୁ ଲୋକ ଚକ୍ଷୁରେ ଦଳର ସମ୍ମାନ କ୍ଷୁଣ୍ଣ ହୋଇଯାଇଥାଏ । ତେଣୁ

ମୟୂରଭଞ୍ଜରେ ଏ ଦଳକୁ ବଞ୍ଚାଇ ରଖିବାପାଇଁ ମୋତେ ବହୁ କଷ୍ଟ ସହିବାକୁ ପଡ଼ିଛି । ମୋ ନିର୍ବାଚନ ମଣ୍ଡଳୀ ତଥା ବାରିପଦା ଦ୍ୱୈତ ନିର୍ବାଚନ ମଣ୍ଡଳୀର ସମସ୍ତ କାର୍ଯ୍ୟ ଓ ଲୋକସଂପର୍କ ମୋତେ ହିଁ ରକ୍ଷା କରିବାକୁ ପଡ଼ିଥିଲା । ଅବଶ୍ୟ ଅନ୍ୟ ଦୁଇଜଣ ବିଧାୟକ ଯଥା ଶ୍ରୀ ସାକିଲା ସୋରେନ୍ ଓ ଶ୍ରୀ ହାରାଚାନ୍ଦ ହାଁସଦା ମୋତେ ଯତ୍‌କିଂଚିତ୍ ସାହାଯ୍ୟ କରିଥିଲେ । ପରେ କରଞ୍ଜିଆ ନିର୍ବାଚନ ମଣ୍ଡଳୀରୁ ଶ୍ରୀ ବିଶ୍ୱନାଥ ସାହୁ ଗଣତନ୍ତ୍ର ଦଳ ଛାଡି ଆମ ଦଳରେ ଯୋଗ ଦେବାରୁ ନିର୍ବାଚନ ଆରମ୍ଭରେ ଆମେ ଯେଉଁ ଚାରିଜଣ ସଭ୍ୟ ଥିଲୁ ଏବେ ବି ସେହି ଚାରିଜଣ ବିଧାୟକ ରହିଲୁ । ଏହି ତିନିଜଣଯାକ ବିଧାୟକଙ୍କ ସାହାଯ୍ୟ ଆମ ଦଳୀୟ ସଂଗଠନକୁ ବଞ୍ଚାଇ ରଖିବାରେ ମୋତେ ବହୁତ ପ୍ରେରଣା ଯୋଗାଇଥିଲା ।

## ୧୯୫୬ ମସିହାର ମେ' ମାସରେ ବାରିପଦାଠାରେ ଉତ୍କଳ ପ୍ରଜାସୋସାଲିଷ୍ଟ ପାର୍ଟିର ବାର୍ଷିକ ଅଧିବେଶନ

ଶ୍ରୀ ଗିରିଶଚନ୍ଦ୍ର ରାୟଙ୍କ ସମେତ କେତେକ ପୁରାତନ କର୍ମୀ ଏହି ଦଳ ପରିତ୍ୟାଗ କରି କମ୍ୟୁନିଷ୍ଟ ପାର୍ଟିରେ ଯୋଗଦାନପୂର୍ବକ ଏହି ଦଳକୁ ଭାଙ୍ଗି ଦେବାର ଅପଚେଷ୍ଟା କରୁଥିବାରୁ ଦଳକୁ ସଂଗଠିତ ରଖିବାରେ ମୋତେ ବହୁ କଷ୍ଟ ଓ ଶ୍ରମ ସ୍ୱୀକାର କରିବାକୁ ପଡ଼ିଥିଲା । ମୋର ପ୍ରଗାଢ଼ ଚେଷ୍ଟା ଓ ପରିଶ୍ରମ ଫଳରେ ୧୯୫୫ ବେଳକୁ ଏହି ଦଳକୁ ପୁନଶ୍ଚ ମୟୂରଭଞ୍ଜ ଜିଲ୍ଲାରେ ପୂର୍ବଭଳି ସୁଦୃଢ଼ କରିପାରିଥିଲି । ତେଣୁ ୧୯୫୬ ମସିହା ବେଳକୁ ବାରିପଦାଠାରେ ପ୍ରାଦେଶିକ ପାର୍ଟିର ଏକ ବାର୍ଷିକ ଅଧିବେଶନ କରାଇବାର ଗୁରୁ ଦାୟିତ୍ୱ ମୋତେ ବହନ କରିବାକୁ ପଡ଼ିଥିଲା ।

ଏହି ଅଧିବେଶନ ଦୁଇଦିନଧରି ଚାଲିଥିଲା ଓ ଏହା ପାର୍ଟିର ବିଭିନ୍ନ ସ୍ଥାନରେ ହୋଇଥିବା ଅନ୍ୟ କେତୋଟି ଅଧିବେଶନ ଅପେକ୍ଷା ଅଧିକତର ଶୃଙ୍ଖଳିତ ଓ ଆଡ଼ମ୍ବରପୂର୍ଣ୍ଣ ହୋଇଥିଲା । ଏଥିରେ ଓଡ଼ିଶାର ବିଭିନ୍ନ ପ୍ରାନ୍ତରୁ ୫୦୦ ପର୍ଯ୍ୟନ୍ତ ପ୍ରତିନିଧି ଯୋଗ ଦେଇଥିଲେ । ଶ୍ରୀଯୁକ୍ତ ସୁରେନ୍ଦ୍ରନାଥ ଦ୍ୱିବେଦୀ, ବିଶ୍ୱନାଥ ପଣ୍ଡିତ ଓ ବାଙ୍କବିହାରୀ ଦାସ ପ୍ରଭୃତି ପ୍ରାନ୍ତୀୟ ନେତୃବର୍ଗଙ୍କ ବ୍ୟତୀତ ଶ୍ରୀଯୁକ୍ତ ଗଙ୍ଗାଶରଣ ସିଂ ଓ ଶ୍ରୀମତୀ ସୁଚେତା କୃପାଳିନୀ ପ୍ରଭୃତି ଜାତୀୟ ସ୍ତରର ନେତାମାନେ ମଧ୍ୟ ବିଶେଷଭାବରେ ନିମନ୍ତ୍ରିତ ହୋଇ ଏହି ଅଧିବେଶନରେ ଯୋଗଦାନ କରିଥିବାରୁ ସମ୍ମିଳନୀର ଗୁରୁତ୍ୱ ବିଶେଷଭାବରେ ଉପଲବ୍ଧି କରାଯାଇଥିଲା । ଶ୍ରୀ ଗିରିଶଚନ୍ଦ୍ର ରାୟ ପ୍ରଭୃତି ଏ ଦଳ ପରିତ୍ୟାଗ କରି ଚାଲିଯିବା ପରେ ଦଳର ଯେତିକି ସାଂଗଠନିକ କ୍ଷତି ହୋଇଥିଲା, ଏବର ଏ ସମ୍ମିଳନୀ ଆୟୋଜିତ ହେବା ଫଳରେ ଆମ ଜିଲ୍ଲାରେ ସୋସାଲିଷ୍ଟ ପାର୍ଟିର ପ୍ରଭାବ ଯଥେଷ୍ଟ ବୃଦ୍ଧି ପାଇଲା । ମୟୂରଭଞ୍ଜ ଜିଲ୍ଲାକୁ କଂଗ୍ରେସ୍ ସମେତ ଅନ୍ୟ ରାଜନୈତିକ ଦଳଗୁଡ଼ିକର କୌଣସି ଜାତୀୟ ସ୍ତରର ନେତା ଆସୁନଥିଲେ । କିନ୍ତୁ ୧୯୪୯ରୁ ୧୯୫୨ ପ୍ରଥମ ସାଧାରଣ ନିର୍ବାଚନ ମଧ୍ୟରେ ଓ ତତ୍‌ପରେ ମଧ୍ୟ ବିଭିନ୍ନ ସମୟରେ ଏହି ଦଳର ସର୍ବଭାରତୀୟ ସ୍ତରର ବହୁ ନେତା ଏଠାକୁ ପରିଦର୍ଶନରେ ଆସୁଥିବାରୁ ଜିଲ୍ଲାର ଜନସାଧାରଣ ତଥା ଶିକ୍ଷିତ ବୁଦ୍ଧିଜୀବୀଙ୍କ ମନରେ ପ୍ରଜାସୋସାଲିଷ୍ଟ ପାର୍ଟି ପ୍ରତି ଯଥେଷ୍ଟ ସମ୍ମାନ ଥିଲା । ଓଡ଼ିଶାରେ ଦଳର ଅନ୍ୟ ଯେଉଁ ସବୁ

ଅଧିବେଶନ ହୋଇଥିଲା ତନ୍ମଧ୍ୟରୁ ବାରିପଦା ଅଧିବେଶନ ସଭ୍ୟମାନଙ୍କ ରହିବା, ଖାଇବା ଓ ଶାନ୍ତି ଶୃଙ୍ଖଳାଦିରେ ସର୍ବୋତ୍କୃଷ୍ଟ ବୋଲି ସମସ୍ତେ ସ୍ୱୀକାର କରିଥିଲେ । ଯଦିଓ ସର୍ବଭାରତୀୟ ସ୍ତରରେ ପ୍ରଜାସୋସାଲିଷ୍ଟ ଦଳ ବିଭାଜିତ ହୋଇଯାଇଥିଲା ତଥାପି ଓଡ଼ିଶାରେ ତାର କିଛି ପ୍ରଭାବ ପଡ଼ି ନଥିଲା ।

ଏହି ସମୟରେ ମୟୂରଭଞ୍ଜ ଜିଲ୍ଲାର ଦଶଜଣ ବିଧାୟକ ମଧ୍ୟରୁ ପ୍ରଜାସୋସାଲିଷ୍ଟ ପାର୍ଟିର ଚାରିଜଣ ଓ ଶ୍ରୀ ସୁନାରାମ ସୋରେନ୍‌ଙ୍କ ନେତୃତ୍ୱାଧୀନ ଆଦିବାସୀ ସଂଗଠନ କଂଗ୍ରେସ୍‌ରେ ଯୋଗଦେଇ କଂଗ୍ରେସ୍ ନାମରେ ପରିଚିତ ହେଉଥିବା ପାଞ୍ଚଜଣ ଓ ନିଜେ ଶ୍ରୀ ସୁନାରାମ ସୋରେନ୍ ଜଣେ କ୍ୟାବିନେଟ୍ ମନ୍ତ୍ରୀ ଥିଲେ । କିନ୍ତୁ ପ୍ରକୃତ ପକ୍ଷରେ ସମଗ୍ର ଜିଲ୍ଲାରେ ପ୍ରଜାସୋସାଲିଷ୍ଟ ପାର୍ଟିର ବିଶେଷ ପ୍ରଭାବ ରହିଥିଲା । ମୟୂରଭଞ୍ଜ ଜିଲ୍ଲା କର୍ତ୍ତୃପକ୍ଷ ମୋର ମତାମତ ପ୍ରତି ଅଧିକ ଗୁରୁତ୍ୱ ଦେଉଥିଲେ । ମୋତେ ସମଗ୍ର ଜିଲ୍ଲା ଭିତରେ ତଥା ଓଡ଼ିଶା ବିଧାସଭାରେ ମୟୂରଭଞ୍ଜର ପ୍ରକୃତ ପ୍ରତିନିଧିଭାବରେ ଗ୍ରହଣ କରୁଥିଲେ । ସେତେବେଳେ ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ନବକୃଷ୍ଣ ଚୌଧୁରୀଙ୍କ ଶାସନକାଳ । ବର୍ତ୍ତମାନ ଯେପରି ବିରୁଦ୍ଧ ଦଳର ମତାମତକୁ ନଗଣ୍ୟ ଓ ହେୟରୂପେ ଗ୍ରହଣ କରାଯାଉଛି, ସେତେବେଳେ ସେପରି ହେଉନଥିଲା ବରଂ ବିରୁଦ୍ଧ ଦଳର ମତାମତକୁ ଶାସନକଳ ଅଧିକ ଗୁରୁତ୍ୱ ଦେଉଥିଲେ । ଏପରିକି କେତେଥର ବିଧାନସଭାରେ ସରକାରୀ ଦଳର ଦୃଢ଼ ଓ କଟୁ ସମାଲୋଚନା ପରେ ମଧ୍ୟ ମୁଁ ଓ ଆମ ଦଳର ଶ୍ରୀ ବାଙ୍କବିହାରୀ ଦାସ (ଯେ କି ବିଧାନ ସଭାର ସଭ୍ୟ ନଥିଲେ) ବିଧାନ ସଭାରୁ ଫେରୁଥିଲାବେଳେ ଶ୍ରୀଯୁକ୍ତ ଚୌଧୁରୀ ମୁଖ୍ୟମନ୍ତ୍ରୀ ତାଙ୍କ ଗାଡ଼ିକୁ ନେଇ ତାଙ୍କ ଘରପର୍ଯ୍ୟନ୍ତ ନେଇଯାଉଥିଲେ । ଗଣତନ୍ତ୍ର ଶାସନରେ ଯାହାକୁ ମୂଲ୍ୟବୋଧ ରାଜନୀତି ବୋଲି କୁହାଯାଏ ତାହା ପ୍ରକୃତରେ ସେତେବେଳେ ଉପଲବ୍ଧି କରାଯାଉଥିଲା ଓ କାର୍ଯ୍ୟ କ୍ଷେତ୍ରରେ ମଧ୍ୟ ତହିଁର ପ୍ରକୃତ ପ୍ରତିଫଳନ ହେଉଥିବାର ଦେଖାଯାଉଥିଲା । ମୁଖ୍ୟମନ୍ତ୍ରୀ ମୋତେ ଓ ଆମ ଦଳର ଶ୍ରୀଯୁକ୍ତ ସାକିଲା ସୋରେନ୍‌ଙ୍କୁ ଅତ୍ୟନ୍ତ ସ୍ନେହ କରୁଥିଲେ । ସେହି ସମୟରେ ଶ୍ରୀ ସୋରେନ୍ ହଠାତ୍ ରୋଗଗ୍ରସ୍ତ ହୋଇ ପଡିଲାରୁ ତାଙ୍କୁ ସଙ୍ଗେ ସଙ୍ଗେ ସରକାରୀ ସାହାଯ୍ୟରେ ଚିକିତ୍ସାପାଇଁ ମାନ୍ଦ୍ରାଜର ଏକ ବଡ଼ ଚିକିତ୍ସାଳୟ ଭେଲୋରକୁ ପଠାଇଦେଇଥିଲେ ।

## ନବବାବୁଙ୍କ ପ୍ରଗତିଶୀଳ ଚିନ୍ତାଧାରା

ଶ୍ରୀଯୁକ୍ତ ନବକୃଷ୍ଣ ଚୌଧୁରୀ ସମାଜବାଦୀ ଚିନ୍ତାଧାରାର ଜଣେ ବଡ଼ ପୃଷ୍ଟପୋଷକ ଥିଲେ । ତାଙ୍କ ସମୟରେ ଭୂସଂସ୍କାର ବ୍ୟବସ୍ଥା, କ୍ଷମତା ବିକେନ୍ଦ୍ରୀକରଣ(ଅଞ୍ଚଳ ଶାସନ ଆଇନ) ପ୍ରଚଳିତ ଗ୍ରାମ ପଞ୍ଚାୟତ ସଂଶୋଧନ ଆଇନ୍, ମଧ୍ୟ ସ୍ୱତ୍ୱାଧିକାରୀ ଜମିଦାରୀ ବ୍ୟବସ୍ଥାର ସଂପୂର୍ଣ୍ଣ ବିଲୋପ ସାଧନ, ଚାଷ ଜମିର କ୍ଷୁଦ୍ର କ୍ଷୁଦ୍ର ବିଭକ୍ତୀକରଣର ପ୍ରତିରୋଧ (Fragmentation of Lands) ତଥା ଚାଷଜମିର ପ୍ରକୃତ ବିନିଯୋଗ ପ୍ରଭୃତି ଅତି ପ୍ରଗତିଶୀଳ ଆଇନ୍‌ର ଚିଠା ପ୍ରଣୟନ କରାଯାଇଥିଲା । ଆଜିର ପଞ୍ଚାୟତ ଓ ପଞ୍ଚାୟତ ସମିତି ଆଇନ୍ ଅପେକ୍ଷା ନବବାବୁଙ୍କ ସମୟରେ ଅଞ୍ଚଳ ଶାସନ ଆଇନ୍ ଚିଠା ଅତ୍ୟନ୍ତ ଉନ୍ନତ ଓ ପ୍ରଗତିଶୀଳ ଥିଲା । ଲୋକଙ୍କ ହାତରେ ଗ୍ରାମାଞ୍ଚଳର

ପ୍ରକୃତ କ୍ଷମତା ଅର୍ପଣ କରାଯାଇ ଯଥାର୍ଥରେ କ୍ଷମତାର ବିକେନ୍ଦ୍ରୀକରଣ ବ୍ୟବସ୍ଥାର ସଫଳ କରିବାରେ ସେଥିରେ ପରିକଳ୍ପନା କରାଯାଇଥିଲା ।ଜଣେ ମୁଖ୍ୟମନ୍ତ୍ରୀ ହେବା ଅପେକ୍ଷା ଅଞ୍ଚଳ ଶାସନର ସଭାପତି ହେବାକୁ ଅଧିକ ଆଗ୍ରହୀ ହେବାପାଇଁ ଇଚ୍ଛା କରିବ ବୋଲି ନିଜେ ନବବାବୁ ମତପ୍ରକାଶ କରୁଥିଲେ । ଅବଶ୍ୟ ପରବର୍ତ୍ତୀ ସରକାର ତାହା କାର୍ଯ୍ୟକାରୀ କଲେ ନାହିଁ । ଏବେ ମଧ୍ୟ ତହିଁର ଚିଠା ଆଇନ୍ ସରକାରଙ୍କ ଶୀତଳ ଭଣ୍ଡାରରେ ସାଇତା ହୋଇ ରହିଛି ।

ଭବିଷ୍ୟତରେ ଭୂସଂସ୍କାର ଆଇନ୍ କାର୍ଯ୍ୟକାରୀ ହେବାପର୍ଯ୍ୟନ୍ତ ଭାଗଚାଷୀଙ୍କ ଦଖଲରେ ଥିବା ଜମିଗୁଡ଼ିକରୁ ଜମିମାଲିକମାନେ ଯେପରି ଭାଗଚାଷୀଙ୍କୁ ବେଦଖଲ କରିନପାରିବେ ସେଥିପାଇଁ ହୋଇଥିବା ଅସ୍ଥାୟୀ ଆଇନର ସମୟସୀମା ଥରେ ବୃଦ୍ଧି କରାଯାଇଥିଲା । ଏହାପରେ ଏହି ଆଇନ୍‌ର ଆୟୁ ବୃଦ୍ଧି କଲାବେଳକୁ ନିର୍ଦ୍ଧାରିତ ସମୟର ମାତ୍ର ଚାରିଦିନ ଭୁଲବଶତଃ ଅତୀତ ହୋଇଯାଇଥିବାରୁ ବିରୁଦ୍ଧ ଦଳରୁ ସ୍ୱର୍ଗୀୟ ପଣ୍ଡିତ ନୀଳକଣ୍ଠ ଦାସ ସରକାରଙ୍କ ଦୃଷ୍ଟି ଆକର୍ଷଣ କରି ପଚାରିଲେ, ''ଯଦି ଏହି ସମୟ ଭିତରେ ସୁରକ୍ଷା କରିବାର ଆଇନ୍ ନ ଥିବାରୁ ଜମି ମାଲିକମାନେ ଭାଗଚାଷୀଙ୍କୁ ବେଦଖଲ କରନ୍ତି ତେବେ କ'ଣ ହେବ ?'' ସଙ୍ଗେ ସଙ୍ଗେ ମୁଖ୍ୟମନ୍ତ୍ରୀ ହୋଇ ମଧ୍ୟ କହିଲେ, ଯଦି ଭାଗଚାଷୀମାନେ ମାଲିକମାନଙ୍କ ଦ୍ୱାରା ଜମିରୁ ବେଦଖଲ ହେବେ ତେବେ ସେମାନେ ଜମିମାଲିକଙ୍କ ମୁଣ୍ଡ ଫଟାଇଦେବେ । ଏଇଥିରୁ ହିଁ ଶ୍ରୀଯୁକ୍ତ ନବକୃଷ୍ଣ ଚୌଧୁରୀଙ୍କ ଗରିବ ଭାଗଚାଷୀଙ୍କ ପ୍ରତି କେତେ ଦରଦ ଓ ସହାନୁଭୂତି ସହଜରେ ଅନୁମେୟ ।

## ଭାଗଚାଷୀଙ୍କ ପାଇଁ ହଳ ବି ଧରିଲି

ଠିକ୍ ଏହି ସମୟରେ ବୈଶିଙ୍ଗା ଥାନା ଅନ୍ତର୍ଗତ ଛୁରୁଣୀ ଗ୍ରାମରେ ବୈଶିଙ୍ଗାର ଜନୈକ ଧନୀ ଜମିମାଲିକ ଶ୍ରୀ ଦାମୋଦର ପଣ୍ଡା ଭାଗଚାଷୀଙ୍କୁ ଉଚ୍ଛେଦ କରି ଜମି ଦଖଲ କରିବାକୁ ଆସିଲେ । ମୁଁ ଭାଗଚାଷୀମାନଙ୍କୁ ସାହାଯ୍ୟ କରିବାକୁ ଯାଇ ବିଭିନ୍ନ ଗ୍ରାମର ଚାଷୀଙ୍କୁ ହଳ ଦେଇ ଆସିବାକୁ ନିବେଦନ କଲି ଓ ବହୁ ଲୋକ ହଳସହ ଆସି ଜମି ଉପରେ ପହଞ୍ଚିଲେ । ମୁଁ ବ୍ରାହ୍ମଣ ହୋଇ ମଧ୍ୟ ଚାଷୀମାନଙ୍କ ସହ ଜମିରେ ହଳ କରିବାକୁ ଆରମ୍ଭ କରିଦେଲି । ଏହା ଶୁଣି ଜମି ମାଲିକ ଓ ପୋଲିସ୍ ଘଟଣା ସ୍ଥଳରେ ଆସି ପହଞ୍ଚିଲେ । ସମସ୍ତଙ୍କ ଉପସ୍ଥିତିରେ ସବୁ କଥା ପଡ଼ିଲା । ଭାଗଚାଷୀମାନେ ବହୁ ଦିନରୁ ଉକ୍ତ ଜମି ଚାଷ କରିଆସୁଛନ୍ତି ଓ ତାଙ୍କର ଉଚିତ ଦେୟ ମଧ୍ୟ ଜମି ମାଲିକଙ୍କୁ ଯଥାରୀତି ଦେଇଆସୁଥିବାର ପ୍ରମାଣ ପୋଲିସ୍‌କୁ ମିଳିଲା । ଏହାପରେ ଚାଷୀମାନେ ଜମି ଚଷିବାକୁ ଆରମ୍ଭ କଲାରୁ ଜମିମାଲିକ ସମ୍ଭାଳିନପାରି ତାଙ୍କୁ ବାଧା ଦେବାକୁ ଗଲାରୁ ପୋଲିସ୍ ତାଙ୍କୁ ଯିବାକୁ ଦେଲା ନାହିଁ । ପରେ ଏ ସଂପର୍କରେ ମୋକଦ୍ଦମା ହେଲା । ଜମିମାଲିକ ବେଆଇନ୍‌ଭାବରେ ଚାଷୀଙ୍କୁ ଉଚ୍ଛେଦ କରିବାକୁ ଯାଇଥିବାରୁ ଉଚିତ ଦଣ୍ଡରେ ଦଣ୍ଡିତ ହେଲେ ।

ସେହିପରି ଆଉ ଦୁଇଟି ଘଟଣାରେ ମଧ୍ୟ ମୁଁ ଭାଗଚାଷୀଙ୍କ ସହ ଜମିରେ ହଳ କରିଛି । ଗୋଟିଏ ସ୍ଥଳରେ ମୁଁ ଭାଗଚାଷୀଙ୍କ ସହ ଜମିରେ ହଳ କରୁଥିବା ସମୟରେ ଜମିମାଲିକ ନିଜ କୋଠାଉପରେ ଛିଡାହୋଇ ମୋତେ ଗୁଳି କରିବାକୁ ଭୟ ଦେଖାଇଥିଲେ । ମାତ୍ର ମୁଖ୍ୟମନ୍ତ୍ରୀ ଓ

ସରକାରଙ୍କର ଭାଗଚାଷୀମାନଙ୍କ ପ୍ରତି ଦୃଢ଼ ସମର୍ଥନ ଥିବାରୁ ଭାଗଚାଷୀଙ୍କୁ ଉଚ୍ଛେଦ କରାଯାଇପାରୁନଥିଲା ।

## ୧୯୫୨ରୁ ୧୯୫୬ ମଧ୍ୟରେ ଘଟିଥିବା ଓଡ଼ିଶାର କେତେକ ଗୁରୁତ୍ୱପୂର୍ଣ୍ଣ ଘଟଣା

ଏହି ସମୟ ମଧ୍ୟରେ ମୁଁ ବିଧାନସଭାରେ ପ୍ରଜା ସୋସାଲିଷ୍ଟ ପାର୍ଟି ତରଫରୁ ସଭ୍ୟ ଥିଲାବେଳେ ଭାରତରେ ଭାଷାଭିତ୍ତିକ ରାଜ୍ୟ ପୁନର୍ଗଠନ ଏକ ପ୍ରଧାନ ଘଟଣା । ଦେଶରେ ଜାତୀୟ ମୁକ୍ତି ଆନ୍ଦୋଳନ ଚାଲିଥିଲାବେଳେ ଭାଷାଭିତ୍ତିରେ ରାଜ୍ୟ ବା ପ୍ରଦେଶଗୁଡ଼ିକର ପୁନର୍ଗଠନ କରିବାର ଏକ ବିଶେଷ କାର୍ଯ୍ୟକ୍ରମ ଗ୍ରହଣ କରାଯାଇଥିଲା । ସ୍ୱାଧୀନତା ପ୍ରାପ୍ତିପରେ ସେହି ଲକ୍ଷ୍ୟ ସାଧନପାଇଁ କେତେକ ରାଜ୍ୟର ପୁନର୍ଗଠନ କରାଗଲା ଓ କେତେକ ନୂତନ ରାଜ୍ୟ ମଧ୍ୟ ପ୍ରତିଷ୍ଠିତ ହେଲା । ଏହାସତ୍ତ୍ୱେ କେତେକ ରାଜ୍ୟରେ ଗୁରୁତର ଜନ ଅସନ୍ତୋଷ ଘଟି ବହୁ ଆନ୍ଦୋଳନ ଦେଖାଦେଲା ଓ ଆନ୍ଧ୍ର ପ୍ରଭୃତି କେତେକ ସ୍ଥାନରେ ଆତ୍ମାହୂତି ଭଳି ଅତି ଚରମ ପଦକ୍ଷେପ ଗ୍ରହଣ କରାଗଲା । ତେଣୁ କେନ୍ଦ୍ର ସରକାର ଏହାର ଏକ ସ୍ଥାୟୀ ସମାଧାନ ପାଇଁ ଆଇନସମ୍ମତ ଭାବେ ଏକ ସୀମାନିର୍ଦ୍ଧାରଣ କମିଶନ୍ ଗଠନ କଲେ । ସେତେବେଳକୁ ଷଢ଼େଇକଳା ଓ ଖରସୁଆଁ ସମେତ ଓଡ଼ିଆ ଭାଷାଭାଷୀ ପୂର୍ବଗଡ଼ଜାତଗୁଡିକର ଓଡ଼ିଶାସହିତ ମିଶ୍ରଣ ହୋଇଯାଇଥିଲେ ମଧ୍ୟ ଆନ୍ଧ୍ର, ମଧ୍ୟପ୍ରଦେଶ, ବିହାର ଓ ପଶ୍ଚିମବଙ୍ଗର ସୀମାନ୍ତ ଅଞ୍ଚଳରେ ଥିବା ବହୁ ଓଡ଼ିଆ ଭାଷାଭାଷୀ ଅଞ୍ଚଳ ଓଡ଼ିଶାରେ ମିଶି ପାରିନଥିଲା ଓ ସେଥିପାଇଁ ବହୁ ଜନ ଅସନ୍ତୋଷ ସୃଷ୍ଟି ହୋଇଥିଲା । ବିଶେଷକରି ଥରେ ମିଶ୍ରଣ ଘଟିଥିବା ଷଢ଼େଇକଳା ଓ ଖରସୁଆଁ ଅଞ୍ଚଳକୁ ପୁଣି ଓଡ଼ିଶାରୁ କାଢ଼ି ନେଇଥିବାରୁ ଗୁରୁତର ଅସନ୍ତୋଷ ସୃଷ୍ଟି ହୋଇଥିଲା ।

ସେତେବେଳେ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଥାଆନ୍ତି ଗାନ୍ଧୀବାଦୀ ନେତା ଶ୍ରୀଯୁକ୍ତ ନବକୃଷ୍ଣ ଚୌଧୁରୀ । ରାଜ୍ୟ ସରକାରଙ୍କ ତରଫରୁ ଏ ସମସ୍ତ ଓଡ଼ିଆଭାଷୀ ଅଞ୍ଚଳର ମିଶ୍ରଣପାଇଁ କମିଶନ୍‌ଙ୍କୁ ଦାବିପତ୍ର ଦେବା ସଙ୍ଗେ ସଙ୍ଗେ ସଂପୃକ୍ତ ଅନ୍ୟ ୪ଟି ରଜ୍ୟର ସୀମାନ୍ତରେ ବସବାସ କରୁଥିବା ଓଡ଼ିଆ ଲୋକ ମଧ୍ୟ ନିଜନିଜର ଲଖିତ ଦାବିମାନ ଉପସ୍ଥାପନ କରିଥିଲେ । କିନ୍ତୁ ଶୁଣାଣୀବେଳେ ସମସ୍ତ ଦାବିର ପ୍ରମାଣପତ୍ର ଦାଖଲ କରି ସାକ୍ଷ୍ୟତା ପ୍ରଦାନ କରିଥିଲେ ହେଁ ଓଡ଼ିଶାର ଦାବିଗୁଡ଼ିକର କୌଣସି ସୁଫଳ ମିଳିପାରିଲା ନାହିଁ । ଫଳରେ ସମଗ୍ର ରାଜ୍ୟରେ ତୁମୁଳ ଆନ୍ଦୋଳନ ଦେଖାଦେଲା । କଟକ ଓ ପୁରୀଠାରେ ହିଂସାକାଣ୍ଡ ଘଟି ଗୁଳିଚାଳନା ହେବାଫଳରେ କେତେକ ପ୍ରାଣହାନୀ ମଧ୍ୟ ଘଟିଲା । ଏପରି ପରିସ୍ଥିତି ଦେଖା ଦେଲା ଯେଉଁଥିରେ କି ଶ୍ରୀଯୁକ୍ତ ଚୌଧୁରୀ ମୁଖ୍ୟମନ୍ତ୍ରୀ ପଦରୁ ଇସ୍ତଫା ଦେବାର ଅବସ୍ଥା ଉପୁଜିଲା । ଏତିକିବେଳର ବିଧାନସଭା ଆଲୋଚନା ଏକ ଐତିହାସିକ ଘଟଣା । ବିଧାନସଭାରେ ଏ ସମସ୍ତ ଘଟଣାର ଏଭଳି ତୀବ୍ର ଆଲୋଚନା ହେଲା ଯେ ସରକାରୀ ଦଳ ବିବ୍ରତ ହୋଇପଡ଼ିଲେ । ସେତେବେଳେ ବିରୁଦ୍ଧ ଦଳରେ ଥାଆନ୍ତି ସ୍ୱନାମଧନ୍ୟ ପଣ୍ଡିତ ନୀଳକଣ୍ଠ ଦାସ, ଗୋଦାବରୀଶ ମିଶ୍ର ଓ ଶ୍ରଦ୍ଧାକର ସୂପକାର ପ୍ରଭୃତି ସଭ୍ୟମାନେ । ଶ୍ରୀ ରାଧାନାଥ ରଥ ସରକାରୀ

ଦଳର ମନ୍ତ୍ରୀ ଥିଲେ । ଏହି ଆଲୋଚନାର ଉତ୍ତର ମୁଖ୍ୟମନ୍ତ୍ରୀ ଦେବାକୁ ଯିବାବେଳକୁ ବିଧାନସଭା ସରଗରମ ହୋଇଉଠିଥିଲା । ମାତ୍ର ଶ୍ରୀଯୁକ୍ତ ଚୌଧୁରୀ ଆଦୌ ବିଚଳିତ ବା ଉତ୍ତେଜିତ ନ ହୋଇ ଧୀର ଶାନ୍ତଭାବେ ପ୍ରାୟ ଦେଢ଼ଘଣ୍ଟାକାଳ ଏକ ସାରଗର୍ଭକ ଭାଷଣ ଦେବା ଫଳରେ ସମସ୍ତ ଗୃହ . ପରିବେଶ ସଂପୂର୍ଣ୍ଣଭାବରେ ବଦଳିଗଲା । ଶ୍ରୀଯୁକ୍ତ ଚୌଧୁରୀଙ୍କର ଏପରି ତାତ୍ପର୍ଯ୍ୟପୂର୍ଣ୍ଣ ଭାଷଣ ମୁଁ ଏହା ପୂର୍ବରୁ କେବେ ଶୁଣି ନଥିଲି ।

ଏହାପରେ ସଂବିଧାନରେ ଏକ ସଂଶୋଧନ ହେଲା । ତଦନୁସାରେ ବିଭିନ୍ନ ରାଜ୍ୟର ସୀମାନ୍ତ ଅଞ୍ଚଳରେ ପଡ଼ୋଶୀ ରାଜ୍ୟର ଅନ୍ୟ ଭାଷାଭାଷୀ ଯେଉଁ ଲୋକମାନେ ରହିଯିବେ ସେମାନଙ୍କୁ ସେହି ସେହି ରାଜ୍ୟର ସଂଖ୍ୟାନ୍ୟୂନ ଭାଷାଭାଷୀ ଭାବେ ଗ୍ରହଣ କରାଯିବ ଓ ସେମାନଙ୍କ ମାତୃଭାଷା ତଥା ସଂସ୍କୃତିର ସୁରକ୍ଷାପାଇଁ ସଂପୃକ୍ତ ରାଜ୍ୟ ତଥା କେନ୍ଦ୍ର ସରକାର ଦାୟୀ ରହିବେ । ଏହି ସାଂବିଧାନିକ ଅଧିକାରପାଇଁ ଆଜି ଆନ୍ଧ୍ର ଓ ବିହାରରେ ବସବାସ କରୁଥିବା ଓଡ଼ିଆମାନଙ୍କ ପାଇଁ ଓଡ଼ିଆ ସ୍କୁଲ ବସାଯାଇଛି ଓ ଶିକ୍ଷକ ନିଯୁକ୍ତି କରାଯାଉଛି । ଅବଶ୍ୟ ପଶ୍ଚିମବଙ୍ଗ ଓ ମଧ୍ୟପ୍ରଦେଶରେ ରହିଥିବା ଓଡ଼ିଆମାନଙ୍କ ମଧ୍ୟରେ ନିଜର ସଂସ୍କୃତି ଓ ଭାଷାର ସୁରକ୍ଷାପାଇଁ ସଚେତନତା ନଥିବାରୁ ସଂପୃକ୍ତ ରାଜ୍ୟ ସରକାରମାନେ ଏ ଦିଗରେ ଗୁରୁତର ଅବହେଳା କରିଆସୁଅଛନ୍ତି । ଓଡ଼ିଶାରେ ମଧ୍ୟ ଯେଉଁ ତେଲଗୁ ଭାଷାଭାଷୀ ଲୋକେ ଗଞ୍ଜାମ ଓ କୋରାପୁଟ ଜିଲ୍ଲାରେ ବସବାସ କରୁଛନ୍ତି ସେମାନଙ୍କୁ ତଦନୁରୂପ ସୁବିଧା ଓ ସୁଯୋଗ ଦିଆଯିବାର ବ୍ୟବସ୍ଥା ରହିଅଛି । ଏହି ସାଂବିଧାନିକ ବ୍ୟବସ୍ଥା ଯଦି ପ୍ରକୃତରେ କାର୍ଯ୍ୟକାରୀ ହୁଅନ୍ତା ତେବେ ଅକାରଣରେ କାହାରି ଅସନ୍ତୋଷ ରୁହନ୍ତା ନାହିଁ ମାତ୍ର ଏହା ପ୍ରକୃତରେ କାର୍ଯ୍ୟକାରୀ ହେଉ ନାହିଁ ।

## ଏହି ସମୟର ଅନ୍ୟ ଦୁଇଟି ଉଲ୍ଲେଖନୀୟ କାର୍ଯ୍ୟ

**ହୀରାକୁଦବନ୍ଧ ଯୋଜନା :** ଏହି ଯୋଜନା ପ୍ରଥମେ ୧୯୫୦ ବେଳକୁ ବହୁ ବାଧାବିଘ୍ନ ମଧ୍ୟଦେଇ ଆରମ୍ଭ ହୋଇଥିଲା । ପ୍ରଥମ ପଞ୍ଚବାର୍ଷିକ ଯୋଜନା କାଳରେ କେନ୍ଦ୍ର ସରକାର ଏଥିପାଇଁ ପ୍ରାୟ ଏକଶହ କୋଟି ଟଙ୍କାର ବ୍ୟବସ୍ଥା କଲାଫଳରେ ଯୋଜନାର ପ୍ରକୃତ ନିର୍ମାଣ କାର୍ଯ୍ୟ ୧୯୫୨ରୁ ୧୯୫୬ମଧ୍ୟରେ ହୋଇପାରିଥିଲା । ଏହି ସମୟରେ ସରକାରୀ ଓ ବିରୁଦ୍ଧ ଦଳରୁ ମିଶି ଆମେ ପ୍ରାୟ ୩୦ଜଣ ସଭ୍ୟ ହୀରାକୁଦ ଯାଇ ବନ୍ଧ ଓ କେନାଲ ନିର୍ମାଣର ଅନୁଧ୍ୟାନ କରିଥିଲୁ । ଏଭଳି ଏକ ବୃହତ୍ ଜଳସେଚନ ଯୋଜନା ପ୍ରଥମକରି ଓଡ଼ିଶାରେ ଆରମ୍ଭ ହେଲାରୁ ରାଜ୍ୟର ଯନ୍ତ୍ରୀମାନଙ୍କ (Engineer) ପକ୍ଷରେ ଜ୍ଞାନ ଅର୍ଜନ କରିବାରେ ସହାୟକ ହୋଇପାରିଥିଲା । ସେଠାରୁ ବିଦ୍ୟୁତ୍ ଉତ୍ପାଦିତ ହେବାରୁ ରାଜ୍ୟରେ ବହୁ ଶିଳ୍ପ ମଧ୍ୟ ଗଢ଼ିଉଠିଲା । ଭାରତର ପ୍ରଥମ ପଞ୍ଚବାର୍ଷିକ ଯୋଜନା ବେଳକୁ ଓଡ଼ିଶାରେ କେବଳ କଟକ ଓ ଗଞ୍ଜାମର ଅଳ୍ପ କେତେକ ସ୍ଥାନରେ ମୁଷ୍ଟିମେୟ କେତୋଟି ମାତ୍ର ଜଳସେଚନ ଯୋଜନା ଥିବାର ଦେଖାଯାଏ । ବରଂ ସେ ସମୟର ଜଳସେଚନ ତାଲିକାରେ ମୟୂରଭଞ୍ଜର ବାଲିଡ଼ିହା ଓ ହଳଦିଆ ଜଳସେଚନ ଯୋଜନା ରାଜ୍ୟର ଜଳସେଚନ କ୍ଷେତ୍ରରେ ମୁଖ୍ୟ ସ୍ଥାନ ଗ୍ରହଣ କରିଥିଲା କହିଲେ ଅତ୍ୟୁକ୍ତି ହେବ ନାହିଁ । ମାତ୍ର ତତ୍‌ପର ସମୟରେ ମୟୂରଭଞ୍ଜ ଜିଲ୍ଲାର

ଜଳସେଚନ ବ୍ୟବସ୍ଥା ସର୍ବନିମ୍ନ ସ୍ତରକୁ ଚାଲିଆସିଲା ।

**ରାଉରକେଲା କାରଖାନା :** ରାଉରକେଲାଠାରେ ଇସ୍ପାତ କାରଖାନା ପ୍ରତିଷ୍ଠା ଏହି ପ୍ରଥମ ପଞ୍ଚବାର୍ଷିକ ଯୋଜନା କାଳର ଅନ୍ୟ ଏକ ଉଲ୍ଲେଖନୀୟ କାର୍ଯ୍ୟ । ଭାରତରେ ଗଚ୍ଛିତ ଥିବା ପ୍ରଭୂତ ଲୌହ ସଂପଦର ବିନିଯୋଗ ପାଇଁ ଦୁର୍ଗାପୁର, ଭିଲାଇ ଓ ରାଉରକେଲାଠାରେ ଯେଉଁ ତିନିଗୋଟି ଇସ୍ପାତ କାରଖାନା ପ୍ରତିଷ୍ଠା କରାଯିବାର ସ୍ଥିର କରାଗଲା ତନ୍ମଧ୍ୟରୁ ସୁନ୍ଦରଗଡ଼ ଜିଲ୍ଲାର ବିଖ୍ୟାତ ରାଉରକେଲା ଇସ୍ପାତ କାରଖାନା ଅନ୍ୟତମ ।

ଏହି କାରଖାନାର ମୂଳ ପରିକଳ୍ପନା ପଶ୍ଚିମ ଜର୍ମାନୀର କାରୀଗରମାନଙ୍କଦ୍ୱାରା ହୋଇଥିଲା ଓ ନିର୍ମାଣ କାର୍ଯ୍ୟରେ ମଧ୍ୟ ସେମାନେ ବହୁ ସହାୟତା କରିଥିଲେ । ଏହା ଆଜି ଏକ ବୃହତ୍ ଶିଳ୍ପ କାରଖାନାରେ ପରିଣତ ହୋଇ କାରିଗରୀ ଜ୍ଞାନ ଯୋଗାଇ ଦେବା ସଙ୍ଗେ ସଙ୍ଗେ ଏକ ବୃହତ୍ କର୍ମନିଯୁକ୍ତି ସ୍ଥଳ ହୋଇପାରିଛି । ଏହା ସୁନ୍ଦରଗଡ଼ ଜିଲ୍ଲାର ଏକ ସୀମାନ୍ତ ଅଞ୍ଚଳ । ଏହି ଶିଳ୍ପ ପ୍ରତିଷ୍ଠା ହେବା ଫଳରେ ସମ୍ବଲପୁର ଓ ସୁନ୍ଦରଗଡ଼ ସହିତ ବଡ଼ବିଲ ଓ ଅନ୍ୟାନ୍ୟ ଅଞ୍ଚଳର ରେଳ ଯୋଗାଯୋଗ ମଧ୍ୟ ହୋଇପାରିଲା । ପଶ୍ଚିମ ଜର୍ମାନୀର ଅତି ଉନ୍ନତ ରୁର୍ ଅଂଚଳର କାରୀଗରମାନଙ୍କ ଦ୍ୱାରା ଏହି କାରଖାନା ପ୍ରତିଷ୍ଠା ହୋଇଥିବାରୁ ଏହା "ରୁର୍‌କେଲ" ନାମରେ ଅଭିହିତ ହେଲା ।

## ୧୯୫୭ ମସିହାରେ ଦ୍ୱିତୀୟ ସାଧାରଣ ନିର୍ବାଚନ

ପ୍ରଥମ ସାଧାରଣ ନିର୍ବାଚନରେ ମୟୂରଭଞ୍ଜର ମୋରଡ଼ା ନିର୍ବାଚନ ମଣ୍ଡଳୀରୁ ପ୍ରଜାସୋସାଲିଷ୍ଟ ପାର୍ଟି ଟିକଟରେ ବିଧାନ ସଭାକୁ ନିର୍ବାଚିତ ହୋଇଥିଲି । ବିଧାନସଭାରେ ପାଞ୍ଚବର୍ଷକାଳ ସଭ୍ୟଥିବା ବେଳେ ମୋର କର୍ତ୍ତବ୍ୟ ଓ ଦାୟିତ୍ୱ ନିଷ୍ଠାର ସହିତ ସଂପାଦନ କରି ସର୍ବସାଧାରଣଙ୍କ ହିତଦୃଷ୍ଟିରୁ ଯେଉଁ ସବୁ ଭୂମିକା ଗ୍ରହଣ କରିଥିଲି ତାର ଫଳ ସ୍ୱରୂପ ସମଗ୍ର ରାଜ୍ୟରେ ମୁଁ ଜଣେ ଦକ୍ଷ ବିଧାୟକର ସମ୍ମାନ ଲାଭ କରିବାର ସମର୍ଥ ହୋଇପାରିଥିଲି । ଯେଉଁ ଲୋକ ପ୍ରତିନିଧି ଜନମଙ୍ଗଳକୁ ନିଜର ପ୍ରଧାନ ଲକ୍ଷ୍ୟ ମାନି ଚଳୁଥାଏ ଏବଂ ସେଥିପାଇଁ ନିଜର ପୁରୁଷାର୍ଥ ପ୍ରୟୋଗ କରିପାରେ ସେ କେବଳ ନିଜର ପାତ୍ରତା ବିକଶିତ କରିବାରେ ସମର୍ଥ ହୋଇଥାଏ ।

ଏଥିପାଇଁ ୧୯୫୭ମସିହା ଦ୍ୱିତୀୟ ସାଧାରଣ ନିର୍ବାଚନରେ ମୋତେ ପରାସ୍ତ କରିପାରିଲେ ମୟୂରଭଞ୍ଜ ଜିଲ୍ଲାରେ ଅନ୍ୟ ରାଜନୈତିକ ଦଳମାନେ ନିଜ ନିଜର ଆସ୍ଥାନ ଦୃଢ଼ କରିପାରିବେ ବୋଲି ପ୍ରାୟ ସମସ୍ତ ରାଜନୈତିକ ଦଳ ତରଫରୁ ଏକ ଦୃଢ଼ ଉଦ୍ୟମ ଆରମ୍ଭ ହୋଇଗଲା । ମାତ୍ର ଈର୍ଷା ବ୍ୟାଧିଗ୍ରସ୍ତ ମନୁଷ୍ୟର ପ୍ରଗତିଦ୍ୱାରା ଅବରୁଦ୍ଧ ହୋଇଯାଏ ଏବଂ ଏହା ସବୁ କ୍ଷେତ୍ରରେ ମନୁଷ୍ୟକୁ ଆଣିଦିଏ ବିଫଳତା ।

ମୋ ପକ୍ଷରେ ଏଥରର ନିର୍ବାଚନ ଅତ୍ୟନ୍ତ କଷ୍ଟକର ହୋଇପଡ଼ିଲା । ଏଥର ନିର୍ବାଚନ

ମଣ୍ଡଳୀର ପରିସୀମା ବଦଳିଗଲା । ପୂର୍ବ ନିର୍ବାଚନ କେବଳ ମୋରଡ଼ା ଓ ବୈଶିଙ୍ଗା ଥାନା ଇଲାକରେ ସୀମିତ ଥିଲାବେଳେ ଏଥର ବୈଶିଙ୍ଗା, ବେତନଟୀ, ବଡ଼ସାହି ଓ ଖୁଣ୍ଟା ଥାନାକୁ ମିଶାଇ ଏକ ଦ୍ୱୈତ ନିର୍ବାଚନ ମଣ୍ଡଳୀରୁ ମୋତେ ସାଧାରଣ ଓ ଶ୍ରୀ ଅର୍ଜୁନ ଚନ୍ଦ୍ର ପାତ୍ରଙ୍କୁ (ସଂରକ୍ଷିତ) ସ୍ଥାନରୁ ପ୍ରାର୍ଥୀ ଛିଡ଼ା କରାଗଲା । ଏ ନିର୍ବାଚନରେ ମଧ୍ୟ ମୋର ଆର୍ଥିକ ଅବସ୍ଥା ଯଥା ପୂର୍ବଂ ତଥା ପରଂ, ପ୍ରଚାରପାଇଁ ଗାଡ଼ି ମୋଟରର ବ୍ୟବସ୍ଥା କରିବାପାଇଁ ଅର୍ଥର ଅଭାବ । ଏଥର ବିଭିନ୍ନ ରାଜନୈତିକ ଯଥା କଂଗ୍ରେସ୍, କମ୍ୟୁନିଷ୍ଟ, ଗଣତନ୍ତ୍ର, ଝାଡ଼ଖଣ୍ଡ ଓ ସ୍ୱାଧୀନ ପ୍ରାର୍ଥୀ ମିଶି ୧୭ଜଣ ପ୍ରାର୍ଥୀ ପ୍ରତିଦ୍ୱନ୍ଦ୍ୱିତାରେ ଅବତୀର୍ଣ୍ଣ ହେଲେ । ଏଥର ଏହି ନିର୍ବାଚନ ମଣ୍ଡଳୀରୁ ପ୍ରତିଦ୍ୱନ୍ଦ୍ୱିତା କରୁଥିବା ପ୍ରାର୍ଥୀମାନଙ୍କ ମଧ୍ୟରୁ ପୁରୁଣା ପ୍ରଜାମଣ୍ଡଳ ସମୟର ବନ୍ଧୁ ଓ ସହକର୍ମୀ ଶ୍ରୀଯୁକ୍ତ ଜଗନ୍ନାଥ କମିଲା କଂଗ୍ରେସ୍ ତରଫରୁ ଓ ସହକର୍ମୀ ଶ୍ରୀଯୁକ୍ତ ଗିରୀଶଚନ୍ଦ୍ର ରାୟ କମ୍ୟୁନିଷ୍ଟ ପାର୍ଟି ତରଫରୁ ଓ ବେତନଟୀର ମୋର ଜଣେ ଅତି ପ୍ରିୟ ସହକାରୀ ଶ୍ରୀ ହରି ମହାନ୍ତ ଥିଲେ ମୁଖ୍ୟ । ସମସ୍ତଙ୍କ ମଧ୍ୟରେ ମୁଁ ଅଗ୍ରଣୀ ଥିବାରୁ ମୋତେ ଆକ୍ରମଣ କରି ସମସ୍ତେ ନିର୍ବାଚନ ପ୍ରଚାର ଆରମ୍ଭ କରିଦେଲେ ଓ ମୋତେ ହରାଇବା ଥିଲା ସମସ୍ତଙ୍କର ପ୍ରଧାନ ଲକ୍ଷ୍ୟ । ପାର୍ଟି ତରଫରୁ ମୁଁ ସାଧାରଣ ସ୍ଥାନରୁ ଓ ଶ୍ରୀ ଅର୍ଜୁନ ପାତ୍ର ସଂରକ୍ଷିତ ସ୍ଥାନରୁ ଛିଡ଼ା ହୋଇଥିଲେ ହେଁ ମୋ ଉପରେ ସମସ୍ତ ଦାୟିତ୍ୱ ନ୍ୟସ୍ତ କରାଯାଇଥିଲା । ଶ୍ରୀ ପାତ୍ରଙ୍କ ଘର ଏ ଅଞ୍ଚଳରେ ନ ଥିବାରୁ ଓ ତାଙ୍କର ଲୋକସଂପର୍କ ସେପରି ବିଶେଷଭାବରେ ନ ଥିବାରୁ ଏବଂ ନିର୍ବାଚନ ତୁଲାଇବାପାଇଁ ତାଙ୍କର ଅର୍ଥର ଅଭାବ ହେତୁ ମୋତେ ବହୁ କଷ୍ଟ ସ୍ୱୀକାର କରିବାକୁ ପଡ଼ିଥିଲା । ଶ୍ରୀ ଗିରୀଶଚନ୍ଦ୍ର ରାୟ ଓ ଶ୍ରୀ ଘାସିରାମ ସାଣ୍ଡିଲ ପୂର୍ବତନ ବିଧାନ ସଭାର ସଭ୍ୟ ଥିଲେ । ଶ୍ରୀଯୁକ୍ତ ଜଗନ୍ନାଥ କମିଳାଙ୍କ ଘର ଏହି ନିର୍ବାଚନ ମଣ୍ଡଳୀ ଅନ୍ତର୍ଗତ ଖୁଣ୍ଟା ଥାନାରେ ଓ ସେ ପୂର୍ବତନ ପ୍ରଜାମଣ୍ଡଳର  କର୍ମୀ ହୋଇଥିବାରୁ ଏ ଅଞ୍ଚଳରେ ତାଙ୍କର ବେଶ୍ ପ୍ରତିପତ୍ତି ଥିଲା ଓ ସେ ସମସ୍ତଙ୍କର ଜଣାଶୁଣା ମଧ୍ୟ ଥିଲେ । ଉଭୟଙ୍କ ପକ୍ଷରେ କେବଳ ବୈଶିଙ୍ଗା ଥାନା ଇଲାକା ନୂଆ ଥିଲା ଓ ଏ ଅଂଚଳରେ ସେମାନେ କେହି ପରିଚିତ ନଥିଲେ । ମୋର ଶ୍ୱଶୁର ଘର ବେତନଟୀ ଥାନା ଇଲାକା ଦହିକୋଟି ଗ୍ରାମରେ ମୁଁ ରହୁଥିଲି । ପ୍ରଜା ଆନ୍ଦୋଳନ ଆରମ୍ଭ ହୁଏ ୧୯୩୯ ମସିହାରୁ । ତେଣୁ ବେତନଟୀ ଥାନା ମୋ ନିର୍ବାଚନ ମଣ୍ଡଳୀର ଅନ୍ତର୍ଭୁକ୍ତ ହୋଇଥିଲା । ଅନ୍ୟ ପ୍ରାର୍ଥୀମାନଙ୍କର ଏ ଅଂଚଳରେ ସେପରି ସଂପର୍କ ନଥିଲା ଯଦିଓ ୧୯୫୨ ନିର୍ବାଚନରେ ଏହା ଶ୍ରୀ ଗିରୀଶଚନ୍ଦ୍ର ରାୟଙ୍କର ବାରିପଦା ନିର୍ବାଚନ ମଣ୍ଡଳୀର ଅନ୍ତର୍ଭୁକ୍ତ ହେଲା ।

ଏହିପରି ପ୍ରତିପତ୍ତି ସଂପନ୍ନ ଓ ପ୍ରଚୁର ଅର୍ଥ ବିନିଯୋଗ କରିପାରୁଥିବା ବ୍ୟକ୍ତିଙ୍କ ସହିତ ନିର୍ବାଚନ ଲଢ଼ିବା ଅତ୍ୟନ୍ତ କଷ୍ଟକର ହେଲେ ମଧ୍ୟ ମୁଁ ଅତି ଧୈର୍ଯ୍ୟର ସହିତ ନିର୍ବାଚନ ଅଭିଯାନ ଆରମ୍ଭ କରିଦେଲି । ଶ୍ରୀ ଭାଗବତ ପ୍ରସାଦ ପରିଡ଼ା ଓ ଶ୍ରୀ କମଳାକାନ୍ତ ବେହେରା ଯଥାକ୍ରମେ ବେତନଟୀ ଓ ବୈଶିଙ୍ଗା ଥାନା ଦାୟିତ୍ୱରେ,  ଶ୍ରୀ ଅନାଦି ଦାସ ଓ ଶ୍ରୀ କ୍ଷେତ୍ରମୋହନ ଦାସ ବଡ଼ସାହି ଥାନା ଦାୟିତ୍ୱରେ, ଶ୍ରୀ ବୈଷ୍ଣବ ଚରଣ ନାଏକ ଖୁଣ୍ଟା ଥାନା ଦୟିତ୍ୱରେ ରହି ନିର୍ବାଚନ ପରିଚାଳନା କଲେ । ମୁଁ ଚାରୋଟିଯାକ ଥାନା ଇଲାକାରେ ବୁଲି ପ୍ରଚାର କାର୍ଯ୍ୟ ଚଳାଇଥାଏ । ମୋଟର ବା ମୋଟର ସାଇକେଲ ମଧ୍ୟ ନଥାଏ । ଆମେ ତିନିଜଣ ମୁଁ, ଶ୍ରୀଯୁକ୍ତ କମିଳା ଓ ଶ୍ରୀଯୁକ୍ତ ରାୟ

ମୟୂରଭଞ୍ଜରେ ପ୍ରଜା ଆନ୍ଦୋଳନର ମୁଖ୍ୟ ସ୍ୱର୍ଗତ ଶରତ ଚନ୍ଦ୍ର ଦାସଙ୍କ ଶିଷ୍ୟ ଥିଲୁ । ଏ ତିନିଜଣଙ୍କ ମଧ୍ୟରୁ ଯେ ପଟ୍ଟଶିଷ୍ୟ ଥିଲେ ସେ ଏ ନିର୍ବାଚନରେ ଜିତିବେ ବୋଲି କହିଥିଲି ।

ଏ ଥରର ନିର୍ବାଚନ ପୂର୍ବପରି ଚାରିଦିନ ନ ହୋଇ ଗୋଟିଏ ନିର୍ବାଚନ ମଣ୍ଡଳୀରେ ମାତ୍ର ଗୋଟିଏ ଦିନରେ ନିର୍ବାଚନ ଶେଷ ହେବାର କାର୍ଯ୍ୟକ୍ରମ ଥିବାରୁ ଏହା ମୋ ପକ୍ଷରେ ଅତ୍ୟନ୍ତ ସୁବିଧାଜନକ ହୋଇଥିଲା । ମୋ ନିର୍ବାଚନ ମଣ୍ଡଳୀର ଭୋଟଗଣତି ଦୀର୍ଘ ଚାରିଦିନ ଧରି ଚାଲିଥିବାରୁ ସମସ୍ତଙ୍କ ମନରେ ଉତ୍କଣ୍ଠା ଓ ଉଦ୍‌ବେଗ ସୃଷ୍ଟି ହୋଇଥିଲା । ପ୍ରଥମ ଦୁଇଦିନରେ ଖୁଣ୍ଟା ଓ ବଡ଼ସାହି ଥାନାର ଭୋଟ ଗଣତିରେ ଶ୍ରୀଯୁକ୍ତ ଜଗନ୍ନାଥ କାମିଲାଙ୍କ ସହ ମୋର ଭୋଟ ପ୍ରାୟ ସମାନ ସମାନ ହୋଇଥିଲା । ତୃତୀୟ ଦିନ ବୈଶିଙ୍ଗା ଥାନାର ଭୋଟ ଗଣତିରେ ଶ୍ରୀ କାମିଳା ମୋଠାରୁ ୫୦୦ ଅଧିକ ଭୋଟରେ ଆଗୁଆ ହେବାପରେ ସମସ୍ତଙ୍କ ମନରେ ଉଦ୍‌ବେଗ ଜନ୍ମିଲା । ବାକିଥିଲା କେବଳ ବେତନଟୀ, ଗୋଟିଏ ଛୋଟ ଥାନା ଇଲାକା ଯେଉଁଥିରେ ଥିଲା ମାତ୍ର ଆଠ ଦଶଟି ଭୋଟ କେନ୍ଦ୍ର । ତେଣୁ ସେଥିରେ ପାଞ୍ଚଶହକୁ ଟପି ଅଧିକା ଆଗୁଆ ହେବାର ଭରସା ଆଦୌ ନଥାଏ । କଂଗ୍ରେସ୍ ଲୋକେ ଖୁବ୍ ଉତ୍ସାହିତ ହୋଇଗଲେ ନିଶ୍ଚିତଭାବରେ ବିଜୟର ଆଶା ରଖି ।

ମାତ୍ର କ୍ରିୟାଶୀଳ ବ୍ୟକ୍ତିତ୍ୱରେ ଯାଦୁକରର ପ୍ରଭାବ ପରିଲକ୍ଷିତ ହୁଏ । ଏପରି ବ୍ୟକ୍ତି ନିକଟରେ ଏକ ବୃହତ୍ ଚୁମ୍ବକୀୟ ଶକ୍ତି ନିହିତ ହୋଇ ରହିଥାଏ । ବ୍ୟକ୍ତି ପ୍ରତିଭାବାନ୍ ହେଲେ ଅନ୍ୟମାନଙ୍କ ଉପରେ ତାର ନିଶ୍ଚିତ ପ୍ରଭାବ ପଡ଼ିଥାଏ । ଦେଖାଗଲା ଏହି ଅଳ୍ପ ସଂଖ୍ୟକ ଭୋଟ କେନ୍ଦ୍ରଗୁଡିକରୁ ମୁଁ ଯେଉଁ ସମସ୍ତ ଭୋଟ ପାଇଲି ସେଥିରେ ଶ୍ରୀ କାମିଳା ପାଇଥିବା ପାଞ୍ଚଶହ ଅଧିକା ଭୋଟକୁ ଟପି ପାଞ୍ଚଶହ ଅଧିକା ଭୋଟରେ ମୁଁ ବିଜୟୀ ହେଲି । ମାତ୍ର ସଂରକ୍ଷିତ ଆସନରୁ କଂଗ୍ରେସ୍ ପ୍ରାର୍ଥୀ ଶ୍ରୀ ପଞ୍ଚାନନ ଦାସ ପ୍ରଜାସୋସାଲିଷ୍ଟ ପାର୍ଟିକୁ ହରାଇ ବିଜୟ ଲାଭ କଲେ । ଏଥର ନିର୍ବାଚନରେ ବିଧାନ ସଭାକୁ ମୟୂରଭଞ୍ଜରୁ ମୁଁ ବୈଶିଙ୍ଗା ନିର୍ବାଚନ ମଣ୍ଡଳୀରୁ ଓ ଶ୍ରୀ ହରିହର ମହାନ୍ତି ଓକିଲ ବାରିପଦା ନିର୍ବାଚନ ମଣ୍ଡଳୀରୁ ପ୍ରଜା ସୋସାଲିଷ୍ଟ ପାର୍ଟିର ପ୍ରାର୍ଥୀରୂପେ ମାତ୍ର ଦୁଇଜଣ ବିଜୟଲାଭ କରିଥିଲୁ । ପ୍ରଥମ ସାଧାରଣ ନିର୍ବାଚନରେ ମୟୂରଭଞ୍ଜରୁ ଚାରିଜଣ ଆମ ଦଳ ତରଫରୁ ବିଜୟଲାଭ କରିଥିଲେ ହେଁ ଏଥର ମାତ୍ର ଦୁଇଜଣ ପ୍ରାର୍ଥୀ ଏହି ଦଳ ତରଫରୁ ଜୟଲାଭ କଲେ । ତାଥାପି ଜିଲ୍ଲାର ମାତ୍ର ତିନିଟି ସାଧାରଣ ଆସନ ମଧ୍ୟରୁ ଆମ ଦଳ ଦୁଇଟିରେ ବିଜୟଲାଭ କରିପାରିଥିଲା ।

ଏଥର ମଧ୍ୟ ଠିକ୍ ପୂର୍ବପରି ପ୍ରଜାସୋସାଲିଷ୍ଟ ପାର୍ଟି ଓଡ଼ିଶା ବିଧାନ ସଭାରେ ସେହି ଦଶଟି ଆସନ ଲାଭକଲା । ପୂର୍ବ ବିଧାନ ସଭାର ସଭ୍ୟଭାବରେ ମୁଁ, ନିଶାମଣି ବାବୁ ଓ ପ୍ରଦୀପ ବାବୁଙ୍କ ବ୍ୟତୀତ ଶ୍ରୀ ରବୀନ୍ଦ୍ର ମୋହନ ଦାସ, ଶ୍ରୀ ବାଙ୍କବିହାରୀ ଦାସ, ଶ୍ରୀ ହରିହର ବାହିନୀପତି ପ୍ରଭୃତି ସ୍ୱନାମଧନ୍ୟ ସଭ୍ୟମାନେ ନିର୍ବାଚିତ ହୋଇ ଏକ ଦୃଢ଼ ବିରୁଦ୍ଧ ଦଳ ଗଠିତ ହୋଇପାରିଥିଲା । ଏଥର ବିଧାନସଭାରେ ପ୍ରଜା ସୋସାଲିଷ୍ଟ ପାର୍ଟିର ଭୂମିକା ଥିଲା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ଓ ଉଲ୍ଲେଖନୀୟ । ଏଥର ଶ୍ରୀଯୁକ୍ତ ନବକୃଷ୍ଣ ଚୌଧୁରୀ ବିଧାନସଭାକୁ ଆସିପାରିନଥିବାରୁ ଶ୍ରୀଯୁକ୍ତ ହରେକୃଷ୍ଣ ମହତାବ

ଓଡ଼ିଶାର ମୁଖ୍ୟମନ୍ତ୍ରୀ ହେଲେ । କଂଗ୍ରେସ୍ ଦଳ ସଂପୂର୍ଣ୍ଣ ସଂଖ୍ୟା ଗରିଷ୍ଠତା ପାଇନଥିବାରୁ ଝାଡ଼ଖଣ୍ଡ ଦଳର ପ୍ରତ୍ୟକ୍ଷ ଓ କମ୍ୟୁନିଷ୍ଟ ପାର୍ଟିର ପରୋକ୍ଷ ସମର୍ଥନରେ ଶାସନ ଚଳାଇଲେ । ସେଥିପାଇଁ ପ୍ରତିଥର ଭୋଟବେଳେ ଏମାନେ ଶାସକ କଂଗ୍ରେସ୍ ଦଳଠାରୁ ପ୍ରଚୁର ପରିମାଣର ଅର୍ଥ ନେଉଥିଲେ । ଏଥର ବିରୁଦ୍ଧ ଦଳର ନେତା ଥିଲେ ଶ୍ରୀଯୁକ୍ତ ରାଜେନ୍ଦ୍ର ନାରାୟଣ ସିଂହଦେଓ । ବଲାଙ୍ଗୀରର ପୂର୍ବତନ ମହାରାଜା । ସେ ଜଣେ ଦକ୍ଷ ବିଧାୟକ ଓ ଶାସକ ଥିଲେ । ବିଧାନସଭାରେ ୧୯୫୭ରୁ ୧୯୫୮ଶେଷ ପର୍ଯ୍ୟନ୍ତ କଂଗ୍ରେସ୍ ଦଳକୁ ଅତି ସଂକଟମୟ ପରିସ୍ଥିତିରେ ଶାସନ ଚଳାଇବାକୁ ପଡ଼ିଥିଲା । ବିଧାନସଭାରେ କୌଣସି ବିଷୟରେ ଭୋଟ ଦେବାର ପରିସ୍ଥିତି ଦେଖାଦେଲେ ଶାସକ ଦଳ ଝାଡ଼ଖଣ୍ଡ ପ୍ରଭୃତି ଛୋଟ ଛୋଟ ଦଳର ଭୋଟ କିଣିବାର ଚେଷ୍ଟା କରୁଥିଲେ । ଏହିପରି ସହଜରେ କିଣାଯାଇପାରୁଥିବା ଦଳର ଲୋକେ ତଥା ସେମାନଙ୍କର ମଧ୍ୟସ୍ଥମାନେ ପ୍ରତିମାସ ଶାସକ ଦଳରୁ ଧରାବନ୍ଧା ମାସିକ ତଥା ପ୍ରତି ଭୋଟ ବେଳର ପ୍ରାପ୍ୟ ନେଉଥିଲେ । ଏହିପରି ବିଧାନସଭାରେ ଥିବା ସାତ ବା ଆଠ ଜଣ କମ୍ୟୁନିଷ୍ଟ ଦଳର ସଭ୍ୟମାନେ ବେଳେବେଳେ ମଧ ଭୋଟଦାନରୁ ବିରତ ରହୁଥିବାର ଦେଖାଯାଉଥିଲା । ଏ ସବୁର ରହସ୍ୟ ଉଣା ଅଧିକେ ପ୍ରାୟ ସମସ୍ତଙ୍କୁ ଜଣାଥିଲା ।

ଏହି ସମୟରେ ଦିନକର ଘଟଣା, ସେଦିନ ଥାଏ ଶନିବାର । ବିଧାନସଭାରେ ସରକାରୀ ଦଳ ମାତ୍ର ଗୋଟିଏ ଭୋଟରେ ରକ୍ଷା ପାଇ ଯାଇଥାଆନ୍ତି । ସୁତରାଂ ତହିଁ ପରବର୍ତ୍ତୀ ସୋମବାରର ବିଧାନସଭା ବୈଠକ ଉଭୟ ସରକାରୀ ଓ ବିରୁଦ୍ଧଦଳ ମଧ୍ୟରେ ଟଣାଭିଡ଼ା ହେବାର ଆଶଙ୍କା ଅତିମାତ୍ରାରେ ରହିଥାଏ । ତହିଁପୂର୍ବ ରବିବାର ଦିନ ସରକାରୀ ଦଳର ଦୁଇଜଣ ସଭ୍ୟ ଶ୍ରୀ ଅନୁପ ସିଂହଦେଓ ଏବଂ ଗଞ୍ଜାମ ଜିଲ୍ଲାର ଅନ୍ୟ ଜଣେ ସଭ୍ୟଙ୍କୁ ଗଣତନ୍ତ୍ର ଦଳର ଗାଙ୍ଗପୁର ରାଜା ନିଜ ଘରକୁ ନେଇ କଥାବାର୍ତ୍ତା କରୁଥିବା ବେଳେ କଂଗ୍ରେସ ଦଳର ଶ୍ରୀଯୁକ୍ତ ବିଜୁ ପଟ୍ଟନାୟକ ଅତିମାତ୍ରାରେ ମଦ୍ୟପାନ କରି ମାତାଲ ଅବସ୍ଥାରେ ସେଠାରେ ଯାଇ ପହଞ୍ଚିଲେ । ସେ ଏପରି ଅବସ୍ଥାରେ ଥିଲେ ଯେ ସେଠାରେ ପହଞ୍ଚି ସେମାନଙ୍କୁ ମଦ ମାଗିଲେ । ଶ୍ରୀ ବିଜୁ ପଟ୍ଟନାୟକ ଶ୍ରୀ ଅନୁପ ସିଂଦେଓଙ୍କୁ କ'ଣ ଅପମାନ ସୂଚକ କଥା କହିଲାରୁ କଳାହାଣ୍ଡି ମହାରାଜା ଶ୍ରୀ ସିଂଦେଓ ଦଳେ ଗୁଣ୍ଡା ଆଣିବାକୁ ଗଲେ ଓ ଅନ୍ୟମାନେ ଶ୍ରୀ ବିଜୁ ପଟ୍ଟନାୟକଙ୍କୁ ପ୍ରବଳ ମାଡ଼ ଦେବାକୁ ଆରମ୍ଭ କରିଦେଲେ । ଡକ୍ଟର ହରେକୃଷ୍ଣ ମହତାବଙ୍କ ମନ୍ତ୍ରୀମଣ୍ଡଳ ସଂଖ୍ୟାନ୍ୟୂନ ଅବସ୍ଥାରେ ଥିବା ହେତୁ ବିଧାନସଭା ବୈଠକ ବେଳେ ନାନା ପ୍ରକାର ନିନ୍ଦିତ ଆଚରଣ କରାଯାଉଥିଲା । ବୈଠକ ବେଳେ କଂଗ୍ରେସ ଦଳର ସଭ୍ୟମାନଙ୍କର ରହିବା, ଖାଇବା ଓ ପିଇବାର ସମସ୍ତ ବ୍ୟବସ୍ଥା କରି ସେମାନଙ୍କୁ ଜଗିରଖିବାର ଦାୟିତ୍ୱ କଂଗ୍ରେସ୍‌ର ଜଣେ ନେତୃସ୍ଥାନୀୟ ବ୍ୟକ୍ତିଙ୍କୁ ଦିଆଯାଇଥିଲା । ଜେଲଖାନାରୁ କଏଦିମାନଙ୍କୁ ଅଣାଗଲାପରି ସଭ୍ୟମାନଙ୍କୁ ବିଧାନସଭାକୁ ଅଣାଯାଉଥିଲା ।

ଏହି ଅବସ୍ଥାରେ କଂଗ୍ରେସ୍ ସରକାର ପ୍ରାୟ ଦୁଇବର୍ଷ ରହିଲାପରେ ୧୯୫୯ ମସିହାର ମଧ୍ୟଭାଗରେ ଗଣତନ୍ତ୍ର ଦଳସହିତ ମିଶି ଏକ ମିଳିତ ମନ୍ତ୍ରୀମଣ୍ଡଳ ଗଠିତ ହେଲା । ଏଥିରେ ଡକ୍ଟର ହରେକୃଷ୍ଣ ମହତାବ ମୁଖ୍ୟମନ୍ତ୍ରୀ ଓ ଶ୍ରୀଯୁକ୍ତ ରାଜେନ୍ଦ୍ର ନାରାୟଣ ସିଂଦେଓ ହେଲେ ଉପମୁଖ୍ୟମନ୍ତ୍ରୀ । ଏହି ଅସ୍ୱାଭାବିକ ଓ ସୁବିଧାବାଦୀ ମିଳନ ଫଳରେ କଂଗ୍ରେସ୍ ଦଳ ମଧ୍ୟରେ ଆଭ୍ୟନ୍ତରୀଣ ବିବାଦ

ମୁଣ୍ଡ ଟେକିଲା । ପରିଶେଷରେ ୧୯୬୧ ମସିହା ଫେବୃୟାରୀ ମାସରେ ବିଧାନସଭାର ବୈଠକ ମାତ୍ର ଚାରି ବା ପାଞ୍ଚଦିନ ଚାଲିଲାପରେ ମନ୍ତ୍ରୀମଣ୍ଡଳ ଇସ୍ତଫା ପ୍ରଦାନ କରି ମଧ୍ୟବର୍ତ୍ତୀକାଳୀନ ନିର୍ବାଚନ କରାଇଲେ । ଏହି ମନ୍ତ୍ରୀମଣ୍ଡଳର କାର୍ଯ୍ୟକାଳ ୧୯୬୨ ଫେବୃୟାରୀ ବେଳକୁ ଶେଷ ହେବାର ଥିଲେ ହେଁ ଶାସକ କଂଗ୍ରେସ୍ ଦଳ ମଧ୍ୟରେ ବିଭେଦ ଘଟିବାରୁ ଧାର୍ଯ୍ୟ ସମୟ ପୂର୍ବରୁ ମନ୍ତ୍ରୀମଣ୍ଡଳ ଭାଙ୍ଗି ଦିଆଯାଇଥିଲା । ଏକ ପକ୍ଷରେ ମୁଖ୍ୟମନ୍ତ୍ରୀ ଡକ୍ଟର ମହତାବ ଓ ଅନ୍ୟପକ୍ଷରେ ଶ୍ରୀଯୁକ୍ତ ବିଜୁ ପଟ୍ଟନାୟକ ଥାଇ ଏହି କଳହର ସୂତ୍ରପାତ ହୋଇଥିଲା ।

## ପ୍ରଜାସୋସାଲିଷ୍ଟ ପାର୍ଟିର ପୁନା ଓ ଗୋଆଲିଅର ଅଧିବେଶନ

ପ୍ରଜା ସୋସାଲିଷ୍ଟ ପାର୍ଟିର ବିଭାଜନ ପରେ ପାର୍ଟିର ପ୍ରଥମ ବାର୍ଷିକ ଅଧିବେଶନ ପୁନାଠାରେ ହୋଇଥିଲା । ଏହି ଅଧିବେଶନକୁ ମୁଁ ଓଡ଼ିଶାରୁ ପ୍ରତିନିଧି ହୋଇଯାଇଥିଲି । ପୁନା ଗୋଟିଏ ଅତି ସୁନ୍ଦର ଓ ଶାନ୍ତ ସହର । ମହାରାଷ୍ଟ୍ର ରାଜ୍ୟର ଏହା ବିଦ୍ୟାନଗରୀ କହିଲେ ଅତ୍ୟୁକ୍ତି ହେବ ନାହିଁ । ଏଠାରେ ଉକ୍ତ ଦଳର ଦୁଇଜଣ ବଡ଼ ନେତା ଶ୍ରୀଯୁକ୍ତ ଏନ୍.ଜି. ଖୋରେ ଓ ଶ୍ରୀଯୁକ୍ତ ଯୋଷୀଙ୍କ ବାସସ୍ଥାନ । ମହାରାଷ୍ଟ୍ରରେ ଦଳର ଦୃଢ଼ ସଂଗଠନ ଥିବା ବିଷୟ ଏହି ଅଧିବେଶନରେ ହିଁ ଜଣାପଡିଲା । ଅଧିବେଶନ ପରେ ଓଡ଼ିଶାର ଆମେ ବହୁ କର୍ମୀ ବମ୍ବେ ଯାଇଥିଲୁ । ବମ୍ବେ ଭାରତର ସବୁଠାରୁ ବଡ଼ ସହର । ବହୁ କଳକାରଖାନାସହିତ ଏହା ଭାରତର ଏକ ବଡ଼ ବନ୍ଦର ମଧ୍ୟ । ଏଠାକାର ଦୋଳାୟମାନ ଉଦ୍ୟାନ (Hanging Garden) ଏକ ଦର୍ଶନୀୟ ସ୍ଥାନ । ଅଦୂରରେ ପ୍ରାୟ ୬ ବା ୭ କି.ମି. ଦୂରରେ ଆରବ ସାଗର ମଧ୍ୟରେ ଏକ କ୍ଷୁଦ୍ର ଦ୍ୱୀପରେ ହାତୀଗୁମ୍ଫା ଏଠାକାର ଏକ ଦର୍ଶନୀୟ ସ୍ଥାନ । ଏହି ଅବସରରେ ଅଧିବେଶନର ଅବ୍ୟବହିତ ପୂର୍ବରୁ ମହାରାଷ୍ଟ୍ରର ଅନ୍ୟ ଏକ ସ୍ଥାନରେ ସର୍ବୋଦୟ ମେଳା ପରିଦର୍ଶନର ସୌଭାଗ୍ୟ ମଧ୍ୟ ଆମକୁ ମିଳିଥିଲା ।

ତୃତୀୟ ସାଧାରଣ ନିର୍ବାଚନ ପୂର୍ବରୁ ଗୋଆଲିୟାରିଠାରେ ଏହି ଦଳର ଏକ ସର୍ବଭାରତୀୟ ଅଧିବେଶନ ଅତ୍ୟନ୍ତ ନୈରାଶ୍ୟଜନକଭାବରେ ଅନୁଷ୍ଠିତ ହୋଇଥିଲା । ପ୍ରଜା ସୋସାଲିଷ୍ଟି ପାର୍ଟିର ବିଭାଜନ ପରେ ଉଭୟ ସୋସାଲିଷ୍ଟ (ଲୋହିୟା ପରିଚାଳିତ) ଓ ପ୍ରଜା ସୋସାଲିଷ୍ଟ ପାର୍ଟିର ସାମର୍ଥ୍ୟ ବୃଦ୍ଧି ପାଉଥିଲାବେଳେ ପାର୍ଟିର କେତେକ ସଦସ୍ୟ କଂଗ୍ରେସ୍‌ରେ ଯୋଗ ଦେଇଥିବାରୁ ତାହା କର୍ମୀମାନଙ୍କର ନୈତିକ ବଳ କ୍ରମେ ହ୍ରାସ କରିଦେଉଥିଲା । ଏହି ଅଧିବେଶନରେ ଅଶୋକ ମେହେଟ୍ଟା ସଭାପତିତ୍ୱରୁ ବିଦାୟ ନେଲେ ଏବଂ ଜାତୀୟ ସ୍ତରରେ ସେପରି ଖ୍ୟାତି ଅର୍ଜନ କରି ପାରିନଥିବା ଶ୍ରୀଯୁକ୍ତ ଯୋଷୀ ହେଲେ ଉକ୍ତ ଦଳର ସଭାପତି ।

ପ୍ରଜା ସୋସାଲିଷ୍ଟ ପାର୍ଟି ଏକ କର୍ମୀର ଅନୁଷ୍ଠାନରେ ପରିଣତ ହେବାକୁ ଆରମ୍ଭ କଲା । ଆଜିର ଶ୍ରୀଯୁକ୍ତ ଚନ୍ଦ୍ରଶେଖର, ଜନତା ଦଳର ସଭାପତି ତଥା ସର୍ବଭାରତୀୟ ସ୍ତରର ନେତା ସେତେବେଳେ ଜଣେ ସାଧାରଣ କର୍ମୀ ଭାବରେ ଆମ ସଙ୍ଗେ ଅଧିବେଶନରେ ଯୋଗଦାନ କରି ଆଲୋଚନାରେ ଭାଗନେଇଥିଲେ । ସେ ଅଶୋକ ମେହେଟ୍ଟାଙ୍କ ସହିତ କଂଗ୍ରେସ୍ ସହ ସହଯୋଗ କରିବା ମନୋଭାବ ନେଇ ଏକମତ ଥିଲେ । ତୃତୀୟ ସାଧାରଣ ନିର୍ବାଚନ ବେଳକୁ ପ୍ରଜା ସୋସାଲିଷ୍ଟ

ପାର୍ଟିର ଅଧିକ ବିପର୍ଯ୍ୟୟ ପରେ ଶ୍ରୀଯୁକ୍ତ ଚନ୍ଦ୍ରଶେଖର, ଅଶୋକ ମେହେଟ୍ଟାଙ୍କ ସହିତ ଦଳତ୍ୟାଗ କରି କଂଗ୍ରେସ୍‌ରେ ଯୋଗଦେଲେ । ଜାତୀୟ ସ୍ତରରେ ଏହି ଦଳ କ୍ଷୁଦ୍ର ଓ ଦୁର୍ବଳ ହୋଇଯାଇଥିଲେ ହେଁ ଓଡ଼ିଶାରେ ଏହାର ସଂଗଠନ ବେଶ ଦୃଢ଼ ଥିଲା ଏବଂ ତା ମଧ୍ୟ ଏକ ସୀମିତ ଅଞ୍ଚଳରେ । ସେତେବେଳେ ଆମ ରାଜ୍ୟରେ ଦଳର ମୁଖ୍ୟ ନେତା ଥିଲେ ଶ୍ରୀଯୁକ୍ତ ସୁରେନ୍ଦ୍ର ନାଥ ଦ୍ୱିବେଦୀ । ଦଳ ମଧ୍ୟରେ ଅତି କଠୋର ନୀତି ଥିଲେ ମଧ୍ୟ ନେତୃବର୍ଗଙ୍କ ମଧ୍ୟରେ ଅତି ସୁସଂପର୍କ ଥିଲା । ସମସ୍ତେ ଏକ ପରିବାରର ସଭ୍ୟଭାବରେ ମିଳିମିଶି କାମ କରୁଥିଲେ ।

୧୯୫୭ ମସିହାରେ ବିଧାନସଭାର ଦ୍ୱିତୀୟ ନିର୍ବାଚନ ପରେ ଡକ୍ଟର ହରେକୃଷ୍ଣ ମହତାବଙ୍କ ମୁଖ୍ୟମନ୍ତ୍ରୀତ୍ୱ ସମୟରେ ବିଧାନସଭାର ସଭ୍ୟଙ୍କୁ ନେଇ ତିନିଟି ତଦନ୍ତ କମିଟି ଗଠନ କରାଯାଇଥିଲା । ପ୍ରଥମ ତଦନ୍ତ କମିଟିର ନେତୃତ୍ୱ ନେଇଥିଲେ ତଦାନୀନ୍ତନ ସ୍ୱରାଷ୍ଟ୍ରମନ୍ତ୍ରୀ ଶ୍ରୀଯୁକ୍ତ ଲିଙ୍ଗରାଜ ପାଣିଗ୍ରାହୀ । ରାଜ୍ୟରେ ସେ ପର୍ଯ୍ୟନ୍ତ କାର୍ଯ୍ୟକାରୀ ହୋଇଥିବା ଉନ୍ନୟନମୂଳକ କାର୍ଯ୍ୟଗୁଡ଼ିକରେ ବିନିଯୋଗ ହୋଇଥିବା ଅର୍ଥର ଅପଚୟ ଓ ତୋଷରପାତ ପ୍ରଭୃତିର ଅନୁସନ୍ଧାନ କରି ଭବିଷ୍ୟତିରେ ଯଥାର୍ଥରେ ଅର୍ଥ ବିନିଯୋଗ କିପରିଭାବରେ କରାଯାଇ ପାରିବ ସେ ସଂପର୍କରେ ପରାମର୍ଶ ଦେବା ଉକ୍ତ କମିଟିର ମୁଖ୍ୟ ଲକ୍ଷ୍ୟ ଥିଲା । ଏହି କମିଟିର ସରକାରୀ ଓ ବିରୁଦ୍ଧ ଦଳର ସଭ୍ୟମାନଙ୍କ ମଧ୍ୟରେ ଆମ ଦଳରୁ ଶ୍ରୀ ବାଙ୍କବିହାରୀ ଦାସ ମନୋନୀତ ହୋଇଥିଲେ । ଦ୍ୱିତୀୟ କମିଟିର ଓଡ଼ିଶାର ଜଙ୍ଗଲ ସଂପଦର ସୁରକ୍ଷା ଓ ସୁପରିଚାଳନା ସଂପର୍କରେ ପରାମର୍ଶ ଦେବା ଥିଲା ପ୍ରଧାନ ଲକ୍ଷ୍ୟ । ଏହି ଦ୍ୱିତୀୟ ତଦନ୍ତ କମିଟି ସେତେବେଳର ଉନ୍ନୟନ ମନ୍ତ୍ରୀ ଶ୍ରୀଯୁକ୍ତ ରାଧାନାଥ ରଥଙ୍କ ନେତୃତ୍ୱରେ ଗଠିତ ହୋଇଥିଲା ।

ଏହି କମିଟିର ଅନ୍ୟାନ୍ୟ ସଭ୍ୟମାନଙ୍କ ମଧ୍ୟରେ ମୁଁ ଆମ ଦଳରୁ ମନୋନୀତ ହୋଇଥିଲି । ଏତଦ୍‌ବ୍ୟତୀତ ଗ୍ରାମପଞ୍ଚାୟତ ଆଇନ୍‌ର ପରିବର୍ତ୍ତନ ତଥା ପଞ୍ଚାୟତଗୁଡ଼ିକର ସୁପରିଚାଳନା ସଂପର୍କରେ ପରାମର୍ଶ ଦେବାପାଇଁ ତୃତୀୟ ତଦନ୍ତ କମିଟି ପଞ୍ଚାୟତ ମନ୍ତ୍ରୀଙ୍କ ନେତୃତ୍ୱରେ ଗଠିତ ହୋଇଥିଲା ଏବଂ ଆମ ଦଳ ପକ୍ଷରୁ ଶ୍ରୀ ନିଶାମଣି ଖୁଣ୍ଟିଆ କମିଟିର ସଭ୍ୟ ମନୋନୀତ ହୋଇଥିଲେ ।

ଜଙ୍ଗଲ ତଦନ୍ତ କମିଟିରେ ସଭ୍ୟ ଥିବା ହେତୁ ଓଡ଼ିଶାର ବିଭିନ୍ନ ଜିଲ୍ଲା ତଥା ଜଙ୍ଗଲ ଅଞ୍ଚଳମାନ ପରିଦର୍ଶନ କରିବାର ସୁଯୋଗ ମୋତେ ମିଳିଥିଲା । ସେତେବେଳେ ଓଡ଼ିଶାର ଜଙ୍ଗଲଗୁଡ଼ିକର ସୁରକ୍ଷା ଓ ଉନ୍ନତି ସାଧନ ପାଇଁ ଗୋଟିଏ ପ୍ରକାରର ଆଇନ୍ ପ୍ରଚଳିତ ହେଉ ନଥିଲା । ଓଡ଼ିଶାସହିତ ମିଶ୍ରଣ ହୋଇଥିବା ପୂର୍ବତନ ଗଡ଼ଜାତ ଗୁଡିକ ପାଇଁ ସେହି ସେହି ଅଞ୍ଚଳରେ ପୂର୍ବରୁ ଜିଲ୍ଲାଗୁଡିକର ବିଭିନ୍ନ ଅଞ୍ଚଳପାଇଁ ବିଭିନ୍ନ ଆଇନ୍‌ମାନ ପ୍ରଚଳିତ ହେଉଥିଲା । ଏତଦ୍‌ବ୍ୟତୀତ ଘରୋଇ ଜଙ୍ଗଲଗୁଡିକର ଏକ ସ୍ୱତନ୍ତ୍ର ଆଇନ୍ ଥିଲା । ଏ ସବୁ ଆଇନ୍‌ଗୁଡ଼ିକର ସମୀକରଣ ଥିଲା ଏଇ କମିଟିର ମୁଖ୍ୟ ଉଦ୍ଦେଶ୍ୟ ।

ଗଣତନ୍ତ୍ର ଦଳର ସହାୟତାରେ କଂଗ୍ରେସ୍‌ର ମିଳିତ ସରକାର ଗଠନ ଯୋଗୁଁ କଂଗ୍ରେସ୍

ମଧ୍ୟରେ ଯେଉଁ ଅସନ୍ତୋଷ ଥିଲା ତହିଁର ନେତୃତ୍ୱ ନେଉଥିଲେ ଶ୍ରୀ ବିଜୁ ପଟ୍ଟନାୟକ ଏବଂ ତାଙ୍କର ସମର୍ଥକ ଥିଲେ ଜନୈକ ମନ୍ତ୍ରୀ ଶ୍ରୀ ଦୀନବନ୍ଧୁ ସାହୁ ତଥା ଶ୍ରୀଯୁକ୍ତ ବିରେନ୍ ମିତ୍ର ପ୍ରଭୃତି । ଅବଶ୍ୟ ବିଜୁ ବାବୁ ରାଜନୀତିରେ ପ୍ରବେଶର ଆରମ୍ଭରୁ ଶ୍ରୀଯୁକ୍ତ ମହତାବ୍‌ଙ୍କର ଜଣେ ବଡ଼ ଭକ୍ତ ଥିଲେ । ଶ୍ରୀଯୁକ୍ତ ମହତାବ ହିଁ ବିଜୁବାବୁଙ୍କୁ ନେଇ ଭାରତର ତଦାନୀନ୍ତନ ନେତୃବର୍ଗଙ୍କ ସହିତ ପରିଚିତ କରାଇଥିଲେ । ଏପରିକି ଶ୍ରୀଯୁକ୍ତ ମହତାବ କେନ୍ଦ୍ରରେ ଶିଳ୍ପମନ୍ତ୍ରୀ ଥିବା ସମୟରେ ବିଦେଶରୁ ସାଇକେଲ ଆମଦାନୀପାଇଁ ବିଜୁବାବୁଙ୍କୁ ଲାଇସେନ୍‌ସ ଦେଇଥିବାରୁ ତଥା ତାହାର ଆମଦାନୀ ସମୟରେ ଚୋରା ବେପାର ହୋଇଥିବାର ଅଭିଯୋଗ ହେବାରୁ ଶ୍ରୀଯୁକ୍ତ ମହତାବଙ୍କୁ ନିନ୍ଦିତ ହେବାକୁ ପଡ଼ିଥିଲା ବୋଲି ସେତେବେଳେ ଶୁଣିବାକୁ ମିଳିଥିଲା । ସତକୁ ସତ ତାର ପରବର୍ତ୍ତୀ ସାଧାରଣ ନିର୍ବାଚନରେ ଶ୍ରୀଯୁକ୍ତ ମହତାବ କେନ୍ଦ୍ରରେ ମନ୍ତ୍ରୀ ହୋଇପାରିନଥିଲେ । ତେଣୁ ଶେଷରେ ମହାରାଷ୍ଟ୍ରରେ ରାଜ୍ୟପାଳ ହେଲେ ଓ ପରିଶେଷରେ ଶ୍ରୀଯୁକ୍ତ ନବକୃଷ୍ଣ ଚୌଧୁରୀ ଇସ୍ତଫା ଦେବାରୁ ପୁଣି ଓଡ଼ିଶାର ମୁଖ୍ୟମନ୍ତ୍ରୀ ହେଲେ । ଏ କାର୍ଯ୍ୟରେ ବିଜୁବାବୁଙ୍କର ସବୁଠାରୁ ବେଶି ହାତ ଥିଲା । ଏପରିକି ଗଣତନ୍ତ୍ର ଓ କଂଗ୍ରେସ୍‌ର ମିଳିତ ମନ୍ତ୍ରୀମଣ୍ଡଳ କରିବାକୁ ପ୍ରଧାନମନ୍ତ୍ରୀ ଶ୍ରୀଯୁକ୍ତ ନେହେରୁ ଅସମ୍ମତ ହେବାରୁ ତାଙ୍କୁ ମଧ୍ୟ ଏକମତ କରାଇବାରେ ବିଜୁବାବୁଙ୍କର ଅବଦାନ ଥିଲା । ଉଭୟଙ୍କ ମଧ୍ୟରେ ଏଭଳି ଘନିଷ୍ଠତା ଥିବା ସତ୍ତ୍ୱେ ନିଜର କୌଣସି ଟିକିଏ ସ୍ୱାର୍ଥରେ ବାଧା ଉପୁଜିବାରୁ ଉଭୟଙ୍କ ମଧ୍ୟରେ ବିବାଦ ଦେଖାଦେଲା । ଏହିସବୁ କାରଣ ଯୋଗୁ ୧୯୬୧ ନିର୍ବାଚନରେ ଡକ୍ଟର ମହତାବ ବିଧାନ ସଭାପାଇଁ ପ୍ରାର୍ଥୀ ହେଲେ ନାହିଁ । ଏହା ପୂର୍ବରୁ କୌଶଳୀ ବିଜୁବାବୁ କଂଗ୍ରେସ୍‌ର ସଭାପତି ଶ୍ରୀମତୀ ଇନ୍ଦିରା ଗାନ୍ଧୀଙ୍କ ସହାୟତା ଓ ଆଶିଷ ପାଇବାର ଚେଷ୍ଟାକରି ସଫଳତା ଲାଭ କରିଥିଲେ । ଏହିସବୁ କାରଣରୁ ପ୍ରଧାନମନ୍ତ୍ରୀ ପଣ୍ଡିତ ନେହେରୁଙ୍କ ସମର୍ଥନ ଲାଭକରି ୧୯୬୧ ଆରମ୍ଭରେ ବର୍ଷକ ପୂର୍ବରୁ ବିଧାନସଭା ଭାଙ୍ଗିଦେଇ ନିର୍ବାଚନ ଦାୟିତ୍ୱ ନିଜେ ଗ୍ରହଣ କଲେ । ନିର୍ବାଚନ ସମୟରେ ପ୍ରଚୁର ଅର୍ଥ ଓ ଯାନବାହନ ବଳରେ ସଂଖ୍ୟାଧିକ ଆସନ ଲାଭକରି ପ୍ରଧାନମନ୍ତ୍ରୀ ଶ୍ରୀଯୁକ୍ତ ନେହେରୁଙ୍କ ପ୍ରିୟପାତ୍ର ହୋଇପାରିଲେ ।

## ୧୯୬୧ ମଧ୍ୟବର୍ତ୍ତୀ ବିଧାନସଭା ନିର୍ବାଚନରେ ମୁଁ ତୃତୀୟଥରପାଇଁ ନିର୍ବାଚିତ

ପୂର୍ବରୁ ସାଧାରଣ ନିର୍ବାଚନଗୁଡ଼ିକରେ ସବୁବେଳେ ଲୋକସଭା ଓ ବିଧାନସଭା ଉଭୟପାଇଁ ନିର୍ବାଚନ ହେଉଥିଲା । ମାତ୍ର ଏଥର ନିର୍ଦ୍ଧାରିତ ସମୟ ପୂର୍ବରୁ ଓଡ଼ିଶା ବିଧାନସଭା ଭାଙ୍ଗିଯାଇଥିବାରୁ କେବଳ ମାତ୍ର ବିଧାନସଭାର ନିର୍ବାଚନ ହେଲା । ପୁଣି ଏ ନିର୍ବାଚନର ବିଶେଷତ୍ୱ ମଧ୍ୟ ଅନ୍ୟଦୃଷ୍ଟିରୁ ବିଶେଷ ଉଲ୍ଲେଖନୀୟ । ଏଥର ଶ୍ରୀଯୁକ୍ତ ହରେକୃଷ୍ଣ ମହତାବଙ୍କ ନେତୃତ୍ୱକୁ ବାଦଦେଇ କଂଗ୍ରେସର ଯୁବଗୋଷ୍ଠୀ ଜଣେ ନୂତନ ନେତା ଶ୍ରୀ ବିଜୁ ପଟ୍ଟନାୟକଙ୍କ ନେତୃତ୍ୱରେ ପରିଚାଳିତ ହୋଇ ପ୍ରକାଶ୍ୟ ଭାବରେ ନିର୍ବାଚନରେ ପ୍ରଚୁର ଅର୍ଥ ବ୍ୟୟ ମାଧ୍ୟମରେ ଜୟଯୁକ୍ତ ହେବାପାଇଁ ଯେଉଁସବୁ ଉପାୟ ଗ୍ରହଣ କଲେ ତାହା ନିର୍ବାଚନ ରଣାଙ୍ଗନରେ ଏକ କଳଙ୍କମୟ ବାତାବରଣ ସୃଷ୍ଟି କଲା ।

ଶ୍ରୀଯୁକ୍ତ ବିଜୁ ବାବୁ ପ୍ରତି ନିର୍ବାଚନ ମଣ୍ଡଳୀପାଇଁ ପ୍ରଚୁର ଅର୍ଥ ଯୋଗାଇ ଦେବାସହ ନୂଆ ଜିପ୍‌ମାନ ବାହାରୁ ଆଣି ଯୋଗାଇ ଦେବାରୁ କଂଗ୍ରେସ୍ ଦଳପାଇଁ ନିର୍ବାଚନ କାର୍ଯ୍ୟ ଅତି ଅନୁକୂଳ ହେଲା । ଏତଦ୍ ବ୍ୟତୀତ ନୂତନ ନେତୃତ୍ୱ ମଧ୍ୟ କଂଗ୍ରେସ୍ ତଥା ଜନସାଧାରଣଙ୍କ ମଧ୍ୟରେ ଏକ ନୂତନ ଆଶା ଓ ଉତ୍ସାହ ସୃଷ୍ଟି କରିପାରିଥିଲା । ଏପରି ଅବସ୍ଥାରେ ଗଣତନ୍ତ୍ର ଦଳ ବ୍ୟତୀତ ପ୍ରଜା ସୋସାଲିଷ୍ଟ ତଥା ଅନ୍ୟ ବିରୋଧିଦଳଗୁଡିକର କଂଗ୍ରେସ୍ ସହିତ ନିର୍ବାଚନ ରଣରେ ସମକକ୍ଷ ହେବାର ଆର୍ଥିକ ସମ୍ବଳ ନ ଥିଲା । ତଥାପି ନିର୍ବାଚନରେ ଅନ୍ୟ ବିରୋଧିଦଳଗୁଡିକର ସଂଖ୍ୟା ଯଥେଷ୍ଟ ହ୍ରାସ ପାଇଥିଲେ ହେଁ ଆମ ପ୍ରଜା ସୋସାଲିଷ୍ଟ ଦଳ ତାର ପୂର୍ବ ସ୍ଥିତାବସ୍ଥା ଅକ୍ଷୁର୍ଣ୍ଣ ରଖିବାରେ ସମର୍ଥ ହେଲା ଏବଂ ବିଧାନ ସଭାକୁ ପୂର୍ବପରି ସେଇ ମାତ୍ର ଦଶଜଣ ସଭ୍ୟ ନିର୍ବାଚିତ ହେଲେ । ଏଥର କିନ୍ତୁ କଂଗ୍ରେସ୍ ସର୍ବମୋଟ ୮୨ଟି ସ୍ଥାନ ପାଇ ଏକକ ସଂଖ୍ୟା ଗରିଷ୍ଠ ଦଳରେ ପରିଣତ ହେଲା । ଏହା ପୂର୍ବରୁ ଯେଉଁ ଦୁଇଟି ସାଧାରଣ ନିର୍ବାଚନ ହୋଇଥିଲା ସେଗୁଡିକରେ ଏପରି ଗରିଷ୍ଠତା ହାସଲ କରିବାକୁ ସମର୍ଥ ହୋଇ ପାରିନଥିଲା । କେବଳ ଅନ୍ୟମାନଙ୍କ ଅପେକ୍ଷା ସଂଖ୍ୟାଧିକ ହୋଇ ବିରୋଧିଦଳ ତଥା ସ୍ୱାଧୀନ ସଭ୍ୟଙ୍କ ସମର୍ଥନ ନେଇ ଶାସନ କାର୍ଯ୍ୟ ଚଳାଉଥିଲେ । ଏଥରର ଅବସ୍ଥା କିନ୍ତୁ ଅନ୍ୟ ପ୍ରକାରର । ଦଳ ସଂପୂର୍ଣ୍ଣ ସଂଖ୍ୟା ଗରିଷ୍ଠ । ସୁତରାଂ ଶ୍ରୀଯୁକ୍ତ ବିଜୁ ପଟ୍ଟନାୟକ ଗର୍ବ ଓ ଅହଂକାରରେ ଉତ୍‌ଫୁଲ୍ଲିତ । କେନ୍ଦ୍ରୀୟ ସ୍ତରରେ ତାଙ୍କର ପ୍ରତିପତ୍ତି ମଧ୍ୟ ଯଥେଷ୍ଟ ବଢ଼ିଗଲା । ମାତ୍ର ''ଅତି ଗର୍ବେ ହତ ଲଙ୍କା - ଅତି ମାନେ ଚ କୌରବାଃ'' ''ଅତି ସର୍ବତ୍ର ଗର୍ହିତମ୍''- ବିଜୁ ବାବୁ ବା ନୀତିରୁ ଶିକ୍ଷା ପାଆନ୍ତେ କିପରି । ତାଙ୍କର ଗର୍ବ ଓ ଅହମିକା ଏତେ ମାତ୍ରାରେ ବୃଦ୍ଧି ପାଇଲା ଯେ ଅଳ୍ପ କେତେବର୍ଷପରେ ତାଙ୍କର ପତନ ଘଟିଲା ।

## ତୃତୀୟଥରପାଇଁ ନିର୍ବାଚିତ, ବିଧାନସଭାର ନେତା

ଏଥର ନିର୍ବାଚନ ବେଳକୁ ଦ୍ୱୈତ ନିର୍ବାଚନ ମଣ୍ଡଳୀ ନରଖି ପ୍ରତ୍ୟେକ ନିର୍ବାଚନ ମଣ୍ଡଳୀକୁ ଏକକ ନିର୍ବାଚନ ମଣ୍ଡଳୀରେ ପରିଣତ କରାଗଲା । ମୋର ପୂର୍ବତନ ବୈଶିଙ୍ଗା ନିର୍ବାଚନ ମଣ୍ଡଳୀକୁ ଭାଙ୍ଗି ବୈଶିଙ୍ଗା ଓ ଖୁଣ୍ଟା ଦୁଇଟି ନିର୍ବାଚନ ମଣ୍ଡଳୀରେ ପରିଣତ କରାଗଲା । ଏଥି ପୂର୍ବରୁ ଦୁଇଟିଯାକ ନିର୍ବାଚନରେ ମୋତେ ହରାଇପାରି ନଥିବାରୁ  ଏଥର ମୋର ସଂଗଠନର ଦୁର୍ଗସ୍ୱରୂପ ବେତନଟୀ ଓ ବୈଶିଙ୍ଗା ଥାନା ଅଂଚଳକୁ ନେଇ ଗଠିତ ବୈଶିଙ୍ଗା ନିର୍ବାଚନ ମଣ୍ଡଳୀକୁ ସଂରକ୍ଷିତ କରାଯାଇ ଆଦିବାସୀ ବହୁଳ ଖୁଣ୍ଟା ନିର୍ବାଚନ ମଣ୍ଡଳୀକୁ ସାଧାରଣ ସ୍ଥାନ ଭାବରେ ଗ୍ରହଣ କରାଗଲା । ତେଣୁ ଆପଣା ବୈଶିଙ୍ଗା ନିର୍ବାଚନ ମଣ୍ଡଳୀରେ ମୋର ଜଣେ ଅତି ବିଶ୍ୱସ୍ତ ପୂର୍ବତନ ସହକର୍ମୀ ଶ୍ରୀଯୁକ୍ତ ଅର୍ଜୁନ ଚନ୍ଦ୍ର ପାତ୍ରଙ୍କୁ ପ୍ରଜା ସୋସାଲିଷ୍ଟ ଦଳ ତରଫରୁ ପ୍ରାର୍ଥୀରୂପେ ଛିଡା ହେବାପାଇଁ ଅନୁରୋଧ କରି ମୁଁ ନିଜେ ଖୁଣ୍ଟା ନିର୍ବାଚନ ମଣ୍ଡଳୀରୁ ପ୍ରାର୍ଥୀପତ୍ର ଦାଖଲ କଲି ।

ମୋତେ ପରାସ୍ତ କରିବାପାଇଁ କଂଗ୍ରେସ୍ ତରଫରୁ ବିଧିବଦ୍ଧ ପ୍ରଚେଷ୍ଟା ଆରମ୍ଭ ହୋଇଗଲା । ଏଣେ ମୁଁ ମୋ ନିର୍ବାଚନ ମଣ୍ଡଳୀସହିତ ବୈଶିଙ୍ଗା ନିର୍ବାଚନ ମଣ୍ଡଳୀର ମଧ୍ୟ ପ୍ରଚାର ଦାୟିତ୍ୱ ଗ୍ରହଣ କରିଥାଏ । କଂଗ୍ରେସ୍ ଦଳର ପ୍ରଚୁର ଅର୍ଥସାଙ୍ଗକୁ ବହୁ ସଂଖ୍ୟକ ଜିପ୍ ଗାଡ଼ିର ପ୍ରୟୋଗବେଳେ

ମୋର ସେହି ପୁରୁଣା ସାଇକେଲ ଖଣ୍ଡିକ ବା କେତେ । ଏ ସବୁସହିତ କଂଗ୍ରେସ୍‌ର ପ୍ରଚାରପାଇଁ ତଦାନୀନ୍ତନ ପ୍ରଧାନମନ୍ତ୍ରୀ ଶ୍ରୀଯୁକ୍ତ ପଣ୍ଡିତ ନେହେରୁଙ୍କୁ ଅଣାଇ ବୈଶିଙ୍ଗା ଓ ବେତନଟୀଠାରେ ଦୁଇଟି ସାଧାରଣ ସଭା କରାଗଲା । ପରିସ୍ଥିତିର ସମ୍ମୁଖୀନ ହେବାପାଇଁ ନିର୍ବାଚନର ଶେଷ ୧୫ଦିନ ପାଇଁ ମୁଁ ମଧ୍ୟ ଗୋଟିଏ ଜିପ୍ ଭଡ଼ାରେ ଆଣି ମୋର ପ୍ରଚାର ଅଭିଯାନ ଚଳାଇବାକୁ ବାଧ୍ୟ ହେଲି । ପଣ୍ଡିତ ନେହେରୁ ଭାରତର ପ୍ରଧାନମନ୍ତ୍ରୀ, ସେ ସବୁବେଳେ ଦୀଲ୍ଲୀରେ ରହିବେ, ମାତ୍ର ମୁଁ ଆପଣମାନଙ୍କର ପ୍ରତିବେଶୀ ଖୁଣ୍ଟାରୁ ଜିତିଲେ ବି ମୁଁ ଆପଣମାନଙ୍କ ସହିତ ବେତନଟୀରେ ରହିବି ଏବଂ ଆପଣମାନଙ୍କ କାମ ଆଗ କରିବି । ଏହି ପ୍ରତିଶ୍ରୁତି ପାଇ ଲୋକେ ଶ୍ରୀ ଅର୍ଜୁନ ପାତ୍ରଙ୍କୁ ଭୋଟଦେଲେ ଏବଂ ମୋର ଅଧ୍ୟବସାୟ ବଳରେ ମୁଁ ମଧ୍ୟ ଖୁଣ୍ଟା ନିର୍ବାଚନ ମଣ୍ଡଳୀରୁ ଜୟଯୁକ୍ତ ହେଲି । ଆମେ ଦୁହେଁଯାକ ବିଧାନସଭାକୁ ନିର୍ବାଚିତ ହୋଇଗଲୁ । ମାତ୍ର ଆମ ରାଜ୍ୟରେ ଏଥର ପ୍ରଜା ସୋସାଲିଷ୍ଟ ପାର୍ଟିର ଅନ୍ୟ ବିଶିଷ୍ଟ ନେତାମାନେ ପରାଜିତ ହେଲେ । ମୋତେ ବିଧାନସଭାରେ ପ୍ରଜାସୋସାଲିଷ୍ଟ ପାର୍ଟିର ନେତା ନିର୍ବାଚନ କରାଗଲା ।

ଏଥର ବିଜୁ ପଟ୍ଟନାୟକଙ୍କର ବାହାପିଆ, ପ୍ରଚୁର ଦମ୍ଭ, ଅଭିମାନ ଓ ଅହଂକାର ତଥା ଅହମିକା ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିବାକୁ ବିଧାନସଭାରେ ସେପରି କୌଣସି ଦକ୍ଷ ନେତା ନ ଥାଆନ୍ତି । ତେଣୁ ମୋତେ ପ୍ରଥମରୁ ହିଁ ଏଥିନିମିତ୍ତ ପ୍ରସ୍ତୁତ ହେବାକୁ ପଡ଼ିଲା ଏବଂ ପରବର୍ତ୍ତୀ ସମୟରେ ବିଭିନ୍ନ ଘଟଣାରୁ ଏଥିପାଇଁ ମୁଁ ହିଁ କେବଳ ଯୋଗ୍ୟ ବୋଲି ପ୍ରମାଣିତ ହୋଇପାରିଥିଲା । ବିଧାନ ସଭାରେ ଶ୍ରୀଯୁକ୍ତ ବିଜୁ ପଟ୍ଟନାୟକଙ୍କର ପ୍ରଥମ ଦିନର ଭାଷଣ ଆଜି ବି ମୋର ମନେପଡ଼େ । ସେଦିନ ବିରୋଧୀ ଦଳର ନେତା ଶ୍ରୀଯୁକ୍ତ ରାଜେନ୍ଦ୍ର ନାରାୟଣ ସିଂଦେଓ ଓ ଅନ୍ୟ ସମସ୍ତ ବିରୋଧି ଦଳର ସଭ୍ୟମାନଙ୍କୁ ଏପରି ତାଚ୍ଛଲ୍ୟ ଓ ଅପମାନସୂଚକ ଭାଷା ପ୍ରୟୋଗ କରିଲେ ଯାହା ସମସ୍ତଙ୍କ ପକ୍ଷରେ ଅସହ୍ୟ ହୋଇପଡ଼ିଥିଲା । ମୁଁ ସେଦିନ ତଦନୁରୂପ ଭାଷା ପ୍ରୟୋଗକରି କହିଥିଲି ‘‘ବିଜୁ ବାବୁ ଗାଁ ଗାଁରେ ଟାଇଲ ଘର ଓ ପାଣିକଳ ଯୋଗାଇ ଦେବାର ପ୍ରଚାରକରି ଭୋଟରେ ଜୟଯୁକ୍ତ ହୋଇଛନ୍ତି ଏବଂ ଯଦି ତାଙ୍କ ଶାସନକାଳ ମଧ୍ୟରେ ଏ କାର୍ଯ୍ୟ କରିବାକୁ ଅସମର୍ଥ ହୁଅନ୍ତି ତେବେ ତାଙ୍କ ବେକରେ ଗାମୁଛା ପକାଇ ମୁଁ ତାହା ଆଦାୟ କରିବି । ବୁଢ଼ୁ ପଟ୍ଟନାୟକଙ୍କର ଏପରି ପ୍ରଚାର ଗାଲୁଆର ବାରବାଟୀ ଚାଷସହିତ ସମାନ । ତେଣୁ ପ୍ରଥମ ଦିନରୁ ହିଁ ମୁଁ ବିଜୁ ପଟ୍ଟନାୟକଙ୍କୁ ଯଥାର୍ଥଭାବରେ ସମ୍ମୁଖୀନ ହେବାର ସମର୍ଥ ବୋଲି ପ୍ରଶଂସାର୍ହ ହୋଇପାରିଥିଲି । ଅନ୍ୟପକ୍ଷରେ ବିରୁଦ୍ଧଦଳର ନେତା ଶ୍ରୀଯୁକ୍ତ ରାଜେନ୍ଦ୍ର ନାରାୟଣ ସିଂହଦେଓ ଜଣେ ଅତି ଭଦ୍ର ଓ ଶାନ୍ତ ପ୍ରକୃତିର ବ୍ୟକ୍ତି ଥିଲେ । ଏହା ପୂର୍ବବର୍ତ୍ତୀ ମିଳିତ ସରକାରରେ ସେ ଅର୍ଥମନ୍ତ୍ରୀ ଥିବା ହେତୁ ତାଙ୍କୁ ଲକ୍ଷ୍ୟ କରି ପ୍ରଥମ ଦିନ ବିଜୁ ପଟ୍ଟନାୟକ କହିଲେ "Here is a man R.N.Singh Deo who doesnot know A.B.C. of Finance" ବିଜୁ ବାବୁ ଏସବୁ ଦମ୍ଭୋକ୍ତିର ସେଦିନ ମୁଁ କେବଳ ସ୍ୱର ଉତ୍ତୋଳନ କରିବାକୁ ସମର୍ଥ ହୋଇଥିଲି । ଏ ସବୁର ପରିଣାମରେ ବିଜୁବାବୁ ମୁଖ୍ୟମନ୍ତ୍ରୀ ଥିବା ପର୍ଯ୍ୟନ୍ତ ଏବଂ ମୁଖ୍ୟମନ୍ତ୍ରୀ ପଦ ପରିତ୍ୟାଗ କଲାପରେ ମଧ୍ୟ ଆମ ଉଭୟଙ୍କ ମଧ୍ୟରେ ତିକ୍ତତା ଏପରି ବଢ଼ିଯାଇଥିଲା ଯେ ଆମେ ଦୁହେଁ ବିଧାନସଭା ଗୃହରେ ପ୍ରବେଶ କରିବାର ପାଞ୍ଚମିନିଟ୍ ନ ଯାଉଣୁ

କିଛିନା କିଛି ଆଳରେ ଉଭୟଙ୍କ ମଧ୍ୟରେ ଦ୍ୱନ୍ଦ୍ୱ ଆରମ୍ଭ ହୋଇଯାଉଥିଲା । ଶ୍ରୀଯୁକ୍ତ ବୀରେନ୍ ମିତ୍ର ମୁଖ୍ୟମନ୍ତ୍ରୀ ଥିବାବେଳେ ୧୯୬୪ ମସିହାରେ ରାଉରକେଲାଠାରେ ଘଟିଥିବା ସାଂପ୍ରଦାୟିକ ହିଂସାକାଣ୍ଡ ନେଇ ବିଧାନସଭାରେ ବିଜୁ ପଟ୍ଟନାୟକଙ୍କ ସହିତ ଦୀର୍ଘ ଏକସପ୍ତାହ ବ୍ୟାପୀ ତୁମୁଳ ବାଦାନୁବାଦ ଚାଲିଲା । ଦିନକର ଘଟଣା- ସେ ଅତି ଉତ୍ତେଜିତ ହୋଇ ମୋତେ ଆହ୍ୱାନ କଲେ, ''ଆରେ- ବାହାରେ ଦେଖାଦେଖି ହେବା'' । ଏହାପରେ ଉଭୟେ ବିଧାନସଭା ଛାଡି ଲବିକୁ ଚାଲିଆସିଲୁଁ । ବିଜୁବାବୁ ମୋତେ ଅତି ଅଶ୍ଳୀଳ ଭାଷାରେ ଗାଳିଦେଇ ପ୍ରଥମେ ଗୋଇଠା ମାରିବାକୁ ଗୋଡ଼ ଉଠାଇଲାରୁ ମୁଁ ମଧ୍ୟ ତାଙ୍କ ବେକ ଧରିପକାଇଲି । ଏହାର ପରିଣାମ ଅତ୍ୟନ୍ତ ଗୁରୁତର ଓ ଅଶୋଭନୀୟ ହୋଇଥାନ୍ତା । କିନ୍ତୁ ଆମ ପଛେ ପଛେ ବିଧାନସଭାର ଅନ୍ୟ ସଭ୍ୟମାନେ ଆସି ପରିସ୍ଥିତିର ସମାଧାନ କରିଥିଲେ । ତା ନ ହୋଇଲେ ବିଧାନସଭା ଇତିହାସରେ ଏହା ଏକ କଳଙ୍କମୟ ଘଟଣା ହୋଇଥାଆନ୍ତା ।

୧୯୬୩ ମସିହାରେ କାମରାଜ ଯୋଜନାନୁସାରେ ବିଜୁ ପଟ୍ଟନାୟକଙ୍କ ସମେତ ଅନ୍ୟ କେତକ ରାଜ୍ୟର ମୁଖ୍ୟମନ୍ତ୍ରୀ ତଥା କେନ୍ଦ୍ରମନ୍ତ୍ରୀଙ୍କୁ ମନ୍ତ୍ରୀପଦରୁ ଓହ୍ଲାଇଯିବାକୁ କେନ୍ଦ୍ର ସରକାରଙ୍କ ନିର୍ଦ୍ଦେଶ ହେଲା । ତଦନୁସାରେ ୧୯୬୩ ମସିହାର ଅକ୍ଟୋବର ମାସରେ ବିଜୁବାବୁଙ୍କୁ ମୁଖ୍ୟମନ୍ତ୍ରୀ ପଦତ୍ୟାଗ କରିବାକୁ ପଡ଼ିଲା ଓ ତାଙ୍କ ସ୍ଥାନରେ ଶ୍ରୀଯୁକ୍ତ ବୀରେନ୍ ମିତ୍ର ହେଲେ ମୁଖ୍ୟମନ୍ତ୍ରୀ । ଏହି ସମୟମଧ୍ୟରେ ବିଜୁ ବାବୁ ଶିଳ୍ପାୟନ ନାମରେ ରାଜ୍ୟର ବିଭିନ୍ନ ସ୍ଥାନରେ ଯେଉଁ କେତୋଟି ଶିଳ୍ପ ପ୍ରତିଷ୍ଠା କରିଥିଲେ ସେଗୁଡ଼ିକ ଅଳ୍ପ କେତେଦିନ ମଧ୍ୟରେ ଭାଙ୍ଗିପଡ଼ିଲା । କିନ୍ତୁ ସେହି ସମୟମଧ୍ୟରେ ନିର୍ମିତ ପାରାଦ୍ୱୀପ ବନ୍ଦର ସବୁଦିନପାଇଁ ଓଡ଼ିଶାର ଏକ କୀର୍ତ୍ତି ହୋଇରହିଗଲା । ଏଥିସହିତ ସଂଲଗ୍ନ ହୋଇଥିବା Express Highway ଏକ ପ୍ରଧାନ ସଡ଼କ ହୋଇଥିଲେ ହେଁ ଏହି ପଥଦେଇ ଲୁହାପଥର ଚାଲାଣ କରିବାର ଉଦ୍ଦେଶ୍ୟ ବ୍ୟୟବହୁଳ ହେତୁ ଠିକ୍‌ଭାବରେ ସାଧିତ ହୋଇପାରିଲାନାହିଁ ।

ଶ୍ରୀଯୁକ୍ତ ବିଜୁ ପଟ୍ଟନାୟକ ଓ ଶ୍ରୀଯୁକ୍ତ ବୀରେନ୍ ମିତ୍ରଙ୍କ ମୁଖ୍ୟମନ୍ତ୍ରୀତ୍ୱ କାଳରେ ସରକାରଙ୍କ ବିରୁଦ୍ଧରେ ତିନିଥର ଅନାସ୍ଥା ପ୍ରସ୍ତାବ ଆଗତ ହୋଇଥିଲା । ଥରକର ଘଟଣା, ସେଦିନ ବିଧାନସଭାରେ ଗୋଟିଏ ଅର୍ଥବିଲ୍ ଆଗତ ହୋଇଥାଏ । ଅର୍ଥବିଲ୍ ଥିବା ହେତୁରୁ ଅନାସ୍ଥା ପ୍ରସ୍ତାବ ଉପରେ ଆଲୋଚନା ହୋଇପାରିବ ନାହିଁ ବୋଲି ଆମେ ସେଥିପାଇଁ ପ୍ରସ୍ତୁତ ନଥାଉଁ । ମାତ୍ର ସେଦିନ ଅଧ୍ୟକ୍ଷ ଅନାସ୍ଥା ପ୍ରସ୍ତାବ ଉପରେ ଆଲୋଚନା ପାଇଁ ହଠାତ୍ ଅନୁମତି ଦେବାଫଳରେ ଆମେ ବିରୁଦ୍ଧ ଦଳର ଲୋକେ ବଡ଼ ଅସୁବିଧାର ସମ୍ମୁଖୀନ ହେଲୁଁ । ସାଧାରଣତଃ ମନ୍ତ୍ରୀମଣ୍ଡଳ ବିରୁଦ୍ଧରେ ଅବିଶ୍ୱାସ ପ୍ରସ୍ତାବ ପାଇଲେ ଅଧ୍ୟକ୍ଷ ଉଭୟ ସରକାରୀ ଓ ବିରୋଧୀ ଦଳର ମତନେଇ ଆଲୋଚନାପାଇଁ ଦିନଧାର୍ଯ୍ୟ କରିଥାଆନ୍ତି । ସେଥିପାଇଁ ଆମେ କେହି ପ୍ରସ୍ତୁତ ନଥିଲୁ । ତାଛଡା ବିରୋଧୀ ଦଳର ନେତା ଶ୍ରୀଯୁକ୍ତ ସିଂହଦେଓ ଅସୁସ୍ଥତା ହେତୁ ସେଦିନ ବିଧାନ ସଭାରେ ଅନୁପସ୍ଥିତ ଥାଆନ୍ତି । ଏପରି ସୁଯୋଗରେ ଗୋଳମାଳ ସୃଷ୍ଟିକରି ଆମର ନୈତିକବଳ ଭାଙ୍ଗିଦେବା ପାଇଁ ଅବିଶ୍ୱାସ ପ୍ରସ୍ତାବ ଉପରେ ଆଲୋଚନା ଆରମ୍ଭ କରାଗଲା । ଆଲୋଚନା ବେଳେ ଗଣ୍ଡଗୋଳ ସୃଷ୍ଟିକରି ବିରୋଧୀଦଳ ଗୁଡ଼ିକର ମନୋବଳ ଭାଙ୍ଗିଦେବାର ଅପଚେଷ୍ଟା ମଧ୍ୟ କରାଗଲା । ସାଧାରଣତଃ ଏପରି ଆଲୋଚନା

ବିରୋଧୀ ଦଳରୁ ଆରମ୍ଭ ହୁଏ ଏବଂ ବିରୋଧୀ ଦଳର ନେତା ହିଁ ଆଲୋଚନା ଆରମ୍ଭ କରିଥାଆନ୍ତି । ମାତ୍ର ସେଦିନ ଶ୍ରୀଯୁକ୍ତ ସିଂହଦେଓ ଅନୁପସ୍ଥିତ ଥିବାରୁ ତାଙ୍କ ଦଳର ଅନ୍ୟତମ ବିଶିଷ୍ଟ ସଭ୍ୟ ଶ୍ରୀଯୁକ୍ତ ହରିହର ପଟେଲ ଆଲୋଚନା ଆରମ୍ଭ କଲେ । ଆଲୋଚନାପାଇଁ ପ୍ରସ୍ତୁତ ହେଲି ଏବଂ ଦୁଇଘଣ୍ଟାପରେ ବିଧାନସଭାର ବିଶ୍ରାମ ସମୟ ଅତିବାହିତ ହେବା ପରେ ପରେ ସଭାଗୃହରେ ଉପସ୍ଥିତ ହେଲି । ଆଲୋଚନା ବେଳେ ସରକାରୀ ଦଳପକ୍ଷରୁ ଶ୍ରୀଯୁକ୍ତ ବିଜୁ ପଟ୍ଟନାୟକ, ଶ୍ରୀଯୁକ୍ତ ବୀରେନ୍ ମିତ୍ର ଓ ଶ୍ରୀଯୁକ୍ତ ନୀଳମଣି ରାଉତରାୟ ପ୍ରମୁଖ ବାଧାସୃଷ୍ଟି କରିବାରୁ ଶ୍ରୀ ପଟେଲ ଅତ୍ୟନ୍ତ ମ୍ରିୟମାଣ ହୋଇପଡ଼ିଥାଆନ୍ତି ଓ ସରକାରୀଦଳ ଅତ୍ୟନ୍ତ ଉତ୍ସାହିତ ହୋଇପଡ଼ିଥିବାର ଲକ୍ଷ୍ୟକଲି ।

ଶ୍ରୀଯୁକ୍ତ ପଟେଲଙ୍କ ପରେ ମୋର ପାଳି ପଡ଼ିଲା । ମୁଁ କହିବାକୁ ଆରମ୍ଭ କଲାମାତ୍ରେ ଉପରୋକ୍ତ ତିନିଜଣଯାକ ସଭ୍ୟ ଗୋଳମାଳ ଆରମ୍ଭ କରିଦେଲେ । ମାତ୍ର ଏଥିରେ ମୁଁ ବିଚଳିତ ନହୋଇ ଶ୍ରୀ ପଟେଲଙ୍କ ପରି ବସିପଡ଼ିଲି ନାହିଁ, ବରଂ ଅଧିକ ଉତ୍ସାହିତ ହୋଇ କହିଲି ''ମୁଁ ହରିହର ପଟେଲ ନୁହେଁ, ପ୍ରସନ୍ନ କୁମାର ଦାସ ଏହା ଜାଣି ରଖିବା ଉଚିତ ।'' ତେବେବି ଗୋଳମାଳ ବନ୍ଦ ନ କରିବାରୁ ମୁଁ ଅଧକ୍ଷଙ୍କୁ ଲକ୍ଷ୍ୟକରି କହିଲି ''ଆପଣ ଯଦି ମୋ କହିବାବେଳେ ଏମାନଙ୍କୁ ଗୋଳମାଳ କରିବାରୁ ବନ୍ଦ କରି ମୋତେ ସୁରକ୍ଷା ନ ଦେବେ ପରଦିନ ମୁଖ୍ୟମନ୍ତ୍ରୀ କହିବାବେଳେ ଏହି ପରମ୍ପରାର ସୁଯୋଗ ନେଇ ତାଙ୍କୁ ଆଦୌ କୁହାଇ ଦେବି ନାହିଁ ।'' ଏହାପରେ ଆଉ କେହି ଗଣ୍ଡଗୋଳ କରିବାକୁ ସାହସ କଲେ ନାହିଁ । ମୁଁ ମୋର ଦୀର୍ଘ ଦେଢ଼ଘଣ୍ଟାଧରି ଭାଷଣରେ ସରକାରୀ ଦୁର୍ନୀତି ସଂପର୍କରେ ବିଶଦ ଆଲୋଚନା ଆରମ୍ଭ କରିଦେଲି । ଶ୍ରୀ ବିଜୁ ପଟ୍ଟନାୟକ ଓ ଶ୍ରୀ ବୀରେନ୍ ମିତ୍ର ମୁଖ୍ୟମନ୍ତ୍ରୀ ଓ ଉପମୁଖ୍ୟମନ୍ତ୍ରୀ ଥାଇ ସରକାରୀ ଆବଶ୍ୟକତା ନଥିଲାବେଳେ ଉଭୟଙ୍କ ସ୍ତ୍ରୀଙ୍କ ଠାରୁ ଅଗ୍ରିମ ମୂଲ୍ୟଦେଇ ଶ୍ରୀ ପଟ୍ଟନାୟକଙ୍କ କାରଖାନାରୁ ବହୁ ମୂଲ୍ୟର ଲୁହାପାଇପ୍ କିଣି ସରକାରୀ ଅର୍ଥର ଅପବ୍ୟୟ କରାଯାଇଥିବାର ଏକ ଗୁରୁତର ଦୁର୍ନୀତି ଅଭିଯୋଗ ବିଧାନସଭାରେ ଉପସ୍ଥାପନ କଲି । ମୋର ଆଲୋଚନା ଫଳରେ ବିଧାନସଭାର ବାତାବରଣ ସଂପୂର୍ଣ୍ଣ ଓଲଟିଗଲା । ବିରୋଧୀଦଳ ଉତ୍ସାହିତ ହେବାରୁ ସରକାରୀଦଳ ମ୍ରିୟମାଣ ହୋଇପଡ଼ିଲେ । ସେଦିନ ସମସ୍ତେ ମୋର ଯୋଗ୍ୟତା ଓ ବାଗ୍ମିତାର ପରିଚୟ ପାଇପାରିଲେ । ବିରୋଧୀ ଦଳର ସମ୍ମାନ ଯଥାର୍ଥ ଭାବରେ ରକ୍ଷା ହୋଇପାରିଥିବାରୁ ସାମ୍ବାଦିକ ବନ୍ଧୁମାନେ ମୋତେ ସମ୍ବର୍ଦ୍ଧନା ଜଣାଇଲେ । ତହିଁ ପରଦିନ ଅନାସ୍ଥା ପ୍ରସ୍ତାବର ଆଲୋଚନାର ଉତ୍ତର ଦେବା ସମୟରେ ମୁଖ୍ୟମନ୍ତ୍ରୀ ବିଜୁ ପଟ୍ଟନାୟକଙ୍କୁ ବାଧା ସୃଷ୍ଟିକରି ହନ୍ତସନ୍ତ କରିପକାଇଲି ।

## ମୁଖ୍ୟମନ୍ତ୍ରୀ ବିଜୁ ପଟ୍ଟନାୟକଙ୍କ ବିରୁଦ୍ଧରେ ଦୁର୍ନୀତି ଅଭିଯୋଗ

ଶ୍ରୀଯୁକ୍ତ ବିଜୁ ପଟ୍ଟନାୟକ ମୁଖ୍ୟମନ୍ତ୍ରୀ ଓ ଶ୍ରୀଯୁକ୍ତ ବିରେନ୍ ମିତ୍ର ଉପମୁଖ୍ୟମନ୍ତ୍ରୀ ଥିବା ସମୟରେ ସରକାରୀ କ୍ଷେତ୍ରରେ ତଥା ମନ୍ତ୍ରୀମଣ୍ଡଳ ମଧ୍ୟରେ ଦୁର୍ନୀତି ଚରମ ଅବସ୍ଥାକୁ ଆସିଯାଇଥିଲା । ସେତେବେଳେ ପାରାଦ୍ୱୀପଠାରେ ଏକ ବୃହତ୍ ବନ୍ଦରର ନିର୍ମାଣ କାର୍ଯ୍ୟ ଚାଲିଥାଏ । ସୁତରାଂ ସେଠାରେ ଅନେକଗୁଡ଼ିଏ ଘର ତିଆରି ହେଉଥାଏ । ସେତେବେଳ ପର୍ଯ୍ୟନ୍ତ ବନ୍ଦରର

ନିର୍ମାଣ କାର୍ଯ୍ୟ ସଂପୂର୍ଣ୍ଣଭାବରେ ରାଜ୍ୟ ସରକାରଙ୍କ ହାତରେ ରହିଥିଲା ଏବଂ ଏହା ମଧ୍ୟ ମୁଖ୍ୟମନ୍ତ୍ରୀଙ୍କ ନିଜ ବିଭାଗର ଅନ୍ତର୍ଭୁକ୍ତ ଥିଲା । ଗୃହ ନିର୍ମାଣ କାର୍ଯ୍ୟକୁ ତ୍ୱରାନ୍ୱିତ କରିବାପାଇଁ କେତେଗୁଡିଏ ଲୁହାପାଇପ୍ ଅଣାଯିବାର ସ୍ଥିର କରାଗଲା । ସେତେବେଳେ ବିଜୁ ପଟ୍ଟନାୟକଙ୍କର ଏକ ଟ୍ୟୁବ୍ (ଲୁହା ଟ୍ୟୁବ୍) କାରଖାନା ତାଙ୍କ ସ୍ତ୍ରୀ ଶ୍ରୀମତୀ ଜ୍ଞାନ ପଟ୍ଟନାୟକଙ୍କ ନାମରେ ଥିଲା । ଶ୍ରୀଯୁକ୍ତ ବିରେନ ମିତ୍ରଙ୍କ ସ୍ତ୍ରୀ ଉକ୍ତ କାରଖାନାର ଉତ୍ପାଦନ ଓ ବିକ୍ରୟ ଏଜେଣ୍ଟ ଥିଲେ । ଉଭୟ ପୁରୁଣା ବନ୍ଧୁ ଓ ସହକର୍ମୀ ଥିବାରୁ ବୀରେନ୍ ମିତ୍ରଙ୍କୁ ଆର୍ଥିକ ସହାୟତା ଉଦ୍ଦେଶ୍ୟରେ ବିଜୁ ପଟ୍ଟନାୟକ ଏପରି ବ୍ୟବସ୍ଥା କରିଥିଲେ । ଉକ୍ତ କାରଖାନାଟିକୁ ସେତେବେଳେ ଭାରତବର୍ଷରେ ସବୁଠାରୁ ବୃହତ୍ ବୋଲି କୁହାଯାଉଥିଲା । ପାରାଦ୍ୱୀପ ବନ୍ଦରଠାରେ ଗୃହନିର୍ମାଣ ପାଇଁ ଆବଶ୍ୟକ ସମସ୍ତ ଲୁହା ପାଇପ୍ ଶ୍ରୀମତୀ ଜ୍ଞାନ ପଟ୍ଟନାୟକଙ୍କ କାରଖାନାରୁ ବିନା ଟେଣ୍ଡରରେ କିଣିବାପାଇଁ ଆଲୋଚନା କରି ନିଜେ ମୁଖ୍ୟମନ୍ତ୍ରୀ ଓ ଉପମୁଖ୍ୟମନ୍ତ୍ରୀ ହିଁ ସ୍ଥିର କଲେ । ଏଥିପାଇଁ ଟେଣ୍ଡର ମଗାଯାଇନଥିବାରୁ ମନ ଇଚ୍ଛା ଦର ଧାର୍ଯ୍ୟକରି ଅତି ଉଚ୍ଚାଦରରେ କିଣାଯିବାର ସ୍ଥିର କରାଗଲା । ଖାଲି ସେତିକି ନୁହେଁ ଆବଶ୍ୟକୀୟ ସମସ୍ତ ଲୁହାପାଇପର ମୋଟ ଧାର୍ଯ୍ୟ ମୂଲ୍ୟର ଶତକଡ଼ା ୯୦ଭାଗ ଅର୍ଥ ଅଗ୍ରିମ ଭାବରେ ସରକାରୀ ତହବିଲରୁ ତାଙ୍କୁ ଯୋଗାଇ ଦିଆଗଲା । ଆଶ୍ଚର୍ଯ୍ୟର ବିଷୟ ଯେ ସେତେବେଳେ ଉକ୍ତ କାରଖାନାରେ ଅତି ଅଳ୍ପ ପରିମାଣର ଲୁହା ପାଇପ୍ ଥିଲା । ପରେ ଏହି ଅଗ୍ରିମ ଅର୍ଥପାଇଁ ପାଇପ୍ ତିଆରି ହେଲା ଏବଂ ଥର ଥର କରି ପାରାଦ୍ୱୀପଠାରେ ଯୋଗାଇ ଦିଆଗଲା ଏବଂ ଏସବୁ ମାଲ ଆବଶ୍ୟକ ପରିମାଣଠାରୁ ବହୁ ଅଧିକ ହୋଇଗଲା । ଏସବୁ ସାମଗ୍ରୀର ମୂଲ୍ୟ ମୂଳ ଧାର୍ଯ୍ୟ ଦର ଅନୁସାରେ ଦିଆଯାଇଛି । ଏ ବ୍ୟବସାୟରେ ଶ୍ରୀମତୀ ପଟ୍ଟନାୟକ ଯେପରି ମୋଟା ମୂଲ୍ୟ ପାଇଛନ୍ତି, କିଛି ନ କରି ଶ୍ରୀମତୀ ମିତ୍ର ମଧ୍ୟ ସେହିପରି ବେଶ୍ ଲାଭ ଉଠାଇଛନ୍ତି ।

ସାଧାରଣତଃ ଲୁଣା ଜଳବାୟୁରେ ବିଶେଷ କରି ସମୁଦ୍ର ତୀରବର୍ତ୍ତୀ ସ୍ଥାନମାନଙ୍କରେ ଲୁହା ଜିନିଷ କଳଙ୍କି ଲାଗିଯାଏ ଓ ଶୀଘ୍ର ନଷ୍ଟ ହୋଇଯାଏ । ପାରାଦ୍ୱୀପ ସେହିପରି ଏକ ସ୍ଥାନ ହୋଇଥିବାରୁ ନିର୍ମାଣ ଉଦ୍ଦେଶ୍ୟରେ ଏଠାକୁ ଯୋଗାଇ ଦିଆଯାଇଥିବା ବହୁ ପାରିମାଣର ଲୁହା ପାଇପ୍‌ଗୁଡ଼ିକ ଖରାବର୍ଷାରେ ପଡ଼ି ନଷ୍ଟ ହୋଇଗଲା ଅଥଚ ଏ ସବୁର ମୂଲ୍ୟ ଆଗରୁ ସରକାର ଦେଇସାରିଛନ୍ତି । ଅନ୍ୟ କାହାଠାରୁ କିଣାଯାଇଥିଲେ ସରକାରୀ ନିୟମାନୁସାରେ ଟେଣ୍ଡର ମଗାଯାଇ ପ୍ରକୃତ ଆବଶ୍ୟକତାକୁ ବିଚାର କରି ତିଆରି କାମ ଚାଲୁଥିବା ବେଳେ ଆବଶ୍ୟକ ପରିମାଣର ମାଲ ଯୋଗାଯାଇଥାଆନ୍ତା ଓ ତଦ୍ୱାରା ସେଗୁଡିକ ନଷ୍ଟ ହୋଇ ନଥାନ୍ତା ବା ସରକାରୀ ଅର୍ଥର ଅପଚୟ ହୋଇ ନଥାନ୍ତା । ଯେହେତୁ ସ୍ୱୟଂ ମୁଖ୍ୟମନ୍ତ୍ରୀ ଓ ଉପମୁଖ୍ୟମନ୍ତ୍ରୀ ଏଥିରେ ସଂପୃକ୍ତ ତେଣୁ ସରକାରୀ ବିଭାଗ ତରଫରୁ ମଧ୍ୟ କୌଣସି ଆପତ୍ତି ଉଠିଲା ନାହିଁ । ସେହିପରି ବଡ଼ବିଲରେ ଥିବା ବିଜୁ ପଟ୍ଟନାୟକଙ୍କର କଳିଙ୍ଗ କାରଖାନା ଅତି ଉଚ୍ଚମୂଲ୍ୟଦେଇ ସରକାର ନିଜେ କିଣି ଥିଲେ ।

ମୁଁ ବିଧାନସଭାରେ ଉକ୍ତ ଅନାସ୍ଥା ପ୍ରସ୍ତାବ ଆଲୋଚନା ସମୟରେ ଅନର୍ଗଳଭାବରେ ସରକାର ତଥା ମୁଖ୍ୟମନ୍ତ୍ରୀଙ୍କ ଦୁର୍ନୀତି ଅଭିଯୋଗ କଲାବେଳେ ଏହି ଘଟଣାମାନ ଅତି ସ୍ପଷ୍ଟ ଓ

ନିର୍ଭିକଭାବରେ ଉଭୟ ବିଜୁ ପଟ୍ଟନାୟକ ଓ ବୀରେନ୍ ମିତ୍ରଙ୍କ ଉପସ୍ଥିତିରେ ସେମାନଙ୍କୁ ଲକ୍ଷ୍ୟକରି କହୁଥିଲାବେଳେ ସମସ୍ତ ଗୃହ ଓ ଦର୍ଶକମଣ୍ଡଳୀ ସ୍ତମ୍ଭୀଭୂତ ହୋଇ ଶୁଣୁଥିଲେ । ତେବେ କିଛି ସମୟପରେ କଂଗ୍ରେସ୍ ଦଳର ଜଣେ ପୁରୁଣା ସଭ୍ୟ ଅଧକ୍ଷ ଶ୍ରୀଯୁକ୍ତ ଲିଙ୍ଗରାଜ ପାଣିଗ୍ରାହୀଙ୍କ ଦୃଷ୍ଟି ଆକର୍ଷଣ କରି ଏକ ପ୍ରଶ୍ନ ଉଠାଇ କହିଲେ, ''ମାନ୍ୟବର ସଭ୍ୟ ବିଧାନସଭାର ସଭ୍ୟ ନଥିବା ଦୁଇଜଣ ସମ୍ମାନନୀୟା ମହିଳାଙ୍କ ବିରୁଦ୍ଧରେ ଏଭଳି ଅଭିଯୋଗ ଶିଷ୍ଟାଚାରହୀନ ଓ ନିୟମ ବିରୁଦ୍ଧ'' । ଏହା ଶୁଣି ମୁଁ ସଙ୍ଗେ ସଙ୍ଗେ ଅତି ନମ୍ରଭାବରେ ଅଧକ୍ଷଙ୍କୁ କହିଲି, ''ସାର୍ ଭଦ୍ରଲୋକଙ୍କ ଘରର ମହିଳାମାନେ କେବେ ଯାଇ ବାହାରେ ବୁଲି ବ୍ୟବସାୟ କରନ୍ତି ନାହିଁ, କିମ୍ବା ତାଙ୍କୁ କହିବାକୁ ଦିଆଯାଏ ନାହିଁ, ମାତ୍ର ଏ କ୍ଷେତ୍ରରେ ସେମାନଙ୍କୁ ବ୍ୟବସାୟ କରିବାପାଇଁ ବାହାରକୁ ଛାଡ଼ିଦିଆଗଲା ସେମାନେ ମଧ ରୋଜଗାର କରି ଘରକୁ ପଇସା ଆଣିଲେ, ଏଥିରେ ସେମାନଙ୍କର ସମ୍ମାନ ଗଲା ନାହିଁ ବା ତାଙ୍କୁ ଲାଜ ଲାଗିଲା ନାହିଁ, ଅଥଚ ମୁଁ ଏ ଘଟଣାଟା ଗୃହରେ ପ୍ରକାଶ କରିବା ଶିଷ୍ଟାଚାରହୀନ ହୋଇଗଲା । ମୋର ଏହି ଦୃଢ଼ ଉତ୍ତର ପରେ ସମସ୍ତେ ଗୃହ ନିସ୍ତବ୍ଧ ହୋଇଗଲା । ଶ୍ରୀ ବିଜୁ ପଟ୍ଟନାୟକ ବା ଶ୍ରୀ ବୀରେନ୍ ମିତ୍ର ଏ ସମସ୍ତ ଅଭିଯୋଗ ଶୁଣି ମଧ ତହିଁର ପ୍ରତିବାଦ କରିବାକୁ କେହି ହେଲେ ସାହସ କଲେ ନାହିଁ । ତେଣୁ ଏ ଗୁରୁତର ଅଭିଯୋଗ ସତ୍ୟ ବୋଲି ସମସ୍ତଙ୍କର ପ୍ରତୀତ ହେଲା । ଏ ସମସ୍ତ ଆଲୋଚନା ସେ ବର୍ଷର ବିଧାସଭାର ବିବରଣୀରେ ଲିପିବଦ୍ଧ ହୋଇଛି ଓ ବିଧାନସଭା ଅଧକ୍ଷ ମଧ ତାହା ମଞ୍ଜୁର କରିଛନ୍ତି । ତହିଁ ପରଦିନ ସରକାରଙ୍କ ପକ୍ଷରୁ ଉତ୍ତରଦେବା ବେଳକୁ ଶ୍ରୀ ବିଜୁ ପଟ୍ଟନାୟକ ମୋତେ ଲକ୍ଷ୍ୟକରି ଅଧକ୍ଷଙ୍କ ଜରିଆରେ ଏକ ପ୍ରଶ୍ନ କଲେ, ''ଯଦି ଏହି ଅଭିଯୋଗ ପ୍ରମାଣ ନ ହୁଏ, ତେବେ ମାନ୍ୟବର ସଭ୍ୟ ବିଧାନସଭାରୁ ଇସ୍ତଫା ଦେବେକି ? ମୁଁ ତହିଁର ଉତ୍ତରରେ ଦୃଢ଼ତାର ସହିତ କହିଲି, ''ଯଦି ଏକ ନିରପେକ୍ଷ ତଦନ୍ତରେ ଅଭିଯୋଗ ପ୍ରମାଣ ନ ହୁଏ ତେବେ ମୁଁ ଇସ୍ତାଫା ଦେବାକୁ ପ୍ରସ୍ତୁତ ଅଛି । କିନ୍ତୁ ତଦନ୍ତରେ ଯଦି ଅଭିଯୋଗ ପ୍ରମାଣିତ ହୁଏ ତେବେ ବିଜୁ ପଟ୍ଟନାୟକ ମଧ ସଭ୍ୟପଦରୁ ଇସ୍ତଫା ଦେବାକୁ ପ୍ରସ୍ତୁତ ଅଛନ୍ତି ତ ? ଏହି ପାଲଟା ପ୍ରଶ୍ନ ତାଙ୍କୁ ପଚାରିଲା ପରେ ଆଲୋଚନା ଶେଷ ହେଲା ।

ଆଉ ଏକ ଦିନଙ୍କର ଘଟଣା, ବଡ଼ବିଲର ଲୁହା କାରଖାନା ସରକାରଙ୍କୁ ବିକ୍ରୟ କରିବା ସଂପର୍କରେ ଆଲୋଚନା ଆରମ୍ଭ ହେଲା । ବଡ଼ବିଲର ଲୁହା କାରଖାନା ସେହିପରି ଶ୍ରୀଯୁକ୍ତ ବିଜୁ ବାବୁଙ୍କ ସ୍ତ୍ରୀ ଶ୍ରୀମତୀ ଜ୍ଞାନ ପଟ୍ଟନାୟକଙ୍କ ନାମରେ ଥାଏ । ଶ୍ରୀଯୁକ୍ତ ବିଜୁ ପଟ୍ଟନାୟକ ମୁଖ୍ୟମନ୍ତ୍ରୀ ଥିବା ସମୟରେ କାରଖାନାର ଯଥାର୍ଥ ମୂଲ୍ୟାୟନ କରାନଯାଇ ଅତ୍ୟଧିକ ଦରରେ ସରକାର କିଣି ସାଧାରଣଙ୍କ ଅର୍ଥ ଅପବ୍ୟୟ କରାଯାଇଛି ଓ ନିଜେ ମୁଖ୍ୟମନ୍ତ୍ରୀ ନିଜର ସ୍ୱାର୍ଥପାଇଁ ସରକାରଙ୍କର କ୍ଷତିସାଧନ କରିଛନ୍ତି । ଏହା ଶୁଣିବା ମାତ୍ରେ ବିଜୁବାବୁ ବିଧାନସଭା ଗୃହରେ ଅତ୍ୟନ୍ତ ଉତ୍ତେଜିତ ହୋଇପଡିଲେ । ପରେ ବିଧାନସଭା ଲବିରେ ବିଜୁବାବୁ ଅନ୍ୟାନ୍ୟମାନଙ୍କ ସହ କଣ ଆଲୋଚନା କରୁଥିବା ସମୟରେ ମୋତେ ଦେଖି ଅତ୍ୟନ୍ତ କ୍ରୋଧାନ୍ୱିତ ହୋଇ କହିଲେ ''ମୁଁ ଯଦି ଅଧିକ ମୂଲ୍ୟରେ ମୋ କାରଖାନା ସରକାରଙ୍କୁ ବିକିଛି ତେବେ ତୁ ମୋ କାରଖାନା ଫେରେଇ ଦେ'' । ଏହା ଶୁଣି ମୁଁ ଟିକିଏ ରହିଯାଇ କହିଲି ''ଏଠାରେ ବସିଥିବା ନାରୀ ସଭ୍ୟାମାନେ ଚାଲିଗଲେ ମୁଁ

ଏହାର ଯଥାର୍ଥ ଉତ୍ତର ଦେବି'' । ମୋ କଥା ଶୁଣି ନାରୀ ସଭ୍ୟାମାନେ ସେଠାରୁ ଚାଲିଗଲେ । ତାପରେ ମୁଁ ତାଙ୍କୁ କହିଲି '' ବଡ଼ବିଲର ଲୁହା କାରଖାନା ତୁମ ସ୍ତ୍ରୀ ଶ୍ରୀମତୀ ଜ୍ଞାନ ପଟ୍ଟନାୟକଙ୍କର, ତାଙ୍କ ସ୍ୱାମୀ ତୁମେ ମୁଖ୍ୟମନ୍ତ୍ରୀ ଥାଇ ସରକାରଙ୍କ ତରଫରୁ ସେ କାରଖାନା କିଣିଲ । ସ୍ୱାମୀ ସ୍ତ୍ରୀ ଦୁହେଁ ରାତିରେ କଥାବାର୍ତ୍ତା ହୋଇ ବିକିବା ଓ କିଣିବାର ନିଷ୍ପତ୍ତି ନେଲେ । ମୁଁ କ'ଣ ସେଠାରେ ତୁମ ଦୁହିଁଙ୍କ ନିଷ୍ପତ୍ତି କରିବାବେଳେ ଥିଲି ନା ପରେ ମୋର ସମ୍ମତି ନେଇଥିଲ । ମୁଁ କଣ କାରଖାନା କିଣିଛି ଯେ ଏବେ ତୁମକୁ ଫେରାଇଦେବି । ମୋର ଏ ଉତ୍ତର ପାଇଲାପରେ ଆଉ ସେ କଥା ଉଠିଲା ନାହିଁ । ସରକାର ଏହି କାରଖାନା କିଣିବା ପରେ ବହୁ ଅର୍ଥବ୍ୟୟ କରି ପରବର୍ତ୍ତୀ ସମୟରେ ତାକୁ ଚଳାଇଲେ ।

୧୯୬୧ ମସିହାର ମଧ୍ୟବର୍ତ୍ତୀ ନିର୍ବାଚନରେ କଂଗ୍ରେସ ତଥା ଶ୍ରୀଯୁକ୍ତ ବିଜୁ ପଟ୍ଟନାୟକଙ୍କର ପ୍ରଭାବ ଅତିମାତ୍ରାରେ ବୃଦ୍ଧି ପାଇଥାଏ । ଏତିକିବେଳେ ଶ୍ରୀଯୁକ୍ତ ବିଶ୍ୱନାଥ ଦାଶ ଉତ୍ତରପ୍ରଦେଶର ରାଜ୍ୟପାଳ ହୋଇ ଚାଲିଗଲାରୁ ବିଧାନସଭାରେ ତାଙ୍କ ସ୍ଥାନ ଖାଲି ପଡିଲା ଏବଂ ସେଥିପାଇଁ ଉପନିର୍ବାଚନ ହେଲା । ଏହି ସ୍ଥାନରୁ ପ୍ରଜାସୋସାଲିଷ୍ଟ ପାର୍ଟି ତରଫରୁ ବିଶିଷ୍ଟ କର୍ମୀ ଓ କୃଷକ ନେତା ଶ୍ରୀଯୁକ୍ତ ବନମାଳୀ ମହାରଣା ପ୍ରାର୍ଥୀ ହେଲେ । ଏହି ନିର୍ବାଚନରେ ଆମ ଦଳର ପ୍ରାର୍ଥୀଙ୍କୁ ଜୟଯୁକ୍ତ କରାଇବାପାଇଁ ମୁଁ ଗଞ୍ଜାମ ଜିଲ୍ଲାର ବୈରାଣୀଠାରେ ପ୍ରାୟ ୧୨ଟି ଭୋଟ କେନ୍ଦ୍ରର ଦାୟିତ୍ୱରେ ରହି ନିର୍ବାଚନ ପ୍ରଚାର କରୁଥିଲି । ଉକ୍ତ ନିର୍ବାଚନରେ କଂଗ୍ରେସ୍ ଓ ପ୍ରଜା ସୋସାଲିଷ୍ଟ ପ୍ରାର୍ଥୀଙ୍କ ମଧ୍ୟରେ ହିଁ ସିଧାସଳଖ ପ୍ରତିଦ୍ୱନ୍ଦିତା ଚାଲିଥିଲା । ନିର୍ବାଚନରେ ପ୍ରଜାସୋସାଲିଷ୍ଟ ଦଳର ବିଜୟ ଓଡ଼ିଶାରେ ସୋସାଲିଷ୍ଟ ଆନ୍ଦୋଳନପାଇଁ ଏକ ବିଶେଷ ଉତ୍ସାହ ଓ ପ୍ରେରଣା ଯୋଗାଇଥିଲା ।

## ଛାତ୍ର ଓ ଜନ ଆନ୍ଦୋଳନ

ଏହି ଉପନିର୍ବାଚନରେ କାର୍ଯ୍ୟ କରୁଥିବାବେଳେ ମୁଁ ଗଞ୍ଜାମ ଜିଲ୍ଲା ଲୋକଙ୍କ ଆତିଥ୍ୟ, ଚାଲିଚଳନ, ଶିକ୍ଷା, ସଂସ୍କୃତି ପ୍ରଭୃତିର ପ୍ରତ୍ୟକ୍ଷ ସଂପର୍କରେ ଆସି ବହୁକଥା ଜାଣିବାର ସୁଯୋଗ ପାଇଥିଲି । ୧୯୬୪ ମସିହାରେ ଶ୍ରୀଯୁକ୍ତ ବିଜୁ ପଟ୍ଟନାୟକ ଓ ଶ୍ରୀ ବିରେନ୍ ମିତ୍ରଙ୍କ ମୁଖ୍ୟମନ୍ତ୍ରୀତ୍ୱ କାଳରେ ହୋଇଥିବା ବ୍ୟାପକ ଦୁର୍ନୀତି ସଂପର୍କରେ ତଦନ୍ତପାଇଁ ରାଷ୍ଟ୍ରପତିଙ୍କୁ ଏକ ସ୍ମାରକପତ୍ର ଦିଆଯାଇଥିଲା । ଏହି ଅଭିଯୋଗଗୁଡ଼ିକର ସି.ବି.ଆଇ. ତଦନ୍ତ କରାଯାଇ ତାର ରିପୋର୍ଟ ଗୁପ୍ତ ରଖାଯାଇଥିଲେ ହେଁ ହଠାତ୍ ତାହା ପ୍ରକାଶ ପାଇବା ଫଳରେ ସାରା ଦେଶରେ ଏକ ଆଲୋଡ଼ନ ସୃଷ୍ଟି ହେଲା । ଏହି ତଦନ୍ତ ରିପୋର୍ଟର ଏକ ଓଡ଼ିଆ ଅନୁବାଦ ପୁସ୍ତକ ପ୍ରସ୍ତୁତ କରି ମୟୂରଭଞ୍ଜ ଅଞ୍ଚଳରେ ବିକ୍ରୀ କରାଯାଇଥିଲା ଏବଂ ଏହାସଙ୍ଗେ ସଙ୍ଗେ ଲଜ୍ଜାଦିବସ ପାଳନ ନାମରେ ମୋ ନେତୃତ୍ୱରେ ଏକ ଆନ୍ଦୋଳନ ଆରମ୍ଭ କରାଗଲା । ଠିକ୍ ଏହିସବୁବେଳେ ଓଡ଼ିଶାରେ ଏକ ଛାତ୍ର ଆନ୍ଦୋଳନ ଆରମ୍ଭ ହୋଇଗଲା । ମୟୂରଭଞ୍ଜରେ ମଧ୍ୟ ଏହି ଛାତ୍ର ଆନ୍ଦୋଳନସହିତ ଆମ ଆନ୍ଦୋଳନମଧ୍ୟରେ ବେଶ ଯୋଗାଯୋଗ ଘଟି ଏକ ନୂତନ ପରିବେଶ ସୃଷ୍ଟି ହୋଇଥିଲା । ବାରିପଦାଠାରେ ଆନ୍ଦୋଳନକାରୀ ଛାତ୍ରମାନଙ୍କୁ ଦବାଇଦେବାପାଇଁ ପୋଲିସର ନିର୍ମମ ଅତ୍ୟାଚାର ହେବାରୁ ବାରିପଦା ସହରର

କେତେକ ନାଗରିକଙ୍କୁ ଡାକି ଏହାର ପ୍ରତିବାଦପାଇଁ ପ୍ରସ୍ତୁତ ହେଲି ଓ ଏକ ପ୍ରତିବାଦ ସଭାର ମଧ୍ୟ ଆୟୋଜନ କରାଗଲା । ଏହି ସଭାକୁ କରାଇ ନ ଦେବାପାଇଁ ସଭାର ପୂର୍ବ ରାତ୍ରିରେ ସମଗ୍ର ସହରରେ ୧୪୪ ଧାରା ଜାରି କରାଗଲା । ତେଣୁ ଏହି ସଭା ସହର ବାହାରେ ଅଷ୍ଟିଆଠାରେ କରାଯିବାର ସ୍ଥିର ହେଲା । ବିନା ପ୍ରଚାରରେ ମଧ୍ୟ ସେଠାରେ ଏକ ବିରାଟ ସାଧାରଣ ସଭା ଅନୁଷ୍ଠିତ ହୋଇ ପୋଲିସ୍ ଓ ସରକାରଙ୍କର ଦମନମୂଳକ କାର୍ଯ୍ୟର ଦୃଢ଼ ପ୍ରତିବାଦ କରିବା ସଙ୍ଗେ ସଙ୍ଗେ ଛାତ୍ରମାନଙ୍କୁ ଶାନ୍ତିପୂର୍ଣ୍ଣଭାବରେ ଆନ୍ଦୋଳନ ଚଳାଇନେବାକୁ ପରାମର୍ଶ ଦିଆଗଲା । ପରିଣାମରେ ଛାତ୍ର ନେତା, ବର୍ତ୍ତମାନର ଜିଲ୍ଲା ପୋଲିସ୍ ଅଧୀକ୍ଷକ ଶ୍ରୀ ଗୌରାଙ୍ଗ କିଙ୍କର ଦାସ ଓ ଅନ୍ୟାନ୍ୟ ନାଗରିକମାନେ ଦୈନିକ ପରାମର୍ଶ କରି ଏଭଳି ଶାନ୍ତିପୂର୍ଣ୍ଣ ଭାବରେ ଆନ୍ଦୋଳନ ଚଳାଇଲୁ ଯେ କୌଣସି ପ୍ରକାର ଅପ୍ରୀତିକର ପରିସ୍ଥିତି ଆଉ ଉପୁଜିଲା ନାହିଁ । ସେଇ କେତେଦିନ ମୁଁ ବାରିପଦାଠାରେ ପ୍ରାୟ ଏକଛତ୍ରାଧିପତିର ସ୍ଥାନ ଅଧିକାର କରିଥିଲି ଓ ମୋର ବିନା ପରାମର୍ଶରେ ଛାତ୍ର ବା ଜନସାଧାରଣ କୌଣସି ପ୍ରକାର ଆନ୍ଦୋଳନାତ୍ମକ କାର୍ଯ୍ୟକ୍ରମ ଗ୍ରହଣ କରୁନଥିଲେ । ଓଡ଼ିଶାର ଅନ୍ୟତ୍ର ଛାତ୍ର ଆନ୍ଦୋଳନରେ ବହୁ ହିଂସା ଓ ଅପ୍ରୀତିକର ଘଟଣାମାନ ଘଟିଗଲା । ସେତେବେଳେ ଓଡ଼ିଶାର ଛାତ୍ର ନେତା ଶ୍ରୀ ଭାଗବତ ପ୍ରସାଦ ବେହେରା ପ୍ରଜା ସୋସାଲିଷ୍ଟ ଆଦର୍ଶରେ ଅନୁପ୍ରାଣିତ ହୋଇଥିଲେ । ସରକାର ଛାତ୍ରମାନଙ୍କୁ ଗିରଫ କରିବା ସଙ୍ଗେ ସଙ୍ଗେ କେତେକ ରାଜନୈତିକ ଦଳର ନେତୃବୃନ୍ଦଙ୍କୁ ମଧ୍ୟ ଗିରଫ କରି ଜେଲ୍‌ରେ ଅଟକ ରଖିଲେ ।

ଆନ୍ଦୋଳନ ଏତେ ତୀବ୍ରତର ହେଲା ଯେ ସେଥିପାଇଁ ଭାରତ ସରକାରଙ୍କ ଉପପ୍ରଧାନମନ୍ତ୍ରୀ ଶ୍ରୀଯୁକ୍ତ ଗୁଲଜାରୀଲାଲ ନନ୍ଦା ଓଡ଼ିଶା ଆସି ଛାତ୍ରନେତା ଓ ବିଭିନ୍ନ ରାଜନୈତିକ ଦଳର ନେତା ତଥା ବିଶିଷ୍ଟ ବ୍ୟକ୍ତିମାନଙ୍କୁ ଭେଟିଲେ । ମୁଁ ପ୍ରଜାସୋସାଲିଷ୍ଟ ପାର୍ଟିରୁ ଯାଇଥିବା ପ୍ରତିନିଧି ଦଳର ନେତା ରୂପେ ଶ୍ରୀଯୁକ୍ତ ନନ୍ଦାଙ୍କୁ ଭେଟି ଓଡ଼ିଶାରେ ଥିବା ଅପାରଗ ଓ ଦୁର୍ନୀତିଗ୍ରସ୍ତ ସରକାରଙ୍କ କାର୍ଯ୍ୟକଳାପ ସଂପର୍କରେ ଏକ ସ୍ମାରକପତ୍ର ଦେଇଥିଲି । ସେତେବେଳକୁ ଭାରତର ପ୍ରଧାନମନ୍ତ୍ରୀ ତଥା ନବଭାରତର ନିର୍ମାତା ପଣ୍ଡିତ ନେହେରୁଙ୍କ ମୃତ୍ୟୁ ଘଟିଥାଏ ଓ ତାଙ୍କ ସ୍ଥାନରେ ଶ୍ରୀଯୁକ୍ତ ଲାଲବାହାଦୁର ଶାସ୍ତ୍ରୀ ଥାଆନ୍ତି ଭାରତର ପ୍ରଧାନମନ୍ତ୍ରୀ । ଓଡ଼ିଶାର ମୁଖ୍ୟମନ୍ତ୍ରୀଦ୍ୱୟ ଶ୍ରୀଯୁକ୍ତ ବିଜୁ ପଟ୍ଟନାୟକ ଏବଂ ଶ୍ରୀ ବୀରେନ୍ ମିତ୍ରଙ୍କ ବିରୁଦ୍ଧରେ ହୋଇଥିବା ଅଭିଯୋଗଗୁଡ଼ିକର ସି.ବି.ଆଇ. ତଦନ୍ତ ରିପୋର୍ଟ ଉପରେ ଏବଂ ବିଶେଷକରି ଆମ ଦଳ ନେତୃତ୍ୱରେ ଆନ୍ଦୋଳନ ଫଳରେ କେନ୍ଦ୍ର ମନ୍ତ୍ରିମଣ୍ଡଳର ଏକ ସବ୍‌କମିଟି ଗଢ଼ି ଏହାର ଅନୁସନ୍ଧାନ କରାଗଲା । ପରିଣାମରେ ଶ୍ରୀଯୁକ୍ତ ବୀରେନ୍ ମିତ୍ର ବାଧହୋଇ ମୁଖ୍ୟମନ୍ତ୍ରୀ ପଦରୁ ବିଦାୟ ନେଲେ । ଏହା ପୂର୍ବରୁ ତ ଶ୍ରୀଯୁକ୍ତ ବିଜୁବାବୁ ମୁଖ୍ୟମନ୍ତ୍ରୀତ୍ୱରୁ ବିଦାୟ ନେଇ ସାରିଥିଲେ । ବର୍ତ୍ତମାନ କଂଗ୍ରେସ ଦଳ ପକ୍ଷରୁ ଶ୍ରୀଯୁକ୍ତ ସଦାଶିବ ତ୍ରିପାଠୀ ୧୯୬୫ ମସିହା ଫେବୃୟାରୀ ମାସରେ ମୁଖ୍ୟମନ୍ତ୍ରୀ ଦାୟିତ୍ୱ ଗ୍ରହଣ କଲେ । ୧୯୬୫ ଫେବୃୟାରୀଠାରୁ ୧୯୬୭ ଫେବୃୟାରୀ ପର୍ଯ୍ୟନ୍ତ ଦୁଇବର୍ଷକାଳ ଶ୍ରୀଯୁକ୍ତ ତ୍ରିପାଠୀ ତାଙ୍କର ମୁଖ୍ୟମନ୍ତ୍ରୀ ଦାୟିତ୍ୱ ଅତି ସୁରୁଖୁରୁରେ ଚଳାଇ ପାରିଥିଲେ । ଏହି ଦୁଇବର୍ଷ କାର୍ଯ୍ୟକାଳ ମଧ୍ୟରେ ଦିନେହେଲେ ଆମ ପକ୍ଷରୁ ଅନାସ୍ଥା ପ୍ରସ୍ତାବ ଅଣାଯାଇ ପାରିନଥିଲା । ପ୍ରତିଟି ବିଷୟ ସେ ବିରୋଧୀ ଦଳମାନଙ୍କ

ସହିତ ଆଲୋଚନା କରି ନିଷ୍ପତ୍ତି ଗ୍ରହଣ କରୁଥିଲେ । ତେଣୁ ତାଙ୍କ ସମୟରେ ବିଧାନସଭାର କାର୍ଯ୍ୟ ଅତି ଭଲଭାବରେ ଚାଲିପାରୁଥିଲା । ଅବଶ୍ୟ ତାଙ୍କ କାର୍ଯ୍ୟକାଳ ମଧ୍ୟରେ ଓଡ଼ିଶାରେ ସେପରି କୌଣସି ଉଲ୍ଲେଖନୀୟ କାର୍ଯ୍ୟ ହୋଇ ପାରିନଥିଲା ।

୧୯୬୬ ମସିହା ଶେଷବେଳକୁ ଭାରତର ପ୍ରଧାନମନ୍ତ୍ରୀ ଶ୍ରୀଯୁକ୍ତ ଲାଲବାହାଦୁର ଶାସ୍ତ୍ରୀଙ୍କର ଋଷିଆରେ ଥିଲାବେଳେ ମୃତ୍ୟୁ ହେବାରୁ ଶ୍ରୀମତୀ ଇନ୍ଦିରାଗାନ୍ଧୀ ପ୍ରଧାନମନ୍ତ୍ରୀ ହେଲେ । ତା ପୂର୍ବରୁ ଓଡ଼ିଶା ବିଧାନସଭାର କାର୍ଯ୍ୟକାଳ ୧୯୬୭ ମସିହା ଫେବୃୟାରୀ ପର୍ଯ୍ୟନ୍ତ ବୃଦ୍ଧି ହୋଇସାରିଥିଲା । ଏହିଥରକ ଓଡ଼ିଶା ବିଧାନସଭାର କାର୍ଯ୍ୟକାଳ ୧୯୬୧ ଜୁନ୍‌ଠାରୁ ୧୯୬୭ ଫେବୃୟାରୀ ପର୍ଯ୍ୟନ୍ତ ପ୍ରାୟ ପାଞ୍ଚବର୍ଷ ଆଠମାସ ହୋଇଥିଲା । ଏହି ସମୟର ବିଧାନସଭା ଇତିହାସରେ ବିରୁଦ୍ଧ ଦଳର କାର୍ଯ୍ୟ ଅତ୍ୟନ୍ତ ଉଲ୍ଲେଖନୀୟ ହୋଇଥିଲା । ବିଧାନସଭାରେ ଗଣତନ୍ତ୍ରଦଳ ବଡ଼ ଦଳ ହୋଇଥିଲେ ହେଁ ମାତ୍ର ୧୨ଜଣ ସଭ୍ୟବିଶିଷ୍ଟ ପ୍ରଜାସୋସାଲିଷ୍ଟ ଦଳ ମୋ ନେତୃତ୍ୱରେ ପରିଚାଳିତ ହୋଇ ଓଡ଼ିଶାରେ ବିଶେଷ ସମ୍ମାନିତ ହୋଇପାରିଥିଲା । ଏପରିକି ଉଭୟ ଶ୍ରୀଯୁକ୍ତ ରାଜେନ୍ଦ୍ର ନାରାୟଣ ସିଂହଦେଓ ଓ ମୁଁ ଯଦି କୌଣସି ଦିନ ବିଧାନ ସଭାରେ ଅନୁପସ୍ଥିତ ରହୁଥିଲୁଁ ତେବେ ଦର୍ଶକମାନେ ରହୁନଥିଲେ ।

## ନର୍ବାଚନ ମଣ୍ଡଳୀ ସୀମା ନିର୍ଦ୍ଧାରଣ କମିଟିର ସଭ୍ୟ

ପ୍ରତି ଜନଗଣନା ଶେଷରେ ଦେଶର ସମସ୍ତ ଲୋକସଭା ତଥା ବିଧାନସଭା ନିର୍ବାଚନ ମଣ୍ଡଳୀର ସୀମା ନିର୍ଦ୍ଧାରଣ କରାଯାଏ । ତଦନୁସାରେ ୧୯୬୧ ମସିହା ଜନଗଣନା ପରେ ୧୯୬୩ ମସିହା ବେଳକୁ କେନ୍ଦ୍ର ସରକାରଙ୍କ ଦ୍ୱାରା ଏକ ସୀମା ନିର୍ଦ୍ଧାରଣ କମିଶନ୍ ଗଠିତ ହେଲା । ଉକ୍ତ କମିଶନ୍‌ରେ ଓଡ଼ିଶାପାଇଁ ଯେଉଁ ପାଞ୍ଚଜଣ ବିଧାନସଭାର ସହଯୋଗୀ ସଭ୍ୟ ରହିଲେ ସେଥିମଧ୍ୟରୁ ମୁଁ ଜଣେ ସହଯୋଗୀ ସଭ୍ୟ ହୋଇଥିଲି । ଓଡ଼ିଶାର ଲୋକସଭା ସଭ୍ୟଙ୍କ ମଧ୍ୟରୁ ଯେଉଁ ୪ଜଣ ସହଯୋଗୀ ସଭ୍ୟ ରହିଲେ ସେଥିମଧ୍ୟରେ ଆମ ଜିଲ୍ଲାରୁ ଲୋକସଭା ସଭ୍ୟ ଶ୍ରୀ ମହେଶ୍ୱର ନାଏକ ମଧ୍ୟ ଉକ୍ତ କମିଶନର ଜଣେ ସଭ୍ୟ ଥିଲେ । ଏଥର କମିଶନ୍ ପକ୍ଷରୁ ବିଧାନସଭା ନିର୍ବାଚନ ମଣ୍ଡଳୀଗୁଡ଼ିକର ସଂସ୍କାରପାଇଁ ଯେଉଁ ମୌଳିକ ପ୍ରସ୍ତାବ ଆସିଥିଲା ସେଥିରେ ମୟୂରଭଞ୍ଜ ଜିଲ୍ଲାର ଦଶଟିଯାକ ନିର୍ବାଚନ ମଣ୍ଡଳୀ ପୂରାପୂରି ସଂରକ୍ଷିତ ଆସନ ହେବାପାଇଁ ପ୍ରସ୍ତାବ ଦିଆଯାଇଥିଲା । ଏହା ମୋ ବିରୁଦ୍ଧରେ ଏକ ଷଡ଼ଯନ୍ତ୍ର କହିଲେ ଅତ୍ୟୁକ୍ତି ହେବ ନାହିଁ । ମାତ୍ର ଭାଗ୍ୟବଶତଃ ଏ କମିଶନ୍‌ରେ ମୁଁ ଓ ଶ୍ରୀ ମହେଶ୍ୱର ନାଏକ ସଭ୍ୟଥିବା ଯୋଗୁ ଉକ୍ତ ପ୍ରସ୍ତାବର ପରିବର୍ତ୍ତନ କରାଯାଇ ସମସ୍ତଙ୍କ ଦ୍ୱାରା ଗ୍ରହଣଯୋଗ୍ୟ ହେଲାଭଳି ଏକ ମଙ୍ଗଳଜନକ ନିଷ୍ପତ୍ତି ଗ୍ରହଣ କରାଗଲା । ଏଥି ପୂର୍ବରୁ ମୟୂରଭଞ୍ଜର ୧୦ଟି ବିଧାନସଭା ଆସନ ମଧ୍ୟରୁ ୬ଟି ଆଦିବାସୀ, ଗୋଟିଏ ହରିଜନ ଓ ୩ଟି ମାତ୍ର ସାଧାରଣ ଆସନ ଥିଲା । ଏଥର କମିଶନ୍‌ର ନିଷ୍ପତ୍ତି ଅନୁଯାୟୀ ଆଠଟି ସଂରକ୍ଷିତ ଆସନ ହେଲା । ସେଥିମଧ୍ୟରୁ ବୈଶିଙ୍ଗା ନିର୍ବାଚନ ମଣ୍ଡଳୀ ଏକ ସାଧାରଣ ନିର୍ବାଚନ ମଣ୍ଡଳୀରେ ପରିଣତ ହେଲା । ଏହି ନିର୍ବାଚନ ମଣ୍ଡଳୀ ପୂର୍ବରୁ କେବେ ସାଧାରଣ ସ୍ଥାନପାଇଁ ଉଦ୍ଦିଷ୍ଟ ନଥିଲା ଏବଂ ଏହି

ନିର୍ବାଚନ ମଣ୍ଡଳୀ ମୋର ଘର ଅଞ୍ଚଳ ହୋଇଥିବାରୁ ଏ ଅଞ୍ଚଳରେ ମୋର ଦୃଢ଼ ସଂଗଠନ ଥିଲା ଏବଂ ଏପରି ପରିବର୍ତ୍ତନ ମୋ ପକ୍ଷରେ ଅତ୍ୟନ୍ତ ଶୁଭଦାୟକ ହୋଇଥିଲା । ବାରିପଦା ନିର୍ବାଚନ ମଣ୍ଡଳୀ ପୂର୍ବପରି ଏକ ସାଧାରଣ ନିର୍ବାଚନ ମଣ୍ଡଳୀ ହୋଇ ରହିଲା ।

## ଉଲ୍ଲେଖନୀୟ କାର୍ଯ୍ୟ

ଏଥିପୂର୍ବରୁ ଓଡ଼ିଶା ବିଧାନସଭାକୁ ଦୁଇଥର ନିର୍ବାଚିତ ହୋଇ ପ୍ରାୟ ୯ବର୍ଷକାଳ ସଭ୍ୟ ହୋଇ ରହିଥିଲେ ହେଁ ଏଥର ସାଢ଼େ ପାଞ୍ଚବର୍ଷଧରି ପ୍ରଜା ସୋସାଲିଷ୍ଟ ପାର୍ଟିର ଦଳପତି ହୋଇଥିବାରୁ ବିଧାନସଭାର କାର୍ଯ୍ୟ ପ୍ରଣାଳୀ ବିଶେଷଭାବରେ ଜାଣିବାର ତଥା ନିଜକୁ ଅଧିକ ଯୋଗ୍ୟଭାବେ ପ୍ରମାଣିତ କରିବାର ସୁଯୋଗ ପାଇପାରିଥିଲି । ଏଥିପୂର୍ବରୁ ବିଧାନସଭାର କୌଣସି କମିଟିର କେବେହେଲେ ସଭ୍ୟ ହୋଇନଥିଲି । ଏଥର ପ୍ରଥମ ଥରପାଇଁ Public Accounts Committee ର ସଭ୍ୟ ହେଲି । ଏହି କମିଟିରେ ସରକାରୀ ଦଳରୁ ୬ଜଣ ଓ ବିରୋଧୀ ଦଳରୁ ଆମେ ତିନିଜଣ ଏହିପରି ୯ଜଣ ସଭ୍ୟ ରହିଲୁ । ଏହି ସମୟ ମଧ୍ୟରେ ବିଜୁ ପଟ୍ଟନାୟକ ମୁଖ୍ୟମନ୍ତ୍ରୀତ୍ୱ କାଳରେ ହୋଇଥିବା ଅସଙ୍ଗତ ଖର୍ଚ୍ଚ ସଂକ୍ରାନ୍ତୀୟ Audit Report 1964ର ସମୀକ୍ଷା ସମୟରେ ସରକାରୀ ଦଳ ସହିତ ଆମର ସଂଘର୍ଷ ଚରମ ସୀମାରେ ଉପନୀତ ହୋଇଥିଲା । ଦିନେ ଆଲୋଚନା ସମୟରେ ବିଜୁବାବୁ କ୍ରୋଧାନ୍ୱିତ ହୋଇ Public Accountsର ଅଧ୍ୟକ୍ଷ ତଥା ବିରୋଧୀ ଦଳର ନେତା ଶ୍ରୀଯୁକ୍ତ ସିଂହଦେଓଙ୍କୁ ବରଖାସ୍ତ କରିବାକୁ ଧମକ ଦେଇ ବାଚସ୍ପତିଙ୍କୁ ଏ ସମ୍ପର୍କରେ ପରାମର୍ଶ ଦେଇଥିଲେ । ଏହି ବିଧାନସଭା କାର୍ଯ୍ୟକାଳର ଶେଷ ପର୍ଯ୍ୟନ୍ତ ତଥା ପରବର୍ତ୍ତୀ ଦୁଇଥର ବିଧାନସଭାର କାର୍ଯ୍ୟକାଳ ସମୟରେ ମଧ୍ୟ ପ୍ରାୟ ଦୀର୍ଘ ଦଶବାରବର୍ଷ ଧରି ଏହି କମିଟି ସଭ୍ୟ ହୋଇ ରହିଆସିଥିଲି । ସେହି ସମୟ ମଧ୍ୟରେ ୧୯୭୨ରୁ ୧୯୭୪ ପର୍ଯ୍ୟନ୍ତ ଓଡ଼ିଶା ଖଦୀ ଓ ଗ୍ରାମୋଦ୍ୟୋଗ ବୋର୍ଡ଼ର ସଭ୍ୟଭାବରେ ମନୋନୀତ ହୋଇ କାର୍ଯ୍ୟ କରିଥିଲି । ୧୯୭୬ରେ ରାଜ୍ୟରେ ସଂପୂର୍ଣ୍ଣ ଅଣକଂଗ୍ରେସ୍ ସରକାର ଶାସନ ଭାର ନେଲାପରେ ୧୯୬୮ମସିହାରୁ ଖଦୀ ବୋର୍ଡ଼କୁ ସଂପୂର୍ଣ୍ଣରୂପେ ଭାଙ୍ଗିଦେଇ ବିଭାଗୀୟ ମନ୍ତ୍ରୀଙ୍କ ତତ୍ତ୍ୱାବଧାନରେ ରଖାଯାଇଥିଲା । ଏତିକିବେଳେ ବୋର୍ଡ଼ର ବହୁ କର୍ମଚାରୀଙ୍କୁ ଛଟେଇ କରାଯାଇଥିଲା । ବୋର୍ଡ଼ର ପୁନର୍ଗଠନ ବେଳେ ମୋତେ ସେଥିରେ ଜଣେ ସଭ୍ୟଭାବରେ ରଖାଯାଇଥିବାରୁ ବହୁ ଛଟେଇ କର୍ମଚାରୀଙ୍କୁ ପୁନର୍ନିଯୁକ୍ତି କରାଇବାରେ ସମର୍ଥ ହୋଇପାରିଥିଲି ।

ଏଥର ବିଧାନସଭାର ସମୟ ସାଧାରଣ ନିୟମଠାରୁ ଟିକିଏ ଅଧିକ ବୃଦ୍ଧି ପାଇଥିଲା । ନିୟମତଃ ପ୍ରତି ପାଞ୍ଚବର୍ଷରେ ବିଧାନସଭାର କାର୍ଯ୍ୟକାଳ ପୂରିଗଲେ ବା ପାଞ୍ଚବର୍ଷ ପୂର୍ବରୁ କୌଣସି ବିଧାନସଭା ଭଙ୍ଗ ହେଲେ ନିର୍ବାଚନ ହୋଇଥାଏ । ଠିକ୍ ସେହିପରି କୌଣସି ବିଶେଷ କାରଣରୁ ଯଦି ବିଧାନସଭାର ସମୟ ସୀମା ବୃଦ୍ଧି କରାଯାଏ ତେବେ ସେଥିପାଇଁ ସଂବିଧାନ ସଂଶୋଧନ ଆବଶ୍ୟକ ହୁଏ । ଏଥର ଓଡ଼ିଶା ବିଧାନସଭାର ନିର୍ଦ୍ଧାରିତ ସମୟ ୧୯୬୬ ବେଳକୁ ପୂରିଯାଇ ନିର୍ବାଚନ ହେବାର ଥିଲେ ହେଁ ୧୯୬୭ ବେଳକୁ ସଂସଦର ସାଧାରଣ ନିର୍ବାଚନ ସହ ବିଧାନସଭାର

ନିର୍ବାଚନ କରାଇବାକୁ ତଦାନୀନ୍ତନ ପ୍ରଧାନମନ୍ତ୍ରୀ ଶ୍ରୀଯୁକ୍ତ ଲାଲବାହାଦୁର ଶାସ୍ତ୍ରୀ ନିଷ୍ପତ୍ତି ନେବାରୁ ସଂବିଧାନର ସଂଶୋଧନ କରାଯାଇ ବିଧାନସଭାର ସମୟ ସୀମା ୧୯୬୭ମାର୍ଚ୍ଚ ମାସ ପର୍ଯ୍ୟନ୍ତ ବୃଦ୍ଧି କରାଯାଇଥିଲା ।

ଶ୍ରୀଯୁକ୍ତ ଲାଲବାହାଦୂର ଶାସ୍ତ୍ରୀଙ୍କ ପ୍ରଧାନମନ୍ତ୍ରୀତ୍ୱ କାଳରେ ପାକିସ୍ଥାନର ଭାରତ ଆକ୍ରମଣ ପ୍ରତିହତ ଏକ ଉଲ୍ଲେଖନୀୟ ଘଟଣା । ଏଥି ପୂର୍ବରୁ ପଣ୍ଡିତ ନେହେରୁଙ୍କ ଶାସନ କାଳରେ ଚୀନ ଭାରତ ଆକ୍ରମଣ କରିଥିବା ବେଳେ ଆମର ଦେଶରକ୍ଷା ବିଭାଗର ଅପାରଗତା ହେତୁ ଆମର ଏକପ୍ରକାର ପରାଜୟ ଘଟିବାରୁ ବିଶ୍ୱରେ ଭାରତ ଏକ ଦୁର୍ବଳ ଦେଶଭାବରେ ପରିଗଣିତ ହୋଇଥିଲା । ତେଣୁ ତାହାପରେ ମହାରାଷ୍ଟ୍ରର ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ଯଶୋବନ୍ତ ଚୌହାନଙ୍କୁ ଭାରତର ପ୍ରତିରକ୍ଷା ଦାୟିତ୍ୱ ଦିଆଗଲା । ସେହିଦିନଠାରୁ ପ୍ରତିରକ୍ଷା ବିଭାଗ ନିଜର ହୃତ ଗୌରବ ଫେରାଇ ଆଣିବାର ସୁଯୋଗ ଅପେକ୍ଷାରେ ରହିଥାଏ । ପାକିସ୍ଥାନ ଭାରତ ଆକ୍ରମଣ କଲାରୁ ଆମର ସୈନ୍ୟଙ୍କୁ ସଂପୂର୍ଣ୍ଣଭାବରେ ପରାଜିତ କରି ପାକିସ୍ଥାନର କେତେ ଅଞ୍ଚଳ ନିଜ ଦଖଲକୁ ଆଣିପାରିଥିଲା । ସେତେବେଳର ପଦାତିକ ବାହିନୀ ମୁଖ୍ୟ ଥିଲେ ଜେନେରାଲ ବେନାର୍ଜୀ ଓ ଆକାଶ ବାହିନୀର ଅଧକ୍ଷ ଥିଲେ ଜେନେରାଲ ଶ୍ରୀ ଅର୍ଜ୍ଜୁନ ସିଂ । ଉଭୟେ ଅତ୍ୟନ୍ତ ଦକ୍ଷ ଥିବାରୁ ଭାରତୀୟ ସେନାବାହିନୀର ମର୍ଯ୍ୟାଦା ବୃଦ୍ଧି ପାଇଥିଲା ।

## ଭାରତର ଏକ ଦୁଃଖଦାୟକ ଘଟଣା

୧୯୬୬ ମସିହା ସ୍ୱର୍ଗତ ପ୍ରଧାନମନ୍ତ୍ରୀ ଲାଲବାହାଦୁର ଶାସ୍ତ୍ରୀଙ୍କ ଅକାଳ ବିୟୋଗ ଦେଶପାଇଁ ଏକ ଦୁଃଖଦାୟକ ଘଟଣା । ପାକିସ୍ଥାନ ସହିତ ଯୁଦ୍ଧ ପରେ ଋଷ ଦେଶର ନିମନ୍ତ୍ରଣ କ୍ରମେ ଶ୍ରୀଯୁକ୍ତ ଶାସ୍ତ୍ରୀ ଓ ପାକିସ୍ଥାନର ରାଷ୍ଟ୍ରପତି ଜେନେରାଲ ଆୟୁବ୍ ଖାଁ ଉଭୟେ ଋଷ ଯାତ୍ରା କରିଥିଲେ । ଭାରତର ତତ୍କାଳୀନ ପ୍ରତିରକ୍ଷା ମନ୍ତ୍ରୀ ଶ୍ରୀଯୁକ୍ତ ଚୌହାନ୍ ମଧ ଶାସ୍ତ୍ରୀଜୀଙ୍କ ସହଯାତ୍ରୀଭାବରେ ସେଠାକୁ ଯାଇଥିଲେ । ତାଙ୍କର ହୃଦ୍‌ରୋଗ ଥିଲା । ଋଷର ତାସକେଣ୍ଟ ସହରରେ ବାସ କରୁଥିବା ସମୟରେ ତାଙ୍କର ହୃତ୍‌କ୍ରିୟା ହଠାତ୍ ବନ୍ଦ ହୋଇଯାଇ ମୃତ୍ୟୁ ଘଟିଲା । ଶ୍ରୀଯୁକ୍ତ ଶାସ୍ତ୍ରୀ ମାତ୍ର ଅଠର ମାସ କାଳ ପ୍ରଧାନମନ୍ତ୍ରୀ ଥାଇ ଏତେ ଜନପ୍ରିୟ ହୋଇପାରିଥିଲେ ଯେ ତାଙ୍କର ଏହି ଅକାଳ ବିୟୋଗରେ ସମଗ୍ର ଦେଶ ଅତ୍ୟନ୍ତ ମ୍ରିୟମାଣ ହୋଇପଡ଼ିଥିଲା । ଏଥିପୂର୍ବରୁ ଶ୍ରୀଯୁକ୍ତ ପଣ୍ଡିତ ନେହେରୁ ଦୀର୍ଘ ୧୮ବର୍ଷ ଧରି ଭାରତର ପ୍ରଧାନମନ୍ତ୍ରୀ ଥିଲେ । ତାଙ୍କୁ ଆଧୁନିକ ଭାରତର ନିର୍ମାଣ କୁହାଯାଏ । ମୁଁ ଯେତେଦୂର ଅନୁଭବ କରୁଛି ମାତ୍ର ଅଠରେ ମାସ ପ୍ରଧାନମନ୍ତ୍ରୀ ଥାଇ ଶାସ୍ତ୍ରୀଜୀ ଶ୍ରୀଯୁକ୍ତ ନେହେରୁଙ୍କ ଅପେକ୍ଷା ଅଧିକ ଲୋକପ୍ରିୟ ହୋଇପାରିଥିଲେ । ତା'ର କାରଣ ସେ ଏକ ସାଧାରଣ ପରିବାରରୁ ଆସି କଂଗ୍ରେସ ଅନୁଷ୍ଠାନରେ ପ୍ରବେଶ କରି ନିଜର ଯୋଗ୍ୟତା ବଳରେ ପ୍ରଧାନମନ୍ତ୍ରୀ ପଦରେ ଅଧିଷ୍ଠିତ ହୋଇପାରିଥିଲେ । ଗଣତନ୍ତ୍ରର ମୌଳିକ ନୀତି ସମସ୍ତଙ୍କୁ ସାଙ୍ଗରେ ନେଇ ଚାଲିବା ଓ ସମସ୍ତଙ୍କ ମତାମତ ପ୍ରତି ସମ୍ମାନ ପ୍ରଦର୍ଶନ ଥିଲା ତାଙ୍କର ସଫଳତାର ପ୍ରଧାନ କାରଣ । ଆଜି ବହୁଦିନ ପରେ ଆମର ପ୍ରଧାନମନ୍ତ୍ରୀ ଶ୍ରୀଯୁକ୍ତ ପି.ଭି.ନରସିଂହରାଓ ପ୍ରଧାନମନ୍ତ୍ରୀ ଭାବେ ଏହି ନୀତିର

ଅନୁସରଣ କରୁଛନ୍ତି । ଶ୍ରୀଯୁକ୍ତ ଶାସ୍ତ୍ରୀ ପ୍ରଧାନମନ୍ତ୍ରୀ ପଦରେ ଅଧିଷ୍ଠିତ ହୋଇଥିଲେ ହେଁ ସେ ଅତି ସାଧାରଣ ଓ ସରଳ ଜୀବନଯାପନ କରୁଥିଲେ । ଶ୍ରୀଯୁକ୍ତ ନେହେରୁଙ୍କ ମନ୍ତ୍ରୀମଣ୍ଡଳରେ ବହୁବାର ମନ୍ତ୍ରୀ ହୋଇ ଓ ଶେଷରେ ପ୍ରଧାନମନ୍ତ୍ରୀ ହୋଇଥିଲେ ହେଁ ମୃତ୍ୟୁବେଳକୁ କୌଣସି ସହରରେ ବା ଗ୍ରାମରେ ତାଙ୍କର ନିଜସ୍ୱ ଘରଟିଏ ବି ନ ଥିଲା ।

## ୧୯୬୭-ସାଧାରଣ ନିର୍ବାଚନ-୪ର୍ଥ ଥରପାଇଁ ବିଧାନସଭାକୁ ନିର୍ବାଚିତ ।

ଏତେଦିନପରେ ମୋର ନିଜ ଘର ଅଞ୍ଚଳ ବୈଶିଙ୍ଗା ନିର୍ବାଚନ ମଣ୍ଡଳୀରୁ ପ୍ରତିଦ୍ୱନ୍ଦିତା କରିବାର ସୁଯୋଗ ମିଳିଲା । ଏହା ପୂର୍ବରୁ ମୋର ଘର ନ ଥିବା ନିର୍ବାଚନମଣ୍ଡଳୀଗୁଡ଼ିକରୁ ପ୍ରତିଦ୍ୱନ୍ଦିତା କରୁଥିଲି, ଏଥିପୂର୍ବରୁ ବିରୋଧୀ ଦଳରେ ଥାଇ କ୍ରମାନ୍ୱୟରେ ତିନିଥର ବିଧାନସଭାକୁ ନିର୍ବାଚିତ ହୋଇଥିବାରୁ କ୍ଷମତାରେ ଥିବା କଂଗ୍ରେସସହିତ ଅନ୍ୟ ଦଳମାନେ ମଧ୍ୟ ଈର୍ଷାନ୍ୱିତ ହୋଇପଡିଥାଆନ୍ତି । ଅବଶ୍ୟ ଏଥର ଅବସ୍ଥା ଭିନ୍ନ ପ୍ରକାରର ହୋଇଥାଏ, କଂଗ୍ରେସ୍‌ରୁ ବାହାରି ଆସିଥିବା କେତେକ ବ୍ୟକ୍ତି ନୂଆକରି ଜନକଂଗ୍ରେସ ନାମରେ ଗୋଟିଏ ନୂଆ ଦଳ ଗଠନ କରିଥାଆନ୍ତି । ପୂର୍ବର ସ୍ୱତନ୍ତ୍ର ଦଳସହିତ ଜନକଂଗ୍ରେସର ଏକ ମେଣ୍ଟ ହୋଇଥାଏ । ନିର୍ବାଚନର ପ୍ରାୟ ଏକବର୍ଷ ପୂର୍ବରୁ ଏହି ଦୁଇଦଳ ସହିତ ଆମ ପ୍ରଜାସୋସାଲିଷ୍ଟ ଦଳ ମିଶି କଂଗ୍ରେସକୁ ହଟାଇବା ଉଦ୍ଦେଶ୍ୟ ରଖି ବିଭିନ୍ନ ଜନ ଆନ୍ଦୋଳନ କରିଥିବା ଫଳରେ ଉକ୍ତ ତିନିଦଳ ମଧ୍ୟରେ ସୌହାର୍ଦ୍ଦ୍ୟ ଉପୁଜି ଥାଏ । ତେଣୁ ଉକ୍ତ ଦୁଇଦଳ ସହିତ ପ୍ରଜାସୋସାଲିଷ୍ଟ ଦଳର ମଧ୍ୟ କେତେକ କ୍ଷେତ୍ରରେ ନିର୍ବାଚନ ବୁଝାମଣା ହୋଇଥାଏ । ତେଣୁ ବିଶେଷ ପ୍ରତିଦ୍ୱନ୍ଦିତା ନଥିଲେ ମଧ୍ୟ ପରସ୍ପର ଜିଦ୍‌ଖୋର ମନୋଭାବ ଯୋଗୁ କେତେକ କ୍ଷେତ୍ରରେ ପ୍ରତିଦ୍ୱନ୍ଦିତାକୁ ଏଡ଼ାଇ ପାରିନଥିଲୁ । ମୋ କ୍ଷେତ୍ରରେ ଏ ଦୃଷ୍ଟିରୁ କିଛି ନହେଲେ ମଧ୍ୟ ଈର୍ଷାପରବଶ ହୋଇ ମୋତେ ହରାଇବା ଉଦ୍ଦେଶ୍ୟରେ ସ୍ୱତନ୍ତ୍ରଦଳ ମିଶି କଂଗ୍ରେସ୍ ପ୍ରାର୍ଥୀଙ୍କୁ ସମର୍ଥନ କଲେ । କେବଳ ଜଣେ ମାତ୍ର ସ୍ୱାଧୀନ ପ୍ରାର୍ଥୀ ଏ ନିର୍ବାଚନ ମଣ୍ଡଳୀରୁ ପ୍ରତିଦ୍ୱନ୍ଦିତା କରୁଥିଲେ । ପ୍ରକୃତ ପକ୍ଷରେ କିନ୍ତୁ କଂଗ୍ରେସ୍ ପ୍ରାର୍ଥୀସହିତ ମୋର ସିଧାସଳଖ ପ୍ରତିଦ୍ୱନ୍ଦିତା କହିଲେ ଅତ୍ୟୁକ୍ତି ହେବ ନାହିଁ । ଏଥରର ନିର୍ବାଚନରେ ସର୍ବାପେକ୍ଷା ଅଧିକ ଉତ୍ତେଜନା ଦେଖାଯାଇଥିଲା । ବିପଦର ଆଶଙ୍କା କରି ମୋ ନିର୍ବାଚନପାଇଁ ଉଦ୍ଦିଷ୍ଟ ଏକମାତ୍ର ଜିପ୍‌ଗାଡ଼ିରେ ସବୁବେଳେ ୭-୮ଜଣ କର୍ମୀଙ୍କୁ ସଙ୍ଗରେ ନେଇ ମୋତେ ବୁଲିବାକୁ ପଡୁଥିଲା । ମୁଁ ମୋର କର୍ମୀମାନଙ୍କୁ ସତର୍କ କରାଇଦେବା ସଙ୍ଗେ ସଙ୍ଗେ ମୁଁ ନିଜେ ମଧ୍ୟ ଖୁବ୍ ସତର୍କତା ଅବଲମ୍ବନ କରୁଥାଏ ।

ଏସବୁ ସତ୍ତ୍ୱେ ବି ନିର୍ବାଚନ ପୂର୍ବ ରାତ୍ରିରେ ବେତନଟୀ ଥାନାର ଏକ ଗ୍ରାମରେ କଂଗ୍ରେସ କର୍ମୀମାନଙ୍କ ସହିତ ଆମ ପ୍ରଜାସୋସାଲିଷ୍ଟ ଦଳର କର୍ମୀମାନଙ୍କର ଏକ ସଂଘର୍ଷ ଘଟିଗଲା । ତହି ପରଦିନ ନିର୍ବାଚନ ବେଳେ ମୁଁ ମାଣତ୍ରୀଠାରେ ପହଞ୍ଚିଲା ବେଳକୁ କଂଗ୍ରେସ୍ ତରଫରୁ କିଛି ଗୁଣ୍ଡା ଆକ୍ରମଣ କରି ମୋର ଜିପ୍‌ଗାଡ଼ି ଭାଙ୍ଗିଦେବାର ଚେଷ୍ଟା କରିଥିଲେ । ସେଦିନ ରାତିରେ ଉକ୍ତ ସଂଘର୍ଷ ପରେ ଗୁଣ୍ଡାମାନେ ମୋ ଘରପୋଡ଼ିଦେଇ ମୋତେ ମାରି ଦେବାର ଅପଚେଷ୍ଟା ମଧ୍ୟ

କରିଥିଲେ । ଏହାପରେ ନିର୍ବାଚନର ଠିକ୍ ଦୁଇଦିନପୂର୍ବରୁ ପୋଲିସ୍ ଗୁଳିରେ ମରିଥିବା ଏକ ଗରିବ ଆଦିବାସୀ ପିଲାର ସ୍ମୃତିରକ୍ଷା ଉଦ୍ଦେଶ୍ୟରେ ନଡ଼ପୁର ଗ୍ରାମରେ ହୋଇଥିବା ଏକ ସମାଧି ନିକଟରେ ଦୁଇଦଳ ମଧ୍ୟରେ ମଧ୍ୟ ସଂଘର୍ଷ ଘଟିଥିଲା ଓ ସେହିଦିନ ରାତିରେ ବେତନଟୀ ଫେରିବା ବେଳେ ମୋତେ ମାରିଦେବାର ଚେଷ୍ଟା ମଧ୍ୟ ହୋଇଥିଲା । ମାତ୍ର ନିୟତିର ନିୟମ ଅନ୍ୟ ପ୍ରକାରର । ଅସତ୍ ଉଦ୍ଦେଶ୍ୟ କେବେହେଲେ ସଫଳକାମ ହୋଇପାରେ ନାହିଁ । ଏସବୁ ଅପଚେଷ୍ଟା ସତ୍ତ୍ୱେ ମୋର କେଶ ସ୍ପର୍ଶ ମଧ୍ୟ କେହି କରିପାରିନଥିଲେ, ବରଂ ଏଥର ନିର୍ବାଚନରେ ମୁଁ ସର୍ବାଧିକ ଏଗାର ହଜାର ଅଧିକ ଭୋଟରେ କଂଗ୍ରେସ୍ ପ୍ରାର୍ଥୀ ଶ୍ରୀ ମନ୍ମଥ ନାଥ ମିଶ୍ରଙ୍କୁ ପରାସ୍ତକରି ଜୟଯୁକ୍ତ ହୋଇଥିଲି । ଏହା ପୂର୍ବରୁ ତିନିଥରଯାକ ନିର୍ବାଚନରେ ଜୟଯୁକ୍ତ ହୋଇଥିଲେ ହେଁ କେବେହେଲେ ଏତେ ଅଧିକ ଭୋଟ ପାଇନଥିଲି ।

## ପ୍ରଥମ ଥର ଅଣକଂଗ୍ରେସ୍ ସରକାର

ଏଥର ନିର୍ବାଚନରେ କେବଳ ଓଡ଼ିଶା ନୁହେଁ ଭାରତର ଅନ୍ୟାନ୍ୟ କେତେକ ରାଜ୍ୟରେ ମଧ୍ୟ କଂଗ୍ରେସ୍ ଶୋଚନୀୟଭାବରେ ପରାଜୟ ବରଣ କଲା । ଏହା ଫଳରେ ପ୍ରାୟ ୧୦/୧୨ଟି ରାଜ୍ୟରେ ମିଳିତ ଅଣକଂଗ୍ରେସ୍ ସରକାରମାନ ଗଠିତ ହୋଇଥିଲା । ଓଡ଼ିଶାରେ ସର୍ବମୋଟ ୧୪୦ ଆସନ ମଧ୍ୟରୁ କଂଗ୍ରେସ୍ ମାତ୍ର ୩୧ଟି ସ୍ଥାନରେ ବିଜୟୀ ହୋଇଥିଲାବେଳେ ସ୍ୱତନ୍ତ୍ରଦଳ ୪୯, ଜନକଂଗ୍ରେସ୍ ୨୬ ଓ ପ୍ରଜାସୋସାଲିଷ୍ଟ ୨୧ଟି ସ୍ଥାନରେ ଜୟଯୁକ୍ତ ହୋଇଥିଲେ । ସ୍ୱତନ୍ତ୍ର ଓ ଜନକଂଗ୍ରେସ୍ ଉଭୟର ସମ୍ମିଶ୍ରଣରେ ୭୫ଟି ଆସନ ହେବାରୁ ସେହି ଉଭୟ ଦଳର ମିଳିତ ମନ୍ତ୍ରୀମଣ୍ଡଳ ଗଠିତ ହେଲା । ଆମ ପ୍ରଜାସୋସାଲିଷ୍ଟ ଦଳ ବିରୋଧୀ ଦଳରେ ରହିବାର ସ୍ଥିର ହେଲା, ମାତ୍ର କଂଗ୍ରେସ୍ ଦଳର ସଂଖ୍ୟା ଅଧିକ ଥିବାରୁ ସେମାନଙ୍କୁ ପ୍ରଥମ ସ୍ଥାନ ଓ ଆମକୁ ଦ୍ୱିତୀୟ ସ୍ଥାନ ମିଳିଲା । ଏହିଥର ପ୍ରଥମ ଥରପାଇଁ ଓଡ଼ିଶାରେ ବିଧାନସଭାର ଉପବାଚସ୍ପତି ସରକାରୀ ଦଳର ସମର୍ଥନରେ ବିରୁଦ୍ଧ ଦଳରୁ ନିର୍ବାଚିତ ହୋଇଥିଲେ । ଶ୍ରୀଯୁକ୍ତ ରାଜେନ୍ଦ୍ର ନାରାୟଣ ସିଂହଦେଓ ଓ ଶ୍ରୀଯୁକ୍ତ ପବିତ୍ର ମୋହନ ପ୍ରଧାନଙ୍କ ମିଳିତ ସ୍ୱତନ୍ତ୍ର ଓ ଜନକଂଗ୍ରେସ୍ ମନ୍ତ୍ରୀମଣ୍ଡଳ ଏକ ଅତି ଉଚ୍ଚ ପରମ୍ପରା ସୃଷ୍ଟି କରିଥିଲେ । ଆଜି ସେ ପରମ୍ପରା କେବେ ସମ୍ଭବପର ନୁହେଁ । ଶ୍ରୀଯୁକ୍ତ ହରିହର ବାହୀନୀପତି ପ୍ରଜାସୋସାଲିଷ୍ଟ ଦଳରୁ ବାଚସ୍ପତି ପଦକୁ ନିର୍ବାଚିତ ହୋଇଥିଲେ । କିନ୍ତୁ ଏହି ସରକାରୀ ଦୁଇଦଳସହିତ ଆମର ସେପରି ସୌହାର୍ଦ୍ଦ୍ୟପୂର୍ଣ୍ଣ ସଂପର୍କ ରହିପାରିଲା ନାହିଁ । କ୍ଷମତାକୁ ଆସିବା ପୂର୍ବରୁ ବିରୋଧୀଦଳର ଯେଉଁମାନେ ଦୁର୍ନୀତି ବିରୁଦ୍ଧରେ ସ୍ୱର ଉତ୍ତୋଳନ କରୁଥିଲେ ସେହିମାନେ ହିଁ କ୍ଷମତାକୁ ଆସିଲା ପରେ ସେଥିରେ ଲିପ୍ତ ହେଉଥିବାର ଦେଖି ଆମ ଦଳକୁ ପୂର୍ବ ଭୂମିକା ଗ୍ରହଣ କରିବାକୁ ପଡ଼ିଥିଲା । ଏଥର ବିଧାନସଭାକୁ ଆମ ଦଳ ପକ୍ଷରୁ ବାଲେଶ୍ୱରରୁ ନିର୍ବାଚିତ ଶ୍ରୀଯୁକ୍ତ ରବୀନ୍ଦ୍ର ମୋହନ ଦାସ ଦଳପତି ଓ ମୁଁ ଉପଦଳପତିଭାବରେ ନିର୍ବାଚିତ ହୋଇଥିଲୁ । ଏହି ବିଧାନସଭା ୧୯୭୦ ମସିହା ଶେଷ ପର୍ଯ୍ୟନ୍ତ ଚାରିବର୍ଷରୁ କିଛି କମ୍ ସମୟ ମାତ୍ର ରହି ଅସମୟରେ ସମାପ୍ତ ହୋଇଥିଲା ।

## କଂଗ୍ରେସର ପ୍ରଥମ ବିଭାଜନ: ଏହାର ଅନ୍ୟ ଦଳ ଉପରେ ପ୍ରଭାବ

୧୯୬୬ର ନିର୍ବାଚନରେ ଭାରତର କେତେକ ମୁଖ୍ୟ ରାଜ୍ୟଗୁଡ଼ିକରେ ଅଣକଂଗ୍ରେସ ସରକାର ପ୍ରତିଷ୍ଠିତ ହୋଇଥିଲେହେଁ କେନ୍ଦ୍ରରେ ଶ୍ରୀମତୀ ଇନ୍ଦିରା ଗାନ୍ଧିଙ୍କ ନେତୃତ୍ୱରେ କଂଗ୍ରେସ ସରକାର ଗଠିତ ହୋଇଥିଲା । ଏହି ସରକାର ପ୍ରାୟ ଦୁଇବର୍ଷ କାଳ ଚାଲିଲାପରେ କଂଗ୍ରେସର କାର୍ଯ୍ୟକ୍ରମ ଓ ଲକ୍ଷ୍ୟରେ ଏକ ନୂତନ ସମାଜବାଦୀ ମୋଡ଼ ନେଲା । ଏକପକ୍ଷରେ ପ୍ରଧାନମନ୍ତ୍ରୀ ଶ୍ରୀମତୀ ଇନ୍ଦିରା ଗାନ୍ଧି ଓ ଯୁବ ନେତୃତ୍ୱ ଅନ୍ୟପକ୍ଷରେ ଅର୍ଥମନ୍ତ୍ରୀ ଶ୍ରୀଯୁକ୍ତ ମୋରାର୍ଜୀ ଦେଶାଇ ଓ କଂଗ୍ରେସର ରକ୍ଷଣଶୀଳ ଗୋଷ୍ଠୀଙ୍କ ମଧ୍ୟରେ ଯେଉଁ ବିବାଦ ସୃଷ୍ଟି ହେଲା । ତାହା ରାଷ୍ଟ୍ରପତି ନିର୍ବାଚନରେ ପ୍ରକାଶ୍ୟ ଯୁଦ୍ଧରେ ପରିଣତ ହେଲା । ଏହାର ପରିଣାମରେ ଜାତୀୟ କଂଗ୍ରେସର ବିଧିବଦ୍ଧ ପ୍ରାର୍ଥୀ ଶ୍ରୀଯୁକ୍ତ ସଂଜୀବ ରେଡ଼ି ପରାସ୍ତ ହେଲେ ଓ ପ୍ରଧାନମନ୍ତ୍ରୀ ଶ୍ରୀମତୀ ଇନ୍ଦିରା ଗାନ୍ଧିଙ୍କ ବିବେକ ସମର୍ଥିତ ପ୍ରାର୍ଥୀ ଶ୍ରୀଯୁକ୍ତ ଭି.ଭି. ଗିରି ନିର୍ବାଚିତ ହେଲେ । ଏ ସବୁର ପରବର୍ତ୍ତୀ ପରିଣାମରେ ୧୯୬୭ ମସିହାରେ ଶାସକ କଂଗ୍ରେସ ଓ ସଂଗଠନ କଂଗ୍ରେସ ନାମରେ ଦୁଇଟି ସ୍ୱତନ୍ତ୍ର ରାଜନୈତିକ ଦଳରେ ପରିଣତ ହେଲା । କ୍ରମେ କେନ୍ଦ୍ର ପାର୍ଲାମେଣ୍ଟ ଲୋକସଭା ଓ ରାଜ୍ୟସଭାରେ ତଥା ରାଜ୍ୟ ବିଧାନସଭାମାନଙ୍କରେ ମଧ ଅନୁରୂପ ବିଭାଜନ ହୋଇ ଦୁଇ ଦଳରେ ପରିଣତ ହେଲା । ଓଡ଼ିଶା ବିଧାନସଭାର ଶାସକ ଜନକଂଗ୍ରେସ ଗୋଷ୍ଠୀର କେତେକ ମୁଖ୍ୟ ବ୍ୟକ୍ତି ବିରୁଦ୍ଧ ଦଳରେ ଯୋଗଦେବା ଫଳରେ ମିଳିତ ସ୍ୱତନ୍ତ୍ର ଓ ଜନକଂଗ୍ରେସ ସରକାର ସଂଖ୍ୟା ନ୍ୟୂନ ହୋଇପଡ଼ିଲା । ଏହି ସମୟରେ ୧୯୭୦ ମସିହାର ଶେଷ ଆଡ଼କୁ ଶ୍ରୀମତୀ ଗାନ୍ଧି ତାଙ୍କ ସରକାରକୁ ହଠାତ୍ ଭାଙ୍ଗିଦେଇ ସାଧାରଣ ନିର୍ବାଚନର ଡାକାରା ଦେଲେ । ଓଡ଼ିଶାରେ ମଧ ସଂଖ୍ୟାନ୍ୟୂନ ସରକାରକୁ ଭାଙ୍ଗିଦେଇ ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ରାଜେନ୍ଦ୍ର ନାରାୟଣ ସିଂହଦେଓ ନିର୍ବାଚନ କରିବାର ପରାମର୍ଶ ଦେବାରୁ ପାଞ୍ଚବର୍ଷ କାର୍ଯ୍ୟକାଳ ନ ପୂରୁଣୁ ଓଡ଼ିଶା ବିଧାନସଭା ମଧ ଭାଙ୍ଗିଗଲା ।

## ୧୯୭୧ ମସିହାର ସାଧାରଣ ନିର୍ବାଚନ

୧୯୭୧ ମସିହା ଫେବୃୟାରୀ ମାସରେ ଉଭୟ ଲୋକସଭା ଓ ବିଧାନସଭାର ନିର୍ବାଚନ ଏକସଙ୍ଗରେ ହେବାର ଘୋଷଣା ପ୍ରକାଶ ପାଇଲା । ଓଡ଼ିଶା ଭଳି ଅନ୍ୟ କେତେକ ଅଳ୍ପ ସ୍ଥାନରେ ଉଭୟ ବିଧାନସଭା ଓ ଲୋକସଭାର ନିର୍ବାଚନ ହେଉଥିଲେ ହେଁ ଭାରତର ଅଧିକାଂଶ ରାଜ୍ୟରେ ଏକମାତ୍ର ଲୋକସଭାର ନିର୍ବାଚନ ହୋଇଥିଲା । ଏହି ନିର୍ବାଚନରେ ଶ୍ରୀମତୀ ଗାନ୍ଧୀଙ୍କ ''ଗରୀବୀ ହଟାଓ'', ''ବ୍ୟାଙ୍କ ଜାତୀୟକରଣ'' ତଥା ''ରାଜାମହାରାଜାଙ୍କ ଭତ୍ତା କାଟ'' ପ୍ରଭୃତି ପ୍ରଗତିଶୀଳ କାର୍ଯ୍ୟକ୍ରମମାନ ନିର୍ବାଚନ ଇସ୍ତାହାରରେ ସ୍ଥାନ ପାଇଥିଲା । ଏ ସମସ୍ତ କାର୍ଯ୍ୟକ୍ରମର ସଫଳ ରୂପାୟନପାଇଁ କେନ୍ଦ୍ରରେ ଏକ ଶକ୍ତିଶାଳୀ ସରକାର ପ୍ରତିଷ୍ଠା କରିବାକୁ ଲୋକମାନଙ୍କୁ ନିବେଦନ କଲେ । ପୂର୍ବବର୍ତ୍ତୀ ନିର୍ବାଚନରେ ବିଭିନ୍ନ ରାଜ୍ୟଗୁଡ଼ିକରେ କଂଗ୍ରେସ୍‌କୁ ବାଦ ଦେଇ ଯେଉଁ ଅଣକଂଗ୍ରେସ୍ ସରକାରମାନ ଗଠିତ ହୋଇଥିଲା ତାର କାର୍ଯ୍ୟକାଳ ମାତ୍ର ଚାରିବର୍ଷ ସ୍ଥାୟୀ ହୋଇଥିଲେ ହେଁ ପରସ୍ପରମଧରେ ବାଦ ବିବାଦ ଲାଗି କେତେକ ସ୍ଥାନରେ ସେଗୁଡ଼ିକ ଭାଙ୍ଗିଗଲା । କେତେକ ରାଜ୍ୟରେ

ଘନଘନ ସରକାର ପରିବର୍ତ୍ତନ ଯୋଗୁ ଶାସନ କ୍ଷେତ୍ରରେ ଅସ୍ଥିରତା ଦେଖାଦେଲା । ଏତିକିବେଳେ ବିହାରରେ ମାତ୍ର ୪ଦିନର ବ୍ୟବଧାନରେ ଗୋଟିଏ ସରକାର ବଦଳି ହେଲା । ବିଭିନ୍ନ ବିରୋଧୀଦଳ ମାନଙ୍କ ମଧ୍ୟରେ ଆଦର୍ଶଗତ ବୁଝାମଣା ଅଭାବରୁ ତଥା ରାଜନୈତିକ ଆଦର୍ଶ ଓ ଲକ୍ଷ୍ୟରେ ବହୁ ପାର୍ଥକ୍ୟ ଥିବା ଯୋଗୁଁ ମିଳିତ ସରକାରଗୁଡ଼ିକ କେବଳ ରାଜନୈତିକ ଅସ୍ଥିରତା ସୃଷ୍ଟି କଲେ । ମାତ୍ର ଜନସାଧାରଣଙ୍କ ସମସ୍ୟା ସମାଧାନ କରିବାରେ ସଂପୂର୍ଣ୍ଣ ବିଫଳ ହେଲେ । ତେଣୁ ଲୋକେ ତାଙ୍କ କାର୍ଯ୍ୟକଳାପରେ ଅତିଷ୍ଠ ହୋଇପଡ଼ିଲେ ଓ କ୍ରମେ ସେମାନଙ୍କ ଉପରୁ ଲୋକଙ୍କର ଆସ୍ଥା ତୁଟିଯିବାକୁ ଲାଗିଲା । ଏତିକିବେଳେ ପ୍ରଧାନମନ୍ତ୍ରୀ ଶ୍ରୀମତୀ ଗାନ୍ଧୀଙ୍କର ''ଗରୀବୀ ହଟାଓ'' ଆହ୍ୱାନ ସାଙ୍ଗକୁ ବିରୁଦ୍ଧଦଳ ଗୁଡ଼ିକର ''ଇନ୍ଦିରା ହଟାଓ'' ଆହ୍ୱାନ ମଧ୍ୟରେ ନିର୍ବାଚନ ପ୍ରତିଦ୍ୱନ୍ଦିତା ଆରମ୍ଭ ହେଲା । ଏହାର ପରିଣାମରେ ଜନମତ ନିଶ୍ଚିତ ଭାବରେ ଅଦ୍ଭୁତ ପ୍ରକାରରେ କଂଗ୍ରେସ୍ ସପକ୍ଷରେ ଗଲା ଓ ଶ୍ରୀମତୀ ଗାନ୍ଧୀଙ୍କର ଏକ ଦୃଢ଼ ନେତୃତ୍ୱ ଦେଶରେ ତଥା କଂଗ୍ରେସ୍ ଦଳମଧ୍ୟରେ ପ୍ରତିଷ୍ଠିତ ହେଲା । ଲୋକସଭା ନିର୍ବାଚନରେ ଶାସକ କଂଗ୍ରେସ୍ ବହୁ ସଂଖ୍ୟାରେ ନିର୍ବାଚିତ ହୋଇ କ୍ଷମତାକୁ ଗଲେ । କେବଳ ବାମପନ୍ଥୀ ଦଳ ବ୍ୟତୀତ ସଂଗଠନ କଂଗ୍ରେସ୍ ଓ ଅନ୍ୟ ବିରୋଧୀ ଦଳଗୁଡ଼ିକ ନିଶ୍ଚିହ୍ନ ହୋଇଗଲେ ।

## ଓଡ଼ିଶାର ଅବସ୍ଥା

ଅବଶ୍ୟ ଓଡ଼ିଶାରେ ସେପରି କୌଣସି ରାଜନୈତିକ ଅସ୍ଥିରତା ସୃଷ୍ଟି ହୋଇନଥିଲେ ହେଁ ନିର୍ବାଚନ ବେଳକୁ ଶାସକ କଂଗ୍ରେସ୍ ଦଳରେ ବିଧାନସଭାରେ ମାତ୍ର ୮/୧୦ ଜଣ ସଭ୍ୟ ଓ ଲୋକସଭାରେ ଓଡ଼ିଶାରୁ ମାତ୍ର ୨/୩ ଜଣ ସଭ୍ୟ ଥିଲେ । ଏହି ନିର୍ବାଚନରେ ଲୋକସଭାକୁ ଓଡ଼ିଶାର ମୋଟ ୨୧ଟି ସ୍ଥାନ ମଧ୍ୟରୁ ଶାସକ କଂଗ୍ରେସ୍ ଦଳର ଅଧିକ ସଂଖ୍ୟକ ପ୍ରାର୍ଥୀ ଜୟଯୁକ୍ତ ହେଲେ । ମାତ୍ର ଓଡ଼ିଶା ବିଧାନସଭାକୁ ମୋଟ ୫୨ଜଣ ସଭ୍ୟ ନିର୍ବାଚିତ ହୋଇ ସଂଖ୍ୟାଧିକ ଦଳ ହେଲେ ମଧ୍ୟ ସରକାର ଗଠନ କରିପାରିଲେ ନାହିଁ । ଏହାର କାରଣ ହେଉଛି ଓଡ଼ିଶା କଂଗ୍ରେସ ଦଳରେ ଶ୍ରୀ ବିଜୁ ପଟ୍ଟନାୟକଙ୍କ ପ୍ରଭାବ ଖୁବ୍ ବେଶି ଥିଲା ଓ କଂଗ୍ରେସ୍ର ବିଭାଜନ ବେଳକୁ ଅଧିକ ସଂଖ୍ୟକ କଂଗ୍ରେସ୍ ଲୋକ ଶ୍ରୀ ପଟ୍ଟନାୟକଙ୍କ ସାଙ୍ଗରେ ରହିଗଲେ । ନିର୍ବାଚନ ବେଳକୁ ବିଜୁବାବୁ କଂଗ୍ରେସ୍ ଦଳ ଛାଡ଼ି ସ୍ୱତନ୍ତ୍ରଦଳ ଓ ଅନ୍ୟ କେତେକ ଦଳକୁ ମିଶାଇ ଉତ୍କଳ କଂଗ୍ରେସ୍ ନାମରେ ଏକ ଆଞ୍ଚଳିକ ଦଳ ଗଠନ କରିଥିଲେ ଓ ମିଳିତ ସରକାରର ଆହ୍ୱାନ ଦେଇଥିଲେ । ଉତ୍କଳ କଂଗ୍ରେସ ସଂଖ୍ୟାରେ ଶାସକ କଂଗ୍ରେସ୍ ପଛକୁ ରହିଥିଲେ ହେଁ ଉତ୍କଳ କଂଗ୍ରେସ୍, ସ୍ୱତନ୍ତ୍ରଦଳ ଓ କେତେକ ସ୍ୱାଧୀନ ସଭ୍ୟ ମିଶି ସଂଖ୍ୟାଧିକ ହେବାରୁ ପୁଣି ଏକ ଅଣ କଂଗ୍ରେସ୍ ମିଳିତ ସରକାର ଗଠିତ ହେଲା । ଓଡ଼ିଶାର ବର୍ଷିୟାନ୍ ନେତା, ସ୍ୱାଧୀନତା ସଂଗ୍ରାମୀ ତଥା ସ୍ୱାଧୀନତା ପୂର୍ବକାଳର କଂଗ୍ରେସ ଦଳରୁ ମୁଖ୍ୟମନ୍ତ୍ରୀ ଥିବା ଶ୍ରୀଯୁକ୍ତ ବିଶ୍ୱନାଥ ଦାଶ ଏହି ସରକାରର ନେତୃତ୍ୱ ନେଲେ । ଏ ସବୁ ବ୍ୟବସ୍ଥା ସତ୍ତ୍ୱେ ବିଜୁ ପଟ୍ଟନାୟକ ନିଜେ ଏଥର ତିନୋଟି ବିଧାନସଭା ଓ ଗୋଟିଏ ଲୋକସଭା ଆସନରୁ ପ୍ରତିଦ୍ୱନ୍ଦିତା କରି ସବୁଥିରୁ ପରାସ୍ତ ହୋଇଥିଲେ । ଏହା ପୂର୍ବରୁ ୧୯୬୭ ମସିହାରେ

ମଧ୍ୟ ନିର୍ବାଚନରେ ପ୍ରତିଦ୍ୱନ୍ଦିତା କରି ହାରିଥିଲେ । ଏହି ଦୁଇ ଥରରେ ବିଜୁବାବୁ ଲୋକସଭା ଓ ବିଧାନସଭାକୁ ମିଶାଇ ମୋଟ ୭ଟି ସ୍ଥାନରୁ ପରାସ୍ତ ହୋଇ ରେକର୍ଡ଼ ସୃଷ୍ଟି କରିଥିଲେ । ବିଜୁ ବାବୁଙ୍କ ଏ ଉଦ୍ୟମ ବେଶିଦିନ ସ୍ଥାୟୀ ହୋଇପାରିଲା ନାହିଁ । ମିଳିତ ସରକାରର କେତେକ ସଭ୍ୟ କଂଗ୍ରେସ୍‌ରେ ଆସି ମିଶିବାଦ୍ୱାରା ଓ ବିଜୁ ପଟ୍ଟନାୟକ ତଥା ଉପମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ନୀଳମଣି ରାଉତରାୟଙ୍କ ମଧ୍ୟରେ ମତାନ୍ତର ହେବାରୁ ଶ୍ରୀଯୁକ୍ତ ବିଶ୍ୱନାଥ ଦାଶଙ୍କ ମନ୍ତ୍ରୀମଣ୍ଡଳ ମାତ୍ର ଆଠମାସ ଶାସନ କ୍ଷମତାରେ ରହିବାପରେ ଭାଙ୍ଗି ଯାଇଥିଲା ।

## ୧୯୭୧ର ସାଧାରଣ ନିର୍ବାଚନରେ ପ୍ରଜାସୋସାଲିଷ୍ଟ ପାର୍ଟିର ଚରମ ବିଫଳତା

ସର୍ବଭାରତୀୟ କ୍ଷେତ୍ରରେ ପ୍ରଜା ସୋସାଲିଷ୍ଟ ପାର୍ଟିର ଅତି ସମ୍ମାନନୀୟ ଭୂମିକା ୧୯୫୭ ଠାରୁ ୧୯୭୦ ପର୍ଯ୍ୟନ୍ତ ରହି ଆସିଥିଲେ ହେଁ ଶ୍ରୀମତୀ ଗାନ୍ଧୀଙ୍କ ନୂତନ ପ୍ରଗତିଶୀଳ ଆହ୍ୱାନ ଅନ୍ୟ ଦଳମାନଙ୍କ ପରି ସୋସାଲିଷ୍ଟର ଭୂମିକାକୁ ମଧ୍ୟ ଦୋହଲାଇ ଦେଲା । ଫଳରେ ଲୋକସଭାକୁ ଅତି ନଗଣ୍ୟ ସଂଖ୍ୟକ ସଭ୍ୟ ନିର୍ବାଚିତ ହୋଇଥିଲେ । ସେହିପରି ଓଡ଼ିଶା ବିଧାନସଭାରେ ମଧ୍ୟ ପୂର୍ବଥର ୨୧ଜଣ ସଭ୍ୟ ଥିବାବେଳେ ଏଥର ମାତ୍ର ୪ଜଣ ସଭ୍ୟ ନିର୍ବାଚିତ ହୋଇଥିଲୁଁ ।

## ପଞ୍ଚମଥରପାଇଁ ମୁଁ ବିଧାନସଭାକୁ ନିର୍ବାଚିତ

୧୯୭୧ ମସିହାର ସାଧାରଣ ନିର୍ବାଚନରେ ମୁଁ ପୁଣି ବୈଶିଙ୍ଗା ନିର୍ବାଚନ ମଣ୍ଡଳୀରୁ ପ୍ରଜାସୋସାଲିଷ୍ଟ ପାର୍ଟିରୁ ବିଧାନସଭାପାଇଁ ପ୍ରାର୍ଥୀ ହେଲି । ଏହି ନିର୍ବାଚନ ହଠାତ୍ ହେବାରୁ ଆର୍ଥିକ ଦୃଷ୍ଟିରୁ ମୋତେ ବିଶେଷ ଅସୁବିଧାର ସମ୍ମୁଖୀନ ହେବାକୁ ପଡ଼ିଲା । ନିର୍ବାଚନ କାର୍ଯ୍ୟ ତୁଲାଇବାପାଇଁ ମୋର ସେହି ପୁରୁଣା ଜିପ୍ ଗାଡ଼ିଟି ଥିଲେ ବି ତାକୁ ଚଳାଇବାପାଇଁ ଟାୟାର ଟ୍ୟୁବ୍ ମଧ୍ୟ ନଥିଲା । ଦଳପକ୍ଷରୁ ମଧ୍ୟ ସେପରି କୌଣସି ଆର୍ଥିକ ସାହାଯ୍ୟ ମିଳିବାର ନାହିଁ । ତଥାପି ବଂଧୁମାନଙ୍କଠାରୁ ଧାର କରଜ କରି କାମ ଆରମ୍ଭ କରିଦେଲି । ଏଥର ମୋତେ ପ୍ରତିଦ୍ୱନ୍ଦିତା କରିବାକୁ ୧୧ଜଣ ଅବତୀର୍ଣ୍ଣ । ଫଳରେ ମୁଁ ଅନାୟାସରେ ଜୟଯୁକ୍ତ ହେଲି ଓ ମୋତେ ପ୍ରତିଦ୍ୱନ୍ଦିତା କରୁଥିବା ସମସ୍ତଙ୍କର ଅମାନତ ବାଜ୍ୟାପ୍ତ ହୋଇ ଏକ ରେକର୍ଡ ସୃଷ୍ଟି ହେଲା । ମାତ୍ର ବିଧାନସଭାକୁ ଆମ ଦଳ ପକ୍ଷରୁ ମୋ ବ୍ୟତୀତ ଶ୍ରୀଯୁକ୍ତ ବାଙ୍କବିହାରୀ ଦାସ, ଶ୍ରୀ ପ୍ରସନ୍ନ କୁମାର ପାଳ ଓ ଶ୍ରୀ ଭାଗବତ ପ୍ରସାଦ ମହାନ୍ତି ଏଇ ଚାରିଜଣ ମାତ୍ର ନିର୍ବାଚିତ ହୋଇଥିବାରୁ ବିଶେଷ ହତୋତ୍ସାହ ହୋଇପଡିଲୁ ।

## ମୋର କଂଗ୍ରେସ୍‌ରେ ଯୋଗଦାନ

ବିରୋଧୀ ଦଳଗୁଡିକର ଏଭଳି ପରାଜୟ ହେତୁ ଭବିଷ୍ୟତ ରାଜନୀତି ସଂକ୍ରାନ୍ତରେ ସମସ୍ତଙ୍କ ମନରେ ସନ୍ଦେହ ଓ ନିରାଶା ଭାବ ଉଦ୍ରେକ ହେଲା । ପୁଣି ଦୁଇ ସୋସାଲିଷ୍ଟି ପାର୍ଟିର ମିଶ୍ରଣ ପ୍ରସ୍ତାବ ଉଠିଲା ଓ ଉଭୟ ଦଳରେ ଉପସ୍ଥାପିତ ହୋଇ ଗୃହୀତ ମଧ୍ୟ ହୋଇଗଲା । ମାତ୍ର ଏ ମିଶ୍ରଣ

ପ୍ରସ୍ତାବରେ ଆମେ କେତେଜଣ ଏକମତ ହୋଇପାରିଲୁ ନାହିଁ । ତାର କାରଣ ସ୍ୱରୂପ ଅନ୍ୟ ସୋସାଲିଷ୍ଟ ଦଳରେ ଯେଉଁ ସଭ୍ୟମାନେ ଥିଲେ ସେମାନଙ୍କ ସହିତ ମତାନ୍ତର ଘଟି ପୁଣି ଦଳ ବିଭାଜନ ହେବାର ଯଥେଷ୍ଟ ସମ୍ଭାବନା ଥିଲା । ତେଣୁଁ ଆମେ ସୁରେନ୍ଦ୍ର ନାଥ ଦ୍ୱିବେଦୀ, ଶ୍ରୀ ରବୀନ୍ଦ୍ର ମୋହନ ଦାସ, ଶ୍ରୀ ବାଙ୍କବିହାରୀ ଦାସ, ଶ୍ରୀ ନିଶାମଣି ଖୁଣ୍ଟିଆ ଓ ଶ୍ରୀ ଭାଗବତ ପ୍ରସାଦ ମହାନ୍ତି ପ୍ରଭୃତିଙ୍କୁ ନେଇ ଏକ ବୈଠକରେ ଏଭଳି ମିଶ୍ରଣରେ ଯୋଗ ନଦେବାର ସ୍ଥିର କଲୁ । ମୁଁ ସେତେବେଳେ ବିଧାନସଭାରେ ଆମ ଦଳର ଦଳପତି ଥିଲି । ଭୁବନେଶ୍ୱରଠାରେ ଏହି ମତସହିତ ଏକମତ ଥିବା ପ୍ରଜାସୋସାଲିଷ୍ଟ ପାର୍ଟିର ଏକ ସମ୍ମିଳନୀ ଡ଼କାଯାଇ ସମସ୍ତ ବିଷୟରେ ଆଲୋଚନା କରାଗଲା । ଉକ୍ତ ସମ୍ମିଳନୀରେ ମିଶ୍ରଣରେ ଯୋଗ ନ ଦେବା ପାଇଁ ସ୍ଥିରୀକୃତ ହେଲା ଓ ପ୍ରଜାସୋସାଲିଷ୍ଟ ପାର୍ଟି ନାମରେ ଦଳର ସଂଗଠନ ଓ ଅସ୍ତିତ୍ୱ ରକ୍ଷା କରାଯିବାର ସ୍ଥିର କରାଯାଇ ମୋତେ ବିଧାନ ସଭାର ଦଳପତି ସାଙ୍ଗକୁ ପ୍ରାଦେଶିକ କମିଟିର ସଭାପତି କରାଗଲା । ଆମକୁ ସମର୍ଥନ କରି ବିହାରର କେତେକ ସଭ୍ୟ ମଧ ଏହି ସମ୍ମିଳନୀରେ ଯୋଗଦାନ କରିଥିଲେ । ଏହା ଭିତରେ ୧୯୭୧ ଶେଷ ବେଳକୁ ଦୁଇ ସୋସାଲିଷ୍ଟ ପାର୍ଟିର ମିଶ୍ରଣ ମଧ ହୋଇଗଲା । ମାତ୍ର ଆମର ଓଡ଼ିଶା ଓ ଅନ୍ୟ କେତେକ ରାଜ୍ୟରେ ମୂଳ ସୋସାଲିଷ୍ଟ ପାର୍ଟି ନାଁରେ କେତେକ ଅଂଶ ରହିଗଲା ।

୧୯୪୮ ମସିହାରେ ସର୍ବଭାରତୀୟ ସ୍ତରରେ କଂଗ୍ରେସ ସୋସାଲିଷ୍ଟ ଦଳ କେତେକ କାରଣରୁ କଂଗ୍ରେସରୁ ଅଲଗା ହୋଇ ସୋସାଲିଷ୍ଟ ପାର୍ଟି ନାମରେ ଏକ ଜାତୀୟ ରାଜନୈତିକ ଦଳ ଗଠନ କରିଥିଲେ । ୧୯୫୧-୫୨ର ପ୍ରଥମ ସାଧାରଣ ନିର୍ବାଚନରେ ସୋସାଲିଷ୍ଟ ପାର୍ଟିର ବିପର୍ଯ୍ୟୟ ପରେ ଅନ୍ୟାନ୍ୟ କେତେକ ଦଳ ମିଶି ବନାରସ ଅଧିବେଶନରେ ଶ୍ରୀଯୁକ୍ତ ଆଚାର୍ଯ୍ୟ କୃପାଳିନୀ, ଶ୍ରୀ ନରେନ୍ଦ୍ର ଦେଓ, ଶ୍ରୀ ଜୟ ପ୍ରକାଶ ନାରାୟଣ, ଶ୍ରୀ ରାମ ମନୋହର ଲୋହିୟା, ଶ୍ରୀ ଅଶୋକ ମେହେଟାଙ୍କ ଭଳି ଆନ୍ତର୍ଜାତିକ ଖ୍ୟାତିସଂପନ୍ନ ନେତାମାନଙ୍କର ଯେଉଁ ସଂଗଠନ ହୋଇଥିଲା ଏବଂ ସେତେବେଳେ ଲୋକେ ଯାହାକୁ କଂଗ୍ରେସର ଏକମାତ୍ର ବିକଳ୍ପ ରାଜନୈତିକ ଦଳ ବୋଲି ଭାବୁଥିଲେ ସେହିପରି ଏକ ଜାତୀୟ ଦଳର ୧୯୫୩, ୧୯୬୨ ଏବଂ ପରିଶେଷରେ ୧୯୭୧ ମସିହାର ମିଶ୍ରଣର ଛଅମାସ ନ ପୂରୁଣୁଁ ପୁଣି ବିଭାଜନ ଘଟି ସମାଜବାଦୀ ଦଳର ସଂପୂର୍ଣ୍ଣ ବିଲୋପର ମୂଳ କାରଣ ହେଲା ।

ଏହାପରେ ଜାତୀୟ ସ୍ତରରେ କଂଗ୍ରେସସହିତ ଓଡ଼ିଶା ପ୍ରଜାସୋସାଲିଷ୍ଟ ପାର୍ଟିର ମିଶ୍ରଣ ସଂକ୍ରାନ୍ତରେ ଆଲୋଚନା ଚାଲିଲା । ସେତେବେଳର ପ୍ରଧାନମନ୍ତ୍ରୀ ତଥା ଜାତୀୟ କଂଗ୍ରେସର ନେତା ଶ୍ରୀମତୀ ଇନ୍ଦିରା ଗାନ୍ଧି ଓଡ଼ିଶା ପ୍ରଦେଶ କଂଗ୍ରେସର ଏପରି ଦୁର୍ବଳ ଅବସ୍ଥା ଦେଖି ଏଠାରେ ଥିବା ସମାଜବାଦୀ ଦଳକୁ କଂଗ୍ରେସ ସହିତ ସାମିଲ କରିବାର ପରିକଳ୍ପନା କଲେ, କାରଣ ସେ ଜାତୀୟ କଂଗ୍ରେସରେ ଏକ ନୂତନ ପ୍ରେରଣା ଜାଗରୁକ କରିବା ପାଇଁ ଗରିବୀ ହଟାଓ କାର୍ଯ୍ୟକ୍ରମ ପ୍ରବର୍ତ୍ତନ କରିଥିଲେ ହେଁ, ତାହା କାର୍ଯ୍ୟକାରୀ କରିବାପାଇଁ ଓଡ଼ିଶାରେ ଆନ୍ତରିକାତାର ଅଭାବ ଅନୁଭବ

କଲେ । ତେଣୁ ସେତେବେଳର କଂଗ୍ରେସର ସାଧାରଣ ସଂପାଦକ ଶ୍ରୀଯୁକ୍ତ ଶଙ୍କର ଦୟାଲ ଶର୍ମା (ବର୍ତ୍ତମାନ ରାଷ୍ଟ୍ରପତି) ଭୁବନେଶ୍ୱର ଆସି ମୋତେ, ବନ୍ଧୁ ବାଙ୍କ ବିହାରୀ ଦାସ ଓ ଶ୍ରୀଯୁକ୍ତ ନିଶାମଣି ଖୁଣ୍ଟିଆଙ୍କୁ ଡାକି ଶ୍ରୀମତୀ ଗାନ୍ଧିଙ୍କ ଇଚ୍ଛା ପ୍ରକାଶ କଲେ । କେତେକ ସର୍ତ୍ତ ସହିତ ଆମର ସମ୍ମତି ନେଇ ସେ ଫେରିଗଲେ । ଏହି ଆଲୋଚନା ସମୟରେ ସେତେବେଳର ଲୋକସଭା ସଭ୍ୟ ଶ୍ରୀଯୁକ୍ତ ଜାନକୀବଲ୍ଲଭ ପଟ୍ଟନାୟକ ମଧ୍ୟ ଉପସ୍ଥିତ ଥିଲେ । ଆମର ସର୍ତ୍ତ ଥିଲା ଯେ, ରାଜ୍ୟ ପ୍ରଜାସୋସାଲିଷ୍ଟ ପାର୍ଟି ପୂରାପୂରି କଂଗ୍ରେସ ସହିତ ମିଶିଯିବ ଏବଂ ସେଥିପାଇଁ କଂଗ୍ରେସ ସଭାପତି ସ୍ୱତନ୍ତ୍ର ଭାବରେ ଆମକୁ ଏକ ଲିଖିତ ନିମନ୍ତ୍ରଣ ପଠାଇବେ, ବ୍ୟକ୍ତିଗତ ଭାବେ ସ୍ୱତନ୍ତ୍ର ଦରଖାସ୍ତ କରି କଂଗ୍ରେସ ସହିତ ମିଶିବୁଁ ନାହିଁ । ଆମର ଏହି ପ୍ରସ୍ତାବ କେନ୍ଦ୍ର ଓ ରାଜ୍ୟ ସ୍ତରରେ ମଧ୍ୟ କଂଗ୍ରେସ ଲୋକେ ସ୍ୱାଗତ କଲେ ।

ଏହା ପୂର୍ବରୁ ବୋଧହୁଏ ଶ୍ରୀମତୀ ଗାନ୍ଧି ସମଗ୍ର ଦେଶରେ କଂଗ୍ରେସ ସହିତ ଅନ୍ୟ କୌଣସି ଦଳର ଏପରି ମିଶ୍ରଣ କରି ନଥିଲେ । ଏହା ଏକ ସମ୍ମାନଜନକ ପଦକ୍ଷେପ ହୋଇଥିବାରୁ ଆମସହିତ ପ୍ରଜାସୋସାଲିଷ୍ଟ ପାର୍ଟିର ସମସ୍ତେ ଅତ୍ୟନ୍ତ ଆନନ୍ଦିତ ଓ ଉତ୍ସାହିତ ହେଲେ । ରାଜ୍ୟରୁ ସମାଜବାଦୀ ଦଳର ଅବସାନ ଘଟିଲା ।

## ଦୁଃଖ ଓ ବେଦନା ମଧ୍ୟରେ ଦଳ ପରିବର୍ତ୍ତନ କଲି

୧୯୩୯ ମସିହାରୁ ପାଠପଢ଼ା ଛାଡ଼ି ପ୍ରଜାମଣ୍ଡଳ ବା କଂଗ୍ରେସ ଅନୁଷ୍ଠାନରେ ଯୋଗଦେଇ ଜାତୀୟ ଆନ୍ଦୋଳନରେ ଭାଗନେଇଥିଲି । ସ୍ୱାଧୀନତା ପ୍ରାପ୍ତି ପରେ ସେତେବେଳର ଓଡ଼ିଶା କଂଗ୍ରେସର ନେତା ତଥା ଓଡ଼ିଶାର ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ହରେକୃଷ୍ଣ ମହତାବଙ୍କ ବ୍ୟବହାରରେ ଅସନ୍ତୁଷ୍ଟ ହୋଇ କଂଗ୍ରେସ ଛାଡ଼ି ପ୍ରଜାସୋସାଲିଷ୍ଟ ପାର୍ଟି ଭଳି ଏକ ବାମପନ୍ଥୀ ଦଳରେ ଯୋଗଦେବାକୁ ବାଧ୍ୟ ହୋଇଥିଲି । ଏହି ଦଳର ଆଦର୍ଶରେ ଅନୁପ୍ରାଣିତ ହୋଇ ନିଜକୁ ସମାଜବାଦୀଭାବରେ ପ୍ରତିଷ୍ଠିତ କରିବାପାଇଁ ସତତ ଚେଷ୍ଟା ମଧ୍ୟ କରିଥିଲି । ମୁଁ ସବୁଦିନ ବିରୁଦ୍ଧ ଦଳରେ ରହିବି, କେବେହେଲେ ମନ୍ତ୍ରୀ ବା ସରକାରରେ ଭାଗୀଦାର ହୋଇପାରିବି ନାହିଁ ବୋଲି ଧରିନେଇଥିଲି । ମୋ ନିଜ ଜିଲ୍ଲାରୁ ମୋ'ଠାରୁ ଅତି କନିଷ୍ଠ ବ୍ୟକ୍ତିମାନେ ମଧ୍ୟ ଅଳ୍ପ କେତେଦିନ ମାତ୍ର ବିଧାନସଭାର ସଭ୍ୟ ହୋଇ ମନ୍ତ୍ରୀ ଆସନରେ ଅଧିଷ୍ଠିତ ହୋଇଥିଲି । ମୁଁ ପୁରୁଣା ଓ ଅଭିଜ୍ଞ ହେଲେ ମଧ୍ୟ କେବେହେଲେ କୌଣସି ପଦ-ପଦବୀରେ ଅଧିଷ୍ଠିତ ହୋଇପାରୁ ନଥିଲି । ସେଥିପାଇଁ ମୋର କୌଣସି କ୍ଷୋଭ ନଥିଲା ବା ସେମାନଙ୍କ ପ୍ରତି ମୋର କୌଣସି ଈର୍ଷା ନଥିଲା ବା ନାହିଁ । ସମୟର ପରିବର୍ତ୍ତନ ତଥା ଭାରତର ରାଜନୈତିକ ପରିସ୍ଥିତିର ଆହ୍ୱାନ କ୍ରମେ ପୁଣି ସେହି ମୂଳ ଅନୁଷ୍ଠାନ କଂଗ୍ରେସର କୋଳକୁ ଯିବାକୁ ପଡ଼ିଲାରୁ ମନରେ ପ୍ରଥମେ କଷ୍ଟ ହେଲେ ହେଁ କୌଣସି ପ୍ରଲୋଭନ ବା ପଦ-ପଦବୀ ପ୍ରାପ୍ତିର ଲକ୍ଷ୍ୟ ବା ଲାଳସା ନଥିବାରୁ କିଛି ହେଲେ ଆସକ୍ତି ବା ହତାଶଭାବ ମନରେ ଜାଗ୍ରତ ହୋଇ ନଥିଲା । ଏତେବେଳକୁ ମୁଁ ସମାଜବାଦୀ ଦଳରେ ଦୀର୍ଘ ୨୨/୨୩ ବର୍ଷ ରହିସାରିଲିଣି

ଓ ପାଞ୍ଚ ଥର ବିଧାନସଭାକୁ ନିର୍ବାଚିତ ହୋଇସାରିଲିଣି । ଦୀର୍ଘଦିନ ଧରି ବିଧାନସଭାର ସଭ୍ୟ ହୋଇ ରହିଥିଲେ ହେଁ ମୋ ନିର୍ବାଚନ ମଣ୍ଡଳୀରେ ଦୃଷ୍ଟିକୁ ଆସିଲାଭଳି କୌଣସି କାର୍ଯ୍ୟ କରିପାରି ନଥିଲି । ତଥାପି ନିଜକୁ ଜଣେ ସାଧୁ ସଚ୍ଚୋଟ ରାଜନୈତିକ କର୍ମୀଭାବରେ ଜନସାଧାରଣଙ୍କ ନିକଟରେ ପରିଚିତ କରାଇବାରେ ସମର୍ଥ ହୋଇଥିଲି, ନିଜେ ସ୍ପଷ୍ଟବାଦୀ ହୋଇ ସମସ୍ତ ଅନ୍ୟାୟ ଓ ଅନୀତିର ସମ୍ମୁଖୀନ ହେବାର ସାହାସ ସୃଷ୍ଟି କରି ଜନଚେତନା ଜାଗ୍ରତ କରିବାରେ ସଫଳକାମ ହୋଇଥିଲି । ବିରୁଦ୍ଧ ଦଳରେ ସବୁଦିନ ଥାଇ ଶାସନ ଦାୟିତ୍ୱ ନଥିବା ଜୀବନ ମୋତେ ବେଶ୍ ସୁହାଇଥିଲା । ଏବେ ଏହି ସରକାରୀ ଦଳ ଭିତରକୁ ଯାଉଥିବାରୁ ରାଜନୀତିର ମହାସମୁଦ୍ର ମଧ୍ୟରେ ସତ୍ତା ହରାଇବି କି ନିଜ ବ୍ୟକ୍ତିତ୍ୱ ରକ୍ଷା କରିପାରିବି ଏହା ହିଁ ଥିଲା ମନରେ ଏକ ସନ୍ଦେହ ।

ଏହାପରେ କଂଗ୍ରେସ ସଭାନେତ୍ରୀ ଶ୍ରୀମତୀ ଗାନ୍ଧିଙ୍କ ନିମନ୍ତ୍ରଣ କ୍ରମେ ମିଶ୍ରଣ ଉଦ୍ଦେଶ୍ୟରେ ଭୁବନେଶ୍ୱରଠାରେ ମୋ ସଭାପତିତ୍ୱରେ ଏକ ଅଧିବେଶନ ଅନୁଷ୍ଠିତ ହେଲା । ଉକ୍ତ ଅଧିବେଶନରେ ଉଭୟ ପ୍ରଜାସମାଜବାଦୀ ଦଳର ନେତା ତଥା ପ୍ରାଦେଶିକ କଂଗ୍ରେସ ସଭାପତି ଓ କର୍ମକର୍ତ୍ତା ସମୂହଙ୍କ ଉପସ୍ଥିତିରେ ମିଶ୍ରଣ ପ୍ରସ୍ତାବ ଗୃହୀତ ହେଲା ଓ ବ୍ୟକ୍ତିବିଶେଷ ଭାବରେ କେହି ଯୋଗ ନଦେଇ ସମଗ୍ର ଦଳର ମିଶ୍ରଣ ଘଟିଲା । ୧୯୪୯ ମସିହାରୁ କଂଗ୍ରେସ ଛାଡ଼ିବା ପରେ ଦୀର୍ଘ ୨୨ ବର୍ଷ ପରେ ପୁଣି କଂଗ୍ରେସକୁ ଫେରିଲି । କଂଗ୍ରେସକୁ ମୋ ଭଳି ଏକ ସମାଜବାଦୀ ଆଦର୍ଶରେ ବିଶ୍ୱାସ କରୁଥିବା ବ୍ୟକ୍ତିଙ୍କର ଲକ୍ଷ୍ୟରେ ଏକ ନିକଟତମ ଦଳଭାବରେ ବିଚାର କରି ତହିଁରେ ଯୋଗଦେଲି । ଆଜକୁ ପ୍ରାୟ ୨୦/୨୫ ବର୍ଷ କାଳ କଂଗ୍ରେସରେ ଯୋଗଦେଲେ ମଧ୍ୟ ନିଜକୁ ସର୍ବଦା ସମାଜବାଦୀଭାବେ ବିଚାର କରେ ଓ ସମାଜବାଦ ଉପରେ ମୋର ସଂପୂର୍ଣ୍ଣ ଆସ୍ଥା ରହିଛି । ଭାରତ ଭଳି ଏକ ବିକାଶୋନ୍ମୁଖୀ ଦେଶର ଅର୍ଥନୀତି ସମାଜବାଦୀ ହେବା ଉଚିତ ବୋଲି ମୋର ଦୃଢ଼ ବିଶ୍ୱାସ, ଗଣତାନ୍ତ୍ରିକ ସମାଜବାଦ ପ୍ରତିଷ୍ଠା ଜାତୀୟ କଂଗ୍ରେସର ଲକ୍ଷ୍ୟ ଓ ଆଦର୍ଶ ହେଲେ ହେଁ ବହୁ କଂଗ୍ରେସ ଲୋକ ସମାଜବାଦରେ ବିଶ୍ୱାସ କରିବା ଦୂରେ ଥାଉ, ଉକ୍ତ ଶବ୍ଦର ଯଥାର୍ଥ ଅର୍ଥ ମଧ୍ୟ ବୁଝନ୍ତି ନାହିଁ । ମହାତ୍ମା ଗାନ୍ଧିଙ୍କ ସମୟରୁ କଂଗ୍ରେସ ଦଳର ମୌଳିକ ନୀତିରେ କଂଗ୍ରେସ ଲୋକେ ଖଦଡ଼ ପିନ୍ଧିବା ଓ ନିଶାଦ୍ରବ୍ୟ ବ୍ୟବହାର ନ କରିବାପାଇଁ ସ୍ପଷ୍ଟ ଉଲ୍ଲେଖ କରାଯାଇଥିଲେ ବି ବହୁ ଅଳ୍ପ ସଂଖ୍ୟକ କଂଗ୍ରେସ ଲୋକେ ତାହା ପାଳନ କରୁଥିବାର ଦେଖି ନିରାଶ ହେବାକୁ ପଡ଼େ ।

ମୋତେ ମିଶାଇ ଆମ ଦଳରୁ ୪ ଜଣ ସଦସ୍ୟ କଂଗ୍ରେସରେ ଯୋଗଦେବା ଫଳରେ ବିଧାନସଭାରେ କଂଗ୍ରେସ ଦଳର ସଂଖ୍ୟା ମାତ୍ର ୫୬ ହେଲେ ମଧ୍ୟ ରାଜନୈତିକ ପ୍ରଭାବ ବିଶେଷଭାବରେ ବୃଦ୍ଧି ପାଇଲା । ପରେ ପରେ ମିଳିତ ସରକାରରୁ ଶ୍ରୀଯୁକ୍ତ ନୀଳମଣି ରାଉତରାୟଙ୍କ ନେତୃତ୍ୱରେ କଂଗ୍ରେସରେ ଆସତି ଯୋଗଦେବା ଫଳରେ ଓ ଶ୍ରୀଯୁକ୍ତ ବିଶ୍ୱନାଥ ଦାଶଙ୍କ ଇସ୍ତଫା ପ୍ରଦାନ ହେତୁ ସରକାରର ପତନ ଘଟିଲା ! ମାତ୍ର ବିଧାନସଭାରେ କଂଗ୍ରେସ ଦଳର ସଭ୍ୟ ସଂଖ୍ୟା ବୃଦ୍ଧି ପାଇ ଶହେରେ ପହୁଞ୍ଚିଲାରୁ କେନ୍ଦ୍ର ସରକାରଙ୍କ ପରାମର୍ଶ ଓ ନିର୍ଦ୍ଦେଶାନୁସାରେ ଶ୍ରୀମତୀ

ନନ୍ଦିନୀ ଶତପଥିଙ୍କ ନେତୃତ୍ୱରେ ୧୯୭୨ ମସିହା ଜୁନ୍ ମାସରେ ନୂତନ କଂଗ୍ରେସ ସରକାର ପୁଣି ପ୍ରତିଷ୍ଠିତ ହେଲା ।

## ମୋର ମନ୍ତ୍ରୀ ହେବାର ଅନିଚ୍ଛା

ଶ୍ରୀମତୀ ନନ୍ଦିନୀ ଶତପଥିଙ୍କ ନେତୃତ୍ୱରେ ଯେଉଁଦିନ ମନ୍ତ୍ରିମଣ୍ଡଳ ଗଠନ କରାଯିବାର ହେଲା ସେଦିନ କେତେକ ଖବରକାଗଜ ସମ୍ବାଦଦାତା ମୋର ଜନ୍ମ ତାରିଖ ଓ ସ୍ଥାନ ଇତ୍ୟାଦି ସଂପର୍କରେ ମୋତେ ପ୍ରଶ୍ନ କଲାରୁ ମୋ ମନରେ ସନ୍ଦେହ ଜାତ ହେଲା । ପରେ ପଚାରି ଜାଣିଲି ଯେ, ମୋତେ ମନ୍ତ୍ରିମଣ୍ଡଳରେ ନିଆଯିବାର ସ୍ଥିର କରାଯାଇଛି । ମାତ୍ର ଆମେ କଂଗ୍ରେସରେ ଯୋଗ ଦେବାବେଳେ ଆମ ଭିତରୁ କାହାକୁ ମନ୍ତ୍ରିମଣ୍ଡଳରେ ସ୍ଥାନ ଦିଆଗଲେ ସେଥିପାଇଁ ଶ୍ରୀ ବାଙ୍କବିହାରୀ ଦାସଙ୍କୁ ନେବାପାଇଁ ଆମ ପକ୍ଷରୁ ଉଦ୍ୟମ କରିବାକୁ ସ୍ଥିର କରାଯାଇଥିଲା । ତଦନୁଯାୟୀ ମୁଁ ଶ୍ରୀମତୀ ଶତପଥିଙ୍କୁ ମୋର ମତାମତ ଜଣାଇଦେବା ସଙ୍ଗେ ସଙ୍ଗେ କଂଗ୍ରେସ ଟିକଟରେ ବିଧାନସଭାକୁ ସଭ୍ୟ ନିର୍ବାଚିତ ହୋଇ ନଥିବାରୁ କଂଗ୍ରେସ ମନ୍ତ୍ରିମଣ୍ଡଳରେ ଯୋଗଦେବା ଉଚିତ ହେବ ନାହିଁ ବୋଲି ତାଙ୍କୁ ଜଣାଇଦେଲି ।

## ମାତ୍ର ଆଠ ମାସ ପରେ ସରକାର ପତନ

ସମାଜବାଦୀ ଦଳର କଂଗ୍ରେସରେ ମିଶ୍ରଣ ତଥା ବିଜୁ ପଟ୍ଟନାୟକଙ୍କ ସମେତ ମାତ୍ର ସାତଜଣଙ୍କୁ ବାଦଦେଇ ଅନ୍ୟ ସମସ୍ତ ଉତ୍କଳ କଂଗ୍ରେସ ସଭ୍ୟ କଂଗ୍ରେସରେ ଯୋଗଦାନ ଫଳରେ ଉକ୍ତ ଦଳ ସଂଖ୍ୟାଗରିଷ୍ଠ ହୋଇ ଶ୍ରୀମତୀ ନନ୍ଦିନୀ ଶତପଥିଙ୍କ ନେତୃତ୍ୱରେ ଗଠିତ ମନ୍ତ୍ରିମଣ୍ଡଳର ମାତ୍ର ଆଠ ମାସ ପରେ ସଂଘଟିତ ହୋଇ ରାଜ୍ୟରେ ରାଷ୍ଟ୍ରପତି ଶାସନ ଜାରୀ ହେଲା । ଏହି ସରକାରର ପତନ ଅତ୍ୟନ୍ତ ରହସ୍ୟଜନକ । ଶ୍ରୀ ନୀଳମଣି ରାଉତରାୟ ଏହି ମନ୍ତ୍ରିମଣ୍ଡଳରେ ଉପମୁଖ୍ୟମନ୍ତ୍ରୀ ଥିଲେ ହେଁ ଶ୍ରୀଯୁକ୍ତ ବିଜୁ ପଟ୍ଟନାୟକ ଏ ସରକାରକୁ ରଖାଇ ନଦେବା ପାଇଁ ସମସ୍ତ ଉଦ୍ୟମ ଆରମ୍ଭ କରିଦେଲେ । ଶ୍ରୀ ନୀଳମଣି ରାଉତରାୟ ପ୍ରଭୃତି କୌଣସି କାରଣରୁ କଂଗ୍ରେସରେ ଯୋଗଦେଇଥିଲେ ହେଁ ବିଜୁ ପଟ୍ଟନାୟକଙ୍କ ପ୍ରତି ତାଙ୍କର ଆନ୍ତରିକ ସୌହାର୍ଦ୍ଦ୍ୟ ଓ ସମର୍ଥନ ଥିଲା । ଶ୍ରୀମତୀ ଶତପଥିଙ୍କ ମନ୍ତ୍ରିମଣ୍ଡଳ ପ୍ରଥମେ ମାତ୍ର ସାତଜଣ ସଭ୍ୟଙ୍କୁ ନେଇ ଗଠିତ ହେଲା । ଏତେ ଅଳ୍ପ ସଂଖ୍ୟକ ସଭ୍ୟଙ୍କୁ ନେଇ ଶାସନ କାର୍ଯ୍ୟ ଠିକ୍‌ଭାବରେ ପରିଚାଳିତ ହୋଇପାରିଲା ନାହିଁ । ତା ବ୍ୟତୀତ ଶ୍ରୀମତୀ ଶତପଥି ନିଜେ ମଧ୍ୟ ବିଧାନସଭାର ନିର୍ବାଚିତ ସଭ୍ୟ ନଥିଲେ । ମନ୍ତ୍ରିମଣ୍ଡଳ ଗଠିତ ହେବାର ୬ ମାସ ପରେ ଲୋକସଭା ସଭ୍ୟ ପଦରୁ ଇସ୍ତଫା ଦେଇ କଟକ ନିର୍ବାଚନମଣ୍ଡଳୀରୁ ପ୍ରତିଦ୍ୱନ୍ଦ୍ୱିତା କଲେ । ଶ୍ରୀ ବିଜୁ ପଟ୍ଟନାୟକ କଟକରୁ ଶ୍ରୀଯୁକ୍ତ ବୀରେନ୍ ମିତ୍ରଙ୍କୁ ତାଙ୍କ ବିପକ୍ଷରେ ଛିଡ଼ା କରାଇଲେ । ବହୁ କଷ୍ଟ ଓ ଅର୍ଥବ୍ୟୟ କରି ଶ୍ରୀମତୀ ଶତପଥି ଏ ନିର୍ବାଚନରେ ଜୟଯୁକ୍ତ ହେଲେ । ଏହି ନିର୍ବାଚନରେ ଆମ ଦଳରୁ ନୂଆକରି ଆସି କଂଗ୍ରେସରେ ଯୋଗ ଦେଇଥିବା ପ୍ରାୟ ସମସ୍ତ ସଭ୍ୟ ଆନ୍ତରିକତାର ସହିତ କାର୍ଯ୍ୟ କରିଥିଲେ । ମୁଁ ନିଜେ କଟକ ସହରର ଏକ ଦୁର୍ଦ୍ଦାନ୍ତ

ଅଞ୍ଚଳ ମଙ୍ଗଳାବାଗର ନିର୍ବାଚନ ଦାୟିତ୍ୱରେ ରହି କାର୍ଯ୍ୟ ତୁଲାଇଥିଲି । ବାଙ୍କବାବୁ ସମଗ୍ର ନିର୍ବାଚନମଣ୍ଡଳୀର ଅର୍ଥ ଦାୟିତ୍ୱରେ ଥିଲେ । ଏହି ବିଜୟ ପରେ ମନ୍ତ୍ରିମଣ୍ଡଳର ପତନ କରାଇବାପାଇଁ ଅଧିକ ଷଡ଼ଯନ୍ତ୍ର ଆରମ୍ଭ ହେଲା । ବିଜୁବାବୁଙ୍କ ଷଡଯନ୍ତ୍ର ସହିତ ଶ୍ରୀଯୁକ୍ତ ଡକ୍ଟର ମହତାବଙ୍କ ମଧ ଭିତିରି ସମର୍ଥନ ରହିଲା । ମନ୍ତ୍ରିମଣ୍ଡଳକୁ ଦୃଢ଼ କରିବାପାଇଁ ମନ୍ତ୍ରୀ ସଂଖ୍ୟା ବୃଦ୍ଧି କରାଗଲେ ମଧ ଉତ୍କଳ କଂଗ୍ରେସରୁ ଆସି କଂଗ୍ରେସରେ ଯୋଗ ଦେଇଥିବା ବହୁ ସଭ୍ୟ ମନ୍ତ୍ରୀ ପଦର ଆଶାୟୀ ଥିଲେ । ତେଣୁ ମନ୍ତ୍ରୀ ହୋଇ ନପାରିବାରୁ ସେମାନେ ମଧ ଉକ୍ତ ଷଡ଼ଯନ୍ତ୍ରରେ ଯୋଗଦେଲେ । ମନ୍ତ୍ରିମଣ୍ଡଳ ଏହିପରି ଏକ ଅସ୍ଥିର ଅବସ୍ଥାରେ ଥିବା ସମୟରେ ହଠାତ୍ ନୀଳମଣି ରାଉତରାୟଙ୍କ ସ୍ତ୍ରୀ ବିୟୋଗ ଘଟିଲା । ଅନ୍ତତଃ ଶୁଦ୍ଧିକ୍ରିୟା ଶେଷ ହେବା ପର୍ଯ୍ୟନ୍ତ ମନ୍ତ୍ରୀମଣ୍ଡଳ ତିଷ୍ଠି ପାରିବ ବୋଲି ଆମେ ସମସ୍ତେ ଚିନ୍ତା କରୁଥିଲୁ । ମାତ୍ର ମୃତ୍ୟୁର ଚାରିଦିନ ପରେ ହଠାତ୍ ମନ୍ତ୍ରିମଣ୍ଡଳର ପତନ ହେଲା । ଶ୍ରୀ ନୀଳମଣି ରାଉତରାୟଙ୍କ ସମେତ ଉତ୍କଳ କଂଗ୍ରେସରୁ ଆସିଥିବା ବିଧାୟକମାନେ କଂଗ୍ରେସ ଦଳରୁ ଇସ୍ତଫା ଦେବାର ନିଷ୍ପତ୍ତି ଗ୍ରହଣ କରି ପୁଣି ଉତ୍କଳ କଂଗ୍ରେସରେ ମିଶି ଶ୍ରୀ ବିଜୁ ପଟ୍ଟନାୟକଙ୍କୁ ନେଇ ଏକ ନୂତନ ମନ୍ତ୍ରିମଣ୍ଡଳ ଗଠନ କରିବାର ସ୍ଥିର କଲେ । ତଦନୁଯାୟୀ ରାଜ୍ୟପାଳଙ୍କୁ ନିଜର ମତାମତ ଜଣାଇବାକୁ ଯିବା ପୂର୍ବରୁ ଏଣେ ଶ୍ରୀମତୀ ନନ୍ଦିନୀ ଶତପଥି ତାଙ୍କ ମନ୍ତ୍ରିମଣ୍ଡଳର (ନୀଳମଣି ରାଉତରାୟଙ୍କୁ ବାଦଦେଇ) ସଭ୍ୟମାନଙ୍କ ଏକ ବୈଠକ ଡାକି ମନ୍ତ୍ରିମଣ୍ଡଳ ଇସ୍ତଫା ଦେବାର ଓ ରାଜ୍ୟରେ ରାଷ୍ଟ୍ରପତି ଶାସନ ଜାରି କରିବାକୁ ମତାମତ ରାଜ୍ୟପାଳଙ୍କୁ ଜଣାଇଦେଲେ । ଅପର ପକ୍ଷରେ ଶ୍ରୀ ବିଜୁ ପଟ୍ଟନାୟକଙ୍କ ନେତୃତ୍ୱରେ ଶ୍ରୀ ନୀଳମଣି ରାଉତରାୟ ପ୍ରଭୃତି ରାଜ୍ୟପାଳଙ୍କୁ ଭେଟି ତାଙ୍କ ମନ୍ତ୍ରୀମଣ୍ଡଳ ଭାଙ୍ଗିଦେଇ ରାଷ୍ଟ୍ରପତି ଶାସନ ଜାରୀ ହେବାର ନିଷ୍ପତ୍ତି ଜଣାଇଦେବାରୁ ସମସ୍ତ ଷଡ଼ଯନ୍ତ୍ର ପଣ୍ଡ ହୋଇଗଲା । ରାଜ୍ୟପାଳଙ୍କ ଏହି ନିଷ୍ପତ୍ତି ବିଧାନ ସମ୍ମତ ହେଲେ ହେଁ ଅନ୍ୟମାନଙ୍କୁ ମନ୍ତ୍ରୀମଣ୍ଡଳ ଗଠନପାଇଁ ଡକାନଯାଇ ରାଷ୍ଟ୍ରପତି ଶାସନ ଜାରୀ କରାଯାଇଥିବାରୁ ରାଜ୍ୟପାଳଙ୍କ ବିରୋଧରେ ବିକ୍ଷୋଭ ପ୍ରଦର୍ଶିତ ହେଲା । ମାତ୍ର କିଛି ଫଳ ସେଥିରୁ ମିଳିଲା ନାହିଁ । ପୁଣି ନିର୍ବାଚନ କରାନଯାଇ ବର୍ଷେକାଳ ରାଷ୍ଟ୍ରପତି ଶାସନ ଚାଲୁ ରହିଲା । ଏହା ପୂର୍ବରୁ ଓଡ଼ିଶାରେ କେବେହେଲେ ଏତେଦିନ ପର୍ଯ୍ୟନ୍ତ ରାଷ୍ଟ୍ରପତି ଶାସନ ଚାଲି ନଥିଲା । ସେତେବେଳେ ଶ୍ରୀମତୀ ଗାନ୍ଧୀ ପ୍ରଧାନମନ୍ତ୍ରୀ ଶ୍ରୀଯୁକ୍ତ ଜଟୀ ଥାଆନ୍ତି ଓଡ଼ିଶାର ରାଜ୍ୟପାଳ । ସେତେବେଳେ ଉତ୍କଳ କଂଗ୍ରେସ୍‌ର ବିଜୁବାବୁ ପ୍ରଭୃତି ମୁଷ୍ଟିମେୟ କେତେଜଣଙ୍କୁ ବାଦଦେଇ ୧୯୭୨ରେ ଯେଉଁ ମିଶ୍ରଣ ଘଟିଲା ତାହା ତ୍ରୁଟିପୂର୍ଣ୍ଣ ହେଲା । ତା ନ ହୋଇଥିଲେ ଓଡ଼ିଶାରେ କଂଗ୍ରେସ୍ ଦଳ ଅତ୍ୟନ୍ତ ମଜଭୁତ ହୋଇଥାଆନ୍ତା ଓ ରାଜ୍ୟର ଅଗ୍ରଗତି ହୋଇପାରିଥାଆନ୍ତା ।

## ୧୯୭୪ ମସିହାର ବିଧାନସଭା ନିର୍ବାଚନ - ମୋର ପ୍ରଥମ ପରାଜୟ

୧୯୭୪ର ନିର୍ବାଚନ ପୂର୍ବରୁ ସୀମା ନିର୍ଦ୍ଧାରଣ କମିଶନ୍‌ଙ୍କ ରିପୋର୍ଟ ଅନୁଯାୟୀ ମୟୂରଭଞ୍ଜ ଜିଲ୍ଲାର୍ ସର୍ବମୋଟ ୧୦ଟି ଆସନ ମଧ୍ୟରୁ କେବଳ ବାରିପଦା ବ୍ୟତୀତ ଅନ୍ୟ ନଅଟିଯାକ ସଂରକ୍ଷିତ ଆସନରୂପେ ଘୋଷଣା କରାଗଲା । ଏଥିପୂର୍ବରୁ ପାଞ୍ଚଟିଯାକ ନିର୍ବାଚନରେ ମୋତେ ହରାଇବା

ଲକ୍ଷ୍ୟ ନେଇ ନିର୍ବାଚନ ମଣ୍ଡଳୀ ଗୁଡ଼ିକର ବାରମ୍ବାର ସଂରକ୍ଷିତ କରିଥିଲେ ହେଁ ମୋତେ ପରାସ୍ତ କରିବାରେ କେବେହେଲେ ସଫଳକାମ ହୋଇପାରି ନଥିଲେ, ମାତ୍ର ଏଥରର ଏହି ଘୋଷଣାଦ୍ୱାରା ଉକ୍ତ ଷଡ଼ଯନ୍ତ୍ର ସଫଳ ହେଲା ।

୧୯୭୩ ମସିହା ଅଗଷ୍ଟମାସ ବେଳକୁ ନିର୍ବାଚନ ମଣ୍ଡଳୀର ସୀମା ନିର୍ଦ୍ଧାରଣ କମିଶନ୍ ଓଡ଼ିଶାକୁ ସାକ୍ଷୀ ନେବାକୁ ଆସିଥିଲାବେଳେ କଂଗ୍ରେସ୍ ପକ୍ଷରୁ ମୁଁ ଓ ବାଙ୍କ ବିହାରୀ ବାବୁ ଉପସ୍ଥିତ ହୋଇ ମୋ ନିର୍ବାଚନ ମଣ୍ଡଳୀକୁ ସଂରକ୍ଷିତ କରିବାର କୌଣସି କାରଣ ନଥିବା ଯୁକ୍ତି କରି ପ୍ରସ୍ତାବମାନ ଦେଇଥିଲୁ । ସ୍ୱତନ୍ତ୍ର ଦଳ ଓ ବିଜୁ ପଟ୍ଟନାୟକଙ୍କ ଉତ୍କଳ କଂଗ୍ରେସ୍ ଦଳ ତରଫରୁ କେତେକ ଲୋକ ଅସୂୟା ପରବଶ ହୋଇ ମୟୂରଭଞ୍ଜର ସ୍ୱାର୍ଥକୁ ସଂପୂର୍ଣ୍ଣ ଭାବେ ଜଳାଞ୍ଜଳି ଦେଲେ ଓ ଆମ ପ୍ରସ୍ତାବର ବିରୋଧ କରି ବାରିପଦା ବ୍ୟତୀତ ଅନ୍ୟ ୯ଟି ଯାକ ଆସନ ସଂରକ୍ଷିତ ରଖିବାର ମୂଳ ପ୍ରସ୍ତାବକୁ ସମର୍ଥନ ଜଣାଇଲେ । ଏହା ବ୍ୟତୀତ କମିଶନଙ୍କ ସହଯୋଗୀ ସଭ୍ୟଭାବେ କାର୍ଯ୍ୟ କରୁଥିବା ପାଞ୍ଚଦଶ ଏମ୍.ପି.ଙ୍କ ମଧ୍ୟରୁ ଶ୍ରୀ ଶ୍ୟାମସୁନ୍ଦର ମହାପାତ୍ରଙ୍କ ଏ ଦିଗରେ ଷଡ଼ଯନ୍ତ୍ର ଆହୁରି ଅଧିକ ଥିଲା । ସେ ବର୍ଷ ଡ଼ିସେମ୍ବର ୩୧ତାରିଖରେ ନିର୍ବାଚନ ମଣ୍ଡଳୀର ସୀମାନିର୍ଦ୍ଧାରଣ ଚୂଡାନ୍ତ ଭାବେ ଘୋଷଣା କରାଗଲା, ଏବଂ ୧୯୭୪ ଫେବୃୟାରୀ ୨୬ ତାରିଖକୁ ବିଧାନସଭାର ନିର୍ବାଚନ ହେବାର ସ୍ଥିରୀକୃତ ହୋଇସାରିଥାଏ । ମୋ ପାଇଁ ନିର୍ବାଚନ ମଣ୍ଡଳୀ ନଥିବା ଦୃଷ୍ଟିରୁ ମୁଁ ଆଉ ପ୍ରାର୍ଥୀ ନହେବାର ମନସ୍ଥ କରିଥାଏ । ମାତ୍ର ଜିଲ୍ଲା କମିଟି ସର୍ବସମ୍ମତି କ୍ରମେ ମୋ ନାମ ବାରିପଦାପାଇଁ ପ୍ରସ୍ତାବ କରିବାରୁ ଶେଷ ମୁହୂର୍ତ୍ତରେ ନିର୍ବାଚନରେ ପ୍ରାର୍ଥୀ ହେବାର ନିଶ୍ଚିତ କଲି । ମାତ୍ର ଏଥିରେ ମୁଁ ନିର୍ବାଚନ ମଣ୍ଡଳୀର ବାହାର ଲୋକ ହୋଇଥିବାରୁ ବାରିପଦା ସହରରେ ଥିବା କଂଗ୍ରେସ୍ ଲୋକେ ଟିକିଏ ଅସନ୍ତୁଷ୍ଟ ହେଲେ । ଅପର ପକ୍ଷରେ ମହାରାଜାଙ୍କ ସାନଭାଇ ଲାଲସାହେବ 'ପୂର୍ବଥର ନିର୍ବାଚନରେ ମହାରାଜାଙ୍କୁ ସମ୍ମୁଖୀନ ହେବାପାଇଁ କଂଗ୍ରେସ୍ ଭିତରେ ମୋ ବ୍ୟତୀତ ଅନ୍ୟ କେହି ସମକକ୍ଷ ପ୍ରତିଦ୍ୱନ୍ଦ୍ୱି ନଥିବା ଦୃଷ୍ଟିରୁ ମୋତେ ହିଁ ସର୍ବସମ୍ମତିକ୍ରମେ ପ୍ରାର୍ଥୀ କରାଯିବାର ନିଷ୍ପତ୍ତି ନେଇଥିଲେ । ଏହା ସତ୍ତ୍ୱେ ବି ସେହି କର୍ମୀମାନେ ନିର୍ବାଚନରେ ମୋତେ ପରାସ୍ତ କରିବାପାଇଁ ସମସ୍ତ ପ୍ରକାର ଦଳ ବିରୋଧୀ କାର୍ଯ୍ୟ କଲେ, ପରିଣାମରେ ମୋତେ ମାତ୍ର ୧୧୦୦ ଭୋଟ ବ୍ୟବଧାନରେ ପରାଜୟ ସ୍ୱୀକାର କରିବାକୁ ପଡ଼ିଲା ।

ବାରିପଦା ନିର୍ବାଚନ ମଣ୍ଡଳୀର ବାରିପଦା ସହର ଓ ସହର ଉପକଣ୍ଠରେ ଥିବା ବାରିପଦା ବ୍ଲକର ଦୁଇଟି ଗ୍ରାମପଞ୍ଚାୟତକୁ ନେଇ ଗୋଟିଏ ଅଂଶ ଓ ଅନ୍ୟ ଦୁଇଟି ଅଂଶ ହେଲା ଶୁଳିଆପଦା ବ୍ଲକ ତଥା ମୋରଡ଼ା ବ୍ଲକର ମୋରାଡ଼ା ଥାନା ଅଞ୍ଚଳ । ଏହି ତିନୋଟିଯାକ ଅଂଶ ପ୍ରାୟ ସମାନ କହିଲେ ଅତ୍ୟୁକ୍ତି ହେବ ନାହିଁ ।

ଏଭିତରୁ ବାରିପଦା ସହର ଓ ବାରିପଦା ବ୍ଲକ ଅଂଚଳରେ ନିର୍ବାଚନ ଦୃଷ୍ଟିରୁ ମୁଁ ସଂପୂର୍ଣ୍ଣ ନୂଆ ନା ଉପରେ ପୁଣି ବାରିପଦା ସହରର ଅଧିକାଂଶ କର୍ମୀ ମୋତେ ପରାସ୍ତ କରାଇବାପାଇଁ ଭିତିରି ‍ଷଡ଼ଯନ୍ତ୍ରରେ ଲିପ୍ତ । ପୂର୍ବରୁ ଏଠାରେ ମୋର କୌଣସି ସଂଗଠନ ନଥିବା ଦୃଷ୍ଟିରୁ ମୋତେ

ସେମାନଙ୍କ ଉପରେ ସଂପୂର୍ଣ୍ଣ ନିର୍ଭର କରିବାକୁ ପଡ଼ିଲା । ମୋର ଅତି ପ୍ରିୟ ବଂଧୁ ଶ୍ରୀ ମହେଶ୍ଵନ୍ଦ୍ର ସିହ୍ନା ଏ ଅଂଚଳର ନିର୍ବାଚନ ଦାୟିତ୍ୱରେ ଥିବା ହେତୁ ଏ ବିଶ୍ୱାସଘାତକତାରୁ କେତେକ ପରିମାଣରେ ରକ୍ଷା ପାଇପାରିଥିଲି । ଅନ୍ୟ ଏକ ଅଂଶ ଶୁକିଆପଦା ଅଛ୍ଚ କେତେକ ଅଞ୍ଚଳକୁ ଛାଡିଦେଲେ ଅବଶିଷ୍ଟ ଅଞ୍ଚଳରେ ମୁଁ ସଂପୂର୍ଣ୍ଣ ନୂଆ ଥିଲି । ଏହି ଅଞ୍ଚଳରେ ଭଞ୍ଜପୁରାଣ ଜାତିର ଲୋକେ ବେଶି ପରିମାଣରେ ବାସ କରନ୍ତି । ଏହି ସଂପ୍ରଦାୟର ଲୋକେ ନିଜକୁ ରାଜପରିବାରର ଲୋକ ବୋଲି ପରିଚୟ ଦିଅନ୍ତି । ସୁତରାଂ ସେମାନେ ଅତିମାତ୍ରାରେ ରାଜଭକ୍ତ । ମହାରାଜା ନିଜେ ଲାଲ ସାହେବ ପ୍ରମୋଦ କୁମାର ଭଞ୍ଜଙ୍କ ପାଇଁ ପ୍ରଚାର କରୁଥିବାରୁ ଏହି ସଂପ୍ରଦାୟର ଲୋକେ ମୁଖ୍ୟତଃ ମୋ ବିରୁଦ୍ଧରେ ଭୋଟ ଦେଲେ, ଏ ଅଂଚଳରେ ମୁଁ ସବୁଠାରୁ କମ୍ ଭୋଟ ପାଇଥିଲି । ତୃତୀୟ ଅଂଶଟି ହେଲା ମୋରଭା ଥାନା ଇଲାକା । ଏ ଅଂଚଳ ମୋର ପ୍ରଥମ ୧୯୫୨ ମସିହା ନିର୍ବାଚନ ବେଳର ଅଂଚଳ ଏବଂ ତା ମଧ୍ୟରୁ ଦୁଇ ଗ୍ରାମପଞ୍ଚାୟତ ଅଞ୍ଚଳ ମୋର ପୂର୍ବତନ ବୈଶିଙ୍ଗା ନିର୍ବାଚନ ମଣ୍ଡଳୀର ଅନ୍ତର୍ଭୁକ୍ତ ଥିଲା । ତେଣୁ ଏ ଇଲାକାର ମୋତେ ସର୍ବାଧିକ ଭୋଟ ମିଳିଲା । ଯାହା ଫଳରେ ପୂର୍ବ ଦୁଇ ଅଂଶର (ବାରିପଦା ଓ ଶୁକିଆପଦା) ସମସ୍ତ କ୍ଷତି ପୂରଣ କଲା ପରେ ମଧ୍ୟ ପ୍ରାୟ ୧୧୦୦ ଭୋଟ ନିଅଣ୍ଟ ପଡ଼ିଲାରୁ ମୋତେ ପରାଜୟ ସ୍ୱୀକାର କରିବାକୁ ପଡ଼ିଲା । ମୁଁ ପୂର୍ବରୁ ପାଞ୍ଚଟିଯାକ ସାଧାରଣ ନିର୍ବାଚନରେ ପ୍ରାର୍ଥୀ ହୋଇ କେବେହେଲେ ପରାସ୍ତ ହୋଇ ନ ଥିଲି । ଏଥର ଏ ନିର୍ବାଚନରେ ହାରିଗଲେ ମଧ୍ୟ ହତାଶ ହୋଇ ପଡ଼ି ନ ଥିଲି । ବରଂ ଏକ ନୂଆ ଅଞ୍ଚଳରେ ମାତ୍ର ଦେଢ଼ମାସ କାମ କରି ଜଣେ ବାହାରର ଲୋକ ହୋଇ ମଧ୍ୟ ଏତେ ଅଳ୍ପସଂଖ୍ୟକ ଭୋଟର ବ୍ୟବଧାନରେ ପରାସ୍ତ ହୋଇଥିବାରୁ ଏହାକୁ ପରାଜୟଭାବରେ ଗ୍ରହଣ ନ କରି ବିଜୟର ପ୍ରଥମ ସୋପାନ ବୋଲି ମନେ କଲି । ହାରିଯିବା ପରେ ପରେ ସମଗ୍ର ନିର୍ବାଚନ ମଣ୍ଡଳୀରେ ବୁଲିବାକୁ ଆରମ୍ଭ କରିଦେଲି । ଏ ନିର୍ବାଚନ ମଣ୍ଡଳୀର ଆରମ୍ଭରୁ ଗତ ପାଞ୍ଚଥରଯାକ ଯେଉଁ ସଭ୍ୟମାନେ ନର୍ବାଚିତ ହୋଇଥିଲେ ସେମାନେ କେବେହେଲେ ନିର୍ବାଚନ ମଣ୍ଡଳୀରେ ବୁଲି ଲୋକଙ୍କୁ ଭେଟୁ ନ ଥିଲେ ବା ସେପରି ଲୋକ ସଂପର୍କ ରକ୍ଷା କରୁ ନ ଥିଲେ । ମୋ ଭଳି ହାରିଯିବା ଲୋକଙ୍କୁ ଗାଁ ଗାଁ ବୁଲିବାର ଦେଖି ଲୋକେ ଆଶ୍ଚର୍ଯ୍ୟ ହୋଇଗଲେ । ଏହାଦ୍ୱାରା ମୋର ବିଶ୍ୱସ୍ତ ଓ ପ୍ରିୟ ଲୋକଙ୍କୁ ନେଇ କ୍ରମେ ଏ ଅଂଚଳକୁ ସଙ୍ଗଠିତ କରିବାରେ ସଫଳକାମ ହୋଇପାରିଲି ।

## ମୋର ସବୁଠାରୁ ଖରାପ ସମୟ

ନିର୍ବାଚନରେ ହାରିଯିବାରୁ ପ୍ରଥମ ବର୍ଷଟି ମୁଁ ସେପରି ବିଶେଷ କିଛି ଅସୁବିଧାର ସମ୍ମୁଖୀନ ହୋଇ ନ ଥିଲି, ଶ୍ରୀମତୀ ନନ୍ଦିନୀ ଶତପଥିଙ୍କ ନେତୃତ୍ୱରେ ଗଠିତ ମନ୍ତ୍ରୀମଣ୍ଡଳରେ ଶ୍ରୀ ବାଙ୍କ ବିହାରୀ ଦାସ ଜଣେ ପ୍ରଭାବଶାଳୀ ବ୍ୟକ୍ତି ଥିଲେ । ମୁଁ ମଧ୍ୟ ପ୍ରାଦେଶିକ କଂଗ୍ରେସ କମିଟିର ସଭ୍ୟ ଓ ଜିଲ୍ଲା କଂଗ୍ରେସ କମିଟିର ଉପସଭାପତି ଥିବା ଦୃଷ୍ଟିରୁ ଦଳ ମଧ୍ୟରେ ମୋର ବି କିଛି ପ୍ରଭାବ ଥିଲା । ଏତଦ୍‌ବ୍ୟତୀତ ମୁଁ ଖଦୀ ବୋର୍ଡ଼ର ଓ ରାଜ୍ୟ ଭୂ ଉନ୍ନୟନ ସମବାୟ ବ୍ୟାଙ୍କ ବୋର୍ଡ଼ର ସଭ୍ୟ ଥିବା ହେତୁ ପ୍ରତିମାସ ଅନ୍ତତଃ ଦୁଇଥର ଭୁବନେଶ୍ୱର ଆସିବା ତଥା ଅନ୍ୟ ସମସ୍ତଙ୍କୁ ଭେଟିବାରେ କିଛି

ଅସୁବିଧା ନ ଥିଲା । ଉକ୍ତ ଦୁଇ ସଂସ୍ଥାର ସଭ୍ୟଭାବରେ ସଂପୃକ୍ତ ବୈଠକମାନଙ୍କରେ ଯୋଗ ଦେଉଥିବା ହେତୁ କିଛି କିଛି ଅର୍ଥ ମଧ ମିଳୁ ଥିଲା । ତେଣୁ ପଢୁଥିବା ପିଲାମାନଙ୍କୁ ସେଥିରୁ କିଛି ସାହାଯ୍ୟ କରିପାରୁଥିଲି ଓ ଚାଷ ଜମିରୁ ମିଳୁଥିବା ଧାନରେ କୌଣସିମତେ ପ୍ରଥମ ବର୍ଷଟି ଚଳିଗଲି । ସେତେବେଳେ ମୋର ଚାରି ପାଞ୍ଚଜଣ ପିଲା ପାଠ ପଢୁଥିଲେ ଓ ସେଥିମଧରୁ ଦୁଇ ତିନି ଜଣ ବାହାରେ ରହୁଥିଲେ, ରୋଜଗାର କରିବାକୁ କେହି ନ ଥିଲେ । ବେତନଟୀରେ ସାଧାରଣ ଘରଟିଏ ଓ ଭାତପାଇଁ ଧାନ ମିଳିଯିବା ଭଳି ଅଳ୍ପ ପରିମାଣର ଜମି ଥିଲା । ମୋର ସେପରି କୌଣସି ପ୍ରକାରର ବ୍ୟାଙ୍କ ଜମା ମଧ ନଥିଲା । ପୂର୍ବରୁ ପାଞ୍ଚଥର ବିଧାନ ସଭାର ସଭ୍ୟ ପ୍ରଜା ସୋସାଲିଷ୍ଟ ଦଳ ପକ୍ଷରୁ ନିର୍ବାଚିତ ହୋଇଥିବାରୁ ମିଳୁଥିବା ଦରମାର ଅଧିକାଂଶ ନିଜ ଦଳକୁ ଦେଇ ଅଳ୍ପ ପରିମାଣର ଅର୍ଥ ନିଜେ ନେଉଥିଲି । କେବଳ ଯେଉଁ ଆଠମାସ କାଳ କଂଗ୍ରେସ ଦଳର ବିଧାୟକ ଥିଲି ସେହି ସମୟର ମୋର ସମସ୍ତ ପ୍ରାପ୍ୟ ଦରମା ଗ୍ରହଣ କରିଥିଲି । ତେଣୁଁ ମୋର ଆର୍ଥିକ ଅବସ୍ଥା କେବେ ସ୍ୱଚ୍ଛଳ ନ ଥିଲା । ୧୯୭୫ ମସିହା ବେଳକୁ ଖଦୀ ବୋର୍ଡ଼ ଓ ଭୂଉନ୍ନୟନ ବ୍ୟାଙ୍କରେ ମୋର କାର୍ଯ୍ୟକାଳ ପୂରିଗଲା । ପରେ ମୋତେ ଆଉ ସଭ୍ୟ କରା ନଯିବାରୁ ମୋର ଆୟର ଅନ୍ୟ କୌଣସି ପନ୍ଥା ନ ଥିଲା । ସୁତରାଂ ୧୯୭୭ ମସିହାପର୍ଯ୍ୟନ୍ତ ମୁଁ ଅତ୍ୟନ୍ତ ଦୁଃସ୍ଥ ଅବସ୍ଥାରେ ରହିଲି । ଏହା ସତ୍ୱେବି ମୋର ପିଲାମାନଙ୍କର ପଢ଼ାପଢ଼ିରେ କୌଣସି ପ୍ରକାର ତ୍ରୁଟି କରି ନାହିଁ। ଏ ଦୁର୍ଦ୍ଦିନରେ ମୋର ସ୍ତ୍ରୀ ଶ୍ରୀମତୀ କୃଷ୍ଣପ୍ରିୟା ଦାଶଙ୍କ ଧୈର୍ଯ୍ୟ ଓ କର୍ତ୍ତବ୍ୟପରତା ମୋର ମାନସିକ ଓ ଆର୍ଥିକ ଦୁର୍ଗତିରେ ବହୁ ପରିମାଣରେ ସାହାଯ୍ୟ କରିଥିଲା । ଏପରି ଏକ ଦୁର୍ଗତି ଅବସ୍ଥାରେ ଥାଇ ମଧ ମୁଁ କାହାରିଠାରେ ମୁଣ୍ଡ ନୁଆଁଇ ନାହିଁ ବା କାହାରି ପାଖରେ ହାତପାତି ନାହିଁ, ଆର୍ଥିକ ଅଭାବ ଯୋଗୁଁ ମୁଁ ଯେତେ ବିବ୍ରତ ନ ଥିଲି ରାଜନୈତିକ କ୍ଷେତ୍ରରେ ମୋପ୍ରତି ବ୍ୟବହାର ଅତ୍ୟନ୍ତ ଦୁଃଖଦାୟକ ହୋଇଥିଲା । ଶ୍ରୀମତୀ ଶତପଥି ମୂଳରୁ କମ୍ୟୁନିଷ୍ଟ ଦଳରେ ଥିବା ଯୋଗୁଁ ସୋସାଲିଷ୍ଟ ମାନଙ୍କପ୍ରତି ତାଙ୍କର ବିଦ୍ୱେଷ ଅତିମାତ୍ରାରେ ଥିଲା ।

ସେ କଂଗ୍ରେସକୁ ଆସି ମୁଖ୍ୟମନ୍ତ୍ରୀ ହେଲେ ମଧ ତାଙ୍କର କମ୍ୟୁନିଷ୍ଟ ପ୍ରୀତି ଅତୁଟ ରହିଥିଲା । ୧୯୭୪ ମସିହାର ନିର୍ବାଚନରେ କଂଗ୍ରେସ ସଭ୍ୟଙ୍କୁ ନେଇ ବିଧାନସଭା ସଂଖ୍ୟାଗରିଷ୍ଠ ହେବାଠାରୁ କମ୍ୟୁନିଷ୍ଟ ସଭ୍ୟଙ୍କ ସମର୍ଥନରେ ସଂଖ୍ୟାଧିକ ହେବାକୁ ସେ ବେଶି ପସନ୍ଦ କରୁଥିଲେ । ତେଣୁ ନିର୍ବାଚନରେ ଅଧିକ ସଂଖ୍ୟକ କମ୍ୟୁନିଷ୍ଟ ସଭ୍ୟଙ୍କ ସଫଳତାପାଇଁ ନାନାପ୍ରକାର ସାହାଯ୍ୟ ମଧ କରିଥିଲେ । ମୟୂରଭଞ୍ଜ ଜିଲ୍ଲାର ବାଙ୍ଗିରୀପୋଷୀ ନିର୍ବାଚନ ମଣ୍ଡଳୀର ଭାବୀ ଫଳାଫଳ କଂଗ୍ରେସ ପକ୍ଷରେ ଅନୁକୂଳ ଥିବାର ଅନୁମିତ ହେଉଥିଲେ ମଧ ସେଠାକାର ପ୍ରସ୍ତାବିତ ପ୍ରାର୍ଥୀ ଶ୍ରୀ କାନଗୋଇ ସିଂ ଜଣେ ପୂର୍ବତନ ପ୍ରଜା ସୋସାଲିଷ୍ଟ ଦଳର ସଭ୍ୟ ଥିବାରୁ ଉକ୍ତ ଆସନଟି ସି.ପି.ଆଇ ଦଳକୁ ଛାଡ଼ି ଦିଆଯାଇ କଂଗ୍ରେସ ସଂଗଠନକୁ ଦୁର୍ବଳ କରାଯାଇଥିଲା । ଶ୍ରୀ ବାଙ୍କ ବିହାରୀ ଦାସଙ୍କୁ ମନ୍ତ୍ରୀମଣ୍ଡଳରେ ନିଆଯାଇଥିଲେ ହେଁ ତାଙ୍କର ପ୍ରାଧାନ୍ୟ କମାଇବାପାଇଁ ଏବଂ ଏପରିକି ତାଙ୍କୁ ବଦ୍‌ନାମ କରାଇବା ଦିଗରେ ଶ୍ରୀମତୀ ଶତପଥି ସମସ୍ତ ପ୍ରକାର ଉଦ୍ୟମ କରିଥିଲେ ; ଏ କାର୍ଯ୍ୟରେ ବିଧାନ ସଭାର କମ୍ୟୁନିଷ୍ଟ ସଭ୍ୟ ଓ କେତେକ ତୋଷାମଦକାରୀ କଂଗ୍ରେସ ଲୋକେ ଯତ୍‌ପରୋନାସ୍ତି

ସହାୟତା କରିଥିଲେ । ତାଙ୍କରି ମନ୍ତ୍ରୀମଣ୍ଡଳ ସମୟରେ ଭାରତରେ ଜରୁରୀକାଳୀନ ପରିସ୍ଥିତି ଜାରୀ ହେଲାରୁ ସେ ଅତି ଔଦ୍ଧତ୍ୟ ପ୍ରକାଶକରି ପ୍ରତିଶୋଧମୂଳକ କାର୍ଯ୍ୟ ପନ୍ଥା ଗ୍ରହଣ କରିଥିଲେ । କେତେକ ବିରୋଧାତ୍ମକ କାର୍ଯ୍ୟକ୍ରମସହିତ ବାଙ୍କବାବୁଙ୍କ ସମ୍ପର୍କ ଥିବାର ଏକ କପୋଳକଳ୍ପିତ ଅଭିଯୋଗଦ୍ୱାରା ତାଙ୍କୁ ମନ୍ତ୍ରୀମଣ୍ଡଳରୁ ବାଦ ଦେଇ ଅନ୍ୟମାନଙ୍କୁ ଆତଙ୍କିତ କରିବାର ଉଦ୍ୟମ ମଧ୍ୟ କରିଥିଲେ । ବାଙ୍କ ବିହାରୀ ଦାସଙ୍କ ସହିତ ସୁସଂପର୍କ ଥିବା ମୋପରି କେତେକ ବ୍ୟକ୍ତିଙ୍କୁ କଂଗ୍ରେସର ପ୍ରାଦେଶିକ ତଥା ଜିଲ୍ଲାସ୍ତରୀୟ କାର୍ଯ୍ୟକାରୀ କମିଟିର ସଭ୍ୟ ପଦରୁ ବାଦ ଦିଆଯାଇଥିଲା । ମୋତେ ତଥା ଶ୍ରୀ ସୁରେନ୍ଦ୍ରନାଥ ଦ୍ୱିବେଦୀଙ୍କୁ ବିଧାନସଭା ନିର୍ବାଚନରେ ପରାସ୍ତ କରାଇବାରେ ଶ୍ରୀମତୀ ଶତପଥିଙ୍କର ହାତ ଥିବାର ପରବର୍ତ୍ତୀ କାଳରେ ଜଣାଯାଇଥିଲା । ସେତିକିବେଳେ ମୁଁ ମୟୂରଭଞ୍ଜ କେନ୍ଦ୍ର ସମବାୟ ବ୍ୟାଙ୍କର ଅଧ୍ୟକ୍ଷ ପଦପାଇଁ ପ୍ରାର୍ଥୀ ଥିଲି । ସେଥିରେ ଜିଲ୍ଲାର ମୁଖ୍ୟ କଂଗ୍ରେସ ଲୋକଙ୍କ ଜରିଆରେ ମୋତେ ଜଣେ ଅତି ସାମାନ୍ୟ ଲୋକଦ୍ୱାରା ପରାସ୍ତ କରାଇ ଦିଆଗଲା । ଜିଲ୍ଲାରେ ମୋର ରାଜନୈତିକ ମୃତ୍ୟୁ ଘଟାଇ ମୁଖ୍ୟମନ୍ତ୍ରୀଙ୍କ ପ୍ରିୟପାତ୍ର ହେବାପାଇଁ ବହୁ କଂଗ୍ରେସ ଲୋକ ଉଦ୍ୟମ କରିଥିଲେ । ଏପରିକି କେତେକ କଂଗ୍ରେସ ଲୋକ ଓ ମନ୍ତ୍ରୀ ମୁଖ୍ୟମନ୍ତ୍ରୀଙ୍କର ଅସନ୍ତୋଷ ଆଶଙ୍କା କରି ମୋସହିତ ମିଶିବାକୁ ମଧ୍ୟ ଭୟ କରୁଥିଲେ । ଏହି ସମୟର ଗୋଟିଏ ଦିନର ଘଟଣା । ସେଦିନ ଆମ ଜିଲ୍ଲାର କେନ୍ଦ୍ର ମନ୍ତ୍ରୀ ଶ୍ରୀ ଚୈତନ୍ୟ ପ୍ରସାଦ ମାଝୀ ଓ ରାଜ୍ୟ ମନ୍ତ୍ରୀ ଶ୍ରୀ କୁଆଁରିଆ ମାଝୀ ବେତନଟୀ ଦେଇ ବୈଶିଙ୍ଗା ଯାଉଥିଲେ । ମୋ ପାଖ ଦେଇ ତାଙ୍କ ଗାଡ଼ି ଗଲେ ମଧ୍ୟ ଗାଡ଼ି ଅଟକାଇ ସୌଜନ୍ୟଦୃଷ୍ଟିରୁ ମୋସହିତ ପଦେ କଥା ମଧ୍ୟ ହେଲେ ନାହିଁ । ଏପରିକି ଗାଡ଼ି ଅଟକାଇ ଅନ୍ୟମାନଙ୍କ ସହିତ କଥାବାର୍ତ୍ତା କରୁଥିବାବେଳେ ମୁଁ ତାଙ୍କ ଆଡ଼କୁ ଯାଉଥିବାର ଅନ୍ୟମାନଙ୍କ ଠାରୁ ଶୁଣି ମୁଁ ତାଙ୍କ ନିକଟରେ ପହୁଁଚିଲା ପୂର୍ବରୁ ଅନ୍ୟମାନଙ୍କୁ ସଙ୍ଗରେ ନେଇ ଚାଲି ଯାଇଥିଲେ । ରାଜନୈତିକ କ୍ଷେତ୍ରରେ ଏହିପରି ବ୍ୟବହାର କିଛି ସମୟପାଇଁ ମୋତେ ବିବ୍ରତ କରି ପକାଇଥିଲା । ଏହା ପରେ ପରେ ଶ୍ରୀମତୀ ନନ୍ଦିନୀ ଶତପଥିଙ୍କ ପତନ, ଜରୁରୀକାଳୀନ ପରିସ୍ଥିତିର ପ୍ରତ୍ୟାହାର ସଙ୍ଗେ ସଙ୍ଗେ ୧୯୭୭ ଆରମ୍ଭ ବେଳକୁ ଲୋକସଭା ନିର୍ବାଚନ ମୋ ପରି ବ୍ୟକ୍ତିଙ୍କ ପକ୍ଷରେ ବିଶେଷ ଶୁଭଦାୟକ ହୋଇଥିଲା ।

ଇତି ମଧ୍ୟରେ ଶ୍ରୀମତୀ ଶତପଥିଙ୍କ ସମୟରେ ମୋତେ ରାଜନୀତିରୁ ସଂପୂର୍ଣ୍ଣଭାବରେ ବାଦ ଦେବାର ଉଦ୍ଦେଶ୍ୟ ରଖି ବାରିପଦାରୁ ନିର୍ବାଚିତ ସ୍ୱାଧୀନ ସଭ୍ୟ ଶ୍ରୀଯୁକ୍ତ ପ୍ରମୋଦ ଚନ୍ଦ୍ର ଭଞ୍ଜଦେଓଙ୍କୁ ଜରୁରୀକାଳୀନ ଅବସ୍ଥା ଜାରୀ ହୋଇଥିବା ସମୟରେ କଂଗ୍ରେସ ଦଳରେ ସାମିଲ କରାଯାଇଥିଲା । ତେଣୁ ଭବିଷ୍ୟତରେ କଂଗ୍ରେସ ଦଳକୁ ବିଧାନ ସଭାକୁ ପ୍ରାର୍ଥୀ ହେବାର ପ୍ରଶ୍ନ ବି ମୋ ପକ୍ଷରେ ନ ଥିଲା । ତେଣୁ ପ୍ରତ୍ୟକ୍ଷ ରାଜନୀତିରୁ ଓହରି ଯିବାର ବିଚାର କରୁଥିଲି, ସୁତରାଂ ୧୯୭୬ ଡିସେମ୍ବର ମାସରେ ମୋ ଝିଅର ବିଭାଘର ହେବାର ସ୍ଥିର ହେଲାରୁ ଅଗତ୍ୟା ମୋର ଜିପ୍ ଗାଡ଼ିଟିକୁ ଅତି କମ ମୂଲ୍ୟରେ ବିକ୍ରୟ କରିଦେଲି । ରାଜନୀତି କ୍ଷେତ୍ରରେ ଶ୍ରୀମତୀ ଶତପଥିଙ୍କ ବିରୋଧ ହେତୁ ସକ୍ରିୟ ରାଜନୀତିରୁ ନିଜକୁ ଅଲଗା ରଖିବା ବିଷୟ ମଧ୍ୟ ଅତି ଗୁରୁତ୍ୱର ସହ ବିଚାର କଲି ।

## ବିଧାନସଭା ନିର୍ବାଚନର ପରାଜୟ ପରେ ପୁଣି ଏକ ଅପମାନ

ସକ୍ରିୟ ରାଜନୀତିରୁ ଦୂରେଇ ଯିବାର ସ୍ଥିର କରି ସମବାୟ ସଂସ୍ଥା ଏକ ନିର୍ବିବାଦ ସଂସ୍ଥା ହୋଇଥିବାରୁ ସେଥିରେ ପ୍ରବେଶ କରି ସମୟ କଟାଇବାର ବିଚାର କଲି । ସେତିକିବେଳେ ବାରିପଦାର କେନ୍ଦ୍ର ସମବାୟ ବ୍ୟାଙ୍କର ଡାଇରେକ୍ଟର ବୋର୍ଡର ନିର୍ବାଚନ ହେଉଥିବାର ଜାଣି ସମସ୍ତଙ୍କୁ ପଚାରି ବେତନଟୀ ବ୍ଲକ ଅଞ୍ଚଳରୁ ପ୍ରାର୍ଥୀ ହେଲି । ସେଥିରେ ମୋତେ ହରାଇବାପାଇଁ ବ୍ୟାଙ୍କର ସଭାପତିଙ୍କ (ଯାହାଙ୍କ କାର୍ଯ୍ୟକାଳ ପୂରିଯାଇଥିଲା) ସମେତ ଅନ୍ୟ କେତେକ ସଭ୍ୟ ଏବଂ ବିଭାଗୀୟ କର୍ମଚାରୀମାନେ ମିଳିତ ଉଦ୍ୟମ ଆରମ୍ଭ କରିଦେଲେ । ଭୋଟ ଦେବା ସଭ୍ୟମାନଙ୍କୁ ବେଆଇନ ଭାବେ ଆଣି ବାରିପଦାରେ ରଖାଗଲା । ଏଥିରେ ଯେଉଁ ଅଜୟ କୁମାର ଦାଶଙ୍କୁ ମୁଁ ଜିଲ୍ଲା କଂଗ୍ରେସ ସଂଗଠନର ସଂପାଦକ କରାଇଥିଲି ତାଙ୍କର ସବୁଠାରୁ ବେଶିହାତ ଥିଲା । ଅଥଚ ମୁଁ ସେହି ଅଜୟ ବାବୁଙ୍କୁ ପରାମର୍ଶ କରି ତାଙ୍କର ସମ୍ମତିକ୍ରମେ ପ୍ରତିଦ୍ୱନ୍ଦିତା ପାଇଁ ଅବତୀର୍ଣ୍ଣ ହୋଇଥିଲି । ମୁଁ ଓ ବେତନଟୀର ଶ୍ରୀ ରନେଲାଲ ଅଗ୍ରୱାଲ ଉଭୟେ ପ୍ରାର୍ଥୀ ଥିଲୁ । ଅଜୟବାବୁ କଂଗ୍ରେସର ଲୋକ ହୋଇ ମଧ ମୋତେ ଏଥର ଏଇ ପଦପାଇଁ ଜଣେ ଅତି ନଗଣ୍ୟ ବ୍ୟକ୍ତିଠାରୁ ପରାସ୍ତ କରାଇଦେଲେ ମୋର ରାଜନୈତିକ ମୃତ୍ୟୁ ଘଟିବ ଭାବି ଭୋଟଦାତାମାନଙ୍କ ଉପରେ ପ୍ରଭାବ ପକାଇ ମୋତେ ମାତ୍ର ଗୋଟିଏ ଭୋଟରେ ପରାସ୍ତ କରାଗଲା । ମୁଁ ଯଦି ବୋର୍ଡକୁ ନିର୍ବାଚିତ ହୁଏ ତେବେ ନିଶ୍ଚୟ ସଭାପତି ମଧ ହୋଇଯିବି ଏବଂ ଏଥିପୂର୍ବରୁ ବ୍ୟାଙ୍କରେ ହୋଇଥିବା ଦୁର୍ନୀତି ଗୁଡିକ ପଦାରେ ପଡ଼ିଯିବ । ତେଣୁ ମୂଳରୁ ମୋତେ ପରାସ୍ତ କରିଦେଲେ ସମସ୍ତେ ଆଶ୍ୱସ୍ତ । ମୋତେ ପରାସ୍ତ କରାଇବାର କାରଣମାନଙ୍କ ମଧ୍ୟରୁ ଏହା ଥିଲା ଅନ୍ୟତମ । ତାହା ହିଁ ହେଲା । କିନ୍ତୁ ମୋର ରାଜନୈତିକ ମୃତ୍ୟୁ କରାଇପାରିଲେ ନାହିଁ ।

## ୧୯୭୭ ମାର୍ଚ୍ଚରେ ଲୋକସଭା ନିର୍ବାଚନ ଓ ସେଥିରେ ମୋର ଭୂମିକା

ଲୋକସଭା ନିର୍ବାଚନର ଘୋଷଣା ହେଲା ମାତ୍ରେ ଆମ ମୟୂରଭଞ୍ଜ ନିର୍ବାଚନ ମଣ୍ଡଳୀରୁ କେନ୍ଦ୍ରରେ ମନ୍ତ୍ରୀ ଥିବା ଶ୍ରୀଯୁକ୍ତ ଚୈତନ ପ୍ରସାଦ ମାଝୀ କଂଗ୍ରେସ ଦଳରୁ ପ୍ରାର୍ଥୀ ହେଲେ । କଂଗ୍ରେସ ପକ୍ଷରୁ ଶ୍ରୀଯୁକ୍ତ ପ୍ରମୋଦ କୁମାର ଭଞ୍ଜଦେଓ ବାରିପଦା ନିର୍ବାଚନ ମଣ୍ଡଳୀର ପ୍ରଚାର ଦାୟିତ୍ୱ ନେବାକୁ ସାହସ ନ କଲାରୁ ଶେଷ ମୁହୂର୍ତ୍ତରେ ମୋତେ ଡକାଗଲା । ମୁଁ କେତେକ ସର୍ତ୍ତ ସହ ଉକ୍ତ ଦାୟିତ୍ୱ ତୁଲାଇବାକୁ ସମ୍ମତ ହେଲି । ବାରିପଦା ନିର୍ବାଚନ ମଣ୍ଡଳୀ ବ୍ୟତୀତ ଅନ୍ୟ କୌଣସି ଅଞ୍ଚଳକୁ ଯିବି ନାହିଁ ଏବଂ ମୋର ଘର ଇଲାକାର ଅତି ନିକଟବର୍ତ୍ତୀ ଖୁଣ୍ଟା ବିଧାନସଭା ନିର୍ବାଚନ ମଣ୍ଡଳୀ ବାଲେଶ୍ୱର ଲୋକସଭା ନିର୍ବାଚନ ମଣ୍ଡଳୀର ଅନ୍ତର୍ଭୁକ୍ତ ହୋଇଥିବାରୁ ସେଠାରେ ମଧ କୌଣସି କାମ କରିବି ନାହିଁ । ଉପରୋକ୍ତ ଦୁଇଟି ସର୍ତ୍ତ ତଦାନୀନ୍ତନ ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ବିନାୟକ ଆଚାର୍ଯ୍ୟଙ୍କ ଉପସ୍ଥିତିରେ ସ୍ଥିରୀକୃତ ହେଲାପରେ ନିର୍ବାଚନ କାର୍ଯ୍ୟ ତୁଲାଇବାକୁ ବାରିପଦା ଆସିଲି । ସଙ୍ଗେ ସଙ୍ଗେ କର୍ମୀ ବୈଠକମାନ ବିଭିନ୍ନ ଅଞ୍ଚଳରେ କରାଇ କାମ ଆରମ୍ଭ କରିଦେଲି । ଜରୁରୀକାଳୀନ ପରିସ୍ଥିତି ବେଳେ ମୁଁ କ୍ଷମତାରେ ନ ଥିବାରୁ ତଥା ଅନ୍ୟମାନଙ୍କ ଭଳି ମୁଁ ସେଥିରେ ଶିକାର ହୋଇ

ନ ଥିବାରୁ ଲୋକମାନଙ୍କ ନିକଟକୁ ଯିବାରେ ମୋ ପକ୍ଷରେ କୌଣସି ଅସୁବିଧା ହେଲା ନାହିଁ । ଏହି ନିର୍ବାଚନରେ ପ୍ରଥମରୁ କଂଗ୍ରେସ ତଥା ଇନ୍ଦିରା ବିରୋଧୀ ହାଓ୍ୱା ଏପରି ପ୍ରବଳ ହେଲା ଯେ ଶ୍ରୀମତୀ ଗାନ୍ଧୀଙ୍କ ସମେତ ବହୁ କଂଗ୍ରେସ ନେତାଙ୍କର ଶୋଚନୀୟ ପରାଜୟ ଘଟିଲା । ଜନତାଦଳ ଆଶାତୀତ ଭାବରେ ଲୋକସଭାକୁ ନିର୍ବାଚିତ ହୋଇ ଆସିଲେ । ମୟୂରଭଞ୍ଜ ଲୋକସଭା ନିର୍ବାଚନ ମଣ୍ଡଳୀର ପରିଣାମ ମଧ୍ୟ ତାହା ହିଁ ହେଲା । କଂଗ୍ରେସ ପ୍ରାର୍ଥୀ ପରାଜିତ ହେଲେ ସତ୍ୟ ମାତ୍ର ବାରିପଦା ବିଧାନସଭା ନିର୍ବାଚନ ମଣ୍ଡଳୀରେ କଂଗ୍ରେସ ପ୍ରାର୍ଥୀ ଜନତାଦଳ ପ୍ରାର୍ଥୀଠାରୁ ପାଞ୍ଚହଜାର ଅଧିକା ଭୋଟ ପାଇଲେ । ଲୋକସଭାପାଇଁ ମୟୂରଭଞ୍ଜ ଆସନରୁ କଂଗ୍ରେସ ପ୍ରାର୍ଥୀ ଦ୍ୱାରସ୍ଥ ହେଲେ ମଧ୍ୟ ବିଧାନସଭା ଦୃଷ୍ଟିରୁ ନିର୍ବାଚନ ଦାୟିତ୍ୱ ତୁଲାଇବା ମୋ ପକ୍ଷରେ ମଙ୍ଗଳଦାୟକ ହେଲା । ଲୋକସଭା ନିର୍ବାଚନରେ କଂଗ୍ରେସର ଶୋଚନୀୟ ପରାଜୟ ଫଳରେ ଦେଶର ପରିସ୍ଥିତି ସଂପୂର୍ଣ୍ଣଭାବରେ ବଦଳିଗଲା ଓ କଂଗ୍ରେସ ସଂଗଠନ ମୂଳଦୁଆ ଦୋହଲି ଗଲା, କେନ୍ଦ୍ରରେ ଜନତା ସରକାର ବିପୁଳ ସଂଖ୍ୟାରେ ଜୟଯୁକ୍ତ ହୋଇଥିବାରୁ ଯେଉଁସବୁ ରାଜ୍ୟମାନଙ୍କରେ ଲୋକସଭା ନିର୍ବାଚନରେ କଂଗ୍ରେସର ପରାଜୟ ହୋଇଥିଲା ସେସବୁ ରାଜ୍ୟରେ ଥିବା କଂଗ୍ରେସ ସରକାରଙ୍କ ପକ୍ଷରେ ଜନମତ ନ ଥିବାର ଦର୍ଶାଇ ସେହି ରାଜ୍ୟ ସରକାରଗୁଡିକୁ ଭାଙ୍ଗି ଦେଇ ନିର୍ବାଚନ ଘୋଷଣା କରାଗଲା । ଏହି କାରଣରୁ ଓଡ଼ିଶାରେ ଅଳ୍ପ ଦିନ ସ୍ଥାୟୀ ଶ୍ରୀଯୁକ୍ତ ବିନାୟକ ଆଚାର୍ଯ୍ୟଙ୍କ ସରକାରଙ୍କୁ ଭାଙ୍ଗି ଦେବାର ଜାଣି ବହୁ ସୁବିଧାବାଦୀ କଂଗ୍ରେସ ନେତା ଦଳତ୍ୟାଗପୂର୍ବକ ଜନତା ଦଳକୁ ଚାଲିଗଲେ ।

## ୧୯୭୭ର ବିଧାନସଭା ନିର୍ବାଚନ ଓ ମୁଁ ଷଷ୍ଠ ଥରପାଇଁ ନିର୍ବାଚିତ

ଜାତୀୟ ସ୍ତରରେ କଂଗ୍ରେସର ଚରମ ପରାଜୟ ଫଳରେ ଅନ୍ୟମାନଙ୍କ ପରି ବାରିପଦା ବିଧାନସଭା ମଧ୍ୟ କଂଗ୍ରେସ ଦଳ ପରିତ୍ୟାଗ କରି ପୂର୍ବବତ ସ୍ୱାଧୀନ ସଭ୍ୟ ହୋଇ ରହିଲେ । ତଥାପି କଂଗ୍ରେସ ତରଫରୁ ପ୍ରାର୍ଥୀ ବଛାଗଲା ବେଳେ ଅର୍ଥାଭାବ ଯୋଗୁଁ ମୋତେ ପ୍ରାର୍ଥୀରୂପେ ଚୂଡାନ୍ତଭାବେ ବଛାଗଲା ନାହିଁ । ଶ୍ରୀ ପ୍ରମୋଦ ଚନ୍ଦ୍ର ଭଞ୍ଜଦେଓ କଂଗ୍ରେସ ଛାଡି ସ୍ୱାଧୀନଭାବରେ ଛିଡା ହେବାର ଆଶା ପ୍ରକାଶ କଲେ ମଧ୍ୟ କଂଗ୍ରେସ ସମର୍ଥନ କରୁ ବୋଲି ସର୍ତ୍ତ ରଖିଲେ । ଏ ସବୁ ସତ୍ତ୍ୱେ ବି ରାଜ୍ୟ କଂଗ୍ରେସ ତରଫରୁ କେନ୍ଦ୍ରର ଶେଷ ନିଷ୍ପତ୍ତିପାଇଁ ମୋ ନାମ ଓ ଶ୍ରୀଯୁକ୍ତ ଭଞ୍ଜଦେଓଙ୍କ ନାମ ସୁପାରିଶ କରାଗଲା । ଏହା ପୂର୍ବରୁ ନାନା ବାଧାବିଘ୍ନ ସତ୍ତ୍ୱେ ବି ବାରିପଦା ବିଧାନସଭା ନିର୍ବାଚନ ମଣ୍ଡଳୀରୁ କଂଗ୍ରେସର ଲୋକ ସଭା ପ୍ରାର୍ଥୀଙ୍କୁ ନିଜର କାର୍ଯ୍ୟଦ୍ୱାରା ଅଧିକ ଭୋଟ ଦିଆଇଥିଲେ ମଧ୍ୟ ଓଡ଼ିଶାର ତଦାନୀନ୍ତନ କଂଗ୍ରେସ ନେତୃବୃନ୍ଦ ମାତ୍ର ନିଷ୍କାମ କର୍ମୀ ବାରମ୍ବାର ପ୍ରାପ୍ତିର ଏକ ସଫଳ ମାର୍ଗ । କୌଣସି ଲାଳସାର ବଶବର୍ତ୍ତୀ ନ ହୋଇ ଦଳର ଜଣେ ନିଷ୍ଠାପର କର୍ମୀଭାବରେ ମୋର କର୍ତ୍ତବ୍ୟ କରିଯାଇଥିଲି ମାତ୍ର । ଫଳସ୍ୱରୂପ କେନ୍ଦ୍ରୀୟ ନିର୍ବାଚନ ବୋର୍ଡ ମୋତେ ପ୍ରାର୍ଥୀରୂପେ ସ୍ଥିର କଲେ ଏବଂ ପ୍ରାର୍ଥୀପତ୍ର ଦାଖଲ କରିବାର ଶେଷ ତାରିଖର ମାତ୍ର ଦିନକ ପୂର୍ବରୁ ଏ ନିଷ୍ପତ୍ତି ମୋର ହସ୍ତଗତ ହେଲା । ସେତେବେଳକୁ ନିର୍ବାଚନରେ ପ୍ରାର୍ଥୀ ହେବାର ଆଶା ସଂପୂର୍ଣ୍ଣରୂପେ ପରିତ୍ୟାଗ କରିଥିଲି । ବେତନଟି ବଜାରରେ ଏ ସଂବାଦ ପାଇଲା ମାତ୍ରେ କେତେଜଣ

କଂଗ୍ରେସ ଲୋକ ମୋର ଅନିଚ୍ଛା ସତ୍ତ୍ୱେ ମୋତେ ପ୍ରବର୍ତ୍ତାଇ ପ୍ରାର୍ଥୀପତ୍ର ଦାଖଲ କରିବାକୁ ରାଜି କରାଇଲେ । ସଙ୍ଗେ ସଙ୍ଗେ ଅମାନତ ଟଙ୍କା ସଂଗ୍ରହ କରି ମୋତେ ଦେଲେ । ପ୍ରାର୍ଥୀ ହେଲାପରେ କିଛି ଅର୍ଥ ସାହାଯ୍ୟ ତଥା ବାରିପଦାର ରହି ସଂଗଠନ ଦାୟିତ୍ୱ ତୁଲାଇବାର ପ୍ରତିଶ୍ରୁତି ମଧ୍ୟ କେତେକ ବଂଧୁଙ୍କ ନିକଟରୁ ମିଳିଲା । ଏଥର କଂଗ୍ରେସ, ଜନକଂଗ୍ରେସ ଓ ସ୍ୱାଧୀନ ପ୍ରାର୍ଥୀଙ୍କ ମଧ୍ୟରେ ମୁଖ୍ୟତଃ ପ୍ରତିଦ୍ୱନ୍ଦ୍ୱିତା ହେଲା । କେବଳ ବାରିପଦାକୁ ଛାଡ଼ି ଦେଲେ ମୟୂରଭଞ୍ଜର ବାକିତକ ଆସନ ସଂରକ୍ଷିତ ହୋଇଥିବାରୁ ବାରିପଦାରୁ ଯେଉଁ ପ୍ରାର୍ଥୀ ନିର୍ବାଚିତ ହେବେ ସେ ହିଁ କେବଳ ସମଗ୍ର ଜିଲ୍ଲାର ପ୍ରତିନିଧିତ୍ୱ କରିବେ ବୋଲି ନିର୍ବାଚନ ମଣ୍ଡଳୀର ଭୋଟଦାତାଙ୍କ ମଧ୍ୟରେ ଆଲୋଚନା ହେବାକୁ ଲାଗିଲା ଏବଂ ତିନିଜଣ ପ୍ରାର୍ଥୀଙ୍କ ମଧ୍ୟରୁ ଏ ଦୃଷ୍ଟିରୁ ମୋତେ ଅଧିକ ଉପଯୁକ୍ତ ବୋଲି ଲୋକେ ବିଚାର କଲେ । ଭୋଟଦାତାମାନେ ଦଳୀୟ ଦୃଷ୍ଟିକୋଣରୁ ବିଚାର ନ କରି ଜିଲ୍ଲାର ହିତଦୃଷ୍ଟିରୁ ସମସ୍ତ ବିଷୟ ବିଚାର କଲେ । ମାତ୍ର ପ୍ରଚାର କାର୍ଯ୍ୟ ଚାଲିଥିଲାବେଳେ ଜନତାଦଳ ଓ ସ୍ୱାଧୀନ ପ୍ରାର୍ଥୀଙ୍କ ଅର୍ଥ ଓ ଯାନବାହନ ତଥା ବିଭିନ୍ନ ପ୍ରଚାର ସାମଗ୍ରୀର ପ୍ରୟୋଗ ଆଗରେ ମୋର ଗୋଟିଏ ମାତ୍ର ଗାଡି ଧରି ମୁଁ କୁଆଡେ ହଜିଗଲି । ମୋର କିନ୍ତୁ ଲୋକସଭାବେଳରୁ ଭୋଟ କେନ୍ଦ୍ର ଅନୁଯାୟୀ ହୋଇଥିବା ସଂଗଠନ ନୀରବରେ ଲୋକଙ୍କ ମଧ୍ୟରେ କାମ କରୁଥାଏ । ସହର ଓ ଗ୍ରାମାଞ୍ଚଳର ଘରଘର ବୁଲି ପ୍ରଚାର କାର୍ଯ୍ୟରେ ଲାଗିଥାଏ । ଉକ୍ତ ଦୁଇଜଣ ଯାକ ପ୍ରାର୍ଥୀ ମୋତେ ତାଙ୍କର ସମକକ୍ଷ ବୋଲି ବିଚାର କରୁ ନ ଥାଆନ୍ତି ଏବଂ ତାଙ୍କର ଏ ଧରଣର ବିଚାରଧାରା ମୋ ପକ୍ଷରେ ମଙ୍ଗଳଜନକ ହେଲା । ନିର୍ବାଚନରେ ମୋର ପ୍ରଧାନ ପ୍ରତିଦ୍ୱନ୍ଦ୍ୱୀ ସ୍ୱାଧୀନ ପ୍ରାର୍ଥୀ ଶ୍ରୀଯୁକ୍ତ ପ୍ରମୋଦ ଚନ୍ଦ୍ର ଭଞ୍ଜଦେଓଙ୍କଠାରୁ ୨୨୦୦ ଅଧିକ ଭୋଟରେ ଜୟଯୁକ୍ତ ହେଲି । ସେହିପରି ଖୁଣ୍ଟା ନିର୍ବାଚନ ମଣ୍ଡଳୀରୁ ମଧ୍ୟ କଂଗ୍ରେସ ପ୍ରାର୍ଥୀ ଜୟଯୁକ୍ତ ହେଲେ । ଏଥର ଓଡ଼ିଶା ବିଧାସଭାକୁ ମାତ୍ର ୨୬ଜଣ କଂଗ୍ରେସ ପ୍ରାର୍ଥୀ ଜୟଯୁକ୍ତ ହୋଇଥିଲେ ।

## ମୁଁ କଂଗ୍ରେସ ବିଧାନସଭା ଦଳର ଉପଦଳପତି ହେଲି

ନିର୍ବାଚନ ପରେ ଓଡ଼ିଶା ବିଧାନସଭାକୁ ନିର୍ବାଚିତ ମାତ୍ର ୨୬ଜଣ ବିଧାୟକ ତଥା ରାଜ୍ୟ ସ୍ତରୀୟ କଂଗ୍ରେସର ଅନ୍ୟାନ୍ୟ ନେତୃବର୍ଗଙ୍କୁ ନେଇ ନିଖିଳ ଭାରତ କଂଗ୍ରେସର ସାଧାରଣ ସଂପାଦକଙ୍କ ଅଧିନାୟକତ୍ୱରେ ଏକ ବୈଠକ ଅନୁଷ୍ଠିତ ହେଲା । ଉକ୍ତ ବୈଠକରେ ବିଧାନସଭାର ଦଳପତି ପଦପାଇଁ ଶ୍ରୀ ଚିନ୍ତାମଣି ପାଣିଗ୍ରାହୀ, ଶ୍ରୀ ବୃନ୍ଦାବନ ନାଏକ ଓ ମୋ ମଧ୍ୟରେ ପ୍ରତିଦ୍ୱନ୍ଦ୍ୱିତା ହୋଇ ସର୍ବାଧିକ ଭୋଟ ଦଳର ଶ୍ରୀ ପାଣିଗ୍ରାହୀ ଦଳପତି ଓ ମୁଁ ଉପଦଳପତିଭାବେ ନିର୍ବାଚିତ ହେଲୁ । ମୋତେ ଦଳପତିଭାବରେ ନିର୍ବାଚିତ କରିପାରି ନ ଥିବାରୁ ପରବର୍ତ୍ତୀ ସମୟରେ ବହୁ ସଭ୍ୟ ଦୁଃଖ ପ୍ରକାଶ କରିଥିଲେ । ବିଧାନସଭାର ଆରମ୍ଭରେ ଜନତାଦଳ ବିଜୟୋଲ୍ଲାସରେ ଉନ୍ମତ୍ତ ହୋଇ ବିଗତ ୩୦ ବର୍ଷର କଂଗ୍ରେସ ଶାସନ ଓଡ଼ିଶାରେ ଜନସାଧାରଣଙ୍କର ଦୁର୍ଗତିର କାରଣ ବୋଲି ଅଭିଯୋଗମାନ ଉପସ୍ଥାପନ କଲେ । ବିଧାନସଭାରେ ମୁଷ୍ଟିମେୟ କଂଗ୍ରେସ ବିଧାୟକ ପୁଣି ସେମାନଙ୍କ ମଧ୍ୟରୁ ପ୍ରଥମରପାଇଁ ନୂତନଭାବରେ ଅଧିକାଂଶ ନିର୍ବାଚିତ । ସୁତରାଂ ଏପରି ଏକ

ଗୁରୁତର ଅଭିଯୋଗରେ ବିବ୍ରତ ହୋଇପଡିବା ସ୍ୱାଭାବିକ ଘଟଣା । ଏପରି ଏକ ଅବସ୍ଥାରେ ସମ୍ମୁଖୀନ ହୋଇ ଏହାର ଉତ୍ତରଦେବାପାଇଁ ମୋତେ ସମସ୍ତେ ଅନୁରୋଧ କଲେ । ମୁଁ ପ୍ରଥମେ ଜନତାଦଳର ଉକ୍ତ ଅଭିଯୋଗ ସହିତ ଏକମତ ହୋଇଗଲି । ରାଜ୍ୟର ଏଭଳି ଦୁର୍ଗତି ଘଟାଇବାରେ କେଉଁ ବ୍ୟକ୍ତି ବିଶେଷ କେତେ ପରିମାଣରେ ଦାୟୀ ସେ ସବୁର ତନ୍ନତନ୍ନ ଆଲୋଚନା ଆରମ୍ଭ କରିଦେଲି । ବର୍ତ୍ତମାନ ଜନତା ଦଳର ମୁଖ୍ୟ ତଥା ରାଜ୍ୟର ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ରାଉତରାୟ, ଜାତୀୟସ୍ତରର ଜନତାଦଳ ନେତା ଶ୍ରୀଯୁକ୍ତ ବିଜୁ ପଟ୍ଟନାୟକ ତଥା ଜନତା ଦଳର ସମର୍ଥକ ଶ୍ରୀଯୁକ୍ତ ଡକ୍ଟର ମହତାବ ବର୍ତ୍ତମାନର ଜନତାଦଳର କେତେକ ମନ୍ତ୍ରୀ ଓ ନେତାମାନଙ୍କ ମଧ୍ୟରୁ ସ୍ୱାଧୀନତା ପ୍ରାପ୍ତି ପରଠାରୁ କିଏ କେତେ ବର୍ଷ କଂଗ୍ରେସର ମୁଖ୍ୟ ଶାସନ ଓ ସଂଗଠନ କ୍ଷେତ୍ରରେ ଥିଲେ ସେମାନଙ୍କର ରହଣୀକାଳରେ କାର୍ଯ୍ୟ ଓ ଅପକର୍ମମାନଙ୍କର ଏକ ବିଶଦ ବର୍ଣ୍ଣନା କରି ରାଜ୍ୟର ଏ ଦୁର୍ଗତିପାଇଁ ସେମାନଙ୍କର କେତେ ଅବଦାନ ଓ ବର୍ତ୍ତମାନ କଂଗ୍ରେସର ଦୁର୍ଦ୍ଦିନ ବେଳେ ଅବସ୍ଥା ଚକ୍ରରେ ପଡି ବର୍ତ୍ତମାନ ବିଧାନସଭାର କଂଗ୍ରେସ ଆସନରେ ଯେଉଁମାନେ ଆସୀନ ସେମାନଙ୍କର କେତେ ଅବଦାନ ତାହା ଗୋଟି ଗୋଟିକରି ପ୍ରତ୍ୟେକ ବ୍ୟକ୍ତିଙ୍କ ସଂପର୍କରେ ବର୍ଣ୍ଣନା କରିଗଲି । ଜନତା ଦଳର ନେତୃବର୍ଗ ପୂର୍ବେ କଂଗ୍ରେସ ଭିତରେ ରହି ରତ୍ନାକର ସାଜି ନାନା ଅପକର୍ମରେ ଲିପ୍ତ ରହି ବର୍ତ୍ତମାନ ଜନତା ଦଳର ନେତା ହୋଇ ବାଲ୍ମୀକି ସାଜି ଥିବାର ପରିହାସ ମୂଳକ ଆକ୍ଷେପ ସେମାନଙ୍କୁ ଅତ୍ୟନ୍ତ ବାଧି ଥିଲା । ମାତ୍ର ବିରାଟ ସତ୍ୟର ବିରୋଧ କରିବାକୁ କାହାରି ସାହସ ନଥିଲା । ସେଦିନ ମୋର ବିଧାସଭାର ଭାଷଣ ଏକ ଅବିସ୍ମରଣୀୟ ଘଟଣା ଏବଂ ଏହା କଂଗ୍ରେସ ସଭ୍ୟମାନଙ୍କୁ ଏକ ନୈତିକ ଶକ୍ତି ଯୋଗାଇଥିଲା । ଏଥର ମଧ୍ୟ ମୁଁ ବିଧାନସଭାର estimate କମିଟିର ପ୍ରଥମବର୍ଷପାଇଁ ସଭ୍ୟ ନିର୍ବାଚନ ହୋଇଥିଲି ।

## କଂଗ୍ରେସର ପୁଣି ବିଭାଜନ ଓ ମୁଁ ମୂଳ କଂଗ୍ରେସରେ ରହିଲି

୧୯୭୭ ମସିହାରେ ଶ୍ରୀମତୀ ଗାନ୍ଧୀଙ୍କର ତଥା ଜାତୀୟ ସ୍ତରରେ କଂଗ୍ରେସର ଶୋଚନୀୟ ବିପର୍ଯ୍ୟୟ ପରେ ନେତୃତ୍ୱ ନେଇ କଂଗ୍ରେସ ଭିତରେ ବିଭେଦ ଆରମ୍ଭ ହେଲା । ଶ୍ରୀମତୀ ଗାନ୍ଧୀଙ୍କ ପାଇଁ ତଥା ବିଶେଷକରି ଜରୁରୀକାଳୀନ ପରିସ୍ଥିତି ଜାରୀ ସମୟରେ କ୍ଷମତାର ଅପବ୍ୟବହାର ଯୋଗୁଁ ଦଳର ବିପର୍ଯ୍ୟୟ ବୋଲି ଭାବୁଥିବା କଂଗ୍ରେସଲୋକେ ପୁଣି ସଙ୍ଗେ ସଙ୍ଗେ ଶ୍ରୀମତୀ ଗାନ୍ଧୀଙ୍କୁ ନେତୃତ୍ୱ ଦେବାକୁ ରାଜି ନ ଥିଲେ । ଅପରପକ୍ଷରେ ଅନ୍ୟ କେତେକ କଂଗ୍ରେସ ଲୋକେ ଶ୍ରୀମତୀ ଗାନ୍ଧୀଙ୍କ ବ୍ୟତୀତ କଂଗ୍ରେସ ଉଠିପାରିବ ନାହିଁ ବୋଲି ମତବ୍ୟକ୍ତ କଲେ । ଏହି ଦୁଇ ପୃଥକ୍ ମତବାଦୀ ଲୋକଙ୍କ ମଧ୍ୟରେ ବିବାଦ ଆରମ୍ଭ ହୋଇଗଲା । ଏହାର କୌଣସି ସମାଧାନ ହୋଇ ନ ପାରିବାରୁ ଶ୍ରୀମତୀ ଇନ୍ଦିରା ଗାନ୍ଧୀଙ୍କ ନେତୃତ୍ୱରେ 'ଇନ୍ଦିରା କଂଗ୍ରେସ' ନାମରେ ଏକ କଂଗ୍ରେସ ଅନୁଷ୍ଠାନ ୧୯୭୮ ମସିହାରେ ଗଠିତ ହୋଇ ଉକ୍ତ ଦଳକୁ ପ୍ରକୃତ କଂଗ୍ରେସ ବୋଲି ଦାବି କଲା । ଏହା ଫଳରେ ଲୋକସଭା ଓ ବିଧାନସଭାମାନଙ୍କରେ ମଧ୍ୟ କଂଗ୍ରେସ ଦଳ ଦୁଇ ଭାଗରେ ବିଭକ୍ତ ହୋଇଗଲା । ଓଡ଼ିଶା ବା ସେଥିରୁ ବାଦ ଯାଆନ୍ତା କିପରି । ଏଠାରେ ମଧ୍ୟ ୨୬ ଜଣ କଂଗ୍ରେସ

ବିଧାୟକଙ୍କ ମଧ୍ୟରୁ ଅଧିକାଂଶ ସଭ୍ୟ କଂଗ୍ରେସ (ଇ)କୁ ଚାଲିଯିବା ଫଳରେ ୧୯୭୮ ମସିହାର ବଜେଟ୍ ବୈଠକ ବେଳକୁ ନୂତନ ଦଳ ସଂଖ୍ୟାଧିକ ହୋଇ ବିରୁଦ୍ଧ ଦଳର ମର୍ଯ୍ୟାଦା ଲାଭକଲା । ମୁଁ ଓ ଅନ୍ୟ ଅଳ୍ପସଂଖ୍ୟକ କେତେକ ସଭ୍ୟ ମୂଳ କଂଗ୍ରେସରେ ରହି ଦୁଇ କଂଗ୍ରେସର ମିଳନପାଇଁ ଉଦ୍ୟମ କଲୁ । ଏହାପରେ ଶ୍ରୀମତୀ ଗାନ୍ଧୀ କର୍ଣ୍ଣାଟକର ଚିକିମାଗାଲୁର ନିର୍ବାଚନମଣ୍ଡଳୀରୁ ନିର୍ବାଚିତ ହେଲେ । କର୍ଣ୍ଣାଟକର ବିଧାନସଭା ନିର୍ବାଚନରେ ମଧ୍ୟ କଂଗ୍ରେସ(ଇ) ର ବିପୁଳ ସଂଖ୍ୟକ ବିଜୟ ସାଙ୍ଗକୁ ମୂଳ କଂଗ୍ରେସ ବୋଲାଉଥିବା କଂଗ୍ରେସ (ଏସ୍)ର ଅତି ଶୋଚନୀୟ ପରାଜୟ ଘଟିଲେ ମଧ୍ୟ ଦୁଇ କଂଗ୍ରେସର ମିଳନ ହୋଇ ପାରୁ ନଥାଏ । କ୍ରମେ ଲୋକସଭା ଓ ବିଧାନସଭାମାନଙ୍କରେ ବହୁ ସଭ୍ୟ କଂଗ୍ରେସ (ଏସ୍) ପରିତ୍ୟାଗ କରି କଂଗ୍ରେସ (ଇ)କୁ ଚାଲିଯିବାକୁ ଲାଗିଲେ । ଇତିମଧ୍ୟରେ ପୁଣି ଶ୍ରୀମତୀ ଗାନ୍ଧୀଙ୍କୁ ଲୋକସଭା ସଭ୍ୟ ପଦରୁ କଟାଯିବା ଓ ତାଙ୍କୁ ଗିରଫ କରିବା ପ୍ରଭୃତି ଘଟଣାମାନ ଶ୍ରୀମତୀ ଗାନ୍ଧିଙ୍କ ସପକ୍ଷରେ ଯେତିକି ଜନମତ ସୃଷ୍ଟିକଲା କଂଗ୍ରେସ (ଏସ୍)ର ସ୍ଥିତି ସେତିକି କ୍ଷୁର୍ଣ୍ଣ ହେବାକୁ ଲାଗିଥାଏ । ଅପରପକ୍ଷରେ ଜନତା ସରକାରର ପ୍ରଧାନମନ୍ତ୍ରୀ ପଦପାଇଁ ଆଦର୍ଶଗତ ବିବାଦ ଦିନକୁ ଦିନ ଲୋକମୁଖରେ ନିନ୍ଦିତ କରିବାକୁ ଲାଗିଲା । ହଠାତ୍ ଜନତା ସରକାର ଭାଙ୍ଗିଯାଇ ପୂର୍ବପରି ବିଭିନ୍ନ ଦଳରେ ପରିଣତ ହୋଇଗଲା ଓ ଦରଦାମ ବୃଦ୍ଧି ପାଇ ଦେଶରେ ଏକ ଗୁରୁତର ଅବସ୍ଥା ସୃଷ୍ଟି ହେଲା । ଚାରିଆଡ଼େ ଏକପ୍ରକାର ଅରାଜକତା ବ୍ୟାପିଲାପରି ଜଣାପଡ଼ିଲା । ଏହି ସମୟରେ ଲୋକସଭା ନିର୍ବାଚନ ହେବାରୁ ଶ୍ରୀମତୀ ଗାନ୍ଧିଙ୍କ ନେତୃତ୍ୱରେ ଗଠିତ କଂଗ୍ରେସ (ଇ) ଦଳ ବିପୁଳ ସଂଖ୍ୟାରେ ବିଜୟ ଲାଭ କରି କେନ୍ଦ୍ରରେ କଂଗ୍ରେସ (ଇ) ସରକାର ଗଠିତ ହେଲା । ଏହାପରେ ମଧ୍ୟ ମୂଳ କଂଗ୍ରେସ ବୋଲାଉଥିବା କଂଗ୍ରେସ (ଅର୍ସ) ଦଳର ମିଶ୍ରଣ ମନୋଭାବର କୌଣସି ସୂଚନା ନ ମିଳିବାରୁ ଓ ରାଜ୍ୟସ୍ତରୀୟ କେତେକ କର୍ମକର୍ତ୍ତାଙ୍କ ସହ ମତାନ୍ତର ହେବାରୁ ମୁଁ ୧୯୮୦ ମସିହା ବିଧାନସଭାର କାର୍ଯ୍ୟ ଚାଲିଥିଲାବେଳେ କଂଗ୍ରେସ (ଇ)ରେ ଯୋଗଦାନ କଲି । ୧୯୭୭ରେ ଜନତା ଦଳ ସରକାରରେ ଥାଇ ଲୋକସଭାର ଫଳାଫଳ ଉପରେ ବିଚାର କରି ଯେଉଁ ରାଜ୍ୟରେ ସରକାରୀ ଦଳର ପ୍ରାର୍ଥୀ ଅତି କମ୍ ସଂଖ୍ୟାରେ ନିର୍ବାଚିତ ହୋଇଥିଲେ ସେହି ରାଜ୍ୟ ସରକାରଗୁଡ଼ିକୁ ଭାଙ୍ଗିଦିଆଗଲା । ସେହି ନୀତିର ଅନୁସରଣ କରି ଓଡ଼ିଶାରେ ୨୧ଟି ଲୋକସଭା ଆସନ ମଧ୍ୟରୁ ଜନତା ଦଳ ଗୋଟିଏ ମାତ୍ର ଆସନରେ ଜୟଯୁକ୍ତ ହୋଇଥିବାରୁ ଓଡ଼ିଶାର ଜନତା ସରକାରକୁ ଭାଙ୍ଗିଦେଇ ୧୯୮୦ ମସିହା ମେ ମାସ ବେଳକୁ ବିଧାନସଭା ଭୋଟ ଗ୍ରହଣ କରିବାର ସ୍ଥିର କରାଗଲା ।

## ୧୯୮୦ରେ ବିଧାନସଭା ନିର୍ବାଚନ, ମୋର ୭ମ ଥର ପାଇଁ ବିଜୟ

ଏଥର ମଧ୍ୟ କଂଗ୍ରେସ ଦଳରୁ ପ୍ରାର୍ଥୀ ହେବାପାଇଁ ଦରଖାସ୍ତ କଲି । ମୟୂରଭଞ୍ଜ ଜିଲ୍ଲା କଂଗ୍ରେସ କମିଟିର ପ୍ରାର୍ଥୀ ସୁପାରିସପାଇଁ ବୈଠକକୁ ପ୍ରଦେଶ କମିଟି ପକ୍ଷରୁ ଶ୍ରୀଯୁକ୍ତ ଅର୍ଜୁନ ସେଠୀ ଏମ୍.ପି. ପର୍ଯ୍ୟବେକ୍ଷକ ହୋଇ ଆସିଥିଲେ । ମୋତେ ପ୍ରାର୍ଥୀ ହେବାର ଦେଖି ଜିଲ୍ଲା କଂଗ୍ରେସ ଦଳରେ ଆତଙ୍କ ଦେଖାଦେଲା ଓ ମୋତେ ପ୍ରାର୍ଥୀ କରାଇ ନ ଦେବାକୁ ମିଳିତଭାବରେ ସବୁ ପ୍ରକାର ଉଦ୍ୟମ

କରାଗଲା । ବିଶେଷକରି ଯୁବ କଂଗ୍ରେସ ତରଫରୁ ଯେଉଁମାନଙ୍କର କୌଣସି ପ୍ରକାର କଂଗ୍ରେସର ଆଦର୍ଶ ନାହିଁ, ତ୍ୟାଗ ନାହିଁ, ନୀତି ନାହିଁ ସେଇମାନେ ହିଁ ବେଶି ତତ୍ପର ହୋଇପଡ଼ିଲେ । ଫଳରେ ଜିଲ୍ଲା କଂଗ୍ରେସ କାର୍ଯ୍ୟକାରୀ କମିଟି ପ୍ରାର୍ଥୀ ପାଇଁ ମୋର ନାମ ସୁପାରିଶ କଲେ ନାହିଁ । କିନ୍ତୁ ପୋଲିସ ଓ ଗୋଇନ୍ଦା ବିଭାଗର ଗୁପ୍ତ ରିପୋର୍ଟରେ ମୋ ବ୍ୟତୀତ ଅନ୍ୟ କୌଣସି ବ୍ୟକ୍ତି କଂଗ୍ରେସ ପକ୍ଷରୁ ପ୍ରାର୍ଥୀ ହେଲେ ସ୍ୱାଧୀନ ପ୍ରାର୍ଥୀ ଶ୍ରୀ ପ୍ରମୋଦ ଚନ୍ଦ୍ର ଭଞ୍ଜଦେଓଙ୍କ ସମକକ୍ଷ ହୋଇପାରିବେ ନାହିଁ ବୋଲି ସ୍ପଷ୍ଟ ଉଲ୍ଲେଖ ଥିଲା । ଏ ବିଷୟ ସେତେବେଳର ଓଡ଼ିଶା ଦାୟିତ୍ୱରେ ଥିବା ଶ୍ରୀଯୁକ୍ତ ଜାନକୀ ବଲ୍ଲଭ ପଟ୍ଟନାୟକ ଭଲଭାବରେ ଜାଣିଥିଲେ । ସେଥିପାଇଁ କଂଗ୍ରେସ (ଇ)କୁ କ୍ଷମତାକୁ ଆଣିବାରେ ସେ ଯଥେଷ୍ଟ ପରିମାଣରେ ସହାୟକ ହୋଇପାରିଥିଲେ । ପରିଶେଷରେ ମୋର ପ୍ରାର୍ଥିତ୍ୱ ହିଁ ଗୃହୀତ ହେଲା । ଏଥର ମୋ ନିର୍ବାଚନମଣ୍ଡଳୀରେ ମୋ ସମର୍ଥକଙ୍କ ବ୍ୟତୀତ ଅନ୍ୟ ସମସ୍ତ କଂଗ୍ରେସ ଲୋକ ପ୍ରକାଶ୍ୟ ଓ ଅପ୍ରକାଶ୍ୟ ଏହିପରି ଦୁଇ ଦଳରେ ବିଭକ୍ତ ହୋଇ ଶ୍ରୀଯୁକ୍ତ ପ୍ରମୋଦ ଚନ୍ଦ୍ର ଭଞ୍ଜଦେଓଙ୍କୁ ପ୍ରାର୍ଥୀ ହେବାପାଇଁ ରାଜି କରାଇଲେ ଓ ସାହାଯ୍ୟ ମଧ୍ୟ କଲେ । ବିରୋଧୀ ଦଳଗୁଡ଼ିକ ମଧ ଏକଜୁଟ ହୋଇ କୌଣସି ପ୍ରାର୍ଥୀ ଛିଡ଼ା ନକରାଇ ଶ୍ରୀଯୁକ୍ତ ଭଞ୍ଜଦେଓଙ୍କୁ ଆର୍ଥିକ ଓ ସାଂଗଠନିକ ସବୁ ପ୍ରକାର ସାହାଯ୍ୟ ଯୋଗାଇ ଦେଲେ । ମୋତେ ଏକାକୀ କେବଳ ମୋର ସହକର୍ମୀମାନଙ୍କୁ ନେଇ ପ୍ରତିଯୋଗିତାରେ ଆଗେଇବାକୁ ପଡ଼ିଲା ଏବଂ ପରିଶେଷରେ ମୋର ହିଁ ବିଜୟ ହେଲା । ମୁଁ ପ୍ରାର୍ଥୀ ହୋଇ ନଥିଲେ ଏ ସ୍ଥାନଟି କଂଗ୍ରେସକୁ ହରାଇବାକୁ ପଡ଼ିଥାଆନ୍ତା ବୋଲି ପରେ ସମସ୍ତେ ଉପଲବ୍ଧି କଲେ । ମୁଁ କଂଗ୍ରେସକୁ ଆସିବାରେ ଜିଲ୍ଲାରେ କଂଗ୍ରେସର ସମ୍ମାନ ବରଂ ବୃଦ୍ଧି ପାଇଲା ।

## ମୋତେ ମନ୍ତ୍ରୀ ନ କରିବାର ଷଡ଼ଯନ୍ତ୍ର

ପ୍ରଥମେ ମୋତେ ବାରିପଦା ନିର୍ବାଚନ ମଣ୍ଡଳୀରୁ ପ୍ରାର୍ଥୀ କରାଇ ନ ଦେବାର ଆପ୍ରାଣ ଚେଷ୍ଟା କରି ବିଫଳ ହେଲାରୁ ଦ୍ୱିତୀୟ ଉଦ୍ୟମ ହେଲା ସ୍ୱାଧୀନ ପ୍ରାର୍ଥୀଙ୍କୁ ସାହାଯ୍ୟ କରି କଲେ ବଳେ କୌଶଳେ ମୋତେ ପରାସ୍ତ କରିବା । ଏପରିକି ସ୍ୱାଧୀନ ପ୍ରାର୍ଥୀ ହୋଇଥିଲେ ମଧ୍ୟ ପରେ କଂଗ୍ରେସକୁ ଆଣି ଶ୍ରୀ ଭଞ୍ଜଦେଓଙ୍କୁ ମନ୍ତ୍ରୀ କରାଇଦେବାର ମଧ ପ୍ରଲୋଭନ ଦିଆଯାଇଥିଲା । ମାତ୍ର ମନୋବଳ, ସେବା ମନୋଭାବ, ତ୍ୟାଗ ଓ ଅଧ୍ୟବସାୟ ମାନବକୁ ସବୁ ଯେତ୍ରରେ ସଫଳତା ଆଣି ଦିଏ "ଧନ କାର୍ପଣ୍ୟ ସେବା ବଳେ - କିବା ଅସାଧ ମହୀ ତଳେ ?" ଏସସବୁ ସତ୍ତ୍ୱେ ମୁଁ ନିର୍ବାଚନରେ ଜୟଯୁକ୍ତ ହେଲେ ବି ମୋ ବିରୋଧରେ ଷଡ଼ଯନ୍ତ୍ର ଅବ୍ୟାହତ ରହିଲା । ଏହାର ପରବର୍ତ୍ତୀ ଚେଷ୍ଟା ହେଲା ମୋତେ ମନ୍ତ୍ରୀ ନକରି ଆମ ଜିଲ୍ଲାରୁ ଜଣେ ବା ଦୁଇଜଣ ଆଦିବାସୀ ସଭ୍ୟଙ୍କୁ ମନ୍ତ୍ରୀ କରାଇବା । ସେଥିପାଇଁ ଆକାଂକ୍ଷିତ ସଭ୍ୟମାନଙ୍କ ଏକ ଦସ୍ତଖତ ସଂଗ୍ରହ କରାଯାଇ ମୁଖ୍ୟମନ୍ତ୍ରୀଙ୍କୁ ଦିଆଗଲା । ଏଥିରେ ସେମାନେ ସଫଳକାମ ହେଲେ ଓ ଆମ ଜିଲ୍ଲାରୁ ଶ୍ରୀ କୁଆଁରିଆ ମାଝୀ ରାଷ୍ଟ୍ରମନ୍ତ୍ରୀ ଓ ଶ୍ରୀମତୀ ସରସ୍ୱତୀ ହେମ୍ବ୍ରମ୍ ଉପମନ୍ତ୍ରୀଭାବେ ମନ୍ତ୍ରିମଣ୍ଡଳରେ ସ୍ଥାନ ପାଇଲେ । ଏଥିରେ ମୋର କୌଣସି ପ୍ରକାର ଈର୍ଷା ମନୋଭାବ ପ୍ରକାଶ ପାଇ ନଥିଲା । ମୋର ମନ୍ତ୍ରୀ ହେବାର ଲୋଭ କେବେ ନଥିଲା । ମନ୍ତ୍ରୀ ହେବାର ଆଶା ନେଇ ମୁଁ କଂଗ୍ରେସରେ ଯୋଗ ଦେଇ ନଥିଲି । ମୁଁ ସବୁଦିନେ

ବିରୋଧି ଦଳରେ ରହିଆସୁଥିବାରୁ ଆମ ଜିଲ୍ଲାରେ ତଥା ମୋ ନିର୍ବାଚନମଣ୍ଡଳୀରେ କୌଣସି ପ୍ରକାର ଉନ୍ନୟନମୂଳକ କାର୍ଯ୍ୟ ହେଉ ନଥିବାର ଲୋକେ ଅଭିଯୋଗ କରୁଥିଲେ । ତେଣୁ ସମୂହ ସ୍ୱାର୍ଥ ପାଇଁ ଓ ଜନସାଧାରଣଙ୍କ ଆକାଂକ୍ଷା ପୂରଣ ଉଦ୍ଦେଶ୍ୟରେ ପ୍ରଥମେ କଂଗ୍ରେସରେ ଓ ପରେ କଂଗ୍ରେସ (ଇ)ରେ ଆସି ଯୋଗ ଦେଇଥିଲି । ମାତ୍ର ମୋତେ ମନ୍ତ୍ରୀ ନକରିବା ଦ୍ୱାରା କେବଳ ଆମ ଜିଲ୍ଲାରେ କାହିଁକି ରାଜ୍ୟର ଅନ୍ୟ ଅଞ୍ଚଳର ଲୋକଙ୍କ ମନରେ ମଧ୍ୟ କ୍ଷୋଭ ପ୍ରକାଶ ପାଇଥିଲା । ମାତ୍ର ମୁଁ ଏଥିରେ ତିଳେ ମାତ୍ର ବିଚଳିତ ନହୋଇ ମୋର କର୍ତ୍ତବ୍ୟରେ ତତ୍ପର ରହିଲି । ଏଥର ମୋର ବିଶେଷ ଉଦ୍ୟମ ହେଲା ସୁବର୍ଣ୍ଣରେଖା ନଦୀ ଯୋଜନାକୁ କାର୍ଯ୍ୟକାରୀ କରି ଜଳସେଚନକୁ ବ୍ୟାପକ କରାଇବା ଓ ଶିମିଳିପାଳ ପର୍ବତର ସଂପୂର୍ଣ୍ଣ ସଂରକ୍ଷଣ ।

## ପବ୍ଲିକ୍ ଅଣ୍ଡରଟେକିଙ୍ଗ କମିଟିର ଚେୟାରମେନ୍

ବିଧାନସଭାର ଚାରିଟି ମୁଖ୍ୟ କମିଟି ମଧ୍ୟରୁ ପବ୍ଲିକ୍ ଅଣ୍ଡରଟେକିଙ୍ଗ କମିଟି ଅନ୍ୟତମ । ମୋତେ ଏହି କମିଟିର ଚେୟାରମେନ୍ ଦାୟିତ୍ୱ ଅର୍ପଣ କରାଗଲା । ଏହି କମିଟିର କାର୍ଯ୍ୟ ଖୁବ୍ ଗୁରୁତ୍ୱପୂର୍ଣ୍ଣ । ସରକାରୀ ଉଦ୍ୟୋଗରେ ଗଠିତ ଶିଳ୍ପ ଓ ବାଣିଜ୍ୟ ସଂସ୍ଥା ଯେଉଁଥିରେ ଶତକଡ଼ା ୫୦ ଭାଗରୁ ଅଧିକ ସରକାରୀ ମୂଳଧନ ବିନିଯୋଗ କରାଯାଇଥାଏ, ସେସବୁ ସଂସ୍ଥାଗୁଡ଼ିକର ପରିଚାଳନା, ଲାଭକ୍ଷତି ଇତ୍ୟାଦି ସଂପର୍କରେ ଏହି କମିଟି ତନଖି କରିଥାଆନ୍ତି । ମୁଁ ଏଭଳି ଏକ କମିଟିର ଚେୟାରମେନ୍ ହେବା ଫଳରେ ଉକ୍ତ ସଂସ୍ଥାଗୁଡ଼ିକର ପରିଚାଳନା କର୍ତ୍ତୃପକ୍ଷ ବଡ଼ ଆତଙ୍କିତ ହୋଇପଡ଼ିଲେ । ସାଧାରଣତଃ ଏହି କମିଟି ଏପରି ବିଭିନ୍ନ ସଂସ୍ଥାକୁ ପରିଦର୍ଶନରେ ଗଲାବେଳେ ପରିଚାଳନା କର୍ତ୍ତୃପକ୍ଷମାନେ ସଭ୍ୟମାନଙ୍କୁ ବିଶେଷଭାବରେ ଆପ୍ୟାୟିତ କରି ସନ୍ତୁଷ୍ଟ କରିବାର ଚେଷ୍ଟା କରିଥାଆନ୍ତି । ବିନା ଖର୍ଚ୍ଚରେ ଖାଇବା ଓ ପିଇବାର ବି ବ୍ୟବସ୍ଥା କରନ୍ତି ଓ ସଭ୍ୟମାନେ ଯାଇଥିବା ଗାଡ଼ିରେ ପେଟ୍ରୋଲ ଇତ୍ୟାଦି ମଧ୍ୟ ଯୋଗାଇ ଦିଅନ୍ତି । କେତେକ କ୍ଷେତ୍ରରେ ବିନା ଭଡ଼ାରେ ଗାଡ଼ି ମଧ୍ୟ ଯୋଗାଇ ଦିଆଯାଏ । ଅଥଚ କମିଟିର ସଭ୍ୟମାନଙ୍କୁ ଏଥିପାଇଁ ଗସ୍ତଖର୍ଚ୍ଚ ଓ ଦୈନିକ ଭତ୍ତା ପ୍ରଭୃତି ସରକାରଙ୍କ ତରଫରୁ ଦିଆଯିବାର ସମସ୍ତ ବ୍ୟବସ୍ଥା ରହିଛି । ଏହି ଲାଭ ପାଉଥିବା ଯୋଗୁଁ କମିଟିର ସଭ୍ୟମାନେ ଏଭଳି ପରିଦର୍ଶନକୁ ଏକ ମଜଲିସ୍ ଓ ରୋଜଗାରର ପନ୍ଥାରୂପେ ଗ୍ରହଣ କରିନିଅନ୍ତି । ବିଭିନ୍ନ ସଂସ୍ଥାମାନଙ୍କରେ ଆତିଥେୟତା ବାବଦକୁ ଯଥେଷ୍ଟ ପରିମାଣର ଅର୍ଥ ବନ୍ଦ ରଖାଯାଇଥିବାରୁ ସେମାନଙ୍କୁ ମଧ୍ୟ କିଛି ଅସୁବିଧା ହୁଏ ନାହିଁ । ବରଂ ଏହାଦ୍ୱାରା ସେମାନେ ଫାଇଦା ମଧ ଉଠାଇ ନିଅନ୍ତି । ମୁଁ ଏ କମିଟିର ଅଧକ୍ଷ ହେଲାପରେ ପ୍ରଥମେ ଶିଳ୍ପ ଉନ୍ନୟନ ନିଗମ ପରିଦର୍ଶନରେ ଯାଇଥିଲି । ବିଭିନ୍ନ ଶିଳ୍ପର ପରିଚାଳନା କର୍ତ୍ତୃପକ୍ଷ ମୋତେ ତାଙ୍କ ଅକ୍ତିଆରକୁ ନେବାପାଇଁ ତାଙ୍କର ପୂର୍ବ କୌଶଳ ପ୍ରୟୋଗ କରି ବିଫଳ ମନୋରଥ ହେଲେ । ମୋର ଓ ମୋସହିତ ଯାଇଥିବା ଖର୍ଚ୍ଚ ସ୍ଥାନୀୟ କର୍ତ୍ତୃପକ୍ଷଙ୍କୁ ନେବାପାଇଁ ବାଧ କଲି ଓ ସେ ବାବଦରେ ତାଙ୍କର ସମସ୍ତ ଖର୍ଚ୍ଚ ତତ୍କ୍ଷଣାତ୍ ତାଙ୍କୁ ପଇଠ କରିଦେଲି । ଅଭ୍ୟର୍ଥନା ବାବଦରେ ଯେଉଁ ଖର୍ଚ୍ଚ ରଖାଯାଇଥାଏ ତାହା ବ୍ୟବସାୟ କ୍ଷେତ୍ରରେ ଆଗନ୍ତୁକମାନଙ୍କ ପାଇଁ ଉଦ୍ଦିଷ୍ଟ ତାହା ଆମପାଇଁ ଖର୍ଚ୍ଚ

ହେବାର ନୁହେଁ ବୋଲି ତାଙ୍କୁ ବୁଝାଇଦେଲି । ଦିନକର ଘଟଣା । ଏବେ ବି ମୋର ସେକଥା ମନେ ଅଛି । ମୁଁ ସେଦିନ ଯାଜପୁର ରୋଡ଼ର ଫେରୋକ୍ରୋମ୍ କାରଖାନାର ଅତିଥିଶାଳରେ ରାତ୍ରିଯାପନ କରୁଥାଏଁ, ସେଦିନ ରାତ୍ରିରେ ଶିଳ୍ପ ନିଗମର ଜଣେ କର୍ମଚାରୀ ରାତିରେ ଆମେ ସବୁ ଖାଇସାରିଲା ପରେ ମୋ କୋଠରିକୁ ଅତି ସନ୍ତର୍ପଣରେ ପ୍ରବେଶ କରି ଆଉ କ'ଣ ଦରକାର ବୋଲି ଅତି ନମ୍ରଭାବରେ ମୋତେ ବାରମ୍ବାର ପଚାରିଲେ । ସେ ମଦ୍ୟପାନ କଥା କହୁଛନ୍ତି ବୋଲି ତାଙ୍କ ଇଙ୍ଗିତରୁ ମୁଁ ବୁଝିପାରିଲି । ସଂଗେ ସଂଗେ ତାଙ୍କୁ ଉତ୍ତର ଦେଲି - ''ମୁଁ ବା ମୋର ଅନ୍ୟ କେହି ସହକର୍ମୀ ସେ ସବୁର ଭକ୍ତ ନୁହନ୍ତି'' ଏବଂ ଆଉ କେବେ ଏପରି ଆଚରଣ ନ କରିବାକୁ ତାଙ୍କୁ ଉପଦେଶ ଦେଲି । ମୋର ଉତ୍ତର ଶୁଣି ସେ କର୍ମଚାରୀ ଜଣକ ଅତ୍ୟନ୍ତ ଭୀତତ୍ରସ୍ତ ହୋଇପଡ଼ିଲେ । ପୂର୍ବ କମିଟିର ସଭ୍ୟମାନଙ୍କୁ ତୁମେ ଏପରି ପାନୀୟ ଯୋଗାଇ ଆପ୍ୟାୟିତ କରୁଥିଲ କି ? ବୋଲି ପ୍ରଶ୍ନ କଲାରୁ ସେ ତାହା ସ୍ୱୀକାର କଲେ ଏବଂ ଏ ବିଷୟ ଅନ୍ୟ କେଉଁଠି ପ୍ରକାଶ ନ କରିବାକୁ ମୋତେ ଅତି ବିନୀତ ଅନୁରୋଧ କଲେ । ଏପରି ଘଟଣା ଅନ୍ୟତ୍ର ପ୍ରକାଶ କରିବା ମୋର ପେଶା ନୁହେଁ ଶୁଣି ସେ ଆଶ୍ୱସ୍ତ ହେଲେ ।

କମିଟିର କାର୍ଯ୍ୟକ୍ରମ ମଧ୍ୟରେ କେତେକ ନୂତନ କାର୍ଯ୍ୟକ୍ରମ ସଂଯୋଜିତ ହେଲା । ବିଭିନ୍ନ ଶିଳ୍ପ ଓ ବାଣିଜ୍ୟିକ ସଂସ୍ଥାଗୁଡ଼ିକର ପରିଦର୍ଶନ କାଳରେ ପରିଚାଳନା କର୍ତ୍ତୃପକ୍ଷଙ୍କ ସହ ସଂପୃକ୍ତ ସଂସ୍ଥା ସଂପର୍କରେ ଆଲୋଚନା ସଂଗେ ସଂଗେ ଶ୍ରମିକ ପ୍ରତିନିଧିଙ୍କ ସହ ଆଲୋଚନା କରି ସଂସ୍ଥାର କ୍ଷତିର କାରଣ ଓ ଦୁର୍ନୀତି ପ୍ରଭୃତି ସଂପର୍କରେ ଜାଣିବା ଉଚିତ ହେବ ବୋଲି ମନେକଲି । ଏହା ଫଳରେ କ୍ରମେ ଲୋକଙ୍କ ମଧ୍ୟରେ ବିଶ୍ୱାସ ଜନ୍ମିଲା । ଫଳରେ ବିଭିନ୍ନ ସଂସ୍ଥାରୁ ବହୁ ଗୁରୁତର ଖବରମାନ ଆସିବାକୁ ଲାଗିଲା । ଏସବୁ ଘଟଣାଗୁଡ଼ିକର ପୁଙ୍ଖାନୁପୁଙ୍ଖ ଅନୁସଂଧାନ ଫଳରେ ପରିଚାଳନା କର୍ତ୍ତୃପକ୍ଷ ବିଶେଷ ଅସୁବିଧାର ସମ୍ମୁଖୀନ ହେଲେ । ଥରେ ବଡ଼ବିଲ ଯାଇଥିଲି । ମେନେଜର ଓ ଖଣି ନିଗମର ସ୍ଥାନୀୟ ମେନେଜରଙ୍କୁ ଡକାଇ ଏଣିକି କାରଖାନାପାଇଁ ଲୁହାପଥର କୌଣସି ଘରୋଇ ଠିକାଦାରଙ୍କଠାରୁ ନ କିଣି ଖଣି ନିଗମଠାରୁ କିଣିବାକୁ ନିର୍ଦ୍ଦେଶ ଦେଲି । ପରିଣାମରେ ବ୍ୟକ୍ତିଗତ ଠିକାଦାରମାନେ ତଥା କେତେକ ନିଗମ କର୍ମକର୍ତ୍ତା ଏକତ୍ର ହୋଇ ଭବିଷ୍ୟତରେ ଆହୁରି ଅଧିକ ବିପଦର ଆଶଙ୍କା କରି ପରବର୍ତ୍ତୀ ବର୍ଷମାନଙ୍କରେ ମୋତେ କମିଟିର ଅଧକ୍ଷ ବା ସଭ୍ୟ ପଦରେ ନ ରଖିବାପାଇଁ ସରକାରଙ୍କୁ ପରାମର୍ଶ ଦେଲେ । ପରିଣାମରେ ମୁଁ ଜଣେ ବୟୋଜ୍ୟେଷ୍ଠ ଓ ଅଭିଜ୍ଞ ବିଧାୟକ ହୋଇଥିଲେ ହେଁ ୧୯୮୧ରୁ ୧୯୮୩ ପର୍ଯ୍ୟନ୍ତ ତିନିବର୍ଷ ଧରି ମୋତେ କୌଣସି କମିଟିର ସଭ୍ୟ ପଦରେ ରଖାଗଲା ନାହିଁ । ମାତ୍ର ଏଥିରେ ତିଳେମାତ୍ର ବିଚଳିତ ନ ହୋଇ ନିଜର କର୍ତ୍ତବ୍ୟରେ ନିଷ୍ଠାର ସହିତ କାର୍ଯ୍ୟ କରିଗଲି । ବିଧାନସଭାରେ କଂଗ୍ରେସ ଦଳର କୌଣସି ଜଣେ ହେଲେ ସଭ୍ୟ ବିଭିନ୍ନ ସୁବିଧା ସୁଯୋଗ ପାଇବାରୁ ବଞ୍ଚିତ ହୋଇନଥିଲେ । ମୁଁ ହିଁ କେବଳ ସେଥିରୁ ବାଦ୍ ପଡ଼ିଥିଲି । ମୋର କୌଣସି କ୍ଷମତାପ୍ରାପ୍ତି ବା ଅର୍ଥଲାଭର ଆଶା ନଥିବାରୁ ମୋ ପ୍ରତି ଏପରି ଆଚରଣ ମୋତେ କୌଣସି ପ୍ରକାରେ ସ୍ପର୍ଶ କରି ପାରି ନଥିଲା । ଅନ୍ୟ ପକ୍ଷରେ ବରଂ ମୋର ସ୍ପଷ୍ଟବାଦିତା ହେତୁ ବିଧାନସଭାରେ ଓ ବାହାରେ ମୋର ସମ୍ମାନ ଉତ୍ତରୋତ୍ତର ବଢ଼ିବାକୁ ଲାଗିଲା ।

## ପ୍ରତିନିଧି ଦଳର ନେତାଭାବେ ଦକ୍ଷିଣ ଭାରତ ପରିଭ୍ରମଣ

୧୯୮୦ ମସିହାରେ କଂଗ୍ରେସ ତରଫରୁ ମୁଁ ଦ୍ୱିତୀୟ ଥରପାଇଁ ନିର୍ବାଚିତ ହେବା ମୋ ପକ୍ଷରେ ତଥା ଆମ ଜିଲ୍ଲା ପକ୍ଷରେ ଗୌରବର ବିଷୟ ହୋଇଥିଲେ ହେଁ ଈର୍ଷା ଓ ଦ୍ୱେଷ ଯୋଗୁଁ ମୋତେ କୌଣସି ସମ୍ମାନଜନକ ସ୍ଥାନ ମିଳିଲା ନାହିଁ । ଅବଶ୍ୟ ସେଥିପାଇଁ ମୋର କୌଣସି କ୍ଷୋଭ ନଥିଲା । ଦଳର ଜଣେ ଆତ୍ମୋତ୍ସର୍ଗୀକୃତ ଶୃଙ୍ଖଳିତ ସଭ୍ୟଭାବରେ କାର୍ଯ୍ୟ କରିବାରେ ଥାଏ ମୋର ଆନନ୍ଦ । ନିର୍ବାଚନର ପ୍ରଥମ ବର୍ଷ ମୋତେ ବିଧାନସଭାର ଯେଉଁ ଅଧକ୍ଷ ପଦ ଦିଆଗଲା ତାହା କେବଳ ସେହି ବର୍ଷର ଅବଶିଷ୍ଟ ଛଅ ମାସପାଇଁ । ତା ପରବର୍ତ୍ତୀ ବର୍ଷ ଭୟରେ ମୋତେ ସେ କମିଟିର ଚେୟାରମେନ୍ କଲେ ନାହିଁ ବା ଅନ୍ୟ କୌଣସି କମିଟିରେ ମଧ୍ୟ ରଖାଗଲା ନାହିଁ । କଂଗ୍ରେସ ଦଳର ମନ୍ତ୍ରୀମାନଙ୍କ ବ୍ୟତୀତ ସମସ୍ତ ସଦସ୍ୟ ଏପରିକି ବିରୁଦ୍ଧଦଳର ସଦସ୍ୟମାନେ ମଧ କୌଣସି ନା କୌଣସି କମିଟିର ସଭ୍ୟ ହୋଇଥିଲେ ମଧ ମୁଁ ଏକମାତ୍ର ସଦସ୍ୟ ଯେ କି କୌଣସି କମିଟିର ସଭ୍ୟ ନଥିଲି । ସେଥିପାଇଁ ମୁଁ ଦଳର ନେତା ବା ଅନ୍ୟ କାହାରିକୁ ଅନୁରୋଧ କରି ନାହିଁ ବା ସେଥିପାଇଁ ପ୍ରାର୍ଥୀ ମଧ ହୋଇନାହିଁ । କିନ୍ତୁ ବିଧାନସଭାର ଜଣେ ସକ୍ରିୟ ସଦସ୍ୟଭାବରେ ମୋର ନିରପେକ୍ଷ ମତ ଦୃଢ଼ଭାବେ ପ୍ରକାଶ କରିବାରେ କେବେହେଲେ ପଶ୍ଚାତ୍‌ପଦ ହୋଇନାହିଁ । ଏପରିକି କୌଣସି ଏକ ବିରୁଦ୍ଧ ଦଳର ଅନାହାର ମୃତ୍ୟୁଜନିତ ମୁଲତବୀ ପ୍ରସ୍ତାବ ଘଟଣାରେ ବିରୁଦ୍ଧ ଦଳର ସଭ୍ୟମାନଙ୍କ ଯୁକ୍ତିଗୁଡ଼ିକୁ ସରକାରୀ ପକ୍ଷ ଚପାଇ ଦେବାକୁ ଯାଉଥିବାରୁ ମୁଁ ତହିଁ ଉପରେ ମତାମତ ଦେଇ ସରକାରୀ ରିପୋର୍ଟ ସନ୍ଦେହଜନକ ଓ ସତ୍ୟ ନୁହେଁ ବୋଲି ପ୍ରମାଣ ଦେଖାଇଲାରୁ  ସରକାରଙ୍କ ଚପେଇଦେବା ଉଦ୍ୟମ ପଣ୍ଡ ହୋଇଗଲା । ଏପରି ଘଟଣା ଦେଖି ମୁଖ୍ୟମନ୍ତ୍ରୀ ମୋ ନିକଟକୁ ଆସି ମୋର ମତାମତ ବିରୁଦ୍ଧ ଦଳର ସଭ୍ୟଙ୍କ ଭଳି ହୋଇଯାଉଛି ବୋଲି ମୋତେ କହିଲେ । ମୁଁ ସଙ୍ଗେ ସଙ୍ଗେ ଉତ୍ତର ଦେଲି, ''ମୁଁ ଦଳର ଜଣେ ଶୃଙ୍ଖଳିତ ସଭ୍ୟ । କିନ୍ତୁ ଗଣତନ୍ତ୍ର ଯେଉଁ ମୌଳିକ ନୀତିର ସୁରକ୍ଷାପାଇଁ ଜୀବନପାତ କରି ଆସିଛି କେହି ତାର ଖିଲାପ କଲେ ବା ସେଥିରେ କେହି ବାଧା ସୃଷ୍ଟି କଲେ ମୁଁ କେବେ ତାହା ସହିପାରିବି ନାହିଁ । '' ମୁଁ ଏହିପରିଭାବରେ ସର୍ବଦା ନିରପେକ୍ଷ ମତ ଦେଉଥିବାରୁ ସମସ୍ତଙ୍କର ସ୍ନେହ ଓ ଭକ୍ତିଭାଜନ ହୋଇଥିଲି । ମୁଁ ବିଧାନସଭାର ସମସ୍ତ ସଦସ୍ୟଙ୍କଠାରୁ କମ୍ ପ୍ରାପ୍ୟ ପାଉଥିଲେ ହେଁ ମୋର ସମ୍ମାନ ବଢ଼ିଲା ଓ ମୁଁ ସମସ୍ତଙ୍କର ସ୍ନେହ ଓ ସହାନୁଭୂତିର ପାତ୍ର ହେଲି । ଏହାପରେ ବିଧାନସଭାର ଏକ ସ୍ୱତନ୍ତ୍ର କମିଟିରେ ମୋତେ ଦଳପତି ଭାବେ ବଛାଯାଇ ଦକ୍ଷିଣ ଭାରତ ପଠାଗଲା ।

## ଦକ୍ଷିଣ ଭାରତର ବିଭିନ୍ନ ସ୍ଥାନ ପରିଦର୍ଶନ

ଏହି ପରିଭ୍ରମଣରେ ମୋସହିତ ବିଧାନ ସଭାର ୮/୯ ଜଣ ସଭ୍ୟ ଓ ବିଧାନସଭାର କର୍ମଚାରୀମାନେ ଥିଲେ । ପ୍ରଥମେ ଆମେ ଯାଇ ହାଇଦ୍ରାବାଦ ଆନ୍ଧ୍ର ପ୍ରଦେଶର ରାଜଧାନୀରେ ପହଞ୍ଚିଲୁ । ସେଠା ବିଧାନସଭାର ପ୍ରଟୋକଲ ଆମକୁ ରେଳ ଷ୍ଟେସନରୁ ପାଛୋଟି ନେଲେ । ସରକାରୀ ଅତିଥିଶାଳାରେ ପହଞ୍ଚିଲା ପରେ ସେଠା ବିଧାନସଭାର କେତେକ ସଭ୍ୟଙ୍କ ସହିତ

ସାକ୍ଷାତ ଆଲୋଚନା ହେଲା । ତା'ପରେ ସେଠାରୁ କର୍ଣ୍ଣାଟକର ରାଜଧାନୀ ବାଙ୍ଗାଲୋର ଗଲୁ । ବାଙ୍ଗାଲୋର ଅବସ୍ଥାନ କାଳ ମଧ୍ୟରେ ସେଠାକାର ବିଭିନ୍ନ ଦର୍ଶନୀୟ ସ୍ଥାନ ପରିଦର୍ଶନ କଲୁଁ । ସେଠାକାର ବିଧାନସଭା ଓ ସେକ୍ରେଟେରିଏଟ୍ ଉଭୟ ଲଗାଲଗି ହୋଇ ଏପରି କୌଶଳରେ ନିର୍ମିତ ହୋଇଛି ଯେ, ମନ୍ତ୍ରୀମାନଙ୍କର ସେକ୍ରେଟେରୀଏଟ୍‌ର ପ୍ରକୋଷ୍ଠ ଓ ବିଧାନସଭାର ମନ୍ତ୍ରୀ ପ୍ରକୋଷ୍ଠପାଇଁ ଗୋଟିଏ ମାତ୍ର କୋଠରି ଦୁଇ କାମ କରୁଛି । ତେଣୁ ଆମ ଓଡ଼ିଶା ଭଳି ମନ୍ତ୍ରୀମାନଙ୍କୁ ସଚିବାଳୟ ଛାଡ଼ି ବିଧାନସଭା ପ୍ରକୋଷ୍ଠକୁ ଆସିବାକୁ ପଡୁ ନାହିଁ । ସ୍ୱର୍ଗୀୟ ଶ୍ରୀଯୁକ୍ତ ହନୁମନ୍ତାୟା କର୍ଣ୍ଣାଟକରେ କଂଗ୍ରେସ ଦଳର ମୁଖ୍ୟମନ୍ତ୍ରୀ ଥିଲାବେଳେ ଏହି ବିଧାନସଭା ଗୃହ ଓ ସରକାରୀ ସଚିବାଳୟ ନିର୍ମିତ ହୋଇଥିଲା । ଅତି ଅଳ୍ପ ସ୍ଥାନ ମଧ୍ୟରେ କାରୀଗରୀ କୌଶଳରେ ଦୁଇଟି ମୁଖ୍ୟ ଅନୁଷ୍ଠାନ ତିଆରି ହୋଇପାରିଛି । ତା'ପରେ ସେଠାକାର ବିରାଟ ଗ୍ଲାସ୍ ହାଉସ୍ ଓ ଉଦ୍ୟାନ ପ୍ରଭୃତି ବୁଲି ଦେଖିଲୁ । ବାଙ୍ଗାଲୋର ଅତ୍ୟନ୍ତ ମନୋରମ ସହର ହୋଇଥିବାରୁ ଏହାକୁ ଭାରତର ଉଦ୍ୟାନ ନଗର ବୋଲି କୁହାଯାଏ ।

ଏଠାରୁ ମହୀଶୁର ଗଲା ବାଟରେ ଟିପୁ ସୁଲତାନଙ୍କ ଐତିହାସିକ କାଷ୍ଠ-ନିର୍ମିତ ପ୍ରାସାଦ ଦେଖିଲୁ । ଉକ୍ତ ପ୍ରାସାଦର କାନ୍ଥରେ ବ୍ରିଟିଶ ସରକାରଙ୍କ ସହିତ ଟିପୁ ସୁଲତାନଙ୍କ ସଂଘଟିତ ଯୁଦ୍ଧର ଚିତ୍ରମାନ ଅଙ୍କନ କରାଯାଇ ତହିଁର ସଂକ୍ଷିପ୍ତ ବିବରଣୀମାନ ମଧ୍ୟ ଲିପିବଦ୍ଧ କରାଯାଇଅଛି । ମହୀଶୁରର ଚନ୍ଦନ କାଠ କାରଖାନା ଓ ଅନ୍ୟାନ୍ୟ ଦର୍ଶନୀୟ ସ୍ଥାନ ଦେଖିସାରିଲାପରେ ଭାରତର ପ୍ରଖ୍ୟାତ ଇଂଜିନିୟର ସ୍ୱର୍ଗୀୟ ବିଶ୍ୱେଶ୍ୱରାୟାଙ୍କ ଯୋଜନାନୁଯାୟୀ ପ୍ରସ୍ତୁତ ବୃନ୍ଦାବନ ଗାର୍ଡ଼େନ ଦେଖିଲୁ । ଏହାର ସୌନ୍ଦର୍ଯ୍ୟ ଅତ୍ୟନ୍ତ ମନୋରମ ଓ ଉପଭୋଗ୍ୟ । ସେଠାରେ ଏକ ବୃହତ୍ ଜଳସେଚନ ଯୋଜନାର ରିଜର୍ଭର ତଳେ ବିଭିନ୍ନ ରଙ୍ଗର ବିଦ୍ୟୁତ୍ ବଲ୍‌ବ ଦ୍ୱାରା ସଜ୍ଜିତ ଏହା ବିରାଟ ଉଦ୍ୟାନ । ଉକ୍ତ ଉଦ୍ୟାନ ମଧ୍ୟରେ ପ୍ରବହମାନ ଜଳସ୍ରୋତ ମଧ୍ୟରେ ବିଭିନ୍ନ ରଙ୍ଗର ଖଚିତ ବଲ୍‌ବଗୁଡ଼ିକ ଏକ ଅଭିନବ ସୌନ୍ଦର୍ଯ୍ୟ ସୃଷ୍ଟି କରୁଥାଏ । ଏହା ପ୍ରତ୍ୟହ ସଂଧ୍ୟାରେ ପ୍ରାୟ ଏକ ଘଣ୍ଟା ପାଇଁ ଖୋଲାଯାଏ ଏବଂ ଏହି ସମୟରେ ହଜାର ହଜାର ଦର୍ଶକଙ୍କ ସମାବେଶ ହୁଏ । ବାଙ୍ଗାଲୋର ଛାଡ଼ିବା ପୂର୍ବରୁ ସେଠା ବିଧାନ ସଭାର ଏକ କମିଟି ସହିତ ଭେଟ ପରେ ଆମେ କେରଳର ରାଜଧାନୀ ତ୍ରିଭେନ୍ଦ୍ରମ୍ ଆସିଲୁ । ସେଠାକାର ବିଧାନସଭା ବଡ଼ଦିନ ଛୁଟି ପାଇଁ ବନ୍ଦ ଥିଲା । ସେଠାରୁ ଆମେ ଭାରତର ଭୂଭାଗର ଶେଷ ସୀମା କୁମାରିକା ଗଲୁ । ସେଠାରେ ପହଞ୍ଚିଲା ବେଳକୁ ରାତି ହୋଇଯାଇଥାଏ । ସୁତରାଂ ସେ ସ୍ଥାନର ପ୍ରଧାନ ଉପଭୋଗ୍ୟ ସୂର୍ଯ୍ୟାସ୍ତ ଦେଖିପାରିଲୁଁ ନାହିଁ । ସେଦିନ ସମସ୍ତେ ଗୋଟିଏ ହୋଟେଲରେ ରାତ୍ରଯାପନ କଲୁ । ରାତ୍ରିରେ କନ୍ୟାରୂପରେ ଥିବା ପାର୍ବତୀଙ୍କ ମନ୍ଦିର ଦର୍ଶନ କଲୁଁ । କିମ୍ବଦନ୍ତୀରୁ ଜଣାଯାଏ ଯେ, ଶିବଙ୍କୁ ପତିରୂପରେ ପାଇବାପାଇଁ ପାର୍ବତୀ କନ୍ୟା ବେଶରେ ଶିବଙ୍କ ନିକଟକୁ ଆସୁଥିଲେ । ମାତ୍ର ପଥ ମଧ୍ୟରେ ରାତି ଶେଷ ହୋଇ ସକାଳ ହୋଇଯିବାରୁ ଆସିଲେ ନାହିଁ । ତେଣୁ ସେ ସ୍ଥାନର ନାମ କନ୍ୟାକୁମାରୀ ରଖାଯାଇଅଛି । ଏହା ଭାରତର ଶେଷ ଦକ୍ଷିଣ ସୀମା । ସେଠାକାର ସକାଳ ଓ ସଂଧ୍ୟାର ସୂର୍ଯ୍ୟୋଦୟ ଓ ସୂର୍ଯ୍ୟାସ୍ତକାଳୀନ ଦୃଶ୍ୟ ଅତ୍ୟନ୍ତ ହୃଦ୍ୟ ଓ ରମଣୀୟ । ମାତ୍ର ସେଦିନ ସକାଳର ଆକାଶ କୁହେଳିକାଛନ୍ନ ହେତୁ

ସୂର୍ଯ୍ୟୋଦୟ ଦେଖିବାର ସୌଭାଗ୍ୟ ମିଳିଲା ନାହିଁ । ଏଠାରେ ବଙ୍ଗୋପସାଗର, ଆରବ ସାଗର ଓ ଭାରତ ମହାସାଗର ସମ୍ମିଶ୍ରଣ ହୋଇଥିବାରୁ ଏହା ଏକ ପବିତ୍ରମ ସ୍ଥାନ । ସେଦିନ ସକାଳ ପ୍ରାୟ ୭ଟା ବେଳେ ଆମେ ସମସ୍ତେ କାର୍ ଯୋଗେ ରାମେଶ୍ୱର ଯାତ୍ରା କଲୁ । ସମୁଦ୍ରକୁ ଲାଗିଥିବା ଏକ ବିସ୍ତୃତ ରାଜପଥରେ ସେତୁବନ୍ଧ ଉପରେ ଯାଇଥିବା ଟ୍ରେନ୍ ଯୋଗେ ଯାଇ ଦିନ ପ୍ରାୟ ୨ଟା ବେଳେ ରାମେଶ୍ୱରରେ ପହଞ୍ଚିଲୁ । ରାମେଶ୍ୱର ମନ୍ଦିରକୁ ପାଇ ଶ୍ରୀରାମ, ସୀତା, ଲକ୍ଷ୍ମୀ ଓ ହନୁମାନ ମୂର୍ତ୍ତି ଦର୍ଶନ କରି ଅଳ୍ପ ସମୟମଧ୍ୟରେ ପୁଣି ତ୍ରିଭେନ୍ଦ୍ରମ୍ ଅଭିମୁଖେ ପ୍ରତ୍ୟାବର୍ତ୍ତନ କଲୁଁ ।

## ଶିମିଳିପାଳ ପର୍ବତ ସଂରକ୍ଷଣ

୧୯୮୦ ମସିହାର ଶେଷ ବେଳକୁ ବିଧାନସଭାର ଶୀତକାଳୀନ ଅଧିବେଶନ ଚାଲିଥାଏ । ଏହି ଅଧିବେଶନ କାଳରେ ମୋର ଏକ ବେସରକାରୀ ପ୍ରସ୍ତାବ ମାଧମରେ ଶିମିଳିପାଳ ଅରଣ୍ୟର ସଂପୂର୍ଣ୍ଣ ସଂରକ୍ଷଣ କରାଯାଇ ତା'ର ଉନ୍ନତି ସାଧନନିମିତ୍ତ ବିଧାନସଭାରେ ଏକ ଗୃହ କମିଟି ଗଠନପାଇଁ ଦାବି କରାଗଲା । ସେତେବେଳେ ପରିବେଶ ସୁରକ୍ଷା ବା ବାୟୁମଣ୍ଡଳ ଦୂଷିତୀକରଣ ସଂପର୍କରେ ଓଡ଼ିଶା ବା ଓଡ଼ିଆ ଖବରକାଗଜ ମାନଙ୍କରେ କେବେ କେବେ କିଛି ଆଲୋଚନା ହେଉନଥିଲା । ତେଣୁ ଶିମିଳିପାଳ ସୁରକ୍ଷା ଓ ପରିବେଶ ସଂରକ୍ଷଣ ଏକ ନୂଆ ବିଷୟରୂପେ ସମସ୍ତଙ୍କ ସମ୍ମୁଖରେ ଉପସ୍ଥାପିତ ହେଲା । ମୁଁ ଏହି ବେସରକାରୀ ପ୍ରସ୍ତାବଟି ଆଗତ କରି ବହୁ ସମୟ ଧରି ଆଲୋଚନା କଲି । ପୂର୍ବତନ ଜନତା ସରକାର ସମୟରେ ଶିମିଳିପାଳ ଉନ୍ନୟନ ଯୋଜନା ନାମରେ ଯେଉଁ ସଂସ୍ଥା ଗଠନ କରାଯାଇଛି, ତାହା ଶିମିଳିପାଳ ଭଳି ଓଡ଼ିଶାର ଏକ ବୃହତ୍ ଘନ ଜଙ୍ଗଲର ସୁରକ୍ଷା ପରିବର୍ତ୍ତେ ବୃକ୍ଷଲତା ସଫା କରି ବ୍ୟବସାୟିକ ଦୃଷ୍ଟିରୁ ଯେଉଁ ଯୋଜନା ହୋଇଛି, ତା'ର ତୀବ୍ର ବିରୋଧ କଲି । ମୋର ଏହି ପ୍ରସ୍ତାବ ଦଳମତ ନିର୍ବିଶେଷରେ ଗୃହର ବହୁ ସଭ୍ୟଙ୍କ ଦ୍ୱାରା ସମର୍ଥିତ ହେଲା । କିନ୍ତୁ ଏଥର ବିଧାନସଭାରେ ଆଲୋଚନା ଶେଷ ନ ହେବାରୁ ପରବର୍ତ୍ତୀ ବୈଠକ ୧୯୯୧ ମସିହାକୁ ମୁଲତବୀ ରହିଲା । ପରବର୍ତ୍ତୀ ବର୍ଷ ବଜେଟ୍ ଅଧିବେଶନରେ ଆଲୋଚନା ହୋଇ ଅମୀମାଂସିତ ହୋଇ ରହିଲା । ସେହି ବର୍ଷ ପୁଣି ତହିଁ ପରବର୍ତ୍ତୀ ବୈଠକରେ ବିଷୟଟିର ଆଲୋଚନା ହେଲା । ଶେଷରେ ବିଭାଗୀୟ ମନ୍ତ୍ରୀ ଆମ ଜିଲ୍ଲାର ଶ୍ରୀ କୁଆଁରିଆ ମାଝୀ ଅତି ଅଡୁଆରେ ପଡ଼ି ବିଧାନସଭାରେ ଏକ ଗୃହ କମିଟି ଗଠନ କରିବାକୁ ରାଜି ହେଲେ । ବିଧାନସଭାର ସରକାରୀ ଓ ବିରୁଦ୍ଧ ଦଳ ଉଭୟଙ୍କୁ ନେଇ ଏଭଳି କମିଟି ଗଠନ କରି ଶିମିଳିପାଳର ସଂରକ୍ଷଣ ଓ ଉନ୍ନତି ସାଧନପାଇଁ ସରକାରଙ୍କୁ ପରାମର୍ଶ ଦେବାକୁ ଏକ ଗୃହ କମିଟି ଗଠନ ହେବା ସଙ୍ଗେ ସଙ୍ଗେ ଅନ୍ତତଃ ଦଶବର୍ଷପାଇଁ ଗଛକଟା ବନ୍ଦ ରଖିବାକୁ ଉକ୍ତ ପ୍ରସ୍ତାବରେ ଉଲ୍ଲେଖ କରାଗଲା । ପ୍ରସ୍ତାବ ଗୃହୀତ ହେବା ପରେ ବିଧାନସଭାର ଅଧକ୍ଷଙ୍କ ନେତୃତ୍ୱରେ ମୋଟ ୧୨ ଜଣ ସଭ୍ୟଙ୍କୁ ନେଇ ଏକ କମିଟି ଗଠନ କରାଗଲା । ସେଥିରେ ମୁଁ ଓ ମୋସହିତ ଏକମତ ଥିବା ବ୍ୟକ୍ତିମାନେ ସଭ୍ୟ ରହିଲେ ।

# ଶିମିଳିପାଳ ପର୍ବତର ସୁରକ୍ଷାରେ ମୋର ଅବଦାନ

ମୟୂରଭଂଜର ଶିମିଳିପାଳ ପର୍ବତର ସ୍ଥିତି ସମସ୍ତ ଦୃଷ୍ଟିରୁ ବିଶେଷଭାବରେ ପରିବେଶ ସୁରକ୍ଷା ଦିଗରେ କେବଳ ମାନବ-ଜାତି କାହିଁକି ସମଗ୍ର ଜୀବ-ଜଗତର କଲ୍ୟାଣପାଇଁ ଏକ ମହାନ୍ ଦାନ ହୋଇଥିଲେ ହେଁ ତା'ର ସୁରକ୍ଷା ଓ ଉନ୍ନତି ସାଧନ ଦିଗରେ କୌଣସି ବ୍ୟବସ୍ଥା କରା ନଯାଇ ବରଂ 'ଶିମିଳିପାଳ ବନ ଉନ୍ନୟନ ନିଗମ' ନାମରେ ଏକ ବାଣିଜ୍ୟିକ ସଂସ୍ଥା ଗଢ଼ାଯାଇ ଶିମିଳିପାଳରେ ଥିବା ଅତି ମୂଲ୍ୟବାନ୍ ଓ ବିରଳ ବୃକ୍ଷଗୁଡ଼ିକର ବ୍ୟାପକ ଭାବରେ କଟା ଆରମ୍ଭ ହୋଇଥିଲା । ବିହାର, ଓଡ଼ିଶା ଓ ପଶ୍ଚିମବଙ୍ଗ, ଏହି ତିନି ରାଜ୍ୟର ସଙ୍ଗମସ୍ଥଳୀର ଏକ ବିରାଟ ଅଞ୍ଚଳରେ ଅବସ୍ଥିତ ତଥା ଭାରତର ପୂର୍ବପଟେ ପରିବେଶକୁ ନିୟନ୍ତ୍ରଣ କରୁଥିବା ଏହି ପର୍ବତମାଳାର ବିଶାଳ ଶାଳ ବନାନୀ, ବୃହତ୍ ଜଳପ୍ରପାତ ଓ ମେଘାସନ ଭଳି ଅତ୍ୟୁଚ୍ଚ ଶୃଙ୍ଗ ପରିବେଷ୍ଟିତ ହୋଇ ସମଗ୍ର ଦେଶର ଏକ ଅଦ୍ୱିତୀୟ ମନୋରମ ସ୍ଥଳୀ ହୋଇଥିଲେ ହେଁ ଏହା ଅତ୍ୟନ୍ତ ଅବହେଳିତ ଅବସ୍ଥାରେ ପଡ଼ିରହିଥିଲା । ତେଣୁ ବିଧାନସଭାରେ ଏକ ଗୃହ କମିଟି ଗଠନ କରାଯାଇ ଏହି ମହାନ୍ ସଂପଦର ସୁରକ୍ଷାପାଇଁ ମୋଦ୍ୱାରା ଆଗତ ଏକ ବେସରକାରୀ ପ୍ରସ୍ତାବ ସର୍ବସମ୍ମତିକ୍ରମେ ଗୃହୀତ ହେବାରୁ ବାଚସ୍ପତିଙ୍କ ଅଧକ୍ଷତାରେ ବାର ଜଣ ବିଧାୟକଙ୍କୁ ନେଇ ଏକ ଗୃହ କମିଟି ଗଠିତ ହେବା ଓଡ଼ିଶା ବିଧାନସଭା ଇତିହାସରେ ପ୍ରଥମ ଘଟଣା । ଏହି କମିଟିର ସୁପାରିସ୍ ଅନୁସାରେ ସରକାର ଶିମିଳିପାଳ ଜଙ୍ଗଲରୁ ୧୯୮୨ରୁ ଗଛକଟା ସଂପୂର୍ଣ୍ଣରୂପେ ବନ୍ଦ କରିବାର ଓ ୧୯୮୩ ମସିହାରୁ ସେଠାରେ ମିଳୁଥିବା ଶାଳମଞ୍ଜିକୁ ଜାତୀୟକରଣ କରିବାର ନିଷ୍ପତ୍ତି ଗ୍ରହଣ କଲେ । ଏହି ଜଙ୍ଗଲ ସଂରକ୍ଷଣ ଓ ତହିଁର ଉନ୍ନତି ସାଧନ ମାନବଜାତି ତଥା ସମସ୍ତ ଜୀବ-ଜଗତର କଲ୍ୟାଣ କ୍ଷେତ୍ରରେ ନିଶ୍ଚିତଭାବରେ ଏକ ଐତିହାସିକ ପଦକ୍ଷେପ ହୋଇ ଯୁଗ ଯୁଗ ଧରି ରହିବ । ପୁରୀର ଶ୍ରୀଜଗନ୍ନାଥ ମନ୍ଦିରପାଇଁ ଓଡ଼ିଶା ଯେପରି ଭାରତରେ ସର୍ବତ୍ର ପରିଚିତ ହୋଇ ପାରିଛି, ଶିମିଳିପାଳ ପର୍ବତର ସଂପୂର୍ଣ୍ଣ ସଂରକ୍ଷଣ କରି ତହିଁର ଆବଶ୍ୟକୀୟ ଉନ୍ନତି ସାଧନ ହୋଇପାରିଲେ ଏହି ଶିମିଳିପାଳପାଇଁ ମୟୂରଭଞ୍ଜ ତଥା ଓଡ଼ିଶା ଭାରତ ତଥା ଆନ୍ତର୍ଜାତିକ କ୍ଷେତ୍ରରେ ପରିଚିତ ହେବ ଓ ପୃଥିବୀର ବିଭିନ୍ନ ଅଞ୍ଚଳରୁ ବହୁ ପରିଦର୍ଶକଙ୍କର ବରାବର ସମାବେଶ ହେବ । ଏଥି ପୂର୍ବରୁ ଜଙ୍ଗଲ ବିଭାଗର ଜଣେ କର୍ମଚାରୀ ବ୍ୟାଘ୍ର ସଂରକ୍ଷଣ ପ୍ରକଳ୍ପ ତରଫରୁ ଖଇରୀ ନାମକ ଏକ ବାଘୁଣୀକୁ ଗୃହପାଳିତ ପଶୁ ଭଳି ନିଜ ଘରେ ରଖିଥିବାରୁ ତାକୁ ଦେଖିବାପାଇଁ ଯଶୀପୁରକୁ ବହୁ ବିଦେଶୀ ପର୍ଯଟକ ଆସୁଥିଲେ । ଓଡ଼ିଶା ବିଧାନସଭା ଇତିହାସରେ ଗୃହ କମିଟି ଗଠନ ଏକ ଉଲ୍ଲେଖନୀୟ ଘଟଣା ।

ମୁଁ ୧୯୭୭ ମସିହାର ନିର୍ବାଚନରେ ବାରିପଦା ବିଧାନସଭା ନିର୍ବାଚନ ମଣ୍ଡଳୀରୁ ନିର୍ବାଚିତ ହେଲାପରେ କେତେକ ଅସହିଷ୍ଣୁ ବ୍ୟକ୍ତିବିଶେଷଙ୍କ ତରଫରୁ କେତେକ ଅଭିଯୋଗର ଗୁଞ୍ଜରଣ ଦେଖାଦେଇଥିଲା । ମୋର ଘର ବାରିପଦା ନିର୍ବାଚନମଣ୍ଡଳୀ ମଧ୍ୟରେ ନଥିଲା ଓ ମୁଁ ବେତନଟୀରୁ ଆସି ଏଠାରୁ ନିର୍ବାଚିତ ହୋଇଥିବାରୁ ସାଧାରଣଙ୍କୁ ତାଙ୍କର ଆବଶ୍ୟକତା ବେଳେ ମୋସହିତ ସାକ୍ଷାତପାଇଁ ଖର୍ଚ୍ଚାନ୍ତ ହୋଇ ବେତନଟୀ ପର୍ଯ୍ୟନ୍ତ ଯିବାକୁ ହେବ ବୋଲି ଥିଲା ମୁଖ୍ୟ ଅଭିଯୋଗ

। ଏହାର ଉତ୍ତରରେ ମୁଁ ଭୋଟରମାନଙ୍କୁ ପ୍ରତିଶ୍ରୁତି ଦେଇଥିଲି ଯେ, ପୂର୍ବରୁ ନିର୍ବାଚିତ ବିଧାୟକଙ୍କୁ ଲୋକେ ଯେତେ ସୁବିଧାରେ ସାକ୍ଷାତ କରିପାରୁଥିଲେ ତାଠାରୁ ଅଧିକ ସୁବିଧାରେ ଲୋକେ ମୋତେ ବାରିପଦାରେ ହିଁ ସାକ୍ଷାତ କରିପାରିବେ । ଏହି ପ୍ରତିଶ୍ରୁତି ରକ୍ଷା କରିବାପାଇଁ ମୋତେ ପ୍ରତିଦିନ ଦିନ ୧୦ଟା ବେଳକୁ ବାରିପଦା ଯିବାକୁ ପଡୁଥିଲା ଓ ସଂଧ୍ୟାରେ ଘରକୁ ଫେରୁଥିଲି । ଏତଦ୍ ବ୍ୟତୀତ ପ୍ରତିଦିନ ସକାଳେ ଘରଠାରେ ବୈଶିଙ୍ଗା, ଖୁଣ୍ଟା ଓ କୁଳିଅଣା ପ୍ରଭୃତି ନିର୍ବାଚନ ମଣ୍ଡଳୀର ତଥା ବେତନଟୀ ପାଖାପାଖି ଅଞ୍ଚଳର ଲୋକେ ବିଭିନ୍ନ କାମ ଓ ପରାମର୍ଶପାଇଁ ମୋ ପାଖକୁ ଆସୁଥିଲେ ।

ବେତନଟୀ, ବୈଶିଙ୍ଗା ଓ ବଡ଼ସାହି ଅଞ୍ଚଳର ଲୋକଙ୍କ ଦୈନନ୍ଦିନ ଅଭାବ ଅସୁବିଧା ଶୁଣିବାକୁ ଜିଲ୍ଲାର କୌଣସି ବିଧାୟକ ଅଞ୍ଚଳରେ ନଥିଲେ । ଏତଦ୍ ବ୍ୟତୀତ ମୋ ନିର୍ବାଚନ ମଣ୍ଡଳୀର ବାରିପଦା ସହର, ବାରିପଦା ବ୍ଲକ୍, ମୁରୁଡ଼ା ଓ ମୂଳିଆପଦାର ଏକ ବିସ୍ତୃତ ଅଞ୍ଚଳ ମୋପାଇଁ ଉଦ୍ଦିଷ୍ଟ ଥିଲା । ତେଣୁ ଏ ସବୁ ଅଞ୍ଚଳର ଲୋକଙ୍କୁ ବାରିପଦା କଚେରୀଠାରେ ସୁବିଧାରେ ଭେଟିବାର ସ୍ଥାନ ଥିଲା । ଏ ସମସ୍ତ କାର୍ଯ୍ୟସହ ମୋ ନିର୍ବାଚନମଣ୍ଡଳୀର ବିଭିନ୍ନ ସ୍ଥାନକୁ ମଧ୍ୟ ମୋତେ ନିୟମିତ ଯିବାକୁ ପଡୁଥିଲା । ଏହି ଅତ୍ୟଧିକ ପରିଶ୍ରମର ପରିଣାମରେ ଚିତ୍ରଡ଼ା ଠାରେ ଦିନେ କର୍ମୀମାନଙ୍କ ଗହଣରେ ଆଲୋଚନାରତ ଥିବା ବେଳେ ହଠାତ୍ ମୋର ବାମ ପାଖ ଗୋଡ଼ ଓ ହାତ ଅଚଳ ହୋଇପଡ଼ିଲା । ସେଠା ଲୋକେ ନିକଟସ୍ଥ (୧୨ ମାଇଲସ୍ଥିତ) ଚିକିତ୍ସାଳୟକୁ ଯାଇ ଜଣାଇବାରୁ ସେଠାକାର ମେଡ଼ିକେଲ ଅଫିସର ଆମ୍ବୁଲେନ୍ସ ଯୋଗେ ବାରିପଦା ଜିଲ୍ଲା ହାସପାତାଳକୁ ନେଇ ତୁରନ୍ତ ଚିକିତ୍ସାର ବ୍ୟବସ୍ଥା କରାଇଲେ । ଏହାପରେ କଟକର ଡାକ୍ତର ଶ୍ରୀଯୁକ୍ତ ସନାତନ ରଥଙ୍କ ପରାମର୍ଶରେ କଟକ ଗଲି । ସେ ପରୀକ୍ଷା କରି , ରୋଗ ଆକ୍ରମଣ ସେତେ ଗୁରୁତର ନୁହେଁ ବୋଲି ମନ୍ତବ୍ୟ ଦେବାରୁ ପୁଣି ଫେରିଆସି ବାରିପଦା ଡାକ୍ତରଖାନାରେ ଚିକିତ୍ସିତ ହେଲି । ମୋର ପ୍ରିୟ ଓ ବିରୁଦ୍ଧ ଲୋକେ ମଧ୍ୟ ସେତେବେଳେ ମୋର ସାକ୍ଷାତପାଇଁ ଆସିଥିଲେ । ଏହି ରୋଗଜନିତ ଦୁର୍ଘଟଣା ଡ଼ିସେମ୍ବର ୨୮ ତାରିଖ ୧୯୮୧ରେ ଆରମ୍ଭ ହୋଇଥିଲା ଓ ୧୯୮୨ ଜାନୁୟାରୀ ତା ୨୬ ରିଖ ଦିନ ପ୍ରାୟ ଏକମାସ ପରେ ଆରୋଗ୍ୟ ଲାଭ କରି ଘରକୁ ଫେରିଲି । ଦୁର୍ଘଟଣା ଓ ରୋଗ ଆକ୍ରମଣ ମୋ ଜୀବନରେ ସର୍ବ ବୃହତ୍ ।

## ବାରିପଦା ହାସପାତାଳରେ ଥିବାବେଳର ଏକ କୌତୂହଳ ଘଟଣା

ବାରିପଦାର ଶ୍ରୀ ହରିଶଚନ୍ଦ୍ର ଦାଶ ମୟୂରଭଞ୍ଜ ପ୍ରଜାମଣ୍ଡଳର ଜଣେ ଅତ୍ୟନ୍ତ ବିରୋଧୀ ବ୍ୟକ୍ତି ଥିଲେ । ଏ ବିଷୟ ସ୍ୱାଧୀନତା ଆନ୍ଦୋଳନସହିତ ସଂପୃକ୍ତ ସମସ୍ତଙ୍କୁ ଭଲଭାବରେ ଜଣା । ମୋର ଅସୁସ୍ଥତା ବିଷୟ ଶୁଣି ସେ ମୋତେ ଦେଖିବାକୁ ଆସୁଥିଲେ । ଦିନେ ସେ ମୋ ସ୍ତ୍ରୀକୁ କହିଲେ, " ପ୍ରସନ୍ନ ବାବୁ ଦିନେ ମୋର ବଡ଼ ଶତ୍ରୁ ଥିଲେ, ମାତ୍ର ଏବେ ନୁହେଁ ।" ସେ ହଠାତ୍ ଜାନୁଆରୀ ୨୬ ତାରିଖ ଦିନ ମୁଁ ଘରକୁ ଫେରିବାକୁ ପ୍ରସ୍ତୁତ ହେଉଥିବା ବେଳେ ମୋତେ ସାକ୍ଷାତ କରି କହିଲେ, "ମୁଁ ମନ୍ତ୍ରୀଙ୍କ ପତାକା ଉତ୍ତୋଳନ ଦେଖିବାକୁ ଯାଉଥିଲି, ବାଟରେ ମୋର ଆପଣଙ୍କ କଥା

ମନେପଡ଼ିବାରୁ ଆପଣଙ୍କୁ ଦେଖିବାକୁ ଚାଲିଆସିଲି । ଭାବିଲି ସ୍ୱାଧୀନତା ପାଇଁ ଆନ୍ଦୋଳନ କରି ଏହି ଜାତୀୟପତାକା ପାଇଁ ଯେଉଁମାନେ ମାଡ଼ ଖାଇଥିଲେ ସେମାନଙ୍କୁ ଆଜି ଦିନରେ ସାକ୍ଷାତ କରିବା ସବୁଠାରୁ ଆନନ୍ଦର ବିଷୟ । ମନ୍ତ୍ରୀମାନେ ତ ସ୍ୱାଧୀନତା ଆନ୍ଦୋଳନ କରି ନଥିଲେ, ତେଣୁ ତାଙ୍କଦ୍ୱାରା ପତାକା ଉତ୍ତୋଳନ ଦେଖିବାରେ କ'ଣ ଲାଭ ?'' ଏହା ଶୁଣିଲାପରେ ମୁଁ ସେହି ଦିନ ଡାକ୍ତରଖାନା ଛାଡ଼ି ଘରକୁ ଫେରିବା କଥା ତାଙ୍କୁ ଜଣାଇବାରୁ ସେ ହଠାତ୍ କହି ପକାଇଲେ, ''ଆଉ ବୋଧହୁଏ ଆପଣଙ୍କ ସହିତ ଦେଖା ହୋଇପାରିବ ନାହିଁ !'' ଯାହାହେଉ ବିଦାୟ ନେଇ ଆସିଲି, ମାତ୍ର ତାଙ୍କର ଶେଷ କଥାଟି ''ଆଉ ବୋଧହୁଏ ଦେଖା ହୋଇ ପାରିବ ନାହଁ !'' ଏହାର ତାତ୍ପର୍ଯ୍ୟ ବୁଝିପାରିଲି ନାହିଁ । ଅଳ୍ପ କିଛିଦିନ ପରେ ତାଙ୍କର ବିୟୋଗ ଘଟିଲା । ଏ ଘଟଣାଟି ମୋ ମନରେ ଏକ ଗଭୀର ଛାପ ପକାଇଛି । ପ୍ରକୃତରେ ଦିନେ ସେ ମୋର ପରମ ଶତ୍ରୁ ଥିଲେ । ସେ ରାଜ୍ୟଶାସନସହିତ ସହଯୋଗ କରି ଆମ ବିରୁଦ୍ଧରେ ବହୁ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିଥିଲେ । ହଠାତ୍ ଚାଲିଗଲେ ।

## ୧୯୮୩ର ମରୁଡ଼ି

୧୯୮୩ ମସିହାର ଭୀଷଣ ମରୁଡ଼ି ଫଳରେ ମୋ ନିର୍ବାଚନମଣ୍ଡଳୀର ଶୃଙ୍ଖଳିଆପଦା ଓ ମୁରୁଡ଼ା ବ୍ଲକର ବହୁ ଅଞ୍ଚଳ କ୍ଷତିଗ୍ରସ୍ତ ହୋଇପଡ଼ିଲା । ଜଳଯୋଗାଣର କୌଣସି ସୁବିଧା ନ ଥିବାରୁ ଚାଷୀଙ୍କ ଜମି ରକ୍ଷା କରିବାରେ ସଂପୂର୍ଣ୍ଣ ବିଫଳ ହେଲି । ରାଜ୍ୟ ସରକାର ସେତେବେଳକୁ ଆଉ ଉଠାଜଳସେଚନ ଯୋଜନା ସରକାରୀ ଅର୍ଥରେ କାର୍ଯ୍ୟକାରୀ କରିବେ ନାହିଁ ବୋଲି ସିଦ୍ଧାନ୍ତ ନେଇସାରିଥିଲେ । ଅଳ୍ପ ସମୟମଧ୍ୟରେ ଜଳସେଚନର ବ୍ୟବସ୍ଥା କରିବାକୁ ହେଲେ ଉଠାଜଳସେଚନ ଯୋଜନା ହିଁ ଏକମାତ୍ର ପନ୍ଥା । ତେଣୁ ସରକାରୀ ଦଳର ସଭ୍ୟ ହୋଇଥିଲେ ମଧ୍ୟ ଘୋଷଣା ମାଧ୍ୟମରେ ସରକାରଙ୍କୁ ଜଣାଇଦେଲି ଯେ, ନିର୍ଦ୍ଦିଷ୍ଟ ସମୟମଧ୍ୟରେ ସରକାର ମୋ ନିର୍ବାଚନମଣ୍ଡଳୀର ମରୁଡ଼ିଗ୍ରସ୍ତ ଅଞ୍ଚଳରେ ଉଠାଜଳସେଚନ ଯୋଜନା ଯଦି କାର୍ଯ୍ୟକାରୀ ନ କରିବେ ତେବେ ମୁଁ ଆମରଣ ଅନଶନ କରିବି । ଏ ଖବର ପାଇ ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ଜାନକୀ ପଟ୍ଟନାୟକ ମୋତେ ତୁରନ୍ତ ଭୁବନେଶ୍ୱର ଡକାଇଲେ ଏବଂ ଏକ ଉଚ୍ଚସ୍ତରୀୟ ବୈଠକ ଡକାଇଲେ । ପ୍ରାୟ ସମସ୍ତ ଉଚ୍ଚସ୍ତରୀୟ ଅଫିସର ବିଭାଗୀୟ ମନ୍ତ୍ରୀ ତଥା ଆମ ଜିଲ୍ଲାର ମନ୍ତ୍ରୀ ଓ ବିଧାୟକମାନଙ୍କୁ ଏ ବୈଠକକୁ ଡକାଯାଇଥିଲା । ସେହି ବୈଠକରେ ଦୃଢ଼ତାର ସହିତ ପ୍ରତିପାଦନ କଲି ଯେ ଉଠାଜଳସେଚନଦ୍ୱାରା ହିଁ ଅଳ୍ପ ସମୟମଧ୍ୟରେ ଓ ଅଳ୍ପ ଖର୍ଚ୍ଚରେ ବ୍ୟାପକ ଅଞ୍ଚରେ ଜଳସେଚନ କରାଯାଇ ପାରବ । ତେଣୁ ଏପରି ଲୋକହିତକର ଯୋଜନାକୁ ବନ୍ଦ କରାଯିବା ଠିକ୍ ହୋଇ ନାହିଁ । ଶେଷରେ ରାଜ୍ୟ ସରକାର ଏହି ଯୋଜନା ବ୍ୟାପକଭାବେ କାର୍ଯ୍ୟକାରୀ କରିବେ ଓ ପ୍ରତି ବ୍ଲକରେ ଅନ୍ତତଃ ୫୦୦ ଏକର ଚାଷଜମିରେ ସେଚନ କରାଯିବାର କାର୍ଯ୍ୟସୂଚୀ ପ୍ରସ୍ତୁତ କରାଗଲା । କେବଳ ମୋ ନିର୍ବାଚନମଣ୍ଡଳୀରେ ସେହି ଦିନ ୨୪ଟି ଉଠାଜଳସେଚନ ଯୋଜନା ମଞ୍ଜୁର ହେଲା ଓ ଏହି ଜିଲ୍ଲାର ଅନ୍ୟାନ୍ୟ ଅଞ୍ଚଳପାଇଁ ୧୨ଟି ଯୋଜନା ମଞ୍ଜୁର କରାଗଲା । ସେହି ଦିନଠାରୁ ଉଠାଜଳସେଚନ

ବିଭାଗ ମୋ ନିକଟରେ ଚିରରଣୀ ରହିଲେ ଏବଂ ମୋ ଅଞ୍ଚଳକୁ ସବୁଠାରୁ ବେଶୀ ଦୃଷ୍ଟି ଦେଲେ । ଏକ ସରକାରୀ ନୀତିର ବ୍ୟାପକ ପରିବର୍ତ୍ତନ ଘଟିଲା ।

## ବିଧାନସଭାର ଅସ୍ଥାୟୀ କାର୍ଯ୍ୟ ପରିଚାଳନା

ଅଧକ୍ଷଙ୍କ ଅନୁପସ୍ଥିତିରେ ଅନେକ ସମୟରେ ମୋତେ ବିଧାନସଭାର ଅଧକ୍ଷ କାର୍ଯ୍ୟ ପରିଚାଳନା କରିବାକୁ ପଡୁଥିଲା । ମୁଁ ଅଧକ୍ଷ ଆସନରେ ବସିଲେ ଉଭୟ ପକ୍ଷର ସମସ୍ତ ସଭ୍ୟ ସନ୍ତୁଷ୍ଟ ହେଉଥିଲେ । ତେଣୁ ପ୍ରଥମେ ବିରୁଦ୍ଧ ଦଳର ସଭ୍ୟ ଓ ପରେ ସରକାରୀ ଦଳର ସଭ୍ୟମାନେ ମୋତେ ଅଧକ୍ଷ ପଦ ଗ୍ରହଣ କରି ବିଧାନସଭାର ମର୍ଯ୍ୟାଦା ରକ୍ଷା କରିବାକୁ ଅନୁରୋଧ କଲେ । ଏହି ସମୟରେ ଅଧକ୍ଷ ଶ୍ରୀଯୁକ୍ତ ସୋମନାଥ ରଥ କୃଷିମନ୍ତ୍ରୀ ହେଲେ ।

ରାଜନୀତି କରିବା ଏକ ସାଧନା । ସ୍ୱାର୍ଥ ତ୍ୟାଗ ଓ ସତ୍ୟପ୍ରତି ନିଷ୍ଠା ଏହି ସାଧନାର ମୂଳମନ୍ତ୍ର । ତା' ପାଇଁ ସେମିତିକା ମନ ଲୋଡ଼ା, ଧନ ନୁହେଁ । ଏଣୁ ତ୍ୟାଗର କଷ୍ଟ ସ୍ୱୀକାର କରିବାର ଆତ୍ମବଳ ମୋ ଭିତରେ ଦୃଢ଼ ଥିବାରୁ ମୁଁ ଅତି ଶ୍ରଦ୍ଧାର ସହିତ ରାଜନୀତି କରିପାରିଲି । ମୋତେ ଆଲୋକିତ କରିବା ପାଇଁ ଯେଉଁମାନେ ସଳିତା ପରି ଜଳି ଯିବାରେ କୁଣ୍ଠା ପ୍ରକାଶ କରି ନାହାନ୍ତି ସେମାନଙ୍କ ମଧ୍ୟରେ ଶ୍ରେଷ୍ଠତମ ଥିଲେ ମୋର ଶ୍ୱଶୁର ଶ୍ରୀଯୁକ୍ତ ଲକ୍ଷ୍ମୀଧର ତ୍ରିପାଠୀ, ତାଙ୍କ ଘରଥିଲା ମୟୂରଭଞ୍ଜର ବେତନଟୀ ନିକଟସ୍ଥ ଦହିକୋଟି ଗାଁରେ । ଅବଶ୍ୟ ବହୁତ ପରେ ସେ ମୋର ଶ୍ୱଶୁର ହେଲେ । ମାତ୍ର ତା'ର ଯଥେଷ୍ଟ ପୂର୍ବରୁ ମୋ ପ୍ରତି ତାଙ୍କର ଅସୀମ ଶ୍ରଦ୍ଧା ଥିଲା । ଏବଂ ସେ ମୋର ସର୍ବାଧିକ ଯତ୍ନ ନେଉଥିଲେ ।

ସେ ନିଜେ ଜଣେ ସ୍ୱାଧୀନତା ସଂଗ୍ରାମୀ ହୋଇଥିବାରୁ ସ୍ୱାଧୀନତା ପାଇଁ ବିପ୍ଳବୀ ସାଜିଥିବା ପ୍ରତ୍ୟେକ ବ୍ୟକ୍ତିଙ୍କ ପାଇଁ ତାଙ୍କ ହୃଦୟରେ ଏକ ସ୍ୱତନ୍ତ୍ର ସ୍ଥାନ ଥିଲା । ସେଥିପାଇଁ ସେ ଥିଲେ ମୋର ଶ୍ରେଷ୍ଠ ଶୁଭାକାଂକ୍ଷୀ ଓ ସମର୍ଥକ । ରାଜ୍ୟ ସରକାର ଅଧୀନରେ ସେ ଜଣେ ଲାଖରାଜଦାର (ଇନାମଦାର) ହୋଇ ମଧ୍ୟ ଅତି ସାହସର ସହିତ ସେ ରାଜତନ୍ତ୍ର ବିରୁଦ୍ଧରେ ସ୍ୱର ଉତ୍ତୋଳନ କରୁଥିଲେ । ସ୍ୱାଧୀନତା ପ୍ରାପ୍ତିପରେ ଅଧିକ ସକ୍ରିୟ ହୋଇ ରାଜନୀତି କଲେ ଓ ପ୍ରଜାସୋସାଲିଷ୍ଟ ଦଳରେ ଯୋଗଦେଲେ ।

ମୋ ଉପରେ ସେ ଏତକି ପ୍ରୀତ ଥିଲେ ଯେ ମୋର କୌଣସି ରୋଜଗାର ପତ୍ର ନଥିବା କଥା ଜାଣିସୁଦ୍ଧା ମୋତେ ତାଙ୍କର କନ୍ୟାଦାନ କରିବା ପାଇଁ ମନେ ମନେ ସ୍ଥିର କରିନେଲେ । ଶେଷରେ ତାଙ୍କର ଉକ୍ତ ଇଚ୍ଛା ପୂରଣ ହେଲା ଏବଂ ମୁଁ ତାଙ୍କର ଜ୍ୱାଇଁ ହେଲି । ନିଜସ୍ୱ ରୋଜଗାର ମୋର କିଛି ନ ଥିବା ଯୋଗୁଁ ଆମ ପରିବାରର ଲୋକେ ମୋ ଉପରେ ଅସନ୍ତୁଷ୍ଟ ହେଉଥିବା କଥା ଜାଣି ପାରି ମୋତେ, ମୋ ସ୍ତ୍ରୀ ଓ ପୁଅକୁ ଦୀର୍ଘ ଦଶବର୍ଷ କାଳ ଅର୍ଥାତ୍ ୧୯୪୯ ସାଲରୁ ୧୯୫୯ ସାଲ ପର୍ଯ୍ୟନ୍ତ, ତାଙ୍କ ଘରେ ରହିବା ପାଇଁ ସ୍ଥାନ ଦେଇଥିଲେ । ମୋର ଛଅ ଜଣ ସନ୍ତାନ ମଧ୍ୟରୁ ଚାରିଜଣଙ୍କର ଜନ୍ମ ତାଙ୍କ ଘରେ ହୋଇଥିଲା । ଏଣୁ ସେମାନଙ୍କର ଲାଳନ ପାଳନର ସମସ୍ତ ଦାୟିତ୍ୱ ପ୍ରତ୍ୟକ୍ଷ ଭାବରେ ମୋର ଶାଶୂ ଶ୍ରୀମତୀ ବୃନ୍ଦାବତୀ ଦେବୀ ବୁଝୁଥିଲେ । ମୁଁ ରାଜନୀତି କରି ଏଣେ ତେଣେ ବୁଲୁଥିଲି, ପଇସାଟିଏ ରୋଜଗାର କରୁନଥିଲି ଅଥଚ ସେ ମୋର ସଂସାର ଭରଣପୋଷଣ କରୁଥିଲେ; ସେ କଥା ଆଜି ମନେ ପଡ଼ିଲେ କେମିତି କେମିତି ଲାଗେ । ମୋ ରାଜନୈତିକ, ସାମାଜିକ ଓ ସାଂସାରିକ ଜୀବନ ମୋର ଶାଶୂ ଓ ଶ୍ୱଶୁରଙ୍କ ପୃଷ୍ଠପୋଷକତାର ଋଣୀ ହୋଇ ରହିଗଲା । ଏକ ପୂର୍ଣ୍ଣ ଗର୍ଭା ତଟିନୀ ଭଳି ମୋର ଅଭାବମୟ ଦୁଃଖ ଜୀବନର ନୁଖୁରା ଉପକୂଳକୁ ସରସ ସୁନ୍ଦର ଓ ମଧୁମୟ କରି ସେ ଅବିରତ ବହିଚାଲିଥିଲେ । ମୋ ଜୀବନ ନୌକାର ମଙ୍ଗ ସେ ପ୍ରଥମରୁ ସଳଖି ଧରି ଥିବାରୁ ମୁଁ ରାଜନୀତି କ୍ଷେତ୍ରରେ ମୋର ସ୍ଥିତି ବଜାୟ ରଖି ପାରିଲି ।

ତାଙ୍କରି ଘରେ ରହି ପ୍ରଥମ ଥର ମୋରଡ଼ା ଓ ଦ୍ୱିତୀୟ ଥର ବୈଶିଙ୍ଗା (୧୯୫୭ ସାଲ) ରୁ ବିଧାନସଭା ଆସନ ପାଇଁ ନିର୍ବାଚିତ ହୋଇଥିଲି । ବିଧାୟକ ହେବାପରେ ମୋତେ ମାସିକ ଯେଉଁ ଭତ୍ତା ମିଳିଲା ସେଥିରୁ ଅଳ୍ପ କିଛି ନିଜ ଖର୍ଚ୍ଚ ପାଇଁ ରଖି ଅବଶିଷ୍ଟ ଦଳର ସଂଗଠନ କାର୍ଯ୍ୟ ତୁଲାଇବା ପାଇଁ ଦାନ କରି ଦେଉଥିଲି । ଯଦିଚ ଅର୍ଥାଭାବର କଷ୍ଟ ମୁଁ ଅନୁଭବ କରୁଥିଲି ତଥାପି ସେ ଦାନର ଆନନ୍ଦ ଥିଲା ଅନିର୍ବଚନୀୟ ଠିକ ଗର୍ଭଧାରୀ ଜନନୀର ପ୍ରସବ ଯନ୍ତ୍ରଣା ପରି । ଶ୍ୱଶୁରଙ୍କ ଘରେ ରହି ତାଙ୍କ ଅନ୍ନରେ ପ୍ରତିପାଳିତ ହୋଇ ମଧ୍ୟ ତାଙ୍କ ଭାଗଚାଷୀ ମାନେ ବେଦଖଲ ନ ହେବା ପାଇଁ ଆସି ମୋ ପାଖରୁ ପରାମର୍ଶ ନେଉଥିଲେ । ଶ୍ୱଶୁର ଘରେ ରହି ସୁଦ୍ଧା ମୁଁ ମୋର ବ୍ୟକ୍ତିତ୍ୱ ହରାଇ ନ ଥିଲି । ଶ୍ୱଶୁର ମଧ୍ୟ ମୋର ସମ୍ମାନ ଦୃଷ୍ଟିରୁ ତାଙ୍କର ଭାଗଚାଷୀ ମାନଙ୍କୁ ଜମିରୁ ବେଦଖଲ କରିବା ପାଇଁ ଆଉ ଆଗେଇଲେ ନାହିଁ । ତାଙ୍କପରି ଉଦାର ହୃଦୟର ଲୋକ ଏ ସଂସାରରେ ବିରଳ । ପରେ ଯେତେବେଳେ ପ୍ରଜା ସୋସାଲିଷ୍ଟ ଦଳ ଭାଙ୍ଗଗଲା ଏବଂ ମୁଁ ପୁଣି କଂଗ୍ରେସ



ଶ୍ୱଶୁର ✓ ଲକ୍ଷ୍ମୀଧର ତ୍ରିପାଠୀ ଓ ଶାଶୁ ✓ ବୃନ୍ଦାବତୀ ଦେବୀ

ଦଳକୁ ଫେରିଯିବାକୁ ଚାହିଁଲି, ସେ ମୋତେ ଦୃଢ଼ ସମର୍ଥନ ଜଣାଉଥିଲେ । ସେ ସେପରି ଶିକ୍ଷିତ ଲୋକ ନ ଥିଲେ ତଥାପି ତାଙ୍କର ମର୍ଯ୍ୟାଦାବନ୍ତ ରୁଚିବୋଧ, ଦେଶପ୍ରୀତି ଓ ହୃଦୟବତ୍ତା ମୋତେ ତଥା ତାଙ୍କ ସମ୍ପର୍କରେ ଆସିଥିବା ଲୋକମାନଙ୍କୁ ତାଙ୍କ ପ୍ରତି ଆକୃଷ୍ଟ କରିଥିଲା ।

୧୯୮୪ ମସିହା ଫେବୃୟାରୀ ମାସ ବାଇଶି ତାରିଖରେ ମୁଁ ଓଡ଼ିଶା ବିଧାନ ସଭାର ଦଶମ ବାଚସ୍ପତି ଭାବେ ନିର୍ବାଚିତ ହେଲାପରେ ପ୍ରଥମେ ଘରକୁ ଆସି ସ୍ତ୍ରୀକୁ ସାଙ୍ଗରେ ନେଇ ଶ୍ୱଶୁରଙ୍କୁ ଯାଇ ଦେଖାକଲି । ସେ ସେତେବେଳେ ଅସୁସ୍ଥ ଅବସ୍ଥାରେ ଥିଲେ ମଧ୍ୟ ମୁଁ ବାଚସ୍ପତି ହେବାର ଜାଣି ବହୁତ ଖୁସି ହେଲେ ଏବଂ ଏ ଗୁରୁଦାୟିତ୍ୱକୁ ମୁଁ ଯେପରି ସଫଳତାର ସହିତ ତୁଲାଇ ପାରେ ସେ ପାଇଁ ମୋତେ ଆଶୀର୍ବାଦ କଲେ । ତାଙ୍କୁ ଏପରି ଖୁସି ହେବାର ଦେଖି ମୋର ୧୯୫୨ ମସିହାର ଏକ ଘଟଣା ମନେ ପଡ଼ିଗଲା । ଘଟଣାଟି ହେଉଛି, ୧୯୫୨ ମସିହାରେ ମୁଁ ପ୍ରଥମେ ବିଧାୟକ ଭାବେ ନିର୍ବାଚିତ ହେବାପରେ ବେତନଟୀର ଭାଗବତ ପରିଡ଼ା, ଉପେନ୍ଦ୍ର ବିନ୍ଧାଣୀ, କମଳାକାନ୍ତ ବେହେରା ଓ ଶଙ୍କର ଷଡ଼ଙ୍ଗୀ ଆଦି ମୋର କେତେଜଣ ବନ୍ଧୁ ତଥା କର୍ମୀ ଯାଇ ମୋ ଶ୍ୱଶୁରଙ୍କୁ ଦେଖାକରି କହିଲେ ଯେ ଆମେ ପାର୍ଟିର ସବୁ ବିଧାୟକ ମାନଙ୍କୁ ଆରିଷାପିଠା ଖାଇବାକୁ ଦେବାପାଇଁ ମୁଁ ସ୍ଥିର କରିଛି ଓଭୁବନେଶ୍ୱରକୁ ଘର ଆରିଷା ପିଠା ନେଇଯିବା ପାଇଁ ତାଙ୍କୁ (କର୍ମୀ ମାନଙ୍କୁ) ଖବର ପଠାଇଛି । ମୋ ଶ୍ୱଶୁର ତାଙ୍କ ଠାରୁ ଏ ଖବର ପାଇ ତାହାକୁ ସତ ଭାବି ବେଶ କିଛି ଆରିଷା ପିଠା ମୋ ନାମ କହି ନେଇ ନିଜେ ନିଜେ ଯାହା ଖାଇବାର ଖାଇଲେ ଓ ଅଳ୍ପ କିଛି ମୋ ପାଇଁ ରଖିଥିଲେ । ମୁଁ ଭୁବନେଶ୍ୱରରୁ ଆସି ଶଙ୍କର ଷଡ଼ଙ୍ଗୀଙ୍କ ଘରଠାରେ ଓହ୍ଲାଇ ସେଠାରୁ ଶ୍ୱଶୁରଙ୍କୁ ଦେଖାକରିବାକୁ ବହିକୋଟି ଗଲାବେଳେ ସେହି ଆରିଷାପିଠାରୁ କିଛି ରଖିଥିଲେ ମୋତେ ଦେଲେ । ମୁଁ ଏତେ କଥା ନବୁଝି ସେମାମନେ ମୋତେ ତାହା ଦେଉଛନ୍ତି ଭାବି ଶ୍ୱଶୁର ଘରକୁ ନେଇଗଲି ଏବଂ ସେଠାରେ ଯାଇ ପହଞ୍ଚିବାରୁ ସମସ୍ତ ରହସ୍ୟ ଜଣାପଡ଼ିଲା ।

ବାଚସ୍ପତି ନିର୍ବାଚିତ ହେବାପରେ ମୁ ଯାଇ ଶ୍ୱଶୁରଙ୍କୁ ଦେଖାକରି ଭୁବନେଶ୍ୱର ଫେରିବାର ଅଳ୍ପଦିନ ପରେ ତାଙ୍କର ଦେହାନ୍ତ ହେବାର ଖବର ପାଇଲି । ଖବର ଶୁଣି ମୁଁ ଅତ୍ୟନ୍ତ ମ୍ରିୟମାଣ ହୋଇ ପଡ଼ିଲି । ଅନ୍ତର ମୋର ହତାଶା ଓ ଅସହାୟତାରେ ଭରିଗଲା । ମୋ ଜୀବନ ନଉକାର ମଙ୍ଗକୁ ଯିଏ ସଳଖି ଧରିଥିଲେ । ମୋ ଭାଗ୍ୟ ଆକାଶର ପ୍ରତିଟି ଝଡ଼ ଝଞ୍ଜାକୁ ଯିଏ ନିଜେ ପିଠି ପତେଇ ଦେଉଥିଲେ ଏବଂ ଯାହାଙ୍କର ବିନା ସହାୟତାରେ ମୁଁ ହାଟ ମଝିରେ ବାଟ ଚାଲିବାର ଆତ୍ମବଳ ଲାଭକରି ପାରି ନ ଥାନ୍ତି ତାଙ୍କର ତିରୋଧାନର ଦାରୁଣ ଧକ୍କାକୁ ମୁଁ କିପରି ସହ୍ୟ କରିବି ଭାବିପାରିଲି ନାହିଁ । କେବଳ ଆଖିର ଲୁହ ଓ ବୁକୁର କୋହ ଭିତରେହିଁ ତାଙ୍କ ଅନାବିଳ ସ୍ନେହ ମମତାର ସ୍ମୃତି ଚାରଣ କରିବା ବ୍ୟତୀତ ମୋର ଅନ୍ୟ କିଛି ଉପାୟ ନ ଥିଲା । ମନେହେଲା ସତେ ଯେମିତି ମୋ ବାଚସ୍ପତି ହେବାର ଖୁସି ଖବର ପାଇବା ପାଇଁ ସେ ଅପେକ୍ଷା କରି ରହିଥିଲେ । ବାସ୍ତବିକ ଏତେ ଚଞ୍ଚଳ ଏମିତି ଭାବରେ ସେ ମୋତେ ତାଙ୍କ ସ୍ନେହରୁ ବଞ୍ଚିତ କରି ଚାଲିଯିବେ ବୋଲି ମୁଁ ଭାବି ପାରିନଥିଲି ।

୧୯୮୪ ମସିହା, ମୋ ପାଇଁ ଏକ ସ୍ମରଣୀୟ ବର୍ଷ । କାରଣ ସେ ମୋତେ ସୁଖ ହୋଇଛି ଦୁଃଖ ଦେଇଛି, ହସ ଦେଇଛି, ଲୁହ ବି ଦେଇଛି, ସୌଭାଗ୍ୟ ଓ ଦୁର୍ଭାଗ୍ୟର ଉତାଳ ତରଙ୍ଗରେ ଭସାଇ ନେଇଛି, କିଛି ଉପହାର ଦେଇଛଇ ତ ମୋ ପାଖରୁ କିଛି ଛଡ଼େଇ ବି ନେଇଛି । ବିଧାନ ସଭାର ବାଚସ୍ପତି ହେବା, ଶ୍ୱଶୁରଙ୍କ ବିୟୋଗ ଘଟିବା ଓ ବିଦେଶ ଭ୍ରମଣର ଯୋଗ ପିଟିବା ହେଉଛି ସେଇ ବର୍ଷର ଦେଣା ପାଉଣା । ତେଣୁ ସେଇ ବର୍ଷର ସ୍ମୃତି ମୋର ସାରାଜୀବନର ସାଥି ହୋଇ ରହିବ ।

## ବାଚସ୍ପତି ଭାବେ କାର୍ଯ୍ୟଭାର ଗ୍ରହଣ

ବିଧାନ ସଭାର ନିୟମ ଅନୁଯାୟୀ ବାଚସ୍ପତିଙ୍କ ଅନୁପସ୍ଥିତିରେ ଉପ ବାଚସ୍ପତି ବୈଠକରେ ଅଧ୍ୟକ୍ଷତା କରିବା କଥା । ମାତ୍ର ଯେତେବେଳେ ଉଭୟ ବାଚସ୍ପତି ଓ ଉପବାଚସ୍ପତି ଦୁହେଁ ବୈଠକରେ ଅନୁପସ୍ଥିତ ରହନ୍ତି ସେତେବେଳେ ପାନେଲ୍ ଅଫ ଚେୟାରମେନ୍‌ର ଜଣେ ସଦସ୍ୟ, ବୈଠକରେ ଅଧ୍ୟକ୍ଷଙ୍କର କାର୍ଯ୍ୟ ତୁଲାଇ ଥାଆନ୍ତି । ସରକାରୀ ତଥା ବିରୋଧି ଦଳର ଚାରି ପାଞ୍ଚଜଣ ବିଧାୟକଙ୍କୁ ନେଇ ଏହି A Panel of Chairman ଗଠିତ ହୋଇଥାଏ ।

୧୯୮୦ ମସିହା ନିର୍ବାଚନ ପରେ ଗଠନ କରାଯାଇଥିବା ପାନେଲ ଅଫ ଚେୟାରମେନ୍‌ରେ ମୁଁ ଜଣେ ସଭ୍ୟ ଥିଲି । ସେଥିପାଇଁ କେତେକ ସମୟରେ ମୋତେ ମଧ୍ୟ ଗୃହରେ ଅଧ୍ୟକ୍ଷ କାର୍ଯ୍ୟ ତୁଲାଇବାକୁ ପଡୁଥିଲା । ମୁଁ ଯେତେବେଳେ ବୈଠକରେ ଅଧ୍ୟକ୍ଷତା କରୁଥିଲି ସେତେବେଳେ ଗୃହରେ ବେଶ୍ ଶାନ୍ତି ଶୃଙ୍ଖଳା ବଜାୟ ରହୁଥିଲା । ଯେଉଁ ବିଧାୟକ ମାନେ ଇଚ୍ଛା ପ୍ରକାଶ କରୁଥିଲେ ଗୃହରେ କିଛି ବକ୍ତବ୍ୟ ଉପସ୍ଥାପନ କରିବା ପାଇଁ ସେମାନେ କହିବାର ସୁଯୋଗ ପାଇ ସନ୍ତୁଷ୍ଟ ହେଉଥିଲେ । ଏଣୁ ପୂର୍ବଭଳି ପଛ ବେଞ୍ଚରେ ବସି ଅଧ୍ୟକ୍ଷଙ୍କର ଦୃଷ୍ଟି ଆକର୍ଷଣ କରି ନ ପାରିବାର ଅସନ୍ତୋଷ ପ୍ରାୟ କୌଣସି ସଦସ୍ୟଙ୍କର ନଥିଲା । ସମସ୍ତ ବିଧାୟକଙ୍କୁ ମୁଁ ସମାନ ଗୁରୁତ୍ୱ ଦେବା ଦୃଷ୍ଟିରୁ ସେମାନେ ମୋତେ ସୁରୁଖୁରୁରେ ଗୃହକାର୍ଯ୍ୟ ଚଳାଇ ନେବାରେ ସହାୟତା କରୁଥିଲେ ।

ପ୍ରଥମ ପ୍ରଶ୍ନ ଘଣ୍ଟାରେ (Question Hour) ପୂର୍ବାପେକ୍ଷା ବହୁ ଅଧିକ ପ୍ରଶ୍ନର ଆଲୋଚନା ହୋଇ ପାରିବାରୁ ଉଭୟ ସରକାରୀ ଓ ବିରୋଧି ଦଳର ବିଧାୟକ ମାନେ ମୋ କାର୍ଯ୍ୟ ନିର୍ବାହ ପ୍ରଣାଳୀର ପ୍ରଶଂସା କରିଥିଲେ । ଏଣୁ ଦଳମତ ନିର୍ବିଶେଷରେ ପ୍ରାୟ ପ୍ରତ୍ୟେକ ସଭ୍ୟ, ବିଧାନ ସଭାର ଗୌରବ ବୃଦ୍ଧି ନିମନ୍ତେ ମୋତେ ସ୍ଥାୟୀ ବାଚସ୍ପତି ପଦ ଅର୍ପଣ କରିବାକୁ ମୁଖ୍ୟମନ୍ତ୍ରୀଙ୍କୁ ଅନୁରୋଧ କରିଥିଲେ । ଏବଂ ପୂର୍ବବର୍ତ୍ତୀ ବାଚସ୍ପତି ଶ୍ରୀ ସୋମନାଥ ରଥ ଯେତେବେଳେ କୃଷିମନ୍ତ୍ରୀ ହେଲେ ସେତେବେଳେ ବାଚସ୍ପତି ହେବା ନିମନ୍ତେ ମୋର ମତାମତ ଲୋଡ଼ାଗଲା । ଯଦିଓ ଶ୍ରୀଯୁକ୍ତ ହିମାଂଶୁ କୁମାର ପାଢ଼ୀ ସେତେବେଳେ ଉପବାଚସ୍ପତି ଥିଲେ ଏବଂ ପରଂପରା ଅନୁଯାୟୀ ତାଙ୍କର ଏହି ବାଚସ୍ପତି ଭାବେ ଅବସ୍ଥାପିତ ହେବାର କଥା ତଥାପି ମୁଁ ତାଙ୍କଠାରୁ ବରିଷ୍ଠ ବିଧାୟକ ହୋଇଥିବାରୁ ଏବଂ ମୋ ପ୍ରତି ତାଙ୍କର ସ୍ୱତନ୍ତ୍ର ସମ୍ମାନ ଥିବାରୁ, ବାଚସ୍ପତି ପଦପାଇଁ ମୋ ନାମ ଉଠିବାରୁ ସେ ତାହାକୁ ଅତି ଆନନ୍ଦର ସହିତ ସମର୍ଥନ କରିଥିଲେ । ଏଣୁ ବାଚସ୍ପତି ହେବା ନିମନ୍ତେ ମୁଁ ମୋର ସମ୍ମତି ଜଣାଇ ଥିଲି । ଶେଷରେ ବିଧାନ ସଭାର ପୂର୍ବ ପରମ୍ପରାକୁ ଭଙ୍ଗକରି ୧୯୮୪ ମସିହା ଫେବୃୟାରୀ ୨୨ ତାରିଖରେ ଓଡ଼ିଶା ବିଧାନ ସଭାକୁ ଦଶମ ବାଚସ୍ପତି ରୂପେ ମୁଁ ନିର୍ଦ୍ଵନ୍ଦ୍ୱରେ ନିର୍ବାଚିତ ହେଲି ।

ଇତି ପୂର୍ବରୁ ବିଧାନସଭାର ଅଧ୍ୟକ୍ଷ ଆସନ ବହୁ ଧନୀ, ମାନୀ ବିଦ୍ୱାନ ଓ ପଣ୍ଡିତଙ୍କ ଦ୍ୱାରା ଅଲଂକୃତ ହେଉଥିଲା । ମାତ୍ର ମୋର ସେସବୁ କିଛି ନ ଥିଲା । ଜଣେ ଅତି ସାଧାରଣ ଲୋକ ହିସାବରେ ଏଭଳି ଏକ ସମ୍ମାନ ଜନକ ଓ ଗୁରୁତ୍ୱପୂର୍ଣ୍ଣ ପଦରେ ଆସୀନ ହେବାରେ ମୁଁ ବୋଧହୁଏ ପ୍ରଥମ । ଏହାଦ୍ୱାରା ପ୍ରକାରନ୍ତରେ ସାଧାରଣ ଲୋକ (Common people)ଙ୍କର ବିଜୟହେଲା ଓ ତାଙ୍କର ସମ୍ମାନ ବଢ଼ିଲା ବୋଲି ମୁଁ ବିଧାନସଭାରେ ବ୍ୟକ୍ତ କଲି ।

୧୯୮୪ ମସିହା, ମୋତେ ପ୍ରଥମ ବିଦେଶ ଯାତ୍ରାର ସୁଯୋଗ ଆଣିଦେଇଥିଲା । ପ୍ରତିବର୍ଷପରି ରାଜ୍ୟ ଗୋଷ୍ଠୀ ପାର୍ଲ୍ୟାମେଣ୍ଟାରୀ ସଂଘ (C.P.A) ର ସମ୍ମିଳନୀ ସେ ବର୍ଷ ବ୍ରିଟେନ ଏବଂ ଆୟାରଲାଣ୍ଡର ମଧ୍ୟବର୍ତ୍ତୀ ମାନ୍‌ଦ୍ୱୀପରେ ଅନୁଷ୍ଠିତ ହେଲା । ସେଥିରେ ଯୋଗ ଦେବାପାଇଁ ମୋତେ ଯିବାକୁ ପଡ଼ିଲା । ନିୟମତଃ ମୋ ସହିତ ବିଧାନ ସଭାର ସେକ୍ରେଟାରୀଙ୍କର ଏହି ସମ୍ମିଳନୀକୁ ଯିବାକଥା । କିନ୍ତୁ ମୁଁ ଉପବାଚସ୍ପତି ଶ୍ରୀଯୁକ୍ତ ହିମାଂଶୁ କୁମାର ପାଢ଼ୀଙ୍କୁ ମୋ ସହିତ ନେବା ପାଇଁ ମୁଖ୍ୟମନ୍ତ୍ରୀଙ୍କୁ

ରାଜି କରାଇଲି । ଏହା ପୂର୍ବରୁ ଅବଶ୍ୟ ଏହି ସମ୍ମିଳନୀ ପାଇଁ ଯେତେଥର ପ୍ରତିନିଧି ଯାଇଛନ୍ତି କୌଣସିଥର କୌଣସି ରାଜ୍ୟରୁ ତିନିଜଣ ପ୍ରତିନିଧି ଯାଇ ନାହାନ୍ତି । ମାତ୍ର ମୋର ପ୍ରଚେଷ୍ଟା ବଳରେ ସେଥର ତିନିଜଣ ପ୍ରତିନିଧି ଯାଇ ପାରିଲେ ।

ଆମ୍ଭମାନଙ୍କର ତା ୨୩-୯-୮୪ରିଖରେ ଭାରତ ଛାଡ଼ିବାର ଥିଲା । ମାତ୍ର Pass Port ଓ Visa ଯୋଗାଡ଼ ପାଇଁ ଆମକୁ ତା ୧୮-୯-୮୪ରିଖରେ ଦିଲ୍ଲୀରେ ଆମକୁ ଭିସାଓ ପାଶ୍‌ପୋର୍ଟ ଆଦି ଯୋଗାଡ଼ କାମରେ ସାହାଯ୍ୟ କରିବା ପାଇଁ ବିଧାନସଭାର ଯୁଗ୍ମ ସଚିବ ଶ୍ରୀ ଚକ୍ରପାଣି ପାତ୍ର ମଧ ଆମ ସହିତ ଦିଲ୍ଲୀ ଗଲେ । ତା' ପୂର୍ବରୁ ଅନ୍ୟ ଦୁଇଜଣ ବିଧାନ ସଭାର କର୍ମଚାରୀଙ୍କୁ ବିଭିନ୍ନ ଦେଶର ଦୂତାବାସସ ସହିତ ଯୋଗାଯୋଗକରି ଏସବୁ କଥା ବୁଝାବୁଝି କରିବାକୁ ଦିଲ୍ଲୀ ପଠାଯାଇଥିଲା । ବ୍ରିଟେନ୍ ଓ ମାନ୍‌ଦ୍ୱୀପ ବ୍ୟତୀତ ଇଟାଲୀ, ପଶ୍ଚିମ ଜର୍ମାନୀ, ଫ୍ରାନ୍ସ ଓ ସୁଇଜରଲାଣ୍ଡ ମଧ ଯିବାପାଇଁ ଭାରତ ସରକାରଙ୍କ ଠାରୁ Pass port ମିଳିଥିଲା । ସଂପୃକ୍ତ ଦେଶମାନଙ୍କର ଦୂତାବାସରୁ ଭିସା ଯୋଗାଡ଼ ହେଲା । ମାତ୍ର ସମୟ ଅଭାବରୁ କେବଳ ସୁଇଜରଲାଣ୍ଡ ପାଇଁ ଭିସା ମିଳିପାରିଲା ନାହିଁ । ଫେରିବା ପଥରେ ସୁଇଜରଲାଣ୍ଡ ପରିଦର୍ଶନ କରିବାର କାର୍ଯ୍ୟକ୍ରମ ସ୍ଥିର ହୋଇଥିବାରୁ ଲଣ୍ଡନରେ ଥିବା ଭାରତୀୟ ଦୂତାବାସ ଜରିଆରେ ତାହା ଯୋଗାଡ଼ କରିବାର ସ୍ଥିରକଲୁଁ । ପୂର୍ବରୁ ମୋର ଏକୁଟିଆ ଯିବାର ଥିବା ଯୋଗୁଁ ବିହାର ବିଧାନ ସଭାର ବାଚସ୍ପତି ସହିତ ଯିବା କାର୍ଯ୍ୟକ୍ରମ ଥିଲା ତେଣୁ ୨୩-୯-୮୪ ତାରିଖରେ ଦିଲ୍ଲୀରୁ ବାହାରି ଇଟାଲୀର ରାଜଧାନୀ ରୋମ୍‌ରେ ଆମର ପହଞ୍ଚିବାର ଥିଲା । କିନ୍ତୁ ପରେ ଯେତେବେଳେ ୩ ଜଣ ଯିବାର ସ୍ଥିର ହେଲା, ଉଡ଼ାଜାହାଜର ଟିକେଟ ମିଳିବା ଦୃଷ୍ଟିରୁ ଆମର ଯାତ୍ରା ୨୨-୯-୮୪ ତାରିଖକୁ ଆଗେଇ ଆସିଲା । ଇତି ପୂର୍ବରୁ ଦୁଇଦିନ ଦିଲ୍ଲୀ ସହରରେ ବୁଲାବୁଲି କରି ଶୀତବସ୍ତ୍ର ଓ ବର୍ଷାତି କିଣାକିଣି କଲୁଁ । ବାଇଶି ତାରିଖ ରାତି ତିନିଟାରୁ ଉଠି ଗାଧୋଇ ନିତ୍ୟକର୍ମ ସାରି ଆନ୍ତର୍ଜାତିକ ଉଡ଼ାଜାହାଜ କେନ୍ଦ୍ରରେ ପହଞ୍ଚିବା ପାଇଁ ପ୍ରସ୍ତୁତ ହେଲୁଁ ଏବଂ ଭୋର ପାଞ୍ଚଟା ବେଳକୁ ଆମେ ଯାଇ ଉଡ଼ାଜାହାଜ କେନ୍ଦ୍ରରେ ପହଞ୍ଚିଲୁ ସେତେବେଳକୁ ମଧ ସକାଳ ହୋଇ ନଥିଲା, ସମ୍ପୂର୍ଣ୍ଣ ଅନ୍ଧାର ଥିଲା । ଉଡ଼ାଜାହାଜ କେନ୍ଦ୍ରର ନିରାପତ୍ତା ତନଖିଫାଟକ ନିକଟରେ ଆମ ଲୋକେ ଆମକୁ ଛାଡ଼ିଦେଇ ଚାଲି ଆସିଲେ । ସେଠାରେ ଆମର ଜିନିଷପତ୍ର ସବୁ ଯାଞ୍ଚ ହୋଇ ଆମକୁ ଉଡ଼ଜାହାଜ ଆରୋହଣ କରିବାର ଅନୁମତି ପତ୍ର ମିଳିଲା । ଆମ ସହିତ ରାଜସ୍ଥାନର ବାଚସ୍ପତି ଶ୍ରୀଯୁକ୍ତ ବିଶୋଇ ମଧ ସେଦିନ ଉଡ଼ାଜାହାଜରେ ଯୋଗଦେଲେ, ତାଙ୍କର ରୋମ୍‌ରେ ଦୁଇଦିନ ରହିବାର ଥିଲା ।

ଦିଲ୍ଲୀରୁ ସକାଳ ଛ'ଟା ବେଳେ ବାହାରି ସାଢ଼େ ଏଗାରଟା ବେଳେ ରୋମ୍‌ରେ ପହଞ୍ଚିବାକୁ ହେବ, ଅର୍ଥାତ୍ ମାତ୍ର ସାଢ଼େ ପାଞ୍ଚ ଘଣ୍ଟା ସମୟ ଲାଗିବ ବୋଲି ମୋର ଧାରଣା ଥିଲା । ମାତ୍ର ଏହି ଧାରଣା ଉଡ଼ାଜାହାଜରେ ବସିବା ପରେ ପରେ ବଦଳିଗଲା । ରୋମ୍‌ରେ ପହଞ୍ଚିବା ବେଳକୁ ସେଠାକାର ସମୟ ଦିନ ସାଢ଼େ ଏଗାରଟା ହୋଇଥିବ । ଏହା ଆମ ଭାରତୀୟ ସମୟ ଅନୁସାରେ ପ୍ରାୟ ଅପରାହ୍ନ ତିନିଟା । ଉଡ଼ାଜାହାଜରେ ବସିବା ମାତ୍ରେ ଆମକୁ ଭାରତୀୟ ବିମାନ (Air India) ତରଫରୁ ଅଭିନନ୍ଦନ ଜଣାଇ ବିଭିନ୍ନ ଉପହାର ସାମଗ୍ରୀମାନ ପ୍ରଦାନ କରାଗଲା । ଏତଦ୍ ଭିନ୍ନ ଯାତ୍ରାବାଳରେ ପ୍ରତ୍ୟେକ ଯାତ୍ରୀଙ୍କୁ ବିମାନ କର୍ମଚାରୀ ମାନେ ବିଭିନ୍ନ ପ୍ରକାର ବିଲାତି ମଦ୍ୟ ଓ ସିଗାରେଟ ପ୍ରଦାନ କରି ଆପ୍ୟାୟିତ କରୁଥିଲେ । ମତ୍ର ଆମେ ଅର୍ଥାତ୍ ହିମାଂଶୁ ବାବୁ ଓ ମୁଁ ସେସବୁ ଗ୍ରହଣ କରୁ ନ ଥିଲୁ । ରୋମ୍ ସହର ସମ୍ପର୍କରେ ପୂର୍ବରୁ ଅନେକ କଥା ପଢ଼ି ଜାଣିଥିଲି । ଏଣୁ ସେଇ ସସହରର ଏକ ସୁନ୍ଦର କାଳ୍ପନିକ ଚିତ୍ର ମୋ ମାନସ ପଟରେ ଚିତ୍ରିତ ହୋଇଯାଉଥିଲା । ଏବଂ ସେ ଭାବନା ଭିତରେ ମୁଁ ରୋମାଞ୍ଚିତ ହୋଇ ପଡୁଥିଲି । କାଚ ଝରକା ଦେଇ ବାହାରକୁ ଚାହୁଁଥିଲି ସତ ମାତ୍ର କିଛିଦେଖା ଯାଉ ନ ଥିଲା । ଏକ ବିରାଟ ମହାଶୂନ୍ୟରେ କେବଳ ଆମେ ଭାସି ଚାଲିଛୁ ଆଗକୁ ଆଗକୁ । ଖୁସିଗପ ଓ ଆନନ୍ଦ ଉଲ୍ଲାସ ଭିତରେ କେତେ ଚଞ୍ଚଳ ପ୍ରାୟ ସାଢ଼େ ନଅଘଣ୍ଟା ବିତିଗଲା ଜଣାପଡ଼ିଲା ନାହିଁ । ଜାଣିବାକୁ ପାଇଲୁଁ ଆମେ ରୋମର ଆକାଶ ପରିସୀମାରେ ପ୍ରବେଶ କରିସାରିଛୁ ବୋଲି ଅଳ୍ପ ସମୟ ପରେ ରୋମ୍‌ର ବିମାନ ଅବତରଣ

କେନ୍ଦ୍ରରେ ଆମ ବିମାନ ଅବତରଣ କଲା ।

ଭାରତୀୟ ଦୂତାବାସରୁ ଜଣେ ଅଫିସର ସେଠାରେ ଆମକୁ ଅପେକ୍ଷା କରି ରହିଥିଲେ । ସେ ଆମ ମାନଙ୍କୁ ନେଇ ହୋଟେଲ ଅଡ଼ିଲା (Hotel Adila) ନାମକ ଏକ ହୋଟେଲରେ ପହଞ୍ଚାଇ ଦେଲେ । ଏହା ଏକ ମଧମ ଧରଣର ହୋଟେଲ । ଦୁଇଟି କୋଠରୀରେ ଆମେ ରହିଲୁ ଚାରିଜଣ । ଆମ ସହ ଦିଲ୍ଲୀରୁ ଯାଇଥିବା ରାଜସ୍ଥାନର ବାଚସ୍ପତି ଶ୍ରୀଯୁକ୍ତ ବିଶୋଇ ସେଇଠୁ ଆମଠାରୁ ଅଲଗା ହୋଇ ଅନ୍ୟତ୍ର ଚାଲିଗଲେ ।

ସେହିଦିନ ଅପରାହ୍ନ ପ୍ରାୟ ଅଢ଼େଇଟା (ଭାରତୀୟ ସମୟ ସଂଧ ଛ'ଟା ହେବ) ବେଳେ ଏକ ଟୁରିଷ୍ଟ ବସ ଯୋଗେ ଆମେ ରୋମ ସହର ବୁଲି ବାହାରିଲୁ । ବସ୍‌ରେ ଥିବା ଗାଇଡ୍ ଆମ୍ଭମାନଙ୍କୁ ପ୍ରତି ଦର୍ଶନୀୟ ସ୍ଥାନର ମହତ୍ୱ ବୁଝାଇ ଦେଉଥାଆନ୍ତି । ରୋମ୍, ଇଉରୋପ୍ ମହାଦେଶର ଅତି ପ୍ରାଚୀନ ସଭ୍ୟତା ଓ ସଂସ୍କୃତିର ପୀଠ । ଏହାର ଆଧୁନିକ ନାମ ଇଟାଲିଆ । ଏହା ଖ୍ରୀଷ୍ଟଧର୍ମର ସ୍ଥଳ ଓ ଏ ଧର୍ମର ମୁଖ୍ୟ ଧର୍ମ ଯାଜକ ସେଠାରେ ଅବସ୍ଥାନ କରୁଥିବାରୁ ବର୍ଷର ପ୍ରାୟ ସବୁ ସମୟରେ ପୃଥିବୀର ବିଭିନ୍ନ ଦେଶର ପରିଦର୍ଶକଙ୍କ ଭିଡ଼ ସେଠାରେ ଲାଗିରହିଥାଏ । ବିଗତ ୨୦୦୦ ବର୍ଷର କିମ୍ବଦନ୍ତୀକୁ ବକ୍ଷରେ ଧାରଣ କରି ରୋମ୍ ସହର ବିଶ୍ୱ ପର୍ଯ୍ୟଟନ ଇତିହାସରେ ଏକ ସ୍ୱତନ୍ତ୍ର ସ୍ଥାନ ଓ ମର୍ଯ୍ୟାଦା ବଜାୟ ରଖିଛି ।

ପ୍ରଥମ ଯେଉଁ ଚର୍ଚ୍ଚ ଦେଖିଲୁ ତାହା ଯେମିତି ବିଶାଳ, ବିଭିନ୍ନ ରଙ୍ଗରେ ରଂଜିତ ହୋଇ ସେମିତି ରମଣୀୟ ଥିଲା । ଇଉରୋପ୍ ମହାଦେଶର ସୁବିଖ୍ୟାତ ଚିତ୍ରକର, ଲେଖକ, କବି ଓ କଳାକାର Michel Angel ଙ୍କ ନିଜ ହାତ ତିଆରି ଯିଶୁ ଖ୍ରୀଷ୍ଟ ଓ ପୋପ୍ (ଧର୍ମ ଯାଜକ)ଙ୍କ ପ୍ରତିମୂର୍ତ୍ତି ଗୁଡ଼ିକ ସତେଅବା ଜୀବନ୍ତ ମନେ ହେଉଥିଲା । ଏଗୁଡ଼ିକ ନିର୍ମାଣ ପ୍ରାୟ ୧୫୦୦ ବର୍ଷ ପୂର୍ବେ ହୋଇଥିବାର ଜାଣିଲୁ ।

ତା'ପରେ ଯାଇ ପହଞ୍ଚିଲୁ Calacia Palace ଠାରେ । ଏହା ଖ୍ରୀ:ପୂ: ୧୦୦ ମସିହା ଅର୍ଥାତ୍ ପ୍ରାୟ ୨୦୦୦ ବର୍ଷ ତଳର ସ୍ଥପତ୍ୟ । ଏହା ଦେଖିବାକୁ ଠିକ୍ ଏକ ଗୋଲାକାର ଷ୍ଟାଡ଼ିୟମ ପରି କିନ୍ତୁ ଅନେକ ଉଚ୍ଚ । ଏହା ସେତେବେଳର ଶାସକ ମାନଙ୍କର ଦୁର୍ଗ ଓ ରାଜପ୍ରସାଦ ଥିଲା । ସେଥିରେ ହାରାହାରି ୫୦,୦୦୦ ଲୋକ ବସିବାଭଳି ଗେଲେରୀ ରହିଥିଲା । ପ୍ରସାଦଟି ବହୁ ପ୍ରାଚୀନ ଯଦିଓ କେତେକ ସ୍ଥାନରେ ଭାଙ୍ଗି ଯାଇଛି, ତଥାପି ପ୍ରାୟତଃ ସୁରକ୍ଷିତ ଅବସ୍ଥାରେ ରହିଅଛି । ସେଠାକାର ପ୍ରତ୍ନତତ୍ତ୍ୱ ବିଭାଗ ତା'ର ରକ୍ଷଣା ବେକ୍ଷଣ ଦାୟିତ୍ୱ ବୁଝାସୁଝା କରନ୍ତି । ଏହି ଗୋଲାକାର ପ୍ରାସାଦ ମଧ୍ୟରେ ଥିବା ପ୍ରାଙ୍ଗଣର ରାଜା ଯାହାକୁ ପ୍ରାଣଦଣ୍ଡରେ ଦଣ୍ଡିତ କରୁଥିଲେ ତା'କୁ ସେହି ପ୍ରାଙ୍ଗଣରେ ଏକୁଟିଆ ଅସହାୟ ଅବସ୍ଥାରେ ଛାଡ଼ିଦିଆଯାଉଥିଲା ଏବଂ ତା'ରି ନିକଟକୁ ଲାଗି ରହିଥିବା ହିଂସ୍ର ଜନ୍ତୁମାନେ ସେଇ ଦଣ୍ଡିତ ବ୍ୟକ୍ତିଙ୍କୁ ଆକ୍ରମଣ କରି ମାରି ଖାଇ ଯାଉଥିଲେ । ଏହି ଲୋମହର୍ଷଣକାରି ଦୃଶ୍ୟ କଥା ଭାବି ହୃଦୟ ମୋର ଥରି ଉଠୁଥିଲା । ଆଜି କାଲି ଯୁଗରେ ଏ ପ୍ରକାର ଦଣ୍ଡ ବିଧାନ କଥା ଚିନ୍ତା ମଧ କରାଯାଇପାରେନା । Colosel ଶବ୍ଦର ଅର୍ଥ ବୃହତ । ଏହି ପ୍ରାସାଦଟି ପାଞ୍ଚମହଲା ବିଶିଷ୍ଟ ଏକ ବିରାଟ ସୌଧ ହୋଇଥିବାରୁ ଏହାର ନାମ ବୋଧହୁଏ Calcium Palace ରଖାଯାଇଥିଲା । ଏହାକୁ ଦେଖି ବର୍ତ୍ତମାନ ଯୁଗରେ ଆଧୁନିକ ଷ୍ଟାଡ଼ିୟମ ନିର୍ମାଣର ପରିକଳ୍ପନା ହୁଏତ କରାଯାଇଅଛି ।

ତା'ପରେ ଆମେ ଐତିହାସିକ Saint Pole Church ଦେଖିବାକୁ ଗଲୁ । ଏହା ପୃଥିବୀର ସର୍ବବୃହତ Church । ଏହାର ମେଜିଆ ଓ ଖମ୍ବମାନ ସୁଦୃଶ୍ୟ ଶଙ୍ଖ ମର୍ମର ପଥରରେ ନିର୍ମିତ । ଏହାର ଛତତଳ ମଧ ବିଭିନ୍ନ ରଙ୍ଗୀନ କାରୁକାର୍ଯ୍ୟ ତଥା ସୁବର୍ଣ୍ଣର କୃତିକର୍ମରେ ପରିପୂର୍ଣ୍ଣ । ଏଠାରେ ଯିଶୁଖ୍ରୀଷ୍ଟ ଏବଂ ପୋପ୍ ମାନଙ୍କର ଅତୀବ ସୁନ୍ଦର ଓ ରଙ୍ଗୀନ ପ୍ରତିମୂର୍ତ୍ତି ଓ ପ୍ରତିଛବି ମାନ ରଖାଯାଇଅଛି । ସେଠାକାର ଜଣେ ସମ୍ରାଟ ଖ୍ରୀଷ୍ଟଧର୍ମ ଗ୍ରହଣ କଲାପରେ ୧୩୦୦ ବର୍ଷ ପୂର୍ବେ ଏହି ଚର୍ଚ୍ଚ ନିର୍ମାଣ କରିଥିଲେ ବୋଲି ଜାଣିଲୁ । ସେଠାରୁ ଏକ ପ୍ରକାର ସୁଗନ୍ଧିତ ମାଳ ମୁଁ କିଣିଲି ।

ଏହାପରେ ପୃଥିବୀର ସର୍ବଶ୍ରେଷ୍ଠ ବୀର ନେପୋଲିୟନ ବୋନାପାର୍ଟଙ୍କ ରାଜ ପ୍ରାସାଦ ଏବଂ ତା'ପରେ ମୁଷୋଲିନୀ ଯିଏକି ଦିନେ ଇଟାଲୀର ଏକ ପ୍ରଭାବଶାଳୀ ଶାସକ ଥିଲେ, ତାଙ୍କ ପ୍ରସାଦ ତଥା ଯେଉଁ କୋଠା ଉପରୁ ସେ ରାଜ୍ୟବାସୀଙ୍କୁ ଦର୍ଶନ ଦେଉଥିଲେ ଏବଂ ଭାଷଣ ପ୍ରଦାନ କରୁଥିଲେ ସେ ସବୁ ଦେଖିଲୁ । ତା'ପରେ ସେଠାକାର Public Square ଦେଖିବାକୁ ଗଲୁ । ସେଠାରେ ବହୁ ବୀର ସୈନିକ ମାନଙ୍କର ପ୍ରତିମୂର୍ତ୍ତିମାନ ସ୍ଥାପନ କରାଯାଇଥିଲା ।

ରୋମ୍ ସହର ଦୁଇ ଭାଗରେ ବିଭକ୍ତ । ଠିକ୍ ମଝିରେ ଲଣ୍ଡନ ଭଳି ଏକ ଚିରସ୍ରୋତା ନଦୀ ପ୍ରବାହିତ ହୋଇ ତା'ର ସୌନ୍ଦର୍ଯ୍ୟକୁ ବୃଦ୍ଧି କରୁଛି । ସେଠାରେ ଲୋକେ କାର୍‌ରେ ବେଶି ଯିବା ଆସିବା କରନ୍ତି । ପୃଥିବୀରେ ସବୁଠାରୁ ଛୋଟକାର, ରୋମ ବା ଇଟାଲିରେ ଦେଖାଯାଏ । ସେଠାକାର ଲୋକଙ୍କ ଚରିତ୍ର ଇଉରୋପର ଅନ୍ୟଦେଶଠାରୁ ଫରକ ଥିବାର ଶୁଣିଲୁ । ପ୍ରଥମେ ଉଡ଼ାଜାହାଜରୁ ଓହ୍ଲାଇ ଭାରତୀୟ ଦୂତାବାସର ଲୋକଙ୍କ ଠାରୁ ଶୁଣିଲୁ ଯେ ରୋମରେ ବହୁତକ ଓ ଚୋର ଅଛନ୍ତି । ତେଣୁ ଆମେ ସାବଧାନ ହୋଇ ବୁଲାବୁଲି କଲୁ । ରାତ୍ରିରେ ହୋଟେଲକୁ ଫେରିଲୁ । ସେଦିନ ସେଠାକାର ଦୂତାବାସ ଅଫିସରେ ଏକ ସଭା ଥିଲା । ତେଣୁ ଭାରତର ଜଣେ ମନ୍ତ୍ରୀ ଶ୍ରୀଯୁକ୍ତ ବସନ୍ତ ସାଠେ ସେଠାକୁ ଯାଇଥିଲେ ।

୨୩-୯-୮୪

ଠିକ୍ ପୂର୍ବଦିନ ପରି ଏକ tourist ବସରେ ଆମେ ସହରରର ଅନ୍ୟ ପରିଦର୍ଶକଙ୍କ ସହିତ ଗଲୁ । ସେଦିନ ମଧ ସେହିଭଳି ବିଭିନ୍ନ ଚର୍ଚ୍ଚମାନ ଦେଖିଲୁ । ରୋମ ସହରରେ ଯେଉଁଆଡ଼େ ଯିବ, କେବଳ ପୁରୁଣା ଚର୍ଚ୍ଚମାନ ଦୃଷ୍ଟିଗୋଚର ହେବ । ପ୍ରତ୍ୟେକ ଚର୍ଚ୍ଚ ଶଙ୍ଖ ମର୍ମର ପଥରରେ ତିଆରି । ଏତେ ପରିମାଣ ଏହି ମମୂଲ୍ୟବାନ ପଥର ସେତେବେ ମଧ ମିଳୁ ଥିଲା । ପଥର ଉପରେ ବିଭିନ୍ନ ରଙ୍ଗୀନ୍ କରୁକାର୍ଯ୍ୟ ମଧ ଅତି ସୂକ୍ଷ୍ମ ଓ ଉଚ୍ଚକୋଟୀର । ଶେଷରେ ସହରର ମାଟିତଳ (Underground) ଚର୍ଚ୍ଚ ଓ ମଶାଣି ଦେଖିଲୁ । ବହୁ ବର୍ଷ ତଳେ ତିଆରି ହୋଇ କାଳକ୍ରମେ ତାହା ମାଟିତଳେ ପୋତି ହୋଇଥିଲା ଏବଂ ତାହା ପୁନରୁଦ୍ଧାର ହୋଇଛି । ଅତି ସଂକୀର୍ଣ୍ଣ ସୁଡ଼ଙ୍ଗ ରାସ୍ତା ଭିତରେ ବାଟ ଦେଖିବା ପାଇଁ ଇଲେକ୍ଟ୍ରୀକ୍ ଆଲୁଅ ଓ କେତେକ ସ୍ଥାନରେ ଓ ବାଟରେ ମମହମବତୀ ମଧ ରଖାଯାଇଥିଲା । ଭିତରକୁ ପବନ ଯିବା ଆସିବା ପାଇଁ ମଧ ବାଟ ରଖାଯାଇଥିଲା । ସଂଧ୍ୟା ବେଳେ ଫେରିଆସି ପୁଣି ହୋଟେଲରେ ରହିଲୁ ।

୨୪-୯-୮୪

ଚବିଶ ତାରିଖ ଭୋର ସକାଳୁ ଆମେ ଆମ ନିତ୍ୟକର୍ମ ସାରି ସେଠାକାର ବିମାନଘାଟିକୁ ବାହାରିଲୁ । ଫ୍ରାଙ୍କ ପୋର୍ଟରେ ପହଞ୍ଚିଲାବେଳକୁ ସେଠରେ ଭାରତୀୟ ଦୂତାବାସର ଦୁଇଜଣ ଅଫିସର ଗାଡ଼ିନେଇ ଆମ ପାଇଁ ପୂର୍ବରୁ ଅପେକ୍ଷା କରିଥିଲେ । ସେଠାରୁ ସେ ଆମକୁ ନେଇ P.C.Plaza Hotel ରେ ରହିବାର ବନ୍ଦୋବସ୍ତ କଲେ । ଏହି Hotel ଟି ୪୫ମହଲା ବିଶିଷ୍ଟ । ତଳୁ ଚାହିଁଲେ ଉପର ମହଲାକୁ ଆଖି ଯାଉନଥାଏ । ସେଠାରେ ଆମେ ତିନୋଟି ଅଲଗା ଅଲଗା ମହଲାର ତିନୋଟି କଟେଜରେ ରହିଲୁ । ମୁଁ ରହିଲି ୩୩ ମହାଲାରେ, ହିମାଂଶୁ ବାବୁ ରହିଲେ ୩୨ମହଲାରେ ଓ ସେକ୍ରେଟେରି ଶ୍ରୀ ପୁରୋହିତ ରହିଲେ ୩୪ ମହଲାରେ । ପ୍ରତି କୋଠରୀରେ ଫୋନ ଓ ଟେଲିଭିଜନ ର ବ୍ୟବସ୍ଥା ଥିଲା । ତେଣୁ ଆମେ ଅନେକ ସମୟ ଧରି ଟେଲିଭିଜନ ଦେଖିଲୁ ଓ ମଝିରେ ମଝିରେ ଫୋନ ଯୋଗେ ମଧ କଥାଭାଷା ହେଉଥିଲୁ । ଅଲଗା ଅଲଗା ରହିବାକୁ ଭଲ ଲାଗୁନଥାଏ ଓ ଭୟ ମଧ ଲାଗୁଥାଏ । ତେଣୁ ବେଳେ ବେଳେ ଗୋଟିଏ କୋଠରୀରେ ବସି ଗପ ହେଉଥିଲୁ । ଫ୍ରାଙ୍କପୋର୍ଟରେ ପହଞ୍ଚିବା ପର ଠାରୁ ସବୁବେଳେ ପ୍ରାୟ ଅଳ୍ପ ଅଳ୍ପ ବର୍ଷା ହେଉଥିଲା ତେଣୁ ବର୍ଷାତି ପିନ୍ଧି ଆମେ ଗୋଟିଏ ପଞ୍ଜାବୀ ହୋଟେଲକୁ ଯାଇ ରାତି ପାଇଁ ଆମର ଖାଦ୍ୟ ଖାଇନେଲୁ । ସେତେବେଳକୁ ପ୍ରାୟ ସଂଧ୍ୟା ପାଞ୍ଚଟା ସେଠାରେ ଅନେକ ପାକିସ୍ତାନୀ ବଙ୍ଗାଳୀଙ୍କ ସହିତ ସାକ୍ଷାତ ହେଲା । ସେମାନେ ସେ ଦେଶରେ ଚାକିରୀ କରୁଥିଲେ ।

ଏ ସହର ଏକ ପ୍ରଧାନ ବ୍ୟବସାୟ କେନ୍ଦ୍ର ହୋଇଥିବାରୁ କେବଳ ଦୋକାନ ବ୍ୟତୀତ ଅନ୍ୟ କୌଣସି ଦର୍ଶନୀୟ ସ୍ଥାନ ସେଠାରେ ନଥିଲା । ଲୋକେ ଖୁବ୍ କର୍ମଠ ଓ କାର୍ଯ୍ୟ ବ୍ୟସ୍ତ ଥିବା ଲକ୍ଷ୍ୟ କଲୁ । ଦ୍ୱିତୀୟ ବିଶ୍ୱଯୁଦ୍ଧ ପରେ ଧ୍ୱଂସ ପ୍ରାୟ ଏହି ଦେଶ ଦୁଇଭାଗ ହୋଇମଧ ସେଠାକାର ଲୋକମାନଙ୍କର କର୍ତ୍ତବ୍ୟନିଷ୍ଠା ଓ ପରିଶ୍ରମ ପଟୀୟଣତା ଜର୍ମାନକୁ ଏକ ସ୍ୱଚ୍ଛଳ ଓ କାରିଗରୀ ସମୃଦ୍ଧ ଦେଶ ଭାବରେ ପରିଣତ କରିପାରିଛି । ପଶ୍ଚିମ ଜର୍ମାନିର ରାଜଧାନୀ ବିଖ୍ୟାତ ବନ୍ ସହର, ସେଠାରେ ଆମର ଦୂତାବାସ ଅଛି । ଭାରତୀୟ ଦୂତଙ୍କ ବ୍ୟବହାର ଅତ୍ୟନ୍ତ ମାର୍ଜିତ ଭଦ୍ର ଓ ସହାନୁଭୂତି ପୂର୍ଣ୍ଣ । ରାତିରେ ସେଇ Hotel ରେ ଅବସ୍ଥାନ କଲୁ ।

<u>୨୫-୯-୮୪</u>

ସେଦିନ ସକାଳ ସାଢ଼େ ଆଠଟା ବେଳକୁ ପୂର୍ବଦିନର ସେଇ ଅଫିସର ମାନେ ଆସି ଆମକୁ ଉଡ଼ାଜାହାଜ ଘାଟୀକୁ ନେଇ ବାହାରିଲେ । ଆମେ ସେଠାରୁ ଉଡ଼ାଜାହାଜରେ ଲଣ୍ଡନ ଅଭିମୁଖେ ଯାତ୍ରା ଆରମ୍ଭ କଲୁ । ପ୍ରାୟ ଦେଢ଼ ଘଣ୍ଟା ଆକାଶ ପଥରେ ଯାତ୍ରା କରିବା ପରେ ଆମେ ଐତିହାସିକ ଲଣ୍ଡନ ସହରରେ ପହଞ୍ଚିଲୁ । ପିଲାଦିନୁ ଏହି ଲଣ୍ଡନ ସହର ବିଷୟରେ ଅନେକ କଥା ଶୁଣିଥିଲି ଏବଂ ଯେଉଁ ବ୍ରିଟିଶ୍ ଶାସନର ଅଧୀନରୁ ଭାରତକୁ ସ୍ୱାଧୀନ କରିବା ପାଇଁ ଆମ୍ଭେମାନେ ମହାତ୍ମା ଗାନ୍ଧୀଙ୍କ ଡାକରାରେ ବାନର ସେନା ସାଜିଥିଲୁ ଏବଂ ଯେଉଁ ଲଣ୍ଡନ ସହରକୁ କୌଣସି ଭାରତୀୟ ସାମାନ୍ୟ ଏକ ଟ୍ରେନିଂ ନେବା ପାଇଁ ଆସି ଟ୍ରେନିଂ ପରେ ନିଜକୁ ଜଣେ ବିଦ୍ୱାନ୍ ଓ ପାରଙ୍ଗମ ପ୍ରଶାସକ ବୋଲି ମନେକରି ଗର୍ବ ଅହଂକାରରେ ଫାଟି ପଡୁଥିଲେ ତଥା ବ୍ରିଟିଶ୍ ଶାସନାଧୀନ ପୃଥିବୀର ବହୁ ପରାଧୀନ ଦେଶମାନଙ୍କର ଏକଦା ତୀର୍ଥସ୍ଥଳ ରୂପେ ବିବେଚିତ ହେଉଥିବା ଏହି ଲଣ୍ଡନ ସସହରକୁ ଆକାଶ ମମାର୍ଗରୁ ଦର୍ଶନକରି ଭାବ-ପ୍ରବଣ ହୋଇପଡୁଥିଲି । ତା'କୁ ବହୁଦିନ ଧରି ଦେଖିବାର ସ୍ୱପ୍ନ ଏତେ ଦିନ ପରେ ସାର୍ଥକ ହେଲା ଭାବି ମୁଁ ଆନନ୍ଦ ଅନୁଭବ କରୁଥିଲି । ସହର ଭିତରକୁ ଯିବାର କୌଣସି କାର୍ଯ୍ୟକ୍ରମ ଆମର ନ ଥିଲା । ତେଣୁ ଆମେ ସେଠାକାର ବିମାନଘାଟୀରୁ ମାଳଦ୍ୱୀପର ରାଜଧାନୀର "ଡ଼ଗ୍‌ଲାସ" କୁ ଯିବା ପାଇଁ ଅପେକ୍ଷା କରି ରହିଲୁ । ଉଡ଼ାଜାହାଜ ଛାଡ଼ିବାରେ ୬/୭ ଘଣ୍ଟା ବିଳମ୍ବ ଥିବାରୁ ଆମ ଦୂତାବାସର କର୍ମଚାରୀମାନେ ଆମକୁ Air India ର ଏକ ଅପେକ୍ଷାଗାରକୁ ନେଇଗଲେ । ସେଠାରେ ଆମେ ମୁହଁ ହାତ ଧୋଇ ସାମାନ୍ୟ କିଛି ଜଳଖିଆ ଖାଇ ବିଶ୍ରାମ ନେଉଥିବା ବେଳେ ଭାରତର ଅନ୍ୟାନ୍ୟ ପ୍ରତିନିଧିମାନେ ସେଠାରେ କ୍ରମଶଃ ପହୁଞ୍ଚିଲେ । ଭାରତର ଲୋକସଭା ଅଧକ୍ଷ ଡ଼ଃ ବଳରାମ ଝାକରଙ୍କ ସମେତ ଅଧିକାଂଶ ଭାରତୀୟ ପ୍ରତିନିଧିମାନଙ୍କ ସହ ଆମେ ସମସ୍ତେ ଏକ ସାଧାରଣ ଉଡ଼ାଜାହାଜରେ ଯାତ୍ରା ଆରମ୍ଭ କଲୁ । ଏକ ଘଣ୍ଟା ଆକାଶ ଯାତ୍ରା ପରେ ଆମେ ମାଳଦ୍ୱୀପର ଉଡ଼ଜାହାଜ ଘାଟୀରେ ଅବତରଣ କଲୁ । ସେଠାରେ C.P.A. ତରଫରୁ ଆମକୁ ଅଭିନନ୍ଦନ ଜଣାଇ ୧୧ କିଲୋମିଟର ଦୂରରେ ଥିବା "ଡ଼ଗ୍‌ଲସ" ସହରକୁ ନିଆଗଲା । ସେତେବେଳକୁ ରାତି ହୋଇ ସାରିଥାଏ । ଏଥି ପୂର୍ବରୁ ବାଟରେ କାରରେ ଯିବା ସମୟରେ ତା'ର ଡ୍ରାଇଭର ଏକ ସ୍ଥାନରେ ଆମକୁ ଶୁଭସଂଧ୍ୟା ବୋଲି କହିବାକୁ ଅନୁରୋଧ କଲେ ଓ ଆମେ ସେଇ କଥା କହିଲୁ । ଆମ ଦେଶ ଭଳି ଦେବାଦେବୀ ଭୂତ ପ୍ରେତ ଧାରଣା ସେଭଳି ଏକ ଉନ୍ନତ ଦେଶରେ ମଧ ରହିଥିବାର ଜାଣି ମୁଁ ଆଶ୍ଚର୍ଯ୍ୟ ହେଲି । ପରୀକୁ ଶୁଭ ସଂଧ୍ୟା ନ କହିଥିଲେ ଗାଡ଼ିର ଏକ ଚକ ପମ୍ପଚର ହୋଇଥାନ୍ତା ବୋଲି ପରେ ଜାଣିବାକୁ ପାଇଲି । ଡ଼ଗ୍‌ଲସ ସହରରେ ପହଞ୍ଚିଲା ପରେ ଭାରତୀୟ ପ୍ରତିନିଧି ମାନଙ୍କୁ ନେଇ "Casteel Mona" ନାମକ ଏକ ହୋଟେଲ୍‌ରେ ରଖାଗଲା । ଏହି ହୋଟେଲଟି ତିନି ମହଲା ବିଶିଷ୍ଟ । ମୁଁ ସବା ଉପର ମହଲାରେ ରହିଥିଲି । ହୋଟେଲ ସାମ୍ନାରେ ବିସ୍ତୀର୍ଣ୍ଣ ସମୁଦ୍ର ଦୃଷ୍ଟିଗୋଚର ହେଉଥାଏ । ସହରଟି ସମୁଦ୍ର କୂଳରେ ଏକ ଛୋଟ ପାହାଡ଼ ଉପରେ ଅବସ୍ଥିତ । ଅତି ମନୋରମ ତା'ର ଦୃଶ୍ୟ । ହୋଟେଲ ଗୁଡ଼ିକ ପାହାଡ଼ର ପାଦ ଦେଶରେ ଓ ସମୁଦ୍ର କୂଳରେ ଧାଡ଼ି ଧାଡ଼ି ହୋଇ ରହିଥିଲା । ସେଠାକାର ସମୁଦ୍ର ବେଳା ଅବିକଳ ଆମ ଓଡ଼ିଶାର ଚାନ୍ଦିପୁର ଓ ପଶ୍ଚିମ ବଙ୍ଗର ଦିଘା ପରି । ସମଦ୍ର ଥରକୁଥର କୂଳକୁ ମାଡ଼ିଆସେ ଓ



ମାଲ୍ଟା ଦ୍ୱୀପର ଭାଲେଟାଠାରେ ବ୍ରିଟେନର କୁଇନ ମଦର ଓ ବଲରାମ ଝାଖରଙ୍କ ସହ C.P.A. ସମ୍ମିଳନୀରେ

ପୁଣି ଦୂରକୁ ଫେରିଯାଉଥାଏ । ସମୁଦ୍ର କୂଳକୁ ଲଗାଇ ବିସ୍ତୀର୍ଣ୍ଣ ରାସ୍ତା କଡ଼କୁ ଧାଡ଼ି ଧାଡ଼ି ହୋଟେଲ । ବାସ୍ତବିକ ଅତି ରମଣୀୟ ସେ ଦୃଶ୍ୟ ।

ପରଦିନ ଠାରୁ ସମ୍ମିଳନୀ ଆରମ୍ଭ ହେବା କଥା । ପରମ୍ପରା ଅନୁଯାୟୀ ବ୍ରିଟେନର ମହାମାନ୍ୟ ରାଣୀ ଏହି ସମ୍ମିଳନୀ ଉଦ୍‌ଘାଟନ କରିଥାନ୍ତି । କିନ୍ତୁ କିଛି ଅସୁବିଧା ବଶତଃ ସେ ନ ଆସିପାରିବାରୁ ତାଙ୍କର ମାତା (Queen Mother) ୨୮-୯-୮୪ ତାରିଖରେ ଏହି ସମ୍ମିଳନୀ ଉଦ୍‌ଘାଟନ କଲେ । ବ୍ରିଟିଶ୍ ରାଜ୍ୟ ଗୋଷ୍ଠୀର ମୋଟ ୪୮ଟି ଦେଶର ପ୍ରାୟ ଦୁଇଶହରୁ ଅଧିକ ପ୍ରତିନିଧି ଏଥିରେ ଯୋଗ ଦେଇଥିଲେ । ଭାରତରୁ ପ୍ରତିନିଧି ଓ ଦର୍ଶକ ମିଶି ପ୍ରାୟ ୩୨ ଜଣ ଯୋଗ ଦେଇଥିଲେ । ସେଠାରେ ଆଲୋଚନା ହେବାକୁ ଥିବା ବିଭିନ୍ନ ବିଷୟ ମଧ୍ୟରୁ ପ୍ରତିନିଧି ମାନଙ୍କୁ ତାଙ୍କ ନିଜ ଇଚ୍ଛା ଅନୁଯାୟୀ ସାଧାରଣ ଅଧିବେଶନ ଓ ପେନାଲ ଅଧିବେଶନ ପାଇଁ ବିଷୟ ମାନ ପ୍ରଦାନ କରାଯାଉ ଥିଲା । ସାଧାରଣ ଅଧିବେଶନ ପାଇଁ "Parliament and Parliamentarians Influencing in the Direction of economy" ଓ ପେନାଲ ଅଧିବେଶନ ପାଇଁ "Drought in common wealth countries" ମୋର ଆଲୋଚନାର ବିଷୟ ଥିଲା ।

<u>୨୬-୯-୮୪</u>

ଅଧିବେଶନ ଆରମ୍ଭରେ ପ୍ରଥମେ ସମସ୍ତ ପ୍ରତିନିଧି ମାନଙ୍କୁ C.P.A. ର Chairman ଅଭିନନ୍ଦନ ଜଣାଇ ଅଭ୍ୟର୍ଥନା କଲେ । ଉପରଓଳି ଆମେ ଉକ୍ତ ଦ୍ୱୀପର New Castle ସହର ପରିଦର୍ଶନ କଲୁ । ଏହା ଉକ୍ତ ଦ୍ୱୀପର ପୂର୍ବତନ ରାଜଧାନୀ । ସେଠାରେ ଲୋକେ ତାଙ୍କ ସେଠାକାର ପାରଂପରିକ ପ୍ରଥାରେ ଆମକୁ ଅଭିନନ୍ଦନ ଜଣାଇଥିଲେ । ତହିଁପରଦିନ ସକାଳ ଓଳି ଆମେ ସେଠାକାର ଗ୍ରାମାଞ୍ଚଳମାନ ବୁଲି ରାତିରେ Peel ସହରକୁ ଗଲୁଁ । ସେଠାରେ ମଧ୍ୟ ଲୋକେ ତାଙ୍କ ପାରଂପାରିକ ପ୍ରଥାରେ ଆମ ମାନଙ୍କୁ ଅଭିନନ୍ଦନ ଜଣାଇଥିଲେ । ଏହି କ୍ଷୁଦ୍ର ଦ୍ୱୀପଟିର ମୋଟ ଲମ୍ବ ୪୮ କି.ମି. ଓ ପ୍ରସ୍ଥ ମାତ୍ର ୧୬ କି.ମି ହୋଇଥିବାରୁ ଏଠାରେ ରହଣି କାଳ ମଧ୍ୟରେ ଆମେ ପ୍ରାୟ ଦ୍ୱୀପର ବିଭିନ୍ନ ଅଞ୍ଚଳର ମୁଖ୍ୟ ସ୍ଥାନ ଗୁଡ଼ିକ ବୁଲି ଦେଖିଥିଲୁଁ । ଏ ଦ୍ୱୀପର ମୋଟ ଲୋକ ସଂଖ୍ୟା ପ୍ରାୟ ୬୪ ହଜାର ଅଟେ । ଏତେ କ୍ଷୁଦ୍ର ଦ୍ୱୀପଟିଏ ହୋଇଥିଲେ ମଧ୍ୟ ଏହା ଏକ ରାଷ୍ଟ୍ର ରୂପେ ପରିଗଣିତ । ଏକଦା ଏହା ବ୍ରିଟିଶ ଶାସନାଧୀନ ଥିଲା ଏବଂ ପରେ ଅନ୍ୟ ଦେଶ ଭଳି ସ୍ୱାଧୀନ ହୋଇଛି । ତେବେ ଏଠାକାର ଶାସନ ବ୍ରିଟେନର ରାଣୀଙ୍କ ନାମରେ (ସାଂବିଧାନିକ ମୁଖ୍ୟ) ଚାଲି ଆସିଛି । ଏହି ଦ୍ୱୀପ ବ୍ରିଟେନ ଓ ଆୟାରଲ୍ୟାଣ୍ଡର ଠିକ୍ ମଧ୍ୟ ସ୍ଥଳରେ ଅବସ୍ଥିତ । ଚାରିଆଡ଼େ ଛୋଟ ଛୋଟ ବନ୍ଦର । ଏଠାକାର ସରକାରଙ୍କ ମୁଖ୍ୟ ଆୟ ବାଣିଜ୍ୟ, କ୍ଷୁଦ୍ର ଇଞ୍ଜିନିଅରିଂ ଶିଳ୍ପ, ଓ ପରିବ୍ରାଜକ । ଗାଈ ଓ ମେଷ ପାଳନ । ଗ୍ରାମ ଗୁଡ଼ିକୁ ଛାଡ଼ିଦେଲେ ଚାରିଆଡ଼େ ଛୋଟ ଛୋଟ ପର୍ବତ ଭଳି ଉଚ୍ଚ ସ୍ଥାନ ମାନ ରହିଛି । ସେ ଗୁଡ଼ିକ ମେଣ୍ଢା ଓ ଗାଈଙ୍କ ଚାରଣ ଭୂମି ରୂପେ ବ୍ୟବହୃତ ହୁଏ । ବର୍ଷସାରା ସବୁଦିନେ ଅଳ୍ପ ଅଳ୍ପ ବର୍ଷା ହେଉଥିବାରୁ ଉକ୍ତ ଚାରଣ ଭୂମି ଗୁଡ଼ିକ ସର୍ବଦା ସବୁଜ ଘାସରେ ପରିପୂର୍ଣ୍ଣ ଥାଏ । ଗ୍ରାମ ଓ ସହର ଗୁଡ଼ିକ ଛୋଟ ହେଲେ ମଧ୍ୟ ଅତି ସୁନ୍ଦର । ଗ୍ରାମ ହେଉ କି ସହର ହେଉ ପ୍ରାୟ ପ୍ରତ୍ୟେକଙ୍କ ଘର ଆଗରେ ନିଶ୍ଚିତ ଭାବେ ଏକ ମୋଟରେ ଗାଡ଼ି ଓ ଫୁଲ ବଗିଚାଟିଏ ଦେଖିବାକୁ ମିଳେ । ବ୍ରିଟେନର ଲୋକେ ଏଠାରେ ଆସି ବାସ କରିଛନ୍ତି । ତେଣୁ ସମସ୍ତଙ୍କ ମାତୃଭାଷା ଇଂରାଜୀ । ଆଶ୍ଚର୍ଯ୍ୟର କଥା ଏଠାରେ କୌଣସି ମହାବିଦ୍ୟାଳୟ ନାହିଁ । କେବଳ କେତେଗୁଡ଼ିଏ ସେକେଣ୍ଡାରୀ ସ୍କୁଲ ଓ ବିଭିନ୍ନ ପ୍ରକାର ବୈଷୟିକ ସ୍କୁଲ ମାନ ଅଛି । ଉଚ୍ଚଶିକ୍ଷା ପାଇଁ ଏଠାକାର ଅଧିବାସୀ ମାନେ ବ୍ରିଟେନ ଯାଆନ୍ତି । ୨୮-୯-୮୪ ତାରିଖରେ ବ୍ରିଟେନ ରାଣୀଙ୍କ ମାଆ ସମ୍ମିଳନୀ ଉଦ୍‌ଘାଟନ କରିଥିଲେ । କିନ୍ତୁ ପରେ ପୁଣି ଅନ୍ୟ ଏକ ସ୍ଥାନରେ ସେ ସମସ୍ତ ପ୍ରତିନିଧି ମାନଙ୍କୁ ଭେଟି ବା ପ୍ରତ୍ୟେକଙ୍କ ସହିତ କରମର୍ଦ୍ଦନ କରି ନାମ ଓ ଦେଶ ବା ରାଜ୍ୟର କଥା ପଚାରି ବୁଝିଥିଲେ । ମୋ ସହିତ ମଧ୍ୟ ତାଙ୍କର କରମର୍ଦ୍ଦନ ଓ ବାର୍ତ୍ତାଳାପ ହେବା କମ୍ କଥା ନୁହେଁ । ପ୍ରାୟ ୨୦୦ ପ୍ରତିନିଧିଙ୍କ ଫଟୋ ମଧ୍ୟ ରାଣୀମାଆଙ୍କ ସହିତ ନିଆଗଲା । ବ୍ରିଟେନର ରାଣୀଙ୍କର ସେଠାରେ ବହୁତ

ସମ୍ମାନ । ୨୯ ତାରିଖ ରାତିରେ ସେଠାକାର ଗଭର୍ଣ୍ଣର ଆମକୁ ଡ଼ାକିଥିଲେ । ସେ ଦିନ ଭାରତୀୟ ପ୍ରତିନିଧିଙ୍କ ମଧ୍ୟରୁ ବିହାରର ବାଚସ୍ପତି ଶ୍ରୀଯୁକ୍ତ ଝାକର ଏକଥା ଜାଣିପାରିବାରୁ ମୋତେ ସଙ୍ଗରେ ନେଇ ଆମ ହୋଟେଲକୁ ଚାଲି ଆସିଲେ । ସେଠାରେ ଯେତେ ଯେତେ ସମ୍ବର୍ଦ୍ଧନା ଦିଆଯାଏ, ସବୁ ସ୍ଥାନରେ ଘଣ୍ଟା ଘଣ୍ଟା ଧରି ଠିଆ ହେବାକୁ ପଡ଼େ । ବସିବାର ବ୍ୟବସ୍ଥା କିଛି ନ ଥାଏ । ମୁଁ ସେହିଦିନଠାରୁ ଆଉ କୌଣସି ସମ୍ବର୍ଦ୍ଧନାକୁ ଯିବି ନାହିଁ ବୋଲି ସ୍ଥିର କଲି ।

୨୯-୯-୧୯୮୪ ରୁ ଅଧିବେଶନ ଆରମ୍ଭ ହୋଇ ବିଭିନ୍ନ ବିଷୟ (ପୂର୍ବନିର୍ଦ୍ଧାରିତ) ରେ ଆଲୋଚନା ହେଲା । ପ୍ରତି ଦେଶର ପ୍ରତିନିଧିମାନେ ପୂର୍ବରୁ ସ୍ଥିରୀକୃତ ବିଷୟ ଅନୁଯାୟୀ ଆଲୋଚନା କରୁଥାନ୍ତି । ମୋ ବିଷୟଟିର ଆଲୋଚନା ୨.୧୦.୮୪ ଦିନ ଆରମ୍ଭ ହୋଇ ୩.୧୦.୮୪ କୁ ସ୍ଥଗିତ ରହିଲା ଏବଂ ସେଦିନ ପ୍ରଥମେ ଅଧିବେଶନ ୯ଟା ବେଳେ ଆରମ୍ଭ ହେବାମାତ୍ରେ ମୋତେ କହିବାକୁ ହେବ ବୋଲି ଜଣାଇ ଦେଇଥିଲେ । ଜୀବନରେ ଏକ ଆନ୍ତ- ର୍ଜାତିକ ସମ୍ମିଳନୀରେ ଯୋଗ ଦେବା ପ୍ରଥମ ଏବଂ ଇଂରାଜୀରେ କହିବା ଏହା ମୋର ପ୍ରଥମ । ଭୀଷଣ ଭୟ ଲାଗୁଥିଲା ଏବଂ ଭଲଭାବେ କହିପାରିବି କି ନାହିଁ ଭାବି ବ୍ୟସ୍ତ ଲାଗୁଥିଲା ଏଣୁ ସୁବିଧାରେ ପଢ଼ିଲାଭଳି ଅକ୍ଷରରେ ମୋର ଇଂରାଜୀ ଭାଷଣଟି ମୁଁ ଲେଖିନେଇଥିଲି । ଭଗବାନଙ୍କ ଆଶିର୍ବାଦରୁ ମୁଁ ଅତି ସୁନ୍ଦର ଭାବେ କହିପାରିବାରୁ ଭାରତୀୟ ବନ୍ଧୁମାନେ ମୋର ପ୍ରଶଂସା କରିଥିଲେ । ମୋର ଆଲୋଚ୍ୟ ବିଷୟ ଥିଲା "Parliament and Parliamentarian's Influencing the Direction of Economy" ଅର୍ଥାତ୍ ଗଣତନ୍ତ୍ର ଶାସନରେ ସଂସଦ ଓ ସଂସଦୀୟ ସଭ୍ୟମାନେ କିଭଳି ଭାବେ ଦେଶର ଅର୍ଥନୀତି ଉପରେ ପ୍ରଭାବ ପକାଉଛନ୍ତି । ଏହି କଥାର ବିଭିନ୍ନ ଉଦାହରଣ ଦେବା ସଂଗେ ସଂଗେ ପୃଥିବୀରେ ବର୍ତ୍ତମାନ ପ୍ରଚଳିତ ବିଭିନ୍ନ ଶାସନ ବ୍ୟବସ୍ଥା ମଧ୍ୟରେ ଚାଲିଥିବା ପ୍ରତିଯୋଗିତାରେ ଆମର ସଂସଦୀୟ ଶାସନ (Parliamentary form of Govt.) ସବୁଠାରୁ ଶ୍ରେଷ୍ଠ ବୋଲି ମୁଁ ବ୍ୟକ୍ତ କଲି । ତେଣୁ ତାହାକୁ ଅଧିକ ଫଳ ପ୍ରଦ ଓ ଲୋକପ୍ରିୟ କରି ପୃଥିବୀର ଶ୍ରେଷ୍ଠ ଶାସନ ବ୍ୟବସ୍ଥା ବୋଲି ପ୍ରତିପାଦିତ କରିବାକୁ ସମସ୍ତଙ୍କୁ ଆହ୍ୱାନ ଦେବା ବେଶ୍ ଆକର୍ଷଣୀୟ ହୋଇଥିଲା । ସେହି ୩ ତାରିଖ ଦିନ ଓପରଓକି Panel Session ରେ ମଧ ଯୋଗ ଦେଇ "Drought in the Common wealth Countries" ବିଷୟରେ ଆଲୋଚନାରେ ଭାଗ ନେଇ ବିଶେଷ କରି ଆଫ୍ରିକୀୟ ଦେଶମାନଙ୍କରେ ମରୁଡ଼ିର ଅସ୍ଥାୟୀ ପ୍ରତିକାର ସଂଗେ ସଂଗେ ତହିଁର ସ୍ଥାୟୀ ପ୍ରତିକାର ନିମନ୍ତେ ପରିବେଶ ସୁରକ୍ଷା ଓ ଜଙ୍ଗଲ ସୃଷ୍ଟିର ଆବଶ୍ୟକତା ସଂପର୍କରେ କହିଥିଲି ।

## ସଭାପତି ନିର୍ବାଚନରେ ଭାରତର ବିଜୟ

୪-୧୦-୯୪ ତାରଖରେ ପରବର୍ତ୍ତୀ ତିନିବର୍ଷ ପାଇଁ ସଭାପତି ନର୍ବାଚନରେ ଭାରତର ଲୋକ ସଭା ବାଚସ୍ପତି ଡ଼କ୍ଟର ବଳରାମ ଝାକର ପ୍ରାର୍ଥୀ ହୋଇ ଥିଲେ ଏବଂ ତାଙ୍କୁ ବ୍ରିଟେନ, କାନାନା, ଅଷ୍ଟ୍ରେଲିଆ, ନିଉଜିଲାଣ୍ଡ, ସିଂହଳ ପ୍ରଭୃତି ଦେଶର ପ୍ରତିନିଧି ମାନେ ସମର୍ଥନ କରୁଥିବାରୁ ସେ ଅଧିକ ଭୋଟରେ ନିର୍ବାଚିତ ହୋଇ ଭାରତର ଗୌରବ ଆନ୍ତର୍ଜାତିକ କ୍ଷେତ୍ରରେ ବୃଦ୍ଧି କରିଥିଲେ । ସମସ୍ତ ଭାରତୀୟ ପ୍ରତିନିଧି ଏହି ନିର୍ବାଚନରେ ଅନ୍ୟ ଦେଶର ପ୍ରତିନିଧିଙ୍କୁ ପ୍ରଭାବିତ କରିବାରେ ପ୍ରଗାଢ଼ ଉଦ୍ୟମ କରିଥିଲେ । ନିର୍ବାଚନ ପରେ ସମ୍ମିଳନୀ ଶେଷ ହୋଇଥିଲା । କିନ୍ତୁ ଦୁର୍ଭାଗ୍ୟର ବିଷୟ ଯେ ଏହି ନିର୍ବାଚନ ଭାରତ ପକ୍ଷରେ ସମ୍ମାନଜନକ ହୋଇଥିଲେ ହେଁ ଆମେ ମାତ୍ର ୩ଟି ଅଧିକ ଭୋଟରେ ଜୟଯୁକ୍ତ ହୋଇଥିଲୁଁ । କାରଣ ଉକ୍ତ ଭୋଟଗ୍ରହଣ ବେଳେ ଆମର ୩ ଜଣ ପ୍ରତିନିଧି ଅନୁପସ୍ଥିତ ଥିଲେ । ସେମାନଙ୍କ ମଧ୍ୟରେ ପାର୍ଲ୍ୟାମେଣ୍ଟ ସଦସ୍ୟ ଶ୍ରୀଯୁକ୍ତ ବାଜପେୟୀ (ଭାରତୀୟ ଜନତା ଦଳ ସଭାପତି) ଅନ୍ୟତମ । ସମ୍ମିଳନୀ ଶେଷ ହେବାପରେ ସେଦିନ ରାତିରେ ଆମ ହୋଟେଲରେ ସମସ୍ତ ପ୍ରତିନିଧିମାନେ ଏକତ୍ରିତ ହୋଇ ଆମର ସଭାପତି ଡ଼କ୍ଟର ଝାକରଙ୍କୁ ସମ୍ବର୍ଦ୍ଧନା ଦେଇଥିଲୁଁ । ଭାରତର ଲୋକସଭା ଅଧକ୍ଷ ତଥା ଆମ ପ୍ରତିନିଧି ଦଳର ସଭାପତି ଶ୍ରୀଯୁକ୍ତ ଝାକରଙ୍କୁ ଏକ ସର୍ବବୃହତ୍ (U.N.O କୁ ଛାଡ଼ିଦେଲେ)

ଆନ୍ତର୍ଜାତିକ ସଂଗଠନର ସଭାପତି ନିର୍ବାଚିତ ହୋଇଥିବାରୁ ତାହା ଆମ ଭାରତୀୟ ପ୍ରତିନିଧିମାନଙ୍କ ପକ୍ଷରେ ଅତ୍ୟନ୍ତ ଗର୍ବ ଓ ଗୌରବର ବିଷୟ ହୋଇଥିଲା ଏବଂ ସେଥିପାଇଁ ଆମକୁ ବ୍ରିଟେନ, କାନାଡ଼ା ଅଷ୍ଟ୍ରେଲିଆ ଓ ସିଂହଳ ପ୍ରଭୃତି ଦେଶର ଅକୁଣ୍ଠ ସମର୍ଥନ ଅଧିକ ଆନନ୍ଦ ଦେଇଥିଲା । ଅକ୍ଟୋବର ୫ ତାରିଖ ସକାଳେ ପ୍ରାୟ ଦଶ ଦିନର ରହଣି ପରେ ସମସ୍ତ ସଭ୍ୟ ଡଗ୍‌ଲାସ ସହର ଛାଡ଼ିଲୁଁ । ଆସିବା ବେଳେ ସଂଗରେ ନେଇ ଥିବା ଭାରତୀୟ Handkcraft ଗୁଡ଼ିକ, ହୋଟେଲରେ ଆମକଥା ବୁଝୁଥିବା ଲୋକଙ୍କୁ ଉପହାର ଦେଇ ଆସିଲି । ସମସ୍ତ ପ୍ରତିନିଧି ମାନେ ଯେଉଁ ବାଟରେ ଯିଏ ନିଜ ଦେଶକୁ ଫେରନ୍ତୁ ନା କାହିଁକି ସମସ୍ତଙ୍କୁ ଲଣ୍ଡନ ଦେଇ ଆସିବାକୁ ପଡ଼ିଥିଲା । ଆମେ ସେଦିନ ପ୍ରାୟ ଗୋଟାଏ ବେଳେ ଲଣ୍ଡନ ପହଞ୍ଚିଲୁଁ ଏବଂ ସିଧା High Commissioner ଙ୍କ ଅଫିସ୍‌କୁ ଆସିଲୁଁ । Protocal ଅନୁଯାୟୀ ଉକ୍ତ କମିଶନ ଅଫିସରୁ ଯାଇଥିବା ଗାଡ଼ିରେ ଆସି ସେଠାରେ ଥିବା consult of Indian High commission ଓ C.P.A. ର High commissioner ଙ୍କ ସହିତ ଦେଖା କଲୁଁ । ସେଠାରେ ହୋଟେଲ୍‌ରେ ରହିବାର କେତେକ ଅସୁବିଧା ଦୂର ହେଲାପରେ ମୁଁ ହିମାଂଶୁବାବୁ ଓ ଆମ secretary ତଥା ଅନ୍ୟ ଦେଶର speaker ଓ ତାଙ୍କ secretary ମନେ ଠିକ୍ କମିଶନ ଅଫିସ ଆଗରେ ଥିବା ବିଖ୍ୟାତ world Ford Hotel ରେ ରହିଲୁଁ । ଆମେ ସେଠାରେ ରହିବା ପରେ ଉକ୍ତ ଲଣ୍ଡନ ସହରରେ ବେତନଟୀର ଯଶୋବନ୍ତ ଭାଇ ପଟେଲଙ୍କ କ୍ୱାଇଁ ଶ୍ରୀ ଦେବେନ୍ଦ୍ର ଭାଇ ପଟେଲଙ୍କୁ ଫୋନ ଯୋଗେ ଆମର ରହିବା ସ୍ଥାନ ଜଣାଇ ଦେଲୁଁ । ସେ ତହିଁ ପରଦିନ ସକାଳ ପ୍ରାୟ ୯ଟା ବେଳେ ସେଠାରେ ପହଞ୍ଚିଲେ ଓ ଆମକୁ ତାଙ୍କ ଘରକୁ ନେଇଗଲେ । ସେଠାରେ ଆମେ ଏକ ମାଟିତଳ ଟ୍ରେନ (Tube Train) ଯୋଗେ ପ୍ରାୟ ୨୫ କି.ମି. ଆସିବା ପରେ ତାଙ୍କ ଘରେ ପହଞ୍ଚିଲୁଁ । ଉକ୍ତ ଟ୍ରେନ ପାଖକୁ ଯିବାକୁ ହେଲେ ବିଭିନ୍ନ ସ୍ଥାନରେ ତଳକୁ ବାଟ ଅଛି । ପାହାଚ ଗୁଡ଼ିକ ତଳକୁ ଯାଇଥିବାରୁ ସହଜରେ ଓହ୍ଲାଇବା ଓ ଉଠିବା ପାଇଁ ବିଦ୍ୟୁତ୍ ଚାଳିତ ପାହାଚ କରାଯାଇଛି । ଏତଦ୍ ବ୍ୟତୀତ ଟିକଟ ପାଇଁ ଏକ କମ୍ପ୍ୟୁଟର ଯନ୍ତ୍ର ଅଛି । ଆବଶ୍ୟକ ପରିମାଣର (ଦୂରତା ଅନୁଯାୟୀ) ତାଙ୍କ ସେଠାକାର ମୁଦ୍ରା ଗଳାଇଦେଇ ଠିକିଏ ଆଗେଇ ଗଲେ ଟିକଟ ମିଳିଯିବ ଏବଂ ଆପେ ଆପେ ତହିଁ ପରେ ବନ୍ଦ ହୋଇ ରହିଥିବା ବାଟ ମଧ ଖୋଲିଯିବ । ଏହା ଏକ ବିଦ୍ୟୁତ୍ ଚାଳିତ ଟ୍ରେନ୍ ମାତ୍ର ଦୁଇ ମିନିଟ୍ ମଧରେ ଆମ୍ଭେ ତାଙ୍କ ଘରେ ପହଞ୍ଚିଲୁଁ । ବେତନଟୀ ପଟେଲ ବାବୁଙ୍କ ଝିଅ ଯୋଗୀନା ଓ ଅନ୍ୟ ସମସ୍ତେ ଆମକୁ ଦେଖି ଭାରି ଖୁସି ହେଲେ ଓ ଅଭ୍ୟର୍ଥନା କରି ନିଜ ବନ୍ଧୁ ଭାବେ ଗ୍ରହଣ କଲେ । ତାଙ୍କ ଘରେ ଆମେ ୩ ଜଣ (ମୁଁ, ହିମାଂଶୁ ବାବୁ ଓ ସେକ୍ରେଟେରୀ) ମଧାହ୍ନ ଭୋଜନ କଲୁ ଏବଂ ପରେ ତାଙ୍କ ନିଜ ଗାଡ଼ିରେ ଦେବେନ୍ଦ୍ର ଭାଇ, ତାଙ୍କର ସ୍ତ୍ରୀ, ଯୋଗୀନା ଓ ଆମେ ୩ ଜଣ ସହରର Shopping centre କୁ ଯାଇ ବିଭିନ୍ନ ଜିନିଷ କିଣି ପ୍ରାୟ ସଂଧ୍ୟା ବେଳକୁ ତାଙ୍କ ଘରକୁ ଫେରି ରାତ୍ରି ଭୋଜନ କଲୁଁ । ତା'ପରେ ଦେବେନ୍ଦ୍ର ଆମକୁ ତାଙ୍କ ନିଜ ଗାଡ଼ିରେ ନେଇ ଆମ ରହିବା Hotel ରେ ଛାଡ଼ି ଦେଇ ଆସିଲେ । ତହିଁପରଦିନ ମଧ ସେ ଠିକ୍ ସେହିପରି ଟ୍ରେନ୍ ଯୋଗେ ଆସି ଆମ ପାଖରେ ପହଞ୍ଚିଲେ । ଆମେ ଉକ୍ତ ଟ୍ରେନରେ ପୂର୍ବଦିନ ପରି ତାଙ୍କ ଘରକୁ ଗଲୁ ଓ ସେଠାରୁ ତାଙ୍କ ସଂଗେ ବିଭିନ୍ନ ଦର୍ଶନୀୟ ସ୍ଥାନକୁ ବୁଲି ଗଲୁଁ । ବସରେ ଯାଉଥିବା ବେଳେ ସେଠା Parliament House ଯାହାକୁ West minister କୁହାଯାଏ Oxford University ପୃଥିବୀ ବିଖ୍ୟାତ ବିଶ୍ୱବିଦ୍ୟାଳୟ । ବ୍ରିଟିଶ ରାଜା ଓ ରାଣୀଙ୍କ ଘର, ସେଠାକାର ବିଖ୍ୟାତ ଘଡ଼ି, (ପୃଥିବୀର ସବୁଠି ଘଡ଼ି । ସମୟ ନିୟନ୍ତ୍ରିତ ଏହି ଘଡ଼ି ଅନୁଯାୟୀ ନିୟନ୍ତ୍ରିତ ହୁଏ) ଦେଖିଲୁଁ ତାପରେ ବିଖ୍ୟାତ ଟେମସ୍ ନଦୀ (ଯାହାକୁ ୩/୪ ଥର ପାର ହେଲୁଁ) ମଧ ଦେଖିଲୁଁ । ବ୍ରିଟେନରେ ଏହି ସବୁ ଦର୍ଶନୀୟ ସ୍ଥାନ ସମ୍ପର୍କରେ ଇତିହାସରୁ ପଢୁଥିଲାବେଳେ ପୃଥିବୀ ସଭ୍ୟତାର ସୁମହାନ ଆଦର୍ଶ ଗ୍ରେଟ ବ୍ରିଟେନ ବୋଲି ଆମକୁ ଧାରଣା ଦିଆଯାଇଥିଲା ଏବଂ ଆମ ଭାରତର ସଭ୍ୟତା, ସଂସ୍କୃତି, କଳା, ସ୍ଥାପତ୍ୟ ବ୍ରିଟେନ ତୁଳନାରେ ଢ଼େର ମହାନ ଓ ଉଚ୍ଚକୋଟୀର ହୋଇଥିଲେ ହେଁ ସେ ସବୁକୁ ଅତି ନଗଣ୍ୟ ବୋଲି ଧାରଣା ଦିଆଯାଇ ବ୍ରୀଟିଶ ଶାସନର ସ୍ଥାୟିତ୍ୱ ପାଇଁ ଭାରତୀୟ ମାନଙ୍କୁ ପ୍ରଭାବିତ କରାଯାଇଥିଲା । ଏହି ସହରରେ ବୁଲୁଥିବା ବେଳେ ଏକ ବିଖ୍ୟାତ Museum କୁ ଯାଇଥିଲୁଁ । ସେଠାରେ ପୃଥିବୀରେ ବଡ଼ ବଡ଼ ନେତୃବର୍ଗଙ୍କ,

ଜୀବନ୍ତ ଭଳି ଦେଖାଯାଉଥିବା ପ୍ରତିମୂର୍ତ୍ତି ମାନ ରଖାଯାଇଛି । ବ୍ରିଟେନର ରାଜ ପରିବାର ଲୋକଙ୍କ ବ୍ୟତୀତ ଚର୍ଚ୍ଚିଲି, ଅଟଲି, ମୁସୋଲିନୀ ହିଟଲର, ମାଓ ସେ ତୁଙ୍ଗ, ଷ୍ଟାଲିନ, ଭାରତର ମହାତ୍ମା ଗାନ୍ଧୀ ଓ ଶ୍ରୀମତୀ ଇନ୍ଦିରା ଗାନ୍ଧୀଙ୍କ ପ୍ରତିମୂର୍ତ୍ତି ମଧ୍ୟ ସେଠାରେ ରହିଛି । ଭାରତର ଏହି ଦୁଇଜଣଙ୍କ ପ୍ରତିମୂର୍ତ୍ତିର ସଠିକ୍ ରୂପାୟନ ହୋଇ ନ ଥିଲା । ସେଠାରେ ... (ଭୟଙ୍କର) ନାମରେ ଏକ ଅଂଶ ଉକ୍ତ ଯାଦୁଘରେ ଥିଲା । ସେଠାକୁ ପଶିଲା ବେଳକୁ ହିଟଲରଙ୍କ ପ୍ରତିମୂର୍ତ୍ତି ଓ ତାଙ୍କ ବର୍ବରୋଚିତ କାର୍ଯ୍ୟ କଳାପର ଦୃଶ୍ୟ ରହିଥିଲା । କମାଣ ଦ୍ୱାରା ଓ ଫାଶି ଦ୍ୱାରା ମରିଗଲେ ଲୋକେ ଯେପରି ଚିତ୍କାର କରନ୍ତି । ଠିକ୍ ସେହିପରି ଚିତ୍କାର ଓ କମାଣ ଶବ୍ଦ ଶୁଣା ଯିବାର ବ୍ୟବସ୍ଥା ଥିଲା । ଶେଷଦିନ ପୁଣି କିଛି କିଣା କିଣି କରି ଆମେ ପ୍ୟାରିସ୍ ବାହାରିଲୁ । ପୂର୍ବ ନିର୍ଦ୍ଧାରିତ ପୋଗ୍ରାମ ଅନୁଯାୟୀ ଆମର ପ୍ୟାରିସ୍‌କୁ ଆଗରୁ ଯିବାର ଥିଲା । କିନ୍ତୁ ପରେ କାର୍ଯ୍ୟକ୍ରମ ପରିବର୍ତ୍ତନ ହୋଇଥିବା ଯୋଗୁଁ ୯-୧୦-୮୪ ତାରିଖ ସକାଳେ ପ୍ୟାରିସ ଗଲୁଁ । ମାତ୍ର ପହଞ୍ଚିଲା ବେଳକୁ ସେଠା ଦୂତାବାସରୁ ବିମାନ ଘାଟୀକୁ କେହି ଆସି ନ ଥିବାରୁ ଆମେ ବଡ଼ ଅସୁବିଧାରେ ପଡ଼ିଲୁଁ । ଫରାସୀ ଭାଷା ଆମେ କେହି ଜାଣି ନ ଥିଲୁଁ କିମ୍ବା ଇଂରାଜୀ ଭାଷା ଫରାସୀ ଲୋକେ ବୁଝି ପାରୁ ନ ଥିଲେ । ବହୁ ସମୟ କଥାବାର୍ତ୍ତା ପରେ ଜଣେ ଟେକ୍ସି ଚାଳକ, ଭାରତ କମିଶନ ଅଫିସ ବୋଲି ବୁଝିପାରି ଆମକୁ ସେଠା ଦୂତାବାସ ଅଫିସକୁ ନେଇଗଲା । ସେଠାରେ ଓହ୍ଲାଇବା ମାତ୍ରେ ଜଣେ ଭାରତୀୟ ଯୁବକ ଯିଏ ଫରାସୀ ଭାଷାରେ ଡକ୍ଟରେଟ କରିବା ପାଇଁ ସେଠାକୁ ଆସିଥିଲେ; ତାଙ୍କ ସହିତ ଦେଖା ହେବାରୁ ସେ ଫରାସୀ ଭାଷାରେ ଟେକ୍ସି ଚାଳକ ସଂଗେ କଥାବାର୍ତ୍ତା ହୋଇ ତା'ର ପ୍ରାପ୍ୟ କେତେ ଆମକୁ କହିବାରୁ, ତାହା ଆମେ ଦେଲୁଁ । ତାପରେ ସେଠାରେ ଥିବା ଦୂତାବାସର ୧ମ ସେକ୍ରେଟାରି ସହିତ ଦେଖାହେଲା ।

Protocol ଅନୁଯାୟୀ ଉଡ଼ାଜାହାଜ ଷ୍ଟେସନରୁ ଯାଇ ନ ଥିବାରୁ ସେ ଦୁଃଖ ପ୍ରକାଶ କରିଥିଲେ ଓ ତାଙ୍କ ଗାଡ଼ି ଦ୍ୱାରା ସେ ଦିନ ଓ ତହିଁ ପରଦିନ ସକାଳ ଓଳି ସହରର ବିଭିନ୍ନ ଦର୍ଶନୀୟ ସ୍ଥାନ ମାନ ବୁଲାଇ ଦେଖାଇବାର ପ୍ରତିଶ୍ରୁତି ଦେଲେ । ଏହାପରେ ଆମେ ବୁଲୁ ବୁଲୁ ବାଟରେ ଆଉ ଜଣେ ତାମିଲ ଯୁବକଙ୍କ ସହ ଦେଖା ହେଲା । ସେ ମଧ୍ୟ ଅଧ୍ୟୟନ ପାଇଁ ଭାରତରୁ ଆସିଥିବା କଥା କହିଲେ ଓ ଆମ ସହିତ ମିଶି ବୁଲିଲେ । ରାତିରେ କେତେକ ସ୍ଥାନ ଓ ପ୍ୟାରିସ ନଗରୀର ପୃଥିବୀ ବିଖ୍ୟାତ ସୌନ୍ଦର୍ଯ୍ୟ ଉପଲବ୍ଧି କଲୁ । ବିଖ୍ୟାତ Emphil Tower ନିକଟରେ କେତେକ ଆଫ୍ରିକାର ଲୋକଙ୍କଠାରୁ କଳଚାଳିତ ଚଢ଼େଇ କିଣିବାରେ ଠକି ଯାଇ ଅଧିକ ପଇସା ଦେଇଦେଲୁଁ । ଉକ୍ତ ଦୁଇ ଭାରତୀୟ ଯୁବକଙ୍କୁ ଆମ ସଂଗେ ଏକ ଭାରତୀୟ ହୋଟେଲରେ ଖୁଆଇଲୁ । ପରେ ଫେରି Hotel ରେ ରହି ରାତ୍ରି ଯାପନ କଲୁଁ । ତହିଁ ପରଦିନ ପୁଣି ସକାଳ ୮ଟା ବେଳକୁ ଦୂତାବାସ ଗାଡ଼ିରେ ବୁଲି ସେଠାକାର National Asembly House (Parliament House) Naloleon (Tomb)- Victory gate ପ୍ରଭୃତି ଦେଖିଲୁଁ । Emphil Tower ରେ ଉଠିବାକୁ ଚେଷ୍ଟା କରି ଅଳ୍ପ ଦୂରରୁ ମୁଁ ଓ ହିଂମାଂଶୁ ଫେରି ଆସିଲୁ ତଳକୁ । ପୁରୋହିତ ବାବୁ (ସେକ୍ରେଟାରୀ) ଓ ଦୂତାବାସରୁ ଆସିଥିବା ଅଫିସର ଉପରକୁ ଆଉ କିଛି ଦୂର ଯାଇ ସେଠାରୁ lift ଦ୍ୱାରା ଶେଷ ଭାଗକୁ ଯାଇଥିଲେ ।

ଏହି ଟାୱାର ପ୍ରାୟ ୩୦୦ ବର୍ଷ ପୂର୍ବରୁ ତିଆରି ହୋଇଥିଲା ଏବଂ ଏହାର ଉଚ୍ଚତା ୩୦୦ ଫୁଟ୍ । Emphil ନାମକ ଜଣେ ଫରାସୀ ଇଂଜିନିୟର ତିଆରି କରିଥିବାରୁ ତାଙ୍କ ନାମରେ ଏହା ନାମିତ କରାଯାଇଛି । ଏହା ପୃଥିବୀର ସର୍ବୋଚ୍ଚ ସ୍ତମ୍ଭ ଏବଂ Engineringg Staff ଙ୍କର ଏହା ଏକ ବିଶେଷ କୃତିତ୍ୱ ଭାବେ ସମଗ୍ର ପୃଥିବୀରେ ପରିଗଣିତ । ଭାରତୀୟ ସାଂସ୍କୃତିକ ମେଳା ଏହିଠାରେ ଅନୁଷ୍ଠିତ ହୋଇଥିଲା । ପ୍ୟାରିସ୍‌ରେ ଭାରତ ପ୍ରତି ବିଶେଷ ସଦ୍‌ଭାବ ଓ ବନ୍ଧୁତା ଥିବାର ଶୁଣିଲି । ତହିଁର ନିଦର୍ଶନ ସ୍ୱରୂପ, ଆମେ ସେଠାରେ ପହଞ୍ଚିବାର କିଛି ବର୍ଷ ପୂର୍ବେ ଶ୍ରୀମତୀ ଇନ୍ଦିରା ଗାନ୍ଧୀ ବଞ୍ଚିଥିବା ବେଳେ ପ୍ୟାରିସ ସହରରେ ପୃଥିବୀର ୫/୬ ଜଣ (ତାଙ୍କ ନିଜ ସଭାପତି ସମେତ) ବିଶିଷ୍ଟ ନେତାଙ୍କ ଜନ ପ୍ରିୟତା ସଂପର୍କରେ ହୋଇଥିବା ଏକ ଭୋଟରେ ଶ୍ରୀମତୀ ଗାନ୍ଧି ସମସ୍ତଙ୍କ ଠାରୁ ଅଧିକ ଭୋଟ ପାଇଥିବାର ଜାଣି ଆମେ ଖୁବ୍

ଗର୍ବ ଅନୁଭବ କଲୁଁ । ଏହାପରେ ପ୍ରାୟ ୧୦ଟା ବେଳକୁ ଆମେ ପ୍ୟାରିସ୍‌ର ଉଡ଼ାଜାହାଜ ଷ୍ଟେସନକୁ ୩ଜଣ ଯାକ ଦୂତାବାସ ଗାଡ଼ିରେ ଆସି ଉଡ଼ାଜାହାଜ ଯୋଗେ ଲଣ୍ଡନ ଫେରି ସଂଧ୍ୟା ୭ଟା (ଲଣ୍ଡନ ସମୟ) ବେଳେ ବମ୍ବେ ଯାତ୍ରା କଲୁଁ । ଆମର ମୂଳ ପ୍ରୋଗ୍ରାମରେ ବମ୍ବେ ଆସିବାର ନ ଥିଲା । କିନ୍ତୁ ଲଣ୍ଡନରୁ ସିଧା ଦିଲ୍ଲୀକୁ ଟିକଟ ନ ମିଳିବାରୁ ବମ୍ବେ ଦେଇ ଦିଲ୍ଲୀ ଆସିବାକୁ ପଡ଼ିଲା । ବମ୍ବେରେ ଦିନ ଗୋଟାଏ ବେଳେ ଓହ୍ଲାଇ ଗୋଟିଏ ହୋଟେଲକୁ ଆସିଲୁ । ସେଠାରେ ରହିବା ଓ ଖାଇବା ଖର୍ଚ୍ଚ Air India ବହନ କରିଥିଲା । ସଂଧ୍ୟା ୫ଟା ବେଳେ ଆମେ ୩ଜଣ ଯାକ ଏକ ସରକାରୀ ଗାଡ଼ିରେ ବମ୍ବେ ସହରର ସମୁଦ୍ରକୂଳ, India gate ଓ ଅନ୍ୟ କେତେକ ଅଞ୍ଚଳ ପରିଦର୍ଶନ କରି ଆମେ ରହିଥିଲୁ । ହୋଟେଲରେ ରାତ୍ରି ଭୋଜନ ଶେଷ କରି ୧୧ଟା ପରେ ବିମାନ ଘାଟୀକୁ ଆସି ଗୋଟାଏ ବେଳେ ଦିଲ୍ଲୀ ଅଭିମୁଖେ ଯାତ୍ରା କଲୁଁ ଓ ରାତ୍ରି ୩.୩୦ ମିନିଟ୍ ବେଳେ ପାଲାମ ବିମାନ ଘାଟୀରେ ପହଞ୍ଚି ଦିଲ୍ଲୀର ଓଡ଼ିଶା ଭବନକୁ ଆସିଲୁ । ସେଠାରୁ ୨ ଦିନ ପରେ, ଭୁବନେଶ୍ୱର ଫେରି ପରେ ବେତନଟୀରେ ଅବସ୍ଥାନ କଲି । ଏହି ବିଦେଶଯାତ୍ରା ମୋ ଜୀବନରେ ପ୍ରଥମ । ମୋତେ ଏଥିପାଇଁ ଯେତେ ବୈଦେଶିକ ମୁଦ୍ରା ମିଳିଥିଲା, ସେଥିରୁ ପ୍ରାୟ ଛଅ, ଶହ ବୈଦେଶିକ ମୁଦ୍ରା ବଳି ଯାଇଥିଲା । ସେଥିରେ ମୁଁ କିଛି ଜିନିଷ (ଲୁଗା ଓ ପୋଷାକ) । ଗୋଟିଏ ଛୋଟ ରେଡ଼ିଓ ଓ ମୋ ପାଇଁ ଗୋଟିଏ ହାତବନ୍ଧା ଘଡ଼ି ଆଣିଥିଲି ।

## ଷଡ଼େଇକଳା ଗମନ

ଷଡ଼େଇକଳା ବିହାର ରାଜ୍ୟରେ ଓଡ଼ିଶାର ଏକ ବିଚ୍ଛିନ୍ନାଞ୍ଚଳ । ଓଡ଼ିଆ ଭାଷା ଭାଷୀ ବହୁ ଓଡ଼ିଆ ଲୋକ ଦୀର୍ଘ ଦିନଧରି ଏଠାରେ ରହିଥିବାରୁ ଓଡ଼ିଆର ଭାଷା ଓ ସଂସ୍କୃତି ପ୍ରତି ସେମାନଙ୍କର ଶ୍ରଦ୍ଧା ଅତୁଳନୀୟ । ଦୀର୍ଘ ଦିନ୍ ଧରି ନିଜ ମାତୃଭାଷା ଓ ସଂସ୍କୃତିର ସୁରକ୍ଷା ପାଇଁ ସଂଗ୍ରାମ କରି ଆସିଥିବା ସେଠାକାର ଅଧିବାସୀ ଓଡ଼ିଶାର ଲୋକଙ୍କୁ ଦେଖିଲେ ଆନନ୍ଦରେ ଫାଟି ପଡ଼ନ୍ତି । ଓଡ଼ିଶାରୁ ଯାଇଥିବା ବ୍ୟକ୍ତିକୁ ନିଜ ପରିବାରର ଲୋକଙ୍କ ଭଳି ସେମାନେ ଆତ୍ମୀୟତାର ଡୋରିରେ ବାନ୍ଧି ପକାନ୍ତି ।

ପଣ୍ଡିତ ଗୋପବନ୍ଧୁ ଦାଶ, ପଣ୍ଡିତ ଗୋଦାବରୀଶ ମିଶ୍ର ପ୍ରଭୃତି ଓଡ଼ିଶାର ବହୁ ବରେଣ୍ୟ ନେତା ଯେଉଁ ବିଚ୍ଛିନ୍ନାଞ୍ଚଳକୁ ଉତ୍କଳୀୟ ଚିନ୍ତା ଚେତନାର ସୌରଭରେ ସୁରଭିତ କରି ସେଠାକାର ଅଧିବାସୀଙ୍କ ହୃଦୟରେ ଓଡ଼ିଶା ପ୍ରୀତିର ବୀଜ ବୁଣି ଦେଇଗଲେ ସେଇ ମାଟିରେ ପାଦ ଦେଲା ମାତ୍ରେ ମୋ ସର୍ବାଙ୍ଗରେ ଏକ ଅପୂର୍ବ ଶିହରଣ ଖେଳିଗଲା ।

୧୯୮୪ ମସିହା ଅକ୍ଟୋବର ମାସ ୨୫ ତାରିଖ ମୋ ପାଇଁ ଏକ ବିଶେଷ ଉଲ୍ଲେଖନୀୟ ଦିବସ । ଭାଷାରେ କହି ହେବ ନାହିଁ, ସେଦିନର ଆନନ୍ଦାନୁଭୂତି କିମ୍ବା ଆଜୀବନ ଭୁଲି ହେବନାହିଁ ତା'ର ମଧୁମୟ ସ୍ମୃତି ।

ସେଠାରେ ଥିବା ଉତ୍କଳମଣି ଗୋପବନ୍ଧୁ ପାଠାଗାର ପରିଚାଳନା କମିଟିର ନିମନ୍ତ୍ରଣ ପାଇ ତାଙ୍କର ଏକ ସାଂସ୍କୃତିକ କାର୍ଯ୍ୟକ୍ରମରେ ଯୋଗ ଦେବା ପାଇଁ ମୁଁ ଷଡ଼େଇକଳା ଯାଇଥିଲି । ମୋ ସହିତ ମୋର ସ୍ତ୍ରୀ ମଧ ଯାଇଥିଲେ । ପ୍ରାୟ ଏକଶହ କୋଡ଼ିଏ ବର୍ଷ ତଳେ ଏଇ ଷଡ଼େଇକଳା ଥିଲା ମୋ ପିତୃ ପୁରୁଷଙ୍କ ଲୀଳାଭୂମି, ଏଣୁ ଏହା ମୋ ପାଇଁ ଏକ ପବିତ୍ର ତୀର୍ଥସ୍ଥଳୀ ।

ମୋ ଗୋସେଇଁ ବାପା ବନମାଳୀ ଦାଶ ଏଠାକାର ଅଧିବାସୀ ଥିଲେ । ତାଙ୍କର ଯୁବାବସ୍ଥାରେ ସେ ଷଡ଼େଇକଳାର ଜଣେ ଉଚ୍ଚ କୋଟୀର ଛଉନୃତ୍ୟ ଶିକ୍ଷୀଥିଲେ । ମାତ୍ର ତତ୍କାଳୀନ ମୟୁରଭଞ୍ଜ ମହାରାଜା, ବାରିପଦାର ଛଉନୃତ୍ୟ ଗୁରୁ ରୂପେ ତାଙ୍କୁ ନିଯୁକ୍ତି ଦେବାରୁ ସେ ମୟୁରଭଞ୍ଜ ଚାଲି ଆସିଲେ । ମୟୂରଭଞ୍ଜ ମହାରାଜାତାଙ୍କର ନୃତ୍ୟ ପାରଦର୍ଶିତାରେ ମୁଗ୍ଧ ହୋଇ ବାଙ୍ଗିତରିପୋଷି ନିକଟସ୍ଥ ପେନ୍ଦୁମୁଣ୍ଡି ଗାଆଁ ଓ ବାରିପଦା ନିକଟସ୍ଥ ବୁଢ଼ୀଖମାରୀ ଶାସନର କେତେକ ଜମି ତାଙ୍କୁ ଦାନ କରିଥିଲେ । ଫଳରେ ମୋ ଗୋସେଇଁ ବାପା ବନମାଳୀ ଦାଶ ମୟୂରଭଞ୍ଜକୁ ନିଜର କର୍ମଭୂମି ରୂପେ ଗ୍ରହଣ କରି ଏଠାକାର ବାସିନ୍ଦା ହୋଇଗଲେ ।

ମୋ ପିତୃପୁରୁଷଙ୍କ ଜନ୍ମ ମାଟିରେ ପାଦଦେଇ ମୁଁ ନିଜକୁ ଧନ୍ୟ ମନେ କଲି । ସେଦିନ ସେଠାକାର ଲୋକମାନଙ୍କ ମୋ ପ୍ରତି ସ୍ନେହଆଦର ଦେଖି ମୁଁ ଅଭିଭୂତ ହୋଇଗଲି । ତା'ର ମାଟି, ପାଣି ପବନ ମୋତେ ଓଡ଼ିଶାର ମାଟି, ପାଣି ପବନଠାରୁ ବେଶି ସୁଖପ୍ରଦ ମନେ ହେଲା । ଓଡ଼ିଶାର ଯେ କୌଣସି ଲୋକଙ୍କୁ ସେଠାରେ ସମସ୍ତେ ନିଜର ପରିବାରର ଲୋକପରି ବ୍ୟବହାର କରନ୍ତି । ଧନ୍ୟ ତାଙ୍କର ଉତ୍କଳପ୍ରୀତି । ମୋର ମନେ ହେଲା, ଓଡ଼ିଶା ଲୋକଙ୍କଠାରୁ ବେଶୀ ଓଡ଼ିଆପ୍ରୀତି ରହିଛି ସେମାମନନଙ୍କଠାରେ । ସେଠାରେ ପହଞ୍ଚି ମୁଁ ପ୍ରଥମେ ଷଡ଼େଇକଳା ମାଟିକୁ ମୋର ଭକ୍ତିପୂତ ପ୍ରଣତି ଜଣାଇଥିଲି ।

ସମାଜ ସଂପାଦକ ଶ୍ରୀଯୁକ୍ତ ରାଧାନାଥ ରଥ ଓ ଉତ୍କଳ ସମ୍ମିଳନୀ ତରଫରୁ ଶ୍ରୀଯୁକ୍ତ ବସନ୍ତ କୁମାର ମିଶ୍ର ମଧ ସେଠାକୁ ନିମନ୍ତ୍ରିତ ହୋଇ ଥାଆନ୍ତି । ସଂଧ୍ୟାରେ ମୋତେ ଓ ରାଧାନାଥ ବାବୁଙ୍କୁ ବିରାଟ ଶୋଭାଯାତ୍ରାରେ ସଭାମଣ୍ଡପକୁ ନିଆଗଲା । ରାଧାନାଥ ବାବୁ ଉତ୍କଳମଣି ପାଠାଗାର ଓ ମୁଁ ଉତ୍କଳସସମ୍ମିଳନୀ ଉଦ୍‌ଘାଟନ କଲି ।

ସିଂହଭୂମି ଉତ୍କଳ ସଭାର ଅତ୍ୟନ୍ତ ପ୍ରଭାବଶାଳୀ ଓ ନେତୃବର୍ଗର ଅଧିକାଂଶ ସଦସ୍ୟ ସେଦିନ ସେଠାରେ ଉପସ୍ଥିତ ଥିଲେ । ବିହାରର ଲୋକସଭା ସଦସ୍ୟ ଶ୍ରୀଯୁକ୍ତ ଶିବୁ ସରେନ ଓ ତାଙ୍କ ସ୍ତ୍ରୀ (ଜଣେ ଉପମନ୍ତ୍ରୀ) ମଧ ସେଇ ସଭାରେ ଆସି ଯୋଗ ଦେଇଥିଲେ । ବିହାର ରାଜ୍ୟ ସରକାର, ଓଡ଼ିଆ ଭାଷା ଓ ସଂସ୍କୃତିର ସୁରକ୍ଷାପାଇଁ ନ୍ୟାଯୋଚିତ ଉପାନ୍ତ ଅଞ୍ଚଳରେ ଥିବା ବିଦ୍ୟାଳୟ ଗୁଡ଼ିକରୁ ଓଡ଼ିଆ ଶିକ୍ଷା ବ୍ୟବସ୍ଥାକୁ ଉଚ୍ଛେଦ କରିବା ପାଇଁ ଯଡ଼ଯନ୍ତ୍ର କରୁଥିବା ସମ୍ପର୍କରେ ବହୁ ଗୁରୁତର ଅଭିଯୋଗମମାନ ସେଠାରେ ଉପସ୍ଥାପିତ ହେଲା । ବହୁଲୋକ ସମାଗମରେ ସେଦିନର ଉକ୍ତ ସଭାକାର୍ଯ୍ୟ ଅତି ସଫଳତାର ସହିତ ସମାପ୍ତ ହେଲା ।

ସଭା ସରିଲାପରେ ମୁଁ ଓ ମୋର ସ୍ତ୍ରୀ ସେଠାକାର ଡ଼ାକ ବଙ୍ଗଳାରେ ସେଦିନ ରହିଲୁଁ । ତହିଁ ପରଦିନ ସେଠାରେ ଥିବା ଆମର ଅନ୍ୟାନ୍ୟ ବଂଶୀୟ ତଥା ଅତ୍ମୀୟ ଲେକଙ୍କ ସହିତ ସାକ୍ଷାତ କରି ଉପରଓ୍ୱାଁ ବେତନଟୀ ଫେରି ଆସିଲୁ ।

## କଲିକତାରେ ବାଚସ୍ପତି ସମ୍ମଳନୀ

ସେ ବର୍ଷ ବାଚସ୍ପତି ସମ୍ମିଳନୀ ତା ୨୯-୧୦-୮୪ ରୁ ତା ୩୧-୧୦-୮୪ ପର୍ଯ୍ୟନ୍ତ କଲିକତାରେ ଅନୁଷ୍ଠିତ ହେଲା । ତେଣୁ ଆମ ବିଧାନ ସଭାର ଉପାଧକ୍ଷ, ସେକ୍ରେଟେରୀ, ମୁଁ ଓ ମୋ ସ୍ତ୍ରୀ ୨୮ ତାରିଖରେ କଲିକତା ଯାଇ ରାତିରେ ଭିକ୍ଟୋରିଆ ହୋଟେଲରେ ରହିଲୁଁ । ଉକ୍ତ ସମ୍ମିଳନୀରେ ବିଧାନ ସଭା ସୁପରିଚାଳନା କ୍ଷେତ୍ରରେ ଉପୁଜୁଥିବା କେତେକ ସଙ୍କଟର ସମାଧାନ ସମ୍ପର୍କରେ ଅତି ଗୁରୁତ୍ୱ ପୂର୍ଣ୍ଣ ବିଷୟରେ ଆଲୋଚନନା କରାଗଲା । ଲୋକସଭା, ରାଜ୍ୟସଭା ଏବଂ ରାଜ୍ୟ କାଉନସିଲର ଅଧକ୍ଷ (Presiding Officer) ଉପାଧକ୍ଷ ଓ ସେକ୍ରେଟେରୀମାନେ ଏହି ଆଲୋଚନାରେ ଅଂଶ ଗ୍ରହଣ କରିଥିଲେ । ଲୋକସଭା ଅଧକ୍ଷ ଡ଼କ୍ଟର ବଳରାମ ଝାକର ଏହାକୁ ଉଦ୍‌ଘାଟନ କରିଥିଲେ ଓ ବୈଠକରେ ସଭାପତିତ୍ୱ କରିଥିଲେ ।

ପଶ୍ଚିମବଙ୍ଗ ବିଧାନ ସଭାର ଅଧକ୍ଷ ମିଃ ହଲିମ ସ୍ୱାଗତ ଭାଷଣ ଦେଇଥିଲେ । Presiding Officer's Conference ରେ ଏହା ହୋଇଥିଲା ମୋର ପ୍ରଥମ ଯୋଗଦାନ । ୨୯ ତାରିଖ ଓ ୩୦ ତାରିଖ ଦୁଇଦିନ ଧରି ଚାଲିଥିବା ଆଲୋଚନାରେ ମୁଁ ଭାଗନେଇଥିଲି । ୩୧ ତାରିଖ ମୁଁ ସାମାନ୍ୟ ଅସୁସ୍ଥ ଥିଲି । ସେହିଦିନ ସକାଳୁ ହଠାତ୍ ଶ୍ରୀମତୀ ଇନ୍ଦିରା ଗାନ୍ଧୀଙ୍କ ନିଧନ ଖବର ଶୁଣି ମୁଁ ସ୍ତମ୍ଭୀଭୂତ ହୋଇଗଲି । ସମ୍ମିଳନନୀ ସେଥିପାଇଁ ବନ୍ଦ ହୋଇଗଲା । ଭାରତର ଅନ୍ୟାନ୍ୟ ଅଞ୍ଚଳପରି କଲିକତା ସହରରେ ମଧ ସେଦିନ ପୋଡ଼ାଜଳା ଓ ଦଙ୍ଗାଗୋଳ ଆରମ୍ଭ ହୋଇଗଲା । କୋଳାହଳମୟ ବ୍ୟସ୍ତ କଲିକତା ନଗରୀର ଜନାକୀର୍ଣ୍ଣ ରାସ୍ତା, ଜନଶୂନ୍ୟ ହୋଇ ପଡ଼ିଲା । ଆମ୍ଭେମାନେ ଯିଏ ଯେଉଁଠାରେ ଥିଲୁ ସେହିଠାରେ ହିଁ

ଆବଦ୍ଧ ହୋଇ ରହିଗଲୁଁ । ଗାନ୍ଧୀଙ୍କର ଅନେକ କାର୍ଯ୍ୟକୁ ମୁଁ ପସନ୍ଦ କରୁନଥିଲି ତଥାପି ଏଭଳି ଶୋଚନୀୟଭାବେ ତାଙ୍କୁ ନିହତ କରାଯିବା ଘଟଣାକୁ ମୁଁ ସହ୍ୟ କରିପାରୁ ନ ଥିଲି । ବିଶେଷ କରି ପଞ୍ଜାବ ଓ ଆସାମ ଆଦି ରାଜ୍ୟରେ ସନ୍ତ୍ରାସବାଦ କାର୍ଯ୍ୟକଳାପ ଅତି ଉଗ୍ରରୂପ ଧାରଣ କରିଥିବା ବେଳେ ଓ ସମଗ୍ର ଦେଶରେ ସଂହତି ଓ ଅଖଣ୍ଡତା ବିପନ୍ନ ହୋଇଥିବା ବେଳେ ଶ୍ରୀମତୀ ଗାନ୍ଧୀଙ୍କ ହତ୍ୟା ଆମପାଇଁ ଅତ୍ୟନ୍ତ ଦୁର୍ଭାଗ୍ୟ ଜନକ ଥିଲା ।

ନଭେମ୍ବର ଏକ ତାରିଖ ଦିନ ମୁଁ ସୁସ୍ଥ ହୋଇଗଲି । ସେଦିନ ଆମେ ସମସ୍ତେ ଟ୍ରେନ ଯୋଗେ ଭୁବନେଶ୍ୱର ଫେରି ଆସିଲୁ । ଶ୍ରୀମତୀ ଗାନ୍ଧୀ, ତାଙ୍କ ମୃତ୍ୟୁର ପୂର୍ବଦିନ ଓଡ଼ିଶା ଆସି ଭୁବନେଶ୍ୱରର ସଭାରେ ଭାଷଣ ଦେଇ ଫେରିଲା ପରେ ତାଙ୍କର ଏହି ଶୋଚନୀୟ ମୃତ୍ୟୁ ଘଟିଥିବାରୁ ଓଡ଼ିଶା ବାସୀଙ୍କ ପକ୍ଷରେ ଏହା ଅତି ଦୁଃଖଦାୟକ ଘଟଣା ହୋଇ ରହିଗଲା ।

ଶ୍ରୀମତୀ ଗାନ୍ଧୀଙ୍କ ଜ୍ୟେଷ୍ଠପୁତ୍ର ଶ୍ରୀ ରାଜୀବ ଗାନ୍ଧୀଙ୍କୁ ସଂଗେ ସଂଗେ ପ୍ରଧାନମନ୍ତ୍ରୀ ପଦରେ ବସାଇ ଶ୍ରୀମତୀ ଗାନ୍ଧୀଙ୍କ ଶେଷ ସଂସ୍କାର କରାଗଲା । ନେହେରୁଙ୍କ ଅନ୍ତେ ଇନ୍ଦିରା ଓ ଇନ୍ଦିରାଙ୍କ ଅନ୍ତେ ରାଜୀବ ପ୍ରଧାନମନ୍ତ୍ରୀ ପଦରେ ଅଧିଷ୍ଠିତ ହେବା ଯୋଗୁଁ ରାଜା ମହାରାଜାଙ୍କ ଭଳି ଭାରତୀୟ ଗଣତନ୍ତ୍ରରେ ଏକ ପାରିବାରିକ ଶାସନ ପ୍ରଚଳନ ହେଲା ବୋଲି ଅନେକେ ସମାଲୋଚନା କଲେ । ମାତ୍ର ସେତେବେଳେ ଆତଙ୍କବାଦୀ ଓ ବିଚ୍ଛିନ୍ନତା ବାଦୀ ମାନେ ଭାରତରେ ଯେଭଳି ନାରକୀୟ କାଣ୍ଡ ଘଟାଉଥିଲେ, ଯଦି ରାଜୀବଗାନ୍ଧୀଙ୍କୁ ପ୍ରଧାନମନ୍ତ୍ରୀ କରାଯାଇ ନଥାନ୍ତା ତେବେ ଭାରତର ଅଖଣ୍ଡତା ବଜାୟ ରଖିବା ହୁଏତ କଷ୍ଟକର ହୋଇ ଥାଆନ୍ତା ।

ନେହେରୁ ପରିବାର ପ୍ରତି କେବଳ କଂଗ୍ରେସ ଦଳର ନୁହେଁ, ଭାରତର ଜନସାଧାରଣଙ୍କର ଯେଉଁ ଆନୁଗତ୍ୟ ଥିଲା, ରାଜୀବ ତାହାରି ପ୍ରଭାବରେ ପ୍ରଧାନମନ୍ତ୍ରୀ ହୋଇ ଦେଶକୁ ଦୁର୍ଦ୍ଦିନରୁ ରକ୍ଷା କରିପାରିଥିଲେ । କଂଗ୍ରେସ ଦଳର ବହୁ ଦୋଷ ଦୁର୍ବଳତା ସତ୍ୱେ ନେତୃତ୍ୱ ପ୍ରତି କର୍ମୀମାନଙ୍କର ସମ୍ପୂର୍ଣ୍ଣ ଆନୁଗତ୍ୟ ଏହି ଦଳର ଏକ ବୈଶିଷ୍ଟ୍ୟ । ଅବଶ୍ୟ ଏ ପ୍ରକାର ଆନୁଗତ୍ୟ କୌଣସି ନୀତି ଓ ଆଦର୍ଶ ଭିତ୍ତିକ ନୁହେଁ ତେଣୁ ଏହାର ସୁଦୂର ପ୍ରସାରୀ ପରିଣତି ଶୁଭସୂଚକ ବୋଲି ମଧ୍ୟ କୁହାଯାଇ ନ ପାରେ । ଭାରତର ଅନ୍ୟ କୌଣସି ରାଜନୈତିକ ଦଳ ଏକକ ଭାବେ ହେଉ କିମ୍ବା ମିଳିତ ଭାବେ ହେଉ ଏ ପର୍ଯ୍ୟନ୍ତ କଂଗ୍ରେସର ସ୍ଥାନ ପୂରଣ କରିବା ପାଇଁ ସଂଗଠିତ ହୋଇ ପାରି ନ ଥିବାରୁ ଭାରତୀୟ ରାଜନୀତିରେ କଂଗ୍ରେସର ଆଧିପତ୍ୟ ଆହୁରି କିଛିବର୍ଷ ଚାଲିବାର ସମ୍ଭାବନା ରହିଛି । ଗତ ୧୯୭୫ ମସିହାରେ ଇନ୍ଦିରାଗାନ୍ଧୀଙ୍କ ଦ୍ୱାରା ଜରୁରୀ କାଳୀନ ପରିସ୍ଥିତି ଜାରୀ କରାଯିବା ପରେ କେତେକ ବିରୋଧୀ ଦଳର ମିଶ୍ରଣରେ ଗଠିତ ଜନତାଦଳ, ସର୍ବୋଦୟ ନେତା ଶ୍ରୀଯୁକ୍ତ ଜୟପ୍ରକାଶ ନାରାୟଣଙ୍କ ଆଶୀର୍ବାଦ ଲାଭ କରି ଶ୍ରୀ ମୋରାରଜୀ ଦେଶାଇଙ୍କ ନେତୃତ୍ୱରେ ଭାରତର ଶାସନ ଦାୟିତ୍ୱ ଗ୍ରହଣ କଲେ । ମାତ୍ର ନେତାଙ୍କ ଭିତରେ କ୍ଷମତା କନ୍ଦଳ ପ୍ରବଳ ହେବାଯୋଗୁଁ ମାତ୍ର ଦୁଇବର୍ଷପରେ ଜନତା ସରକାର ଆପେ ଆପେ ଭାଙ୍ଗିପଡ଼ିଲା । ଫଳରେ ବିରୋଧି ଦଳକୁ ଆଉଥରେ ସୁଯୋଗ ମିଳିବା କଷ୍ଟକର ହେଲା । ଅବଶ୍ୟ ପଶ୍ଚିମବଙ୍ଗ, କର୍ଣ୍ଣାଟକ ଆନ୍ଧ୍ର ପ୍ରଭୃତି ରାଜ୍ୟରେ ଅଣକଂଗ୍ରେସୀ ଶାସନ ପ୍ରତିଷ୍ଠିତ ହୋଇଥିଲା । କିନ୍ତୁ କେନ୍ଦ୍ରୀୟ ସ୍ତରରେ ସେ ସମ୍ଭାବନା ରହିଲା ନାହିଁ ।

## ଭାରତର ଅଷ୍ଟମ ସାଧାରଣ ନିର୍ବାଚନ

ଇନ୍ଦିରା ଗାନ୍ଧୀଙ୍କ ଆକସ୍ମିକ ମୃତ୍ୟୁ ଫଳରେ ଭାରତର ଭବିଷ୍ୟତର ସ୍ଥିରତା ସମ୍ପର୍କରେ ଉପୁଜିଥିବା ଆଶଙ୍କା ରାଜୀବଙ୍କ ଦୂରଦୃଷ୍ଟି ସମ୍ପନ୍ନ ପ୍ରଧାନମନ୍ତ୍ରୀତ୍ୱ ଯୋଗୁଁ ଦୂର ହୋଇ ପାରିଥିଲା । କେତେକ ବିଦେଶୀ ଶକ୍ତିଙ୍କର ସହାୟତାରେ ଭାରତର ଆନ୍ତର୍ଘାତି କାର୍ଯ୍ୟ ପ୍ରୋତ୍ସାହନ ପାଇବାର ସୁଯୋଗ ଖୋଜୁଥିଲା ବେଳେ, ରାଜୀବ ଗାନ୍ଧୀ ୧୯୮୪ ମସିହା ଡ଼ିସେମ୍ବର ମାସ ଶେଷ ସପ୍ତାହ ବେଳକୁ ସାଧାରଣ ନିର୍ବାଚନ କରିବାର ସାହସିକ ପଦକ୍ଷେପ ଗ୍ରହଣ କରି ଦେଶରେ କଂଗ୍ରେସ ଶାସନର

ସ୍ଥିତି ସୁଦୃଢ଼ କରିଥିଲେ । ଇନ୍ଦିରାଙ୍କ ମୃତ୍ୟୁର ମାତ୍ର ଦୁଇମାସ ପରେ ସାଧାରଣ ନିର୍ବାଚନ ହେବାରୁ ଜନ ସାଧାରଣଙ୍କର ଅନୁକମ୍ପା ଜାତୀୟ କଂଗେସକୁ ମିଳିପାରିଲା ଏବଂ ନିବାଚନରେ ବିରୋଧିଦଳ ଗୁଡ଼ିକର ଅତି ଶୋଚନୀୟ ପରାଜୟ ଘଟିଲା । ଇନ୍ଦିରାଗାନ୍ଧୀ ବଞ୍ଚି ରହି ୧୯୮୫ ଫେବୃୟାରୀ ମାସରେ ଏହି ନିର୍ବାଚନ ନିର୍ଦ୍ଧାରିତ ସମୟ ଅନୁଯାୟୀ କରାଇଥିଲେ ଜାତୀୟ କଂଗ୍ରେସକୁ ହୁଏତ ଏତେ ସୁଫଳ ମିଳିନଥାନ୍ତା ।

ଏହି ସାଧାରଣ ନିର୍ବାଚନରେ ବିଧାନ ସଭା ଗୁଡ଼ିକୁ ଅନ୍ତର୍ଭୁକ୍ତ ନ କରିବା ରାଜୀବଙ୍କର ବୁଦ୍ଧିମତ୍ତାର ପରିଚାୟକ ଥିଲା । ୧୯୮୦ ମସିହା ନିର୍ବାଚନ ଅପେକ୍ଷା ୧୯୮୪ରେ ଉକ୍ତ ନିର୍ବାଚନନରେ କଂଗ୍ରେସ ବହୁ ଅଧିକ ସ୍ଥାନରେ ବିଜୟୀ ହେଲା । ଓଡ଼ିଶାର ସର୍ବମୋଟ ୨୧ଟି ସ୍ଥାନରୁ ୨୦ଟି ସ୍ଥାନରେ କଂଗ୍ରେସ ଜୟଯୁକ୍ତ ହୋଇଥିଲା ।

ଆମ ମୟୂରଭଞ୍ଜ ନିର୍ବାଚନ ମଣ୍ଡଳୀର ଜନତା ପ୍ରାର୍ଥୀ, ପୂର୍ବତନ ଆଇ.ଏ.ଏସ. କର୍ମଚାରୀ ଶ୍ରୀ ଭାଗେ ଗୋବର୍ଦ୍ଧନଙ୍କୁ ହରାଇ କଂଗ୍ରେସ ପ୍ରାର୍ଥୀ ଶ୍ରୀ ସିଦ୍ଧିଲାଲ ମୁର୍ମୁ ବହୁ ଅଧିକ ଭୋଟ ପାଇ ବିଜୟୀ ହେଲେ । ମୟୂରଭଞ୍ଜର ପାର୍ଲିଆମେଣ୍ଟ ନିର୍ବାଚନ ମଣ୍ଡଳୀ ଅନ୍ତର୍ଭୁକ୍ତ ୭ଟି ବିଧାନସଭା ନିର୍ବାଚନ ମଣ୍ଡଳୀରୁ ସେଥର କଂଗ୍ରେସ ପ୍ରାର୍ଥୀ ବହୁ ଅଧିକ ଭୋଟ ପାଇ ବିଜୟ ଲାଭ କଲେ । ବାରିପଦା ନିର୍ବାଚନ ମଣ୍ଡଳୀର ନିର୍ବାଚନ ଦାୟିତ୍ୱରେ ମୁଁ ରହିଲେ ମଧ ବାଙ୍ଗିରୀପୋଷୀ ଓ ଅନ୍ୟ କେତୋଟି ନିର୍ବାଚନ କାମ କରିଥିଲି । ମଣ୍ଡଳୀରେ କଂଗ୍ରେସପ୍ରାର୍ଥୀ ନିକଟତମ ପ୍ରାର୍ଥୀଙ୍କଠାରୁ କୋଡ଼ିଏ ହଜାର ସାତଶହ ଅଧିକ ଭୋଟ ପାଇ ଜୟଯୁକ୍ତ ହେଲେ । ପୂର୍ବରୁ ଏହି ଆସନରୁ ଏତେ ଅଧିକ ଭୋଟରେ କୌଣସି ପ୍ରାର୍ଥୀ ଜିଣି ନ ଥିଲେ ।

## ସପ୍ତମ ବିଧାନ ସଭାର ସଦସ୍ୟ ଭାବେ ମୋର ସାଫଲ୍ୟ

୧୯୮୦ରେ କଂଗ୍ରେସ ଦଳ ତରଫରୁ ମୁଁ ବିଧାନ ସଭାକୁ ନିର୍ବାଚିତ ହେବାପରେ Undertaking Committee ର ସଭାପତି ହେଲି । ସଭାପତି ହେବାର ମାତ୍ର ଛ ମାସ ମଧ୍ୟରେ ବିଭିନ୍ନ ସରକାରୀ undertaking. ଉଦ୍ୟୋଗ ଗୁଡ଼ିକୁ ତନଖି କରିବା ଫଳରେ ସେଗୁଡ଼ିକର ଅନେକ ଦୋଷତ୍ରୁଟି ଧରାପଡ଼ିଲା । ମୋର ଏ ପ୍ରକାର କାର୍ଯ୍ୟ ଫଳରେ ସେ ସମସ୍ତ ବାଣିଜ୍ୟ ଓ ଶିଳ୍ପାନୁଷ୍ଠାନ cer) ଉଗୁଡ଼ିକରେ ଆତଙ୍କ ସୃଷ୍ଟି ହୋଇଥିଲା । ଏବଂ ତାର ପରିଣତି ସ୍ୱରୂପ ୧୯୮୧ ମସିହାରେ ଗଠିତ ହୋଇଥିବା Public Undertaking Committee ରେ ବା ସେ ପ୍ରକାର ଅନ୍ୟ କୌଣସି ବିଧାନସଭା କମିଟିରେ ମୋତେ ଆଉ ରଖାଗଲା ନାହିଁ । କୌଣସି କମିଟିରେ ନ ଥିଲେ ମଧ ବିଧାନ ସଭାର ଜଣେ ବରିଷ୍ଠ ସଦସ୍ୟ ଭାବେ ସରକାରୀ ଓ ବିରୋଧି ଦଳର ସଦସ୍ୟ ମାନେ, ଏପରିକି ମନ୍ତ୍ରୀମାନେ ମଧ ମୋତେ ଗ୍ରହଣ କରୁଥିଲେ । ଅନେକଥର ପରିସ୍ଥିତିକୁ ସମ୍ଭାଳିବା ପାଇଁ ମୋତେ ବିଧାନ ସଭାର ଚେୟାରକୁ ମଧ ଯିବାକୁ ପଡୁଥିଲା । ଏବଂ ୧୯୮୪ ମସିହାରେ ମୁଁ ସର୍ବସମ୍ମତିକ୍ରମେ ବିଧାନସଭାର ଅଧକ୍ଷ ଭାବେ ନିର୍ବାଚିତ ହେଲି ।

ମନ୍ତ୍ରୀ ନ ହୋଇ ମଧ ୧୯୮୦ ରୁ ୧୯୮୪ ଏହି ୫ ବର୍ଷ ମଧରେ କେବଳ ମୋ ନିର୍ବାଚନ ମଣ୍ଡଳୀ ନୁହେଁ ସମଗ୍ର ମୟୂରଭଞ୍ଜ ଜିଲ୍ଲାରେ ଉଠାଜଳସେଚନ ଯୋଜନା ଅଧିକ କାର୍ଯ୍ୟକାରୀ ହେଉଥିଲା । ଏହି ସମୟ ମଧରେ ସର୍ବମୋଟ ୩୦୦ଟି ଉଠାଜଳସେଚନ କାର୍ଯ୍ୟକାରୀ ହୋଇଥିବା ସ୍ଥଳେ ମୋ ନିର୍ବାଚନ ମଣ୍ଡଳୀ (ବାରିପଦା) ରେ ୧୦୦ରୁ ଅଧିକ କାର୍ଯ୍ୟକାରୀ ହୋଇଥିଲା । ମୋ ନିର୍ବାଚନ ମଣ୍ଡଳୀର ଶୁଳିଆପଦା ବ୍ଲକରେ ମହାନ୍ତି ନଦୀ ଉପରେ,ପାକଟିଆ ଓ ମହାବିଲା ଠାରେ ଏବଂ ଗୁନଫାନଳ ଉପରେ ଗୁହାଳଡ଼ିହଠାରେ, ମୋରଡ଼ା ବ୍ଲକର ମୁରୁଡ଼ିନାଳ ଉପରେ ୪ଟି ପୋଲ ହାରାହାରୀ ୮୦ ଲକ୍ଷ ଟଙ୍କାରେ ତିଆରି ହୋଇ ପାରିଥିଲା ଓ ଜମ୍ବୀରାନଦୀ ଉପର ଶିଳନ୍ଦାଠାରେ ଏକ ପୋଲ ହେବା ପାଇଁ ଷଷ୍ଠ ଯୋଜନାର ଅନ୍ତର୍ଭୁକ୍ତ ହେଲା । ଏଥିପୂର୍ବରୁ ଶୁଳିଆପଦା ଓ ମୋରଡ଼ାକୁ ଯିବାପାଇଁ ସ୍ଥାୟୀରାସ୍ତା ନ ଥିଲା ।

ଏତଦ ବ୍ୟତୀତ ଶିମିଳି ପାଳରେ S.F.D.C. ଦ୍ୱାରା ହେଉଥିବା ଗଛକଟା ସମ୍ପୂର୍ଣ୍ଣ ଭାବେ ବନ୍ଦ କରାଯିବାର ବ୍ୟବସ୍ଥା ହେଲା ଓ ସୁବର୍ଣ୍ଣ ରେଖା ଜଳସେଚନ ଯୋଜନା ୧୯୬୯ ମସିହାରୁ କାର୍ଯ୍ୟକାରୀ କରିବା ପାଇଁ ଓଡ଼ିଶା ଓ ବିହାର ମଧ୍ୟରେ ଏବଂ ପରେ ପଶ୍ଚିମବଙ୍ଗ ସରକାରଙ୍କ ମଧ୍ୟରେ ଚୁକ୍ତି ହୋଇଥିଲେ ହେଁ ଓଡ଼ିଶା ବାବଦ କାର୍ଯ୍ୟ ଆରମ୍ଭ ହୋଇ ପାରି ନ ଥିଲା । ଅକ୍ଲାନ୍ତ ଉଦ୍ୟମ କରି ବିଧାନ ସଭାରେ ଏ ସମ୍ପର୍କରେ ଆଲୋଚନା କରି ବନ୍ଦ ରହିଥିବା ଉକ୍ତ କାର୍ଯ୍ୟକୁ ଆରମ୍ଭ କରାଯାଇଥିଲା ।

## ଅଷ୍ଟମ ଥର ପାଇଁ ୧୯୮୫ରେ ବିଧାନ ସଭାକୁ ନିର୍ବାଚିତ

ନିର୍ମଳ ଭାବମୂର୍ତ୍ତି ନ ଥିବା ପୂର୍ବତନ କେନ୍ଦ୍ରମନ୍ତ୍ରୀ ଓ ଲୋକସଭାର ସଦସ୍ୟ ମାନଙ୍କୁ ନିର୍ବାଚନରେ ପ୍ରାର୍ଥୀ ନ କରାଇବାକୁ ରାଜୀବ ଗାନ୍ଧୀ ନିଷ୍ପତ୍ତି ନେଲେ । ଏହି ନୀତିକୁ ଭାରତର ଜନସାଧାରଣ ବିଶେଷ ସମର୍ଥନ କରିବାରୁ ରାଜ୍ୟର ବିଧାନ ସଭା ନିର୍ବାଚନ ମାନଙ୍କରେ ମଧ୍ୟ ଏହି ନିୟମକୁ ଦୃଢ଼ ଭାବରେ ଅନୁସରଣ କରାଗଲା ଫଳରେ ୧୯୮୫ରେ ହୋଇଥିବା ବିଧାନ ସଭା ନିର୍ବାଚନ ବେଳେ ପୂର୍ବତନ ମନ୍ତ୍ରୀ ଓ ବିଧାନ ସଭାର ସଦସ୍ୟ ମିଶି ପ୍ରାୟ ୫୫ ଜଣଙ୍କୁ କଂଗ୍ରେସରୁ ଟିକେଟ ମିଳିଲା ନାହିଁ । ଏହାଦ୍ୱାରା ବସନ୍ତ କୁମାର ବିଶ୍ୱାଳଙ୍କ ଭଳି ଶକ୍ତିଶାଳୀ ମନ୍ତ୍ରୀ ମଧ୍ୟ ନିର୍ବାଚନ ଲଢ଼ିବାରୁ ବାଦ ପଡ଼ିଲେ ।

ଏ ନିର୍ବାଚନରେ ମୋତେ ମଧ୍ୟ ବାରିପଦା ନିର୍ବାଚନ ମଣ୍ଡଳୀରୁ ପ୍ରାର୍ଥୀ ନ କରାଇବାପାଇଁ ବାରିପଦାର କେତେକ କଂଗ୍ରେସ ଲୋକ ପ୍ରବଳ ଉଦ୍ୟମ ଚଳାଇ ଶେଷରେ ନିରାଶ ହୋଇଥିଲେ । ପୂର୍ବରୁ ହୋଇ ଯାଇଥିବା ଲୋକସଭା ନିର୍ବାଚନରେ ବାରିପଦା ନିର୍ବାଚନ ମଣ୍ଡଳୀର ଫଳାଫଳ ଭଲ ହୋଇଥିବାରୁ ଏବଂ ଏହି ନିର୍ବାଚନର ପରିଚାଳନା ଭାର ମୋ ଉପରେ ଥିବାରୁ, ମୋତେ ନିର୍ବାଚନ ପାଇଁ ପ୍ରାର୍ଥୀ ହେବାର ବିରୋଧ କରୁଥିବା ସମସ୍ତ ଶକ୍ତି ବିଫଳ ହେଲା ଓ ମୁଁ ବାରିପଦା ନିର୍ବାଚନ ମଣ୍ଡଳୀପାଇଁ ପୁଣି ଥରେ ପ୍ରାର୍ଥୀ ହେଲି । ସେଥର ମୟୂରଭଞ୍ଜ ମହାରାଜାଙ୍କ ତରଫରୁ ଲାଲ ସାହେବ ଆଉ ପୂର୍ବପରି ପ୍ରାର୍ଥୀ ହେଲେ ନାହିଁ, କି ବିରୋଧି ଦଳରେ ମଧ୍ୟ ସମକକ୍ଷ ପ୍ରାର୍ଥୀ ନ ଥିଲେ । ଶୁଳିଆପଦା ଅଞ୍ଚଳର ଭଞ୍ଜ ପୁରାଣ ଜାତିର ଲୋକେ ''ଭଞ୍ଜ ସମ୍ମିଳନୀ'' ନାମରେ ଏକ ଜାତିଆଣ ସଂଗଠନ କରି ସେହି ଅଞ୍ଚଳର ଜଣେ ଯୁବକଙ୍କୁ ପ୍ରାର୍ଥୀ କରାଇଥିଲେ । ଶୁଳିଆପଦା ଥାନା ଅଞ୍ଚଳରେ ଏହି ଜାତିର ଲୋକେ ଅଧିକ ବସବାସ କରୁଥିବାରୁ ଜାତିଆଣ ପ୍ରଚାରର ପ୍ରଭାବ ସେଠାରେ ପଡ଼ିଥିଲା । ମାତ୍ର ମୁରୁଡ଼ା ଥାନା, ବାରିପଦା ଥାନା ବାରିପଦା ସହର ଅଞ୍ଚଳରେ ତା'ର କୌଣସି ପ୍ରଭାବ ପଡ଼ି ନ ଥିଲା ନିର୍ବାଚନ ଫଳାଫଳ ମୋ ସପକ୍ଷରେ ଗଲା । ନିକଟତମ ଭଞ୍ଜ ପୁରାଣ ଜାତିର ପ୍ରାର୍ଥୀଙ୍କ ଠାରୁ ୧୭ ହଜାର ଅଧିକ ଭୋଟ ମୋତେ ମିଳିଥିଲା । ପୂର୍ବରୁ ୭ଥର ନିର୍ବାଚିତ ହୋଇଥିଲେ ହେଁ ଅଷ୍ଟମ ନିର୍ବାଚନରେ ମୋତେ ସର୍ବାଧିକ ଭୋଟ ମିଳିଥିଲା । କେବଳ ପୁରାଣ ଜାତି ସମର୍ଥିତ ପ୍ରାର୍ଥୀଙ୍କ ବ୍ୟତୀତ ଅନ୍ୟ ସମସ୍ତ ପ୍ରାର୍ଥୀମାନେ ଅମାନତ ହରାଇଥିଲେ ।

ମୋ ନିଜ ନିର୍ମାଚନ ମଣ୍ଡଳୀ ବାରିପଦାକୁ ଛାଡ଼ି, ଉଦଳା, ଖୁଣ୍ଟା, ବୈଶିଙ୍ଗା ଓ ବାଙ୍ଗିରୀପୋଷି ଆଦି ନିର୍ବାଚନ ମଣ୍ଡଳୀ ମାନଙ୍କରୁ ମଧ୍ୟ କଂଗ୍ରେସ ପ୍ରାର୍ଥୀଙ୍କ ବିଜୟଲାଭ ପାଇଁ ମୋତେ ସମୟଦେବାକୁ ପଡ଼ିଥିଲା । ଓଡ଼ିଶାରେ ଏଥର ମଧ୍ୟ ପୂର୍ବପରି କଂଗ୍ରେସ ୧୧୭ଟି ଆସନ ଲାଭକରି ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକଙ୍କ ନେତୃତ୍ୱରେ ମନ୍ତ୍ରୀମଣ୍ଡଳ ଗଠନ କଲା । କିନ୍ତୁ ମୟୂରଭଞ୍ଜର ସର୍ବମୋଟ ୧୦ଟି ସ୍ଥାନରୁ ଏଥର ୮ ଜଣ ପ୍ରାର୍ଥୀ ତାଙ୍କର ନିକଟତମ ପ୍ରାର୍ଥୀଙ୍କଠାରୁ ବହୁ ଅଧିକ ଭୋଟ ବ୍ୟବଧାନରେ ବିଜୟଲାଭ କଲେ । କିନ୍ତୁ ମନ୍ତ୍ରୀମଣ୍ଡଳରେ କୌଣସି ମୟୂରଭଞ୍ଜ ପ୍ରାର୍ଥୀଙ୍କୁ ସ୍ଥାନ ନ ମିଳିବାରୁ ଓଡ଼ିଶାର ସବୁ ଅଞ୍ଚଳର ଲୋକଙ୍କ ମନରେ ଅସନ୍ତୋଷ ପ୍ରକାଶ ପାଇଥିଲା । ଏଥର ବିଧାନସଭାକୁ ଶ୍ରୀ ଶ୍ରଦ୍ଧାକର ସୁପକାରଙ୍କ ଭଳି ଅନ୍ୟତମ ଯୋଗ୍ୟ ବ୍ୟକ୍ତି ନିର୍ବାଚିତ ହୋଇଥିବାରୁ, ମନ୍ତ୍ରୀମଣ୍ଡଳରେ ଅନ୍ତତଃ ସେ ଓ ମୁଁ ସ୍ଥାନ ପାଇବୁ ବୋଲି ସମସ୍ତେ

ଭାବୁଥିଲେ । ଶେଷରେ ସେମାନଙ୍କୁ ନିରାଶ ହେବାକୁ ପଡ଼ିଥିଲା । ଏତଦ୍ ବ୍ୟତୀତ ପୂର୍ବ ମନ୍ତ୍ରୀମଣ୍ଡଳୀର କେତେକ ଦକ୍ଷ ସଦସ୍ୟଙ୍କୁ ଏଥରର ମନ୍ତ୍ରୀମଣ୍ଡଳରୁ ବାଦ୍‌ଦେଇ ଅନେକ ନୂତନ ସଦସ୍ୟଙ୍କୁ ମନ୍ତ୍ରୀ କରାଗଲା ଓ ସେମାନଙ୍କ କାର୍ଯ୍ୟ ଦକ୍ଷତା ଓ ଯୋଗ୍ୟତାକୁ ବିଚାର କଲେ ସେ ପର୍ଯ୍ୟନ୍ତ ଓଡ଼ିଶାରେ ଗଠିତ ହୋଇଥିବା ମନ୍ତ୍ରୀମଣ୍ଡଳ ଅତ୍ୟନ୍ତ ଦୁର୍ବଳ ଓ ଅପାରଗ ଥିଲା କହିଲେ ଅତ୍ୟୁକ୍ତି ହେବନାହିଁ ।

## ଏଥର ମଧ ବିଧାନସଭାର ଅଧକ୍ଷ ନିର୍ବାଚିତ

୧୯୮୫ ମାର୍ଚ୍ଚ ୬ ତାରିଖରେ ନିର୍ବାଚନ ଫଳ ପ୍ରକାଶ ପାଇ ମାର୍ଚ୍ଚ ୧୧ ତାରିଖରେ ମନ୍ତ୍ରୀମଣ୍ଡଳ ଗଠିତ ହେଲା । ମାତ୍ର ମାର୍ଚ୍ଚ ମାସ ଶେଷ ଆଡ଼କୁ ବିଧାନସଭା ବୈଠକ ଆହୂତ ହେଲା ଏବଂ ମୁଁ ଏଥର ମଧ ନିର୍ଦ୍ୱନ୍ଦରେ ଅଧକ୍ଷ ପଦକୁ ନିର୍ବାଚିତ ହେଲି । ବିଧାନସଭାରେ ବିରୋଧି ଦଳର ସଭ୍ୟସଂଖ୍ୟା ପୂର୍ବଭଳି ଅତି ନଗଣ୍ୟ ଥିଲା । ମାତ୍ର ଶ୍ରୀ ବିଜୁ ପଟ୍ଟନାୟକ ଏଥର ବିରୋଧିଦଳ ନେତା ହେବାରୁ ପୂର୍ବଥର ଅପେକ୍ଷା ଏ ବିଧାନ ସଭାର ଗୁରୁତ୍ୱ ବଢ଼ି ଯାଇଥିଲା । ମୋର ଦ୍ୱିତୀୟ ଥର ପାଇଁ ବିଧାନସଭାର ଅଧକ୍ଷ ଭାବେ ନିର୍ବାଚିତ ହେବାରେ ବିରୋଧିଦଳ ମଧ ସନ୍ତୋଷ ପ୍ରକାଶ କରିଥିଲେ ।

ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକଙ୍କ ନେତୃତ୍ୱରେ ନୂତନ ମନ୍ତ୍ରୀମଣ୍ଡଳ ଗଠନ ହେବାପରେ ପ୍ରଥମ ବର୍ଷର ଦୁଇଟି ଯାକ ବିଧାନସଭା ଅଧିବେଶନ ଅତ୍ୟନ୍ତ ସରଗରମ ହୋଇଥିଲା । ବିଶେଷ କରି ବିରୋଧିଦଳର ନେତା ବିଜୁପଟ୍ଟନାୟକଙ୍କର ମୁଖ୍ୟମନ୍ତ୍ରୀଙ୍କ ଉପରେ ଆକ୍ରମଣ କ୍ରମଶଃ ତୀବ୍ରତର ହୋଇ ଉଠୁଥିଲା । ଉଭୟଦଳର ଆକ୍ରମଣ ଓ ପ୍ରତିଆକ୍ରମଣର ପ୍ରଧାନ ଅସ୍ତ୍ରଥିଲା ଚରିତ୍ର ସଂହାର । ଏଣୁ ଉନ୍ନୟନ କାର୍ଯ୍ୟରେ ଅନ୍ତରାୟ ସୃଷ୍ଟି କରୁଥିବା ବିଭିନ୍ନ ଦୋଷ ତ୍ରୁଟି ଗୁଡ଼ିକର ପ୍ରତିକାର ପାଇଁ ଉପଯୁକ୍ତ ଧାନ ଦିଆଯାଇ ପାରୁ ନଥିଲା । ଅତି ଛୋଟ ଛୋଟ କଥାରେ ସ୍ୱାଧିକାର ପ୍ରଶ୍ନ ମୁଖ୍ୟମନ୍ତ୍ରୀଙ୍କ ଉଦ୍ଦେଶ୍ୟରେ ଆଗତ କରାଯାଉଥିଲା । ଏପରିକି ଦିନେ କଳାହାଣ୍ଡିର ମରୁଡ଼ି ସମ୍ପର୍କରେ ଆଲୋଚନା ବେଳେ ରାତ୍ରିପ୍ରାୟ ୧୦ଟା ବେଳେ ବିରୋଧିଦଳର ସଦସ୍ୟମାନେ ଅଧକ୍ଷଙ୍କର ମାଇକ୍ ଭାଙ୍ଗି ସରକାରୀ ଦଳ ଉପରକୁ ଫିଙ୍ଗିବା ଓ ବହୁ ସମୟରେ ବିରୋଧିଦଳର କେତେକ ସଭ୍ୟ ବିଧାନସଭା well ମଧକୁ ଚାଲି ଆସି ପାଟିତୁଣ୍ଡ କରିବାଭଳି ଅତି ଅପ୍ରୀତିକର ପରିସ୍ଥିତି ମଧ ଉପୁଜିଥିଲା ।

ବିଜୁପଟ୍ଟନାୟକ ଜଣେ ସର୍ବଭାରତୀୟ ନେତା ହୋଇଥିବାରୁ ତାଙ୍କ ଉପସ୍ଥିତିରେ ଏ ପ୍ରକାର ଅଶୋଭନୀୟ କାର୍ଯ୍ୟ ନ ହୋଇ ପୂର୍ବବର୍ଷ ଅପେକ୍ଷା ଏଥର ବିଧାନ ସଭାର ମାନ ବୃଦ୍ଧିହେବା କଥା ଯାହା ଚିନ୍ତା କରାଯାଉଥିଲା ସେଥିପାଇଁ ଆମକୁ ସମ୍ପୂର୍ଣ୍ଣ ନିରାଶ ହେବାକୁ ପଡ଼ିଲା ।

## ଶିମିଳିପାଳର ସୁରକ୍ଷା (ଜୀବମଣ୍ଡଳ ସୁରକ୍ଷା) ପାଇଁ ଜାତୀୟ ସମ୍ମିଳନୀ

ଶିମିଳିପାଳ ପର୍ବତମାଳା ଓ ସେଥିରେ ବସବାସ କରୁଥିବା ଜୀବଜନ୍ତୁଙ୍କର ସମ୍ପୂର୍ଣ୍ଣ ସୁରକ୍ଷା ବା Bio-sphere Reserve ପାଇଁ ଜାତୀୟ ସ୍ତରର ଏକ ସମ୍ମିଳନୀ ମୋ ସଭାପତିତ୍ୱରେ ୧୯୮୫ ମସିହା ମଇ ମାସ ୨୨ ଓ ୨୩ ତାରିଖ ଦୁଇଦିନ ଧରି ବାରିପଦାରେ ଅନୁଷ୍ଠିତ ହୋଇଥିଲା । ଓଡ଼ିଶାର ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀବଲ୍ଲଭ ପଟ୍ଟନାୟକ ଏହାକୁ ଉଦ୍‌ଘାଟନ କରିଥିଲେ । ଏତଦ୍‌ବ୍ୟତୀତ କେନ୍ଦ୍ର ପରିବେଶ ବିଭାଗ ରାଷ୍ଟ୍ରମନ୍ତ୍ରୀ ଶ୍ରୀବୀର ସେନ ଓ କେନ୍ଦ୍ରମନ୍ତ୍ରୀ ଶ୍ରୀ କାମାକ୍ଷାପ୍ରସାଦ ସିଂହଦେଓ ଯଥାକ୍ରମେ ମୁଖ୍ୟ ଅତିଥି ଓ ସମ୍ମାନିତ ଅତିଥିଭାବେ ଯୋଗ ଦେଇଥିଲେ । ମୟୂରଭଞ୍ଜର ମହାରାଜା ଶ୍ରୀ ପ୍ରଦୀପ ଚନ୍ଦ୍ର ଭଞ୍ଜଦେଓ ଅଭ୍ୟର୍ଥନା କମିଟିର ସଭାପତି ଥିଲେ । ଭାରତବର୍ଷର ବିଭିନ୍ନ ଅଞ୍ଚଳରୁ ତଥା ଓଡ଼ିଶାର ବହୁ ପରିବେଶବିତ୍ ଓ ଜଙ୍ଗଲ ବିଷାରଦ ଏଥିରେ ଯୋଗ ଦେଇଥିଲେ । ଶିମିଳିପାଳ ଓଡ଼ିଶା, ବିହାର ଓ ପଶ୍ଚିମବଙ୍ଗ ଆଦି ୩ଟି ରାଜ୍ୟର

ସୀମାନ୍ତବର୍ତ୍ତୀ ଏକ ଗୁରୁତ୍ୱପୂର୍ଣ୍ଣ ସ୍ଥାନରେ ଅବସ୍ଥାନ କରୁଥିବାରୁ ତାର ସୁରକ୍ଷା ପାଇଁ ତହିଁରେ ଜୈବମଣ୍ଡଳୀୟ ସୁରକ୍ଷା ଏକାନ୍ତ ଆବଶ୍ୟକ ବୋଲି ବିଶେଷଜ୍ଞମାନେ ମତ ପ୍ରକାଶ କରିଥିଲେ । ଏଣୁ ଭାରତରେ ପୂର୍ବରୁ କାର୍ଯ୍ୟକାରୀ ହେଉଥିବା ୧୩ ଟି ଯୋଜନା ପରେ ଏହାକୁ ଚତୁର୍ଦ୍ଦଶ ଯୋଜନା ରୂପେ Bio - sphere Reserve କାର୍ଯ୍ୟକ୍ରମର ଅନ୍ତର୍ଭୁକ୍ତ କରିବାକୁ ଏକ ପ୍ରସ୍ତାବ ଜରିଆରେ କେନ୍ଦ୍ର ସରକାରଙ୍କୁ ଅନୁରୋଧ କରାଯାଇଥିଲା ।

## ଦ୍ୱିତୀୟ ବିଦେଶ ଯାତ୍ରା (୧୯୮୯)

୧୯୮୯ ମସିହାରେ ମୋତେ ଦ୍ୱିତୀୟଥର ପାଇଁ ବିଦେଶଗ୍ରସ୍ତ କରିବାର ସୁଯୋଗ ମିଳିଲା । ଏଥର Common Wealth Parliamentary Conference କାନାଡ଼ାର ସାସ୍କାର୍ଟୁନ୍‌ରେ ଅନୁଷ୍ଠିତ ହେଲା ଏବଂ ଓଡ଼ିଶାର ପ୍ରତିନିଧି ଭାବରେ ମୋତେ ସେଥିରେ ଯୋଗ ଦେବାକୁ ପଡ଼ିଲା । ମାତ୍ର ଇତିପୂର୍ବରୁ ଏଇ ବିଦେଶ ଯାତ୍ରାର ପ୍ରସ୍ତୁତିପର୍ବ ଆରମ୍ଭ ହୋଇ ଯାଇଥିଲା । ଏହି ବିଦେଶ ଗ୍ରସ୍ତରେ ଯିବାକୁ ଥିବା ଭାରତୀୟ ସମସ୍ତ ପ୍ରତିନିଧି ତଥା Presiding Officer ଙ୍କର ଏକ ପ୍ରସ୍ତୁତି ବୈଠକ ୨୫.୮.୮୫ ତାରିଖରେ ଦିଲ୍ଲୀରେ ଅନୁଷ୍ଠିତ ହୋଇ ସେଥିରେ ଗ୍ରସ୍ତ କାର୍ଯ୍ୟକ୍ରମର ରୂପରେଖ ସଂପର୍କରେ ଆମକୁ ସୂଚନା ଦିଆଯାଇଥିଲା । ଭାରତ ସରକାରଙ୍କର ବିଭିନ୍ନ ବିଭାଗରେ ବିଶେଷଜ୍ଞମାନେ ସେଥିରେ ଯୋଗ ଦେଇ ନିଜ ନିଜ ବିଭାଗର ପୃଷ୍ଠଭୂମି ଉପରେ ଆଧାରିତ ଏକ ଚିଠା ପ୍ରସ୍ତୁତି କରି ବିଦେଶରେ ଦରକାର ପଡ଼ିଲେ ସେ ସମ୍ପର୍କରେ ଆଲୋଚନାର ସୁବିଧା ପାଇଁ ଆମକୁ ଦେଇଥିଲେ ।

ବିଧାନ ସଭାର ସେକ୍ରେଟେରୀଙ୍କ ଏଥର ମଧ୍ୟ ଦର୍ଶକ ହିସାବରେ ମୋ ସହିତ ଯିବାପାଇଁ ସରକାରୀ ଅନୁମୋଦନ ମଗାଯାଇ ଆମ ପାସପୋର୍ଟ ଓ ଭିସା ପାଇଁ ଦରଖାସ୍ତ କରାଗଲା । ଉଭୟଙ୍କର ଭିସା ଯୋଗାଡ଼ ହୋଇଗଲା ମାତ୍ରେ କେନ୍ଦ୍ରସରକାର ହଠାତ୍ ନୀତି ବଦଳାଇ ଦେବା ଫଳରେ ସେକ୍ରେଟେରୀଙ୍କ ପାଇଁ ବୈଦେଶିକ ମୁଦ୍ରା ନାମଞ୍ଜୁର ହେଲା । ମାତ୍ର ଯେହେତୁ ଭିସା ଯୋଗାଡ଼ ହୋଇ ସାରିଥିଲା, ବିଧାନସଭା ସେକ୍ରେଟେରୀ ଶ୍ରୀଯୁକ୍ତ ପୁରୋହିତ ମୋ ସହିତ ଗଲେ । ମାତ୍ର ତାଙ୍କର ଯାତାୟତ ଖର୍ଚ୍ଚ ସେ ନିଜେ ବହନ କରିଥିଲେ । ଏଣୁ ତାଙ୍କର ପାସପୋର୍ଟ ଯୋଗାଡ଼ ହୋଇଗଲା ।

ଆମେମାନେ ୨୮.୮.୮୫ ତାରିଖରେ ଦିଲ୍ଲୀ ଆନ୍ତର୍ଜାତୀକ ବିମାନ ବନ୍ଦରଠାରେ ଦିନ ୧୧ଟା ବେଳେ ପହଞ୍ଚିଲୁ । ସେଠାରୁ ଭାରତୀୟ ବିମାନ ଯୋଗେ ଇଉରୋପ ମହାଦେଶସ୍ଥିତ ଡେନ୍‌ମାର୍କର ରାଜଧାନୀ କୋପେନ୍ ହେଗେନ୍ ଅଭିମୁଖେ ଯାତ୍ରା କଲୁଁ ।

ବାଟରେ ପଶ୍ଚିମ ଜର୍ମାନୀର ଫ୍ରାଙ୍କ୍‌ଫୋର୍ଟଠାରେ ବିମାନ ବଦଳ ହେବାର ଥିଲା । କାରଣ ଏହା ଇଉରୋପର ଏକ ବଡ଼ ବିମାନଜଙ୍କସନ । ଦୈନିକ ସେଠାକୁ ପ୍ରାୟ ୪୦୦ ବିମାନ ଯାତାୟତ କରେ । ସେଠାରେ କିଛି ସମୟ ପାଇଁ ଅବତରଣ କରି ଆମେ ପ୍ରତୀକ୍ଷାଳୟରେ ଅପେକ୍ଷା କଲୁଁ । ସେଠାକାର ଭରତୀୟ Consul General ଓ ତାଙ୍କ ପତ୍ନୀ ଆସି ଆମ ସହିତ ଦେଖାକଲେ । ତାଙ୍କ ସହିତ କିଛି ସମୟ ଗପକରି କଟିଗଲା । ଏବଂ ଉପରଓଳି ୪ଟାରେ (ସେଠାକାର ସମୟ ଅନୁଯାୟୀ) ଅନ୍ୟ ଏକ ବିମାନରେ ଆମେ କୋପେନ୍ ହେଗେନ୍ ବାହାରିଲୁଁ । ସଂଧ ୭ଟାରେ ଯାଇ ସେଠାରେ ପହଂଚିଲୁ । ସେଠାରେ ଆମକୁ ଅପେକ୍ଷାକରି ରହିଥିବା ଭାରତୀୟ ଦୂତାବାସର ଜଣେ ଅଫିସର ଗାଡ଼ିରେ ଆମକୁ ତାଙ୍କ ଅଫିସ ପର୍ଯ୍ୟନ୍ତ ନେଇଗଲେ । ବିମାନ ବନ୍ଦରଠାରୁ ଦୂତାବାସ ଅଫିସକୁ ଯାଇଥିଲାବେଳେ ରାସ୍ତାର ଗୋଟିଏ ପାର୍ଶ୍ୱରେ ଏକ ସୁନ୍ଦର ହ୍ରଦର ଦୃଶ୍ୟ ଅତି ମନମୁଗ୍ଧକର ଥିଲା । ଏତଦ୍ ବ୍ୟତୀତ ଲେଥଲା ବନ୍ଦର ଏବଂ ହ୍ରଦ କୂଳରେ Mamaida Monument ମଧ୍ୟ ଦେଖିବାକୁ ପାଇଲୁ । ଅନ୍ୟଦେଶ ମାନଙ୍କରେ ଥିବା ଭାରତୀୟ ଦୂତାବାସ ଅପେକ୍ଷା ଏଠାରେ ଥିବା ଦୂତାବାସଟି ତୁଳନାତ୍ମକ ଭାବେ ଛୋଟଥିଲା । ସେଠାରେ ମୋତେ ମାତ୍ର ଗୋଟିଏ ଦିନର ଭତ୍ତା ମିଳିଲା । ଏବଂ ତା'ପରେ ଆମର ରହିବା ପାଇଁ ଠିକଣା କରାଯାଇଥିବା Sharadoy Hotel ରେ ଆମକୁ ପହଂଚାଇ ଦେଲେ ।

ସମଗ୍ର ଡ଼େନମାର୍କର ଲୋକ ସଂଖ୍ୟା ମାତ୍ର ୫୫ଲକ୍ଷ ଓ ତନ୍ମଧ୍ୟରୁ କୋପେନ୍ ହେଗେନ୍‌ରେ ରହନ୍ତି ୧୫ ଲକ୍ଷ ଲୋକ । ଇଉରୋପ୍ ମହାଦେଶର ଏହା ଏକ ଚୋଟ ଦେଶ ହେଲେ ମଧ ଶିଳ୍ପ ଓ ବାଣିଜ୍ୟର ସମୃଦ୍ଧି କ୍ଷେତ୍ରରେ ଏହା ଇଇଉରୋପରେ ଯେ କୌଣସି ବଡ଼ ଦେଶ ସହିତ ସମକକ୍ଷ । ଏଣୁ ଏଠା ଲୋକମାନଙ୍କର ଆର୍ଥିକ ଅବସ୍ଥା ଅତି ସ୍ୱଚ୍ଛଳ । ବ୍ରିଟେନ୍ ଭଳି ସେଠାକାର ସାମ୍ୱିଧାନିକ ମୁଖ୍ୟ ହେଉଛନ୍ତି ରାଜା । ସେତେବେଳେ ଶ୍ରୀମତୀ ମାର୍ଗାରେଟ୍ ସେଠାକାର ସାମ୍ୱିଧାନିକ ମୁଖ୍ୟ ଥିଲେ । ସଂସଦୀୟ ଗଣତନ୍ତ୍ର ଶାସନ ପ୍ରବର୍ତ୍ତନ ହେବାଠାରୁ ଜଣେ ପ୍ରତିଭା ସମ୍ପନ୍ନ ଓ ପ୍ରଗତୀଶୀଳ ବ୍ୟକ୍ତି ସେଠାରେ ପ୍ରଧାନମନ୍ତ୍ରୀ ହେଉଥିବା କଥା ଆମେ ଜାଣିବାକୁ ପାଇଲୁଁ । ସେଠାକାର ସମୟ ଓ ଭାରତୀୟ ସମୟ ମଧ୍ୟରେ ୪ ଘଣ୍ଟାର ବ୍ୟବଧାନ ରହିଛି ।

## ୨୯.୯.୮୫ ଲଣ୍ଡନ ଦେଇ ନିଉୟର୍କ ଯାତ୍ରା

ତହିଁ ପରଦିନ ସକାଳ । ଘନ କୁହୁଡ଼ିର ଆସ୍ତରଣ ଭିତରେ ମୁହଁ ଲୁଚେଇ ଥିଲା କୋପେନ୍ ହେଗେନ୍ ସହର । ଆମେ ଲଣ୍ଡନ ଯିବୁ ବୋଲି ରାତି ସାଢ଼େ ତିନିଟାରୁ ଉଡ଼ାଜାହାଜ ଘାଟୀକୁ ଗଲୁ । ମାତ୍ର କୁହୁଡ଼ି ଯୋଗୁଁ ଉଡ଼ାଜାହାଜ ଛାଡ଼ିବା ଡ଼େରି ହେଲା । ଏଣୁ କୋପେନ୍ ହେଗେନ୍‌ରରୁ ଲଣ୍ଡନ ମାତ୍ର ଏକ ଘଣ୍ଟାର ଯାତ୍ରା ପାଇଁ ଆମକୁ ସେଠାରେ ଦିନ ୧୧ଟା ପର୍ଯ୍ୟନ୍ତ ଅପେକ୍ଷା କରିବାକୁ ପଡ଼ିଲା ଏବଂ ଦିନ ୧୨ଟା ବେଳେ ଆମେ ଯାଇ ଲଣ୍ଡନରେ ପହଂଚିଲୁ ।

ଲଣ୍ଡନ ସହର ଦେଖିବା ଏହା ମୋର ଦ୍ୱିତୀୟ ଥର । ଏଥର ଅବଶ୍ୟ ଆମର ସହର ଭିତରକୁ ଯିବାର ନ ଥିଲା । ପରବର୍ତ୍ତୀ କାର୍ଯ୍ୟକ୍ରମ ଅନୁଯାୟୀ ଆମକୁ ନ୍ୟୁୟର୍କ ଯିବାକୁ ହେବ । ଲଣ୍ଡନ ପହଂଚିବାରେ ଅତ୍ୟଧିକ ବିଳମ୍ବ ହେବାରୁ ସେତେବେଳକୁ ସେଠାକାର Booking Office ବନ୍ଦ ହୋଇ ଯାଇଥିଲା । ଭାଗ୍ୟକୁ ଆମେ ଲଣ୍ଡନର ଉଡ଼ାଜାହାଜ ଘାଟୀରେ ଓହ୍ଲାଇବା ମାତ୍ରେ ଲଣ୍ଡନରେ ଥିବା ଭାରତୀୟ ଦୂତାବାସର ଜଣେ ଅଫିସର ଆମକୁ ଭେଟି ସଙ୍ଗେ ସଙ୍ଗେ ନ୍ୟୁୟର୍କ ଯାଉଥିବା ଉଡ଼ାଜାହାଜ ଷ୍ଟେସନକୁ ନେଇଗଲେ । ବୁକିଂ ଅଫିସ ବନ୍ଦଥିବା ଯୋଗୁଁ ସେ ଉପରିସ୍ଥ ଅଫିସରଙ୍କୁ ଆମର ଅସୁବିଧା କଥା ଜଣାଇ ସ୍ୱତନ୍ତ୍ରଭାବେ ବୁକିଂ ଅଫିସ ଖୋଲିଲେ । ସେଠାରେ ମୋର ସମସ୍ତ ଜିନିଷ ପତ୍ର ଜାଞ୍ଚ ହେବାପରେ ଆମେ ଠିକ୍ ସମୟରେ ଉଡ଼ାଜାହାଜ ଚଢ଼ିଲୁଁ ।

ଯଦି ଭାରତୀୟ ଦୂତାବାସର ସେହି ଅଫିସର ଜଣକ ପରିଚୟ ଦେଇ ଆମକୁ ସାହାଯ୍ୟ କରି ନ ଥାନ୍ତେ, ଆମେ କେବେହେଲେ ନିର୍ଦ୍ଧାରିତ ଉଡ଼ାଜାହାଜରେ (ଯେଉଁଥିରେ ବୁକିଂ ହୋଇସାରି ଥିଲା) ଯାଇ ପାରି ନ ଥାନ୍ତୁ ।

ଦିନ ଗୋଟାଏ ବେଳେ ଯାତ୍ରା ଆରମ୍ଭ କରି ଦୀର୍ଘ ନଅ ଦଶ ଘଣ୍ଟା ପରେ ଆମେ ଆସି ନ୍ୟୁୟର୍କରେ ପହଞ୍ଚିଲୁଁ । ସେତେବେଳକୁ ରାତି ପ୍ରାୟ ଦଶଟା । ସେଠାକାର ଭାରତୀୟ ଦୂତାବାସର ଜଣେ ଅଫିସର ଆମକୁ ଅପେକ୍ଷା କରିଥିଲେ । ତେଣୁ ଆମର କିଛି ଅସୁବିଧା ହେଲାନାହିଁ । ସେ ଆମକୁ ନେଇ ବଡ଼ ହୋଟେଲରେ ରଖିବାର ବ୍ୟବସ୍ଥା କରି ଦେଲେ । କିଛି ସମୟ ପରେ ଆସାମ ବିଧାନସଭାର ଅଧକ୍ଷ ମଧ ଆସି ସେଠାରେ ଆମପାଖରେ ପହଞ୍ଚିଲେ ଏବଂ ତାଙ୍କ ବିଧାନ ସଭାର ସେକ୍ରେଟେରୀ ଆମ ସଙ୍ଗରେ ଆସିଛନ୍ତି କି ବୋଲି ପଚାରିଲେ ।

ଭାରତ ବାହାରେ ଭାରତୀୟ ଲୋକ ଦେଖିଲେ ନିଜ ପରିବାରର ଲୋକପରି ଅତି ଆତ୍ମୀୟ ମନେହୁଏ । ଜାତି, ଧର୍ମ, ବର୍ଣ୍ଣ ନିର୍ବିଶେଷରେ ତାଙ୍କୁ ଆପଣାଇ ନେବାକୁ ପ୍ରାଣ ଅସ୍ଥିର ହୋଇଉଠେ । ନ୍ୟୁୟର୍କରେ ଚାକିରୀ କରୁଥିବା ଜଣେ ଓଡ଼ିଆ ଅଧ୍ୟାପକ ମିଶ୍ର ଆମ ଯିବାର ଖବର ପୂର୍ବରୁ ପାଇଥିବାରୁ ଆମକୁ ଦେଖାକରିବାକୁ ବିମାନ ଘାଟିକୁ ଯାଇଥିଲେ । ସେଠାରେ ଆମକୁ ନ ପାଇ ଆମେ ରହୁଥିବା ହୋଟେଲରେ ଆସି ସାକ୍ଷାତ କଲେ ।



ନ୍ୟୁୟର୍କରେ ପୂର୍ବତନ ବିଧାନସଭା ସଚିବ ଶ୍ରୀ ନିରାକାର ପୁରୋହିତଙ୍କ ସହ

ସେଠାରେ ଚାକିରୀ କରୁଥିବା ଜଣେ ଓଡ଼ିଆ ପଶୁଡ଼ାକ୍ତରଙ୍କ ସହିତ ମଧ୍ୟ ଆମେ ଟେଲିଫୋନରେ ଯୋଗାଯୋଗ କଲୁଁ । ତାଙ୍କ ନାମ ହେଉଛି ଅମୀୟ କୁମାର ପଟ୍ଟନାୟକ । ବାରିପଦାର ବଡ଼ବଜାରସ୍ଥିତ ଅତୁଲ ପଟ୍ଟନାୟକଙ୍କର ସେ ଜୋଇଁ । ସେ ଆମେରିକାର ନାଗରିକତ୍ୱ ଗ୍ରହଣ କରି ଦୀର୍ଘ ୨୨ ବର୍ଷ ହେବ ସେଠାରେ ରହିଥାଆନ୍ତି । ସେ ଓଡ଼ିଆ ମାନଙ୍କ ଭିତରେ ଆମେରିକାରେ ସବୁଠୁ ପୁରୁଣା । ଏଣୁ ସେଠାରେ ଥିବା ସମସ୍ତ ଓଡ଼ିଆ ତାଙ୍କୁ ବେଶୀ ଖାତିର କରନ୍ତି । ଆମର ଫୋନ୍ ପାଇ ସେ ମୋତେ ତାଙ୍କ ଘରକୁ ନେବାକୁ ଆସି ହୋଟେଲ୍‌ରେ ପହଞ୍ଚିଲେ । ତାଙ୍କ ସ୍ତ୍ରୀ କବିତା (ଅତୁଲ ପଟ୍ଟନାୟକଙ୍କ ଝିଅ) ମୋତେ ଆଗରୁ ଚିହ୍ନିଥିବାରୁ ମୋତେ ଦେଖି ବହୁତ ଖୁସି ହୋଇଗଲା ଓ ଅତି ଆଗ୍ରହର ସହିତ ଖାଇବାର ବନ୍ଦୋବସ୍ତ କଲା । ବ୍ରହ୍ମପୁରର ଓକିଲ ଶ୍ରୀରାମଚନ୍ଦ୍ର ମିଶ୍ରଙ୍କର ପୁଅ ଶ୍ରୀ ଦେବେନ୍ଦ୍ର ମିଶ୍ର ଜଣେ ଇଞ୍ଜିନିଅର । ସେ ମଧ୍ୟ ସେଠାରେ ଚାକିରୀ କରନ୍ତି । ସେ ମଧ୍ୟ ଅମୀୟ ବାବୁଙ୍କ ଘରକୁ ଆସି ଦେଖାକଲେ ।

ଅମୀୟବାବୁଙ୍କ ଘରଠାରୁ ମୁଁ ରହୁଥିବା ହୋଟେଲର ଦୂରତା ପ୍ରାୟ ୨୫ କି.ମି. । ରାତିରେ ତାଙ୍କ ଘରୁ ହୋଟେଲକୁ ଫେରିଲୁଁ । ଅମୀୟବାବୁ ଆମ ଦୁଇ ଜଣଙ୍କୁ ତାଙ୍କ ଗାଡ଼ିରେ ଆଣି ହୋଟେଲରେ ଛାଡ଼ି ଦେଇଗଲେ । ଅମୀୟବାବୁଙ୍କ ପରିବାରର ଆତିଥ୍ୟ ସେଦିନ ମୋତେ ବହୁତ ଆନନ୍ଦ ଦେଇଥିଲା । ମାତ୍ର ଦୁଃଖର ବିଷୟ ଯେ ତାଙ୍କ ଏବଂ ଅନ୍ୟ ଓଡ଼ିଆ ଯେଉଁମାନେ ସେଠାରେ ରହୁଛନ୍ତି ସେମାନଙ୍କର ପିଲାମାନେ ଓଡ଼ିଆ କହୁନାହାନ୍ତି । ଏପରିକି ଘରେ ମଧ୍ୟ ପରସ୍ପର ଭିତରେ ଇଂରାଜୀରେ କଥା ହୁଅନ୍ତି । ତେଣୁ ତାଙ୍କର ବଂଶଧରମାନେ କ୍ରମଶଃ ଓଡ଼ିଶାର ଭାଷା ଓ ସଂସ୍କୃତିକୁ ନିଶ୍ଚିନ୍ତ ଭାବରେ ଯେ ଭୁଲିଯିବେ ଏଥିରେ ସନ୍ଦେହ ନାହିଁ ।

ତହିଁ ପରଦିନ ସୁଧାକର ବାବୁ ସକାଳୁ ହୋଟେଲକୁ ଗାଡ଼ି ନେଇ ଆମ ହୋଟେଲକୁ ଆସିଲେ ଆମେ ତାଙ୍କ ଗାଡ଼ିରେ ଯାଇ ବିଭିନ୍ନ ଦର୍ଶନୀୟସ୍ଥାନ ବୁଲି ଦେଖିଲୁଁ । ନ୍ୟୁୟର୍କ ପୃଥିବୀର ଏକ ପ୍ରଧାନ ସହର ତଥା ବାଣିଜ୍ୟକେନ୍ଦ୍ର । ଏହାର ଲୋକସଂଖ୍ୟା ପ୍ରାୟ କୋଟିଏ । ସାଧାରଣତଃ ସାତ/ଆଠ ମହଲା ବିଶିଷ୍ଟ ସୌଧ ମାଳାରେ ଏ ସହରଟି ପରିପୂର୍ଣ୍ଣ । ଏଠାରେ ଥିବା ପୃଥିବୀର ସର୍ବୋଚ୍ଚ ଏକଶହ ଦଶମହଲା ବିଶିଷ୍ଟ କୋଠାମଧ୍ୟ ଦେଖିଲୁଁ । ସହରର ପ୍ରଧାନ-ପ୍ରଧାନ ଅଞ୍ଚଳରେ ଗଛ ଥିବାର ଦେଖିଲୁନାହିଁ । ସହରର ବିଭିନ୍ନ ଦର୍ଶନୀୟ ସ୍ଥାନ ଦେଖିସାରିଲା ପରେ ଆଟ୍‌ଲାଣ୍ଟିକ ସମୁଦ୍ରକୂଳକୁ ବୁଲିବାକୁ ଗଲୁଁ । ସମୁଦ୍ର କୁଳକୁ ଲାଗି ସୁନ୍ଦର ସୁନ୍ଦର ବଗିଚାମାନ ରହିଥାଏ । ସେଇ ବଗିଚା ମଧ୍ୟରେ କେତେକ କୀର୍ତ୍ତି ସ୍ତମ୍ଭ ମଧ୍ୟ ଥିବାର ଦେଖିଲି । ସେଠାରେ ଆମେ ମାନେ କେତେକ ଫଟୋ ଉଠାଇଲୁଁ । ସୁଧାକର ବାବୁ ସାଙ୍ଗରେ ତାଙ୍କର କ୍ୟାମେରା ନେଇଥିଲେ । ସେଠାରୁ କିଛି ଦୂରରେ ସମୁଦ୍ର ଭିତରେ ଗୋଟିଏ ଛୋଟ ଦ୍ୱୀପ ଦେଖା ଯାଉଥାଏ । ସେ ଦ୍ୱୀପରେ କେତେକ ସ୍ତମ୍ଭ ମଧ୍ୟ ଅଳ୍ପ-ଅଳ୍ପ ଦେଖା ଯାଉଥାଏ । ସେ ଗୁଡ଼ିକ American war of Indipendance ର ସ୍ମୃତି ସ୍ତମ୍ଭ ବୋଲି ଜାଣିବାକୁ ପାଇଲୁଁ । ସେଠାରେ କିଛି ସମୟ କଟାଇ ଆମେ ହୋଟେଲକୁ ଫେରି ଆସିଲୁଁ । ସେଠାରେ ଥିବା ଦୂତାବାସ ସହିତ ଫୋନ୍ କରି ଜାଣିଲୁଁ ଯେ, ସେମାନେ ଆମକୁ ଗାଡ଼ି ଦେଇ ପାରିବେ ନାହିଁ । ସେଠାରୁ ଆମର ୱାସିଂଟନ ଯିବାର ଥାଏ, ଯାହା ହେଉ ସୁଧାକର ବାବୁ ତାଙ୍କର ଗାଡ଼ିରେ ଆମକୁ ନେଇ ଠିକ୍ ସମୟରେ ବିମାନ ବନ୍ଦରଠାରେ ପହଞ୍ଚାଇ ଦେଲେ ଓ ଆମେ ୱାସିଂଟନ ଅଭିମୁଖେ ଯାତ୍ରା କଲୁଁ ।

## ୱାସିଂଟନ୍ ଯାତ୍ରା

ନ୍ୟୁୟର୍କରୁ ୱାସିଂଟନ୍ ପହଞ୍ଚିବାକୁ ଆମକୁ ମାତ୍ର ଦୁଇଘଣ୍ଟା ସମୟ ଲାଗିଲା । ବିମାନ ଯାତ୍ରା ସମୟରେ ନ୍ୟୁୟର୍କର ସ୍ମୃତି ଓ ସୁଧାକର ମିଶ୍ରଙ୍କର ଆତିଥ୍ୟ ପରାୟଣତା, ତାଙ୍କର ଆମାୟିକ ବ୍ୟବହାର ମୋର ମନେ ପଡୁଥାଏ । ଯଦି ଅଧିକ ସମୟ ଆମେ ସେଠାରେ ରହିଥାଆନ୍ତେ ତେବେ ସେ ଆମକୁ ଆହୁରି ଅନେକ ଅଞ୍ଚଳ ବୁଲାଇ ଥାଆନ୍ତେ । ସେ ହେଉଛନ୍ତି

ଅମୂଲ୍ୟ ନନ୍ଦ I.A.S. ଙ୍କ ଭିଣୋଇ । ସେଠାରେ ଅଧ୍ୟାପକ ଚାକିରୀ କରୁଅଛନ୍ତି ଅଥଚ ସେଠାକାର ନାଗରିକତ୍ୱ ଗ୍ରହଣ କରି ନ ଥାନ୍ତି ।

ନ୍ୟୁୟର୍କର ସୁମଧୁର ସ୍ମୃତି ମନ୍ଥନ ଭିତରେ କେତେବେଳେ ଦୁଇଘଣ୍ଟା ବିତିଗଲା ଜଣାଗଲା ନାହିଁ । ଆମର ବିମାନ ଇତି ମଧ୍ୟରେ ଆସି ୱାସିଂଟନ୍ ବିମାନ ବନ୍ଦରରେ ଓହ୍ଲାଇଲା । ପିଲାଦିନରୁ ଏହା ସମ୍ପର୍କରେ ଅନେକ ବହିରେ ପଢ଼ିଛି । ମାତ୍ର ଦେଖିବାର ସୁଯୋଗ ହୋଇ ନ ଥିଲା ଏ ଯାଏଁ । ସେଇ ୱାସିଂଟନ ସହର ବର୍ତ୍ତମାନ ଅପରୂପ ସାଜ ସଜ୍ଜାରେ ଆଖି ଆଗରେ ଝଲସି ଯାଉଛି । ବହୁତ ଆନନ୍ଦ ଲାଗିଲା ।

ସେଠାରେ ବିମାନରୁ ଜିନିଷ ପତ୍ର ନେଇ ବାହାରକୁ ଓହ୍ଲାଇ ଆସିବା ମାତ୍ରେ ଦୂତାବାସର ଜଣେ ଅଫିସର ଆମକୁ ଭେଟିଲେ ଓ ତା'ପରେ ପରେ ସେଠାରେ ରହି ଘରୋଇ ଭାବେ ଚିକିତ୍ସା କରୁଥିବା ଡ଼ାକ୍ତର ସଂଜୀବ୍ ମିଶ୍ର ମଧ୍ୟ ଆମକୁ ନେବା ପାଇଁ ଆସିଥିଲେ । ସଂଜୀବ୍ ମିଶ୍ର ହେଉଛନ୍ତି, ସମ୍ବଲପୁରର ଲୋକ । ଆମ ବିଧାନ ସଭାର ସେକ୍ରେଟେରୀ ଶ୍ରୀ ନିରାକାର ପୁରୋହିତଙ୍କର ସେ ସମ୍ପର୍କୀୟ । ଆଗରୁ ପୁରୋହିତ ବାବୁ ତାଙ୍କୁ ଆମ ଯିବାର ଖବର ଦେଇଥିଲେ ।

ସେ ଆମକୁ ତାଙ୍କ ଘରକୁ ନେବା, ବିଭିନ୍ନ ଦର୍ଶନୀୟ ସ୍ଥାନ ବୁଲାଇ ଦେଖାଇବା ତଥା ତହିଁ ପରଦିନ ପୁଣିନେଇ ବିମାନ ବନ୍ଦର ଠାରେ ପହଞ୍ଚାଇବା ପାଇଁ ପ୍ରସ୍ତୁତ ହୋଇ ଆସିଥିଲେ । ଏଣୁ ଆମେ ତାଙ୍କ ଘରକୁ ଯିବାକୁ ସ୍ଥିର କଲୁଁ । ଦୂତାବାସର ଅଫିସର ଏହା ଜାଣି ମୋତେ ମୋର ଦିନକର ଭତ୍ତା ଦେଇ ଚାଲିଗଲେ । ସେତେବେଳକୁ ସମୟ ପ୍ରାୟ ଅପରାହ୍ନ ଏକ ଘଣ୍ଟା । ଭାରତୀୟ ସମୟଠାରୁ ପ୍ରାୟ ଦଶ ଘଣ୍ଟା ତଫାତ୍ । ବାଟରେ ଗୋଟିଏ ଭାରତୀୟ ହୋଟେଲ (ଦକ୍ଷିଣ ଭାରତୀୟ) ରେ ସଂଜୀବ୍ ବାବୁ, ମୁଁ ଓ ନିରାକାର ବାବୁ ମଧ୍ୟାହ୍ନ ଭୋଜନ କଲୁଁ । ତା'ପରେ ଆମେ ୱାସିଂଟନ ସହର ବୁଲି ବାହାରିଲୁଁ । ସଂଜୀବ୍ ମିଶ୍ର ଆମକୁ ବିଭିନ୍ନ ଦର୍ଶନୀୟ ସ୍ଥାନ ବୁଲାଇ ଦେଖାଇଲେ ।

ବହୁ ଗଛ ଓ ସୁନ୍ଦର ସୁନ୍ଦର ବଗିଚାରେ ପରିପୂର୍ଣ୍ଣ ୱାସିଂଟନ ସହର ଅତି ରମଣୀୟ ଦେଖାଯାଉଥାଏ । ପରିବେଶ ମଧ୍ୟ ଅତ୍ୟନ୍ତ ଶାନ୍ତ ଓ ମଧୁର । ଆମେରିକାର ରାଷ୍ଟ୍ରପତିଙ୍କର ସରକାରୀ ବାସଭବନ ବିଶ୍ୱବିଖ୍ୟାତ White House ଦେଖିଲୁଁ । ତାହା ସେପରି ବଡ଼ କୋଠା ନୁହେଁ କିମ୍ବା ଆମ ଭାରତର ରାଷ୍ଟ୍ରପତି ଭବନର ପରିବେଷ୍ଟନୀ ଭଳି ଏକ ବିରାଟ ଇଷ୍ଟେଟ୍ ମଧ୍ୟ ନୁହେଁ । ପୃଥିବୀର ସର୍ବଶ୍ରେଷ୍ଠ ଧନୀ ଓ ଶକ୍ତିଶାଳୀ ଉପବହାଦେଶର ସର୍ବୋଚ୍ଚ ଶାସନକର୍ତ୍ତା ସେଠାରେ ରହନ୍ତି । ଆମେରିକା ମୁକ୍ତି ସଂଗ୍ରାମର ନେତା ଓ ସେଠାକାର ପ୍ରଥମ ରାଷ୍ଟ୍ରପତିଙ୍କ ନାମରେ ନାମିତ ୱାସିଂଟନ ସ୍ତମ୍ଭ (Washington Tomb) ଦେଖିଲୁଁ । କିନ୍ତୁ ପ୍ରବେଶ ପଥ ବନ୍ଦ ହୋଇ ଯାଇଥିବାରୁ ତା ଭିତରକୁ ଯାଇ ଉପରକୁ ଉଠିବାର ସୁଯୋଗ ମିଳିଲା ନାହିଁ । ତା'ପରେ ଜାଫ୍ରୀ ସ୍ମୃତି ସ୍ତମ୍ଭ ଓ ଲିଙ୍କନ ସ୍ମୃତି ସ୍ତମ୍ଭ ଦେଖିଲୁଁ ।

ଭାରତୀୟ ସଂବିଧାନର ଜନକ ଆମ୍ବେଦକରଙ୍କ ପରି ଜର୍ଜ ୱାସିଂଟନ ମଧ୍ୟ ଆମେରିକୀୟ ସଂବିଧାନର ସ୍ରଷ୍ଟା । ସେଠାକାର ସଂବିଧାନରେ ଅନ୍ତର୍ଭୁକ୍ତ ମାନବିକ ଅଧିକାର ଗୁଡ଼ିକ ଏକ ସ୍ତମ୍ଭରେ ଲେଖା ହୋଇ ରହିଥିବାର ଦେଖିଲୁଁ । ସେଠାରେ ପାର୍ଲ୍ୟାମେଣ୍ଟ ଭବନ ସମ୍ମୁଖରେ ଥିବା ଏକ ବିରାଟ ପଡ଼ିଆରେ ଆମେ କିଛି ସମୟ ବସିଲୁଁ । ତା'ର ଅଳ୍ପ ଦୂରରେ ଆମେରିକା ତଥା ବିଶ୍ୱର ସର୍ବବୃହତ ଲାଇବ୍ରେରୀ ଦେଖିଲୁଁ । ସେଥିରେ ପୃଥିବୀର ସବୁଦେଶ ଓ ରାଜ୍ୟରେ ପ୍ରଚଳିତ ଭାଷାର ବହିମାନ ରହିଅଛି । ତା'ରି ଭିତରେ ଏକ Art and culture museum ମଧ୍ୟ ରହିଛି । ଓଡ଼ିଆର ମଧ୍ୟ ଅନେକ ବହି ସେଇ ଲାଇବ୍ରେରୀରେ ରହିଛି ।

ଦିନ ଗୋଟାଏ ବେଳୁ ବାହାରି ବୁଲାବୁଲି କରି ରାତି ସାଢ଼େ ସାତଟାରେ ଆମେ ସଂଜୀବ ବାବୁଙ୍କ ଘରଠାରେ ପହଞ୍ଚିଲୁଁ । ତାଙ୍କ ଘରଟି ଦୁଇତାଲା ବିଶିଷ୍ଟ । ଅତ୍ୟାଧୁନିକ ଆସବାବ ପତ୍ରରେ ସୁସଜ୍ଜିତ ଏକ କୋଠରୀରେ ଆମେ ବସିଲୁଁ ।

ତାଙ୍କଘରୁ ଫୋନ ଯୋଗେ ମୃଷାଗଡ଼ିଆର ଶ୍ରୀ ରବି ମହାପାତ୍ରଙ୍କୁ ଯୋଗାଯୋଗ କଲି । ସେ ଜଣେ ବୈଜ୍ଞାନିକ ଓ ଆମେରିକାରେ ଚାକିରୀ କରନ୍ତି । ମାତ୍ର ସେ ଆମ ରହିବା ସ୍ଥାନରୁ ଅନେକ ଦୂରରେ ରହୁଥିବାରୁ ତାଙ୍କ ସହିତ ଦେଖା ହେଲାନାହିଁ ।

ସଂଜୀବ ବାବୁଙ୍କର ସ୍ତ୍ରୀ ଆମପାଇଁ ଖାଇବାର ପ୍ରସ୍ତୁତ କରି ଅପେକ୍ଷା କରିଥାଆନ୍ତି । ସେଠାରେ ଆମେ ରାତ୍ରୀ ଭୋଜନ କରି ରହିଲୁଁ । ତାଙ୍କର ଦୁଇଟି ଛୋଟ ପିଲାମାନଙ୍କ ସହିତ ଖୁସିଗପ ହେବାକୁ ବ୍ୟକ୍ତ ଭଲ ଲାଗିଲା । ତହିଁ ପରଦିନ ସକାଳୁ ଜଳଖିଆ ଖାଇ ସାରି ଆମେ ଉଡ଼ାଜାହାଜ ଯୋଗେ କାନାଡ଼ା ଅଭିମୁଖେ ଯାତ୍ରା ଆରମ୍ଭ କଲୁଁ ପ୍ରାୟ ଦିନ ଦଶଟା ବେଳେ ।

ୱାସିଂଟନରେ ସଂଜୀବ ବାବୁଙ୍କ ସହିତ ବୁଲୁଥିବା ବେଳେ ଏକ ଡ଼ାକ୍ତର ଖାନାକୁ ଯାଇଥିଲୁଁ । ସେଠାରେ ବ୍ରହ୍ମପୁରର ଶ୍ରୀରାମଚନ୍ଦ୍ର ମିଶ୍ରଙ୍କ ପୁଅ ଜଣେ ଡ଼ାକ୍ତର ଭାବରେ ଚାକିରୀ କରନ୍ତି । ଏଠାରେ ଅନେକ ବଡ଼ ବଡ଼ ଘରୋଇ ଡ଼ାକ୍ତରଖାନା ମାନ ରହିଅଛି । ସେଠାରେ ନିର୍ଦ୍ଧାରିତ ଫିସ୍ ଦେଲେ ରୋଗୀମାନଙ୍କୁ ସମସ୍ତ ସୁବିଧା ସୁଯୋଗ ଦେଇ ଭଲ ଚିକିତ୍ସା କରାଯାଇ ଥାଏ । ଏଥିପାଇଁ ଡ଼ାକ୍ତର ମାନଙ୍କୁ ବହୁତ ଫିସ୍ ଦେବାକୁ ପଡ଼େ । କିନ୍ତୁ ଡ଼ାକ୍ତରଙ୍କ ଅବହେଳାରୁ କିମ୍ୱା ଅନ୍ୟ କୌଣସି କାରଣରୁ ଯଦି ରୋଗୀର କିଛି କ୍ଷତି ହୁଏ, ତେବେ ରୋଗୀ ଓ ଓକିଲ ମିଶି ଯାଇ ଡ଼ାକ୍ତରଙ୍କ ଠାରୁ କ୍ଷତି ପୂରଣ ଆଦାୟପାଇଁ ମୋକଦ୍ଦମା କରନ୍ତି । ତେଣୁ ଡ଼ାକ୍ତରମାନେ ଏହି ପ୍ରକାର କ୍ଷତି ପୂରଣ ଦେବାରୁ ମୁକ୍ତି ପାଇବା ପାଇଁ ଏକ ପ୍ରକାର ବୀମା କରନ୍ତି । ଯଦି କ୍ଷତି ପୂରଣ ଦେବାକୁ ପଡ଼େ ତେବେ ଉକ୍ତ ବୀମା କମ୍ପାନୀ ତାହା ପଇଠ କରନ୍ତି । ଏହି କ୍ଷତି ପୂରଣ ଆଦାୟ ଯେପରି ଏକ ବ୍ୟବସାୟରେ ପରିଣତ ନ ହୁଏ, ତାହାପାଇଁ ଆଇନ ପ୍ରବର୍ତ୍ତନ କରାଯାଇଛି ।

## କାନାଡ଼ା

ପ୍ରାୟ ଦିନ ୧୨ଟାରେ ଆମେ ୱାସିଂଟନରୁ ଯାଇ କାନାଡ଼ାର ଟରୋଣ୍ଟ ସହରରେ ପହଞ୍ଚିଲୁ । ସେଠାରୁ ଆମର ଅନ୍ୟ ଏକ ଉଡ଼ାଜାହାଜରେ ରେଜାଇନା ସହରକୁ ଯିବା କଥା । ତେଣୁ ଆମେ ଉଡ଼ାଜାହାଜରୁ ଓହ୍ଲାଇ ଅଢ଼େଇ ଘଣ୍ଟା ଧରି V.I.P. waiting room ରେ ଅପେକ୍ଷା କଲୁଁ । ଆମେ ଓହ୍ଲାଇ ଉକ୍ତ waiting room କୁ ଗଲୁ ଓ ସେଠାରେ ଥିବା ପର୍ଯ୍ୟନ୍ତ କଡ଼ା ସୁରକ୍ଷା ମଧ୍ୟରେ ଥିଲୁଁ । କାରଣ ଉକ୍ତ ସହରରେ ପ୍ରାୟ ପଚାଶ ହଜାର ଶିଖ୍ ବାସ କରନ୍ତି ଓ ଏଥିପୂର୍ବରୁ ଟରୋଣ୍ଟରୁ ବମ୍ବେ ଅଭିମୁଖେ ଭାରତୀୟଙ୍କୁ ନେଇଯାଉଥିବା କନିଷ୍କ ନାମକ ଭାରତର ଉଡ଼ାଜାହାଜଟି ସମୁଦ୍ର ଉପରେ ଯାଉଥିବା ବେଳେ ବିସ୍ଫୋରଣ ଘଟି ଯେଉଁ ଧ୍ୱଂସଲୀଳାରେ ତିନିଶହରୁ ଉର୍ଦ୍ଧ୍ୱଯାତ୍ରୀଙ୍କ ମର୍ମନ୍ତୁଦ ମୃତ୍ୟୁ ଘଟାଯାଇଥିବା ଷଡ଼ଯନ୍ତ୍ରର ସୂତ୍ରପାତ ସେଠାରୁ ହିଁ ଆରମ୍ଭ ହୋଇଥିଲା । ଠିକ୍ ଏହାପୂର୍ବରୁ ପଞ୍ଜାବରେ ନିର୍ବାଚନ ହୋଇ ଅକାଳୀ ଦଳର ମନ୍ତ୍ରୀମଣ୍ଡଳ ଗଠିତ ହୋଇ ପଞ୍ଜାବ ସମସ୍ୟାର କିଛି ପ୍ରକାର ସମାଧାନ ହୋଇଥିଲେ ହେଁ କାନାଡ଼ାରେ ଥିବା ଶିଖ୍ ମାନଙ୍କ ସନ୍ତୋଷ ଆସି ନ ଥିବା ଓ ସେମାନଙ୍କ ଗତିବିଧି ସନ୍ଦେହ ଜନକ ବୋଲି ସେଠାରେ Counsel General ଙ୍କ ସହିତ କଥାବାର୍ତ୍ତାରୁ ଆମେ ଜାଣିଲୁଁ । ଆମେ ସେଠାରେ ରହିଥିବା ପର୍ଯ୍ୟନ୍ତ ସେ ଆମ ସହିତ ରହିଥିଲେ । ଆମେ ଦୁଇଜଣ ସେଠାରେ ଥିବା ସମୟରେ ଆସାମ ରାଜ୍ୟର ବାଚସତି ଓ ବିଧାନସଭା ସେକ୍ରେଟେରୀ ଆମ ସହିତ ଆସି ମିଶିଲେ ଓ ଆମେ ସମସ୍ତ ନିର୍ଦ୍ଧାରିତ ସମୟରେ ଟାରୋଣ୍ଟରୁ ରେଜାଇନା ଅଭିମୁଖେ ଯାତ୍ରା କଲୁଁ । ସେଠାରେ ଆମେ ପହଞ୍ଚିଲା ପରେ ଲୋକସଭା ଅଧ୍ୟକ୍ଷ ଡ଼ା: ବଳରାମ ଝାକର ଓ ଭାରତର ବହୁ ପ୍ରତିନିଧି (Speaker ଓ M.Ps.) ମଧ୍ୟ ସେଠାରେ ପହଞ୍ଚିଲେ । ରେଜାଇନା ହେଉଛି ସାସକାଚ୍ୟୁନ ରାଜ୍ୟର ରାଜଧାନୀ । ସ୍ୱେଚ୍ଛାସେବକ ମାନେ ଆମକୁ ଉଡ଼ାଜାହାଜ ଷ୍ଟେସନରୁ ନେଇଗଲେ ବିଭିନ୍ନ ହୋଟେଲକୁ ରହିବା ପାଇଁ । ଆମେ ଭାରତୀୟ Hotel Regina ରେ ରହିଲୁ । ସେହି ସହରର ଲୋକସଂଖ୍ୟା ପ୍ରାୟ ଅଢ଼େଇ ଲକ୍ଷ ।

ଖୁବ୍ ଶୀତ । ସେଠାରେ ଭରତୀୟ ସମୟ ମଧରେ ପାର୍ଥକ୍ୟ ପ୍ରାୟ ୧୨ ଘଣ୍ଟା । ଅର୍ଥାତ୍ ଭାରତର ସକାଳ ସେଠାକାର ସନ୍ଧ୍ୟା, ପାତାଳ ପୁରୀ ବୋଲି ପୁରାଣରେ ଯାହା ଲେଖା ତାହାହିଁ ସତ୍ୟ ।

## C.P.A. ସମ୍ମିଳନୀ ଉଦ୍‌ଘାଟନ

ସକାଳ ୯ଟା ବେଳେ ନିର୍ଦ୍ଧାରିତ କାର୍ଯ୍ୟକ୍ରମ ଅନୁଯାୟୀ Saskatnan state legislative House ରେ ସମସ୍ତ ପ୍ରତିନିଧି ମାନେ ଉପସ୍ଥିତ ହେଲେ । ସେଠାକାର ବିଧାନ ସଭା ଅଧକ୍ଷ Mr. Swan ନିୟମ ଅନୁଯାୟୀ Hoist country ର ଅଧକ୍ଷ ସମ୍ମିଳନୀର ଅଧକ୍ଷତା କଲେ । ସେଠା ରାଜ୍ୟପାଳ ସମ୍ମିଳନୀ ଉଦ୍‌ଘାଟନ କଲେ । କାନାଡ଼ାର ପ୍ରଧାନମନ୍ତ୍ରୀ, ଜାତୀୟ ଆସେମ୍ଲିର ଅଧକ୍ଷ ଓ ଭାରତର ଡ଼ା. ଝାକର ଲୋକସଭା ଅଧକ୍ଷ ମଞ୍ଚ ଉପରେ ଉଦ୍‌ଘାଟନ ଉତ୍ସବ ବେଳେ ବସିଥିଲେ । ସକାଳ ଓଳି ଶ୍ରୀଯୁକ୍ତ ସ୍ୱାନ ସେଠାକାର ବିଧାନ ସଭା ଅଧକ୍ଷ ଆମକୁ ପାତଃଭୋଜନ ଦେଇଥିଲେ । ଉଦ୍‌ଘାଟନ ଉତ୍ସବ ଖୁବ ସମାରୋହରେ ହେଲାପରେ ନିକଟରେ ସେହି କୋଠା ମଧରେ ଥିବା ଏକ ବରଫ ଘରକୁ ଗଲୁଁ । ସେଠାରେ ବରଫ ଉପରେ ଖେଳ ଦେଖିବାକୁ ପାଇଲୁଁ । ଖେଳପରେ ସମସ୍ତ ପ୍ରତିନିଧି ମାନଙ୍କ ଏକ ମିଳିତ ଫଟୋ ଉଠାଗଲା । ସେଦିନ ଆମେ ସମସ୍ତେ ରହିଲୁଁ । ରାତିରେ ଶ୍ରୀଯୁକ୍ତ ସ୍ୱାନ ସମସ୍ତ ପ୍ରତିନିଧି ମାନଙ୍କୁ ରାତ୍ରି ଭୋଜନ ଦେଲେ । ତହିଁ ପରଦିନ ସକାଳ ଓଳି ଆମର ଜିନିଷ ପତ୍ର ସହ ପ୍ରତିନିଧିମାନେ ୪ଟି ଦଳରେ ବିଭକ୍ତ (A,B,C,D) ହୋଇ ବସଯୋଗେ ବିଭିନ୍ନ ଦର୍ଶନୀୟ ସ୍ଥାନ ପରିଦର୍ଶନ କରିବା ପାଇଁ ବାହାରିଗଲୁଁ । ମୁଁ ଓଡ଼ିଶାର ଲୋକସଭା ସଭ୍ୟତଥା ପୂର୍ବତନ ବିଧାନସଭା ଅଧକ୍ଷ ଶ୍ରୀ ସୋମନାଥ ରଥ ଏବଂ ଆସାମ, ମହାରାଷ୍ଟ୍ର କାଉନ୍‌ସିଲର ଅଧକ୍ଷ, କାର୍ଣ୍ଣୁର ବାଚସ୍ପତି ଓ ଅନ୍ୟ ଦେଶର ପ୍ରତିନିଧିମାନେ ଥିଲେ । ଆମ ଆଗେ ଆଗେ ଏହି ଲାଇନରେ ଏକ କାର୍‌ରେ ଡ଼ା:ଝାକର ମଧ ଯାଇଥିଲେ । ବାଟରେ ଯାଉଥିବା ପ୍ରତିନିଧିମାମନଙ୍କୁ ବାସରେ ସ୍ୱେଚ୍ଛାସେବକମାନେ ଅଳ୍ପ ସମୟ ବ୍ୟବଧାନରେ ଉତ୍ତମ ମଦ ଓ ଫଳରସ ବା ଫଳ ଯୋଗାଉଥିଲେ । ମୁଁ କେବଳ ଫଳ ରସ ଖାଇଥିଲି । ଜଣେ ସ୍ୱେଚ୍ଛାସେବକ ମୋ ପାଇଁ ଖୁବ୍ ଭଲ ଦାମିକା ମଦ ରଖି ତାହା ପାନ କରିବାକୁ ମୋତେ ବିଶେଷ ଅନୁରୋଧ କଲା । ମାତ୍ର ମୁଁ ମୋଟେ ମଦ ପିଏ ନାହିଁ କହିବାରୁ ବଡ଼ ମନ ଦୁଃଖରେ ଫେରିଗଲା ବାଟରେ ଗଲାବେଳେ ଏକ Flying Club ପରିଦର୍ଶନ କଲୁଁ । ଗୋଟିଏ ସ୍ଥାନରେ ସଡ଼କରେ ଡ୍ରେନରେ ବହୁତ ବରଫ ପଡ଼ିଥିବାର ଦେଖି ବାସଟି ଛିଡ଼ା କରାଇଲୁଁ ଓ ସମସ୍ତେ ଓହ୍ଲାଇ ବରଫର ଗୋଲା କରି ଖେଳିଲୁଁ । ବାଟରେ ଗଲାବେଳେ ଦୁଇପାଖରେ କେବଳ କୃଷିକ୍ଷେତ୍ରେ ଆଖି ପାଉ ନ ଥିବା ଅତି ଲମ୍ବ ଲମ୍ବ ପ୍ଲଟ ସବୁ ଦେଖା ଯାଉଥାଏ । ଛୋଟ ଛୋଟ ଆଡ଼ିର ଅଲଗା ପ୍ଲଟ ସବୁ ଜଣାଯାଉ ନ ଥାଏ । ଗ୍ରାମ ଗୁଡ଼ିକ ମୋଟେ ଦେଖାଯାଉ ନ ଥାଏ । କେବଳ କିଛି କିଛି ସ୍ଥାନରେ ଅଳ୍ପ କିଛି ଘର ଓ କୃଷି ଯନ୍ତ୍ରପାତି ଦେଖା ଯାଉଥିବାରୁ ସେଗୁଡ଼ିକ ଫାର୍ମ ହାଉସ ବୋଲି ମନେ ହେଉଥାଏ । ଜଳସେଚନର କିଛି ବ୍ୟବସ୍ଥା ନାହିଁ । ପ୍ଲଟ ଗୁଡ଼ିକ ମଧ ସମତଳ ବା level କରାଯାଇ ନଥାଏ । କେବଳ ଗହମ ଚାଷ ବିଶେଷ ଭାବେ କରାଯାଏ । ସମସ୍ତ ଚାଷକାମ ଯାନ୍ତ୍ରିକ ଉପାୟରେ ହୁଏ । ବର୍ଷରେ ଛଅମାସ ସେ ସବୁ ବରଫ ଦ୍ୱାରା ଆବୃତ୍ତ ହୋଇରହେ । ବରଫ ତରଳି ବହିଗଲେ ଯନ୍ତ୍ର ସାହାଯ୍ୟରେ ଚାଷ କରାଯାଏ ଏବଂ ସେହି Moisure ରେ ଗହମ ଚାଷ ହୋଇ ଯାଏ, ପାଣି ମଡ଼ାଇବାକୁ ପଡ଼େ ନାହିଁ । ବହୁତ ଜମି ପ୍ରତ୍ୟେକଙ୍କର ହୋଇ ଥିବାରୁ ଯନ୍ତ୍ର ବା କଳ ବ୍ୟତୀତ ଚାଷ ହୋଇପାରେ ନାହିଁ ଓ ଏତେ ଜମିଚାଷ ହେଉଥିବାରୁ ଜମି ବା ଚାଷର ଖୁବ୍ ଯତ୍ନ ନେବା ଆମଭଳି ସମ୍ଭବ ନୁହେଁ । ତେଣୁ ଉତ୍ପାଦନ ପରିମାଣ (yield) ସାଧାରଣ ଭାବେ ହୋଇଥାଏ । ବାଟରେ ଗଲାବେଳେ ଶ୍ରୀଯୁକ୍ତ ସ୍ୱାନ (ବିଧାନ ସଭା ଅଧକ୍ଷ) ଙ୍କ ଏକ ସଙ୍ଗେ ବସ୍‌ରେ ବସିଥିବା ବେଳେ ତାଙ୍କର କେତେ ଜମି ଅଛି ଜାଣିବାକୁ ଚାହିଁବାରେ ସେ ତାଙ୍କର ୨୮୦୦ ଏକର ଜମି ଅଛି ବୋଲି କହିଲେ । ମୁଁ କହିଲି ମୋର ଆଠଏକର ମଧ ନାହିଁ । ସେ ହସିଲେ । ସେଦିନୁ ତାଙ୍କର ମୋର ବହୁତ ବନ୍ଧୁତା, ସେ ମୋ ପାଖକୁ ନବବର୍ଷର ଅଭିନନ୍ଦନ ପତ୍ର ପଠାନ୍ତି, ମୁଁ ମଧ ପଠାଏ । ସେଦିନ ଆମେ weet spring ନାମକ ଏକ କ୍ଷୁଦ୍ର



କାନାଡ଼ାରେ ଲେହିତ ଭରତୀୟଙ୍କ ସହ

ସହରରେ ରହିଲୁଁ । ଏକ Hotel ରେ ସେଠାରେ ସମସ୍ତଙ୍କର ରାତ୍ରି ଭୋଜନର ଆୟୋଜନ ହୋଇଥିଲା । ପ୍ରତି କୋଠରୀରେ T.V. ଓ ବେଶ ସୁନ୍ଦର ସ୍ଥାନ ସଜ୍ଜା । ଇଉରୋପର ବିଭିନ୍ନ ଦେଶ ଓ ଆମେରିକାରେ ପରିଭ୍ରମଣ କଲାବେଳେ ମୁଁ ହୋଟେଲ ମାନଙ୍କରେ T.V. ଦିନ ଓ ଅର୍ଦ୍ଧରାତ୍ରିରେ ଦେଖିଛି । ସେ ସବୁ ଦେଶରେ ସ୍ତ୍ରୀ ପୁରୁଷର ଯୌନ କ୍ରିୟାର ଉଲଗ୍ନ ଚିତ୍ର କାନାଡ଼ାର T.V. ଚିତ୍ର ପ୍ରଦର୍ଶନ ହୋଇଥାଏ । ଏଠାରେ Sex କୁ a part of life ବୋଲି କୁହାଯାଏ ଏବଂ ଯୌନ ଆଶା ମେଣ୍ଟାଇବାରେ ଏଠା ପୁରୁଷ ଓ ସ୍ତ୍ରୀ ପଶୁପକ୍ଷୀ ଭଳି ପ୍ରକାଶ୍ୟ କହିଲେ ଅତ୍ୟୁକ୍ତି ହେବ ନାହିଁ । ଏଠାରେ ସ୍ତ୍ରୀ ପୁରୁଷର ଏକ ଭୋଗ୍ୟବସ୍ତୁ । ତେଣୁ ତାକୁ ଆକୃଷ୍ଟ କରିବାକୁ ଯାଇ ସବୁ କଥା କହିବାରେ ସେମାନେ ଲଜ୍ଜିତ ନ ହୋଇ ବରଂ ଆମୋଦ ପାଆନ୍ତି ବୋଲି ମୋର ଧାରଣା ହେଲା । ଆମ 'A' ଦଳର ସମସ୍ତ ପ୍ରତିନିଧି ମାନେ ଏହିଠାରେ ଆସି ରହିଲେ ।

ତହିଁ ପରଦିନ ଜିନିଷପତ୍ର ଧରି ସେହି ବସ୍‌ରେ ସମସ୍ତ ପ୍ରତିନିଧି ହୋଟେଲରୁ ପ୍ରାତଃ ଭୋଜନ ସାରି ବାହାରିଲୁଁ । ଠିକ୍ ପୂର୍ବଦିନ ପରି ବାଟରେ ଥିବା ବିଭିନ୍ନ ଦର୍ଶନୀୟ ସ୍ଥାନ ଦେଖି ଦେଖି ଯିବାର କାର୍ଯ୍ୟକ୍ରମ ଥାଏ । ସେଦିନ ପ୍ରଥମେ ଆମେ କାନାଡ଼ା ଉପମହାଦେଶର ଆଦିମ ଅଧିବାସୀ ବା ସେଠାରେ ରହୁଥିବା Native ଅର୍ଥାତ୍ Red Indian ବୋଲାଉଥିବା ଲୋକଙ୍କ ଅଞ୍ଚଳକୁ ପ୍ରଥମେ ଗଲୁଁ । ଉକ୍ତ ଲୋକେ ସେମାନଙ୍କ ରଙ୍ଗ ବେରଙ୍ଗର ପୋଷାକ ପିନ୍ଧି ବାଛି ବଛାଇ ଉଭୟ ସ୍ତ୍ରୀ ଓ ପୁରୁଷ ଆମକୁ ଅଭିବାଦନ ଜଣାଇ ତାଙ୍କ ସହିତ ନାଚିବାକୁ ଅନୁରୋଧ କଲେ ଠିକ୍ ଆମ ଆଦିବାସୀ ଲୋକେ ଗ୍ରାମାଞ୍ଚଳରେ ଥିବା ଭଳି । ଆମେ ମଧ୍ୟ କେତେଜଣ ଯୋଗ ଦେଲୁ । ଫଟୋ ମଧ୍ୟ ସେହି ନାଚୁଥିବା ଅବସ୍ଥାରେ ଆମର ଉଠିଛି । ସେମାନେ କହନ୍ତି; ପୂର୍ବରୁ ତାଙ୍କର ବହୁ ମହିଷାଦି ପଶୁ ଥିଲା ଏବଂ ସେ ଅଞ୍ଚଳ ପୁରା ଜଙ୍ଗଲ ଥିଲା । ଆମେରିକୀୟ ମାନେ ପ୍ରାୟ ୧୦୦ ବର୍ଷ ପୂର୍ବେ ଏଠାକୁ ଆସିଥିଲେ । ଏ ଅଞ୍ଚଳରେ ଥିବା ମହିଷି ଗୁଡ଼ିକ ସେମାନେ କ୍ରମେ ଖାଇବାକୁ ଆରମ୍ଭ କରି ଶେଷ ହେବାପରେ ଛାଡ଼ି ଚାଲିଗଲେ । ଯେଉଁ ସବୁ ସ୍ଥାନରେ ମହିଷ ସବୁ ରହୁଥିଲେ, ସେ ସବୁ ସ୍ଥାନ ସେମାନେ ସଂରକ୍ଷଣ କରିଛନ୍ତି । ଆମକୁ ବୁଲାଇ ସେ ସବୁ ଦେଖାଇଲେ । ସେମାନେ ଆମେରୀକୀୟଙ୍କ ଘୋର ବିରୋଧି । ସେଠାରୁ ଯାଇ ସାଇପ୍ରସହ୍ରଦ ନିକଟସ୍ଥ ଏକ ମନୋହର ସ୍ଥାନରେ ପହଞ୍ଚିଲୁ । ଦୁଇ ପାଖ ପାହାଡ଼, ସବୁଜ ବୃକ୍ଷଲତା ଓ ମଝିରେ ଏକ ହ୍ରଦ । ଏହି ହ୍ରଦ କୂଳରେ ଏକ ଅତ୍ୟାଧୁନିକ ହୋଟେଲ । ସେଠାରେ ଆମର ମଧ୍ୟାହ୍ନ ଭୋଜନ ପରେ ଆମେ ପୁଣି ରାତିକୁ (୫.୧୦.୮୫) ତାରିଖ ଶନିବାର ଫେରିଆସି ସେହି Sweet Spring ର hotel ରେ ଅବସ୍ଥାନ କଲୁଁ ।

୬.୧୦.୮୫ ତାରିଖ ସକାଳେ ପ୍ରାତଃ ଭୋଜନ ଶେଷ କରି ପୂର୍ବ ଭଳି ବିଭିନ୍ନ ବସରେ ଆମ ଗ୍ରୁପରେ ଥିବା ସମସ୍ତ ପ୍ରତିନିଧିମାନେ ସାସ୍‌କା ଚୂନ ଅଭିମୁଖେ ଯାତ୍ରା କଲୁ । ସେଦିନ ଖୁବ୍ ଥଣ୍ଡା ପଡ଼ିଥାଏ । ବର୍ଷାଭଳି ବରଫଗୁଣ୍ଡ ସବୁ ବର୍ଷା ହେଉଥାଏ । ପ୍ରଥମେ ଆମେ ସେଠାକାର ସାସକାଚୂନ ରାଜ୍ୟ ବିଧାନସଭାର ବାଚସ୍ପତି Mr. Swan ଙ୍କ ଗ୍ରାମ ବା ଏକ ଛୋଟ ସହରରେ ପହଞ୍ଚିଲୁ । ଶ୍ରୀଯୁକ୍ତ ସ୍ୱାନ ଆମକୁ ପ୍ରାତଃ ଭୋଜନ ଦେଲେ । ମୋ ପାଖରେ ଥିବା ସମସ୍ତ ଶୀତ ବସ୍ତ୍ର ପିନ୍ଧି ମଧ୍ୟ ଥଣ୍ଡାକୁ ସମ୍ଭାଳି ପାରୁ ନ ଥାଉଁ । ସେ ଘରେ ନିଆଁ ରଖିଥିଲେ । ସେଠାରୁ ବାହାରି କିଛି ସମୟ ଗଲାପରେ ବାଟରେ ଏକ ପୋଟାସ ଖଣି ପରିଦର୍ଶନରେ ଗଲୁ । Lift ଯୋଗେ ତଳକୁ ପ୍ରାୟ ଏକ ହଜାର ଫୁଟ ଗଲାପରେ ଖଣି ଯନ୍ତ୍ର ସାହାଯ୍ୟରେ ଖନନ କରାଯାଉଥିବାର ଦେଖିଲୁ । Lift ରୁ ଓହ୍ଲାଇ ଜିପ୍‌ଯୋଗେ ସେ ଦୁଙ୍ଗ ମଧ୍ୟରେ ପ୍ରାୟ ୨୫ ମିନିଟ୍ ଗଲାପରେ ଖୋଳା ଯାଇଥିବା ସ୍ଥାନରେ ପହଞ୍ଚିଲୁ । ଭିତରେ ମାତ୍ର ତିନିଜଣ ଲୋକ ଥା'ନ୍ତି । ସମସ୍ତ କାମ ଯନ୍ତ୍ରଚାଳିତ । ଯେଉଁ ୩ ଜଣ ଭିତରେ କାମ କରନ୍ତି ସେମାନଙ୍କ ଦରମା ଭାରତୀୟ ମୁଦ୍ରାରେ ମାସକୁ ୩୦/୪୦ ହଜାର ଟଙ୍କା । ସେଠାରୁ ବାହାରି ସନ୍ଧ୍ୟା ବେଳକୁ ସାସ୍‌କାଚୂନ ପହଞ୍ଚିଲୁଁ । ସାସ୍‌କାଚୂନ ସହରର ଚାରିପଟେ ଏହି ଭଳି ୧୦ଟି ବିଭିନ୍ନ ଖଣିଥିବାର ଜାଣିଲୁଁ । ଅନ୍ୟମାନେ ମଧ୍ୟ ତାଙ୍କ ବାଟରେ ପଡୁଥିବା ଏହିଭଳି ଅନ୍ୟ ଖଣିଗୁଡ଼ିକ ପରିଦର୍ଶନ କରିଥିବା ଜାଣିଲୁ । ଆମେ ସେଠାକାର Hotel Remidal ନାମକ ଏକ ବଡ଼ ହୋଟେଲରେ ରହିଲୁଁ । C.P.A. କୁ ଆସିଥିବା ପୃଥିବୀର ଅନ୍ୟ ସମସ୍ତ

ଦେଶର ପ୍ରତିନିଧି ମାନେ ମଧ୍ୟ ସେହି ହୋଟେଲରେ ରହିଲେ । ଏଠାରେ ସମ୍ମିଳନୀ ୭ ତାରିଖଠାରୁ ୧୧ ତାରିଖ ସୁଦ୍ଧା ଚାଲିବାର କାର୍ଯ୍ୟକ୍ରମ ଥିଲା । କାନାଡ଼ାରେ ପ୍ରଥମେ ବହୁତ ଜଙ୍ଗଲ ଥିଲା । ତେଣୁ ଅଧିକାଂଶ ଘର ଗୁଡ଼ିକରେ ବିଶେଷ ଭାବେ ସାଜସଜ୍ଜା ଅତି ମୂଲ୍ୟବାନ କାଠରେ ହୋଇଥିବାର ଦେଖାଯାଉଥିଲା ।

ଆଜି ତା ୭.୧୦.୮୫ ସକାଳ ସାଢ଼େ ୯ଟା ବେଳେ ଉକ୍ତ ହୋଟେଲର Conference Hall ରେ C.P.A. ର ଅଧିବେଶନ ଆରମ୍ଭ ହେଲା । ପ୍ରତିନିଧି ଓ ଦର୍ଶକ ମିଶି ଭାରତ ସମେତ ଛୋଟ ବଡ଼ ମିଶି ୪୮ଟି ଦେଶରୁ ପ୍ରାୟ ୩୦୦ ପ୍ରତିନିଧି ସମ୍ମିଳନୀରେ ଯୋଗ ଦେଇଥିଲେ । ଭାରତରୁ କେବଳ ୩୨।୩୩ ଜଣ ଥିଲେ । ଶ୍ରୀଯୁକ୍ତ ସ୍ୱାନଙ୍କ ସଭାପତିତ୍ୱରେ ସମ୍ମିଳନୀ ଆରମ୍ଭ ହେଲା । ପ୍ରଥମ ଦିନରେ ବିଷୟ ବସ୍ତୁ ଆଲୋଚନାରେ U.N.O. କୁ ପୃଥିବୀର ଶାନ୍ତି ପାଇଁ ଶକ୍ତିଶାଳୀ କରିବା ସ୍ଥାନ ପାଇଥିଲା । ଏହି ଆଲୋଚନା ଦିନ ଦେଢ଼ଟା ପର୍ଯ୍ୟନ୍ତ ଚାଲି ସ୍ଥଗିତ ରହିଲା ଉପର ଓଳିକୁ । ଏହି ହୋଟେଲରେ ଆମର ପ୍ରାତଃ ଭୋଜନ ଓ ମଧ୍ୟାହ୍ନ ଭୋଜନ ମଧ୍ୟ ବ୍ୟବସ୍ଥା ଥିଲା । ଗୋଟିଏ ହୋଟେଲରେ ୩୮୦ ଜଣ ପ୍ରତିନିଧି ରହିବା, ସେମାନଙ୍କ ସେଠାରେ ଖାଇବା ଓ ସମ୍ମିଳନୀ ମଧ୍ୟ ହୋଇପାରିବା ବ୍ୟବସ୍ଥା ଥିବାରୁ ଆମକୁ ବହୁତ ସୁବିଧା ଥିଲା । ମୁଁ ୧୭ ମହଲା ଉପରେ ଥିବା ଏକ କୋଠରୀରେ ରହୁଥିଲି । ଉପରଓଳି ଆଉ ସକାଳ ପରି ଖୋଲା ଅଧିବେଶନ ବା Plenary session ନ ଥିଲା । କେତେ Penal session ମାନ ବିଭିନ୍ନ ବିଷୟ ବସ୍ତୁର ଆଲେଚନା ପାଇଁ ହୋଇଥିଲା । ତତ୍‌ପରେ ୪ଟା ବେଳେ Common wealth ବା ରାଜ୍ୟଗୋଷ୍ଠୀ ସମ୍ମିଳନୀର ସାଧାରଣ ସମ୍ପାଦକ (Secretary general) Mr. Ramphal ରାଜ୍ୟଗୋଷ୍ଠୀକୁ U.N.O. ବା ଅନ୍ୟ ବଡ଼ ଶକ୍ତି ଗୋଷ୍ଠୀର ଗୋଡ଼ାଣିଆ ହେବାକୁ ନ ଦେବାରୁ ସେମାନେ କିପରି ଏହି ଦ୍ୱିତୀୟ ବୃହତ ଆନ୍ତର୍ଜାତିକ ଅନୁଷ୍ଠାନକୁ ଦୁର୍ବଳ କରିବାକୁ ଚେଷ୍ଟା କରୁଛନ୍ତି ତହିଁର ସମାଲୋଚନା ଓ ରାଜ୍ୟଗୋଷ୍ଠୀର ନିରପେକ୍ଷ ଆନ୍ଦୋଳନର ଭୂମିକା ସଂକ୍ରାନ୍ତରେ ପ୍ରାୟ ଦେଢ଼ ଘଣ୍ଟା ଧରି ଏକ ଦୀର୍ଘଭାଷଣ ଦେଇଥିଲେ । ଏତିକିରେ ପ୍ରଥମଦିନର ସମ୍ମିଳନୀ ମୁଲତବୀ ରହିଲା ।

ସେ ଦିନ ରାତିକୁ ସାସକାଟୁନ୍‌ରେ ରହୁଥିବା ଭାରତୀୟଙ୍କ ଏକ ସମ୍ବର୍ଦ୍ଧନା ସଭାରେ ଆମେ ଡ଼ାଃଝାକରଙ୍କ ସମେତ ସମସ୍ତ ଭାରତୀୟ ପ୍ରତିନିଧିମାନେ ଯୋଗ ଦେଇଥିଲୁଁ । ସେଠାରେ ହଠାତ୍ କାଳିକିଙ୍କର ମିଶ୍ର ଆମ ବାଉିପଦାର ଡ଼ାକ୍ତର ସୁରେଶ ଚନ୍ଦ୍ର ମିଶ୍ରଙ୍କ ପୁଅ ସହିତ ଦେଖାହେଲା । ସେ ମୋର ସଂପର୍କରେ ପୁତୁରା, ତାଙ୍କ ବାପା ମୋ ମଉସା ପୁଅ ଭାଇ । ସେ ଭାରି ଖୁସି ହେଲା ଏବଂ ସଙ୍ଗେ ସଙ୍ଗେ ତା'ର ସ୍ତ୍ରୀ ଓ ପୁଅଝିଅଙ୍କୁ ଆଣି ଦେଖାକରାଇ ଦେଲା । ସେଠାରେ ଥିବା ଭାରତୀୟ ସ୍ତ୍ରୀ ପୁରୁଷ, ଯୁବକ, ଯୁବତୀ ପ୍ରାୟ ୭୦/୮୦ଜଣ ଉପସ୍ଥିତ ଥିଲେ । ସମ୍ବର୍ଦ୍ଧନା ଏକ କ୍ଲବ୍ ହାଉସ୍‌ରେ ହୋଇଥିଲା । ଭାରତୀୟ ମିଷ୍ଟାନ୍ନ ଓ ଅନ୍ୟ ଜଳଖିଆ ସେମାନେ ନିଜେ ପ୍ରସ୍ତୁତ କରୁଥିଲେ । ଭାରତର ଗୁଜୁରାଟ ଅଞ୍ଚଳର ପୁଅ ଝିଅଙ୍କ ଏକ କାଠି ଖେଳ, ଆମେ ଯାହାକୁ କାଠି ନାଚ କହୁଁ, ତାହା ଦେଖାଇଥିଲେ । ସେଠାରୁ ଫେରି ହୋଟେଲ୍‌ରେ ରାତ୍ରିଭୋଜନ ଶେଷକରି ଅବସ୍ଥାନ କଲି ।

୮.୧୦.୮୫ ତାରିଖ ଦିନ ସକାଳ ୯ଟା ବେଳେ ଖୋଲା ଅଧିବେଶନ ଆରମ୍ଭ ହେଲା ଓ ପୂର୍ବଦିନର ଅସମାପ୍ତ ଆଲୋଚନା ଚାଲିଲା । ସେଦିନ ଉପର ଓଳିକୁ ଖୋଲା ଅଧିବେଶନ ନ ଥିଲା । ତେଣୁ Panel Session ଥିଲା । ମୁଁ ସେଦିନର ଆଲୋଚ୍ୟ ବିଷୟ "Influence of Parliamentarian how to be raised." ଅତି ଉପାଦେୟ ଓ ମୋ ମନ ଲାଖି ବିଷୟ । ଏହି Pannel Session ରେ ବିଭିନ୍ନ ଦେଶର ପ୍ରାୟ ୫୦/୬୦ ଜଣ ପ୍ରତିନିଧି ଯୋଗ ଦେଇଥିଲେ । ସେମାନଙ୍କ ମଧ୍ୟରେ ମୋ ସମେତ ଭାରତୀୟ ୫ ଜଣ ଥିଲେ । C.P.A. ର **Secretary General** ସଭାପତିତ୍ୱ କରିଥିଲେ । ମୁଁ ବିଷୟଟି ଭଲଭାବେ ମୋ ନିଜ ଅଭିଜ୍ଞତାରୁ ଆଲୋଚନା କରିଥିଲି । ୧୧.୧୦.୮୫ ତାରିଖ ସମ୍ମିଳନୀର ଶେଷ ଅଧିବେଶନ ଦିନ ଖୋଲା ଅଧିବେଶନ । ମୋତେ Role of the Parliamentarian ସଂପର୍କରେ କହିବାର ସୁଯୋଗ ମିଳିଥିଲା । ଏ

ସଂପର୍କରେ ମୋ ନିଜ ଅଭିଜ୍ଞତାରେ ସଂସଦୀୟ ଗଣତନ୍ତ୍ର କିପରି ସର୍ବୋତ୍କୃଷ୍ଟ ଶାସନ ପଦ୍ଧତି ସମଗ୍ର ପୃଥିବୀରେ ପ୍ରମାଣିତ ହୋଇଛି, ତାହା କରିବା ସଙ୍ଗେ ସଙ୍ଗେ ଜଣେ ବିଧାୟକ ପକ୍ଷରେ ଏହି ପନ୍ଥାକୁ ଅଧିକ ଲୋକପ୍ରିୟ କରାଇ ଏହି ଉଦ୍ଦେଶ୍ୟକୁ ସଫଳ କରିବାରେ ଗୁରୁ ଦାୟିତ୍ୱ ରହିଛି । ତାହା ନିଜର ପ୍ରାୟ ୩୨ ବର୍ଷ ଜୀବନର ଅଭିଜ୍ଞତାରୁ କହି ଏହି ପ୍ରଥାର ସବୁଠାରୁ ବଡ଼ ବିପଦ ହେଉଛି ଅଯୋଗ୍ୟ ଓ ଦୁର୍ନୀତିଗ୍ରସ୍ତ ଅମଲାତନ୍ତ୍ର ଓ ରାଜନୀତି । ଏଥିରୁ ରକ୍ଷା ପାଇବାର ଏକମାତ୍ର ବାଟ ଜାଗ୍ରତ ଜନମତ । ତେଣୁ ବିଧାୟକର ଏହି ଲୋକ ଚେତନା ସୃଷ୍ଟି କରିବା ଓ ନିଜର ନୈତିକ ମାନ ବଢ଼ାଇବା ସବୁଠାରୁ ବଡ଼ ଦାୟିତ୍ୱ ଓ କର୍ତ୍ତବ୍ୟ ବୋଲି କହିଥିଲି ।

ଆମେ ସମ୍ମିଳନୀ ପାଇଁ ସେଠାରେ ରହିବା ଭିତରେ ମୁଁ, ସେକ୍ରେଟାରୀ ପୁରୋହିତ ବାବୁ ଓ ସୋମନାଥ ରଥ ସେଠାରେ ଥିବା ଶ୍ରୀ କାଳିକିଙ୍କର ମିଶ୍ରଙ୍କ ଘରକୁ ଦୁଇଥର ଯାଇଥିଲୁଁ । ସେ ସେଠାରେ ରହି କାନାଡ଼ାର ନାଗରିକତ୍ୱ ଗ୍ରହଣ କରିଥିବାର ଜାଣିଲି ।.ମୁଁ ଥିବା ମଧ୍ୟରେ କାଳିକିଙ୍କର ତା'ର ସ୍ତ୍ରୀ, ଦୁଇ ଝୁଅ ମୋ ହୋଟେଲକୁ ମଧ୍ୟ ମୋ ପାଇଁ ଖାଇବାର କେତେ ଥର ଧରି ଆସିଥିଲେ । ମୋତେ ସେ କାକା ବୋଲି କହୁଥିଲା । ତା'ର ସେଠାରେ ବହୁ ସଂପ୍ରତ୍ତି ଥିବାର ଓ ସେଠାକାର ଜଣେ ଜଣାଶୁଣା ବ୍ୟକ୍ତି ବୋଲି ଜାଣିଲି । ସେ ଡ଼ାକ୍ତରୀ ଚିକିତ୍ସା ଆଗେ କରୁଥିଲେ । ଏବେ ବିଭିନ୍ନ ସ୍ଥାନରେ ଘରଡ଼ିହ କିଣି ତାକୁ ବିକ୍ରୀ କରି ଲକ୍ଷପତି ହୋଇଥିବାର ଶୁଣିଲି । ସେ ଆମକୁ ବୁଲେଇ ବିଭିନ୍ନ ସ୍ଥାନ ଦେଖାଇବା ସଙ୍ଗେ ସଙ୍ଗେ ଆମକୁ ସେଠାକାର କିଛି ଜିନିଷ କିଣାକିଣି କରିବାରେ ସାହାଯ୍ୟ କରିଥିଲେ । ମୋତେ ସେ ସେଠାକାର ଓଭର କୋଟ୍ ନିଜ ପଇସାରେ କିଣି ଉପହାର ଦେଇଥିଲେ । ଏହି ସହରରେ ଗୋଟିଏ ଭଚକୋଟୀର ଅତ୍ୟାଧୁନିକ ଯନ୍ତ୍ରପାତି ଓ ଚିକିତ୍ସାଳୟ ଥିବାର ଦେଖିଲି । ସେଠାରେ ଥିବା ସମୟରେ ଉକ୍ତ ସହରରେ ଚାକିରୀ ଓ ବ୍ୟବସାୟ କରୁଥିବା କେତେକ ବଙ୍ଗାଳି ଲୋକେ ମଧ୍ୟ ପଶ୍ଚିମବଙ୍ଗ, ଆସାମ ଓ ଓଡ଼ିଶାର ପ୍ରତିନିଧିମାନଙ୍କୁ ଡ଼ାକି ଏକ ବନ୍ଧୁ ମିଳନ କରିଥିଲେ ।

କାନାଡ଼ା ଦେଶରେ ପୃଥିବୀର ବିଭିନ୍ନ ପ୍ରାନ୍ତରୁ ଲୋକେ ଯାଇ ପ୍ରାୟ ୧୦୦ ବର୍ଷ ହେବ ବାସ କରୁଥିବାରୁ ସେଠାରେ ସେପରି କିଛି ଜାତୀୟ ସଂସ୍କୃତି ଜନ୍ମି ପାରିନାହିଁ । ସେଠାକୁ ଆମେରିକା, ବ୍ରିଟେନ ପ୍ରଭୃତି ବିଭିନ୍ନ ଇଉରୋପୀୟ ଦେଶର ଲୋକେ ଭାରତୀୟ ଆଫ୍ରିକୀୟ ତଥା ଅନ୍ୟାନ୍ୟ ଦେଶର ଲୋକେ ମଧ୍ୟ ଆସି ସ୍ଥାୟୀଭାବେ ବସବାସ କରୁଛନ୍ତି । କେତେକ ସହରରେ ଶତବାର୍ଷିକୀ ପାଳନ ହେଉଥିବାର ଦେଖିଲି । ସମ୍ମିଳନୀ ୧୧.୧୦.୮୫ ତାରିଖରେ ଶେଷ ହେବା ପରେ ୧୨.୧୦.୮୫ ସକାଳେ ମୁଁ ଓ ପୁରୋହିତ ବାବୁ ଟୋକିଓ ଅଭିମୁଖେ ଯାତ୍ରା କଲୁଁ ଏବଂ ସେଠାରୁ ଆସି ଭେକୋଂଭର ନାମକ ଆଉ ଏକ ସହରରେ ପହଞ୍ଚି ୨/୩ ଘଣ୍ଟା ଅପେକ୍ଷା କଲୁଁ ସେଠାକାର କନ୍‌ସଲ୍ ଜେନେରାଲ ଖୁବ୍ ଭଲଲୋକ । ସେ ଆମକୁ ତାଙ୍କ ଘରକୁ ନେଇଗଲେ ଓ ଆମେ ସେଠାରେ ଗାଧୁଆ କାମ ଶେଷ କଲାପରେ ଏକ ଭାରତୀୟ ହୋଟେଲକୁ ନେଇ ଆମକୁ ମଧ୍ୟାହ୍ନ ଭୋଜନ ଦେଲେ । ଭେଙ୍କୋଉର ସହରର ଲୋକ ସଂଖ୍ୟା ୨ ଲକ୍ଷରୁ ଅଳ୍ପ ଅଧିକ । ଅତି ସୁନ୍ଦର ସହର । ଶାନ୍ତ ଓ ମନୋରମ । ଶୁଣିବାକୁ ମିଳିଲା ଯେ ସେଠାରେ ପ୍ରାୟ ୫୦ ହଜାର ଶିଖ ଲୋକ ବାସ କରନ୍ତି । ସେ ଅଞ୍ଚଳ ପୁରାପୁରି ଜଙ୍ଗଲ ଥିଲା ବେଳେ ଅନେକ ଶିଖ୍ କାଠ ବ୍ୟବସାୟ କରିବାକୁ ଆସି ସେଠାକାର ବାସିନ୍ଦା ହୋଇ ଯାଇଛନ୍ତି । ଶିଖ୍‌ମାନେ ସେଠାରେ ଖୁବ୍ ସ୍ୱଚ୍ଛଳ । କେତେଜଣ କୋଟିପତି ଧନୀମଧ୍ୟ ଭାରତର ଖଲିସ୍ଥାନ ଆନ୍ଦୋଳନକୁ ପୂରା ସାହାଯ୍ୟ କରୁଥିବାର ଶୁଣିଲୁଁ । ଦିନ ୩ଟା ବେଳେ ଭେଙ୍କୋଉରରୁ ଟୋକିଓ ଯିବା ଉଡ଼ାଜାହାଜରେ ଆମେ ବସିଲୁଁ । ଉଡ଼ାଜାହାଜ ପ୍ରଶାନ୍ତ ମହାସାଗର ଉପର ଦେଇ ଆସିଲା । ବାଟରେ International Date line ପାର ହେଲୁଁ । ପ୍ରାୟ ୧୨।୧୩ ଘଣ୍ଟା ଉଡ଼ାଜାହାଜରେ କଟାଇଲାପରେ ୧୪.୧୦.୮୫ ତାରିଖ ଉପରଓଳି ୪ଟା ବେଳେ ଟୋକିଓ ପହଞ୍ଚିଲୁ । International Date line ପାର ହେବା ଯୋଗୁଁ ୧୨ ତାରିଖରେ ବାହାରି ଟୋକିଓରେ ୧୩ ତାରିଖ ପରିବର୍ତ୍ତେ ୧୪ ତାରିଖରେ ପହଞ୍ଚିଲୁଁ ।

# ଟୋକିଓ ସହର

ଟୋକିଓଠାରେ ଓହ୍ଲାଇବା ବେଳକୁ ସେଠାରେ ବୈଦେଶିକ ଦୂତାବାସର ଉଚ୍ଚ ଅଫିସର ଜଣେ ମହିଳା ଥିଲେ । ସେ ଆମକୁ ଉଡ଼ାଜାହାଜ ଷ୍ଟେସନରୁ ୬୪ କି.ମି. ଦୂରରେ ଅବସ୍ଥିତ ଟୋକିଓ ସହରକୁ ଆଣି ଏକ ହୋଟେଲରେ ରଖାଇଦେଲେ । ଉଡ଼ାଜାହାଜ ଷ୍ଟେସନରୁ ଟୋକିଓ ସହରକୁ ଆସୁଥିଲା ବେଳେ ଦୁଇ ପାଖରେ ଘଞ୍ଚ ଜଙ୍ଗଲ ସୃଷ୍ଟି କରାଯାଇଥିବାର ଦେଖିଲୁଁ । ଆଶ୍ଚର୍ଯ୍ୟର ବିଷୟ ଯେ, ଜାପାନ ଭଳି ଏକ ଧନଶାଳୀ ଦେଶରେ ଟୋକିଓ ସହରକୁ ଆସିଲା ବେଳେ ୪ଟି ସ୍ଥାନରେ ଟୋଲଗେଟ୍‌ରେ ଫିସ୍ ଦେବାକୁ ପଡ଼ିଲା । ରାସ୍ତାଗୁଡ଼ିକ ଅତି ଭଲ ଓ ପରିଷ୍କାର ଅନେକ ସ୍ଥାନରେ fly over ବା ଉପର ସଡ଼କ କରାଯାଇ ଯିବା ଆସିବା ଭିଡ଼ କମିଯାଇଛି । ଶୁଣିଲୁଁ ଯେ, ରାସ୍ତାରେ ଯେଉଁ ସବୁ ଦୁର୍ଘଟଣା ଘଟୁଛି, ବା ଭିଡ଼ ହେଉଛି, ତାହା ଜାଣିବା ପାଇଁ କମ୍ପ୍ୟୁଟର ମେସିନ୍ କରାଯାଇଛି । ସହର ଖୁବ୍ ଜନବସତି ପୂର୍ଣ୍ଣ । ତଥାପି ଅତି ପରିଷ୍କାର, କୋଠାଗୁଡ଼ିକ ସୁନ୍ଦର ଭାବେ ତିଆରି ହେବାର ଦେଖାଯାଉଥାଏ । କୌଣସି ଘର ଛଅ ମହଲାରୁ କମ୍ ନୁହେଁ । ସ୍ଥାନାଭାବରୁ ସମୁଦ୍ରକୁ ପୋତାଯାଇ ସହର ବଢ଼ାଯାଇଛି । ହୋଟେଲରେ ପହଞ୍ଚିଲା ପରେ ଭାରତର କନ୍‌ସଲ ଜେନେରାଲ ଆମକୁ ଏକ ଭାରତୀୟ ହୋଟେଲକୁ ଏକ ରାତ୍ରିଭୋଜନ ପାଇଁ ନିମନ୍ତ୍ରଣ ପଠାଇଲେ । ସେଠାରେ ପହଞ୍ଚି ଦେଖିଲୁ, ନାଗାଲାଣ୍ଡର ବାଚସ୍ପତି ଓ ମେଘାଳୟର ମନ୍ତ୍ରୀ ମଧ ଅଛନ୍ତି । ସେମାନେ ପୂର୍ବଦିନୁ କାନାଡ଼ାରୁ ଆସି ପହଞ୍ଚିଥିଲେ । ତେଣୁ ସେମାନେ, ମୁଁ , କନ୍‌ସଲ ଜେନେରାଲ ଓ ଉକ୍ତ ମହିଳା ଅଫିସର ମିଶି ଭାରତୀୟ ଖାଦ୍ୟ ଉକ୍ତ ହୋଟେଲରେ ଖାଇଲୁଁ । ଟୋକିଓ ପୃଥିବୀର ସର୍ବବୃହତ ସହର ମଧ୍ୟରୁ ଅନ୍ୟତମ । ଫ୍ରାନ୍ସର ପ୍ୟାରିସ ସହରରେ ଥିବା Eemphil tower ଭଳି ମଧ Tokyo tower ତିଆରି ହୋଇ ପୃଥିବୀରେ ଜାପାନର ଇଞ୍ଜିନିୟର ମାନଙ୍କ କାରିଗରୀ କୌଶଳର ପରାକାଷ୍ଠା ପ୍ରଦର୍ଶନ କରିଛି । ବିଶେଷ କରି ଇଲୋକ୍ଟ୍ରୋନିକ ଜିନିଷ ଓ ଅନ୍ୟାନ୍ୟ ମେସିନ ଓ ଇଂଜିନ ତିଆରିରେ ଜାପାନ ପୃଥିବୀର ଅନ୍ୟ ଶିଳ୍ପୋନ୍ନତ ତଥା ବୃହତ ଶକ୍ତି ରାଷ୍ଟ୍ରଗୁଡ଼ିକ ଅନ୍ତରୀକ୍ଷ ଗବେଷଣା ଓ ପରମାଣୁ ଅସ୍ତ୍ର ତିଆରିରେ ବହୁଅର୍ଥ ଓ ସାମର୍ଥ୍ୟ ବିନିଯୋଗ କରୁଥିବାବେଳେ ସେ ସବୁ କାର୍ଯ୍ୟରେ ନ ଲାଗି ନିଜ ଦେଶର ଲୋକ ତଥା ଜାତୀୟ ଆୟ ବୃଦ୍ଧି ପାଇଁ ବ୍ୟବସାୟ କ୍ଷେତ୍ରରେ ଅଧିକ ଅଗ୍ରଗତି ପାଇଁ ବିଭିନ୍ନ Consumer goods, electronics goods ଶସ୍ତାଦରରେ ତିଆରି କରି ପୃଥିବୀ ବଜାରକୁ ଅକ୍ତିଆର କରିବାରେ ସଫଳ ହୋଇ ସାରିଲାଣି । ଜାପାନର ମୋଟର କାର ଛୋଟ ଓ କମ୍ ପେଟ୍ରୋଲ ଖର୍ଚ୍ଚ ଯୋଗୁଁ ଏସିଆ ତଥା ଇଉରୋପ ଦେଶରେ ବିଶେଷ ଭାବରେ ପ୍ରଚଳନ ହୋଇଥିବାର ଦେଖାଗଲାଣି ।

ସହରରେ ଥିବା କେତୋଟି Tax free ଦୋକାନରୁ ମୁଁ ୧୩୦୦ ଟଙ୍କାରେ ଏକ କ୍ୟାମେରା ଓ ଅନ୍ୟାନ୍ୟ ଇଲୋକ୍ଟ୍ରୋନିକ୍ସ ଜିନିଷ କିଣିଲି । ସେମାନେ ଆମ Pass port ଦେଖି ତାହା ଉଲ୍ଲେଖ କରି ଆମଠାରୁ ନିର୍ଦ୍ଧାରିତ ଟ୍ୟାକ୍ସ ନ ଦେଇ ଉକ୍ତ ଜିନିଷର ମୂଲ୍ୟ କେବଳ ନେଲେ । ସୁନ୍ଦର ବ୍ୟବସାୟିକ କୌଶଳ ନିଜ ଦେଶ ଲୋକଙ୍କଠାରୁ Tax ନେବ । କିନ୍ତୁ ବିଦେଶୀ ଲୋକଙ୍କୁ ଛାଡ଼ କରିବ ।

ସମୁଦ୍ର କୂଳରେ ସହର ହୋଇଥିବାରୁ ସମୁଦ୍ର ପୋତା ଯାଇ ସହର ଗଢ଼ାଗଲା ପରି ଲାଗୁଥାଏ । ସହର ଉପରେ ଯାଇ ଥିବା fly over ସଡ଼କ ଓ ଏପରିକି ରେଳଲାଇନର ତଳ ସ୍ଥାନ ମଧ ଦୋକାନ ବଜାରରେ ପରିଣତ କରାଯାଇ କୌଣସି ସ୍ଥାନ ଖାଲି ରଖା ଯାଇ ନ ଥିବାର ଦେଖିଲି । ଦୋକାନରେ ଜିନିଷ କିଣୁଥିବା ବେଳେ ଉପରେ ଟ୍ରେନ ଯାଉଥିବାର ଦେଖିଲୁ । ସ୍ଥାନାଭାବ ଯୋଗୁଁ ସବୁସ୍ଥାନର ଖୁବ୍ ଭଲ ଭାବେ ସଦୁପଯୋଗ କରାଯାଇଛି । ଦୂତାବାସରୁ ଯାଉଥିବା ବେଳେ ତାଙ୍କ ଗାଡ଼ିରେ ଆମକୁ ବିଭିନ୍ନ ଦୋକାନ ଓ ସ୍ଥାନ ବୁଲାଇ ଏକ ଭାରତୀୟ ହୋଟେଲକୁ ଆଣିଲେ । ଉକ୍ତ ହୋଟେଲରେ ଭାରତୀୟ ଖାଦ୍ୟ ଖାଇବାପାଇଁ ଏତେ ଲୋକଙ୍କ (ସମସ୍ତେ ପ୍ରାୟ ଅଣଭାରତୀୟ) ଭିଡ଼ ଯେ, ଆମକୁ କିଛି ସମୟ ଛିଡ଼ା

ହୋଇ ରହିବାକୁ ପଡ଼ିଲା । ଅବଶ୍ୟ ଏତେ ଲୋକ ହେଲେ ମଧ ତୁରନ୍ତ ଖାଦ୍ୟ ପରିବେଷଣ କରାଯାଉଥିଲା । ଆମ୍ଭେ ଏକାବେଳକେ ହୋଟେଲରୁ ବାହାରି ଆସିଥିଲୁଁ । ତେଣୁ ମଧ୍ୟାହ୍ନ ଭୋଜନପରେ ସିଧା ଉଡ଼ାଜାହାଜ ଷ୍ଟେସନକୁ ଗଲୁ । ଟୋକିଓ କେବଳ ଯେ ପୃଥିବୀର ଏକ ବଡ଼ସହର (ଦ୍ୱିତୀୟ ବୃହତ୍ତମ) ତାହା ନୁହେଁ, ଏଠାରେ ନିତ୍ୟବ୍ୟବହାର୍ଯ୍ୟ ଜିନିଷପତ୍ରର ଦାମ୍ ପୃଥିବୀର ଅନ୍ୟ ସ୍ଥାନତୁଳନାରେ ଅଧିକ । ଏପରିକି ଆମେ ଯେଉଁ ହୋଟେଲରେ ଥିଲୁଁ ଅନ୍ୟ ସ୍ଥାନରେ ହୋଟେଲ ଅପେକ୍ଷା ଅତି ଛୋଟ କୋଠରୀ କିନ୍ତୁ ଭଡ଼ା ସବୁଠାରୁ ଅଧିକ ।

## ସିଙ୍ଗାପୁର

ଟୋକିଓରୁ ଉପର ଓଳି ବାହାରି ସିଙ୍ଗାପୁରରେ ଆମେ ପ୍ରାୟ ମଧ ରାତ୍ରିରେ ପହଞ୍ଚିଲୁ । ବାଟରେ ହଂକଂ ସହର ଠରେ ଉଡ଼ାଜାହାଜ ବହୁତ ସମୟ ରହିଲା । ସେଦିନ ଟୋକିଓ ଛାଡ଼ିବା ମଧ ଡେରି ହୋଇଗଲା । ଯାହା ହେଉ ଆମେ ସିଙ୍ଗପୁରରେ ଓହ୍ଲାଇ ଆମ ଜିନିଷପତ୍ର ବାହାର କରିବା ବେଳେ ଦୂତାବାସର ଲୋକ ଆମାକୁ ସେଠାରେ ଭେଟିଲେ ଓ ତାଙ୍କ ଗାଡ଼ିରେ ସିଙ୍ଗାପୁର ସହରକୁ ଆଣି Hotel Oberoi ରେ ରଖାଇ ଦେଲେ । ତହିଁ ପରଦିନ ସକାଳେ ମଧ ଉକ୍ତ ଦୂତାବାସ ଲୋକ ତାଙ୍କ ଗାଡ଼ିରେ ବିଭିନ୍ନ ସ୍ଥାନ ବୁଲାଇ ଦେଖାଇଥିଲେ । ଉପରଓଳି ଆମେ ସେଠାକାର ବଜାରରୁ କିଛି ଜିନିଷ କିଣିଲୁଁ । ସିଙ୍ଗାପୁର ଏକ ଟିକସ୍ ଫ୍ରି ସହର ହୋଇଥିବାରୁ ବିଶେଷ କରି ଜାପାନୀ ଜିନିଷ ଶସ୍ତାଦରରେ ମିଳେ । ଆମେ ଭାରତୀୟ ଚାରି ଟଙ୍କା ବିନିମୟରେ ଏକ ଡ଼ଲାର ମିଳେ । ଉପରଓଳି ସିଙ୍ଗାପୁର ସହରର ଏକ ପାଖରେ ସମୁଦ୍ର ଭିତରେ ଥିବା ଏକ ମନୋରମ ଛୋଟ ଦ୍ୱୀପକୁ ଯିବାପାଇଁ ଆକାଶ ପଥରେ (Rope way) ବିଦ୍ୟୁତ ଚାଳିତ ଝୁଲା ଅଛି । ସେଥିରେ ଆମେ ଦୁଇଜଣ ଗଲୁଁ । ଖୁବ୍ ଉପରେ ଯାଉଥିବା ବେଳେ ଖୁବ୍ ଭିଡ଼ । ମୋର ମନେ ପଡ଼ିଲା ଆମ ମୟୂରଭଂଜର ଶିମିଳିପାଳ ପର୍ବତର ବରେହିପାଣି ଜଳପ୍ରପାତ ଓ ଯୋରନ୍ଦା ଜଳପ୍ରପାତର ତଳକୁ ଯିବାପାଇଁ ଏହିପରି Rope way (ରଜ୍ଜୁରାସ୍ତା) କଲେ ଲୋକେ ବିଶେଷ ଖୁସିରେ ଯାଆନ୍ତେ ଏବଂ ଏଠିକାପରି ପରିବ୍ରାଜକ ତଥା ସ୍ଥାନୀୟ ଲୋକଙ୍କ ଠାରୁ ଯଥେଷ୍ଟ ଆୟ ହୁଅନ୍ତା ।

ସିଙ୍ଗାପୁରର ଲୋକସଂଖ୍ୟା ମୋଟ ୨୫ ଲକ୍ଷ । କ୍ଷୁଦ୍ର ଅଞ୍ଚଳକୁ ନେଇ ଏକ ଦେଶ । ସିଙ୍ଗାପୁର ମଧ ଏକ ପ୍ରଧାନ ବନ୍ଦର । ତେଣୁ ଆନ୍ତର୍ଜାତିକ ଉଭୟ ଜଳଜାହାଜ ଓ ଉଡ଼ାଜାହାଜ ବହୁ ପରିମାଣରେ ସିଙ୍ଗାପୁର ଆସୁଥିବା ଓ ଏହା ଟିକସ୍ ଛାଡ଼ ଯୋଗୁଁ ଏକ ପ୍ରଧାନ ବ୍ୟବସାୟୀ କେନ୍ଦ୍ର ହୋଇଥିବାରୁ ଲୋକ ତଥା ସରକାରଙ୍କ ଆର୍ଥିକ ସମ୍ବଳ ବହୁପରିମାଣରେ ବୃଦ୍ଧିହୋଇଥିବାର ଜାଣିଲୁଁ । ସହରରେ ପରିବ୍ରାଜକଙ୍କ ପାଇଁ ବହୁ ବଡ଼ ବଡ଼ ହୋଟେଲ ମାନ ରହିଥିବାର ଦେଖିଲୁଁ । ବୃକ୍ଷଲତା ଓ ଫୁଲଫଳ ଭରା ସହରର ସୌନ୍ଦର୍ଯ୍ୟ ଅତ୍ୟନ୍ତ ମନୋରମ । ଏହାର ସୁନ୍ଦର ପରିବେଶ ପରିବ୍ରାଜକଙ୍କୁ ଆକର୍ଷଣ କରୁଛି । ରାସ୍ତା ଗୁଡ଼ିକ ପ୍ରଶସ୍ତ ଓ ପରିଷ୍କାର । ଏଠାର ବିଶ୍ୱବିଦ୍ୟାଳୟରେ ବହୁ ଭାରତୀୟ ଅଧ୍ୟାପକ ଥିବାର ଶୁଣିଲୁଁ । ବହୁ ଭାରତୀୟ ବ୍ୟବସାୟ ବାଣିଜ୍ୟ କରି ବସବାସ କରୁଥିବାର ଦେଖିଲୁଁ । ରାତିରେ ମଧ ସିଙ୍ଗାପୁରରେ ରହିଲୁଁ । ସିଙ୍ଗାପୁରର ଅନ୍ୟ ଏକ ବ୍ୟବସ୍ଥା ଟ୍ରାନ୍ସପୋର୍ଟ ବା ଯାତାୟତ ବ୍ୟବସ୍ଥା । ସମସ୍ତ ବସ୍ ସରକାରୀ ଓ ଯଥେଷ୍ଟ ପରିମାଣରେ ଚାଲୁଛି । ପାଖ ପାଖରେ Bus stoppage ରହିଛି । ସବୁ ସ୍ଥାନରେ ବୋର୍ଡ଼ରେ କେଉଁବସ୍ (ନମ୍ବର ଅନୁଯାୟୀ) କେଉଁ ଲାଇନରେ କେଉଁଠାରୁ ଆସୁଛି ଓ କେଉଁ ସ୍ଥାନ ଦେଇ ଯିବ ସେ ଲେଖା ମଧ ବୋର୍ଡ଼ରେ ରହିଛି । ତେଣୁ ପାସେଞ୍ଜର ପକ୍ଷରେ ଯିବାର କୌଣସି ଅସୁବିଧା ନାହିଁ । ଗୋଟେ ନୂଆ କଥା ଯେ କୌଣସି ବସ୍‌ରେ କଣ୍ଡକ୍ଟର ନାହିଁ । ଡ୍ରାଇଭର ନିକଟରେ ନିର୍ଦ୍ଧାରିତ ସ୍ଥାନପାଇଁ ନିର୍ଦ୍ଧାରିତ ପଇସା ପକାଇଦେଲେ ଟିକେଟ୍ ଆପେ ବାହାରି ଆସିବ । ତେଣୁ କମ୍ ଖର୍ଚ୍ଚରେ ବସ୍ ଚଳାଚଳ କରାଯାଉଛି ବେଶ୍ ଶୃଙ୍ଖଳାର ସହିତ । କେହି ଭଡ଼ା ଫାଙ୍କି ଦେଉ ନାହାନ୍ତି । ପ୍ରତି ପନ୍ଦର ମିନିଟ୍‌ରେ ବସ୍ ଆସୁଥିବାରୁ ବେଶି ଭିଡ଼ ହେଉ ନାହିଁ ।

## ବ୍ୟାଙ୍କକ୍

ତହିଁ ପରଦିନ ୧୬.୧୦.୮୫ ତାରିଖ ସକାଳ ଓଳି ସିଙ୍ଗାପୁରରୁ ଉଡ଼ାଜାହାଜ ଯୋଗେ ବ୍ୟାଙ୍କକ୍ ଆସିଲୁ । ଜିନିଷ ପତ୍ର ଓହ୍ଲାଇ ସେଠାକାର ଦୂତାବାସର ଲୋକଙ୍କୁ ଡ୍ରେରିରେ ପାଇ ସହରକୁ ଆସି ଭିକ୍ଟୋରିଆ ହୋଟେଲରେ ପହଞ୍ଚି ଦୂତାବାସକୁ ଗଲୁଁ । ସେହିଦିନ ଆମର ସନ୍ଧ୍ୟା ବେଳକୁ ସେଠାରୁ କଲିକତା ଆସିବା କଥା । କିନ୍ତୁ ଭାରତୀୟ ଉଡ଼ାଜାହାଜ ଯେଉଁଥିରେ ଆମର ସେଠାରୁ ଆସିବା କଥା, ତାହା ହଂକଂଠାରେ ଖରାପ ହୋଇ ପଡ଼ିଥିବାରୁ ସେଦିନ ଆମ ପକ୍ଷରେ ଆସିବା ସମ୍ଭବ ହେଲାନାହିଁ । ସେଦିନ ପାଇଁ ଆମକୁ ମିଶାଇ ଦୁଇଦିନର ଭତ୍ତା ମିଳିଲା ସେଠାକାର ମୁଦ୍ରାରେ । ଉକ୍ତ ଦୂତାବାସର ଜଣେ ପଞ୍ଜାବୀ ଅଫିସର ତାଙ୍କ ଗାଡ଼ିରେ ନେଇ ଏକ ବ୍ୟବସାୟ କେନ୍ଦ୍ରରେ ପହଞ୍ଚାଇ ଦେଲା । ସେଠାରେ ଅନେକ ଶିଖ ପଞ୍ଜାବୀ ଲୋକ ଦୋକାନ କରିଛନ୍ତି । ଉକ୍ତ ଅଫିସରଙ୍କ ମଧ ଏକ ଦୋକାନ ତାଙ୍କର ସ୍ତ୍ରୀ ଓ ଝିଅମାନେ ଚଳାଉଥିବାର ଦେଖିଲୁଁ । ବ୍ୟାଙ୍କକ୍‌ରେ ଭଲ ପୋଷାକ ଅତି ଅଳ୍ପ ସମୟ ମଧରେ ତିଆରି କରିପାରନ୍ତି । ଆମ ବିଧାନସଭା ସେକ୍ରେଟାରୀ ତାଙ୍କୁ ପୋଷାକ ପାଇଁ କନା କିଣି ଦେବାରେ ତହିଁ ପରଦିନ ସକାଳେ ସାର୍ଟ ଓ ପେଣ୍ଟ ତିଆରି କରିଦେଲେ ଖୁବ୍ ଅଳ୍ପ ପଇସାରେ । ବ୍ୟାଙ୍କକ୍ ସହରରେ ବହୁତ ଲୋକେ ବିଶେଷ କରି ପଞ୍ଜାବୀ ଶିଖ୍ ଓ ତେଲେଙ୍ଗା ଲୋକେ ବ୍ୟବସାୟ କରି ରହୁଥିବାର ଦେଖିଲି । ସେଠାକାର ଲୋକଙ୍କ ଚାଲିଚଳଣି ଭାରତୀୟ ପରି । ଥାଇଲାଣ୍ଡ ଦେଶର ରାଜଧାନୀ ବ୍ୟାଙ୍କକ୍‌ର ଲୋକସଂଖ୍ୟା ପ୍ରାୟ ୨୫ରୁ ୩୦ ଲକ୍ଷ ହେବ । ସେଠାକାର ସରକାରୀ ପ୍ରତୀକ ବା emblem ହେଉଛି ଗରୁଡ଼ । ଗରୁଡ଼ ଚିହ୍ନ ସବୁଠାରେ ଦେଖିଲି । ଭାରତୀୟ ହିନ୍ଦୁ ମନ୍ଦିର ଥିବାର ମଧ ଦେଖିବାକୁ ମିଳିଲା । ୧୭.୧୦.୮୫ ତାରିଖ ଦିନ ଉପରଓଳି ଉଡ଼ାଜାହାଜ ଷ୍ଟେସନକୁ ଆସି ସେଠାରୁ କଲିକତା ଆସିଲୁ ଓ କଲିକତାରେ ଉତ୍କଳ ଭବନରେ ରାତ୍ରୀ କଟାଇ ତହିଁ ପରଦିନ କଲିକତାରୁ ଭୁବନେଶ୍ୱର ଆସିଲୁ ।

## ଲକ୍ଷ୍ନୌରେ ଭାରତୀୟ (Presiding Officer) ବାଚସ୍ପତିଙ୍କ ସମ୍ମିଳନୀ

ବେତନଟୀ ପେରି ବାରିପଦା ଓ ମୟୂରଭଞ୍ଜରେ ଭୀଷଣ ବନ୍ୟା ହୋଇଥିବାର ଜାଣି ତୁରନ୍ତ ବାରିପଦା ଯାଇ ସହରର ବନ୍ୟା କ୍ଷତିଗ୍ରସ୍ତ ଅଞ୍ଚଳ ପରିଦର୍ଶନ କରି ଲୋକଙ୍କୁ ରିଲିଫ୍ ଦେବାର ବ୍ୟବସ୍ଥାକରି ୨୨.୧୦.୮୫ ତାରିଖରେ ଭୁବନେଶ୍ୱର ମୋ ସ୍ତ୍ରୀ ସହିତ ଆସିଲି ଓ ତହିଁ ପରଦିନ ଟ୍ରେନ ଯୋଗେ ବିଧାନ ସଭାର ସେକ୍ରେଟେରୀ ଓ ଅନ୍ୟ ମାନଙ୍କ ସହ ଲକ୍ଷ୍ନୌ ଯାତ୍ରା କଲି । ଟ୍ରେନରେ କାନପୁର ଯାଇ ସେଠାରୁ ଉତ୍ତରପ୍ରଦେଶ ସରକାର ପଠାଇଥିବା କାରରେ ଆମେ ସମସ୍ତେ ଲକ୍ଷ୍ନୌ ଯାତ୍ରା କଲୁ । ପ୍ରାୟ ୨ଘଣ୍ଟା ସଡ଼କ ପଥରେ ଯାଇ ଐତିହାସିକ ଉତ୍ତରପ୍ରଦେଶ ରାଜଧାନୀ ଲକ୍ଷ୍ନୌ ସହରରେ ପହଞ୍ଚିଲୁ । ମୁଁ ଓ ମୋ ସ୍ତ୍ରୀ ପାଇଁ ଏକ ଅତ୍ୟାଧୁନିକ କ୍ଲାକ ଆଭାଡ଼ି ହୋଟେଲରେ ରହିବାର ବ୍ୟବସ୍ଥା ହୋଇଥିବାରୁ ସେଠାରେ ରହିଲୁ । ଏହାପରେ ଅନ୍ୟ ବାଚସ୍ପତି ମାନେ ମଧ ସେଠାରେ ଆସି ରହିଲେ । ସମ୍ମିଳନୀର ଦିନକ ଆଗରୁ ପହଞ୍ଚିଥିବାରୁ ୨୪.୧୦.୮୫ ତାରିଖ ଦିନଟି ଲକ୍ଷ୍ନୌ ସହର ବୁଲି ଦେଖିବାର ସୁଯୋଗ ମିଳିଲା । ପ୍ରଥମେ ସେଠାରେ ଥିବା ଐତିହାସିକ ରେସିଡେନ୍ସି ବିଲ୍ଡିଂ ଦେଖିବା ପାଇଁ ଗଲୁ । ୧୮୫୭ ମସିହାରେ ଭାରତର ଇଂରେଜ ସରକାର ବିରୁଦ୍ଧରେ ହୋଇଥିବା ସିପାହୀ ବିଦ୍ରୋହର ମୂକସାକ୍ଷୀ ରୂପେ ଏହା ରହିଛି । ସେଠାରେ ଇଂରେଜ ଅଫିସର ଓ ସୈନ୍ୟମାନେ ରହିଥିବା ଘରଗୁଡ଼ିକର ଭଗ୍ନାବଶେଷ ରହିଛି । ସରକାରଙ୍କ ତରଫରୁ ସେଗୁଡ଼ିକ ସଂରକ୍ଷଣ କରାଯାଇଛି । ସାମ୍ନାରେ ସେତେବେଳେ ଯୁଦ୍ଧରେ ବ୍ୟବହାର କରୁଥିବା କେତେକ ତୋପ ମଧ ରହିଛି । ଇତିହାସରୁ ଜଣାଯାଏ, ବିଦ୍ରୋହୀ ସିପାହୀ ଓ ବିଦ୍ରୋହର ନେତୃତ୍ୱ ନେଉଥିବା ଭରତୀୟ ନେତୃବର୍ଗଙ୍କ ସୈନ୍ୟମାନେ ଏହି ଅଞ୍ଚଳ ଓ ଦୁର୍ଗ ଦଖଲ କରି ବହୁ ଇଂରେଜ ସୈନ୍ୟ ଓ ଇଂରେଜ ଅଫିସରଙ୍କୁ ଏଠାରେ ହତ୍ୟା କରିଥିଲେ । କିନ୍ତୁ ଇଂରେଜ ଲୋକଙ୍କ ସ୍ତ୍ରୀ ଓ ଝିଆମାନଙ୍କ ଉପରେ କୌଣସି ଅତ୍ୟାଚାର କରି

ନଥିଲେ । ପରେ ସେମାନଙ୍କୁ ନିରାପଦ ସ୍ଥାନକୁ ସ୍ଥାନନ୍ତରିତ କରାଯାଇଥିଲା । ଭାରତର ପ୍ରଥମ ଜାତୀୟ ମୁକ୍ତି ଆନ୍ଦୋଳନ ଭିନ୍ନ ଢଙ୍ଗରେ ହୋଇଥିଲେ ହେଁ, ପରେ ଭାରତରେ ହୋଇଥିବା ଜାତୀୟ ଆନ୍ଦୋଳନକୁ ଏହା ପ୍ରେରଣା ଯୋଗାଇଥିଲା । ତତ୍ ପରେ ସେଠାରେ ଥିବା ହାତୀ ପାର୍କ (elephant) ଓ ଚିଡ଼ିଆଖାନା ପରିଦର୍ଶନ କରିଥିଲୁ । ଚିଡ଼ିଆଖାନାଟି ଖୁବ୍ ବଡ଼ ଧରଣର । ବହୁ ଜୀବଜନ୍ତୁ, ପକ୍ଷୀ, ସରିସୃପ ଇତ୍ୟାଦି ରଖାଯାଇଛି । ଉପର ଓଳି ଲକ୍ଷ୍ନୌର ସବୁଠାରୁ ବଡ଼ ଖଦୀ ଭଣ୍ଡାର ପରିଦର୍ଶନ କରି ଗାନ୍ଧୀ ଜୟନ୍ତୀ ଉପଲକ୍ଷେ ମିଳୁଥିବା ରିହାତି ଯୋଗୁଁ କିଛି ଲୁଗା ମଧ୍ଯ କିଣିଥିଲି । ଅକ୍ଟୋବର ମାସ ୨୬ ଓ ୨୭ ତାରିଖ ଦୁଇଦିନ ଧରି ସମ୍ମିଳନୀ ଚାଲିଲା ଉଭୟ ଦିନରେ ଲୋକସଭା ଅଧ୍ୟକ୍ଷ ଡ଼ଃ ବଳରାମ ଝାକର ସଭାପତିତ୍ୱ କରିଥିଲେ । ସେ ତାଙ୍କ ପ୍ରାଥମିକ ଭାଷଣରେ ବିଧାନସଭା ଅଧ୍ୟକ୍ଷ ଓ ବିଧାନସଭାର ଦାୟିତ୍ୱ ସଂକ୍ରାନ୍ତରେ ଉଦ୍‌ବୋଧନ ଦେଇ ଭାରତର ଜାତୀୟ ସଂହତିକୁ ସୁଦୃଢ଼ କରି ଭାରତକୁ ଅଖଣ୍ଡ ରଖିବା ସଙ୍ଗେ ସଙ୍ଗେ ସଂସଦୀୟ ଗଣତନ୍ତ୍ର ଶାସନକୁ ସଫଳ କରିବା ସଂପର୍କରେ ନିବେଦନ କରିଥିଲେ । ସମ୍ମିଳନୀରେ ଭାରତର ସମସ୍ତ ରାଜ୍ୟର ବିଧାନସଭାର ଅଧ୍ୟକ୍ଷ ଓ ଉପାଧ୍ୟକ୍ଷ କାଉନସିଲର ଅଧ୍ୟକ୍ଷ ଉପାଧ୍ୟକ୍ଷ, ଲୋକସଭାର ଓ କାଉନସିଲ ଅଫ ଷ୍ଟେଟ୍ସ ଉପାଧ୍ୟକ୍ଷ, ବିଧାନସଭାର ସେକ୍ରେଟାରୀ, ମାନେ ଯୋଗ ଦେଇଥିଲେ । ଉତ୍ତର ପ୍ରଦେଶ ବିଧାନ ସଭାର ଅଧ୍ୟକ୍ଷ ସ୍ୱାଗତ ଭାଷଣ ଦେଇଥିଲେ । ଲୋକ ସଭାରେ ଲୋକସଭା ସଭ୍ୟମାନଙ୍କ ସଂପର୍କରେ ଯେଉଁ Anti defection (ଦଳ ବଦଳ ନିରୋଧ) ଆଇନ ଗୃହୀତ ହୋଇଥିଲା, ସେ ସଂପର୍କରେ ଲୋକସଭା ଅଧ୍ୟକ୍ଷ ତର୍ହିର ଯେଉଁ ଚିଠାରୁଲ ପ୍ରସ୍ତୁତ କରିଥିଲେ ସେ ସଂପର୍କରେ ଆଲୋଚନା ସମ୍ମିଳନୀରେ ପ୍ରଧାନ ବିଷୟ ଥିଲା । ଏହି ଆଇନଟି ବାସ୍ତବରେ ଏକ ଅଭିନବ ପଦକ୍ଷେପ । ଏହା ପୂର୍ବରୁ ବିଧାନ ସଭା ମାନଙ୍କର ଯେପରି ବିଧାନସଭା ସଭ୍ୟମାନେ ଦଳ ବଦଳ କରି ରାଜନୈତିକ ଅସ୍ଥିରତା ସୃଷ୍ଟି କରୁଥିଲେ, ତାହା ଫଳରେ କୌଣସି ସରକାର ସ୍ଥାୟୀ ରହିପାରୁ ନ ଥିଲେ । ଭାରତର ଗଣତନ୍ତ୍ର ଶାସନପ୍ରତି ଆସ୍ଥା ତୁଟି ଯାଇଥିଲା ଓ ରାଜନୀତି କ୍ଷେତ୍ରରେ ଦୁର୍ନୀତି ଓ ଭ୍ରଷ୍ଟାଚାର କ୍ରମେ ପ୍ରବଳ ଆକାର ଧାରଣ କରିଥିଲା । ତେଣୁ ଏହି ଆଇନ ବଳରେ ଏଣିକି ଯେଉଁ ବିଧାନସଭା ଓ ଲୋକସଭା ସଭ୍ୟ ଭୋଟ ପରେ ନିଜ ଦଳଛାଡ଼ି ଅନ୍ୟ ଦଳରେ ମିଶିବ ଏପରିକି ଜଣେ ସ୍ୱାଧୀନ ସଭ୍ୟ ମଧ୍ୟ ଯଦି ବିଧାନ ସଭାରେ ଥିବା କୌଣସି ରାଜନୈତିକ ଦଳ ସହିତ ସାମିଲ ହୁଏ, ତେବେ ସେ ସଂପର୍କରେ ଅଧ୍ୟକ୍ଷଙ୍କ ଦୃଷ୍ଟିକୁ ନିର୍ଦ୍ଦିଷ୍ଟ ସମୟ ମଧ୍ୟରେ ଆଣିଲେ ଏବଂ ତାହା ଅଧ୍ୟକ୍ଷ ସତ୍ୟ ଘଟଣା ବୋଲି ହୃଦବୋଧ କଲେ ବା ପ୍ରମାଣିତ ହେଲେ ଉକ୍ତ ସଭ୍ୟକୁ ଅଧ୍ୟକ୍ଷ ବିଧାୟକ ପଦରୁ ବାହାର କରି ଦେଇପାରିବେ ଏବଂ ଉକ୍ତ ନିଷ୍ପତ୍ତି ସଂପର୍କରେ କୌଣସି ଅଦାଲତ ମଧ୍ୟ ଆପତ୍ତି ଗ୍ରହଣ କରି ବିଚାର କରି ନ ପାରିବାର ଆଇନରେ ବ୍ୟବସ୍ଥା ରଖାଯାଇଛି । ଅଦାଲତକୁ ବିଚାର ପାଇଁ ଗଲେ ଲୋକସଭାର ବା ବିଧାନସଭାର ସମ୍ମାନ କ୍ଷୁର୍ଣ୍ଣ ହେବାର ସମ୍ଭାବନା ଥିବାରୁ ଅଧ୍ୟକ୍ଷଙ୍କୁ କାର୍ଯ୍ୟାନୁଷ୍ଠାନର ସମସ୍ତ କ୍ଷମତା ଅର୍ପଣ କରାଯାଇଛି । ଉକ୍ତ ଆଇନର ଚିଠା ରୁଲରେ କେତେକ କ୍ଷେତ୍ରରେ ଅଧ୍ୟକ୍ଷ ଅଧିକ ତଦନ୍ତ କରି ପରାମର୍ଶ ଦେବା ପାଇଁ ବିଧାନସଭା ଓ ଲୋକସଭାର ସ୍ୱାଧୀକାର (Priviledge) କମିଟିକୁ ପଠାଇ ପାରିବା ବ୍ୟବସ୍ଥା ରଖାଯାଇଛି । ତେଣୁ ଚିଠା ରୁଲର ଚୂଡ଼ାନ୍ତ ନିଷ୍ପତ୍ତି ଲୋକସଭା ଗ୍ରହଣ କରିବା ପୂର୍ବରୁ ବିଧାନସଭା ଓ ରାଜ୍ୟ କାଉନସିଲର ଅଧ୍ୟକ୍ଷ ଓ ଉପାଧ୍ୟକ୍ଷ ମାନଙ୍କ ମତାମତ ଏହି ସମ୍ମିଳନୀରେ ଲୋଡ଼ାଯାଇଥିଲା । ତେଣୁ ଆଲୋଚନା ଆରମ୍ଭରେ ପ୍ରଧାନମନ୍ତ୍ରୀ, ଲୋକସଭା ସଭ୍ୟ ଓ ଅଧ୍ୟକ୍ଷଙ୍କୁ ଏହି ପଦକ୍ଷେପ ପାଇଁ ଧନ୍ୟବାଦ ଜଣାଇ ଭାରତର ସଂସଦୀୟ ଶାସନ କ୍ଷେତ୍ରରେ ଏହା ଉଲ୍ଲେଖ ଯୋଗ୍ୟ ପଦକ୍ଷେପ ହେବ ବୋଲି କହି ଅଧ୍ୟକ୍ଷଙ୍କୁ ପରାମର୍ଶ ଦେବାପାଇଁ ବିଧାନସଭା ବା ଲୋକସଭାର ସ୍ୱାଧୀକାର କମିଟିକୁ ନ ପଠାଇ ଅଧ୍ୟକ୍ଷ ଏକ ସ୍ୱତନ୍ତ୍ର ପରାମର୍ଶଦାତା କମିଟି ଗଠନ ପାଇଁ ପ୍ରସ୍ତାବ ଦେଇଥିଲି । ଅନ୍ୟ ଅନେକ ଅଧ୍ୟକ୍ଷ ମଧ୍ୟ ଏହି ଭଳି ପ୍ରସ୍ତାବ ଦେଇ ବ୍ୟବସ୍ଥା ରହିବା ଉଚିତ୍ ନୁହେଁ ବୋଲି ମତ ଦେଇଥିଲେ । ଏହାପରେ ତୃତୀୟ (୨୮.୧୦.୮୫) ଦିନ ଅଧିବେଶନରେ ଶ୍ରୀ ବଳରାମ ଝାକରଙ୍କ ସଭାପତିତ୍ୱରେ "Duty and responsibility of a legislator" (ଜଣେ ବିଧାୟକଙ୍କ ଦାୟିତ୍ୱ ଓ କର୍ତ୍ତବ୍ୟ) ବିଷୟ ବସ୍ତୁ ଉପରେ ଏକ ଆଲୋଚନା ଚକ୍ର ହୋଇଥିଲା । ଉତ୍ତରପ୍ରଦେଶ ରାଜ୍ୟ ମୁଖ୍ୟମନ୍ତ୍ରୀ

ଶ୍ରୀ ବୀର ବାହାଦୂର ସିଂ ଏହା ଉଦ୍‌ଘାଟନ କରିଥିଲେ ଏବଂ ଏଥିରେ ସମ୍ମିଳନୀରେ ଯୋଗ ଦେଇଥିବା ପ୍ରତିନିଧି ମାନଙ୍କ ବ୍ୟତୀତ ସେଦିନ ସ୍ୱତନ୍ତ୍ରଭାବେ ନିମନ୍ତ୍ରିତ ହୋଇ ଉତ୍ତରପ୍ରଦେଶ ରାଜ୍ୟ ବିଧାନସଭା ଓ କାଉନସିଲର କେତେକ ସଭ୍ୟ ମଧ୍ୟ ଆଲୋଚନ ଚକ୍ରରେ ଭାଗ ନେଇଥିଲେ । ସେ ଦିନ ଅପରାହ୍ନ ୧-୩୦ ମିନିଟ୍‌ରେ ଅଧିବେଶନ ସମାପ୍ତ ହେଲା । ପୂର୍ବ ଦୁଇଦିନ ସନ୍ଧ୍ୟାବେଳେ ସାଂସ୍କୃତିକ କାର୍ଯ୍ୟକ୍ରମ ଅନୁଷ୍ଠିତ ହୋଇଥିଲା ବିଭିନ୍ନ ଅନୁଷ୍ଠାନ ଦ୍ୱାରା । ପ୍ରତିନିଧି ମାନଙ୍କୁ ରାଜକୀୟ (ନବାବ) ଢଙ୍ଗରେ ସ୍ୱାଗତ ସମ୍ବର୍ଦ୍ଧନା ଜଣାଯାଇଥିଲା । ସେଠାରେ ଅନେକ ଲୋକ ସେଠାକାର ପୂର୍ବଯୁଗର ନବାବଙ୍କ ରାଜତ୍ୱ ବେଳର ପୋଷାକ ପିନ୍ଧୁଥିବାର ଦେଖାଯାଇଥିଲା । ସମ୍ମିଳନୀ ପରଦିନ (ତା୨୯.୧୦.୮୫) ପ୍ରତିନିଧି ମାନଙ୍କୁ ବିଭିନ୍ନ ଦଳରେ ବିଭକ୍ତ କରି ଲକ୍ଷ୍ନୌ ସହରରେ ବିଭିନ୍ନ ଦର୍ଶନୀୟ ସ୍ଥାନ ବୁଲାଇ ଦେଖାଇ ଦେଲେ । ଲକ୍ଷ୍ନୌ ଭାରତର ଏକ ପୁରୁଣା ଐତିହାସିକ ସହର । ବିଶେଷ କରି ଭାରତରେ ମୁସଲମାନ ଓ ମୋଗଲ ରାଜତ୍ୱ କାଳରେ ଏହା ମୁସଲମାନ ନବାବ୍ ମାନଙ୍କ ରାଜଧାନୀ ଥିବାରୁ ମୁସଲମାନ ସଂସ୍କୃତିର ବହୁ କିମ୍ବଦନ୍ତୀ ରହିଥିବାର ଦେଖାଯାଏ । ଏହି ସହରର ବଡ଼ ଇମାମବାଡା ଓ ଛୋଟ ଇମାମବାଡା ନାମକ ଦୁଇଟି ଧର୍ମପୀଠ ପ୍ରାୟ ୩୦୦ ବର୍ଷ ପୂର୍ବେ ତିଆରି ହୋଇଥିଲେ ହେଁ ତାହା ଏପର୍ଯ୍ୟନ୍ତ ସେହିପରି ରହିଛି ଏବଂ ହିନ୍ଦୁ ଓ ମୁସଲିମ୍ ଉଭୟଙ୍କ ବିଭିନ୍ନ ଧର୍ମ ବା ପବିତ୍ର (ମୁସଲିମ୍) ଦିନରେ ସମାବେଶ ହେଉଛି । ସେଥି ମଧ୍ୟରେ ବିଭିନ୍ନ କାର୍ଯ୍ୟକ୍ରମ (function) ପାଇଁ ବହୁ କୋଠରୀ ଓ ସୁଡ଼ଙ୍ଗମାନ ରହିଛି । ଏହା ବ୍ୟତୀତ ସେଠାରେ ଏକ କେନ୍ଦ୍ର ସରକାରଙ୍କ ପରିଚାଳିତ Central drug Institute ଥିବାର ଦେଖିଲୁଁ । ସେଠାରେ ବହୁ ଏଲୋପାଥିକ ଔଷଧର ତଥା ବିଭିନ୍ନ ରୋଗର ମଧ୍ୟ ଗବେଷଣା ହେଉଥିବାର ଜାଣିଲୁଁ । ଏହି ସହର ଉପକଣ୍ଠରେ ଭାରତରେ ତିଆରି ହେଉଥିବା ଜାଗୁଆର ଯୁଦ୍ଧ ଜାହାଜ ଇଂଜିନ୍ ତିଆରି କାରଖାନା ବୁଲି ଦେଖିଥିଲୁଁ । ସହରଟି ପୌରାଣିକ ପବିତ୍ର ଗୋମତୀ ନଦୀ କୂଳରେ ଅବସ୍ଥିତ । ଆମ ଅଧିବେଶନ ସେଠାକାର ରାଜ୍ୟ ବିଧାନସଭା ଗୃହରେ ଅନୁଷ୍ଠିତ ହୋଇଥିଲା । ଭାରତର ସବୁ ରାଜ୍ୟ ଅପେକ୍ଷା ଏହା ସର୍ବ ବୃହତ ବିଧାନସଭା । ଉତ୍ତର ପ୍ରଦେଶ ବିଧାନ ସଭାରୁ ମୋଟ ସଭ୍ୟ ସଂଖ୍ୟା ଛ ଶହ । ସେ ଦିନ ମଧ୍ୟ ପୂର୍ବପରି ମୋ ପାଇଁ ଜଣେ ଭଲ ନିରାପତ୍ତା ଅଫିସର ଦେଇଥିଲେ । ସେ ମୋ ସ୍ତ୍ରୀ ଙ୍କୁ ମା ବୋଲି ଡ଼ାକୁଥିଲେ ।

## କାଶ୍ମୀର ପରିଭ୍ରମଣ

କାଶ୍ମୀରର ଶ୍ରୀନଗରକୁ ମର୍ତ୍ତ୍ୟର ବୈକୁଣ୍ଠପୁର ବୋଲି କୁହାଯାଏ । ଲକ୍ଷ୍ନୌରୁ ମୋର କାଶ୍ମୀର ରାଜ୍ୟର ରାଜଧାନୀ ଶ୍ରୀ ନଗର ପରିଦର୍ଶନରେ ଯିବା କଥା । ସେଠାକାର ବାଚସ୍ପତି ଶ୍ରୀ ମଙ୍ଗତ ଲାଲ ଶର୍ମାଙ୍କ ସହିତ ମୋର ବିଶେଷ ବନ୍ଧୁତା ଥାଏ । ସେ ମଧ୍ୟ ମୋତେ ଶ୍ରୀ ନଗର ଯିବା ପାଇଁ ନିମନ୍ତ୍ରଣ କଲେ । ଲକ୍ଷ୍ନୌରୁ ଆମର ବିଧାନସଭା ସେକ୍ରେଟାରୀ ଏବଂ ପ୍ରାଇଭେଟ ସେକ୍ରେଟାରୀ ପ୍ରଭୃତି ସମସ୍ତେ ଫେରି ଆସିଲେ । ମୁଁ ମୋ ସ୍ତ୍ରୀ, ମୋର Information Officer ବାରିପଦାସ୍ଥ ଶ୍ରୀଯୁକ୍ତ ମହେଶ ସିହ୍ନାଙ୍କ ପୁଅ ଶ୍ରୀ କଲ୍ୟାଣ ସିହ୍ନା ମୋ ସହିତ ଗଲେ । ଆମେ ତା ୩୧.୧୦.୮୫ରିଖ ସକାଳ ଓଳି ଉଡ଼ାଜାହାଜ ଯୋଗେ ଲକ୍ଷ୍ନୌରୁ ବାହାରି ଦିଲ୍ଲୀ ଗଲୁ ଏବଂ ସେଠାରୁ ଅନ୍ୟଏକ ବିମାନ ଯୋଗେ ଶ୍ରୀନଗର ପହଞ୍ଚିଲୁ । ସେଠାକାର ବିମାନ ଘାଟୀକୁ ବିଧାନସଭାର ଜଣେ ଅଫିସର ଓ ସରକାରଙ୍କ ପ୍ରୋଟୋକଲ ଅଫିସର ଗାଡ଼ି ନେଇ ଆସିଥିଲେ । ଆମେ ସେଠାରୁ ଯାଇ ସରକାରୀ ଅତିଥିଶାଳାରେ ରହିଲୁ । ଏବଂ ଠିକ୍ ସେହିଦିନ ମଧ୍ୟ ଆନ୍ଧ୍ର ପ୍ରଦେଶର ବିଧାନସଭା ଉପାଧ୍ୟକ୍ଷ ସସ୍ତ୍ରୀକ ସେଠାରେ ପହଞ୍ଚି ଆମେ ଥିବା ଅତିଥି ଶାଳାରେ ରହିଲେ ।

ପ୍ରକୃତରେ କାଶ୍ମୀର ଭାରତର ମର୍ତ୍ତ୍ୟ ବୈକୁଣ୍ଠ । ପୁଷ୍ପ, ଫଳ, ସୁନେଲୀ ପତ୍ର, ଗଛରେ ଭରା ସୌନ୍ଦର୍ଯ୍ୟ ପୂର୍ଣ୍ଣ **ଅଞ୍ଚଳ** ସେଠାରେ ଥିବା ବଡ଼ ବଡ଼ ଚେରନାମକ ଗଛ ଗୁଡ଼ିକର ପତ୍ର ସୁନା ରଙ୍ଗର । ତେଣୁ ଚାରିଆଡ଼େ ସେ ଗଛ ଗୁଡ଼ିକ **ରହି** ସୌନ୍ଦର୍ଯ୍ୟ ବଢ଼ାଇ ଥାଏ । ମଧ୍ୟାହ୍ନ ଭୋଜନ ପରେ ଅପରାହ୍ନ ୪.୩୦ ବେଳେ ଆମେ ଦୁଇ ପରିବାର, ଦୁଇଟି ସରକାରୀ

ଗାଡ଼ିରେ ଶ୍ରୀନଗରର ପାଖ ଅଞ୍ଚଳ ପରିଦର୍ଶନରେ ବାହାରିଲୁ । ସହରକୁ ଲାଗିଛି ଏକ ବିରାଟ ଲମ୍ବା ହ୍ରଦ । ହ୍ରଦର ଅପର ପାର୍ଶ୍ୱ କୂଳରେ ବହୁତ କାଠ ତିଆରି ଛୋଟ ଛୋଟ ଘର ଭଳି ବୋଟ୍ ରହିଛି ଠିକ୍ ପାଣି ଭିତରେ ଯେପରି ଭାସମାନ ଗୃହ । ଶୁଣିଲି ଖରାଦିନେ ଅନେକ ପରିବ୍ରାଜକ ସେହି ବୋଟ୍ ମାନଙ୍କରେ ହୋଟେଲ ପରି ରହନ୍ତି । ସେଥିରେ ଖିଆପିଆର ମଧ୍ୟ ବ୍ୟବସ୍ଥା ଅଛି । ଶୀତଦିନେ ବରଫ ପଡ଼ିବା ଯୋଗୁଁ ଶ୍ରୀନଗରରେ ପ୍ରବଳ ଶୀତ ହେଉଥିବାରୁ ପରିବ୍ରାଜକ ଆସନ୍ତି ନାହିଁ । ଆମେ ପହଞ୍ଚିଲେ ଅକ୍ଟୋବର ୩୧ ତାରିଖ ଶୀତ ପଡ଼ିବାକୁ ଆରମ୍ଭ ହେଲାଣି । କିନ୍ତୁ ସେତେବେଳେ ସେଠାରେ ଆମେ ଯେଉଁ ଶୀତ ଅନୁଭବ କଲୁ ତାହା ଆମ ଅଞ୍ଚଳର ଶୀତ ଦିନ ଅପେକ୍ଷା ଅଧିକ । ଶ୍ରୀନଗର ନିକଟସ୍ଥ ଉକ୍ତ ହ୍ରଦ କୂଳରେ ମୋଗଲକାର୍ଡେନ ଅବସ୍ଥିତ । ମୋଗଲ ସାମ୍ରାଜ୍ୟ ବେଳେ ବିଭିନ୍ନ ପଠାଣ ରାଜାମାନେ ସେ ବଗିଚା ଗୁଡ଼ିକ ତିଆରି କରିଥିଲେ । ସେହି ବଗିଚାର ପ୍ରଥମ ଭାଗରେ ପହଞ୍ଚିଲୁ । ତାହା ଏକ ପାହାଡ଼ର ପାଦଦେଶରେ ଅବସ୍ଥିତ । ପାହାଡ଼ ଉପରୁ ଝରଣାଟିଏ ଏହି ବଗିଚାର ମଧ୍ୟରେ ବହି ଆସୁଛି । ବହିଯାଉଥିବା ପାଣିନାଳର ୭ଟି ଟେରାସ୍ କରାଯାଇଛି । ସେହି ପକ୍କା ଟେରାସ୍ ଉପରେ ପାଣି ବହି ଯାଇ ଅନେକ କୃତ୍ରିମ ପ୍ରସ୍ରବଣ ସୃଷ୍ଟି କରିଛି । ରାସ୍ତାର ଦୁଇପାଖରେ ଫୁଲ ବଗିଚାରେ ଗୋଲାପ ଓ ଅନ୍ୟାନ୍ୟ ଫୁଲଗଛ ଗୁଡ଼ିକରେ ବିଭିନ୍ନ ରଙ୍ଗର ଫୁଲ ଫୁଟି ସୌନ୍ଦର୍ଯ୍ୟକୁ ଦ୍ୱିଗୁଣିତ କରୁଥାଏ । ମନେ ହେଲା, ଯେପରି ସ୍ୱର୍ଗର ନନ୍ଦନକାନନ ଏଠାରେ ଖସିପଡ଼ିଛି । ସେହି ଫୁଲ ଭିତରେ ମୋର ଓ ମୋର ସ୍ତ୍ରୀର ଫଟୋ କଲ୍ୟାଣ ଉଠାଉଥାଏ । ମୁଁ ବିଦେଶ ଗସ୍ତବେଳେ ଟୋକିଓ ସହରରୁ ଯେଉଁ ଦାମିକା ଛୋଟ କ୍ୟାମେରା ଆଣିଥିଲି, ତାହା ସାଙ୍ଗରେ ନେଇ ଯାଇଥିଲି । ଏହାପରେ କିଛିବାଟ ଯାଇ ଦ୍ୱିତୀୟ ବଗିଚାକୁ ଗଲୁ, ତା'ରନାମ ପରୀମହଲ' । ପ୍ରକୃତରେ କାଳ୍ପନିକ ପରୀମହଲ ପରି ସୁନ୍ଦର । ଏହା ମଧ୍ୟ ପାହାଡ଼ ତଳେ, ଟିକିଏ ଉଚ୍ଚରେ । ପାହାଡ଼ ତଳୁ ଏକ ସୁନ୍ଦର ଝରଣା ବହି ଆସିଛି ବଗିଚା ମଧ୍ୟ ଦେଇ । ପ୍ରଥମ ବଗିଚା ଠାରୁ ଏହା ଛୋଟ । ଏଠାରେ ମଧ୍ୟ ବିଭିନ୍ନ ରଙ୍ଗର ଫୁଲଗଛ ପାହାଡ଼ ତଳ ପର୍ଯ୍ୟନ୍ତ ଲମ୍ବି ଯାଇଛି । ବୃକ୍ଷଲତାରେ ପରି ପୂର୍ଣ୍ଣ ନୀଳ ବର୍ଣ୍ଣର ପାହାଡ଼ ତଳକୁ ଝରଣା ଏବଂ ଝରଣା କୂଳରେ ଥିବା ଫୁଲ ଗଛରେ ବିଭିନ୍ନ ରଙ୍ଗର ଫୁଲ ଯୋଗୁଁ ପ୍ରକୃତିକ ଓ କୃତ୍ରିମ ସୌନ୍ଦର୍ଯ୍ୟ ମିଶି ପ୍ରକୃତରେ ସେ ସ୍ଥାନଟିକୁ ସ୍ୱପ୍ନପୁରୀର ପରୀରାଇଜରେ ପରିଣତ କରିଥିବାପରି ମନେ ହୁଏ ଓ ମୁଁ କବି ହୋଇଥିଲେ ସେଥିରେ ଆତ୍ମହରାହୋଇ କବିତା ଲେଖିବା ଆରମ୍ଭ କରିଦେଇଥାନ୍ତି । ହେଲେ ମୁଁ ବା ମୋ ସ୍ତ୍ରୀ,କେହି କବି ନୋହୁଁ । ଏହା ପରେ ତୃତୀୟ ବଗିଚାକୁ ଗଲୁଁ ଯାହାର ନାମ ଗାଲିମାର ଗାର୍ଡେନ'' । ଏବଂ ତତପରେ ୪ର୍ଥ ବଗିଚା ଗଲୁଁ । କୌଣସିଟି ।କାହରି ଠାରୁ ସୌନ୍ଦର୍ଯ୍ୟରେ ଊଣା ନୁହେଁ । ସବୁ ଗୁଡ଼ିକ ପାହାଡ଼ ତଳ ଝରଣା ଓ ରଙ୍ଗ ବେରଙ୍ଗ ଫୁଲ ଗଛଦ୍ୱାରା ମନୋରମ ହୋଇ ରହିଛି ।

ସଂଧ୍ୟା ହୋଇଯାଇଥିବାରୁ ସରକାରୀ ଅତିଥିଶାଳାକୁ ଫେରି ଆସି ଅବସ୍ଥାନ କଲୁଁ । ସନ୍ଧ୍ୟା ବେଳେ ଏତେ ଥଣ୍ଡା ଲାଗିଲା ଯେ, ଅବସ୍ଥା ଅସମ୍ଭାଳ ହେଲା ତେଣୁ ଉପର ମହଲାରୁ ଆସି ତଳେ ରହିଲୁ । ସେଠାରେ Room Heater ମଧ୍ୟ ଲଗା ଗଲା, ଶୋଇବା ବେଳକୁ ବିଛଣା ତଳେ ଗରମପାଣି ବ୍ୟାଗ ରଖାଗଲା । ତା ସତ୍ତ୍ୱେ ପ୍ରବଳ ଶୀତ ଅନୁଭବ କଲୁ । ତହିଁ ପରଦିନ ନଭେମ୍ବର ୧ତାରିଖ ସକାଳ ୯ଟା ୩୦ ବେଳେ ଦୁଇଟି ଗାଡ଼ିରେ ଆନ୍ଧ୍ର ବିଧାନସଭା ଉପାଧ୍ୟକ୍ଷଙ୍କ ସହ ବାହାରିଲୁ । ସାଙ୍ଗରେ ଦୁଇଟି ଗାଡ଼ିରେ ଦୁଇଟି Security Officer ଆମକୁ ବାଟ ଦେଖାଇବାକୁ ଓ ବିଧାନସଭାର ଅନୁସଚୀବ ଥାଆନ୍ତି । ସେମାନେ ଆମକୁ ବାଟ ଦେଖାଉ ଥାଆନ୍ତି । ପ୍ରଥମ ଅନନ୍ତ ପୁରମ୍ ନାମକ ଏକ ଐତିହାସିକ ସ୍ଥାନରେ ମନ୍ଦିରର ଓ କେତେକ ପ୍ରସ୍ତର ମୂର୍ତ୍ତିର ଭଗ୍ନାବଶେଷ ଦେଖିଲୁ । ତାପରେ ଅନନ୍ତନାଗ ସହର ପହଞ୍ଚିଲୁ । ଏହା ଇସ୍‌ଲାମାବାଦ ଜିଲ୍ଲାର ସଦର ମହକୁମା । ହିନ୍ଦୁ ଓ ମୁସଲିମ ଦୁଇ ସଭ୍ୟତାର ମିଳନସ୍ଥଳ । ସେଠାରେ ଅନନ୍ତନାଗ ମନ୍ଦିର । ଏକ ପୋଖରୀ କୂଳରେ ଅବସ୍ଥିତ ଲକ୍ଷ୍ମୀ ନାରାୟଣ ମୂର୍ତ୍ତି ସେଠାରେ ଅଛନ୍ତି । ଆମେ ଦର୍ଶନ କଲୁ ଓ ତାପରେ ଆଛାବଲ ନାମକ ବଗିଚାକୁ ଗଲୁ । ପାହାଡ଼ର ପାଦ ଦେଶରୁ ଏକ ଝରଣା ସେଠାରେ ବହୁଛି । କୃତ୍ରିମ ପ୍ରସ୍ରବଣ (Spring) କରାଯାଇଛି । ତା'ପରେ

କିଛିଦୂର ଗଲାପରେ କୁକେଲନାଗ ନାମକ ଏକ ଅତି ମନୋରମ ସ୍ଥାନରେ ପହଞ୍ଚିଲୁ । ନୀଳବର୍ଣ୍ଣର ଉଚ୍ଚପାହାଡ଼, ତଳେ ଏକ ଝରଣା ମଧ୍ୟ ବହିଯାଇଥିଲା । ସେଠାରେ ଅତି ସୁନ୍ଦର ବଡ଼ବଡ଼ ଫୁଲ ବଗିଚାର ଗୋଲାପ ଠାରୁ ଆରମ୍ଭ କରି ବହୁ ରଙ୍ଗର ଫୁଲ ଫୁଟିଥିଲା । ସ୍ଥାନଟି ଅତି ଆନନ୍ଦ ଦାୟକ ଓ ସୌନ୍ଦର୍ଯ୍ୟ ଭରା । ଆମେ ପହଞ୍ଚିବାର ଅଳ୍ପ ସମୟପରେ ପ୍ରାୟ ୨୦୦ କଲେଜଛାତ୍ରୀ ସେଠାରେ ପହଞ୍ଚିଲେ । ସମସ୍ତେ ଅତି ସୁନ୍ଦରୀ, ଧଳା ରଙ୍ଗର ପୋଷାକ ସମସ୍ତେ ପିନ୍ଧିଥାନ୍ତି । ପ୍ରାକୃତିକ ସୌନ୍ଦର୍ଯ୍ୟ ଭରା ପରିବେଶ ମଧ୍ୟରେ ଧଳା ପୋଷାକ ପରିହିତା ଏହି କାଶ୍ମୀରୀ ସୁନ୍ଦରୀମାନଙ୍କ ଏତେ ସଂଖ୍ୟାରେ ପ୍ରବେଶ ମନେ ହେଲା, ଯେତେ ଅବା ପ୍ରକୃତି ରାଣୀ ଓ ସୁନ୍ଦରୀଙ୍କ ମଧ୍ୟରେ ଏକ ସୌନ୍ଦର୍ଯ୍ୟର ପ୍ରତିଯୋଗିତା ଲାଗିଗଲା । କିଏ କାହାକୁ ଊଣା ନୁହେଁ । ଏହି ସୌନ୍ଦର୍ଯ୍ୟ ପ୍ରତିଯୋଗିତା ଆମେ କିଛି ସମୟ ଉପପଭୋଗ କରି ବାହାରିଲୁ ଅନ୍ୟ ଏକ ସ୍ଥାନକୁ । ଏହି ସ୍ଥାନର ନାମ ମୋରଟାନ । ଏଠାରେ ଏକ ରଘୁନାଥ ମନ୍ଦିର ଅଛି ଏବଂ ତା ସମ୍ମୁଖରେ ଏକ ଛୋଟ ପାଟେରୀ । ଆମ୍ଭେ ଠାକୁର ଦର୍ଶନ କଲୁଁ ଓ ସେଠାରୁ ଯାଇ ପହିଲି ଗାଁ ନାମକ ଅନ୍ୟ ଏକ ସ୍ଥାନରେ ପହଞ୍ଚିଲୁ । ଏହି ସ୍ଥାନଟି ଅତି ଥଣ୍ଡା, ଦୁଇପାଖ ଉଚ୍ଚପାହାଡ଼ ମଧ୍ୟରେ ସମତଳ ସ୍ଥାନ ଓ ତହିଁରେ ଏକ ଛୋଟ ସହର । ଦୁଇ ପାଖରେ ନୀଳବର୍ଣ୍ଣର ପାହାଡ଼ ମାନଙ୍କର ମଥାନ ବରଫାବୃତ ହୋଇ ଧଳା ଟୋପି ପିନ୍ଧିଥିବା ଭଳି ଦେଖାଯାଉଥାଏ । ଏତଦ୍ ବ୍ୟତୀତ ନୀଳବର୍ଣ୍ଣର ବୃକ୍ଷଲତା ଉପରେ ଧଳାବରଫର ଆସ୍ତରଣ ବେଶ ସୁନ୍ଦର ଦେଖାଯାଉଥାଏ । ସେଠାରେ ଥିବା ଏକ ସାଧାରଣ ହୋଟେଲରେ ଆମେ ସମସ୍ତେ ମଧ୍ୟାହ୍ନ ଭୋଜନ କଲୁ ଏବଂ ନିକଟରେ ଥିବା ଏକ ସରକାରୀ କାଠତିଆରି ଡ଼ାକବଙ୍ଗଳାରେ କିଛି ସମୟ ବିଶ୍ରାମ କଲୁଁ ଏବଂ ଅତ୍ୟନ୍ତ ଥଣ୍ଡାପାଇଁ ନିଆଁର ଉମେଇ ସେଠାରେ ରଖାଯାଇଥିବାରୁ ଆମେ ଅତ୍ୟନ୍ତ ଥଣ୍ଡାରୁ ନିଜକୁ ରକ୍ଷାକଲୁଁ । ତତ୍‌ପରେ ଶ୍ରୀନଗର ଅଭିମୁଖେ ଯାତ୍ରାକରି ରାତ୍ରିରେ ପହଞ୍ଚିଲୁଁ । ସେଦିନ କାଶ୍ମୀର ବିଧାନସଭା ଅଧ୍ୟକ୍ଷ ଶ୍ରୀଯୁକ୍ତ ମଙ୍ଗତଲାଲ ଶର୍ମା ଆମକୁ ଏକ ଭୋଜିକୁ ନିମନ୍ତ୍ରଣ କରିଥିଲେ । ତେଣୁ ରାତି ପ୍ରାୟ ସାଢ଼େ ଆଠଟା ବେଳକୁ ଆମେ ତାଙ୍କ ସରକାରୀ ବାସଭବନକୁ ଗଲୁ ଏବଂ ଆୟୋଜିତ ଭୋଜିରେ ଯୋଗଦେଇ ଅତିଥିଶାଳାରେ ରାତ୍ରିଯାପନ କଲୁଁ । ତହିଁ ପରଦିନ ନଭେମ୍ବର ଦୁଇତାରିଖ । ଆମ୍ଭେ (ମୁଁ, ମୋର ସ୍ତ୍ରୀ ଓ ଆନ୍ଧ୍ର ଉପାଧ୍ୟକ୍ଷ ଓ ତାଙ୍କ ସ୍ତ୍ରୀ) ସମସ୍ତେ ସକାଳ ୧୦ଟା ବେଳେ ବାହାରି ଶ୍ରୀନଗରଠାରୁ ୨୦ କି.ମି. ଦୂର ଗୋଲମାର୍ଗ ନାମକ ଏକ ଅତି ଥଣ୍ଡା ସ୍ଥାନରେ ପହଞ୍ଚିଲୁ । ପ୍ରଥମେ ବହୁସଂଖ୍ୟାରେ ସେଠାରେ ଘୋଡ଼ା ଥିବାର ଦେଖି ମନେହେଲା ଯେପରି ଗୋରୁ ହାଟପରି ଏକ ଘୋଡ଼ା ହାଟ ସେଠାରେ ହେଉଛି । ପରେ ଜାଣିଲି ଯେ, ଲୋକେ ଏହିସବୁ ଘୋଡ଼ା ଭଡ଼ାରେ ନେଇ ପାହାଡ଼ ଉପରକୁ ଯାଆନ୍ତି । ପାହାଡ଼ ଉପରକୁ ଯାଇ ବରଫ ଭିତରେ ବୁଲିବାକୁ ଲୋକେ ଭଲ ପାଆନ୍ତି । ତେଣୁ ବିଶେଷ କରି ପରିବ୍ରାଜକ ମନେ ଏହି ଘୋଡ଼ା ଗୁଡ଼ିକରେ ଯିବାଛଡ଼ା ଅନ୍ୟ ବ୍ୟବସ୍ଥା ନାହିଁ । ଅବଶ୍ୟ ସେଠାରେ ଉପରକୁ ଯିବା ପାଇଁ ଏକ ସରକାରୀ (Ropeway) ରଜ୍ଜୁରାସ୍ତା ରହିଛି । ଆମେ ସେଠାକୁ ଯାଇ ଟିକଟ କଲାପରେ ଜଣାଗଲା ଯେ ବିଦ୍ୟୁତ ଚାଳିତ ଏହି Ropeway ଟି ଖରାପ ହୋଇ ଯାଇଛି । ଅତ୍ୟନ୍ତ ଥଣ୍ଡାପାଇଁ ମୁଁ ଘୋଡ଼ାରେ ଉପରକୁ ଯିବାପାଇଁ ମନାକଲି । ଆନ୍ଧ୍ରର ଉପାଧ୍ୟକ୍ଷ ଓ ମୋ ସହିତ ଯାଇଥିବା କଲ୍ୟାଣ ସିହ୍ନା ଏବଂ ବିଧାନସଭାର ଜଣେ ଅଫିସର ଘୋଡ଼ା ଚଢ଼ି ପାହାଡ଼ ଉପରକୁ ଗଲେ । ମୁଁ, ମୋର ସ୍ତ୍ରୀ ଓ ଆନ୍ଧ୍ର ବିଧାନସଭା ଉପାଧ୍ୟକ୍ଷ ଦମ୍ପତି ସେଠାରୁ ଆସି ଏକ ହୋଟେଲରେ ଆଶ୍ରୟ ନେଇ ସେମାନଙ୍କ ଫେରିବାକୁ ଅପେକ୍ଷା କଲୁଁ । ଉକ୍ତ ହୋଟେଲଟି ପୂରାପୂରି କାଠରେ ଖୁବ୍ ସୌଖିନ ଭାବେ ତିଆରି ହୋଇଛି । ହୋଟେଲଟି ଖୁବ୍ ଦାମିକା । ଆମେ ୩ଜଣ ନିରାମିଷ ମଧ୍ୟାହ୍ନ ଭୋଜନ କରି ମୋଟରେ ଟ୧୨୮.୦୦ଙ୍କା ଦେଇଥିଲୁ । ତତ୍‌ପରେ ଅପରାହ୍ନ ୩ଟାପରେ ଘୋଡ଼ାରେ ସେମାନେ ତଳେ ପହଞ୍ଚିଲେ ଓ ଆମେ ସମସ୍ତେ ସନ୍ଧ୍ୟା ବେଳକୁ ଶ୍ରୀନଗର ପହଞ୍ଚି ଅବସ୍ଥାନ କଲୁ ।

ତହିଁ ପରଦିନ ୩.୧୧.୮୫ ଦିନ ସକାଳ ସାଢ଼େ ୯ଟା ବେଳେ କେବଳ ମୁଁ, ମୋର ସ୍ତ୍ରୀ ଓ ମୋ ସଙ୍ଗେଥିବା ଲୋକେ ଶ୍ରୀନଗରୁ ବାହାରି ୨୦ କି.ମି. ଦୂରରେ ଥିବା କ୍ଷୀର ଭବାନୀ ମନ୍ଦିର ଅଭିମମୁଖେ ଯାତ୍ରାକଲୁଁ । ବାଟରେ ଗଲାବେଳେ

ଜଣଙ୍କର ବାଡ଼ିରେ ସେ ଓ ଗଛ ଗୁଡ଼ିକରେ ବହୁମାତ୍ରାରେ ନାଲିରଙ୍ଗର ସେଓ ଫଳିଥିବାରୁ ତାହା ଦେଖିବାକୁ ଯିବାରୁ ସେ ଆମର ପରିଚୟ ପାଇ ବିଶେଷ ଅଭ୍ୟର୍ଥନା ଜଣାଇଲେ । ଆମକୁ ତାଙ୍କ ଘରକୁ ଡ଼ାକିନେଲେ । ତାଙ୍କର ଗୋଟେ ପିଲା ସହିତ ମୁଁ ଫଟୋ ଉଠାଇଲି କଥା ପ୍ରସଙ୍ଗରେ ତାଙ୍କୁ ପଚାରି ଜାଣିଲି ଯେ ଗୋଟିଏ ଗଛରେ କମ ପକ୍ଷରେ ଦୁଇକୁଇଣ୍ଟାଲ ସେଓ ଫଳୁଛି । ତତ୍‌ପରେ କ୍ଷୀର ଭବାନୀ ମନ୍ଦିରରେ ପହଞ୍ଚି କାଳି ମୂର୍ତ୍ତି ଦର୍ଶନ କଲୁଁ । ସେ ଅଞ୍ଚଳରେ ହିନ୍ଦୁମାନଙ୍କ ଏକ ବିଖ୍ୟାତ ତୀର୍ଥ ସ୍ଥାନ । ସେଠାରୁ ଶ୍ରୀ ଗନର ଫେରି ମଧ୍ୟାହ୍ନ ଭୋଜନ ପରେ ଉଡ଼ାଜାହାଜ ଷ୍ଟେସନକୁ ଗଲୁଁ । ସେଠାରେ କାଶ୍ମିର ବିଧାନସଭା ଅଧ୍ୟକ୍ଷ ମଧ ଥିଲେ । ସେହିଦିନ ଶ୍ରୀ ନଗରରୁ ସମସ୍ତ ଅଫିସ କର୍ମଚାରୀ ଜାମ୍ମୁ ଚାଲିଯାଇଥାନ୍ତି । ପ୍ରତିବର୍ଷ କାଶ୍ମିର ରାଜଧାନୀ ଶ୍ରୀନଗରରୁ ନଭେମ୍ବର ମାସ ଆରମ୍ଭରେ ଜାମ୍ମୁକୁ ଉଠିଯାଏ । ଏବଂ ସେଠାରେ ଛଅ ମାସ ରହିଲାପରେ ମେ ମାସକୁ ଶ୍ରୀନଗର ଫେରି ଆସେ । ଶ୍ରୀନଗରରେ ବିଧାନସଭାର ବଜେଟ୍ ଅଧିବେଶନ ବସେ ଓ ଜାମ୍ମୁରେ ଅତିରିକ୍ତ ବଜେଟ ଅଧିବେଶନ ବସେ । ଶ୍ରୀନଗରରେ ନଭେମ୍ବର ମାସରୁ ପ୍ରବଳ ବରଫ ପଡ଼ିବାକୁ ଆରମ୍ଭ କରି ଏପ୍ରିଲ ମାସ ପର୍ଯ୍ୟନ୍ତ ରହୁଥିବାରୁ ସେଠାରେ ସାଧାରଣ ଜୀବନ ଯାତ୍ରା ଏହି ୫/୬ ମାସ ପ୍ରାୟ ବନ୍ଦ ହୋଇଯାଏ । କାଶ୍ମିରରେ ଜଳ ସେଚନର ସେପରି କିଛି ଯୋଜନା ହୋଇନାହିଁ । ବରଫ ତରଳି ଯେଉଁ ସ୍ରୋତ୍ରମାନ ପର୍ବତମାନଙ୍କରୁ ବହିଆସେ । ତଦ୍ୱାରା ଜଳସେଚନ ପ୍ରାକୃତିକ ଉପାୟରେ ବିଶେଷ କରି ହୋଇଥାଏ । ସେଦିନ ବିମାନ ଯୋଗେ ଦିଲ୍ଲୀ ପ୍ରାୟ ଅପରାହ୍ନ ସାଢ଼େ ୪ଟା ବେଳେ ପହଞ୍ଚି ଓଡ଼ିଶାଭବନ ଗାଡ଼ିରେ ଆସି ଓଡ଼ିଶା ଭବନରେ ଅବସ୍ଥାନ କଲୁଁ ।

ସେଦିନ ଥାଏ ୫.୧୧.୮୫ ତାରିଖ । ମୁଁ ଓ ମୋ ସ୍ତ୍ରୀ ପ୍ରଥମେ ଦିଲ୍ଲୀର A.I.M.S. ସରକାରୀ ହାସପାତାଳକୁ ସେଠାରେ ଚିକିତ୍ସିତ ହେଉଥିବା ଓଡ଼ିଶାର ରାଜ୍ୟପାଳ ଶ୍ରୀଯୁକ୍ତ ପାଣ୍ଡେଙ୍କୁ ଦେଖିବାପାଇଁ ଯାଇଥିଲୁଁ । ତତ୍‌ପରେ ଠିକ୍ ଦିଲ୍ଲୀର ସୀମା ଶେଷଭାଗରେ ଏକ ସ୍ଥାନରେ ଗୋଟିଏ ବୃହତ୍ ମନ୍ଦିର ତିଆରି ଚାଲିଥିବାରୁ ତାହା ଦେଖିବାକୁ ଯାଇଥିଲୁ । ଆମେ ସେଠାରେ ପହଞ୍ଚିଲା ମାତ୍ରେ ମନ୍ଦିର ତିଆରି ଦାୟିତ୍ୱରେ ଥିବା ବ୍ୟକ୍ତି ଆମକୁ ମନ୍ଦିରର ସବୁ ଅଞ୍ଚଳକୁ ଦେଖାଇ ପ୍ରତ୍ୟେକଟି ବିଷୟ ବୁଝାଇଥିଲେ । ଉକ୍ତ ମନ୍ଦିର କୌଣସି ଗୋଟିଏ ଧର୍ମର ନ ହୋଇ ସର୍ବଧର୍ମର ସମନ୍ୱୟ ହେବାର ଉଦ୍ଦେଶ୍ୟ ବୋଲି ଜାଣିଲୁ । ୪ବର୍ଷ ହେଲା ମନ୍ଦିର କାର୍ଯ୍ୟ ଆରମ୍ଭ ହୋଇଥିବାର ଓ ଆଉ ଦୁଇବର୍ଷ ମଧ୍ୟରେ ତାହା ସଂପୂର୍ଣ୍ଣ ହେବାର ସମ୍ଭାବନା ବୋଲି ଜାଣିଲୁ । ମନ୍ଦରଟି ଏକ ପଦ୍ମପାଖୁଡ଼ା ଉପରେ ତିଆରି ହେଉଛି । ମନ୍ଦିର ଭିତରକୁ ପ୍ରବେଶ କରିବାକୁ ୯ଟି ଦ୍ୱାର ରଖାଯାଇଛି । ମନ୍ଦିରର ଉଚ୍ଚତା ୪୩ ମିଟର । ସେଥିରେ ମନ୍ଦିର ଭିତର ୧୦୦ମିଟର ପରିଧି ରଖାଯାଇଛି । ଯାହାଫଳରେ ପ୍ରାୟ ଦୁଇହଜାର ଲୋକ ମନ୍ଦର ଭିତରେ ବସି ପ୍ରାର୍ଥନା କରିପାରିବେ । ସମସ୍ତ ମନ୍ଦିରଟି ମାର୍ବଲ ପଥର ନିର୍ମିତ ଓ ତାହା ଏକ ପଦ୍ମ ଫୁଲ ଉପରେ ରହିଅଛି । ମନ୍ଦିରକୁ ପ୍ରବେଶ ପାଇଁ ୯ଟି ରାସ୍ତା ଦୁଇପାଖରେ ପାଣିମଧ ରଖାଯାଇଛି । ମନ୍ଦିର ବେଢ଼ାକୁ ଲାଗି ଯେଉଁ ଘରମାନ ରହିଛି, ତା ଉପରେ ଅପର ପାଖ ତଳ ପର୍ଯ୍ୟନ୍ତ ଟେରାସିଙ୍ଗ୍ କରାଯାଇ ନୀଳବର୍ଣ୍ଣର ଘାସ ଲଗାଯାଇଥିବା ଇତ୍ୟାଦି ସମସ୍ତ କାର୍ଯ୍ୟ ଭାରତୀୟ ଇଂଜିନିୟର ମାନଙ୍କ କାରାଗରୀ କୌଶଳ ପୃଥିବୀରେ ସର୍ବଶ୍ରେଷ୍ଠ ବୋଲି ବିବେଚିତ ହେବ ଏବଂ ପୃଥିବୀରେ ଏକ ବଡ଼ ଦର୍ଶନୀୟ ସ୍ଥାନ ହେବ । ଫ୍ରାନ୍ସ ଦେଶର ପ୍ୟାରିସ୍‌ଠାରେ ୩୦୦ ବର୍ଷ ପୂର୍ବେ ତିଆରି ହୋଇଥିବା Emphil tower ପରି । ତହିଁ ପରଦିନ ଭୁବନେଶ୍ୱର ଫେରି ପରେ ବେତନଟୀ ଫେରି ଆସିଲି ।

## ବିଧାନସଭା ପରିଚାଳନା କୌଶଳ

ଏ ବର୍ଷର ବିଧାନସଭା ଦୁଇଟି ବୈଠକ ହେଲା । ପ୍ରଥମ ବୈଠକ ଆରମ୍ଭରେ ଫେବୃଆରୀ ମାସରେ ମାତ୍ର ଦୁଇ ସପ୍ତାହ ପାଇଁ ଏକ କାମଚଳା ବଜେଟ୍ ନୂତନ ମନ୍ତ୍ରୀମଣ୍ଡଳ ନିର୍ବାଚନ ପରେ ହୋଇଥିଲା । ତାହା ବେଶ୍ ସୁସ୍ଥ ବାତାବରଣ ମଧ୍ୟରେ ସମାପନ ହୋଇଥିଲା । ବଜେଟ୍ ଅଧିବେଶନ ୩.୭.୮୫ ରେ ଆରମ୍ଭ ହୋଇ ୨.୮.୮୫ ରେ ଏକ ଅତି ସରଗରମ

ବାତାବରଣ ମଧ୍ୟରେ ଶେଷ ହୋଇଥିଲା । ଏଥର ବିଧାନସଭାରେ ବିରୋଧିଦଳୀୟ ନେତାଭାବେ ଜନତା ଦଳର ସର୍ବଭାରତୀୟ ନେତା ଶ୍ରୀ ବିଜୁ ପଟ୍ଟନାୟକ ଅବତୀର୍ଣ୍ଣ ହୋଇଥିବାରୁ ବିଧାନସଭାରେ ଏକ ସୁସ୍ଥ ବାତାବରଣ ଉପୁଜି ଅନ୍ୟମାନଙ୍କ ପାଇଁ ଶିକ୍ଷଣୀୟ ପରମ୍ପରା ସୃଷ୍ଟିହେବାର ସମସ୍ତେ ଆଶାପୋଷଣ କରିଥିଲେ ହେଁ ବିଧାନସଭାର ୨ୟ ଅଧିବେଶନ (ବଜେଟ୍ ଅଧିବେଶନ) ବେଳେ ତାହିଁର ପ୍ରତିକୂଳ ବାତାବରଣ ସୃଷ୍ଟିହେବା ପରିତାପର ବିଷୟ । ଅତିଛୋଟ ଛୋଟ କଥାରେ ମଧ୍ୟ ଅତି ଅଶାନ୍ତ ଅବସ୍ଥା ସୃଷ୍ଟି ହେଲା । ଅବଶ୍ୟ କଳାହାଣ୍ଡି ଜିଲ୍ଲାର ଗୁରୁତର ମରୁଡ଼ି ପରିସ୍ଥିତି ଓ ମୁଖ୍ୟମନ୍ତ୍ରୀଙ୍କ ପୁରୀଜିଲ୍ଲା ରାମେଶ୍ୱରପୁର ଠାରେ ଜମି କିଣିବା ଓ ଘର ତିଆରି ସଂକ୍ରାନ୍ତୀୟ ବିବାଦୀୟ ସଂବାଦ ପରିବେଷଣ, କାକଟପୁର ଗୁଳିକାଣ୍ଡ, ପାରାଦ୍ୱୀପ ବନ୍ଦର ସଂକ୍ରାନ୍ତୀୟ ଗୁରୁତ୍ୱପୂର୍ଣ୍ଣ ବିଷୟମାନ ବିଧାନସଭା ବାୟୁମଣ୍ଡଳକୁ ଅଧିକାଂଶ ସମୟ ସରଗରମ କରି ରଖିଥିଲା । କଳାହାଣ୍ଡି ଏକ ଅବହେଳିତ ଅଞ୍ଚଳ ହୋଇଥିବାରୁ ସେଠାକାର ମରୁଡ଼ିଜନିତ ଗୁରୁତର ପରିସ୍ଥିତିର ପ୍ରତିକାର ପ୍ରତି ସରକାର ବିଶେଷ ତତ୍ପର ନ ଥିବାରୁ ପ୍ରଧାନମନ୍ତ୍ରୀ ନିଜେ ପରିସ୍ଥିତି ଅନୁଧ୍ୟାନ କରିବାକୁ ଆସିବା ବିରୋଧୀ ଦଳ ଓ ସରକାରୀ ସଭ୍ୟଙ୍କ ମନରେ ଘୋର ଅସନ୍ତୋଷ ସୃଷ୍ଟି କରିଥିଲା । କଳାହାଣ୍ଡି ତଥା ଅନ୍ୟ ଅଞ୍ଚଳର ମରୁଡ଼ି ପରିସ୍ଥିତିର ଆଲୋଚନା ରାତ୍ରି ୧୦ଟା ପର୍ଯ୍ୟନ୍ତ ଚାଲି ଶେଷ ହେବା ବେଳକୁ ରାଜସ୍ୱମନ୍ତ୍ରୀଙ୍କ ଏକ ମନ୍ତବ୍ୟରେ କ୍ଷୁବ୍ଧ ହୋଇ ବିରୋଧୀ ଦଳର କେତେକ ସଭ୍ୟ ମାଇକ ଭାଙ୍ଗି ସରକାରୀ ଦଳକୁ ଲକ୍ଷ୍ୟକରି ଫିଙ୍ଗିବା ଯୋଗୁଁ ବିଧାନସଭାର ମୁଲତବୀ ଘୋଷଣା କରିଥିଲି । ବିରୋଧୀ ଦଳର ନେତା ଜାଣିଶୁଣି ଏପରି ପରିସ୍ଥିତି ଉପୁଜିବା ପୂର୍ବରୁ ବିଧାନସଭାରେ ଅନୁପସ୍ଥିତ ରହିବା ଅତ୍ୟନ୍ତ ତାତ୍ପର୍ଯ୍ୟପୂର୍ଣ୍ଣ । ମୁଖ୍ୟମନ୍ତ୍ରୀଙ୍କ ରାମେଶ୍ୱରପୁରରେ ଜମି କିଣା ବେଆଇନ୍ ହୋଇଥିବା ଓ ଘରତିଆରି ସଂକ୍ରାନ୍ତରେ ବିଧାନସଭାକୁ ଭୁଲତଥ୍ୟ ଯୋଗାଇଥିବା ଅଭିଯୋଗ ସଂକ୍ରାନ୍ତୀୟ ସ୍ୱାଧୀକାର ପ୍ରଶ୍ନ ଉପରେ ଦେଇଥିବା ମୋର ନିଷ୍ପତ୍ତି ଉପରେ ମଧ୍ୟ ବିଧାନସଭାରେ ତିକ୍ତ ବାତାବରଣ ସୃଷ୍ଟି ହୋଇଥିଲେ ହେଁ ଉକ୍ତ ଅଭିଯୋଗକୁ ଖଣ୍ଡନ କରି ମୋର ନିଷ୍ପତ୍ତି ବିଧାନସଭାକୁ ଶାନ୍ତ କରିଥିଲା । ଅନେକ ସମୟରେ ମୋର ନିରପେକ୍ଷ ନିଷ୍ପତ୍ତି, ସରକାରୀ ଦଳର ମନ୍ତ୍ରୀମାନଙ୍କ କାର୍ଯ୍ୟ ସଂକ୍ରାନ୍ତରେ ସମାଲୋଚନା ମୂଳକ ହେଲେ ବିରୋଧୀଦଳକୁ ଶାନ୍ତ କରିବାରେ ସାହାଯ୍ୟ କରିଥିଲା । ଶେଷଦିନ ମୁଁ ସମସ୍ତଙ୍କୁ ସେମାନଙ୍କ ବିଧାନସଭା ପରିଚାଳନାରେ ସାହାଯ୍ୟ ସହଯୋଗ ସଂକ୍ରାନ୍ତରେ ଧନ୍ୟବାଦ ଦେବା ବେଳକୁ ବିରୋଧୀ ଦଳର ସଭ୍ୟମାନେ କକ୍ଷତ୍ୟାଗ କରିବାଯୋଗୁଁ ସମସ୍ତେ କ୍ଷୋଭ ପ୍ରକାଶ କରିଥିଲେ । ଏହି ୧୯୮୫ ଭାରତର ଜନଜୀବନର ଆଉ ଏକ ଗୌରବମୟ ସ୍ମରଣୀୟ ବର୍ଷ ହେଉଛି ଜାତୀୟ ମୁକ୍ତି ଆନ୍ଦୋଳନ ରୂପେ ଯେଉଁ କଂଗ୍ରେସ ଅନୁଷ୍ଠାନ ମାତ୍ର କେତେଜଣ ବୁଦ୍ଧିଜୀବିଙ୍କ ଦ୍ୱାରା ଗଢ଼ାଯାଇଥିଲା, ତାହା କ୍ରମେ ବୃଦ୍ଧିପାଇ ମହାତ୍ମାଗାନ୍ଧୀଙ୍କ ନେତୃତ୍ୱରେ ଭାରତର ଚତୁର୍ଦ୍ଦିଗକୁ ପ୍ରସାରିତ ହୋଇଥିଲା ଏବଂ ୧୯୪୨ ମସିହାରେ ଇଂରେଜ ସରକାର ବିରୁଦ୍ଧରେ ଐତିହାସିକ ଭାରତଛାଡ଼ ଆନ୍ଦୋଳନ ଆରମ୍ଭକରି ହିମାଳୟରୁ କୁମାରିକା ପର୍ଯ୍ୟନ୍ତ ଭାରତର କୋଣେ କୋଣେ ମୁକ୍ତିର ପ୍ରବଳ ଆକାଂକ୍ଷା ଜନ୍ମିବା ଯୋଗୁଁ ୧୯୪୭ ଅଗଷ୍ଟ ୧୫ ତାରିଖରେ ଭାରତ ଏକ ସ୍ୱାଧୀନ ଗଣତନ୍ତ୍ର ରାଷ୍ଟ୍ରରୂପେ ଜନ୍ମଲାଭକଲା । ଇତିହାସ ପ୍ରସିଦ୍ଧ ସେହି ଜାତୀୟ କଂଗ୍ରେସର ଶତବାର୍ଷିକୀ ଉତ୍ସବ ଭାରତର କୋଟିକୋଟି ଅନ୍ତରରେ ଆନନ୍ଦର ଢ଼େଉ ଖେଳାଇ ଦେଲା । ଆମ ମୟୂରଭଞ୍ଜ ଜିଲ୍ଲାରେ ପ୍ରଥମେ ୩୦.୧୦.୮୫ ତାରିଖ ଦିନ କପ୍ତିପଦା ସନ୍ନିକଟ ଐତିହାସିକ ବାଘାଯତୀନ୍ ପଡ଼ିଆରେ ମୁଖ୍ୟମନ୍ତ୍ରୀ ଓ ମୁଁ ସେହି ଉତ୍ସବରେ ଯୋଗ ଦେଇଥିଲୁ । ତା'ପରେ ବେତନଟୀ ନିକଟସ୍ଥ ଆମ୍ବଯୋଡ଼ା ଯେଉଁଠାରେ ମୟୂରଭଂଜ ପୂର୍ବତନ ଗଡ଼ଜାତ ସମୟରେ ୧୯୩୯ ମସିହାରେ ସ୍ୱର୍ଗତ ଶରତ ଚନ୍ଦ୍ର ଦାସଙ୍କ ନେତୃତ୍ୱରେ ପ୍ରଜାମଣ୍ଡଳ ଆନ୍ଦୋଳନର ପ୍ରଧାନ କାର୍ଯ୍ୟାଳୟ ପ୍ରତିଷ୍ଠା ହୋଇଥିଲା, ସେଠାରେ ଡିସେମ୍ବର ୧୯ ତାରିଖରେ ମୟୂରଭଞ୍ଜର ସ୍ୱାଧୀନତା ସଂଗ୍ରାମୀଙ୍କ ଏକ ସମାବେଶ ମୋ ସଭାପତିତ୍ୱରେ ଅନୁଷ୍ଠିତ ହୋଇଥିଲା । ସେଠାରେ ମୟୂରଭଞ୍ଜର ପ୍ରଜାମଣ୍ଡଳ ଅନ୍ଦୋଳନରେ ଯୋଗଦେଇ ଏପର୍ଯ୍ୟନ୍ତ ବଞ୍ଚିରହିଥିବା ସମସ୍ତ କର୍ମୀମାନେ ଯୋଗଦେଇ ଶରତବାବୁଙ୍କ ଏକ ମୂର୍ତ୍ତି ସ୍ଥାପନ କରିବା ଓ ମୟୂରଭଞ୍ଜ ପ୍ରଜାମଣ୍ଡଳ ଇତିହାସ ନାମରେ ଏକ ପୁସ୍ତକ ଛପାଇବାର ଦାୟିତ୍ୱ ମୋ ଉପରେ ଅର୍ପଣ କରିଥିଲେ । ତତ୍ପରେ ଭୁବନେଶ୍ୱରଠାରେ ଏକ



ପରିବାର ବର୍ଗଙ୍କ ସହ

ଗାମ୍ଭୀର୍ଯ୍ୟ ପୂର୍ଣ୍ଣବାତାବରଣରେ ୨୧.୧୨.୮୫ ତାରିଖରେ ସକାଳଓଳି ସ୍ୱାଧୀନତା ସଂଗ୍ରାମୀମାନଙ୍କର ଓ ଉପରଓଳି ଅନ୍ୟ ସମସ୍ତଙ୍କର ଏକ ସମାବେଶ ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ଜାନକୀ ବଲ୍ଲଭ ପଟ୍ଟନାୟକ ଙ୍କ ସଭାପତିତ୍ୱରେ ପାଳନ ହୋଇଥିଲା । ସକାଳଓଳି ଡ଼କ୍ଟର ହରେକୃଷ୍ଣ ମହତାବ ଓ ମୁଁ ଭାଷଣ ଦେଇଥିଲୁଁ । ମୁଁ ସ୍ପଷ୍ଟଭାବେ କଂଗ୍ରେସ ତା'ର ମୂଳନୀତି ଓ ଲକ୍ଷରୁ ବର୍ତ୍ତମାନ ଦୂରେଇ ଯାଇଥିବା କହିବାରୁ ମୋତେ ସମସ୍ତେ ଅଭିନନ୍ଦନ ଜଣାଇଥିଲେ । ଅପରାହ୍ନ ବୈଠକରେ ଶ୍ରୀମତୀ ଶୀଳା କାଉଲ୍ ଓ କେନ୍ଦ୍ର ରାଷ୍ଟ୍ରମନ୍ତ୍ରୀ ଶ୍ରୀମତୀ ରାଜେନ୍ଦ୍ର କୁମାରୀ ବାଜପେୟୀ ଯୋଗଦେଇଥିଲେ । ଏହି ସମାବେଶରେ ଓଡ଼ିଶାର ଚାରିଆଡୁ ପ୍ରାୟ ୭୦/୮୦ ହଜାର ଲୋକ ଯୋଗ ଦେଇଥିଲେ । କିନ୍ତୁ ଦୁଃଖର ବିଷୟ ଓଡ଼ିଶାର ବିଭିନ୍ନ ବିରୋଧୀ ଦଳରେ ସାମିଲ ହୋଇଥିବା ଅନେକ ସ୍ୱାଧୀନତା ସଂଗ୍ରାମୀ ଏହି ସମାବେଶରେ ଯୋଗ ଦେଇ ନ ଥିଲେ ।

## ୧୯୮୬ (ନୂଆବର୍ଷ)

ବାରପଦା ନିର୍ବାଚନ ମଣ୍ଡଳୀରୁ ତୃତୀୟଥର ନିର୍ବାଚିତ ହେଲାପରେ ପୁଣି ଦ୍ୱିତୀୟ ଥର ପାଇଁ ଓଡ଼ିଶା ବିଧାନସଭାର ଅଧକ୍ଷ ହୋଇ ଗୋଟିଏ ବର୍ଷ ଅତିକ୍ରମ କଲାପରେ ୧୯୮୬ ନୂଆବର୍ଷରେ ପଦାର୍ପଣ କଲି । ଏ ବର୍ଷର ପ୍ରଥମଦିନଟି ବେତନଟୀ ଠାରେ ମୋ ପରିବାର ଲୋକଙ୍କ ସଙ୍ଗେ ପଟାଇବାର ସୁଯୋଗ ପାଇ ମୁଁ ବିଶେଷ ଆନନ୍ଦିତ ହେଲି । କାରଣ ମୁଁ ନୂଆବର୍ଷଟି ମୋର ନିଜଘରେ ମୋ ପରିବାର ଲୋକଙ୍କ ସଙ୍ଗେ କଟାଇବାକୁ ସବୁଠାରୁ ଭଲ ପାଏ ।

ବିଧାନସଭା ବୈଠକ ଜାନୁଆରୀ ମାସ ୩୧ ତାରିଖରୁ ଏ ବର୍ଷ ଖୁବ ଆଗୁଆ ଆରମ୍ଭ ହୋଇ ଫେବୃଆରୀ ୧୨ତାରିଖ ପର୍ଯ୍ୟନ୍ତ ଚାଲି ମୁଲତବୀ ରହିଲା । ୧୯୮୫ ମସିହାରେ ହୋଇଥିବା ବିଧାନସଭା ବୈଠକର ଶେଷ ଦିନରୁ ଅନ୍ୟ ଏକ ବିଧାନସଭା ଆରମ୍ଭ (ପରବର୍ତ୍ତୀ ବୈଠକ)ଦିନ ମଧ୍ୟରେ ୬ ମାସରୁ ଅଧିକ ସମୟ ବ୍ୟବଧାନ ନ ହେବାପାଇଁ ଅତି ଆଗୁଆ ବଜେଟ ଅଧିବେଶନ ଏ ବର୍ଷ ଡ଼କାଯାଇଥିଲା । ତେଣୁ ମାତ୍ର ଅଳ୍ପଦିନ ଚାଲି ନିୟମ ରକ୍ଷାପରେ ତାହା ମୁଲତବୀ ରଖାଗଲା ଏବଂପରବର୍ତ୍ତୀ ବୈଠକ ମାର୍ଚ୍ଚମାସ ୩ ତାରିଖ ଆରମ୍ଭ ହୋଇ ଏପ୍ରିଲ ମାସ ପ୍ରଥମ ସପ୍ତାହ ପର୍ଯ୍ୟନ୍ତ ଚାଲିଲା । ଏହି ସମୟଟି ବିଧାନସଭା ପକ୍ଷରେ ଅତି ଗୁରୁତ୍ୱପୂର୍ଣ୍ଣ ହୋଇଥିଲା । ଶ୍ରୀ ବିଜୁପଟ୍ଟନାୟକ ଲୋକସଭା ସଭ୍ୟପଦ ଛାଡ଼ି ବିଧାନସଭାରେ ରହିବା ଦିନୁଁ ସବୁବେଳେ ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକଙ୍କୁ ବଦନାମ୍ କରିବା ଓ ତାଙ୍କର ଚରିତ୍ର ସଂହାର କରିବାରେ ବିଶେଷ ଭୂମିକା ଗହଣ କରିଥିଲେ । ଏହା ତାଙ୍କର ତଥା ତାଙ୍କ ଜନତାଦଳ କ୍ଷମତାରୁ ଗଲାଦିନୁ ଚିରାଚରିତ ପନ୍ଥା । ଏହିଭଳି ସୁଯୋଗ ଖୋଜୁଥିଲା ବେଳେ ଓଡ଼ିଶାର କଂଗ୍ରେସ ଅନୁଷ୍ଠାନ ମଧ୍ୟରେ ଦଳାଦଳି ସାଙ୍ଗକୁ ମୁଖ୍ୟମନ୍ତ୍ରୀ ବମ୍ବେଠାରେ ଡ଼ିସେମ୍ବର ମାସ (୧୯୮୫) ରେ କଂଗ୍ରେସ ଶତବାର୍ଷିକୀ ସମାରାବେଶରେ ଯୋଗ ଦେଇଥିବା ସମୟର ତାଙ୍କ ଚରିତ୍ର ସଂକ୍ରାନ୍ତୀୟ କେତେକ ଘଟଣା Ilestrated Weekly ନାମରେ ପ୍ରକାଶ ପାଉଥିବା ବମ୍ବେର ଏକ ଇଂରାଜୀ ସାପ୍ତାହିକ କାଗଜରେ ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକଙ୍କ ଯୌନ ଉଶୃଙ୍ଖଳତା ସଂକ୍ରାନ୍ତରେ ଯେଉଁ ଜଘନ୍ୟ ସଂବାଦ ପ୍ରକାଶିତ ହେଲା, ତାହା ଓଡ଼ିଶା କାହିଁକି ସର୍ବଭାରତୀୟ କ୍ଷେତ୍ରରେ ଏକ ଆଲୋଡ଼ନ ସୃଷ୍ଟିକଲା । ଓଡ଼ିଶାର ବିଧାନସଭାର କେତେକ ସଭ୍ୟ ଓ ଓଡ଼ିଶାର କେତେକ ଲୋକସଭା ସଭ୍ୟ ମିଶି ମୁଖ୍ୟମନ୍ତ୍ରଙ୍କ ଅପସାରଣ ପାଇଁ ମଧ୍ୟ ପ୍ରଧାନମନ୍ତ୍ରୀଙ୍କ ଦୃଷ୍ଟିଆକର୍ଷଣ କରିଥିଲେ । ସେପ୍ଟେମ୍ବର ମାସରେ ରାଜ୍ୟର ଅତିରିକ୍ତ ବଜେଟ୍ ଆଲୋଚନା ପାଇଁ ବିଧାନସଭା ବୈଠକ ହେବାକୁଥିବାରୁ ଏହି ଘଟଣା ନିଶ୍ଚିତ ଭାବେ ବିରୋଧି ଦଳର ସଭ୍ୟଙ୍କ ପକ୍ଷରେ ଏକ ସୁବର୍ଣ୍ଣସୁଯୋଗ ଘଟିବାର ଜାଣି ମୁଖ୍ୟମନ୍ତ୍ରୀ ଉକ୍ତ ଇଂରାଜୀ ସାପ୍ତାହିକୀର ସଂପାଦକଙ୍କ ନାମରେ ଏକ କୋଟି ଟଙ୍କାର ମାନହାନୀ ମୋକଦ୍ଦମା ଓଡ଼ିଶାରେ ଦାୟର କରି ଉକ୍ତ ପ୍ରକାଶିତ ଘଟଣା ଅନ୍ୟ କୌଣସି ଖବରକାଗଜରେ ପ୍ରକାଶ କରିପାରିବେ ନାହିଁ ବୋଲି ଏକ ଆଦେଶ ମଧ୍ୟ ସଂପୃକ୍ତ ଅଦାଲତରୁ ଜାରିକରାଇ ଥିଲେ । କାରଣ ତାହା ନ ହେଲେ ବିଧାନସଭାରେ ତହିଁର ଆଲୋଚନା ହୋଇ

ଗାମ୍ଭୀର୍ଯ୍ୟ ପୂର୍ଣ୍ଣବାତାବରଣରେ ୨୧.୧୨.୮୫ ତାରିଖରେ ସକାଳଓଳି ସ୍ୱାଧୀନତା ସଂଗ୍ରାମୀମାନଙ୍କର ଓ ଉପରଓଳି ଅନ୍ୟ ସମସ୍ତଙ୍କର ଏକ ସମାବେଶ ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ଜାନକୀ ବଲ୍ଲଭ ପଟ୍ଟନାୟକ ଙ୍କ ସଭାପତିତ୍ୱରେ ପାଳନ ହୋଇଥିଲା । ସକାଳଓଳି ଡ଼କ୍ଟର ହରେକୃଷ୍ଣ ମହତାବ ଓ ମୁଁ ଭାଷଣ ଦେଇଥିଲୁଁ । ମୁଁ ସ୍ୱଷ୍ଟଭାବେ କଂଗ୍ରେସ ତା'ର ମୂଳନୀତି ଓ ଲକ୍ଷରୁ ବର୍ତ୍ତମାନ ଦୂରେଇ ଯାଇଥିବା କହିବାରୁ ମୋତେ ସମସ୍ତେ ଅଭିନନ୍ଦନ ଜଣାଇଥିଲେ । ଅପରାହ୍ନ ବୈଠକରେ ଶ୍ରୀମତୀ ଶୀଳା କାଉଲ୍ ଓ କେନ୍ଦ୍ର ରାଷ୍ଟ୍ରମନ୍ତ୍ରୀ ଶ୍ରୀମତୀ ରାଜେନ୍ଦ୍ର କୁମାରୀ ବାଜପେୟୀ ଯୋଗଦେଇଥିଲେ । ଏହି ସମାବେଶରେ ଓଡ଼ିଶାର ଚାରିଆଡୁ ପ୍ରାୟ ୭୦/୮୦ ହଜାର ଲୋକ ଯୋଗ ଦେଇଥିଲେ । କିନ୍ତୁ ଦୁଃଖର ବିଷୟ ଓଡ଼ିଶାର ବିଭିନ୍ନ ବିରୋଧୀ ଦଳରେ ସାମିଲ ହୋଇଥିବା ଅନେକ ସ୍ୱାଧୀନତା ସଂଗ୍ରାମୀ ଏହି ସମାବେଶରେ ଯୋଗ ଦେଇ ନ ଥିଲେ ।

## ୧୯୮୬ (ନୂଆବର୍ଷ)

ବାରପଦା ନିର୍ବାଚନ ମଣ୍ଡଳୀରୁ ତୃତୀୟଥର ନିର୍ବାଚିତ ହେଲାପରେ ପୁଣି ଦ୍ୱିତୀୟ ଥର ପାଇଁ ଓଡ଼ିଶା ବିଧାସଭାର ଅଧକ୍ଷ ହୋଇ ଗୋଟିଏ ବର୍ଷ ଅତିକ୍ରମ କଲାପରେ ୧୯୮୬ ନୂଆବର୍ଷରେ ପଦାର୍ପଣ କଲି । ଏ ବର୍ଷର ପ୍ରଥମଦିନଟି ବେତନଟୀ ଠାରେ ମୋ ପରିବାର ଲୋକଙ୍କ ସଙ୍ଗେ ପଟାଇବାର ସୁଯୋଗ ପାଇ ମୁଁ ବିଶେଷ ଆନନ୍ଦିତ ହେଲି । କାରଣ ମୁଁ ନୂଆବର୍ଷଟି ମୋର ନିଜଘରେ ମୋ ପରିବାର ଲୋକଙ୍କ ସଙ୍ଗେ କଟାଇବାକୁ ସବୁଠାରୁ ଭଲ ପାଏ ।

ବିଧାନସଭା ବୈଠକ ଜାନୁଆରୀ ମାସ ୩୧ ତାରିଖରୁ ଏ ବର୍ଷ ଖୁବ ଆଗୁଆ ଆରମ୍ଭ ହୋଇ ଫେବୃଆରୀ ୧୨ତାରିଖ ପର୍ଯ୍ୟନ୍ତ ଚାଲି ମୁଲତବୀ ରହିଲା । ୧୯୮୫ ମସିହାରେ ହୋଇଥିବା ବିଧାନସଭା ବୈଠକର ଶେଷ ଦିନରୁ ଅନ୍ୟ ଏକ ବିଧାନସଭା ଆରମ୍ଭ (ପରବର୍ତ୍ତୀ ବୈଠକ)ଦିନ ମଧ୍ୟରେ ୬ ମାସରୁ ଅଧିକ ସମୟ ବ୍ୟବଧାନ ନ ହେବାପାଇଁ ଅତି ଆଗୁଆ ବଜେଟ ଅଧିବେଶନ ଏ ବର୍ଷ ଡ଼କାଯାଇଥିଲା । ତେଣୁ ମାତ୍ର ଅଳ୍ପଦିନ ଚାଲି ନିୟମ ରକ୍ଷାପରେ ତାହା ମୁଲତବୀ ରଖାଗଲା ଏବଂପରବର୍ତ୍ତୀ ବୈଠକ ମାର୍ଚ୍ଚମାସ ୩ ତାରିଖ ଆରମ୍ଭ ହୋଇ ଏପ୍ରିଲ ମାସ ପ୍ରଥମ ସପ୍ତାହ ପର୍ଯ୍ୟନ୍ତ ଚାଲିଲା । ଏହି ସମୟଟି ବିଧାନସଭା ପକ୍ଷରେ ଅତି ଗୁରୁତ୍ୱପୂର୍ଣ୍ଣ ହୋଇଥିଲା । ଶ୍ରୀ ବିଜୁପଟ୍ଟନାୟକ ଲୋକସଭା ସଭ୍ୟପଦ ଛାଡ଼ି ବିଧାନସଭାରେ ରହିବା ଦିନୁଁ ସବୁବେଳେ ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକଙ୍କୁ ବଦନାମ୍ କରିବା ଓ ତାଙ୍କର ଚରିତ୍ର ସଂହାର କରିବାରେ ବିଶେଷ ଭୂମିକା ଗହଣ କରିଥିଲେ । ଏହା ତାଙ୍କର ତଥା ତାଙ୍କ ଜନତାଦଳ କ୍ଷମତାରୁ ଗଲାଦିନୁ ଚିରାଚରିତ ପନ୍ଥା । ଏହିଭଳି ସୁଯୋଗ ଖୋଜୁଥିଲା ବେଳେ ଓଡ଼ିଶାର କଂଗ୍ରେସ ଅନୁଷ୍ଠାନ ମଧ୍ୟରେ ଦଳାଦଳି ସାଙ୍ଗକୁ ମୁଖ୍ୟମନ୍ତ୍ରୀ ବମ୍ୱେଠାରେ ଡ଼ିସେମ୍ୱର ମାସ (୧୯୮୫) ରେ କଂଗ୍ରେସ ଶତବାର୍ଷିକୀ ସମାରାବେଶରେ ଯୋଗ ଦେଇଥିବା ସମୟର ତାଙ୍କ ଚରିତ୍ର ସଂକ୍ରାନ୍ତୀୟ କେତେକ ଘଟଣା Illustrated Weekly ନାମରେ ପ୍ରକାଶ ପାଉଥିବା ବମ୍ୱେର ଏକ ଇଂରାଜୀ ସାପ୍ତାହିକ କାଗଜରେ ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକଙ୍କ ଯୌନ ଉଚ୍ଛୃଙ୍ଖଳତା ସଂକ୍ରାନ୍ତରେ ଯେଉଁ ଜଘନ୍ୟ ସଂବାଦ ପ୍ରକାଶିତ ହେଲା, ତାହା ଓଡ଼ିଶା କାହିଁକି ସର୍ବଭାରତୀୟ କ୍ଷେତ୍ରରେ ଏକ ଆଲୋଡ଼ନ ସୃଷ୍ଟିକଲା । ଓଡ଼ିଶାର ବିଧାନସଭାର କେତେକ ସଭ୍ୟ ଓ ଓଡ଼ିଶାର କେତେକ ଲୋକସଭା ସଭ୍ୟ ମିଶି ମୁଖ୍ୟମନ୍ତ୍ରୀଙ୍କ ଅପସାରଣ ପାଇଁ ମଧ ପ୍ରଧାନମନ୍ତ୍ରୀଙ୍କ ଦୃଷ୍ଟିଆକର୍ଷଣ କରିଥିଲେ । ସେପ୍ଟେମ୍ୱର ମାସରେ ରାଜ୍ୟର ଅତିରିକ୍ତ ବଜେଟ୍ ଆଲୋଚନା ପାଇଁ ବିଧାନସଭା ବୈଠକ ହେବାକୁଥିବାରୁ ଏହି ଘଟଣା ନିଶ୍ଚିତ ଭାବେ ବିରୋଧି ଦଳର ସଭ୍ୟଙ୍କ ପକ୍ଷରେ ଏକ ସୁବର୍ଣ୍ଣସୁଯୋଗ ଘଟିବାର ଜାଣି ମୁଖ୍ୟମନ୍ତ୍ରୀ ଉକ୍ତ ଇଂରାଜୀ ସାପ୍ତାହିକୀର ସଂପାଦକଙ୍କ ନାମରେ ଏକ କୋଟି ଟଙ୍କାର ମାନହାନୀ ମୋକଦ୍ଦମା ଓଡ଼ିଶାରେ ଦାୟର କରି ଉକ୍ତ ପ୍ରକାଶିତ ଘଟଣା ଅନ୍ୟ କୌଣସି ଖବରକାଗଜରେ ପ୍ରକାଶ କରିପାରିବେ ନାହିଁ ବୋଲି ଏକ ଆଦେଶ ମଧ ସଂପୃକ୍ତ ଅଦାଲତରୁ ଜାରିକରାଇ ଥିଲେ । କାରଣ ତାହା ନ ହେଲେ ବିଧାନସଭାରେ ତହିଁର ଆଲୋଚନା ହୋଇ

ମୁଖ୍ୟମନ୍ତ୍ରୀଙ୍କ ଅଧିକ ଚରିତ୍ର ସଂହାର ହୋଇଥାନ୍ତା ବୋଲି ଆଶଙ୍କା କରି ମୁଖ୍ୟମନ୍ତ୍ରୀ ଏହା କରାଇଥିଲେ । ତଥାପି ବିରୋଧୀ ଦଳ ତରଫରୁ ଏକାକି ମୁଖ୍ୟମନ୍ତ୍ରୀ ଇସ୍ତଫା ନ ଦେଲେ ବିଧାନସଭା କରାଇ ନ ଦେବାକୁ ବଦ୍ଧ କରିକର ହୋଇ ବିଧାନସଭାରେ ଅତି ଆଶୋଭନୀୟ ଓ ଅସ୍ୱାସ୍ଥ୍ୟକର ପରିସ୍ଥିତି ସୃଷ୍ଟି କଲେ । ବିଧାନସଭା ପୂର୍ବରୁ ବିଜୁ ପଟ୍ଟନାୟକ ଏକ ଚିଠି ଲେଖି ମୁଖ୍ୟମନ୍ତ୍ରୀଙ୍କୁ ଇସ୍ତଫା ଦେବାକୁ ମୋତେ ଅନୁରୋଧ କରିଥିଲେ ଏବଂ ତାହା ନ ହେଲେ ବିଧାନସଭା ବନ୍ଦ କରିବାର ଧମକ ମଧ ଦେଇଥିଲେ । ମୁଖ୍ୟମନ୍ତ୍ରୀଙ୍କୁ ଇସ୍ତଫା ଦେବାପାଇଁ କହିବା ମୋର କାର୍ଯ୍ୟ ପରିସରର ଅନ୍ତର୍ଭୁକ୍ତ ନୁହେଁ । ତେଣୁ ତାହା ମୁଁ କହିପାରିବି ନାହିଁ ବୋଲି ଜଣାଇ ଦେଇଥିଲି । ଏହା ସତ୍ତ୍ୱେ ସେପ୍ଟେମ୍ବର ମାସ ୩ ତାରିଖରେ ବିଧାନସଭା ଆରମ୍ଭ ହେବାମାତ୍ରେ ବିରୋଧୀ ଦଳରୁ ଭୀଷଣ ଗଣ୍ଡଗୋଳ ଆରମ୍ଭ କଲେ ଓ କୌଣସି କାର୍ଯ୍ୟ କରାଇ ନ ଦେବାର ସମସ୍ତ ଉଦ୍ୟମ କଲେ । ଏପରିକି ଅଧକ୍ଷ ଆସନରେ ମୁଁ ବସିଥିବା ବେଳେ ବିରୋଧୀଦଳର ଅଧିକାଂଶ ସଭ୍ୟ (ଶ୍ରୀ ତ୍ରିଲୋଚନ କାନୁନ୍‌ଗୋ, ଶ୍ରୀମତୀ ନନ୍ଦିନୀ ଶତପଥି, ଶ୍ରୀ ପ୍ରଶନ୍ନ ପଣ୍ଡା ଓ କେତେକ ସ୍ୱାଧୀନ ସଭ୍ୟଙ୍କ ବ୍ୟତୀତ ଅନ୍ୟମାନେ) ମୋ ନିକଟକୁ ମାଡ଼ିଆସି ମୋତେ ସଂପୂର୍ଣ୍ଣଭାବେ ଘେରିଯାଇ ବିଭିନ୍ନ ଧ୍ୱନି ଦେବା ଓ ମୁଁ ବିଧାସଭା ବନ୍ଦ ନ କଲେ ମୋତେ ଆସନରୁ ଟେକି ନେବାର ମଧ ଧମକ ଦେଲେ । କିନ୍ତୁ ଆଶ୍ଚର୍ଯ୍ୟର ବିଷୟ ଯେ, ଯେଉଁ ମୁଖ୍ୟମନ୍ତ୍ରୀଙ୍କର ଇସ୍ତଫା ଦାବିକରି ବରରୋଧୀଦଳର ଏତେ ଗଣ୍ଡଗୋଳ ମୋ ପାଖେ କରୁଥିଲେ, ସେହିଗୃହରେ ମୁଖ୍ୟମନ୍ତ୍ରୀ ତାଙ୍କ ଆସନରେ ବସି ରହିଥିଲେ ହେଁ ତାଙ୍କ ପାଖକୁ ଯାଇ ତାଙ୍କୁ ଇସ୍ତଫା ଦେବାପାଇଁ କେହି କହୁ ନ ଥିଲେ । ମୁଁ ନିରବ ଭାବେ ମୋ ଆସନରେ ବସି ତାଙ୍କୁ ଦୃଷ୍ଟି ନ ଦେଇ ଓ ସରକାରୀ ଦଳକୁ ତାଙ୍କ କାର୍ଯ୍ୟ କରିନେବା ପାଇଁ ନିର୍ଦ୍ଦେଶ ଦେଇଥିଲି ଓ ଅତିଗଣ୍ଡଗୋଳ ହେଲେ କିଛି ସମୟ ପାଇଁ ବିଧାସଭାକୁ ମୁଲତବୀ ରଖୁଥିଲି । ମୁଲତବୀ ପରେ ମୁଁ ବା ଉପାଧ୍ୟକ୍ଷ ଆସନକୁ ଯାଉଥିଲୁଁ । ବେଶି ସମୟ ବିଧାନସଭା ଚାଲିପାରୁ ନ ଥିଲେ ହେଁ ପ୍ରଥମ ଦୁଇଦିନ ମଧରେ ପ୍ରଶ୍ନଘଣ୍ଟା ପରେ ଗଣ୍ଡଗୋଳ ମଧରେ ମୋ ଅଧକ୍ଷତା ଓ ଉପାଧକ୍ଷଙ୍କ ଅଧକ୍ଷତା ବେଳେ ଆଲୋଚନାରେ ବିଧାନସଭାରେ ଗୃହୀତ ହୋଇଯାଇଥିଲା । ପ୍ରଥମ ଦିନ ଗୋଟାଏ ପର୍ଯ୍ୟନ୍ତ ଓ ଅଳ୍ପ କିଛି ସମୟ ଉପରଓଳି କିନ୍ତୁ ୨ୟ ଦିନ ମାତ୍ର ସର୍ବମୋଟ ୪୫ ମିନିଟ୍ ପର୍ଯ୍ୟନ୍ତ ବିଧାନସଭା ଚାଲିପାରିଥିଲା ଓ ସମସ୍ତ ସରକାରୀ ଆଇନ୍ ଗୁଡ଼ିକ ଗୃହୀତ ହୋଇ ପାରିଥିଲା । ଅବଶ୍ୟ ପ୍ରଥମ ଦିନ ପୂର୍ବାହ୍ନ ଅଧିବେଶନ ଶେଷକରି ମୁଁ ବସାକୁ ଯିବାପୂର୍ବରୁ ମନ୍ତ୍ରୀ ଶେଖ ମତ୍ଲୁବ୍ ଅଲ୍ଲୀଙ୍କୁ ଲକ୍ଷ୍ୟ କରି କହିଲି ଯେ, ସେ ମୁଖ୍ୟମନ୍ତ୍ରୀଙ୍କୁ ବିଧାନସଭା ଗୃହକୁ ନ ଆସିବାକୁ ଅନୁରୋଧ କରନ୍ତୁ । କାରଣ ସେ ଆସିଲେ ଅତିବେଶି ଗଣ୍ଡଗୋଳ ହେଉଛି । ସେପରି ଗଣ୍ଡଗୋଳ ଚାଲିଲେ ମୋ ଦ୍ୱାରା ବିଧାନସଭା ପରିଚାଳନା କରିବା ସମ୍ଭବ ହେବ ନାହିଁ । ଏହାପରେ ମୁଁ ନିଜ ବସାରେ ଥିଲା ବେଳେ ମୁଖ୍ୟମନ୍ତ୍ରୀ ଫୋନ ଯୋଗେ ଏ ବିଷୟ ମୋ ସହିତ କଥା ହେଲାବେଳେ ମଧ ମୁଁ ସେହି ପରାମର୍ଶ ଦେଇଥିଲି । ତେଣୁ ସେ ମୋତେ ରାଜସ୍ଥାନ ଓ ମଧପ୍ରଦେଶ ବିଧାନସଭାରେ ନିକଟରେ ଏଭଳି ଗଣ୍ଡଗୋଳ ପାଇଁ ବିରୋଧୀ ଦଳର କେତେକ ସଭ୍ୟଙ୍କୁ ସସ୍‌ପେଣ୍ଡ କରାଯାଇଥିବାରୁ ଏଠାରେ ମଧ ସେହି ପଦକ୍ଷେପ ନେବା ପାଇଁ ଅନୁରୋଧ କରିଥିଲେ । ମୁଁ କିନ୍ତୁ ତାଙ୍କ ସହିତ ଏକ ମତ ହୋଇ ନ ଥିଲି । ବିରୋଧୀ ଦଳର ସଭ୍ୟମାନେ ବିଧାନସଭାରେ କାର୍ଯ୍ୟ ପରିଚାଳନାରେ ବାଧା ଦେବା ଓ ମୋ ପ୍ରତି ଭଲ ବ୍ୟବହାର କରିନଥିଲେ ମଧ ମୁଁ ମୁଖ୍ୟମନ୍ତ୍ରୀଙ୍କ ଅନୁରୋଧ କ୍ରମେ ଗଣ୍ଡଗୋଳ କାରୀଙ୍କ ବିରୁଦ୍ଧରେ କୌଣସି କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିବାକୁ ରାଜିହୋଇ ନଥିଲି । କାରଣ ବିରୋଧି ଦଳ କେବଳ ମୁଖ୍ୟମନ୍ତ୍ରୀଙ୍କ ଚରିତ୍ର ହିନତା ବିରୁଦ୍ଧରେ ଆକ୍ରମଣ କରୁଥିବାରୁ ସେଥିପାଇଁ କାର୍ଯ୍ୟାନୁଷ୍ଠାନ କଲେ ତାହା ମୁଖ୍ୟମନ୍ତ୍ରୀଙ୍କୁ ରକ୍ଷା କରିବା ହେବ । ବିରୋଧୀ ଦଳ ଚାହୁଁଥିଲେ ଯେ, ଏହି ଘଟଣାରେ ତାଙ୍କୁ ବହିଷ୍କାର କଲେ ସେମାନେ ବିଜୟୀ ହୋଇ ଜନସାଧାରଣଙ୍କ ଠାରେ ତାଙ୍କ ସମ୍ମାନ ବଢ଼ାଇବେ ଓ ମୋତେ ମଧ ମୁଖ୍ୟମନ୍ତ୍ରୀଙ୍କ ସହିତ ସାମିଲ କରିଦେଇ ଗୋଟିଏ ଶରରେ ଦୁଇଟି ଚଢ଼େଇ ମାରିବେ । ଅନ୍ୟ ପକ୍ଷରେ ମୁଖ୍ୟମନ୍ତ୍ରୀ ଚାହୁଁଥିଲେ ଯେ ବିରୋଧି ଦଳର ସଭ୍ୟଙ୍କୁ ବହିଷ୍କାର କରିଦେଲେ ସେ ବେଶ୍ ସୁରୁଖୁରୁରେ ବିଧାନସଭାରେ ତାଙ୍କ କାମ ହାସଲ କରି ନିଜର କୃତିତ୍ୱ ଦେଖାଇ ପାରିବେ । ତେଣୁ ମୁଁ କାହାରି ଉଦ୍ଦେଶ୍ୟ ସଫଳ କରାଇ ଦେଲି ନାହିଁ ଓ ସମସ୍ତ ବାଧା ବିଘ୍ନକୁ ଖାତିର୍ ନ

କରି ବିଧାନସଭାର କାର୍ଯ୍ୟ (ଦୁଇଦିନର) ସମାପନ କଲି । ଦ୍ୱିତୀୟ ଦିନ ବିଧାନସଭା ମୁଲତବୀ ରହିଲାପରେ ଅପରାହ୍ଣ ପ୍ରାୟ ୪ଟା ବେଳେ ବିରୋଧୀ ଦଳର ନେତା ଶ୍ରୀ ବିଜୁ ପଟ୍ଟନାୟକ ମୋ ସରକାରୀ ଭବନକୁ ଆସିଥିଲେ । ବିଧାନସଭା ସଂକ୍ରାନ୍ତରେ ଉଭୟଙ୍କ ମଧ୍ୟରେ ପ୍ରାୟ ଏକ ଘଣ୍ଟାରୁ ଅଧିକ ଆଲୋଚନା ବେଳେ ମୁଁ ତାଙ୍କୁ କେବଳ ଗାଳି ଦେଇଥିଲି । ସେମାନଙ୍କର ବିଚାରହୀନ କାର୍ଯ୍ୟ ପାଇଁ ଏବଂ ତାଙ୍କ ସମସ୍ତ ବାଧା ସତ୍ତ୍ୱେ ସରକାରୀ ଆଇନ୍ ଗୃହୀତ କରାଇ ନେଲି । ସଭ୍ୟଭାବରେ ଆଲୋଚନାରେ ଭାଗନେବା ଦାୟିତ୍ୱ, ମୋର ନୁହେଁ । ଲୋକେ ବିରୋଧୀ ଦଳର ସଭ୍ୟମାନଙ୍କୁ ପ୍ରତିନିଧି ହୋଇ ବସି ଦୈନନ୍ଦିନର ଉତ୍ତର ଦେଇ ଆଲୋଚନାରେ ଭାଗ ନେଉ ନ ଥିବାରୁ ଲୋକମାନଙ୍କ ଦ୍ୱାରା ତୁମେମାନେହିଁ ନିନ୍ଦିତ ହେବ । ମୁଁ ତାଙ୍କୁ କହିଲି ଯେ ତୁମେ ବିଧାନସଭାର ଅଧ୍ୟକ୍ଷ ଆସନକୁ ଘେରାଉ କରି ଜାନକୀ ପଟ୍ଟନାୟକଙ୍କୁ ଇସ୍ତଫା ଦେବାପାଇଁ ନିର୍ଦ୍ଦେଶ ଦେବାକୁ କିମ୍ବା ବିଧାନସଭାକୁ ବନ୍ଦ କରିବାକୁ ଦାବୀ କରିବାର ତାତ୍ପର୍ଯ୍ୟ କ'ଣ ? ଏସବୁ ମୋର କାର୍ଯ୍ୟର ପରିସର କି ? ତୁମେ ସେଠାରେ ନିଜ ଆସନରେ ଜାନକୀ ପଟ୍ଟନାୟକ ବସିରହିଥିବା ବେଳେ ତାଙ୍କୁ ଘେରାଉ କରି ଇସ୍ତଫା ଦେବାକୁ ଦାବୀ କରିବାର ସାହସ ନ କରି ମୋତେ ଦାବୀ କରିବାରେ କି ତାତ୍ପର୍ଯ୍ୟ ଥିଲା । ଏସବୁର ସେ ଜବାବ ଦେଇ ନ ପାରିବାରୁ ମୁଁ ତାଙ୍କୁ ବିଚାର ବୁଦ୍ଧିହୀନ ବୋଲି କହିଲି । ଅଧ୍ୟକ୍ଷ ନିର୍ଦ୍ଦଳୀୟ । ତେଣୁ ତାଙ୍କ ପ୍ରତି ଏ ବ୍ୟବହାର ପୋଖତ ରାଜନୀତିର ପରିଚାୟକ ନୁହେଁ ଏବଂ ତୁମେ ଜଣେ ପୂର୍ବତନ ମୁଖ୍ୟମନ୍ତ୍ରୀ, କେନ୍ଦ୍ରମନ୍ତ୍ରୀ ଓ ଜଣେ ସର୍ବଭାରତୀୟ ନେତା ହୋଇ ସଂସଦୀୟ ଶାସନ ବ୍ୟବସ୍ଥାରେ ବିଧାନସଭା ଅଧ୍ୟକ୍ଷଙ୍କ ସମ୍ମାନ ଓ ଅଧିକାରକୁ ନ୍ୟୁନ କାରିବା ଦୁର୍ଭାଗ୍ୟ ଜନକ ବୋଲି କ୍ଷୋଭ ପ୍ରକାଶ କରିଥିଲି ।

## ସରକାରୀ ଦଳରୁ ଅର୍ଥ ନେବାର

## ବିଜୁପଟ୍ଟନାୟକଙ୍କ ସ୍ୱୀକାରୋକ୍ତି

ଏହାପରେ ମୁଁ ବିଜୁ ପଟ୍ଟନାୟକଙ୍କୁ ପଚାରିଲି, ''ତୁମ ଦଳର କେତେକ ସଭ୍ୟ ଜାନକୀ ପଟ୍ଟନାୟକଙ୍କ ଠାରୁ ବରାବର ପୂର୍ବରୁ ଏବଂ ଏବେ ମଧ୍ୟ ବିଧାନସଭାରେ ଗଣ୍ଡଗୋଳ ନ କରିବା ପାଇଁ ପଇସା ନେଉଥିବା ସତ୍ୟକି ନୁହେଁ ? ତୁମେ ଯଦି ମନାକରିବ, ମୁଁ ସେମାନଙ୍କ ନାମ କହିଦେଇ ପାରେ ।'' ସେ ଏହାର ଉତ୍ତରରେ ହଁ ବୋଲି କହିଲେ । ତତ୍ପରେ ମୁଁ ତାଙ୍କୁ ଦ୍ୱିତୀୟ ପ୍ରଶ୍ନ ପଚାରିଲି ତୁମେ ପ୍ରକୃତରେ ଜାନକୀ ବାବୁଙ୍କୁ ହଟାଇବାକୁ ଚାହଁକି ? ମୁଁ ଯେତେଦୁର ମନେ କରେ, ତୁମେ ସେ ଆସନରେ ଥିଲେ ସଂଗଠନ କ୍ଷେତ୍ରରେ ବଢ଼ିପାରିବ, ତେଣୁ ତାଙ୍କୁ ପ୍ରକୃତରେ ଶାସନ କ୍ଷେତ୍ରରେ ରହିବାକୁ ଚାହଁ । ମୋ ସହିତ ସେ ସହମତ ପ୍ରକାଶ କରିଥିଲେ । ତେଣୁ ବିଜୁ ପଟ୍ଟନାୟକଙ୍କୁ କହିଲି ''ତୁମେ ଯଦି ଉପର ଦେଖାଣିଆ ସଲାକୁସ୍ତି କରୁଛ, ତେବେ ମୋତେ ଅଯଥା ହଇରାଣ କରିବାର କାରଣ କ'ଣ ? ମୁଁ କିନ୍ତୁ ଡରିଯିବା ବ୍ୟକ୍ତି ନୁହେଁ ଯେଉଁକିଭାବେ ହେଉ ବିଧାନସଭା ଚଳାଇ ପ୍ରସ୍ତାବିତ ସମସ୍ତ କାର୍ଯ୍ୟ ଶେଷ ନିଶ୍ଚୟ କରିବି, ତୁମେ ତୁମର ଆଭିମୁଖ୍ୟ ନ ବଦଳାଇଲେ ନିନ୍ଦିତ ହେବ'' ।

ଏହାପରେ ସେ (ବିଜୁ ପଟ୍ଟନାୟକ) ଫେରିଯାଇ ରାତ୍ରିରେ ମୋତେ ଫୋନ୍‌କରି ଜଣାଇଲେ ଯେ, ସେ ମୋ ଉପଦେଶ ଗ୍ରହଣ କରି ପରଦିନଠାରୁ ବିଧାସଭାରେ ଆଉ ଗଣ୍ଡଗୋଳ କରିବେ ନାହିଁ । କେବଳ ତାଙ୍କୁ ସେ ଦିନ ଆଉଥରେ ମୁଁ ପ୍ରଥମେ ବିଧାନସଭାର ଶାନ୍ତିପୂର୍ଣ୍ଣ ପରିଚାଳନରେ ସହଯୋଗ କରିବାକୁ ନିବେଦନ କରିବି । ତହିଁପରଦିନ ମୁଁ ପ୍ରଥମେ ଯେଉଁମାନେ ବିଧାନସଭାରେ ଅଶୋଭନୀୟ ଆଚରଣ ପ୍ରଦର୍ଶନ କରିଥିଲେ, ସେଥିପାଇଁ କ୍ଷୋଭ ପ୍ରକାଶ କରିବା ସଙ୍ଗେ ସେଙ୍ଗେ ସେମାନଙ୍କୁ କ୍ଷମା ଦେଇଥିଲି ଓ ବିଶେଷ କରି ବିଧାନସଭାର ବିଜ୍ଞବିଧାୟକ ବୋଲାଉଥିବା ଶ୍ରୀ ପ୍ରସନ୍ନ କୁମାର ପାଟଶାଣୀ ଯେ କି ଅଧ୍ୟକ୍ଷକଙ୍କ ଆସନରେ ଉକ୍ତ ଗଣ୍ଡଗୋଳ ବେଳେ ଉପାଧ୍ୟକ୍ଷ ନ ଥିବା ସମୟରେ ନିଜେବସି ବିଧାନସଭା

ପରିଚାଳନାର ଅଭିନୟ କରୁଥିଲେ । ତାଙ୍କୁ ମଧ୍ୟ= ତାଙ୍କ ଅଜ୍ଞତା ପାଇଁ କ୍ଷମାଦେଇ ପଛକଥା। ଉଭୟ ସରକାରୀ ଓ ବିରୋଧୀ ଦଳର ସଭ୍ୟମାନେ ଭୁଲିଯାଇ ଲୋକସ୍ୱାର୍ଥକୁ ଆଖିଆଗରେ ରଖି ବିଧାନସଭା ପରିଚାଳନାରେ ଅଧକ୍ଷଙ୍କୁ ସହଯୋଗ କରିବାକୁ ଉଭୟ ସରକାରୀ ଓ ବିରୋଧୀ ଦଳଙ୍କୁ ଅନୁରୋଧ କଲି । ସେହିଠାରୁ ବିଧାନସଭାରେ ସେପରି ଆଉ ବିଶେଷ ଗଣ୍ଡଗୋଳ ହେଲାନାହିଁ, କିନ୍ତୁ ମୁଖ୍ୟମନ୍ତ୍ରୀଙ୍କୁ ବିରୋଧୀ ଦଳ (ଜନତାଦଳ) ବରାବର ବିରୋଧ କରି ତାଙ୍କଠାରୁ କିଛି ଶୁଣିଲେ ନାହିଁ କି ତାଙ୍କ ନାମରେ ପଚରା ଯାଇଥିବା ପ୍ରଶ୍ନଗୁଡିକ ସେମାନେ ବିଧାନସଭାରେ ପଚାରିବାକୁ ମନା କରିଦେଲେ । ଏପରିକି ଅନ୍ୟର ପ୍ରଶ୍ନରେ ମଧ ଆନୁସଙ୍ଗିକ ପ୍ରଶ୍ନ ପଚାରିଲେ ନାହିଁ । ଅତି ଅଶାନ୍ତ ବାତାବରଣ ମଧରେ ଆରମ୍ଭ ହୋଇଥିବା ବିଧାନସଭାର ବୈଠକ ଶେଷ ବେଳକୁ ଏକ ଶାନ୍ତିପୂର୍ଣ୍ଣ ବାତାବରଣ ମଧରେ ସେପ୍ଟେମ୍ବର ୧୨ ତାରିଖରେ ଶେଷ ହେଲା । ବିରୋଧୀଦଳର ଯେଉଁ ସଭ୍ୟମାନେ ଏହି ଅଶାନ୍ତ ବାତାବରଣରୁ ରାଜନୈତିକ ଫାଇଦା ଉଠାଇବାକୁ ଏବଂ ଚାହୁଥିଲେ ସେମାନଙ୍କର ଅନ୍ତର୍ନିହିତ ଉଦ୍ଦେଶ୍ୟ ଥିଲା ମୁଁ ତାଙ୍କୁ ଗୃହରୁ ବହିଷ୍କାର କଲେ ସେମାନେ ମୁଖ୍ୟମନ୍ତ୍ରୀଙ୍କ ଭ୍ରଷ୍ଟାଚାର ବିରୁଦ୍ଧରେ ଲଢି ନିଜ ବୀରତ୍ୱ ଦେଖାଇବାର ପ୍ରୟାସ କରିଥାଆନ୍ତେ, ମାତ୍ର ତାହା କରିବାକୁ ଦିଆଗଲା ନାହିଁ । ସେହିପରି ଅନ୍ୟପକ୍ଷରେ ମୁଖ୍ୟମନ୍ତ୍ରୀ ବିରୋଧୀ ଦଳର ସଭ୍ୟମାନଙ୍କୁ ଗୃହରୁ ବହିଷ୍କାର କରି ଅତି ସୁରୁଖୁରୁରେ ବିଧାନସଭାର ସମ୍ମୁଖୀନ ହେବାର ଯେଉଁ ଆଶା ପୋଷଣ କରିଥିଲେ ତାହା ମଧ ପରିପୂର୍ଣ୍ଣ ହୋଇ ପାରିଲା ନାହିଁ । ଶାନ୍ତି ପୂର୍ଣ୍ଣ ବାତାବରଣରେ ବିଧାନସଭାର କ୍ଷୁଦ୍ର ଅଧିବେଶସନଟି ସମାପ୍ତ ହେଲା । ଶେଷ ବେଳକୁ ସମସ୍ତ ବିଧାନସଭା ସଭ୍ୟଙ୍କ ଉପସ୍ଥିତିରେ ମୁଁ ବିଧାନସଭା ଅନିର୍ଦ୍ଦିଷ୍ଟ କାଳ ମୁଲତବି ରଖିବାର ଘୋଷଣା କରିବାପୂର୍ବରୁ ସମସ୍ତ ସରକାରୀ ଓ ବେସରକାରୀ ସଭ୍ୟତଥା ମୁଖ୍ୟମନ୍ତ୍ରୀ ଓ ବିରୋଧିଦଳର ନେତାଙ୍କୁ ମୋ ସହିତ ବିଧାନସଭା ପରିଚାଳନାରେ ସହଯୋଗ ପାଇଁ କୃତଜ୍ଞତା ଜ୍ଞାପନ କଲାମାତ୍ରେ ସମସ୍ତେ ମୋର ଧୈର୍ଯ୍ୟ ଓ ସହନଶୀଳତା ପାଇଁ ବହୁ ପ୍ରଶଂସା କରିଥିଲେ । ସ୍ୱାଧୀନ ସଭ୍ୟ ଶ୍ରୀ ପ୍ରସନ୍ନ କୁମାର ପାଟଶାଣୀ ମୋର ଉଦାର ମନୋଭାବ ଓ କ୍ଷମାଶୀଳ ଗୁଣପାଇଁ ମଧ ପ୍ରଶଂସା କରିଥିଲେ । ସେ କହିଥିଲେ ଯେ ସେ ଅଧକ୍ଷଙ୍କ ଆସନ ଅଧିକାର କରିଥିବା ଅପରାଧରେ ତାଙ୍କୁ ଗୃହରୁ ବହିଷ୍କାର କରିବାର ପ୍ରସ୍ତାବ କରିବାକୁ ସରକାରୀ ଦଳଯିବା ପୂର୍ବରୁ ମୁଁ ତାଙ୍କୁ କ୍ଷମା ଦେଇଥିବାରୁ ସେ ମୋ କାର୍ଯ୍ୟର ମହାନୁଭବତା ପାଇଁ ଉଚ୍ଚ ପ୍ରଶଂସା କରିଥିଲେ । ଅନ୍ୟଏକ ସ୍ୱାଧୀନ ସଭ୍ୟ ଶ୍ରୀ ତ୍ରିଲୋଚନ କାନୁନଗୋ ମୋର ପ୍ରଶଂସା କରିବାରେ ସମସ୍ତଙ୍କୁ ଟପିଯାଇ ମୋର ଆଦର୍ଶରେ ଚିରଦିନ ଅନୁପ୍ରାଣିତ ହେବାର ଘୋଷଣା କରିଥିଲେ । ଏହା ପରେ ମୁଁ ସଭ୍ୟମାନଙ୍କର ମଙ୍ଗଳ କାମନା କରି ବିଧାନସଭାକୁ ଅନିର୍ଦ୍ଦିଷ୍ଟ କାଳପାଇଁ ମୁଲତବି ରଖିଥିଲି ।

## ମୋର ଆଖିଦୁଇଟିର ଅପରେସନ

ମୋଜୀବନରେ ପ୍ରଥମରୁ କୌଣସି ରୋଗ ଏବଂ ଏପରିକି ବିଶେଷ ଜ୍ୱର ମଧ ହେଉ ନ ଥିଲା । ରାଜନୈତିକ କାର୍ଯ୍ୟରେ ସଂପୂର୍ଣ୍ଣଭାବେ ନିଜକୁ ନନିୟୋଜିତ କରି ଖାଦ୍ୟ ଓ ଶୟନ ପ୍ରଭୃତି ସମସ୍ତ କ୍ଷେତ୍ରରେ ଅନିୟମିତତା ଅବଲମ୍ବନ କରିଥିଲେ ହେଁ ବରାବର ସଂପୂର୍ଣ୍ଣ ନିରୋଗ ଥିଲି । କିନ୍ତୁ ବିଧାତାର ବିଡମ୍ବନାରୁ ପ୍ରଥମ ୧୯୮୧ ବର୍ଷ ଶେଷବେଳକୁ ରକ୍ତଚାପ ଯୋଗୁଁ ପ୍ରଥମେ ପାରାଲିସିସ୍ ରୋଗରେ ପଡିଲି । ଅବଶ୍ୟ ଭଗବାନଙ୍କ କୃପାରୁ ସେଥିରୁ ଭଲ ହୋଇ ବିଧାନସଭାର ଅଧକ୍ଷ ପଦକୁ ନିର୍ବାଚିତ ହେଲି । ମାତ୍ର ଦୁଇଆଖିରେ ମୋତିଆ ବିନ୍ଦୁ ଜନ୍ମିବାରୁ ମୋତେ ଅନେକ ସମୟରେ ପଢିବାରେ ଅସୁବିଧା ଘଟିଲା । ଏପରିକି ଅଧକ୍ଷ ଥିବାରୁ ଅନେକ ସମୟ ମୋତେ ବିଭିନ୍ନ ବିଷୟରେ ଗୁରୁତ୍ୱପୂର୍ଣ୍ଣ ନିଷ୍ପତ୍ତି ଦେବାକୁ ପଡୁଥିବାରୁ ସେଥିରେ ମୋତେ ବିଶେଷ ଅସୁବିଧାର ସମ୍ମୁଖୀନ ହେବାକୁ ପଡିଲା । ମୁଁ ବିଧାନସଭା ଅଧକ୍ଷ ଆସନରେ ବସିଥିଲି ଉକ୍ତ ନିଷ୍ପତ୍ତି ଅନ୍ୟକେହି ପଢିପାରିବେ ନାହିଁ । ମୋ ଆଖିର ମୋତିଆବିନ୍ଦୁ ପୋଖତା ହୋଇ ନ ଥିବାରୁ ମୋତେ ଅଧିକ ଦୁଇବର୍ଷ ଅପେକ୍ଷା କଲାପରେ କରାଯାଇପାରେ ବୋଲି ଏଠାକାର ଡାକ୍ତରମାନେ ପରାମର୍ଶ



୧୯୮୦ରେ ୨୬ତମ ରଜ୍ୟ ଗୋଷ୍ଠୀ ସଂସଦୀୟ ବୈଠକରେ ଯୋଗଦେବାକୁ ଯାଉଥିବା ଭରତୀୟ ପ୍ରତିନିଧି ଦଳଙ୍କ ସହ

ଦେବାରୁ ମୁଁ ଦୀଲ୍ଲୀର ଜଣେ ଖ୍ୟାତନାମା ଓଡ଼ିଆ ଚକ୍ଷୁ ଡ଼ାକ୍ତର ଶ୍ରୀ ବିଜୟାନନ୍ଦ ପଟ୍ଟନାୟକଙ୍କୁ ଦେଖାଇଲି । ଏବେ ଉନ୍ନତ ଚିକିତ୍ସା ପ୍ରଣାଳୀରେ ମଧ ଚିକିତ୍ସା କରି ହେବ ଓ ସେ ପୋଖତ ନ ହୋଇ ଥିଲେ ମଧ ନିଜେ ଚିକିତ୍ସା କରିବାର ପ୍ରତିଶ୍ରୁତି ଦେଲେ । ତେଣୁ ଜାନୁଆରୀ ମାସରେ ବିଧାନସଭା ଆରମ୍ଭ ହୋଇ ମାର୍ଚ୍ଚ ମାସ ପର୍ଯ୍ୟନ୍ତ ମୁଲତବି ରହିବାରୁ ମୁଁ ଫେବୃୟାରୀ ମାସରେ ଦିଲ୍ଲୀଗଲି । ମୋ ସହିତ ମୋର ସ୍ତ୍ରୀ ଏବଂ ମୋର ବ୍ୟକ୍ତିଗତ ସଚିବ ପ୍ରଭୃତି ଗଲେ । ସେଠାରେ ଡାକ୍ତର ପଟ୍ଟନାୟକ ମୋର ଗୋଟିଏ ଆଖି ପ୍ରଥମେ ଅସ୍ତ୍ରୋପଚାର କଲେ । ଖୁବ ଭଲ ହେଲା ଏବଂ ସେଥିପାଇଁ ତାଙ୍କ ଘରୋଇ ହାସପାତାଲରେ ମୁଁ ପ୍ରାୟ ୯ଦିନ ରହିଲି । ତତ୍ପରେ ସେଠାରୁ ଫେରିଆସିଲି । ମୋତେ କେବଳ ଗୋଟିଏ ଆଖିରେ ଦେଖିବାକୁ ଓ ପଢିବାକୁ ଦିଆଯାଇଥାଏ । ଅନ୍ୟ ଆଖିଟି ପାଇଁ ମୋତେ ଆଉ ଦୁଇ ମାସ ଅପେକ୍ଷା କରିବାକୁ କୁହାଗଲା । ତେଣୁ ଏପ୍ରିଲ ମାସ ପ୍ରଥମ ସପ୍ତାହରେ ବିଧାନସଭାର ବଜେଟ ଅଧିବେଶନ ସମାପ୍ତ ହେଲାପରେ ପୁଣି ମୁଁ ଦିଲ୍ଲୀଗଲି ଓ ପୂର୍ବପରି ଡ଼ାକ୍ତର ପଟ୍ଟନାୟକଙ୍କ ଘରୋଇ ହାସପାତାଳ ଦିଲ୍ଲୀର Greater Kailash ଠାରେ ଅନ୍ୟ ଆଖିଟିର operation କରାଇ ପୂର୍ବପରି ପ୍ରଥମେ ତାଙ୍କ ହାସପାତାଳରେ ଓ ପରେ ଓଡ଼ିଶାଭବନରେ ରହି ମେ ମାସ ଆରମ୍ଭକୁ ଫେରିଲି । ଏହା ଫଳରେ ମୁଁ ଏଣିକି ଶକ୍ତିଶାଳୀ ଚଷମା ଲଗାଇଥିବାରୁ ଭଲଭାବେ ପଢି ପାରିଲି ଓ ଚାଲି ପାରିଲି । ଦୂର ଓ ପାଖ ପଢ଼ିବା ପାଇଁ ଦୁଇଟି ଚଷମା ରଖିବାକୁ ପଡ଼ିଲା । ରକ୍ତଚାପ ପରେ ନିରୋଗ ଜୀବନରେ ଏହା ଦ୍ୱିତୀୟ ବାଧାରୂପେ ଜୀବନସାରା ରହିଲା ।

## ମୋର ତୃତୀୟ ବିଦେଶ ଯାତ୍ରା

ଏଥର ୧୯୮୬ରେ ରାଜ୍ୟଗୋଷ୍ଠୀ ପାର୍ଲାମେଣ୍ଟାରୀ ଆସୋସିଏସନ୍ (Common wealth Parliamentary association) ଲଣ୍ଡନଠାରେ ସେପ୍ଟେମ୍ବର ମାସ ୨୫ ତାରିଖରୁ ଅକ୍ଟୋବର ୨ ତାରିଖ ପର୍ଯ୍ୟନ୍ତ ହେବାର ସ୍ଥିର ହୋଇଥିଲା । ଅନ୍ୟ ଦୁଇଥର ଆମ ବିଧାନସଭାର ପୂର୍ବତନ ସେକ୍ରେଟାରୀ ମୋ ସାଙ୍ଗରେ ଯାଇଥିବାରୁ ମୋ ପକ୍ଷରେ କୌଣସି ଅସୁବିଧା ହୋଇ ନ ଥିଲା । ମୁଁ ପ୍ରତିନିଧି ଭାବେ ଓ ସେ ଦର୍ଶକ ଭାବେ ଯାଇଥିଲେ । କିନ୍ତୁ ଏଥରକ ଦର୍ଶକମାନଙ୍କ ଯିବାରେ କଟକଣା ଜାରି ହେଲା ଓ ଆମ ସେକ୍ରେଟାରୀଙ୍କୁ ଦର୍ଶକ ହିସାବରେ ଯିବାକୁ ଅନୁମତି ନ ମିଳିବାରୁ ମୋତେ ଏକୁଟିଆ ଯିବାକୁ ପଡ଼ିଥିଲା । ତେଣୁ ୨୨.୯.୮୬ ତାରିଖରେ ସନ୍ଧ୍ୟା ୭ଟା ବେଳକୁ ମୁଁ ଏକ Air India ଉଡ଼ାଜାହାଜରେ ଦିଲ୍ଲୀରୁ ବମ୍ବେ ଗଲି ଏବଂ ସେଦିନ ଆଉ ଲଣ୍ଡନକୁ ଯିବାପାଇଁ ଉଡ଼ଜାହାଜ Air India ର ନ ଥିବାରୁ ମୋତେ ମହାରାଜା ଲନ୍ (V.I.P. waiting room) କୁ ନେଇଗଲେ ରାତ୍ରି ୧୦ଟା ବେଳେ, ଏବଂ ସେହିଠାରେ ହିଁ ମୋତେ ତହିଁ ପରଦିନ ସକାଳ ପର୍ଯ୍ୟନ୍ତ ଅପେକ୍ଷା କରିବାକୁ ପଡ଼ିଲା । ମୁଁ ବଡ଼ ଏକୁଟିଆ ଅନୁଭବ କରୁଥାଏ ଓ ମୋତେ ପୁଣି ସେହିପରି ୭ ଘଣ୍ଟା ଅପେକ୍ଷା କରିବାକୁ ପଡ଼ିବ । ମୋତେ Air India ବାଲା ତାଙ୍କ ନିଜ ହୋଟେଲକୁ ଯିବାକୁ ଅନୁରୋଧ କରୁଥିଲେ । କିନ୍ତୁ ସେଠାରୁ ଭୋର ସକାଳୁ ଆସିବାରେ ଅସୁବିଧା ଘଟିପାରେ ବୋଲି ମୁଁ ରାଜି ହେଲିନାହିଁ । ଯାହାହେଉ ରାତି ଗୋଟାଏ ବେଳେ ହଠାତ୍ ସେହି କୋଠରୀରେ ପଶ୍ଚିମବଙ୍ଗର ବିଧାନସଭା ଅଧକ୍ଷ ଶ୍ରୀଯୁକ୍ତ ହାଲିମ୍ ତାଙ୍କ ସ୍ତ୍ରୀ ଓ ପଶ୍ଚିମବଙ୍ଗ ବିଧାନସଭାର ସେକ୍ରେଟାରୀ ଙ୍କୁ ଦେଖି ବିଶେଷ ଆନନ୍ଦିତ ହେଲି । ସେମାନେ ମଧ ଉକ୍ତ C.P.A. ସମ୍ମିଳନୀକୁ ଯାଉଥିଲେ । ସେତେବେଳକୁ ଭାରତର ପ୍ରତିନିଧିମାନେ ସମସ୍ତେ ପ୍ରାୟ ଚାଲି ଯାଇଥିଲେ । କାରଣ ଅନେକେ ଏହି ଯିବାବେଳେ ବିଭିନ୍ନ ଦେଶ ବୁଲିକରି ଯାଆନ୍ତି । ମୁଁ ମଧ ପୂର୍ବ ଦୁଇଥର ସେକ୍ରେଟାରୀ ମୋ ସାଙ୍ଗରେ ଥିବାରୁ ବିଭିନ୍ନ ଦେଶ ବୁଲି କରି ଯାଇଥିଲି । ଏଥର ଏକା ହେବାରୁ ଅନ୍ୟ କୌଣସି ଦେଶକୁ ନ ଯାଇ ସିଧା ଲଣ୍ଡନ ଗଲି । ଏଥରକୁ ଲଗାଇ ଲଣ୍ଡନକୁ ଯିବା ମୋର ଦ୍ୱିତୀୟ ଥର । ଏଥି ପୂର୍ବରୁ ୧୯୮୪ C.P.A. conference ବ୍ରିଟେନ ନିକଟସ୍ଥ Isle of man (ମାନଦ୍ୱୀପ) କୁ ଯାଇ ସେଠାରୁ ଫେରିଲା ବେଳେ ଲଣ୍ଡନରେ ପ୍ରାୟ ୪ଦିନ ଥିଲି । ରାତ୍ରି ଯାପନ ପରେ ତହିଁ ପରଦିନ ସକାଳ ଭାରତୀୟ ସମୟ ପ୍ରାୟ ଛଅଟା ବେଳେ ଆମ ଉଡ଼ାଜାହାଜ ଲଣ୍ଡନ ଅଭିମୁଖେ ପ୍ରାୟ ୨୫୦/୩୦୦ ଜଣ ଯାତ୍ରୀଙ୍କୁ ନେଇ ଯାତ୍ରା କଲା । ବମ୍ବେଠାରେ

ସକାଳ ହୋଇଥିଲେ ହେଁ ଯେତେ ଯେତେ ଭାରତରୁ ଦୂରକୁ ଆମେ ଆକାଶ ମାର୍ଗରେ ଯାଇଥାଉଁ । ରାତ୍ରୀର ଅନ୍ଧାରକ୍ରମେ ବଢୁଥାଏ । ପ୍ରାୟ ଦୁଇଘଣ୍ଟା ଆକାଶ ମାର୍ଗରେ ଗଲାପରେ ଆନ୍ତର୍ଜାତିକ ଉଡ଼ାଜାହାଜ ଘାଟି ଦୁବାଇଠାରେ ପହଞ୍ଚିଲୁ ଏବଂ ସେଠାରେ ଜାହାଜଟି ଏକ ଘଣ୍ଟା ରହିଲା । ରାତ୍ରି ଯାକ ଅନିଦ୍ରା ଥିବାରୁ ମୁଁ ପ୍ରଥମେ ଟିକିଏ ଶୋଇ ପଡ଼ିଥିଲି । ଦୁବାଇଠାରେ ଉଠି ବାଥ୍‌ରୁମକୁ ଯାଇ ଧୋଇ ଧୁଆ ହୋଇ ଆସିଲି । ତତ୍‌ପରେ ପୁଣି ଉଡ଼ାଜାହାଜ ଚାଲିଲା ଏବଂ ବାଟ ଯାକ ଉଡ଼ାଜାହାଜର ମହିଳା କର୍ମଚାରୀମାନେ ଆମକୁ ବିଭିନ୍ନ ଜିନିଷ ଖାଇବାକୁ ଓ ପିଇବାକୁ ଦେଉଥାନ୍ତି । ମୁଁ ନିରାମିଷାଶୀ ଥିବାରୁ ଓ ମଦ ପିଉ ନ ଥିବାରୁ ମୋତେ ବିଭିନ୍ନ ଫଳରସ ଓ ନିରାମିଷ ଖାଦ୍ୟ ସହିତ ଦେଉଥାନ୍ତି । ବାଟରେ ଆମକୁ ପ୍ରାତଃ ଭୋଜନ ଓ ମଧ୍ୟାହ୍ନ ଭୋଜନ ଦିଆଗଲା । ପ୍ରାୟ ୧୦ଘଣ୍ଟା ପରେ ଆମ ଭାରତୀୟ ଘଡ଼ିରେ ସାଢ଼େ ୪ଟା ବେଳେ (ଅପରାହ୍ନ) (ବିଲାତରେ ସମୟ ୧୨ଟା) ସମୟରେ ଲଣ୍ଡନ ଉଡ଼ାଜାହାଜ ଷ୍ଟେସନରେ ପହଞ୍ଚିଲୁ । ଏହା ପୃଥିବୀର ପ୍ରାୟ ସର୍ବବୃହତ ଉଡ଼ାଜାହାଜ ଷ୍ଟେସନ । ଏଠାରେ ଦୈନିକ ଶହ ଶହ ଉଡ଼ାଜାହାଜ ଓହ୍ଲାଏ ଓ ଉଠେ । ସେଠା ଷ୍ଟେସନରେ C.P.A ତରଫରୁ ଆମକୁ ସ୍ଥାନୀୟ ଶାଖା ସ୍ୱାଗତ ଜଣାଇ ଏକ ବସ୍‌ରେ ପୃଥିବୀର ବିଭିନ୍ନ ଦେଶରୁ ଆସିଥିବା ପ୍ରତିନିଧିଙ୍କୁ ଲଣ୍ଡନ ସହରର ଆନ୍ତର୍ଜାତିକ Grosvenor Hotel କୁ ନେଇଗଲେ । ସେଠାରେ ଆମର ନାମ ରେଜିଷ୍ଟାରରେ ଲେଖାଗଲା ପରେ ପ୍ରତ୍ୟେକଙ୍କୁ ତାଙ୍କର କୋଠରୀର ଚାବିକାଠି ଓ ଗୋଟିଏ ବ୍ୟାଗ ଦେଲେ । ସେଥିରେ ସମ୍ମିଳନୀ ସଂକ୍ରାନ୍ତୀୟ ଆବଶ୍ୟକୀୟ କାଗଜ ପତ୍ର ମାନ ଥିଲା । ମୋତେ ୨୫ ନମ୍ବର କୋଠରୀକୁ ନିଆଗଲା । ସେଠାରେ ମୁଁ ରହିଲି, ଅନେକ ଭାରତୀୟ ପ୍ରତିନିଧି ସେହି ମହଲାରେ ମଧ ରହିଲେ । ମୋର ସମ୍ମୁଖସ୍ଥ କୋଠରୀରେ ପଶ୍ଚିମବଙ୍ଗ ବିଧାନସଭାର ଅଧକ୍ଷ ରହୁଥିଲେ ସେଦିନ ରାତିରେ ଆମକୁ (ସମସ୍ତ ଉପସ୍ଥିତ C.P.A. ର ପ୍ରତିନିଧି ମାନେ) Inter continental ନାମକ ଅନ୍ୟ ଏକ ହୋଟେଲକୁ ନେଲେ ଓ ସେଠାରେ ସମସ୍ତଙ୍କୁ ସମ୍ବର୍ଦ୍ଧନା ଦିଆଗଲା ଓ ରାତ୍ରିଭୋଜନ ମଧ ହେବାପରେ ନିଜ ହୋଟେଲକୁ ଫେରି ଅବସ୍ଥାନ କଲୁଁ ।

## ସମ୍ମିଳନୀ ଆରମ୍ଭ

ତହିଁ ପରଦିନ ପ୍ରାତଃ କୃତ୍ୟ ଓ ପ୍ରାତଃ ଭୋଜନ ପରେ ପ୍ରାୟ ୧୦ଟା ବେଳକୁ West minister (ବ୍ରିଟେନରେ ପାର୍ଲାମେଣ୍ଟ ଘର)ର Elizabeeth Hall କୁ ଆମକୁ ନିଆଗଲା । ସେଠାରେ ବିଲାତର House of Commons od Speaker ଙ୍କର ସଭାପତିତ୍ୱରେ ସମ୍ମିଳନୀ ଆରମ୍ଭ ହେଲା । ସେଠାକାର C.P.A. ଶାଖା ତରଫରୁ ସ୍ୱାଗତ ଭାଷଣ ପରେ ସମ୍ମିଳନୀ ତହିଁ କରଦିନକୁ ମୁଲତବୀ ରହିଲା । ଦିନ ୧୨ଟା ବେଳେ ଉପସ୍ଥିତ ସମ୍ମିଳନୀର ପ୍ରତିନିଧି ଦର୍ଶକ ଓ ଅନ୍ୟମାନଙ୍କ ଏକ ମିଳିତ (Group) ଫଟୋ ନିଆଗଲା ତତ୍‌ପରେ ଉକ୍ତ Westminister of House of commons ଓ House of Lords ମାନେ ବସୁଥିବା ଗୃହକୁ ଗଲୁଁ । ଯିବା ବାଟରେ ଆମକୁ ବିଭିନ୍ନ ସ୍ଥାନ ଓ କୋଠରୀର ଇତିହାସ ଓ ବିବରଣୀ ବୁଝାଯାଉଥିଲା । ନିଜେ House of Commons ର speaker ମଧ ଆମ ସଙ୍ଗେ ଥିଲେ ।(କାନ୍ଥ ମାନଙ୍କରେ ସେନ ସହିତ ବିଖ୍ୟାତ ଓ୍ୱାଟରଲୁ ଯୁଦ୍ଧର ତୈଳଚିତ୍ରମାନ ରଖାଯାଇଥାଏ । ଏହି ଗୃହଟି ଖ୍ରୀ: ୧୪୦୦ ଶତାବ୍ଦୀରେ ପାର୍ଲାମେଣ୍ଟପାଇଁ ବ୍ରୀଟେନର ରାଜା ଦାନ ଦେଇଥିଲେ ।) ଏବଂ ସେହି ଦିନଠାରୁ ଦୁଇଗୃହ (uppor House and lower House) ସେଠାରେ ବସିଆସୁଅଛି । ବ୍ରିଟୀଶ ଜାତି ବଡ଼ ରକ୍ଷଣଶୀଳ । ସେମାନେ କ୍ଷମତା ନଥାଇ ରାଜାଙ୍କୁ ଯେପରି ରଖି ଆସିଛନ୍ତି, ଏହି ଗୃହକୁ ମଧ କିଛି ପରିବର୍ତ୍ତନ ନ କରି ଠିକ୍ ସେହିପରି ଛଅଶହ ବର୍ଷ ହେଲା ସଂରକ୍ଷଣ କରି ଆସିଛନ୍ତି । House of Commons ରେ ସର୍ବମୋଟ ୩୫୦ଟି ବସିବା ସ୍ଥାନ ମାତ୍ର ସଭ୍ୟ ସଂଖ୍ୟା ଛଅଶହ ହେଲାଣି । ସରକାରୀ ଦଳ ଓ ବିରୋଧୀ ଦଳର ଆସନ ମଧରେ ବ୍ୟବଧାନ ସେପରି ଆମଭଳି ଅଧିକ ନୁହେଁ । ମାତ୍ର ପ୍ରାୟ ୮/୧୦ ଫୁଟ ହେବ । ଚାରିପାଖ ଏକ ଲାଲରଙ୍ଗର ସୀମା ଚିହ୍ନ ଦିଆଯାଇଛି । କୌଣସି ସଭ୍ୟ ଆଲୋଚନା ବେଳେ ଯେତେ ଉତ୍ୟକ୍ତ ହେଲେ

ମଧ ଉକ୍ତ ଲାଲରଙ୍ଗର ସୀମାରେଖାକୁ ଅତିକ୍ରମ କରି ଗୃହର ମଧ ଭାଗକୁ (well) କେବେ ଆସି ନ ଥିବାର ତାଙ୍କ ଅଧ୍ୟକ୍ଷ ଆମକୁ କହିଲେ । ଏହା ଶୁଣି ମୋର ଆମ ବିଧାନସଭା ସଭ୍ୟଙ୍କ ଆଚରଣ ଓ ଗୋଟିଏ ଅଧିବେଶନ ତଥା ଏକ ଦିନକ ମଧରେ କିଭଳି ଉତ୍ତେଜନା ସୃଷ୍ଟି ଅକାରଣରେ କରି ବାରମ୍ବାର ଗୃହ ମଧ ଭାଗକୁ ଆସି ପାଟିତୁଣ୍ଡ ଓ ସ୍ଲୋଗାନମାନ ଦିଅନ୍ତି ଏବଂ ରିପୋର୍ଟରଙ୍କ କାଗଜ ଛଡ଼ାଇ ନେଇ ଟେବୁଲ ଉପରେ ଶୋଇ ଗୋଡ଼ ହାତ ହଲାଇ ସମସ୍ତ ପାର୍ଲାମେଣ୍ଟାରୀ ଶିଷ୍ଟାଚାର, ସୌଜନ୍ୟ ଓ ଶୃଙ୍ଖଳାକୁ ଭଙ୍ଗ କରିବାରେ ଲଜ୍ଜିତ ହୁଅନ୍ତି ନାହିଁ, ବରଂ ଗର୍ବ ଅନୁଭବ କରନ୍ତି । ସବୁଠାରୁ ଅଧିକ ଦୁଃଖ ଦାୟକ ଯେ, ଭାରତୀୟ ଖବର କାଗଜ ଗୁଡ଼ିକ ଏହାର ନିନ୍ଦା କରନ୍ତି ନାହିଁ ବରଂ ଯେଉଁ ଖବର କାଗଜ ଗୁଡ଼ିକ ସରକାରଙ୍କ ବିରୋଧୀ ସେମାନେ ଏହି ବିଶୃଙ୍ଖଳା ଓ ଉଚ୍ଛୃଙ୍ଖଳତାକୁ ପ୍ରୋତ୍ସାହନ ଯୋଗାଇ ବାରେ ପଛାନ୍ତି ନାହିଁ । ସଂସଦୀୟ ଗଣତନ୍ତ୍ର (Parliammentary Democracy) ପଦ୍ଧତିରେ ବ୍ରିଟେନ ସବୁଠାରୁ ପୁରୁଣା । ତାହା ଗତ ଛଅଶହ ବର୍ଷ ମଧରେ ବହୁ ଉତ୍‌ଥାନ ଓ ପତନ ମଧରେ କ୍ରମ ବର୍ଦ୍ଧମାନ ନୀତିରେ ବର୍ତ୍ତମାନର ଅବସ୍ଥାନକୁ ଆସିଛି । ଯଦିଓ ତାଙ୍କର ସେପରି ଲିଖିତ ସମ୍ବିଧାନ ନାହିଁ । କେବଳ ପରମ୍ପରା ହିଁ ସେମାନଙ୍କ ପଥ ପ୍ରଦର୍ଶକ । ଆମେ ବ୍ରିଟିଶ ଶାସନାଧୀନ ଥିବା ଯୋଗୁଁ ସ୍ୱାଧୀନତା ପରେ ଆମ ସଂବିଧାନ ପ୍ରଣୟନ ବ୍ରିଟିଶ ପରମ୍ପରାକୁ ବିଚାରକୁ ନେଇ କରାଯାଇଛି । କିନ୍ତୁ ତାଙ୍କର ଚରିତ୍ର ଓ ମାନବିକ ମୂଲ୍ୟ ବୋଧ ଗଣତନ୍ତ୍ରରେ ଯେଉଁ ଉଚ୍ଚସ୍ଥାନ ରହିଛି, ସେଥିରୁ ଆମେ କିଛି ଶିକ୍ଷା କଲୁ ନାହିଁ । ଗଣତନ୍ତ୍ରର ଯେଉଁ ମୌଳିକ ନୀତି, ସହନଶୀଳତା ଓ ଅନ୍ୟର ମତ ପ୍ରତି ସମ୍ମାନ ଦେବା ଭାରତୀୟ ସଂସ୍କୃତି ଓ ପରମ୍ପରା ରୂପେ ବହୁ ପୁରାଣ ଯୁଗରୁ ଏକ ମହନୀୟ ଆଦର୍ଶ ରୂପେ ସମଗ୍ର ମାନବ ଜାତିକୁ ଶିକ୍ଷା ଦେଇ ଆସୁଥିଲେ ହେଁ, ଆମେ ତର୍ହିଁର ଯଥାର୍ଥ ଦାୟାଦ ହେବାକୁ ଉପଯୁକ୍ତ ନ ହେବା ଅତ୍ୟନ୍ତ କ୍ଷୋଭ ଓ ପରିତାପର ବିଷୟ । ଯଦିଓ ଗତ ଆଠଥର ସାଧାରଣ ନିର୍ବାଚନ ଏ ଦେଶରେ ହୋଇ ଗଣତନ୍ତ୍ର ପଦ୍ଧତି ଦେଶରେ ଯଥେଷ୍ଟ ଜନପ୍ରିୟତା ଅର୍ଜନ କରିପାରିଛି । ତଥାପି ଲୋକ ପ୍ରତିନିଧି ମାନଙ୍କ ଦ୍ୱାରା ବହୁ ସମୟରେ ବିଧାନସଭା ଓ ପାର୍ଲାମେଣ୍ଟରେ ଯେଉଁଭଳି ଅସଭ୍ୟ ଆଚରଣ ପ୍ରଦର୍ଶିତ ହେଉଛି ସେଥିରେ ଜନମାନସରେ ଗଣତନ୍ତ୍ର ପ୍ରତି ଆସ୍ଥା ହରାଇବାର ସମ୍ଭାବନା ରହିଛି । ଏଭଳି ଅବସ୍ଥା ନ ଆସୁ ଏବଂ ଲୋକ ପ୍ରତିନିଧିଙ୍କ ଆଚରଣ ବିଧାନ ସଭା ଭିତରେ ଓ ବାହାରେ ସମ୍ମାନ ଓ ଆସ୍ଥାଜନକ ହେଉ - ଏହାହିଁ କାମନା ।

## ସମ୍ମିଳନୀରେ ଆଲୋଚନା

ସେପ୍ଟେମ୍ବର ୨୬ ତାରିଖ ଦିନ ପ୍ରଥମ ଆଲୋଚ୍ୟ ବିଷୟ ଥିଲା " How to check Terrorism." ଅର୍ଥାତ୍ ''ଆତଙ୍କ ବାଦ କିପରି ବନ୍ଦ କରାଯିବ । ବିଷୟଟି ଉପରେ ଆଲୋଚନା ଆରମ୍ଭ କରିଥିଲେ ଆମ ଭାରତୀୟ ଦଳର ନେତା ତଥା ଲୋକସଭା ଅଧ୍ୟକ୍ଷ ଡକ୍ଟର ବଳରାମ ଝାକର । ଏହା ଉପରେ ସେଦିନ ମୋଟ ୨୦ଜଣ ପ୍ରତିନିଧି ଆଲୋଚନାରେ ଭାଗ ନେଇଥିଲେ ଏବଂ ସେଥି ମଧରୁ ଭାରତୀୟ ପ୍ରତିନିଧି ଆଠଜଣ ଥିଲେ । ଉକ୍ତ ଆଠଜଣଙ୍କ ମଧରେ ମୁଁ ମଧ ଅନ୍ତର୍ଭୁକ୍ତ । ମୋର ଆଲୋଚନା ମାତ୍ର ୭/୮ ମିନିଟ୍ ହୋଇଥିଲେ ହେଁ ଏହା ବେଶ୍ ଉଲ୍ଲେଖନୀୟ ହୋଇଥିଲା । କାରଣ ସମସ୍ତେ ଆତଙ୍କ ବାଦକୁ କେବଳ ନିନ୍ଦା କରିବା ଓ ଦମନ କରିବା ଛଡ଼ା ଆଉକିଛି କହିନଥିଲେ । ମୁଁ ତାହା ରୋକାଯିବା ସଂପର୍କରେ ନିର୍ଦ୍ଦିଷ୍ଟ ପ୍ରସ୍ତାବ ଦେଇ କହିଥିଲି ଯେ ରାଜ୍ୟଗୋଷ୍ଠୀ ଦେଶମାନେ ଅନ୍ୟ ଦେଶକୁ ପଳାଇ ଆସିଥିବା ଆତଙ୍କବାଦୀଙ୍କୁ ନିଜ ଦେଶରେ ଆଶ୍ରୟ ନ ଦେଇ ଓ ସେଭଳି ବ୍ୟକ୍ତିଙ୍କୁ ତାଙ୍କ ଦେଶ ବା ଯେଉଁଠି ଅପରାଧ କରିଛି, ସେ ଦେଶ ହାତରେ ସମର୍ପଣ କରିବା ଦ୍ୱାରାହିଁ କେବଳ ଆତଙ୍କ ବାଦକୁ ରୋକାଯାଇ ପାରିବ । ସେଥିପାଇଁ ଦେଶ ଦେଶ ମଧରେ ଦ୍ୱୈତ ଚୁକ୍ତି (Bilateral Agrement) ହେବା ଉଚିତ୍ ବୋଲି କହିଥିଲି । ଅନ୍ୟ ଦିନ ମାନଙ୍କରେ ଅନ୍ୟାନ୍ୟ ବିଷୟମାନ ଥିଲା । ଉକ୍ତ ସମ୍ମିଳନୀ ମଧରେ ଗୋଟିଏ ଦିନ ବିଭିନ୍ନ ଦର୍ଶନୀୟ ସ୍ଥାନ ପରିଦର୍ଶନ କରିବାର କାର୍ଯ୍ୟକ୍ରମ ଥିଲା । ସେଥିପାଇଁ ପ୍ରତିନିଧି ମାନଙ୍କୁ ବିଭିନ୍ନ ଦଳରେ ବିଭକ୍ତ କରି ସେମାନେ ଚାହୁଁଥିବା ସ୍ଥାନ ମାନଙ୍କୁ ନିଆଯାଇଥିଲା ।

# ମୋର Oxford university ପରିଦର୍ଶନ

Bucking hum palace, ସେଠାରେ ସୁନ୍ଦର ଫୁଲ ବଗିଚା, ପୁଷ୍କରିଣୀ, କୃତ୍ରିମ ଝରଣା, ସବୁଜ କୋମଳ ଘାସର ପଡ଼ିଆ, ଦର୍ଶକ ମାନଙ୍କୁ ଆକର୍ଷଣ ପାଇଁ ଅତି ସୁନ୍ଦରଭାବେ ସଂରକ୍ଷଣ କରାଯାଇଛି । ଏହି ବିରାଟ ପ୍ରାସାଦକୁ ବ୍ରିଟେନର ପୂର୍ବତନ ପ୍ରଧାନମନ୍ତ୍ରୀ Winston Curchi ଜନସାଧାରଣଙ୍କ ଉଦ୍ଦେଶ୍ୟରେ ଦାନ କରି ଦେଇଥିଲେ । ଏବଂ ସେହିଦିନୁ ତାହା ସରକାରଙ୍କ ଦ୍ୱାରା ରକ୍ଷଣା ବେକ୍ଷଣା ହୋଇ ଆସୁଛି । ଏହାର ଆୟତନ ସାତ ଏକର । ଏହି ପ୍ରାସାଦଟି ୩୦୦ ବର୍ଷ ତଳେ ଅତି ସୁନ୍ଦର ଭାବେ ତିଆରି ହୋଇଥିଲେ ହେଁ ତାହା ବର୍ତ୍ତମାନ ଏକ ଦର୍ଶନୀୟ ସ୍ଥାନରୂପେ ରହିଛି । ଏହି ପ୍ରାସାଦ ମଧ୍ୟରେ ବହୁତ ସୁନ୍ଦର ଚିତ୍ର ଓ ପ୍ରସ୍ତର ମୂର୍ତ୍ତି ରହିଛି । ସେଠାରେ ସମସ୍ତ ପ୍ରତିନିଧି ମଧ୍ୟାହ୍ନ ଭୋଜନ ଶେଷକରି ଅକ୍ସଫୋର୍ଡ଼ ଅଭିମୁଖେ ଯାତ୍ରା କଲୁଁ । ଏବଂ ଅଳ୍ପ ସମୟପରେ ଅକ୍ସଫୋର୍ଡ଼ ସହରରେ ପହଞ୍ଚିଲୁ । ଆମ ବିଶ୍ୱବିଦ୍ୟାଳୟ ଗୁଡ଼ିକ ଏକ ସ୍ୱତନ୍ତ୍ର ସ୍ଥାନରେ ଅବସ୍ଥିତ ମାତ୍ର ଏଠାକାର ବିଶ୍ୱବିଦ୍ୟାଳୟ ଦୋକାନ ବଜାର ମଧ୍ୟରେ ଅବସ୍ଥାପିତ ହୋଇ ଥିବାର ଦେଖିଲି । ଏହି ବିଶ୍ୱବିଦ୍ୟାଳୟଟି ଶିକ୍ଷାଦାନ କ୍ଷେତ୍ରରେ, ପୃଥିବୀରେ ସର୍ବଶ୍ରେଷ୍ଠ । ୧୨୬୬ ମସିହାରେ ଏହି ବିଶ୍ୱବିଦ୍ୟାଳୟ ସ୍ଥାପନ କରାଯାଇଥିଲା । ଏବଂ ଏହାଠାରୁ ପ୍ରାୟ ୧୦୦ ବର୍ଷ ପରେ ବ୍ରିଟେନରେ ଅନ୍ୟ ଏକ Cambridge university ସ୍ଥାପିତ ହୋଇ ପୃଥିବୀର ଦୁଇଟି ଯାକ ବିଶ୍ୱବିଦ୍ୟାଳୟ ସୁପ୍ରସିଦ୍ଧ ହୋଇଛି । କଥାରେ କହନ୍ତି ଯେ, ଅକ୍ସଫୋର୍ଡ଼ ବା କେମ୍ବ୍ରିଜ ବିଶ୍ୱାବିଦ୍ୟାଳୟରେ ଯିଏ ନ ପଢ଼ିଚି, ପୃଥିବୀରେ ତାକୁ ବିଶେଷଜ୍ଞ ବା ଶିକ୍ଷାବିତ୍ କୁହାଯାଏ ନାହିଁ । ଆଜି ପର୍ଯ୍ୟନ୍ତ ପୃଥିବୀରେ ଯେତେ ସୁପ୍ରସିଦ୍ଧ ବୈଜ୍ଞାନିକ, ବିଶେଷଜ୍ଞ ଓ ଶିକ୍ଷାବିତ ଭାବରେ ପ୍ରତିଷ୍ଠା ଲାଭ କରିଛନ୍ତି, ସେମାନଙ୍କ ମଧ୍ୟରୁ ଅନେକ ଏହି ଦୁଇ ବିଶ୍ୱବିଦ୍ୟାଳୟର ନିଶ୍ଚିତ ରୂପେ ଛାତ୍ର ଥିଲେ । ଆମେ ପହଞ୍ଚିବା ମାତ୍ରେ ବିଶ୍ୱବିଦ୍ୟାଳୟର Master ଯେ'କି (Vice chancellor) ସେ ଆମକୁ ବୁଲାଇ ବିଶ୍ୱବିଦ୍ୟାଳୟର ବିଭିନ୍ନ ଜିନିଷ ଓ ବିଭାଗ ଦେଖାଇଲେ । ମୁଁ ଅତ୍ୟନ୍ତ ଆଶ୍ଚର୍ଯ୍ୟ ହେଲି ଯେ ବିଶ୍ୱବିଦ୍ୟାଳୟ ଏକ ସହରର ଦୋକାନ ବଜାର ମଧ୍ୟରେ ଥିଲେ ହେଁ ଭିତରେ ପରିବେଶ ଭିନ୍ନ । ପ୍ରତିଟି ଜିନିଷ ଅତି ସାଧାରଣ, ଆମ ଭାରତର ତଥା ଓଡ଼ିଶାର ପ୍ରତିଟି ଜିନିଷ ଯେପରି ଅତି ସୌଖିନ ଓ ମୂଲ୍ୟବାନ, ସେଠାରେ ତାହା ନାହିଁ । ଏଠା ଆମ ବିଶ୍ୱବିଦ୍ୟାଳୟ ଗୁଡ଼ିକ ଯେପରି ଆଡ଼ମ୍ବର ପୂର୍ଣ୍ଣ, ସେଠାରେ କିନ୍ତୁ ସମସ୍ତ ସରଳ ବିରାଟ ଲାଇବ୍ରେରୀ । ଉକ୍ତ Master କହିଲେ ବ୍ରୀଟେନରେ ଯେଉଁ ଐତିହାସିକ Gun powder plot ହୋଇଥିଲା, ସେତେବେଳର ପାର୍ଲ୍ୟାମେଣ୍ଟ ଭବନକୁ ଉଡ଼ାଇ ଦେବା ପାଇଁ ଯେଉଁ ଷଡ଼ଯନ୍ତ୍ରର ସୂତ୍ରପାତ ହୋଇଥିଲା, ତାହା ଅକ୍ସଫୋର୍ଡ଼ର ଜଣେ ବ୍ୟକ୍ତିଙ୍କ ଠାରୁ ଆରମ୍ଭ ହୋଇଥିଲା । ମୁଁ ସେଠାରୁ ଫେରିବାବେଳେ ବିଶ୍ୱବିଦ୍ୟାଳୟର Master ଙ୍କୁ ମୋ ମନରେ ଉପୁଜିଥିବା ଧାରଣା ପ୍ରକାଶ କରିଥିଲି । ଏବଂ ଏକ ବିଶେଷ ଗୁରୁତ୍ୱପୂର୍ଣ୍ଣ କଥା ତାଙ୍କଠାରୁ ଶୁଣିଲି ଯେ ସେଠାକାର affiliated ମହାବିଦ୍ୟାଳୟ ଗୁଡିକରେ କେବେ ହେଲେ ଛାତ୍ରମାନେ ଧର୍ମଘଟ କରିନାହାନ୍ତି କିମ୍ବା ସେପରି କେବେ ମଧ୍ୟ କୌଣସି ଛାତ୍ର ବିଶୃଙ୍ଖଳା ଦେଖାଯାଇନାହିଁ । ଶିକ୍ଷା ଏବଂ ଗବେଷଣାର ଏକ ଶାନ୍ତ ଓ ସୁସ୍ଥ ବାତାବରଣ ହିଁ ମୋତେ ମୁଗ୍ଧ କଲା । ଆମ ଦେଶର ଶିକ୍ଷାପଦ୍ଧତି ଓ ମହାବିଦ୍ୟାଳୟର ଅଧ୍ୟାପକ ମାନଙ୍କ କାର୍ଯ୍ୟକଳାପ ସହିତ ସେଠାକାର ସମସ୍ତ ବିଷୟ ସହିତ ତୁଳନା କଲେ କେବଳ ଲଜ୍ଜିତ ହେବାକୁ ପଡ଼ିବ । ସେଠାକାର ମହବିଦ୍ୟାଳୟର Master ଙ୍କ ସହ ଆମ ସମସ୍ତଙ୍କ (ଯାଇଥିବା ପ୍ରତିନିଧିଙ୍କର ଗୋଟିଏ ଗ୍ରୁପ ଫଟୋ ମଧ୍ୟ ଉଠାଇଲୁ । ଆମ ସଙ୍ଗେ ଫଟୋ ଗ୍ରାଫର୍ ମଧ୍ୟ ଯାଇଥାଏ । ଅନେକ ପ୍ରତିନିଧି ନିଜ ନିଜ ବ୍ୟକ୍ତିଗତ କ୍ୟାମେରାରେ ମଧ୍ୟ ବିଭିନ୍ନ ପ୍ରକାର ଫଟୋ ଉଠାଉଥାନ୍ତି । ଅପରାହ୍ନରେ Master ଙ୍କ ଅନୁରୋଧ କ୍ରମେ ସମସ୍ତେ ଉକ୍ତ ବିଶ୍ୱବିଦ୍ୟାଳୟରେ ଚା' ପାନ କରି, ଯାଇଥିବା ବସ୍‌ରେ ଲଣ୍ଡନ ସହରରୁ ଫେରି ନିଜ ନିଜ ହୋଟେଲକୁ ଆସିଲୁଁ । ସେଦିନ ରବିବାର ଥିବାରୁ ସମ୍ମିଳନୀ ବନ୍ଦଥିଲା । ତେଣୁ ପ୍ରତିନିଧି ମାନଙ୍କୁ ବିଭିନ୍ନ ଦଳରେ ବିଭକ୍ତ କରି ବିଭିନ୍ନ ଦର୍ଶନୀୟ ସ୍ଥାନକୁ ନିଆଯାଇଥିଲା । ୩/୪ ଦିନ ପରେ ପୁଣି ସମ୍ମିଳନୀ (C.P.A.) ଚାଲିଲା । ଉକ୍ତ ଦିନ

ମାନଙ୍କରେ "who cares common wealth" "whether commonwealth will survive" ପ୍ରଭୃତି ବସ୍ତୁ ଗୁଡ଼ିକ ଆଲୋଚନା ପାଇଁ ରଖାଯାଇଥିଲା । C.P.A. ସମ୍ମିଳନୀରେ ଯେଉଁ ବିଷୟମାନ ଆଲୋଚନା ହୁଏ, ସେଥି ମଧ୍ୟରୁ ଅନେକ ଆନ୍ତର୍ଜାତିକ ସଂସଦୀୟ ଗଣତନ୍ତ୍ରରେ ପ୍ରଚଳିତ ବ୍ୟବସ୍ଥା ସଂପର୍କରେ ଆଲୋଚନା ମାଧ୍ୟମରେ କେବଳ ପରସ୍ପର ମଧ୍ୟରେ ମତର ଆଦାନ ପ୍ରଦାନ ହୋଇଥାଏ । ସେଭଳି କୌଣସି ବିଧିବଦ୍ଧ ନିଷ୍ପତ୍ତି ନିଆଯାଏ ନାହିଁ । କାରଣ ଏହା ନିଷ୍ପତ୍ତି ନେବାର ସଂସ୍ଥା ନୁହେଁ । ପୂର୍ବରୁ ବ୍ରିଟିଶ ଅଧୀନରେ ଥିବା ଦେଶର ଲୋକ ପ୍ରତିନିଧିମାନଙ୍କ ମଧ୍ୟରେ ପୃଥିବୀର ସମସ୍ୟା ତଥା ସଂସଦୀୟ ଗଣତନ୍ତ୍ର ପରିଚାଳନାରେ ଉପୁଜିଥିବା ସମସ୍ୟା ସଂପର୍କରେ ଅନ୍ୟମାନଙ୍କ ମତାମତ ଜାଣି ନିଜ ଦେଶରେ ତାକୁ କିଏ କେତେ ପରିମାଣରେ କାର୍ଯ୍ୟକାରୀ କରିପାରେ, ତାହାହିଁ ସମ୍ମିଳନୀର ଲକ୍ଷ୍ୟ । ସମ୍ମିଳନୀ ଅକ୍ଟୋବର ପହିଲାଦିନ ଶେଷହେଲା ଓ ମୁଁ ୨ ତାରିଖ ଦିନ ଦିଲ୍ଲୀ ପ୍ରତ୍ୟାବର୍ତ୍ତନ କରିବା କଥା । କିନ୍ତୁ ମୁଁ ଅକ୍ଟୋବର ୩ ତାରିଖ ଫେରିବା ପାଇଁ ମୋର ଉଡ଼ାଜାହାଜ ଟିକଟ ପୂର୍ବରୁ ବଦଳାଇ ଦେଇଥିଲି । ତେଣୁ ଏକ ତାରିଖ ସମ୍ମିଳନୀ ମଧ୍ୟାହ୍ନ ବେଳକୁ ଶେଷ ହେଲାପରେ ଅପରାହ୍ଣରେ ଲଣ୍ଡନରେ ମୋ ନିଜ ରହିବା ସ୍ଥାନ ବେଡନଟୀର ଯଶୋବନ୍ତ ଭାଇ ପଟେଲାଙ୍କ ଝିଅ ଘରକୁ ଯାଇ ଓ ସେଠାରେ ଅବଶିଷ୍ଟ ସମୟ ରହି ୩ ତାରିଖ ଦିନ ଦିଲ୍ଲୀ ଆସିବାକୁ ସ୍ଥିର କରିଥିଲି । ସେହି ଅନୁଯାୟୀ ସମ୍ମିଳନୀ ପରେ ଶ୍ରୀ ଦେବେନ୍ଦ୍ର ଭାଇ ପଟେଲ, ବେଡନଟୀର ପଟେଲ ବାବୁଙ୍କ ଜ୍ୱାଇଁ ଆସି ନିଜ ଗାଡ଼ିରେ ମୋତେ ତାଙ୍କ ଘରକୁ ନେଇଗଲେ । ଏହି ସମ୍ମିଳନୀ ମଧ୍ୟରେ ଆଉଦିନେ ମୁଁ ତାଙ୍କ ଘରକୁ ଯାଇଥିଲି । ସେଦିନ ପଟେଲବାବୁଙ୍କ ଝିଅ ଯୋଗୀନା ଓ ଜ୍ୱାଇଁ ଦେବେନ୍ଦ୍ର ମୋତେ ତାଙ୍କ ଗାଡ଼ିରେ ନେଇ କେତେକ ସ୍ଥାନ ବୁଲାଇଲେ ଓ ଆସିଲା ବେଳକୁ ମୋତେ ତାଙ୍କ ଘରେ ଦୁଇଦିନ ରହିବାକୁ ଅନୁରୋଧ କରିଥିଲେ । ସେମାନେ ଗୁଜୁରାଟୀ ଲୋକ । ମୋର ଜାତିବନ୍ଧୁ ନ ହେଲେ ମଧ୍ୟ ମୋର ନିଜ ଝିଅଜ୍ୱାଇଁ ଭଳି ତାଙ୍କଠାରୁ ମୁଁ ଭକ୍ତି ଶ୍ରଦ୍ଧା ଲାଭ କରିଥିଲି । ତାଙ୍କ ବାପା ଓ ମାଙ୍କୁ ମଧ୍ୟ ମୁଁ ସମୁଦୀ ଓ ସମୁଦୁଣୀ ବୋଲି ଡ଼ାକେ । ଏହାପୂର୍ବରୁ ୧୯୮୪ ମସିହାରେ ମୁଁ ମୋର ପ୍ରଥମ ବିଦେଶ ଭ୍ରମଣ ବେଳେ ୟୁରୋପର ମାନଦ୍ୱୀପ (Isle of man) ରୁ C.P.A. ସମ୍ମିଳନୀରୁ ଫେରୁଥିଲା ବେଳେ ପ୍ରଥମେ ଏହାଙ୍କ ଘରକୁ ବରାବର ଯାଉଥିଲି । ସେହିଦିନୁଁ ଏହି ଗୁଜୁରାଟୀ ପରିବାର ସହିତ ମୋର ଘନିଷ୍ଠ ସଂପର୍କ ।

ତହିଁ ପରଦିନ ପ୍ରାତଃ ଭୋଜନ, ଗୁଜୁରାଟୀ ଖାଦ୍ୟ ଭଲ ଲାଗୁଥାଏ । ପେଟ ପୂରାଖାଇ ମୁଁ ଦେବେନ୍ଦ୍ର ଓ ତା'ର ପୁଅ ମିଶି ଲଣ୍ଡନଟାୱାର ଦେଖିବାକୁ ଗଲୁଁ । ଏହା ଲଣ୍ଡନର ପ୍ରାୟ ସର୍ବଶ୍ରେଷ୍ଠ ଐତିହାସିକ ସ୍ଥାନ । କିଛି ସମୟ ପରେ ସେଠାରେ ପହଞ୍ଚିଲୁ । ଟିକଟ କରି ଟାୱାର ଭିତରକୁ ଗଲୁଁ । ଏହାକୁ ଟାୱାର ବୋଲି କୁହାଯାଇଥିଲେ ହେଁ, ଏହା ସେଠା ରାଜାଙ୍କ ଏକ ବହୁ ପୁରୁଣା ରାଜପ୍ରାସାଦ । ପ୍ରାୟ ୩୦୦ ବର୍ଷ ପୂର୍ବେ ଏହା ତିଆରି ହୋଇଥିଲା । ଏବଂ ପ୍ରାସାଦଟି ଏକ ଦୁର୍ଗଭଳି ଅଛି । ସେତେବେଳର ରାଜା, ପ୍ରାସାଦଟିକୁ ଜାତି ଉଦ୍ଦେଶ୍ୟରେ ଦାନ କରିଥିବାରୁ ଏହା ଏକ ଐତିହାସିକ ସ୍ଥାନ ଓ ସବୁବେଳେ ବହୁ ଦର୍ଶକଙ୍କ ଦର୍ଶନୀୟ ସ୍ଥାନ ହୋଇଛି । ଏହା ମଧ୍ୟରେ ବହୁ କୋଠରୀ ରହିଛି । ପ୍ରତି କୋଠରୀରେ ବିଭିନ୍ନ ପ୍ରକାର ପୁରୁଣା ଜିନିଷ ଯଥା - ଯୁଦ୍ଧାସ୍ତ୍ର, ତରବାରୀ, ସାଞ୍ଜୁ, ତୋପ ଇତ୍ୟାଦି ରଖା ଯାଇଛି । ଏଗୁଡ଼ିକ ପ୍ରାୟ ୩ ଶହ ବର୍ଷ ବା ତତୋଧିକ ବର୍ଷ ପୂର୍ବେ ଯୁଦ୍ଧ ବେଳେ ବ୍ୟବହାର କରାଯାଉଥିଲା । ମୋର ସେଠାକୁ ଯିବାର ପ୍ରଧାନ ଉଦ୍ଦେଶ୍ୟ ଥିଲା ଭାରତର କୋହିନୂର ହୀରାଖଞ୍ଜା ରାଜମୁକୁଟ ଓ ମୟୂର ସିଂହାସନ ଯାହାକି ଭାରତରୁ ଆଫଗାନିସ୍ଥାନକୁ ଯାଇଥିଲା । ଏବଂ ସେଠାରୁ ଇଂରେଜ ସରକାର ନେଇ London Tower ରେ ରଖିଛନ୍ତି, ତାହା ଦେଖିବା ଭାରତ ସରକାର କେତେଥର ଏହି ଅମୂଲ୍ୟ ସଂପଦକୁ ଫେରାଇ ଆଣିବାକୁ ଚାହିଁଥିଲେ ହେଁ ତାହା ଆମଠାରୁ ସେମାନେ ନେଇ ନାହାନ୍ତି ବୋଲି କହି ଫାଙ୍କି ଦେଉଛନ୍ତି । ଅସ୍ତ୍ରଶସ୍ତ୍ରଥିବା କୋଠରୀ ଗୁଡ଼ିକ ଦେଖିବା ପରେ ଅଳଙ୍କାର ରଖାଯାଇଥିବା କୋଠରୀ ଗୁଡ଼ିକୁ ଦେଖୁଥିବା ବେଳେ ଏକ କୋଠରୀରେ ପୃଥିବୀର ସର୍ବଶ୍ରେଷ୍ଠ ଓ ମୂଲ୍ୟବାନ ହୀରା ଖଞ୍ଜା (କୋହିନୂର) ମୁକୁଟ ଦେଖିବାକୁ ପାଇଲି ।

ଆଫ୍ରିକା ତଥା ଅନ୍ୟ ଦେଶର ହୀରାମାନ ମଧ ସେଠାରେ ରଖାଯାଇଥିବାର ଦେଖିଲି । ହୀରାମାନ ମଧ ଅନ୍ୟ ସମସ୍ତ ହୀରାଠାରୁ ଅଧିକ ଉଜ୍ଜ୍ୱଳ ଓ ମୂଲ୍ୟବାନ । ତତ୍‌ପରେ ସେଠାରେ ମଧ ବହୁ ପୁରୁଣା ଅସ୍ତ୍ରଶସ୍ତ୍ର ଅତି ପୁରୁଣା ଯୁଗରେ ବ୍ୟବହାର କରାଯାଉଥିବା ବିଭିନ୍ନ ବାସନ ଓ ଅନ୍ୟ ବ୍ୟବହାର୍ଯ୍ୟ ଜିନିଷ ଓ କେତେକ ବିରାଟକାୟ ଜୀବଜନ୍ତୁମାନଙ୍କ କଙ୍କାଳମାନ ସଂରକ୍ଷିତ ହୋଇଥିବାର ଦେଖିଲି ।

ଉକ୍ତ C.P.A. ସମ୍ମିଳନୀକୁ ଯାଇ ଲଣ୍ଡନ ସହରରେ ଥିବା ସମୟରେ ସେଠାକାର ହାଇ କମିଶନରଙ୍କ ସହାୟତାରେ ମୋର ଏକ ଡ଼ାକ୍ତରୀ ପରୀକ୍ଷା National Hospital ର ଜଣେ Neurologist ଙ୍କ ଦ୍ୱାରା କରାଯାଇଥିଲା ଏବଂ ରକ୍ତ ଚାପ ରୋଗର ସ୍ଥାୟୀ ପ୍ରତିଷେଧକ ରୂପେ ଔଷଧ ନିରୂପଣ କରିଥିଲି ।

## Presiding Officers Conference.

## ଭାରତୀୟ ବିଧାନସଭା ଅଧକ୍ଷ ସମ୍ମିଳନୀ ଦିଲ୍ଲୀଠାରେ

ପ୍ରତିବର୍ଷ C.P.A. ରାଜ୍ୟଗୋଷ୍ଠୀ ସଂସଦୀୟ ସମ୍ମିଳନୀ ଭାରତର ସମସ୍ତ ରାଜ୍ୟ ଗୁଡ଼ିକର ବିଧାନସଭା ମାନଙ୍କର ଅଧକ୍ଷ, ଉପାଧକ୍ଷ, କାଉନସିଲ ମାନଙ୍କ ଚେୟାରମ୍ୟାନ, ବିଧାନସଭା। ସେକ୍ରେଟାରୀ ଓ ଲୋକସଭା, ରାଜ୍ୟସଭାର ସେକ୍ରେଟାରୀ ଓ ଲୋକସଭାର ଅଧକ୍ଷ, ଉପାଧକ୍ଷ ଏବଂ ରାଜ୍ୟସଭା ଉପାଧକ୍ଷଙ୍କ ସମ୍ମିଳନୀ ବସି ବିଭିନ୍ନ ସ୍ଥାନରେ ସଂସଦୀୟ ଗଣତନ୍ତ୍ର ପରିଚାଳନା କ୍ଷେତ୍ରରେ ଉପୁଜିଥିବା ଅସୁବିଧା ଓ ତ୍ରୁଟି ଗୁଡ଼ିକର ଆଲୋଚନା ହୁଏ । ସେହି ଅନୁଯାୟୀ ୧୯୮୬ ମସିହାରେ ଉକ୍ତ ସମ୍ମିଳନୀ ଦିଲ୍ଲୀଠାରେ, ଦିଲ୍ଲୀ ମେଟ୍ରୋପଲିଟାନ କାଉନସିଲର ନିମନ୍ତ୍ରଣ କ୍ରମେ ଅକ୍ଟୋବର ମାସ ୨୧, ୨୨ ଓ ୨୩ ତାରିଖ ହେବାର ସ୍ଥିର ହୋଇଥିବାରୁ ଆମ ବିଧାନସଭା ସେକ୍ରେଟାରୀ ଓ ଅନ୍ୟାନ୍ୟ ଅଫିସରଙ୍କ ସହ ମୁଁ ଓ ମୋର ସ୍ତ୍ରୀ ୨୧।୧୦।୮୬ ରେ ଦିଲ୍ଲୀରେ ପହଞ୍ଚି ଓଡ଼ିଶା ଭବନରେ ରହିଲୁ ଓ ୨୧ ତାରିଖ ପୂର୍ବାହ୍ନ ୧୦ଟା ସମୟରୁ ୩ ଦିନ ଦିଲ୍ଲୀର ମେଟ୍ରୋପଲିଟାନ କାଉନସିଲ ହଲରେ ଲୋକ ସଭା ଅଧକ୍ଷ ଡକ୍ଟର ବଳରାମ ଝାକରଙ୍କ ସଭାପତିତ୍ୱରେ ଆରମ୍ଭ ହେଲା । ଡକ୍ଟର ବଳରାମ ଝାକରଙ୍କ ଉଦ୍‌ଘାଟନ ଭାଷଣ ପରେ ସେଠାକାର କାଉନସିଲର Chairman ଶ୍ରୀଯୁକ୍ତ ଗୋଏଲ ସ୍ୱାଗତ ଭାଷଣ ଦେଲାପରେ ସମ୍ମିଳନୀ ପାଇଁ ନିର୍ଦ୍ଧାରିତ ଆଲୋଚ୍ୟ ବିଷୟ ଗୁଡ଼ିକ ଉପରେ ପ୍ରତିନିଧିମାନେ ଆଲୋଚନା ଆରମ୍ଭ କରିଥିଲେ । ଦୁଇଦିନ ସମ୍ମିଳନୀପରେ ତୃତୀୟଦିନ ଜାତୀୟ ସଂହତି ଉପରେ ଏକ ଆଲୋଚନା ଚକ୍ର ସେଠାକାର ଉପରାଜ୍ୟପାଳ ଶ୍ରୀଯୁକ୍ତ କାପୁର ଉଦ୍‌ଘାଟନ କରିଥିଲେ । ଶ୍ରୀଯୁକ୍ତ ବଳରାମ ଝାକର ସଭାପତିତ୍ୱ କରିଥିଲେ । ମୁଁ ଏହି ଆଲୋଚନା ଚକ୍ରରେ ଭାଗ ନେଇ ଆଞ୍ଚଳିକ ବୈଷମ୍ୟ, ଜାତୀୟ ସଂହତିରେ ଏକ ବଡ଼ ଅନ୍ତରାୟ ବୋଲି କହିଥିଲି । ଭାରତର ଶାସନ କ୍ଷେତ୍ରରେ ଦିଲ୍ଲୀ ନିକଟରେ ଥିବା ରାଜ୍ୟ ଗୁଡ଼ିକ ଓ ରାଜ୍ୟମାନଙ୍କ ରାଜଧାନୀ ନିକଟବର୍ତ୍ତୀ ଜିଲ୍ଲା ଗୁଡ଼ିକର ବହୁବିଧ ଉନ୍ନତି ପ୍ରତି ଅଧିକ ଧ୍ୟାନ ଦିଆଯାଉଥିଲା ବେଳେ ଦୂର ଅଞ୍ଚଳର ରାଜ୍ୟ ଓ ଜିଲ୍ଲା ମାନଙ୍କୁ ଅବହେଳା ପ୍ରଦର୍ଶନ କରାଯାଉଥିବାରୁ ଜନ ଅସନ୍ତୋଷ ବୃଦ୍ଧି ପାଇଁ ଜାତୀୟ ସଂହତି କ୍ଷେତ୍ରରେ ଅନ୍ତରାୟ ହେଉଥିବା କହିବା ମାତ୍ରେ ଶ୍ରୀଯୁକ୍ତ ବଳରାମ ଝାକରଙ୍କର ମୋ ପ୍ରତି ଟିକିଏ ଅସନ୍ତୋଷ ପ୍ରକାଶ ପାଇଲା । ଏହା ଅପ୍ରିୟ ସତ୍ୟ ହୋଇଥିବାରୁ ସେମାନଙ୍କୁ ଆଘାତ ହେବାର ଜାଣି ମଧ ମୁଁ ସତ୍ୟ ପ୍ରକାଶ କରିଥିଲି ।

## ମୋର ଦକ୍ଷିଣ ଭାରତ ପରିଦର୍ଶନ

ସମ୍ମିଳନୀ ପରେ ମୋର ଦକ୍ଷିଣ ଭାରତର ବମ୍ବେ, ଐତିହାସିକ ସୋମନାଥ ମନ୍ଦିର, ଦ୍ୱାରକା ଭେଟ ଦ୍ୱାରକା ପୋରବନ୍ଦର, ଅହମଦାବାଦ, ଜୟପୁର ପ୍ରଭୃତି ପରିଦର୍ଶନରେ ଯିବାର କାର୍ଯ୍ୟକ୍ରମ ଥିଲା । ମୋର Private Secretary ଶ୍ରୀ ବୀରେନ୍ଦ୍ର କୁମାର ଦାସ ପଟ୍ଟନାୟକ ମଧ ଆମ ସଙ୍ଗେ ଯିବାର.ଥିଲା । କିନ୍ତୁ ହଠାତ୍ ସେ ଅସୁସ୍ଥ ହେବାରୁ ଅନ୍ୟ ଜଣେ ମୋର ସହକାରୀ ଅଫିସର ଆମ ସଙ୍ଗେ ଗଲେ । ମୁଁ ଓ ମୋର ସ୍ତ୍ରୀ ଏବଂ ମୋ ପି.ଏ. ୨୪.୧୦.୮୬ ରେ ପ୍ରଥମେ

ଦିଲ୍ଲୀରୁ ବମ୍ବେ ପହଞ୍ଚିଲା ବେଳକୁ ସମୟ ହୋଇଥିଲା ପୂର୍ବାହ୍ନ ସାଢ଼େ ୧୦ଟା । ସେଠାକାର ପ୍ରତୀକ୍ଷାଳୟରେ ଓଡ଼ିଶାର ଉପାଧକ୍ଷ ଶ୍ରୀ ଚିନ୍ତାମଣି ଦ୍ୟାନ ସାମନ୍ତରାୟ ଆଗରୁ ଆସି ପହଞ୍ଚିଲେ । ଉଡ଼ାଜାହାଜ ଷ୍ଟେସନରୁ ମହାରାଷ୍ଟ୍ର ସରକାରଙ୍କ ପ୍ରଟୋକଲ ଅଫିସର ଆମକୁ ବମ୍ବେର ଏକ ସରକାରୀ ଅତିଥିଶାଳାକୁ ନେଇଗଲେ ଓ ଆମେ ମଧାହ୍ନ ଭୋଜନ ଶେଷ କରି କିଛି ସମୟ ବିଶ୍ରାମ ନେବା ପରେ ପୁଣି ବମ୍ବେର ବିମାନ ବନ୍ଦରକୁ ଅପରାହ୍ନ ୩ଟା ବେଳକୁ ଆସିଲୁ । ତତ୍‌ପରେ ମହାରାଷ୍ଟ୍ରର କେଶଦ ନାମକ ଏକ କ୍ଷୁଦ୍ର ଉଡ଼ାଜାହାଜ ଷ୍ଟେସନରେ ଆସି ଓହ୍ଲାଇଲୁ । ସେଠାରେ ଗୁଜୁରାଟ ସରକାରଙ୍କୁ ଆଗରୁ ମୋର ଗସ୍ତ କାର୍ଯ୍ୟକ୍ରମ ଜଣାଇ ଦେଇଥିବାରୁ ରାଜ୍ୟ ସରକାରଙ୍କ ଅତିଥିଭାବେ ମୋର ବିଭିନ୍ନ ସ୍ଥାନକୁ ଯିବାର ଓ ରହିବାର ବ୍ୟବସ୍ଥା ହୋଇଥିଲା । ତେଣୁ କେଷତ ଉଡ଼ାଜାହାଜ ଷ୍ଟେସନକୁ ଗୁଜୁରାଟ ସରକାରଙ୍କ ପ୍ରତିନିଧି ଆସି ମୋତେ ଓ ମୋ ସଙ୍ଗେ ଆସିଥିବା ବିଧାନସଭା ଉପାଧକ୍ଷଙ୍କୁ ପାଛୋଟି ନେଇଥିଲେ ଓ ସରକାରୀ ଗାଡ଼ିରେ ଆମକୁ ପ୍ରସିଦ୍ଧ ଓ ଐତିହାସିକ ସୋମନାଥ ମନ୍ଦିର ପରିଦର୍ଶନ ପାଇଁ ନିଆଗଲା । ପ୍ରାୟ ଅପରାହ୍ନ ୫ଟା ବେଳେ ସୋମନାଥ ମନ୍ଦିର ପହଞ୍ଚିବାକୁ ଛଅ କିଲୋମିଟର ଦୂରରେ ଥିବା ଏକ ସରକାରୀ ଅତିଥିଶାଳାରେ ପହଞ୍ଚି ନିତ୍ୟକର୍ମ ଶେଷ କଲାପରେ ସନ୍ଧ୍ୟା ଛଅଟା ବେଳକୁ ମନ୍ଦିର ଉଦ୍ଦେଶ୍ୟରେ ଯାତ୍ରା କଲୁଁ । କିଛି ସମୟ ପରେ ଭାରତର ପଶ୍ଚିମ ପାଖ ଆରବ ମହାସାଗର କୂଳରେ ଗୁଜୁରାଟ ରାଜ୍ୟର ଐତିହାସିକ ସୋମନାଥ ମନ୍ଦିର ପ୍ରତିଷ୍ଠିତ । ଇତିହାସରେ ଆମ୍ଭେ ପଢ଼ିଥିଲୁ ଏହି ବିଖ୍ୟାତ ସୋମନାଥ (ଶିବ) ମନ୍ଦିର ବହୁ ସ୍ୱର୍ଣ୍ଣ ଓ ଧନ ଧାନ୍ୟରେ ପରିପୂର୍ଣ୍ଣ ଥିଲା । ଏହା ଆଫଗାନି ସ୍ଥାନରେ ନାଦିର ସାହା ବହୁବାର ଆକ୍ରମଣ କରି ବହୁଧନ ସଂପତ୍ତି ଲୁଣ୍ଠନ କରିଥିଲା । ଏହି ଭଳି ବାରମ୍ବାର ଆକ୍ରମଣ ଫଳରେ ମନ୍ଦିରର ବହୁ କ୍ଷତି ସାଧନ ହୋଇଥିଲା । ତେଣୁ କାଳକ୍ରମେ ମନ୍ଦିରଟି ଧ୍ୱଂସ ଘଟି ଧୂଳିସାତ ହୋଇଥିଲା । ତତ୍‌ପରେ ଧର୍ମ ପରାୟଣ ଲୋକଙ୍କ ପ୍ରଚେଷ୍ଟାରେ ଏହି ମନ୍ଦିରର ପୁନରୁଦ୍ଧାର ହେଲା ଓ ୧୯୫୭ ମସିହାରେ ପୁଣି ପୁନଃ ପ୍ରତିଷ୍ଠା ଲାଭ କରିଛି । ମନ୍ଦିରଟି ଠିକ୍ ସମୁଦ୍ର କୂଳରେ । ଏହାର ପଶ୍ଚିମ ପାଖରେ ମନ୍ଦିର ଉପରେ ଏକ ସ୍ତମ୍ଭ ଥିବାର ଏବଂ ଏହି ସ୍ତମ୍ଭର ସାମନାରେ ଦକ୍ଷିଣ କୁମେରୁ ପର୍ଯ୍ୟନ୍ତ କେବଳ ଜଳରାଶି ଥିବାର ଓ କୌଣସି ସ୍ଥଳଭାଗ ନ ଥିବା ସେଠାକାର ମନ୍ଦିର କର୍ତ୍ତୃପକ୍ଷଙ୍କଠାରୁ ଜାଣିଲି । ତତ୍‌ପରେ ମନ୍ଦିରର ଆଳତୀ ବେଳକୁ ଶିବଲିଙ୍ଗ ଦର୍ଶନ କରିବାର ସୁଯୋଗ ମିଳିଲା । ମଣିଷର ଉଚ୍ଚତାଠାରୁ ଶିବଲିଙ୍ଗ ଅଧିକ ଉଚ୍ଚ । ମନ୍ଦିରର ଅନେକ କାମ ବର୍ତ୍ତମାନ ସୁଦ୍ଧା ସଂପୂର୍ଣ୍ଣ ହୋଇ ନ ଥିବାର ଦେଖିଲୁ । ତତ୍‌ପରେ ସେହି ସହରର ଅନତି ଦୂରରେ ଏକ କୃଷ୍ଣ ମନ୍ଦିର ଥିବାର ଏବଂ ଉକ୍ତ ମନ୍ଦିରରେ କୃଷ୍ଣଙ୍କ ଏକ ଅତି ସୁନ୍ଦର ଜୀବନ୍ତ ଭଳି ମୂର୍ତ୍ତି ଅଛି । ଶ୍ରୀକୃଷ୍ଣ ତାଙ୍କର ଦେହତ୍ୟାଗ ପୂର୍ବରୁ ଶିଆଳୀ ଲତା ମଧରେ ଶୋଇଥିବା ବେଳେ ଜାରା ଶବର ଦ୍ୱାରା ଶରବିଦ୍ଧ ହୋଇଥିବା ମୂର୍ତ୍ତି ସେଠାରେ କରାଯାଇଛି ଓ ପାଖରେ ଜାରା ଶବରର ଏକ ମୂର୍ତ୍ତି କରାଯାଇଛି । ଏହି ମନ୍ଦିର ଗୁଡ଼ିକରେ ବ୍ରାହ୍ମଣଙ୍କୁ କିଛି ପଇସା ଦେଲେ ସେ ନନେଇ ସେଠାରେ ଥିବା ଏକ କାଠ ମଧରେ ଥିବା ଫାଙ୍କରେ ପକାଇ ଦିଏ । ଏହାପରେ ଆମେ ସମସ୍ତେ ଆମପାଇଁ ଥିବା ଅତିଥିଶାଳାକୁ ଆସିଲୁ ଓ ରାତ୍ରିଯାପନ କଲୁଁ ।

## ଦ୍ୱାରକା ଓ ଭେଟ ଦ୍ୱାରକା

ସମୁଦ୍ରର ଅନତି ଦୂରରେ ଏକ ପ୍ରସସ୍ତ ପଥରେ ଯାତ୍ରା କଲାବେଳେ Marine drive ରେ ଗଲାଭଳି ମନେ ହେଉଥାଏ । ବାଟରେ ଗୁଜୁରାଟ ରାଜ୍ୟରେ ଗ୍ରାମ ପରେ ଗ୍ରାମ ଅତିକ୍ରମ କରି ଯାଉଥିଲା ବେଳେ ଗ୍ରାମ ଲୋକଙ୍କ ଗୃହ ଓ ପୋଷାକ ପରିଚ୍ଛଦ ଏବଂ ଚଳଣୀ ସଂକ୍ରାନ୍ତରେ କିଛି କିଛି ଧାରଣା ହେଉଥାଏ । ସେ ଅଞ୍ଚଳରେ ବର୍ଷା ଅତି କମ୍ ହେଉଥିବା ଯୋଗୁଁ ଅଳ୍ପ ଜଳରେ ଚାଷ ହେଉଥିବା ଚିନାବାଦାମ ବାଜରା ପ୍ରଭୃତି ଫସଲ ଚାଷ ହୋଇଥିବାର ଦେଖିଲି । ଘରଦ୍ୱାରରୁ ଓ ପୋଷାକ ପରିଚ୍ଛଦରୁ ସାଧାରଣ ଲୋକଙ୍କ ଆର୍ଥିକ ଅବସ୍ଥା ସ୍ୱଚ୍ଛଳ ଥିବାର ଜଣାଯାଉଥିଲା । କେଉଁଠି ହେଲେ ଜଙ୍ଗଲ ତଥା ବୃକ୍ଷଲତା ଦ୍ୱାରା ବିଶେଷ ଭାବେ ଆବୃତ ଥିବା ଅଞ୍ଚଳ ଦେଖିଲି ନାହିଁ । ବାଟରେ ପୋର ବନ୍ଦ ଠାରେ ଅଳ୍ପ ସମୟ

ପାଇଁ ଏକ ସରକାରୀ ଅତିଥିଶାଳାରେ ଅଟକି ପ୍ରାତଃ ଭୋଜନ କରି ପୁଣି ଦ୍ୱାରକା ଅଭିମୁଖେ ଯାତ୍ରା କରି ପ୍ରାୟ ପୂର୍ବାହ୍ନ ସାଢ଼େ ୧୧ଟା ସମୟରେ ଦ୍ୱାରକା ପହଞ୍ଚି ଏକ ସରକାରୀ ଅତିଥି ଶାଳାରେ ମଧ୍ୟାହ୍ନ ଭୋଜନ କରି ବିଶ୍ରାମ କଲୁଁ। ଅପରାହ୍ନ ୩ଟା ପରେ କାର ଯୋଗେ ଭେଟ ଦ୍ୱାରକା ପରି ଦର୍ଶନରେ ବାହାରିଲୁ । ବାଟରେ ଗଲା ବେଳେ ନାଗେଶ୍ୱର ମହାଦେବ ମନ୍ଦିରରେ ମହାଦେବ ଦର୍ଶନ କଲୁଁ । ସେଠାକାର ମହାଦେବ (ଶିବଲିଙ୍ଗ) ଉପରେ ଏକ ସାପମୂର୍ତ୍ତି ରଖାଯାଇଛି । ଏହାର ଅନତି ଦୂରରେ ଏକ ପୁଷ୍କରିଣୀ ଅଛି । ତା'ର ନାମ ଗୋପୀ ତଳାବ । ଗୋପୀମାନେ ଶ୍ରୀକୃଷ୍ଣଙ୍କ ଦେହତ୍ୟାଗ କରିବା ଶୁଣି ଅତ୍ୟନ୍ତ ଶୋକାକୁଳା ହୋଇ ତାଙ୍କୁ ଦେଖିବାକୁ ଆସୁଥିବା ବେଳେ ଏହି ପୋଖରୀରେ ବୁଡ଼ି ପ୍ରାଣତ୍ୟାଗ କରିବାର କିମ୍ବଦନ୍ତୀ ଥିବାର ସେଠାକାର ଲୋକଙ୍କଠାରୁ ଶୁଣିଲି । ତତ୍‌ପରେ ସମୁଦ୍ରକୂଳରେ ପହଞ୍ଚି ସେଠାରୁ ସରକାରୀ ଲଞ୍ଚରେ ସମୁଦ୍ରଭିତରେ ଥିବା ଏକ କ୍ଷୁଦ୍ର ଦ୍ୱୀପ (ଭେଟ ଦ୍ୱାରକା) କୁ ଗଲୁଁ । ଆମ ସଙ୍ଗେ ରାଜ୍ୟସରକାର (ଗୁଜୁରାଟ) ଙ୍କର ଜଣେ ଅଫିସର ସବୁ ଦେଖାଇବାକୁ ଯାଇଥାନ୍ତି । ଆମର ବିଭିନ୍ନ ସ୍ଥାନ ପରିଦର୍ଶନ କରିବାପାଇଁ ସେଠାକାର ରାଜ୍ୟ ସରକାରଙ୍କ ଦ୍ୱାରା ସମସ୍ତ ବ୍ୟବସ୍ଥା ହୋଇଥାଏ । କାରଣ ମୁଁ ଓ ଓଡ଼ିଶାର ଉପାଧ୍ୟକ୍ଷ ଉଭୟେ ଯେଉଁ ରାଜ୍ୟକୁ ଯାଇଥାଉଁ, ସଂପୃକ୍ତ ସରକାରଙ୍କ ଅତିଥି ରୂପେ ଆମକୁ ଗ୍ରହଣ କରାଯାଇଥାଏ ।

ଭେଟ ଦ୍ୱାରକା ଦ୍ୱୀପଟି ଗୁଜୁରାଟ ରାଜ୍ୟରେ ଅବସ୍ଥିତ । ଏ ଛୋଟ ଦ୍ୱୀପରେ ଚାରିଟି ଗ୍ରାମ ପଞ୍ଚାୟତ ଅଛି । ପ୍ରାୟ ୧୫/୨୦ ମିନିଟ୍ ଲଞ୍ଚରେ ଗଲାପରେ ଉକ୍ତ ଭେଟ ଦ୍ୱାରକାରେ ପହଞ୍ଚି କୃଷ୍ଣ ମନ୍ଦିରକୁ ଗଲୁଁ ଦର୍ଶନ ପାଇଁ । ଏହା ଏକ ବିରାଟ ମନ୍ଦିର । ଶ୍ରୀକୃଷ୍ଣ ରୁକ୍ମିଣୀ, ସତ୍ୟଭାମା, ପ୍ରଭୃତି ସମସ୍ତଙ୍କର ଅଲଗା ଅଲଗା ମୂର୍ତ୍ତି ସେଠାରେ ରହିଛି । ସବୁବେଳେ ଭକ୍ତମାନଙ୍କର ଭିଡ଼ ଲାଗିଥାଏ । ଦ୍ୱାରକା ଠାରୁ ଏହାପ୍ରାୟ ୨୦ କି.ମି. ଦୂରରେ ସମୁଦ୍ର ମଧ୍ୟରେ ଅବସ୍ଥିତ । ଏହା ଦ୍ୱାରକାର ରାଜଧାନୀ ଥିଲା । ଶ୍ରୀକୃଷ୍ଣ ଏହିଠାରେ ଥିଲେ ବୋଲି କିମ୍ବଦନ୍ତୀ ଶୁଣିବାକୁ ପାଇଲୁଁ । ଶ୍ରୀକୃଷ୍ଣ ଦେହତ୍ୟାଗ କରିବା ପୂର୍ବରୁ ତାଙ୍କର ନିଜ ବଂଶ (ଯଦୁବଂଶ) ସମସ୍ତଙ୍କୁ ଧ୍ୱଂସ କରିଦେବା ଅଭିପ୍ରାୟରେ ସମସ୍ତ ରାଜ୍ୟକୁ ଜଳ ମଗ୍ନ କରାଇ ଦେଇଥିବା କଥା ପୁରାଣରୁ ଶୁଣିବାକୁ ମିଳେ । ସେହି ଧ୍ୱଂସ ସ୍ତୂପ ମଧ୍ୟରୁ ଏହି ଛୋଟ ଦ୍ୱୀପଟି କେବଳ ସ୍ମୃତି ପାଇଁ ରହିଛି । ଦ୍ୱାରକା ଆସି ଶ୍ରୀକୃଷ୍ଣଙ୍କ ପ୍ରକୃତ ଲୀଳାସ୍ଥଳ ଭେଟ ଦ୍ୱାରକା ନ ଆସିଲେ ଦ୍ୱରକା ଆସିବାର କିଛି ଫଳ ମିଳେ ନାହିଁ । ଆଶ୍ଚର୍ଯ୍ୟର ବିଷୟ, ଏହି ଛୋଟ ଦ୍ୱୀପର ମୋଟ ଲୋକସଂଖ୍ୟା ୪୦୦୦୦ ଓ ହିନ୍ଦୁ ଧର୍ମର ଏହା ଏକ ମହାନ ତୀର୍ଥସ୍ଥଳୀ ହୋଇଥିଲେ ମଧ୍ୟ ଏଠାକାର ଅଧିବାସୀ ମାନଙ୍କ ମଧ୍ୟରେ ମୁସଲମାନଙ୍କ ସଂଖ୍ୟା ଅଧିକ। ଏଠାରେ ଯେଉଁ ଜୁନାଗଡ଼ ରାଜ୍ୟଥିଲା ତା'ର ନବାବ ଥିଲେ ଜଣେ ମୁସଲମାନ । ଗୁଜୁରାଟ ରାଜ୍ୟଗଠନ ବେଳେ କାଥିଆବାଡ଼୍ ଅଞ୍ଚଳରେ ଥିବା ବହୁ ଗଡ଼ଜାତ୍ ସେତେବେଳର ବମ୍ବେ ରାଜ୍ୟରେ ମିଶି ଥିଲେ । ସ୍ୱାଧୀନତା ପ୍ରାପ୍ତିପରେ ଏହି ଅଞ୍ଚଳ (ପୂର୍ବତନ ଜୁନାଗଡ଼ ରାଜ୍ୟ ଗୁଜୁରାଟର ଅନ୍ତର୍ଭୁକ୍ତ ହୋଇ ଗଲା ମନ୍ଦିରର ସମସ୍ତ ଦେବାଦେବୀଙ୍କୁ ଦର୍ଶନ କଲାପରେ ଆମେ ପୁଣି ଲଞ୍ଚଯୋଗେ ଓ ଖା ବନ୍ଦର ଆସିଲୁଁ । ଏହି ବନ୍ଦରଟି ମୁଖ୍ୟତଃ ଏକ ମାଛଧରା ବନ୍ଦର । ସେଠାରୁ ଦ୍ୱାରକାକୁ ଫେରୁଥିବା ବନ୍ଦରଠାରୁ ପ୍ରାୟ ୩/୪ କି.ମି. ପର୍ଯ୍ୟନ୍ତ ଶୁଖୁଆଗନ୍ଧ ଅତିତୀବ୍ର ଭାବେ ଅନୁଭୂତ ହେଉଥିଲା । ସେଠାରୁ ଫେରି ଆମେ ରହୁଥିବା ଅତିଥିଶାଳରେ ସନ୍ଧ୍ୟା ପୂର୍ବରୁ ପହଞ୍ଚିଲୁଁ ।

## ଦ୍ୱାରକା ଦର୍ଶନ

ସନ୍ଧ୍ୟା ପରେ ଠିକ୍ ଆରତୀ ବେଳକୁ ଆମେ ସମସ୍ତେ ଶ୍ରୀକୃଷ୍ଣ ମନ୍ଦିରକୁ ଗଲୁଁ । ସହରର ବହୁଲୋକ ମଧ୍ୟ ରୁଣ୍ଡ **ହୋଇଥାନ୍ତି** । ଦର୍ଶନ ପାଇଁ ପ୍ରତିଦିନ ସନ୍ଧ୍ୟା ଓ ସକାଳେ ସେଠାରେ ପ୍ରବଳ ଭିଡ଼ ହୁଏ । ଆମେ ଭିଡ଼ ଅତିକ୍ରମ କରି **ସମସ୍ତଙ୍କ** ଆଗେ ଠାକୁରଙ୍କ ସାମନାରେ ପହଞ୍ଚିଲାପରେ ଠାକୁରଙ୍କ ପବିତ୍ର ଆରତି ଆରମ୍ଭ ହେଲା । ଶହ ଶହ ଲୋକ ଏକ **ସମୟରେ** ଏହା ଦର୍ଶନ କରୁଥାଆନ୍ତି । ଶ୍ରୀକୃଷ୍ଣଙ୍କ ବିରାଟ ମୂର୍ତ୍ତି ସାଙ୍ଗକୁ ଅନ୍ୟ ଦେବଦେବୀଙ୍କ ମୂର୍ତ୍ତି ମଧ୍ୟ ସେଠାରେ ଅଛି ।

ଆରତି ପରେ ପ୍ରସାଦ ନେଇ ଆମେ ରହୁଥିବା ଅତିଥି ଶାଳାକୁ ଫେରିଲୁଁ । ଦ୍ୱାରକାରେ ଆମେ ରହୁଥିବା ଅତିଥିଶାଳାଟି ସମୁଦ୍ର କୂଳରେ ନିର୍ମିତ । ସେଠାରେ ଆହୁରି କେତେଗୁଡ଼ିଏ ସରକାରୀ ଅତିଥିଶାଳା ମଧ ରହିଛି । ତେଣୁ ସ୍ଥାନଟି ଅତି ମନୋରମ ସମୁଦ୍ରର ଦୃଶ୍ୟ ମଧ ଆକର୍ଷଣୀୟ । ତହିଁ ପରଦିନ ସକାଳ ସାତଟା ବେଳକୁ ସ୍ନାନ ସାରି ମନ୍ଦିର ଗଲୁଁ । ମଙ୍ଗଳ ଆରତି ବେଳେ ଠାକୁରଙ୍କ ଦର୍ଶନ ପାଇଁ । ସେତେବେଳକୁ ବହୁ ଲୋକ ଜମିଗଲେଣି ପୂର୍ବଦିନ ସନ୍ଧ୍ୟା ଆରତି ଠାରୁ ଅଧିକ ଲୋକଥିଲେ । ଏଥର ଆମେ ପାଖକୁ ଯାଇ ପାରିଲୁ ନାହିଁ । ଦୂରରୁ ଥାଇ ପବିତ୍ର ମଙ୍ଗଳ ଆରତି ଦର୍ଶନ କଲୁଁ । ଆରତି ପରେ ମନ୍ଦିର ସଂଲଗ୍ନ ଗୋମତୀ ତୀର୍ଥକୁ ଗଲୁଁ । ଲୋକେ ସେଠାରେ ସ୍ନାନ କରି ମଙ୍ଗଳ ଆରତି ଦର୍ଶନ କରନ୍ତି । ଗୋମତୀ ତୀର୍ଥ ପୁରାଣ ପ୍ରସିଦ୍ଧ । ତତ୍‌ପରେ ସେହି ମନ୍ଦିର ବେଢ଼ା ମଧରେ ଥିବା ଶଙ୍କରାଚାର୍ଯ୍ୟ ମଠକୁ ଗଲୁଁ । ପ୍ରାୟ ସକାଳ ସାଢ଼େ ୮ଟା ବେଳକୁ ଅତିଥିଶାଳାରୁ ଜଳଖିଆ ଖାଇ ପୋର ବନ୍ଦର ଅଭିମୁଖେ ଯାତ୍ରା କଲୁଁ ।

## ପୋରବନ୍ଦର

ଦୁଇଦିନ ସୋମନାଥଠାରୁ ଦ୍ୱାରକା ଯିବା ବାଟରେ ଏହି ପୋର ବନ୍ଦର ଦେଇ ଗଲାବେଳେ ଯେଉଁ ଅତିଥିଶାଳାରେ କିଛି ସମୟ ରହି ଜଳଖିଆ ଖାଇ ଯାଇଥିଲୁ, ସେହି ଅତିଥିଶାଳାରେ ପ୍ରାୟ ୧୦ଟା ବେଳେ ପହଞ୍ଚିଲୁ ଓ କିଛି ସମୟପରେ ବିଭିନ୍ନ ସ୍ଥାନ ପରିଦର୍ଶନ କରିବାକୁ ବାହାରି ପଡ଼ିଲୁ । କାରଣ ଅପରାହ୍ଣରେ ଆମକୁ ପୁଣି ବମ୍ବେ ଫେରିଯିବାକୁ ପଡ଼ିବ । ପୋର ବନ୍ଦର ଜାତିର ଜନକ ମହାତ୍ମା ଗାନ୍ଧୀଙ୍କ ଜନ୍ମସ୍ଥାନ ହୋଇଥିବାରୁ ସମସ୍ତ ମଣିଷ ଜାତିର ଏହା ପବିତ୍ର ଧର୍ମପୀଠ । ତେଣୁ ତାଙ୍କର ଜନ୍ମସ୍ଥାନ ପରିଦର୍ଶନ କାରି ଜୀବନ ଧନ୍ୟକଲି । ସହର ମଧରେ ତାହା ଏକ ସାଧାରଣ ପୁରୁଣା କାଛିଆ କୋଠାଘର ଆମେ ପହଞ୍ଚିବା ମାତ୍ରେ ଜଣେ ବୟସ୍କା ସ୍ତ୍ରୀ ଯେ କି ମହାତ୍ମା ଗାନ୍ଧୀଙ୍କ ନାତୁଣୀ ଆମକୁ ପାଛୋଟି ଦେଇଗଲେ । ଉକ୍ତ ଘରଗୁଡ଼ିକ ପଡ଼ିଥିଲା ତାହାକୁ ସେ ଦେଶ ପାଇଁ ସେତେବେଳେ ଦାନ କରି ଦେଇଥିଲେ । ତାହା ବର୍ତ୍ତମାନ ସରକାରଙ୍କ ତତ୍ତ୍ୱାବଧାନରେ ସଂରକ୍ଷିତ । ସେଠାରେ ମହାତ୍ମାଙ୍କ ଏକ ବଡ଼ ଚିତ୍ର ରହି ପୂଜା ହେଉଛି । ମହାତ୍ମା ଯେଉଁଠି ଜନ୍ମ ହୋଇଥିଲେ ଓ ପରେ ଯେଉଁଠି ଶୋଉଥିଲେ ସେ ସବୁ ସ୍ଥାନ ଉକ୍ତ ସ୍ତ୍ରୀ ଲୋକ ଆମକୁ ଦେଖାଇ ଦେଲେ । ଉପର ମହଲାକୁ ଯିବା ପାଇଁ ବ୍ୟବହୃତ ହେଉଥିବା ପୁରୁଣା କାଠର ସିଡ଼ିଟି ସେଇଭଳି ରହିଛି । ମୁଁ ଅତିକଷ୍ଟରେ ଉପରକୁ ଉଠି ସେଠାରେ ମହାତ୍ମାଙ୍କ ଭାଗରେ ପଡ଼ିଥିବା କୋଠରୀ ଗୁଡ଼ିକ ଦେଖିଲି । ଫେରିଲା ବେଳକୁ ସେଠାରୁ ମହାତ୍ମାଙ୍କ ଜୀବନୀ ଓ ଆଉ କେତେଖଣ୍ଡ ବହି କିଣିଲି ।

ତତ୍‌ପରେ ପବିତ୍ର ସୁଦାମା ମନ୍ଦିରକୁ ଗଲୁଁ । ଦ୍ୱାପର ଯୁଗରେ ଏଠାରେ ଶ୍ରୀକୃଷ୍ଣଙ୍କ ବନ୍ଧୁ ତଥା ପରମଭକ୍ତ ସୁଦାମା ଜନ୍ମଲାଭ କରିଥିବାର କିମ୍ବଦନ୍ତୀ ରହିଛି । ଏପରି ଏକ ପବିତ୍ର ସ୍ଥାନରେ ମହାତ୍ମାଗାନ୍ଧୀଙ୍କ ଜନ୍ମ ବାସ୍ତବିକ ଭଗବାନଙ୍କର ମଣିଷ ଜାତି ପ୍ରତି ଏକ ଆଶୀର୍ବାଦ । ସୁଦାମାଙ୍କର ମହାନ ଆଦର୍ଶ ବହୁଯୁଗର ଅବସାନ ପରେ ମଧ ମହାତ୍ମାଗାନ୍ଧୀଙ୍କର ଚରିତ୍ରରେ ପ୍ରତିଫଳିତ ହୋଇଥିଲା । ଦାରିଦ୍ର୍ୟର ତାଡ଼ନାରେ ଜର୍ଜରିତ ସୁଦାମା, ତାଙ୍କର ଛାତ୍ର ଜୀବନର ସହପାଠୀ, ଦ୍ୱାରକାର ରାଜା ଶ୍ରୀକୃଷ୍ଣଙ୍କ ପାଖକୁ ଯେତେବେଳେ ଆସିଲେ କିଛି ସାହାଯ୍ୟ ଆଶାରେ, ସେତେବେଳେ ସେ ଆଶଙ୍କା କରିଥିଲେ ଯେ ରାଜା ଶ୍ରୀକୃଷ୍ଣ ତାଙ୍କର ପୁରୁଣା ବନ୍ଧୁ ଦରିଦ୍ର ସୁଦାମାଙ୍କୁ ଚିହ୍ନିପାରିବେ ନାହିଁ । କିନ୍ତୁ ସୁଦାମା ପହଞ୍ଚିଲା ମାତ୍ରେ ଶ୍ରୀକୃଷ୍ଣ ତାଙ୍କୁ ସସମ୍ମାନେ ତାଙ୍କ ନିକଟରେ ଆସନ କରାଇ ପାଟରାଣୀ ରୁକ୍ମଣୀଙ୍କୁ ଡ଼ାକି ତାଙ୍କ ବନ୍ଧୁଙ୍କ ପାଦ ପ୍ରକ୍ଷାଳନ କରାଇବାର ଯେଉଁ ମହାନ ଆଦର୍ଶର କଥା ମୁଁ ପୁରାଣରୁ ପଢ଼ିଥିଲି ଏଠାରେ ତାହା ଏକ ଚିତ୍ରରେ ଅଙ୍କିତ ହୋଇଥିବାରୁ ଦେଖି ନିଜକୁ ଧନ୍ୟ ଓ ପବିତ୍ର ମନେ କଲି । ସେଠାରୁ, ସେହି ସହରର ଅନ୍ୟ ଏକ ପାର୍ଶ୍ୱରେ ଥିବା ଧନଶାଳୀ ବିରଳାଙ୍କ ତିଆରି ଭାରତମାତା ମନ୍ଦିର ଦେଖିବାକୁ ଗଲୁ । ସେଠାରେ ଏକ ବିରାଟ ଖୋଲା କୋଠରୀର ପ୍ରତ୍ୟେକଟି ସ୍ତମ୍ଭରେ ୩ଟିରୁ ୪ଟି ଲେଖାଏଁ ମୂର୍ତ୍ତି ଅଙ୍କିତ ହୋଇଛି । ଭାରତୀୟ ପୁରାଣ, ଇତିହାସର ବିଭିନ୍ନ ଚରିତ୍ର ତଥା ମହାପୁରୁଷ

ମାନଙ୍କର ଫଟୋଚିତ୍ର ସହିତ ପୃଥିବୀର ଅନ୍ୟ ଦେଶ ଓ ମହାଦେଶର ମହାପୁରୁଷ ମାନଙ୍କର ଅମରକୀର୍ତ୍ତି ଅତି ଚମତ୍କାର ଭାବରେ ବହୁ ଅର୍ଥ ଖର୍ଚ୍ଚରେ ଅଙ୍କନ କରାଯାଇଥିବାର ଦେଖି ସ୍ତମ୍ଭୀଭୂତ ହେଲି । ବିରଳାଙ୍କ ଦ୍ୱାରା ତିଆରୀ ହୋଇଥିବା ଏହି ଅମର କୀର୍ତ୍ତି କାଳକାଳକୁ ମାନବ ସମାଜପାଇଁ ଏକ ମହାନ ଦାନ ହୋଇ ରହିଥିବ । ତତ୍‌ପରେ ସେହି ସହରର ଗାୟତ୍ରୀ ଦେବୀ ଓ ବୀର ହନୁମାନଙ୍କ ମନ୍ଦିରକୁ ମଧ ଦର୍ଶନ କରି ଯାଇଥିଲୁ । ପୋର ବନ୍ଦର ଗୁଜୁରାଟର ଏକ କ୍ଷୁଦ୍ର ବନ୍ଦର । ଗୁଜୁରାଟ ସମୁଦ୍ର କୂଳରେ ଏକ ରାଜ୍ୟ ହୋଇଥିବାରୁ ଏଭଳି ବହୁ ଛୋଟ ବନ୍ଦର ସେଠାରେ ରହିଅଛି । ମଧ୍ୟାହ୍ନ ଭୋଜନ ପରେ ଅପରାହ୍ଣ ୪ଟା ବେଳେ ପୋର ବନ୍ଦରଠାରେ ଥିବା ଏକଛୋଟ ବିମାନଘାଟିକୁ ଗଲୁଁ । ଏତେ ଛୋଟ ବିମାନଘାଟି କଦାପି ମୁଁ ପୂର୍ବରୁ ଦେଖି ନ ଥିଲି । କିଛି ସମୟପରେ ବମ୍ବେରୁ ଆସିଥିବା ଏକ ଛୋଟ ଉଡ଼ାଜାହାଜରେ ଆମେ ସମସ୍ତେ ବମ୍ବେ ଯାତ୍ରା କଲୁଁ । ମହରାରାଷ୍ଟ୍ର ସରକାରଙ୍କର ଜଣେ ଅଫିସର ଆମକୁ ବମ୍ବେ ବିମାନ ଘାଟିରୁ ଏକ ସରକାରୀ ଅତିଥିଶାଳାକୁ ନେଇଗଲେ ଓ ଆମେ ସେଦିନ ମହାରାଷ୍ଟ୍ର ସରକାରଙ୍କ ଅତିଥି ହୋଇ ରହିଲୁଁ ।

## ବମ୍ବେ ସହର

ବମ୍ବେ ମହାନଗରୀକୁ ଏଥି ପୂର୍ବରୁ ବହୁବାର ଯାଇଛି । ମହାରାଷ୍ଟ୍ରର ପୁନାଠାରେ ପ୍ରାୟ ୧୯୫୮/୧୯୫୯ ମସିହାରେ ପ୍ରଜା ସୋଶାଲିଷ୍ଟ ପାର୍ଟିର ଏକ ଅଧିବେଶନରେ ଯୋଗ ଦେବାକୁ ପ୍ରଥମଥର ଯାଇଥିବା ବେଳେ ଓଡ଼ିଶାର ପ୍ରତିନିଧିମାନେ ବମ୍ବେ ଓ ହାଇଦ୍ରାବାଦ ହୋଇ ଫେରିଲୁ । କିନ୍ତୁ ସେତେବେଳେ ଏ ସବୁସ୍ଥାନ ବୁଲି ଦେଖିବାର ସୁଯୋଗ ମିଳିନଥିଲା । ସେଠାକାର ଯେଉଁଠାରେ Hanging Garden ଅଛି । ତାହା ତଳେ ବିରାଟ ଜଳଭଣ୍ଡର ରହିଛି । ସେଠାରୁ ସହରକୁ ପିଇବାପାଣି ଯୋଗାଣ ହୁଏ । ଉପରେ ଏକ ଅତି ମନୋରମ ବଗିଚା । ନାନା ଜାତିର ଫୁଲ ତଥା ଗଛମାନଙ୍କରେ ପରିପୂର୍ଣ୍ଣ ବହୁ ଖର୍ଚ୍ଚରେ ବଗିଚାଟି ଅତି ସୁନ୍ଦରଭାବେ ସଂରକ୍ଷଣ କରାଯାଇଛି । ତତ୍‌ପରେ Gate way of India ଦେଖିବାକୁ ଗଲୁଁ । ଇଂରେଜଙ୍କ ସରକାରଙ୍କ ସମୟରେ ଜଳପଥରେ ଭାରତ ଆସିବାକୁ ହେଲେ ପ୍ରଥମେ ଏହି ସ୍ଥାନରେ ପହଞ୍ଚି ଅନ୍ୟ ଆଡକୁ ଯିବାକୁ ହେଉଥିବାରୁ ଏଠାରେ ଏକ ଗେଟ ତିଆରି କରି ତା'ର ନାମ Gate way of India ରଖାଯାଇଥିଲା । ଦିଲ୍ଲୀର India gate ଠାରୁ ଏହା ଭିନ୍ନ । ଏଠାରେ ଅନେକ ଛୋଟ ବୋଟ୍ ଓ ଡଙ୍ଗାରେ ଲୋକେ ସମୁଦ୍ର ମଧକୁ ବୁଲିବାକୁ ଯାଇ ଆନନ୍ଦ କରୁଥିବାର ଦେଖିଲୁ । ନିକଟରେ ଟାଟା କମ୍ପାନୀର ଏକ ନଭଶ୍ଚୁମ୍ବୀ ଆଧୁନିକ ପଞ୍ଚ ତାରକା ବିଶିଷ୍ଟ ହୋଟେଲ । ତତ୍‌ପରେ ବମ୍ବେ ସହରର ଅପର ପାର୍ଶ୍ୱରେ ବସତି ସ୍ଥାପନ କରି ରହିଥିବା ଓଡ଼ିଆମାନଙ୍କ ଅଞ୍ଚଳକୁ ମୁଁ ଓ ଆମ ଉପାଧ୍ୟକ୍ଷ ଚିନ୍ତାମଣି ବାବୁ ଯାଇଥିଲୁଁ । ବିଚ୍ଛିନ୍ନାଞ୍ଚଳ ଓଡ଼ିଆ ଓ ଭାରତରେ ଅନ୍ୟତ୍ର ରହୁଥିବା ଓଡ଼ିଆ ମାନଙ୍କ ଶିକ୍ଷା, ସଂସ୍କୃତି ଓ ଭାଷାର ସୁରକ୍ଷା ଦିଗରେ ସରକାରଙ୍କୁ ପରାମର୍ଶ ଦେବାପାଇଁ ଗଠନ ହୋଇଥିବା ଓଡ଼ିଶା ବିଧାନସଭାର ଗୃହକମିଟିର ମୁଁ ସଭାପତି । ତେଣୁ ସେଠାକାର ଓଡ଼ିଆ ଲୋକଙ୍କର ଅବସ୍ଥା ଦେଖାଇବା ଉଦ୍ଦେଶ୍ୟରେ ମୋତେ ସେଠାକୁ ନିଆଯାଇଥିଲା । ବମ୍ବେ ସହରର ବିଭିନ୍ନ କାରଖାନା, ବାଣିଜ୍ୟ କେନ୍ଦ୍ର ଏବଂ ଅନ୍ୟ ସରକାରୀ ସଂସ୍ଥା ମାନଙ୍କରେ କାମ କରୁଥିବା ଓଡ଼ିଆ ଲୋକଙ୍କ ସଂଖ୍ୟା ପ୍ରାୟ ୨୫ ହଜାର । ସେଥି ମଧ୍ୟରୁ ଅଧିକାଂଶ ଲୋକେ ଏହିଠାରେ ରହନ୍ତି । ଏଠାରେ ସେମାନେ ଏକ ଓଡ଼ିଆ ମଧ ଇଂରାଜୀ ଓ ପରେ ତାକୁ ଉଚ୍ଚ ବିଦ୍ୟାଳୟରେ ପରିଣତ କରିଥିବାର ଦେଖିଲି । ଓଡ଼ିଶାର ମୁଖ୍ୟମନ୍ତ୍ରୀ କେତେବର୍ଷ ପୂର୍ବେ ଏଠାକୁ ଆସି ଏହି ଅନୁଷ୍ଠାନ ପାଇଁ ଏକ ଲକ୍ଷ ଟଙ୍କା ଦାନ କରୁଥିବାର ଶୁଣି ଆନନ୍ଦିତ ହେଲି । ସେହି ଟଙ୍କାରେ ଅନୁଷ୍ଠାନଟିକୁ ପୂର୍ଣ୍ଣାଙ୍ଗ କରିପାରି ନ ଥିବାରୁ ଆଉ କିଛି ଅର୍ଥ ଓଡ଼ିଶା ସରକାରଙ୍କ ଠାରୁ ମଗାଯାଇଥିବା କଥା ଶୁଣିଲି । ସେଠାରେ ସେମାନେ ସ୍ଥାନଭାବରୁ ଅତି ଦୟନୀୟ ଅବସ୍ଥାରେ ରହିଥିବାର ଜାଣି ଦୁଃଖ ଲାଗିଲା । ସେଠାରୁ ଫେରି ମଧ୍ୟାହ୍ନ ଭୋଜନ ପରେ ବମ୍ବେ ଉଡ଼ାଜାହାଜ ଷ୍ଟେସନକୁ ଆସିଲି ଓ ୫ଟା ବେଳେ ଅହମଦବାଦ ଯାତ୍ରା କଲି । ରାତ୍ରି ପ୍ରାୟ ୯ଟା ବେଳେ ଅହମଦାବାଦ ଉଡ଼ାଜାହାଜ ଷ୍ଟେସନରୁ ଯାଇ ସେଠାକାର ସରକାରୀ ଅତିଥିଶାଳାରେ ଅବସ୍ଥାନ କଲି । ଏହି ଗସ୍ତ ବେଳକୁ ଆମ ସଙ୍ଗେ ଚିନ୍ତାମଣିବାବୁ ନ ଥିଲେ । ସେ ବମ୍ବେରୁ ଓଡ଼ିଶା ଫେରି ଯାଇଥିଲେ ।

# ଅହମଦାବାଦ ଓ ଗାନ୍ଧୀନଗର ଦର୍ଶନ

୨୯-୧୦-୮୬ ତାରିଖ ସକାଳେ ପ୍ରଥମେ ମହାତ୍ମାଗାନ୍ଧୀଙ୍କ ସାଧନାର ତପୋବନ ପବିତ୍ର ସାବରମତୀ ଆଶ୍ରମ ଦେଖିବାକୁ ଗଲି । ସେଠାରେ ପହଞ୍ଚିବା ମାତ୍ରେ ଆଶ୍ରମର ମ୍ୟାନେଜର; ଜଣେ ସରକାରୀ କର୍ମଚାରୀ, ମୋତେ, ମୋ ସ୍ତ୍ରୀ ଓ ମୋର ସହକାରୀ (P.A.) ଙ୍କୁ ପାଛୋଟି ନେଇ ଆଶ୍ରମର ସମସ୍ତ ଘର ଓ କୋଠରୀ ଗୁଡ଼ିକ ଦେଖାଇଲେ । ମହାତ୍ମା ଗାନ୍ଧୀ ଆଫ୍ରିକାରୁ ଭାରତ ଫେରି ଭାରତୀୟ ଜାତୀୟ ଆନ୍ଦୋଳନରେ କିଛି ଦିନ ଯୋଗ ଦେଲାପରେ ୧୯୨୭ ମସିହାରେ ଗୁଜୁରାଟର ସାବରମତୀ ନଦୀ କୂଳରେ ଅହମଦାବାଦ ସହରଠାରୁ ଟିକିଏ ଦୂରରେ ଏକ ଜଙ୍ଗଲ ପରିବେଷ୍ଟିତ ନିଛାଟିଆ ସ୍ଥାନରେ ଏହି ଆଶ୍ରମ ପ୍ରତିଷ୍ଠାନ କରି ଏହି ଠାରୁ ତାଙ୍କ ସତ୍ୟ ଅହିଂସାର ବାଣୀ ପ୍ରଚାର କରି ଭାରତର ଜନ ମାନସରେ ଏକ ନୂତନ ଦିଗଦର୍ଶନର ଛାପ ପକାଇ ପାରିଥିଲେ ବର୍ତ୍ତମାନ ସେଠାରେ ଜଙ୍ଗଲ ନାହିଁ କିମ୍ବା ନଦୀରେ ଜଳ ନାହିଁ । ସହର କ୍ରମେ ବଢ଼ି ବଢ଼ି ଏଥି ସହିତ ସଂଯୋଗ ହୋଇ ଗଲାଣି । ଏହି ଆଶ୍ରମରେ ବୁଲୁଥିଲା ବେଳେ ମହାତ୍ମାଗାନ୍ଧୀଙ୍କ ଜାତୀୟ ଆନ୍ଦୋଳନ ବେଳର ବହୁ ଫଟୋଚିତ୍ର ଓ ତାଙ୍କ ବହୁ ଉପାଦେଶ ବାଣୀ ଓ ଦେଶବିଦେଶରୁ ତାଙ୍କ ସଂପର୍କୀୟ ଆସିଥିବା ବିଭିନ୍ନ ଲେଖା ସେଠାରେ ସଂରକ୍ଷିତ କରାଯାଇ ସରକାରୀ ଦାୟିତ୍ୱରେ ରଖାଯାଇଛି । ମହାତ୍ମାଗାନ୍ଧୀଙ୍କ ସମୟରେ ଜଣେ ବୃଦ୍ଧ କର୍ମୀ ଏକ ଘର ବାରଣ୍ଡାରେ ସୂତା କାଟୁଥିବାର ଦେଖିଲି ।

ଭାରତୀୟ ଜାତୀୟ ଆନ୍ଦୋଳନର ଏକ ପ୍ରସିଦ୍ଧ ଏବଂ ପବିତ୍ର ସ୍ମାରକୀ, ଏହି ସାବରମତୀ ଆଶ୍ରମ ଦେଖିବାର ମୋର ବହୁ ଦିନର ଅଭିଳାଷ ପୂରଣ ହୋଇଥିବାରୁ ନିଜକୁ ଧନ୍ୟ ମନେ କଲି । ମହାତ୍ମା ଗାନ୍ଧୀ ଭାରତର ମୁକ୍ତି ଆନ୍ଦୋଳନର ପ୍ରେରଣା ହୋଇ ଯେ କେବଳ ରାଜନୈତିକ ଚେତନା ସୃଷ୍ଟି କରିଥିଲେ ତାହା ନୁହେଁ, ସେ ପ୍ରତ୍ୟେକ ଭାରତବାସୀଙ୍କୁ ସ୍ୱବଲମ୍ବୀ ହେବାପାଇଁ ଯେଉଁ ଗଠନ ମୂଳକ କାର୍ଯ୍ୟକ୍ରମ ଦେଶବାସୀଙ୍କ ଆଗରେ ରଖିଥିଲେ ତାହା ମଧ ଏହି ଆଶ୍ରମରୁ ଆରମ୍ଭ ହୋଇଥିଲା । ସାବରମତୀ ଆଶ୍ରମର ଅତି ନିକଟରେ ଗ୍ରାମ୍ୟଶିଳ୍ପ ରୂପେ ପ୍ରତିଷ୍ଠା ଲାଭ କରିଥିବା କାଗଜ, ସାବୁନ ତିଆରି କାରଖାନା ଖଦୀ ଗ୍ରାମୋଦ୍ୟୋଗ ଶିଳ୍ପ ଗୁଡ଼ିକ ମଧ ଦେଖିବାକୁ ଗଲି । ଉକ୍ତ କାଗଜ ଓ ସାବୁନ କାରଖାନା ଏବେ ସରକାରୀ ଉଦ୍ୟୋଗ ଭାବେ ସରକାରଙ୍କ ଦାୟିତ୍ୱରେ ପରିଚାଳିତ ହୋଇ ଏକ ଉନ୍ନତ ଅବସ୍ଥାକୁ ଅଣାଯାଇଛି । ତତପରେ ସେଠାକାର ଖଦୀଭଣ୍ଡାରକୁଯାଇ କିଛି ଖଦୀ ମଧ କଣିଲି । ଏହାପରେ ସ୍ଥିରୀକୃତ କାର୍ଯ୍ୟକ୍ରମ ଅନୁଯାୟୀ ଏବେକାର ଗୁଜୁରାଟର ନୂତନ ରାଜଧାନୀ ଗାନ୍ଧୀନଗରର ଅତିଥିଶାଳାକୁ ଆସିଲୁଁ । ଏହାପ୍ରାୟ ୧୫ କି.ମି. ଦୂର ଅହମଦବାଦଠାରୁ' ରାଜଧାନୀର ନିର୍ମାଣକାର୍ଯ୍ୟ ସଂପୂର୍ଣ୍ଣ ହୋଇ ନ ଥିବାରୁ ସମସ୍ତ ଅଫିସ ଅହମଦାବାଦରୁ ଏଠାକୁ ଆସିନାହିଁ । ଭବିଷ୍ୟତର ଅଭିବୃଦ୍ଧିକୁ ବିଚାର କରାଯାଇ ଯୋଜନା ବଦ୍ଧ ଭାବେ ନୂତନ ରାଜଧାନୀର ସରକାରୀ ଗୃହ ରାସ୍ତା ଗୁଡ଼ିକ ଏବଂ ବିଭିନ୍ନ ଅନୁଷ୍ଠାନ ଗୁଡ଼ିକ ନିର୍ମାଣ କରାଯାଉଥିବାର ଦେଖିଲି । ସେଠାରେ ପହଞ୍ଚିବା ପରେ ଗୁଜୁରାଟର ବାଚସ୍ପତି, ମୋର ବନ୍ଧୁ ଶ୍ରୀ ନଟବରଲାଲ ଶାହାଙ୍କ ମଧାହ୍ନ ଭୋଜନକୁ ନିମନ୍ତ୍ରଣ ପାଇଲି । ଉକ୍ତ ଅତିଥିଶାଳାର ଅନ୍ୟ ଏକ ଅଂଶରେ ଏଥିପାଇଁ ବ୍ୟବସ୍ଥା ହୋଇଥିଲା । ମୁଁ ଓ ମୋର ସ୍ତ୍ରୀ ସେଠାରେ ପହଞ୍ଚିବା ମାତ୍ରେ ନଟବର ବାବୁଙ୍କ ସଙ୍ଗେ ଓ ତାଙ୍କ ମନ୍ତ୍ରୀ ମଣ୍ଡଳର କେତେଜଣ ସଭ୍ୟ ଓ ଗୁଜୁରାଟ ବିଧାନ ସଭାର ବିରୋଧୀ ଦଳର ନେତା ଶ୍ରୀ ଚିମନଭାଇ ପଟେଲଙ୍କ ଦେଖା ହେଲା । କିଛି ସମୟ ଧରି ଅଳ୍ପ କିଛି ରାଜନୈତିକ ଆଲୋଚନା କଲାପରେ ମଧାହ୍ନ ଭୋଜନରେ ଯୋଗ ଦେଲୁ । ତତ୍‌ପରେ ନଟବର ବାବୁଙ୍କ ଅନୁରୋଧ କ୍ରମେ ତାଙ୍କ ନୂତନ ବିଧାନସଭା ଗୃହ ବୁଲିବାକୁ ଗଲୁ । ସେଠାକୁ ତାଙ୍କ ଅଫିସ ଅନେକ ଦିନରୁ ଉଠି ଆସିଥାଏ । ସେ ମୋତେ ବିଧାନ ସଭା ତଥା ଅନ୍ୟ ସମସ୍ତ କମିଟି ବୈଠକ ପାଇଁ ଉଦ୍ଦିଷ୍ଟ କୋଠରୀ ଗୁଡ଼ିକ ବୁଲି ଦେଖାଇଲେ । ସେଠାକୁ ବିଧାନସଭା ବେଶିଦିନ ହେଲା ବସି ନ ଥିବାରୁ ତହିଁର ଚାରିପାଖେ ସେପରି ବୃକ୍ଷଲତା ଓ ଫୁଲ ବଗିଚା ହୋଇନାହିଁ । ସେ ଦିଗରେ ଉଦ୍ୟମ ଆରମ୍ଭ ହୋଇ ଥିବାର ଦେଖାଗଲା । ତତ୍‌ପରେ ସେଠାରୁ ବିଦାୟ

ନେଇ ଅତିଥିଶାଳାକୁ ଆସିଲୁ ଓ ସନ୍ଧ୍ୟା ୬ଟା ବେଳକୁ ଉଡ଼ାଜାହାଜ ଷ୍ଟେସନକୁ ଆସିଲୁ । ସେଦିନ ଉଡ଼ାଜାହାଜ ଦୁଇଘଣ୍ଟା ବିଳମ୍ବ ଥିଲା । ତେଣୁ ଅହମଦବାଦରୁ ଉଡ଼ାଜାହାଜ ଯୋଗେ ଜୟପୁର ପହଞ୍ଚିଲା ବେଳକୁ ରାତି ପ୍ରାୟ ୧୨ଟା ହୋଇଯାଇଥିଲା । ଷ୍ଟେସନରୁ ଆମକୁ ଅଣା ଯାଇ ସେଠା ଅତିଥିଶାଳାରେ ରଖାଗଲା ।

## ଜୟପୁର ଓ ଅମ୍ବର

ସକାଳ ୯ଟା ବେଳକକୁ ପ୍ରସ୍ତୁତ ହୋଇଗଲୁ । ପୂର୍ବଦିନରୁ ଆଜିର ବୁଲିବା କାର୍ଯ୍ୟକ୍ରମ ସ୍ଥିର ହୋଇଥିଲା । ଅତିଥିଶାଳାଟି ବେଶ ବଡ଼ । ରାଜଶାସନ ଅମଳରୁ ଏହି ସ୍ଥାନଟି ବୃକ୍ଷଲତା ଓ ଫୁଲ ଗଛରେ ପରିପୂର୍ଣ୍ଣ । ପ୍ରଥମେ ସକାଳେ ସେଠାକାର ପ୍ରସିଦ୍ଧ ଗଣେଶ ମୂର୍ତ୍ତି ଓ କେତେକ ସ୍ଥାନରେ ହନୁମାନ ମୂର୍ତ୍ତି ରଖାଯାଇଥିବାର ଆମ୍ଭେ ଦେଖିଲୁଁ । ଗଣେଶ ମନ୍ଦିର ପରେ ୧୮୦୦ ଖ୍ରୀଷ୍ଟାବ୍ଦରେ ସେଠାକାର ରାଜା ଜଣେ ବଡ଼ ଜ୍ୟୋତିର୍ବିଦ ଥିବାରୁ ସେ ତାରା ନକ୍ଷତ୍ରଙ୍କ ଗଣନା ପାଇଁ ତାଙ୍କ ନିଜ ଉଦ୍ଭାବିତ କେତେକ ଯନ୍ତ୍ରପାତି ସେଠାରେ ରଖାଯାଇଥିବା ଦେଖିଲୁ । ସେଠାରେ ଗ୍ରହ ନକ୍ଷତ୍ର ଓ ସୂର୍ଯ୍ୟଙ୍କ ଗଣନା କରିବା ଉଦ୍ଦେଶ୍ୟରେ ଚିତ୍ର ମାନ ରଖାଯାଇଛି । ଅନେକ ପରିବ୍ରାଜକ ଭାରତବର୍ଷର ବିଭିନ୍ନ ଆଡ଼ୁ ଆସି ସେସବୁ ଦେଖୁଥିବାର ଆମେ ଦେଖିଲୁ । ତତ୍‌ପରେ ଜୟପୁର ମହାରାଜାଙ୍କ ବିଖ୍ୟାତ City Palace (ରାଜପ୍ରସାଦ) ଦେଖିବାକୁ ଗଲୁ । ଭାରତର ବିଭିନ୍ନ ଦର୍ଶନୀୟ ସ୍ଥାନ ମଧ୍ୟରେ ଜୟପୁରର ରାଜପ୍ରସାଦ ଅନ୍ୟତମ । ଛଅମହଲା ବିଶିଷ୍ଟ ଏହି ସୁନ୍ଦର ରାଜପ୍ରସାଦ ଦେଖିଲା ପରେ ରାଜପ୍ରସାଦର ଅନ୍ୟ ଅଂଶରେ ବିଭିନ୍ନ କୋଠରୀ ମାନଙ୍କରେ ଏକ ଟ୍ରଷ୍ଟ ଦ୍ୱାରା ସଂରକ୍ଷିତ ହୋଇଥିବା ଯୁଦ୍ଧ ପୋଷାକ, ଅସ୍ତ୍ରଶସ୍ତ୍ର (ଖଣ୍ଡା ବର୍ଚ୍ଛା ଇତ୍ୟାଦି) ଏବଂ ଏକ Arts gallery ମଧ୍ୟ ଦେଖିଲୁ । ସେଠାରେ ରଖାଯାଇଥିବା ତମ୍ବାରେ ତିଆରି ଏକ ବଡ଼ ହଣ୍ଡା ସମ୍ପର୍କରେ ଆମକୁ ଏସବୁ ବୁଲାଇ ଦେଖାଉଥିବା ଲୋକଠାରୁ ଜାଣିଲୁ ଯେ ବହୁଦିନ ପୂର୍ବେ ସେତେବେଳର ଜୟପୁରର ମହାରାଜା ଲଣ୍ଡନ ଯାଇଥିଲା ବେଳେ ଏହି ପାତ୍ରରେ ଭାରତବର୍ଷରୁ ଗଙ୍ଗା ପାଣି ନେଇ ଯାଇଥିଲେ ଏବଂ ମହାରାଜା ସେଠାରେ ଥିବା ପର୍ଯ୍ୟନ୍ତ ଏହି ପାତ୍ରରେ ନିଆଯାଇଥିବା ଗଙ୍ଗାପାଣି ବ୍ୟବହାର କରୁଥିଲେ । ପ୍ରସାଦର ଅନ୍ୟ ଅଂଶରେ ମହାରାଣୀ ଓ ରାଜପରିବାର ଲୋକେ ରହିଥିବାର ଶୁଣିଲୁ । ଏହାପରେ ଜୟପୁର ଠାରୁ ପ୍ରାୟ ୧୦/୧୫ କିଲୋମିଟର ଦୂରରେ ଅବସ୍ଥିତ ବିଖ୍ୟାତ୍ ଅମ୍ବର ଦୁର୍ଗ ଦେଖିବାକୁ ଗଲୁ । ଏହା ଜୟପୁର ରାଜାଙ୍କର ପୂର୍ବତନ ଗଡ଼ ଓ ରାଜଧାନୀ ଥିଲା । ୧୬୦୦ ମସିହା ଶେଷ ପର୍ଯ୍ୟନ୍ତ ଅମ୍ବର ଥିଲା ଜୟପୁର ରାଜ୍ୟର ରାଜଧାନୀ । ଆରାବଲ୍ଲୀ ପର୍ବତ ମାଳାର ଏକ ଉଚ୍ଚ ପର୍ବତ ଉପରେ ଏହି ଦୁର୍ଗ ଓ ରାଜପ୍ରସାଦ ତିଆରି ହୋଇଛି । ପର୍ବତ ତଳୁ ପ୍ରାୟ ୨/୩ କ.ମି.ର ରାସ୍ତା ବିନା ଯାନବାହନରେ ଚାଲିକରି ସେଠାରେ ପହଞ୍ଚିବା କଷ୍ଟସାଧ୍ୟ । ପ୍ରସାଦର କୋଠରୀ ଗୁଡ଼ିକ ଅତି ମୂଲ୍ୟବାନ ମାର୍ବଲ ପଥରରେ ତିଆରି । ରାଣୀ ଓ ମହାରାଣୀ ପ୍ରତ୍ୟେକଙ୍କ ଭିନ୍ନ ଭିନ୍ନ କୋଠରୀ, ମହାରାଜାଙ୍କ ରହିବା ସ୍ଥାନ ଅତି ସୌଖୀନ ଭାବେ ତିଆରି । ସୁଡ଼ଙ୍ଗ ଗୁଡ଼ିକ ବଡ଼ କୌଶଳରେ ତିଆରି । ସୈନ୍ୟ ଓ ପ୍ରହରୀ ମାନଙ୍କ ସ୍ଥାନ ବିଭିନ୍ନ Strategical position ରେ ରହିଛି ଠିକ ଦୁର୍ଗର ପ୍ରାଚୀର ଗୁଡ଼ିକୁ ଲାଗି । ପ୍ରାୟ ୪୦୦ ବର୍ଷ ତଳେ ଅମ୍ବର ରାଜା ମାନସିଂ ଏହି ଦୁର୍ଗ ଓ ରାଜପ୍ରସାଦ ତିଆରି କରିଥିବା ଇତିହାସରୁ ଜଣାଯାଏ । ସେତେବେଳେ ବୈଷୟିକ ଜ୍ଞାନ ଓ ଆଧୁନିକ ଯନ୍ତ୍ରପାତିର ସେପରି ଉଦ୍‌ଭାବନ ହୋଇ ନ ଥିଲେ ହେଁ ଏତେ ଉଚ୍ଚ ଓ ଦୂରକୁ ଏତେ ମୂଲ୍ୟବାନ ପଥର କିପରି ଅଣାଯାଇ ଏତେ ବଡ ଦୁର୍ଗ ତିଆରି କରାଯାଇ ଥିଲା ତାହା ଚିନ୍ତାକଲେ ଆଶ୍ଚର୍ଯ୍ୟ ହେବାକୁ ପଡ଼େ । ସେହି ପ୍ରସାଦ ମଧ୍ୟରେ ଏକ କାଳୀ ମନ୍ଦିର ଥିବାର ଦେଖିଲି । ବୋଧହୁଏ ମା'କାଳୀ ସେହିଦିନୁ ମହାରାଜାଙ୍କ ଅଧିଷ୍ଠାତ୍ରୀ ଦେବୀ ଭାବେ ପୂଜାପାଇ ଆସୁଛନ୍ତି । ଏବେ ରାଜା ନ ଥିଲେ ମଧ୍ୟ ତାହା ପୂର୍ବପରି ପରିଚାଳିତ ହେଉଛି । ଏହି ଦୁର୍ଗଟି ଏକ ପର୍ବତ ଉପରେ ଅବସ୍ଥାପିତ ହୋଇ ଥିଲେ ହେଁ ସେଠାରେ ଗୋଟିଏ ହେଲେ ଗଛ ଥିବାର ଦେଖିଲି ନାହିଁ । ସାରାବର୍ଷ ଏତେ କମ୍ ବର୍ଷା ହେଉଛି ଯେ, ଅକ୍ଟୋବର ମାସରେ ମଧ୍ୟ ପୋଖରୀରେ ଅତିକମ ପାଣି ଥିବାର ଓ କେତେକ ସ୍ଥାନରେ ଆଦୌ ପାଣି ନ ଥିବାର ଦେଖିଲି ।

ଏହି ପର୍ବତ ମାଳର ବିଭିନ୍ନ ପର୍ବତ ଶିଖରରେ ଛୋଟ ବଡ଼ ଦୁର୍ଗ ଭଳି କେତେକ ଘର ପର୍ବତ ଓ ସମତଳ ଅଞ୍ଚଳରେ ବୃକ୍ଷଲତା ନ ଥିବାର କାରଣ ବୁଝିବାରେ ଜଣାଗଲା ଯେ, ଜଳାଭାବରୁ ବୃକ୍ଷରୋପଣ ସମ୍ଭବପର ନୁହେଁ । ଏହି ବିଖ୍ୟାତ ଦୁର୍ଗ ଓ ରାଜପ୍ରସାଦ ଦେଖିବାକୁ ବହୁ ବିଦେଶୀ ପରିବ୍ରାଜକ ମଧ ସେଠାକୁ ଆସିବାର ଦେଖି ଆଶ୍ଚର୍ଯ୍ୟ ହେଲି । ଭାବିଲି ଏହି ଲୋକମାନେ କେତେ ପରିଦର୍ଶନ ପ୍ରିୟ । ତତ୍‌ପରେ ଅତିଥିଶାଳାକୁ ଫେରି ମଧ୍ୟାହ୍ନ ଭୋଜନ କଲୁ ଏବଂ ଅପରାହ୍ନରେ ସେଠାକାର ଖଦୀ ଭଣ୍ଡାରକୁ ଯାଇ କିଛି ଖଦୀ ମଧ କିଣିଲି ।

## ଆଜମୀର ଓ ପୁଷ୍କର ତୀର୍ଥ ଏବଂ ନାରଦାଗଡ଼

ତହିଁ ପରଦିନ ସକାଳ ୮ଟା ବେଳକୁ ସମସ୍ତେ ପ୍ରସ୍ତୁତ ହୋଇ ଐତିହାସିକ ଆଜମୀର ସହର ଅଭିମୁଖେ ବାହାରି ପଡ଼ିଲୁ । ସଙ୍ଗରେ ସରକାରୀ ବିରାପତ୍ରା ଅଫିସର । ଦିନ ୧୦ଟା ପରେ ଆଜମୀର ଅତିଥିଶାଳାରେ ପହଞ୍ଚିଲି । ଆଜମୀର ଜିଲ୍ଲାର ପ୍ରଧାନ କାର୍ଯ୍ୟାଳୟ ଆଜମୀର । ଏହି ରୁକ୍ଷ ଦୃଶ୍ୟ ମୋତେ ବଡ଼ ଖରାପ ଲାଗୁଥାଏ । କାରଣ ଆମ ଓଡ଼ିଶାରେ ଥିବା ପର୍ବତ ଗୁଡ଼ିକର ଦୃଶ୍ୟ, ଏଭଳି କରୁଣ ଓ ଦୟନୀୟ ନୁହେଁ । କୋରାପୁଟ, ଫୁଲବାଣୀ, ଗଞ୍ଜାମ ଓ କଳାହାଣ୍ଡି ଅଞ୍ଚଳର ଅନେକ ପର୍ବତରେ ଗଛ ନ ଥିଲେ ମଧ ଛୋଟ ଗଛ ଓ ଲତା ବା ଗୁଳ୍ମ ଥିବାରୁ ଏଭଳି ରୁକ୍ଷ ହୋଇ ନ ଥାଏ । ଆଜମୀର ସହରର ଲୋକସଂଖ୍ୟା ପ୍ରାୟ ଚାରିଲକ୍ଷ । ଏହି ଜିଲ୍ଲାରୁ ଜୟପୁର ବିଧାନସଭାକୁ ୯ଜଣ ସଭ୍ୟ ନିର୍ବାଚିତ ହୁଅନ୍ତି । ଆଜମୀର Sub-Collector ଜଣେ ମହିଳା । ସେଠାରୁ ପୁରୀ ୧୫/୧୬ କି.ମି. ଦୂରରେ ଥିବା ପୁଜେର ସହରକୁ ସେ ଆମକୁ ନେଇଗଲେ । ଏହା ଏକ ଛୋଟ ସହର । କେତେକ ପର୍ବତମାଳା ପାର ହେବାପରେ ସେଠାରେ ପହଞ୍ଚିଲୁ । ପ୍ରଥମେ ବିଷ୍ଣୁ ମନ୍ଦିରକୁ ଯାଇ ଦର୍ଶନ କଲୁ । ମନ୍ଦିର କାନ୍ଥରେ ଭଗବାନଙ୍କ ବିଭିନ୍ନ ଅବତାର ତୈଳଚିତ୍ର ଅତି ସୁନ୍ଦର ଭାବରେ ଚିତ୍ରିତ ହୋଇଥିବାର ଦେଖିଲୁ । ତତ୍‌ପରେ ନିକଟସ୍ଥ ପୁଷ୍କରିଣୀକୁ ଗଲୁ । ତାହାହିଁ ପ୍ରସିଦ୍ଧ ପୁଷ୍କର ତୀର୍ଥ । ପୁଷ୍କରିଣୀ ଘାଟରେ ଜଣେ ବ୍ରାହ୍ମଣ ନଡ଼ିଆ ପ୍ରଭୃତି ଆବଶ୍ୟକ ପୂଜା ଉପକରଣ ଧରି ଛିଡ଼ା ହୋଇଥିଲେ । ଆମକୁ (ମୋତେ ଓ ମୋ ସ୍ତ୍ରୀକୁ) ଦେଖି ସେ ତାଙ୍କ ଗାମୁଛା ପାହାଚ ଉପରେ ପକେଇ ଦେଇ ଆମକୁ ବସିବାକୁ କହି ଆମ ପୂର୍ବ ପୁରୁଷ ପିତାମାତା ସମେତ ସମସ୍ତଙ୍କ ଉଦ୍ଦେଶ୍ୟରେ ଶ୍ରାଦ୍ଧ ଆରମ୍ଭ କରିଦେଲେ । ନିଜ ପାଖରେ ଥିବା ନଡ଼ିଆଟି ମଧ ପୂଜାରେ ଲଗାଇ ଦେଲେ । ବୋଧ ହୁଏ, ସେଇ ଗୋଟିଏ ନଡ଼ିଆକୁ ସେ ପ୍ରତିଦିନ ଏଭଳି ଶ୍ରାଦ୍ଧ ଓ ପୂଜାରେ ଲଗାଇ ଥାଆନ୍ତି । ଏହି ପୋଖରୀ କୂଳରେ ବ୍ରହ୍ମାଙ୍କ ମନ୍ଦିର ଥିବାରୁ ସେଠାକୁ ଯାଇ ସୃଷ୍ଟିକର୍ତ୍ତା ବ୍ରହ୍ମାଙ୍କ ଓ ତାଙ୍କ ସ୍ତ୍ରୀ ସାବିତ୍ରୀ ମୂର୍ତ୍ତିଦର୍ଶନ କଲୁ । ମୁଁ ଅନେକ ସ୍ଥାନ ଭ୍ରମଣ କରିଛି ମାତ୍ର ବ୍ରହ୍ମାଙ୍କ ମନ୍ଦିର କେବଳ ଏହିଠାରେ ହିଁ ଥିବାର ଦେଖିଲି । ସବୁଠି ବିଷ୍ଣୁ ଓ ଶିବ ମନ୍ଦିର ଅଛି । କିନ୍ତୁ ବ୍ରହ୍ମାଙ୍କ ମନ୍ଦିର ଆଉ କେଉଁଠି ହେଲେ ଦେଖି ନ ଥିଲି । ବ୍ରହ୍ମାଙ୍କ ମୂର୍ତ୍ତିପୂଜା ସମ୍ପର୍କରେ ଅନେକ ପ୍ରକାର କିମ୍ବଦନ୍ତୀ ଥିବାର ଜଣାଯାଏ । ସେଠାରୁ ଆମେ ପୁଣି ଆଜମୀରକୁ ଫେରିଲୁ । ବାଟରୁ ଜଣେ ମୁସଲମାନ ତୀର୍ଥ ସ୍ଥାନକୁ ନେଇଗଲେ । ଏଠାକୁ ହିନ୍ଦୁ ଓ ମୁସଲମାନ ବହୁ ସଂଖ୍ୟାରେ ଆସିଥିବାର ଦେଖି ଆଶ୍ଚର୍ଯ୍ୟ ହେଲି । ପ୍ରତ୍ୟେକଙ୍କୁ (ଆମଭିତରୁ ମୋତେ) ପାଞ୍ଚଟଙ୍କାର ଗୋଲାପ ଫୁଲ ପାଛିଆ ମୁଣ୍ଡରେ ରଖିଯିବାକୁ ପଡ଼ିଲା । ପୂଜା ସ୍ଥାନରେ ଏକ ଲୁଗାତଳେ ମୁଁ ଓ ମୋ ସ୍ତ୍ରୀ ଛିଡ଼ା ହେଲୁ । ମୋ ଗଳାରେ ତାଙ୍କ ଦେବତାଙ୍କ ଏକ କପଡ଼ା ଆଣି ବାନ୍ଧି ଦିଆଗଲା । ଏଠାରେ ହିନ୍ଦୁ ଓ ମୁସଲମାନଙ୍କର ଏକ ମିଳନତୀର୍ଥ ବହୁ ଦିନରୁ ହୋଇ ଆସିଥିବାର ଜାଣିଲୁ ।

ଆଜମୀରର ଶେଷ ରାଜା ଇତିହାସ ପ୍ରସିଦ୍ଧ ପୃଥ୍ୱୀରାଜାଙ୍କ ସମୟରୁ । ଆଜମୀର ରାଜା ପୃଥ୍ୱୀରାଜାଙ୍କ ଉପରେ ପ୍ରତିଶୋଧ ନେବାପାଇଁ ତାଙ୍କର ପରମ ଶତ୍ରୁ ଜୟଚନ୍ଦ୍ର ମହମ୍ମଦ ଘୋରୀଙ୍କୁ ନିମନ୍ତ୍ରଣ କରି ଆଣିଲା ବେଳେ ଆଜମୀର ହିନ୍ଦୁ ଓ ମୁସଲମାନ ଏକତ୍ରିତ ହୋଇ ଆଜମୀର ଆକ୍ରମଣ ନ କରିବାକୁ ମହମ୍ମଦ ଘୋରୀଙ୍କ ଅନୁରୋଧ କରିଥିବାର ଓ ସେହିଦିନୁ ଏହି ମସ୍‌ଜିଦରେ ହିନ୍ଦୁ ଓ ମୁସଲମାନ ଉଭୟେ କୌଣସି ବିଭେଦ ନ ରଖି ପ୍ରାର୍ଥନା ଓ ଦର୍ଶନ ପାଇଁ ସମବେତ ହୋଇ

ଆସୁଛନ୍ତି ବୋଲି ସେଠା ମୌଲନା ମାନଙ୍କଠାରୁ ଶୁଣିବାକୁ ପାଇଲି । ଆହୁରି ଶୁଣିବାକୁ ପାଇଲି ଯେ, ଏ ପର୍ଯ୍ୟନ୍ତ ଏଠାରେ କେବେହେଲେ ହିନ୍ଦୁ ମୁସଲମାନ ମାନଙ୍କ ମଧ୍ୟରେ ବିଭେଦ ଜନିତ ସାଂପ୍ରଦାୟିକ ଗଣ୍ଡଗୋଳ ହୋଇ ନାହିଁ । ଏହା ପ୍ରକୃତରେ ଅତ୍ୟନ୍ତ ତାତପର୍ଯ୍ୟ ପୂର୍ଣ୍ଣ ଆଜମୀର ଅତିଥିଶାଳାରେ ମଧ୍ୟାହ୍ନ ଭୋଜନ ଶେଷ କରି ଅପରାହ୍ଣ ୩ଘଣ୍ଟା ବେଳକୁ ଜୟପୁର ଫେରି ଆସିଥିଲି ସନ୍ଧ୍ୟା ୬ଟା ବେଳକୁ ଜୟପୁର ସହରର ଅନତି ଦୂରରେ ଅବସ୍ଥିତ ନରଗଦାଗଡ଼ ଦେଖିବାକୁ ଯାଇଥିଲି । ଦୁର୍ଗଟି ଠିକ ଅମ୍ବର ଭଳି ଏକ ପର୍ବତ ଉପରେ ହୋଇଥିବା ରାସ୍ତାରେ ୬/୭ କି.ମି. ବୁଲି କରି ଆସିବାକୁ ପଡ଼ିଲା । ତେଣୁ ସେତେବେଳକୁ ଦୁର୍ଗଭିତରକୁ ଥିବା ପ୍ରବେଶ ଦ୍ୱାର ବନ୍ଦ ହୋଇ ଯାଇଥିଲା । ଉପରେ ଦୁର୍ଗ ବାହାରେ ସୈନ୍ୟମାନେ ରହୁଥିବା ସ୍ଥାନରୁ ଜୟପୁର ସହରର ଦୃଶ୍ୟ ବିଶେଷ କରି ସେ ଦିନର ଦ୍ୱୀପାବଳୀ ଉତ୍ସବର ବିଭିନ୍ନ ରଙ୍ଗ ବେରଙ୍ଗ ଆଲୋକ ମାଳାର ଦୃଶ୍ୟ ଅତି ମନୋହର । ସେଦିନ ଅକ୍ଟୋବର ୩୧ ତାରିଖ ଦ୍ୱୀପାବଳୀ ଅମାବାସ୍ୟା ଜୟପୁରରେ ଏହି ଉତ୍ସବ ଅତି ଧୁମଧାମରେ ପାଳିତ ହୁଏ । ସେଠାରୁ ଫେରିଲା ପରେ ରାଜସ୍ଥାନ ବିଧାନସଭାର ଅଧ୍ୟକ୍ଷ ମୋର ପୁରୁଣା ବନ୍ଧୁ ଶ୍ରୀଯୁକ୍ତ ଟେୱାରୀଙ୍କ ଦେଖା ହେବାପରେ ଉଭୟେ ବିଭିନ୍ନ ଅଞ୍ଚଳ ବୁଲି ବିଭିନ୍ନ ରଙ୍ଗର ଆଲୋକ ମାଳାର ହୋଇଥିବା ସାଜସଜା ଦେଖିଲୁ । ଭାରତ ବର୍ଷରେ ବୋଧହୁଏ ଏ ଉତ୍ସବ ଅଧିକ ଉତ୍ସାହରେ ଜୟପୁରରେ ପାଳନ କରାଯାଏ । ତତ୍‌ପରେ ବିଧାନ ସଭା ଅଧ୍ୟକ୍ଷଙ୍କ ନିମନ୍ତ୍ରଣ କ୍ରମେ ଏକ ହୋଟେଲରେ ରାତ୍ରି ଯାପନ କରି ମୁଁ ରହୁଥିବା ଅତିଥିଶାଳାକୁ ଫେରିଲୁ । ସେଠାରେ ଶ୍ରୀ ଟେୱାରୀ ଆମଠାରୁ ବିଦାୟ ନେଲେ ପ୍ରାୟ ରାତି ୧୦ଟାରେ ସେ ଗଲାବେଳେ ପିତଳରେ ତିଆରି ଏକ ମୟୂର ମୋତେ ଉପହାର ଦେଲେ । ତହିଁ ପରଦିନ ଆମେ ବିମାନ ଯୋଗେ ସକାଳ ଓଳି ୧୧ଟା ବେଳକୁ ଦିଲ୍ଲୀ ଫେରିଲୁ । ଉପରଓଳି ଦିଲ୍ଲୀର Indian Institute of Medical Science ଗଲି ଓ ସେଠାରେ ବିଧାନସଭା ସେକ୍ରେଟାରୀ ଶ୍ରୀ ବଳଭଦ୍ର ପାତ୍ର ଚିକିତ୍ସିତ ହେଉଥିବାରୁ ତାଙ୍କୁ ଦେଖିଲୁ । ତହିଁ ପରଦିନ ବିମାନ ଯୋଗେ ଭୁବନେଶ୍ୱର ଫେରି ଆସିଲି ।

## ସମ୍ମିଳନୀରେ ଯୋଗଦାନ ଓ ପୁଣି ଦକ୍ଷିଣ ଭାରତଗ୍ରସ୍ତ

୧୯୮୬ ମସିହା ଡ଼ିସେମ୍ବର ୨୯ ତାରିଖରୁ ୩୧ ତାରିଖ ତିନିଦିନ ଦକ୍ଷିଣ ଭାରତରେ କର୍ଣ୍ଣାଟକ ରାଜ୍ୟର ରାଜଧାନୀ ବାଙ୍ଗାଲୋର ଠାରେ ଏସିଆ ଓ ଆଫ୍ରିକା ତଥା ପୂର୍ବାଞ୍ଚଳ ରାଜ୍ୟଗୋଷ୍ଠୀ ସଂସଦୀୟ ସଂଘର ଆଞ୍ଚଳିକ ସମ୍ମିଳନୀ ହୋଇଥିବାରୁ ଗୋଟିଏ ବର୍ଷରେ ଏ ଥରକୁ ଲଗାଇ ତିନିଥର ଦକ୍ଷିଣଭାରତ ବୁଲି ଯିବାର ସୁଯୋଗ ମିଳିଲା । ଏହା ପୂର୍ବରୁ ପ୍ରଥମେ ବିଧାନସଭା ନୟମାବଳୀ (Rules committe) କମିଟି ତରଫରୁ କେରଳ ରାଜ୍ୟର ରାଜଧାନୀ, ତ୍ରିଭେନ୍ଦ୍ରମ ଆସିଥିଲା ବେଳେ କେତେକ ଅଞ୍ଚଳ ଓ ପୁଣି ଅକ୍ଟୋବର ମାସ ଭାରତର ବିଧାନସଭା ଅଧ୍ୟକ୍ଷଙ୍କ ସମ୍ମିଳନୀ ବେଳେ ଅନ୍ୟ କେତେକ ଅଞ୍ଚଳ ବୁଲିବାର ସୁଯୋଗ ପାଇଥିଲି । ଡ଼ିସେମ୍ବର ୨୭ ତାରିଖରେ ଏହି ଗସ୍ତ କାର୍ଯ୍ୟକ୍ରମ ଆରମ୍ଭ ହେଲା । ସେଦିନ ଭୁବନେଶ୍ୱରରୁ ଛଡ଼ାଜାହାଜ ଯୋଗେ ଆସି ହାଇଦ୍ରାବାଦରେ ପହଞ୍ଚିଲୁ । ସେଠାରେ ଆଦୌଶୀତ ଅନୁଭୁତ ହେଉ ନଥାଏ । ମୋ ସହିତ ମୋ ସ୍ତ୍ରୀ, ମୋ ପ୍ରାଇଭେଟ ସେକ୍ରେଟେରୀ ବୀରେନ୍ଦ୍ର ଓ ବିଧାନସଭା ସେକ୍ରେଟେରୀ ଶ୍ରୀ ବଳଭଦ୍ର ପାତ୍ର ମଧ ଥିଲେ । ଆମେ ଅପରାହ୍ଣ ଘ୫.୩୦ ମିନିଟରେ ହାଇଦ୍ରାବାଦ ଉଡ଼ାଜାହାଜ ଷ୍ଟେସନରେ ଓହ୍ଲାଇଲାପରେ ଆନ୍ଧ୍ର ରାଜ୍ୟ ସରକାରଙ୍କ ଅତିଥିଭାବେ ନେଇ ରଖାଇଲେ । ସେଦିନିନ ସେଠାରୁ ବାଙ୍ଗଲୋର ଯିବା ପାଇଁ କୌଣସି ଉଡ଼ାଜାହାଜ ନ ଥିବାରୁ ଆମକୁ ରାତିଟି ସେଠାରେ କଟାଇବାକୁ ହେବ ଏ କଥା ମୁଁ ଆଗରୁ ଜାଣିଥିଲି । ତେଣୁ ହାଇଦ୍ରାବାଦ ନିକଟରେ ଥିବା ଦର୍ଶନୀୟ ସ୍ଥାନ ପରିଦର୍ଶନ କରିବାର କାର୍ଯ୍ୟକ୍ରମ ରଖିବାକୁ ଅଫିସର ମାନଙ୍କୁ ଜଣାଇଥିଲି । ତଦନଯାୟୀ ତହିଁ ପରଦିନ ଇତିହାସ ପ୍ରସିଦ୍ଧ ପୁରାତନ ଗୋଲକୁଣ୍ଡା ପରିଦର୍ଶନ ପାଇଁ, ମୁଁ ମୋ ସ୍ତ୍ରୀ Private Secretary ଆମକୁ ଯୋଗାଇଥିବା ସରକାରୀ ଗାଡ଼ିରେ ଗଲୁ । ଗୋଲକୁଣ୍ଡା ଦୁର୍ଗ ଏଥିପୂର୍ବରୁ ମୁଁ ଦୁଇଥର ଯାଇଥିଲି । ଏହା ପ୍ରାୟ ୪୦୦ ବର୍ଷ ପୂର୍ବେ ତିଆରି ହୋଇଥିଲା । ସେତେବେଳର ଜଣେ ମୁସଲମାନ ନବାବଙ୍କ ଦ୍ୱାରା ଏହା ନିର୍ମିତ । ଉକ୍ତ ଦୁର୍ଗରୁ ହାଇଦ୍ରାବାଦ ପର୍ଯ୍ୟନ୍ତ ଏକ

ସୁଡଙ୍ଗ ଥିବାର କହନ୍ତି । ଦୁର୍ଗର ଭଗ୍ନାବଶେଷରୁ ଏହାର ମହତ୍ୱ ଓ ଗୁରୁତ୍ୱ ଜଣାପଡ଼େ । ଏହାର ତିନୋଟି ଦ୍ୱାର ପାରହେଲା ପରେ ଏକ ସ୍ଥାନ ଅଛି ସେଠାରେ ଶବ୍ଦ କଲେ କିଛି ଦୂରରେ ଅତି ଉଚ୍ଚରେ ଥିବା ଦୁର୍ଗର ଅନ୍ୟ ଏକ କୋଠରୀରେ ତହିଁର ପ୍ରତିଧ୍ୱନି ଶୁଣାଯାଏ । ଶତ୍ରୁ ଆକ୍ରମଣକୁ ସୂଚାଇ ଦେବାର ଏହା ଏକ ବ୍ୟବସ୍ଥା । ଦୁର୍ଗ ଏବଂ ପ୍ରସାଦ ଉଭୟ ସେଠାରେ ଅଛି । ୪୦୦ ବର୍ଷ ପୂର୍ବେ ସେତେବେଳେ ପ୍ରାସାଦ ମଧ୍ୟରେ ଜଳ ଯୋଗାଇବା ପାଇଁ ନଳଖଞ୍ଜା ଯାଇଥିବାର ଚିହ୍ନ ଏବେ ମଧ୍ୟ ରହିଛି । ଏକ ବିରାଟ ଅଞ୍ଚଳ ଏହି ଦୁର୍ଗ ମଧ୍ୟରେ ରହିଛି । ଏହି ସ୍ଥାନରେ ଚାରିହଜାରରୁ ଅଧିକ ଲୋକ ବାସ କରୁଥିବାର ଦେଖିଲୁ । ସମ୍ରାଟ ଔରଙ୍ଗଜେବ ଏଠା ନବାବଙ୍କୁ ପଦାନତ କରିବା ପାଇଁ ଏହି ଦୁର୍ଗକୁ ଆକ୍ରମଣ କରିଥିଲେ ଓ ବହୁଦିନ ଅବରୋଧ କରି ରଖିଲେ । ଅତି ଦୃଢ ଭାବେ ଦୁର୍ଗ ତିଆରି ହୋଇଥିବାରୁ ସେ ତା ଭିତରକୁ ପ୍ରବେଶ କରିପାରି ନ ଥିଲେ । ତେଣୁ ସେ ଗୋଟିଏ ପାଖ ଦୁର୍ଗର ପ୍ରହରୀକୁ ଅର୍ଥ ପ୍ରଲୋଭନ ଦେଖାଇ ଭିତରକୁ ପ୍ରବେଶ କରି ସେଠାରେ ଥିବା ହୀରା ଭଣ୍ଡାର ପ୍ରଥମେ ଲୁଣ୍ଠନ କରିଥିଲେ । ତତ୍ପରେ ସେଠାରୁ ଫେରି ଅତିଥିଶାଳାରେ ମଧ୍ୟାହ୍ନ ଭୋଜନ କଲୁଁ । ସେଠାରୁ ବାଙ୍ଗାଲୋର ଯିବାକୁ ଥିବାରୁ ବିମାନ ଘାଟିକୁ ବାହାରିଲୁ । ଉଡ଼ାଜାହାଜ ସେଦିନ ୭ଘଣ୍ଟା ବିଳମ୍ବ ଥିବାରୁ ରାତି ୯ଟା ପର୍ଯ୍ୟନ୍ତ ସେଠାକାର ଅତିଥିଶାଳାରେ ରହିଲୁ । ରାତି ପ୍ରାୟ ୧୧ଟା ପର୍ଯ୍ୟନ୍ତ ସେଠାରେ ବସିଲା ପରେ କଲିକତାରୁ ଆସିଥିବା ଜଣେ ପାସେଞ୍ଜରଙ୍କ ଅନୁପସ୍ଥିତି ପାଇଁ ରାତ୍ରି ସାଢେ ୧୨ଟା ପର୍ଯ୍ୟନ୍ତ ଅପେକ୍ଷା କଲି ତାପରେ ଉଡ଼ାଜାହାଜ ଛାଡ଼ିଲା ପରେ ରାତି ପ୍ରାୟ ସାଢେ ଗୋଟାକ ବେଳେ ବାଙ୍ଗାଲୋର ପହଞ୍ଚି ସେଠାରୁ ରାଜ୍ୟ ସରକାରଙ୍କ ଅତିଥିଶାଳାକୁ ଯାଇ ଅବସ୍ଥାନ କଲୁ ।

## ବାଙ୍ଗାଲୋର ସମ୍ମିଳନୀ

ସକାଳ ୧୦ଟା ବେଳକୁ ସମସ୍ତ ପ୍ରତିନିଧି କର୍ଣ୍ଣାଟକ ବିଧାନସଭା ଗୃହର ସମ୍ମିଳନୀ ସ୍ଥାନରେ ପହଞ୍ଚିଲୁ । ସେଠାରେ ଭାରତ, ଆଫ୍ରିକୀୟ ଓ ଦକ୍ଷିଣ ଏସିୟ ଦେଶର ପ୍ରତିନିଧିମାନେ (ଯେଉଁମାନେ C.P.A. ର ସଭ୍ୟ) ଯୋଗ ଦେଇଥିଲେ । ସମ୍ମିଳନୀ ଭାରତର ଲୋକସଭା ଅଧକ୍ଷ ଡାକ୍ତର ବଳରାମ ଝାକରଙ୍କ ସଭାପତିତ୍ୱରେ ଆରମ୍ଭ ହେଲା । ସଭାପତି କାର୍ଯ୍ୟକ୍ରମର ସୂଚନା ଦେବାପରେ ସମସ୍ତ ପ୍ରତିନିଧବଙ୍କ ଏକ ମିଳିତ ଫଟୋ ନିଆଗଲା । ଉପରାଷ୍ଟ୍ରପତି ଶ୍ରୀଯୁକ୍ତ ଆର. ଭେଙ୍କଟରମଣଙ୍କ ଉଦ୍‌ବୋଧନ ଓ ଶ୍ରୀ ଝାକରଙ୍କ ଭାଷଣ ପରେ ସମ୍ମିଳନୀ ଆରମ୍ଭ ହେଲା । ପ୍ରଥମ ଦିନର ଆଲୋଚ୍ୟ ବିଷୟ ଥିଲା "Parliamentariants role in Contemporary society" ଏହାର ଆଲୋଚନା ଚକ୍ରରେ ପ୍ରାରମ୍ଭିକ ଭାଷଣ ଦେଇଥିଲେ କର୍ଣ୍ଣାଟକର ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ରାମକୃଷ୍ଣ ହେଗେଡେ । ସେ ତାଙ୍କ ଭାଷଣରେ ବିଶେଷ କରି ଜଣେ ବିଧାୟକଙ୍କ କର୍ତ୍ତବ୍ୟ ଓ ବର୍ତ୍ତମାନର ତ୍ରୁଟିପୂର୍ଣ୍ଣ ନିର୍ବାଚନ ପ୍ରଣାଳୀର ସଂସ୍କାର ସମ୍ପର୍କରେ ଏକ ପାଣ୍ଡିତ୍ୟ ପୂର୍ଣ୍ଣ ଭାଷଣ ଦେଇଥିଲେ । ଏହାପରେ ଶ୍ରୀ ବଳରାମ ଝାକରଙ୍କ ସଭାପତିତ୍ୱରେ ଆଲୋଚନା ଚକ୍ର ଦୁଇଓଳି ଚାଲି ସନ୍ଧ୍ୟା ୫ଟାରେ ମୁଲତବି ରହିଲା । ଭାରତ ତଥା ବାହାରୁ ଆସିଥିବା ପ୍ରତିନିଧି ମାନେ ଜଣଜଣ କରି ସେଦିନର ଆଲୋଚନା ଚକ୍ରରେ ସମସ୍ତେ ଭାଗ ନେଲେ । ତହିଁ ପରଦିନ ୧୦ଟାରୁ ଅପରାହ୍ନ ୨ଟା ପର୍ଯ୍ୟନ୍ତ ଉପରୋକ୍ତ ଆଲୋଚ୍ୟ ବିଷୟର ଆଲୋଚନା ଚାଲିଲା । ସେଦିନ ମୁଁ ଆଲୋଚନା ଚକ୍ରରେ ଭାଗ ନେଇଥିଲି । ମୋର ଭାଷଣଟି କ୍ଷୁଦ୍ର ହୋଇଥିଲେ ହେଁ ମର୍ମସ୍ପର୍ଶୀ ହୋଇଥିଲା । ମୁଁ ବିଧାୟକ ଜୀବନ ତଥା ରାଜନୀତିକୁ ଏକ ସାଧନା ବୋଲି କହିଥିଲି । ରାଜନୀତି ଏକ ନୈତିକ ଆଦର୍ଶ ଉପରେ ଆଧାରିତ ହେବା ଉଚିତ ବୋଲି ବର୍ଣ୍ଣନା କରି ମୋର ୩୦/୩୫ ବର୍ଷର ବିଧାୟକ ଜୀବନ ତଥା ୪୫ ବର୍ଷର ରାଜନୈତିକ କର୍ମୀ ଭାବରେ ଅଭିଜ୍ଞତା ବର୍ଣ୍ଣନା କରିଥିଲି । ଏହି ଆଲୋଚନାରେ ବହୁ ସଭ୍ୟ ଭାଗ ନେଇଥିଲେ । ଆଲୋଚନା ଅତି ଉଚ୍ଚ କୋଟୀର ହୋଇଥିଲା । ତତ୍ପରେ ଉପରଓଳି ଅନ୍ୟ ଏକ ବିଷୟବସ୍ତୁ "Assurances given by minister is a Parliamentary devices " ଉପରେ ଆଲୋଚନା ଆରମ୍ଭ ହେଲା । ଡକ୍ଟର ବଳରାମ ଝାକରଙ୍କ ସଭାପତିତ୍ୱରେ

ରାଜ୍ୟସଭା ଉପାଧକ୍ଷା ଶ୍ରୀମତୀ ପ୍ରତିଭା ପାଟିଲ ଏହାର key note ପଢିଥିଲେ । ବାହାର ଦେଶର ଅନେକ ପ୍ରତିନିଧି ଭାରତ ପାର୍ଲିଆମେଣ୍ଟ ଏବଂ ବିଧାନସଭା ଅଧ୍ୟକ୍ଷମାନେ ଏହି ଆଲୋଚନାରେ ବିଶେଷ ଭାବେ ଭାଗ ନେଇଥିଲେ । କାରଣ ଏହି ସମସ୍ୟା ସମସ୍ତ ବିଧାନସଭା ଓ ପାର୍ଲିଆମେଣ୍ଟର । ଅନେକ ମନ୍ତ୍ରୀମାନେ କିଛି ସମସ୍ୟାକୁ ଏଡାଇବା ପାଇଁ ଏକ ଅତି ଗୁରୁତ୍ୱପୂର୍ଣ୍ଣ ବିଷୟରେ ବିଚାର କରିବେ କହି ଅଯଥାରେ ଅନେକ ଦିନ ଗଡାଇନେବା ଫଳରେ ବିଷୟର ଗୁରୁତ୍ୱ ଓ ଉଦ୍ଦେଶ୍ୟ ବିଫଳ ହୋଇ ଦେଶର କ୍ଷତି ଘଟେ । ଆମ ଲୋକସଭା ଓ ରାଜ୍ୟସଭା Parliamentary affair ministry ମନ୍ତ୍ରୀଙ୍କ ପ୍ରତିଶ୍ରୁତି ସମ୍ପର୍କରେ ଅନୁଧ୍ୟାନ କରେ ଏବଂ ନିୟମାନୁଯାୟୀ ପ୍ରତିଶ୍ରୁତି ୩ ମାସ ମଧ୍ୟରେ କାର୍ଯ୍ୟାନୁଷ୍ଠାନ କରିବା ଦିଗରେ ସଂପୃକ୍ତ ବିଭାଗକୁ ପ୍ରଭାବିତ କରେ । କିନ୍ତୁ ରାଜ୍ୟ ସ୍ତରରେ ସେଭଳି ମନ୍ତ୍ରଣାଳୟ ନ ଥିବାରୁ ବିଧାନସଭାର ଏକ କମିଟି ମନ୍ତ୍ରୀମାନଙ୍କ ପ୍ରତିଶ୍ରୁତି ଗୁଡ଼ିକ ସଂଗ୍ରହ କରି ସଂପୃକ୍ତ ବିଭାଗକୁ ଡାକି ବା ଦର୍ଶାଇ କାର୍ଯ୍ୟାନୁଷ୍ଠାନ କରାଇବାର ବ୍ୟବସ୍ଥା କରନ୍ତି । ମାତ୍ର କାର୍ଯ୍ୟାନୁଷ୍ଠାନ ନ ହେଲେ କିମ୍ବା ଡ଼େରି ହେଲେ ଏଥିପାଇଁ କିନ୍ତୁ ଦଣ୍ଡ ବ୍ୟବସ୍ଥା ନ କଲେ ସଂସଦୀୟ (Parliamentary) ଶାସନର ଲକ୍ଷ୍ୟ ସମ୍ପୂର୍ଣ୍ଣ ବିଫଳ ହେବ ବୋଲି ମୋତେ କହି ବାକୁ ସୁଯୋଗ ମିଳିବାରେ ସେଦିନ ମୁଁ ଦୃଢ଼ଭାବେ ଉପରୋକ୍ତ ଯୁକ୍ତି ବାଢ଼ିଥିଲି । ଯାହା ଫଳରେ କର୍ଣ୍ଣାଟକଠାରେ ପ୍ରକାଶ ପାଉଥିବା Indian Express ରେ ଭଲଭାବେ ମୋ ଭାଷଣଟି ପ୍ରକାଶ ପାଇଥିଲା । ପ୍ରତିଶ୍ରୁତିର ଖିଲପକୁ ଗୃହର ସମ୍ମାନହାନୀ ଭାବେ ବିଚାର କରାଗଲେ ପ୍ରତିଶ୍ରୁତି ଗୁଡ଼ିକ ନିଶ୍ଚିତଭାବେ କାର୍ଯ୍ୟକାରୀ ହୋଇପାରିବ ବୋଲି ପ୍ରକାଶିତ ହୋଇଥିଲା । ତହିଁ ପରଦିନ ଏହି ବିଷୟଟି ମଧ୍ୟ ଆଲୋଚିତ ହୋଇ ଅପରାହ୍ନ ବେଳକୁ ସମ୍ମିଳନୀରେ ଉତ୍‌ଥାପନ କରାଗଲା । C.P.A. ର ଆଫ୍ରିକୀୟ, ଦକ୍ଷିଣ ଏସିୟ ଓ ଭାରତୀୟ ରାଜ୍ୟଗୋଷ୍ଠୀ ଦେଶ ଗୁଡ଼ିକର ସଂସଦୀୟ ପ୍ରତିନିଧିମାନେ ତିନିଦିନ ଧରି ବେଶ୍ ସୁସ୍ଥ ବାତାବରଣ ମଧ୍ୟରେ ସଂସଦୀୟ ଗଣତାନ୍ତ୍ରିକ ଶାସନର ସଫଳତା ସମ୍ପର୍କରେ ନିଜ ନିଜ ମଧ୍ୟରେ ମତର ଆଦାନ ପ୍ରଦାନ ବେଶ ଫଳପ୍ରଦ ହୋଇଥିଲା । ସମ୍ମିଳନୀ ଶେଷ ହେବାରୁ ବୁଲି garden city ଦେଖିଲୁ । ସହରର ଏକ ପାର୍କରେ ଥିବା, ଏକ ବିଶାଳ କାଚଘର (Glass House) ଅତି ସୁନ୍ଦର ଭାବେ ସୁସଜ୍ଜିତ । ବଗିଚାଟି ବିଭିନ୍ନ ପ୍ରକାର ଗଛ ଓ ଛୋଟ ବଡ଼ ଫୁଲଗଛ ଓ ଜଳ ଫୁଆରା ବ୍ୟବସ୍ଥା ଯୋଗୁଁ ଅତି ମନୋହର ହୋଇଥାଏ । ଏଣୁ ବାଙ୍ଗାଲୋରର ସହରକୁ ଏକ garden City (ବଗିଚା ନଗର) ବୋଲି କହିବାର ଯଥାର୍ଥତା ରହିଛି ।

## ୧୯୮୭ ନୂତନ ବର୍ଷ

ତା ୩୧/୧୨/୮୬ ରିଖ ମଧ୍ୟ ରାତ୍ରିରେ ଆମେ,ରାଜ୍ୟଗୋଷ୍ଠି ସଂସଦୀୟ ପରିଷଦର (C . P . A ) ଆଞ୍ଚଳିକ ସମ୍ମିଳନିର ପ୍ରତିନିଧି (ଭାରତୀୟ, ଦକ୍ଷିଣ ଏସିୟ ଓ ଆଫ୍ରିକୀୟ)ମାନେ ଭାରତରବର୍ଷର ଏକ ମନୋରମ ସହର (garden city) ବୋଲାଉଥିବା ବାଙ୍ଗାଲୋର ସହରର ବିଭିନ୍ନ ଅତିଥିଶାଳା ଗୁଡ଼ିକରେ ଗାଢ଼ ନିଦ୍ରାରେ ସୁପ୍ତ ଥିବା ବେଳେ ନୂତନ ବର୍ଷ ୧୯୮୭ ଆମକୁ ଅଭିବାଦନ ଜଣାଇଥିଲା ।ଆମେ କିନ୍ତୁ ତହା ଜାଣିପାରିନଥିଲୁ ।ତେଣୁ ତହିଁ ପରଦିନ ପ୍ରତ୍ୟୁଷରୁ ଉଠି ପରଷ୍ପରକୁ ବିଶେଷ କରି ଯେଉଁଠାରେ ସ୍ୱାମୀ ଓ ସ୍ତ୍ରୀ ଥିଲେ ଉଭୟ ଉଭୟଙ୍କୁ ଅଭିନନ୍ଦନ ଜଣାଇଲୁ ।

## ପ୍ରସିଦ୍ଧ ଓ ସୁନ୍ଦରସ୍ଥାନମାନ ପରିଦର୍ଶନ

କର୍ଣ୍ଣାଟକ ରାଜ୍ୟର ଇତିହାସ ପ୍ରସିଦ୍ଧ ବିଭିନ୍ନ ସ୍ଥାନ ଓ ଅନ୍ୟ ମନୋରମ ପରିବେଶ ପରିବେଷ୍ଟିତ ସ୍ଥାନ ଗୁଡ଼ିକ ପରିଦର୍ଶନ କରିବା ସମ୍ପର୍କରେ ପୂର୍ବଦିନର ସମସ୍ତଙ୍କୁ ଜଣାଇଦିଆଯାଇଥିଲା । ତଦନୁଯାଇ ସେଦିନ ସାଢ଼େଆଠଟା ବେଳକୁ ପ୍ରସ୍ତୁତ ହୋଇ ତିନୋଟି ଦଳରେ ଆମେ ବୁଲି ବାହାରିଲୁ । ସେଦିନ ଅତିଥିଶାଳାର ବାହାରେ ଆମେ ସମସ୍ତେ ପରଷ୍ପରକୁ ଭେଟି ନବବର୍ଷର ଅଭିନନ୍ଦନ ଜଣାଇଲୁ । ଜାତୀୟ ରାଜପଥର କିଛି ବାଟ ଗଲାପରେ ପ୍ରଥମେ ପ୍ରସିଦ୍ଧ ଶ୍ରୀରଙ୍ଗାପଟ୍ଟମ

ପଡ଼ିଲା ।ସେଠାରେ ଥିବା ଭାରତର ବିଶିଷ୍ଟ ସ୍ୱଧିନତା ସଂଗ୍ରାମୀ ନବାବ ଟିପୁସୁଲତାନଙ୍କ କାଠ ନିର୍ମିତ ପ୍ରସାଦ ଦର୍ଶନ ଉଦ୍ଦେଶ୍ୟରେ ଆମେ ଯାତ୍ରାକଲୁ । ପ୍ରାୟ ଦୁଇଘଣ୍ଟା ଯାତ୍ରା ମଧରେ ରାସ୍ତାର ଉଭୟ ପାଶ୍ୱରେ ଥିବା ଦୁଇଘଣ୍ଟା ଯାତ୍ରା ମଧରେ ରାସ୍ତାର ଉଭୟ ପାର୍ଶ୍ୱରେ ଥିବା ନାରିକେଳ ଜଙ୍ଗଲ ପରିବେଷ୍ଟିତ ଗ୍ରାମମାନ ଅତିକ୍ରମ କରି ଶ୍ରୀରଙ୍ଗପଟ୍ଟମର ଟିପୁସୁଲତାନଙ୍କ କାଷ୍ଟ ନିର୍ମିତ ପ୍ରାସାଦ ନିକଟରେ ପହଞ୍ଚିଲୁ । ଏଥରକୁ ଲଗାଇ ମୋର ଏହି ପ୍ରାସାଦ ପରିଦର୍ଶନ କରିବା ତିନିଥର ହେଲା । ଦକ୍ଷିଣ ଭାରତର ଏହା ଏକ ଇତିହାସ ପ୍ରସିଦ୍ଧ ସ୍ଥାନ । ଇଂରେଜ ମାନଙ୍କ ବିରୁଦ୍ଧରେ ଯେଉଁ ପ୍ରଥମ ସ୍ୱଧୀନତା ସଂଗ୍ରାମ ଆରମ୍ଭ ହୋଇଥିଲା ତାହା ହେଉଛି ସିପାହୀ ବିଦ୍ରୋହ । ଭାରତର ସେତେବେଳର ଏହି ସ୍ମରଣୀୟ ସ୍ୱଧୀନତା ସଂଗ୍ରାମ ବିଦ୍ରୋହର ପରିଚାଳନା କରିଥିବା ଦିଲ୍ଲୀର ଶେଷ ନବାବ ବାହାଦୂର ଶାହା ସମେତ ରାଣୀ ଲକ୍ଷ୍ମୀବାଇ, ତାନ୍ତିଆଟୋପେ, ପ୍ରଭୃତିଙ୍କ ମଧରେ ମହୀଶୂରର ନବାବ ବୀର ଟିପୁସୁଲତାନ ଅନ୍ୟତମ । ଟିପୁଙ୍କ ପିତା ହାଇଦର ଅଲ୍ଲୀ ମଧ ଜଣେ ସ୍ୱଧୀନଚେତା ବ୍ୟକ୍ତି ଥିଲେ । ତାଙ୍କ ରାଜ୍ୟ ସହଜରେ ଇଂରେଜ ମାନଙ୍କ ଅଧିକୃତ ହୋଇ ନ ଥିଲା । ଇଂରେଜମାନଙ୍କ ସହିତ ଟିପୁ ଓ ତାଙ୍କ ସୈନ୍ୟମାନଙ୍କର ହୋଇଥିବା ବିଭିନ୍ନ ଯୁଦ୍ଧର ଚିତ୍ର ଏହି ପ୍ରସାଦର କାନ୍ଥ ଗୁଡିକରେ ଚିତ୍ରିତ ହୋଇଛି । ଟିପୁଙ୍କ ଚିତ୍ର ମଧ ରହିଛି । ଶୁଣାଯାଏ ତାଙ୍କ ଦୁର୍ଗର ପତନ ପରେ ସେ ପଳାଇ ଯାଉଥିବା ଅବସ୍ଥାରେ ତାଙ୍କୁ ଅଚାନକ ଭାବେ ହତ୍ୟା କରାଯାଇଥିଲା ଓ ତାଙ୍କର ପୁତ୍ର ଦୁଇଜଣଙ୍କୁ ଇଂରେଜମାନେ ବନ୍ଦୀ କରି ନେଇ ଯାଇଥିବା ଚିତ୍ର ମଧ ଏଠାରେ ଅଛି । ତାଙ୍କର ମୃତ୍ୟୁପରେ ଏହି ପ୍ରାସାଦରେ ଉକ୍ତ ଚିତ୍ର ଗୁଡ଼ିକ ଅଙ୍କନ କରାଯାଇଛି । ଏହି ପ୍ରାସାଦଟି ଟିପୁଙ୍କର ଗ୍ରୀଷ୍ମକାଳୀନ ଅବସ୍ଥାନ ପାଇଁ ନିର୍ମିତ ହୋଇଥିଲା ।

## ଚାମୁଣ୍ଡା ମନ୍ଦିର ଓ ମହାରାଣୀ ରାଜପ୍ରସାଦ

ତତ୍‌ପରେ ନିକଟସ୍ଥ ଏକ ପର୍ବତ ଶିଖରରେ ଅବସ୍ଥିତ ପ୍ରସିଦ୍ଧ ଚାମୁଣ୍ଡ ମନ୍ଦିରକୁ ଦର୍ଶନ ପାଇଁ ଯାଇଥିଲୁଁ । ଏହି ଉଚ୍ଚ ପର୍ବତ ଉପରେ ବହୁ ସଂଖ୍ୟକ ଦର୍ଶକ (ସ୍ତ୍ରୀ ଓ ପୁରୁଷ) ତଥା ଦେବୀଙ୍କ ଦର୍ଶନ କରିବାର ସୁଯୋଗ ମିଳିଲା । ତେଣୁ ସେଠାରୁ ଦର୍ଶନ କରି ତଳକୁ ମହାରାଣୀ ପ୍ରାସାଦ ନାମରେ ଏକ ରାଜପ୍ରାସାଦକୁ ଆସିଲୁ । ସେଠାରେ କର୍ଣ୍ଣାଟକ ସରକାରଙ୍କ ତରଫରୁ ସମସ୍ତ ପ୍ରତିନିଧିଙ୍କ ମଧାହ୍ନ ଭୋଜନ ବ୍ୟବସ୍ଥା ହୋଇଥିଲା । ତତ୍‌ପରେ ବିଖ୍ୟାତ ମହୀଶୂର ସହର (ମହୀଶୂର ଦେଶୀୟ ରାଜ୍ୟର ରାଜଧାନୀ) କୁ ପହଞ୍ଚି ପ୍ରଥମେ ଚନ୍ଦନ କାଠରୁ ତେଲ ବାହାର ହେଉଥିବା କାରଖାନା ପରିଦର୍ଶନ କରିବା ପାଇଁ ଗଲୁ । ଏହି ଶିଳ୍ପଟି ସରକାରୀ ଉଦ୍ୟୋଗରେ ପରିଚାଳିତ । ମହୀଶୂରରେ ଚନ୍ଦନ ଜଙ୍ଗଲ ଥିବାରୁ ସେଠାରୁ କାଠ ଅଣାଯାଇ ଯନ୍ତ୍ର ସାହାଯ୍ୟରେ ତେଲ ନିଷ୍କାସନ ହୁଏ । ତତ୍‌ପରେ ସେଠାରୁ ସରକାରୀ ସିଲ୍‌କ ଲୁଗା ତିଆରି କାରଖାନକୁ ଗଲୁ । କେତେକ ପ୍ରତିନିଧି ସିଲ୍‌କ ଲୁଗା କିଣିଲେ । ଏହାପରେ ମହୀଶୂର ସହରରେ ଥିବା ମହାରାଜାଙ୍କ ରାଜପ୍ରାସାଦ ପରିଦର୍ଶନ କଲୁ । ଏହା ମୋର ୨ୟ ଥର ପରିଦର୍ଶନ । ଏହି ପ୍ରାସାଦ ୧୮୦୭ ମସିହାରେ ଆରମ୍ଭ ହୋଇ ସମ୍ପୂର୍ଣ୍ଣ ହେବା ପାଇଁ ୨୦ ବର୍ଷ ଲାଗିଥିଲା ' ସେଥିପାଇଁ ସେତେବେଳେ ମୋଟ ୪୩ଲକ୍ଷ ଟଙ୍କା ଖର୍ଚ୍ଚ ହୋଇଥିବାର ଜଣାଯାଏ । ଏହି ପ୍ରାସାଦର କିଛି ଅଂଶ ବର୍ତ୍ତମାନ ମହୀଶୂର ରାଜପରିବାରଙ୍କ ବାସ ସ୍ଥାନ ରୂପେ ବ୍ୟବହାର ପାଇଁ ରଖାଯାଇ ଅବଶିଷ୍ଟ ମୁଖ୍ୟ ଅଂଶ ସରକାରଙ୍କ ନିୟନ୍ତ୍ରଣାଧୀନ ଅଛି । ସେଠାରେ ବିଭିନ୍ନ ପ୍ରକୋଷ୍ଠ ଗୁଡିକରେ ମୂଲ୍ୟବାନ ପୋଷାକ, ଅଳଙ୍କାର, ଯୁଦ୍ଧାସ୍ତ୍ର, ରୂପା କବାଟ ଦ୍ୱାରବନ୍ଦ ଓ ସୁନା ଅଳଙ୍କାର ପ୍ରଭୃତି ଦେଖିବା ପାଇଁ ରଖାଯାଇଛି । ପ୍ରତି କୋଠରୀ ନିକଟରେ ପୋଲିସ ପ୍ରହରୀ ରହିଛନ୍ତି । ଦଶହରା ଦିନ ଏଠାରେ ମହାରାଜା ସମସ୍ତଙ୍କୁ ଦେଖାଦିଅନ୍ତି ।

## ବିଖ୍ୟାତ ବୃନ୍ଦାବନ ଗାର୍ଡେନ

ଏହାପରେ ଭାରତ ପ୍ରସିଦ୍ଧ ବୃନ୍ଦାବନ ଗାର୍ଡେନ ଦେଖିବାପାଇଁ ଗଲୁ । ମହୀଶୂରର ବିଖ୍ୟାତ ଜଣେ ଇଞ୍ଜିନିୟରଙ୍କ

ଦ୍ୱାରା ମହୀଶୂରଠାରୁ ୧୯କି.ମି. ଦୂରରେ ଏକ ବୃହତ ଜଳ ଭଣ୍ଡାରର ନିମ୍ନ ସ୍ଥାନରେ (ବନ୍ଧ ଜଳ ସ୍ଥାନ) ଏହା ନିର୍ମିତ । ଜଳଭଣ୍ଡାରର ଜଳକୁ ନିୟନ୍ତ୍ରିତ କରି ଘାଇ ସ୍ଥାନକୁ ଛଡ଼ାଯିବା ଦ୍ୱାରା ଝରଣା ଭଳି ଜଳସ୍ରୋତ ସୃଷ୍ଟି ହେଉଛି । ଏହି ଜଳ ସ୍ରୋତ ମଧ୍ୟରେ ବିଭିନ୍ନ ରଙ୍ଗର ବିଦ୍ୟୁତ ଆଲୁଅ ଜଳାଇ ଦେବାଦ୍ୱାରା ବୋହି ଯାଉଥିବା ଜଳ ମଧ୍ୟ ରଙ୍ଗ ବେରଙ୍ଗ ଦିଶୁଥାଏ । ଗୋଟିଏ ସ୍ଥାନରେ କେତେଗୁଡିଏ କୃତ୍ରିମ ଜଳ ଫୁଆରା ସୃଷ୍ଟି କରାଯାଇ ତାକୁ ଏଭଳି ଭାବେ ପ୍ରତ୍ୟେକଙ୍କୁ ପ୍ରତ୍ୟେକଙ୍କ ସଙ୍ଗେ ସଂଯୋଗ କରାଯାଇ ନିମନ୍ତ୍ରଣ କରାଯାଇଛି ଯେ ଭାରତ ନାଟ୍ୟମର ତାଳ ସଙ୍ଗେ ତାଳ ପକାଇ ଜଳଫୁଆରା ଜଳଧାରା ଗୁଡ଼ିକ ନୃତ୍ୟ କରୁଅଛି । ଏହା ପ୍ରତ୍ୟେକ ସନ୍ଧ୍ୟାରେ ମାତ୍ର ଅଧଘଣ୍ଟା ପାଇଁ ଦେଖାଯାଏ । ଦୈନିକ ବହୁଲୋକ ଏହି ବିଖ୍ୟାତ ବୃନ୍ଦାବନ ଗାର୍ଡେନକୁ ପରିଦର୍ଶନ କରିବାପାଇଁ ଆସନ୍ତି । ବହୁ ବିଦେଶୀ ପର୍ଯ୍ୟଟକଙ୍କୁ ମଧ୍ୟ ଆମେ ସେଠାରେ ଦେଖିବାକୁ ପାଇଲୁ । ଭାରତୀୟ ଇଞ୍ଜିନିୟରଙ୍କ ଦ୍ୱାରା ହୋଇଥିବା ଏହାର ନିର୍ମାଣ କୌଶଳ ପ୍ରକୃତରେ ପ୍ରଶଂସନୀୟ । ରାତ୍ରିରେ ସମସ୍ତେ ବାଙ୍ଗାଲୋର ଫେରି ଯେଉଁ ହୋଟେଲରେ ଥିଲୁ ସେଠାରେ ରହିଲୁ । ନୂତନ ବର୍ଷ (୧୯୮୭) ର ପ୍ରଥମ ଦିନ ଏ ବର୍ଷ ନିଜସ୍ଥାନ ଓ ରାଜ୍ୟ ବାହାରେ କର୍ଣ୍ଣାଟକର ସୌନ୍ଦର୍ଯ୍ୟମୟୀ ବାଙ୍ଗାଲୋର ସହରରେ କଟିଥିଲା ।

## ମଦୁରାଇ ଓ ପ୍ରସିଦ୍ଧ ମିନାକ୍ଷୀ ମନ୍ଦିର

ସେଠାରୁ ଆମର ମଦୁରାଇ ମିନାକ୍ଷୀ ମନ୍ଦିର ଦର୍ଶନର କାର୍ଯ୍ୟକ୍ରମ ଆଗରୁ ସ୍ଥିର ହୋଇ ତାମିଲନାଡୁ ସରକାରଙ୍କୁ ଜଣାଇ ଦିଆଯାଇଥିଲା । ତଦନୁଯାୟୀ ଆମେ ସେଦିନ ବାଙ୍ଗାଲୋରରୁ ପ୍ରାୟ ଦିନ ଗୋଟାଏ ସମୟରେ ଉଡ଼ାଜାହାଜ ଚଢ଼ି ଅପରାହ୍ନ ୨ଟା ବେଳେ ମଦୁରାଇ ଠାରେ ଓହ୍ଲାଇଲୁ । ସେଠାରେ ଆମପାଇଁ ଉପସ୍ଥିତ ଥିବା ସରକାରୀ ଅଫିସରମାନେ ଆମକୁ ଏକ ଗାଡ଼ିରେ ନିର୍ଦ୍ଧାରିତ ହୋଟେଲକୁ ନେଇ ରହିବାର ବ୍ୟବସ୍ଥା କରାଇଦେଲେ । ସନ୍ଧ୍ୟା ବେଳକୁ ଉକ୍ତ ଅଫିସରଙ୍କ ସହ ଆମେ ପ୍ରସିଦ୍ଧ ମିନାକ୍ଷୀ ମନ୍ଦିରକୁ ଦେବୀଙ୍କ ଦର୍ଶନ ପାଇଁ ଗଲୁ । ମନ୍ଦିରଟି ବେଶ ଉଚ୍ଚ ଓ ବହୁ ଆୟତନ ବିଶିଷ୍ଟ । ମିନାକ୍ଷୀ ଦେବୀଙ୍କ ବ୍ୟତୀତ ଆହୁରି ବହୁ ଦେବଦେବୀଙ୍କ ମୂର୍ତ୍ତି ମଧ୍ୟ ସେଠାରେ ରହି ପୂଜା ପାଇଛନ୍ତି । ସମସ୍ତ ମୂର୍ତ୍ତିର ଆକାର ବଡ ଓ ପୂରାପୂରି ମୁଗୁନି ପଥରରେ ତିଆରି । ଗୋଟିଏ ସ୍ଥାନରେ ଶିବ ପାର୍ବତୀ ବିବାହ ପରର ବିଦାୟ ଲଗ୍ନର ଦୃଶ୍ୟ ରହିଥିବାର ଦେଖିଲୁ । ଏହି ମୂର୍ତ୍ତି ଗୁଡ଼ିକ ବେଶ ଆକର୍ଷଣୀୟ । ସବୁଠି ସ୍ୱତନ୍ତ୍ର ଦର୍ଶନର ବ୍ୟବସ୍ଥା ଥିବାର ଦେଖିଲୁ । ଆମେ ସରକାରୀ ଅତିଥି ହୋଇଥିବାରୁ ଆମକୁ ସବୁଠି ସ୍ୱତନ୍ତ୍ର ଦର୍ଶନର ସୁବିଧା ମିଳିଲା । ଠାକୁର ଠାକୁରାଣୀଙ୍କ ଗଳାରୁ ଫୁଲମାଳ ଆଣି ଆମକୁ ଦିଆଗଲା । ମନ୍ଦିର ତଥା ମୂର୍ତ୍ତିଗୁଡ଼ିକର କାରୁକାର୍ଯ୍ୟ ଅତି ପ୍ରଶଂସନୀୟ । ଆମ ମୟୂରଭଞ୍ଜର ଖିଚିଂ ମନ୍ଦିରର ପଥର ସେଠାକାର ମୂର୍ତ୍ତି ତିଆରି ହୋଇଥିବା ମୁଗୁନି ପଥର ସହିତ ସମାନ । ମନ୍ଦିରରୁ ଫେରି ସହରର ବିଭିନ୍ନ ଅଞ୍ଚଳ ବୁଲି ଦେଖିଲୁ । ମଦୁରାଇ ଲୁଗା ତିଆରି ପାଇଁ ଭାରତ ବିଖ୍ୟାତ ହୋଇଥିବାରୁ ସେଠାରୁ କିଛି ଲୁଗା ମଧ୍ୟ କିଣି ହୋଟେଲକୁ ଫେରିଲୁ ।

## ରାମେଶ୍ୱର ମନ୍ଦିର

ତହିଁ ପରଦିନକୁ ଆମର ରାମେଶ୍ୱର ଯାଇ ସେଠାରେ ଥିବା ରାମେଶ୍ୱର ମନ୍ଦିର ପରିଦର୍ଶନ କରିବାର କାର୍ଯ୍ୟକ୍ରମ ଥିଲା । ତେଣୁ ସକାଳେ ସମସ୍ତେ ନିତ୍ୟକର୍ମ ଶେଷ କରି ସାଢ଼େ ସାତଟା ବେଳେ ରାମେଶ୍ୱର ଅଭିମୁଖେ ଯାତ୍ରା କରିବା ପୂର୍ବରୁ ହରେକୃଷ୍ଣ ମହତାବଙ୍କ ବିୟୋଗ ଖବର ଜାଣିବାକୁ ପାଇଲି । ତାଙ୍କ ସହିତ ମୋର ମତବାଦର ଭିନ୍ନତା ଥିଲେ ହେଁ ସେ ଥିଲେ ମୋର ଖୁବ୍ ସମ୍ମାନନୀୟ । ତେଣୁ ଖୁବ୍ ଦୁଃଖ କଲି । ରାଧାନାଥ ବାବୁ ଓ ମହତାବ ବାବୁ ଦୁଇଜଣ ଯାକ ମୋର ଖୁବ୍ ପ୍ରିୟ । ସେଥିରୁ ଜଣେ ଚାଲିଗଲେ । ସଂଗେ ସଂଗେ ଖବର କାଗଜକୁ ମୋର ଶୋକ ସଂବାଦ ପଠାଇ ରାମେଶ୍ୱର ଅଭିମୁଖେ ଯାତ୍ରା କରି ଦିନ ୧୧ଟା ବେଳେ ମଣ୍ଡାପମ ରେଳ ଷ୍ଟେସନରେ ପହଞ୍ଚିଲୁ । ମାଣ୍ଡାପମ ସମୁଦ୍ରକୂଳରେ ସେଠାରୁ

ସମୁଦ୍ର ଉପର ଦେଇ ଅପର ପାଖରେ ଥିବା ରାମେଶ୍ୱର ଷ୍ଟେସନ ପର୍ଯ୍ୟନ୍ତ ଏକ ରେଳରାସ୍ତା ଯାଇଛି । ଏହି ଛୋଟ ରେଳରେ ଲୋକେ ରାମେଶ୍ୱର ନାମକ ସମୁଦ୍ର ମଧ୍ୟରେ ଭାରତ ଓ ଲଙ୍କା ମଧ୍ୟରେ ଥିବା ରାମେଶ୍ୱର ଦ୍ୱୀପ (ଯାହାକି ଭାରତର ଏକ ଅଂଶ ତାମିଲନାଡୁ ରାଜ୍ୟରେ) କୁ ଯାଆନ୍ତି । ରାମଚନ୍ଦ୍ର ଲଙ୍କାକୁ ଯିବାପାଇଁ ଯେଉଁ ସେତୁ ବନ୍ଧ ବାନ୍ଧିଥିଲେ ସେହି ସେତୁ ବନ୍ଧ କୁହାଯାଇଥିବା ରେଳ ରାସ୍ତା ଉପରେ ରାମେଶ୍ୱର ଦ୍ୱୀପକୁ ଏକ ରେଳପଥ ଯାଇଛି । ସମାନ୍ତରାଳ ଭାବରେ ଏକ ସଡ଼କ ପଥ ସମୁଦ୍ର ଉପରେ ଯିବାପାଇଁ ଲମ୍ବାପୋଲଟିଏ ତିଆରି ହେଉଛି । ଏହା ସମ୍ପୂର୍ଣ୍ଣ ହୋଇଗଲେ ରାମେଶ୍ୱରକୁ ଯିବା ଆସିବା ଅତି ସୁଗମ ହୋଇଯିବ । ଅବଶ୍ୟ ଏବେ ଏହି ସେତୁର ନିର୍ମାଣ କାର୍ଯ୍ୟ ସଂପୂର୍ଣ୍ଣ ହୋଇଗଲାଣି । ରାମେଶ୍ୱର ପରିଦର୍ଶନ ମୋର ଏହା ଦ୍ୱିତୀୟଥର । ଏହା ପୂର୍ବରୁ ୧୯୮୦ ମସିହାରେ ବିଧାନସଭାରେ କେବଳ ସଭ୍ୟ ଥିଲା ବେଳେ ମୋ ନେତୃତ୍ୱରେ କେତେକ ବିଧାନସଭା ସଭ୍ୟ ଦକ୍ଷିଣ ଭାରତ ଗସ୍ତରେ ଆସିଥିଲା ବେଳେ ଆମେ ସମସ୍ତେ ରାମେଶ୍ୱର ଷ୍ଟେସନରେ ପହଞ୍ଚିବା ମାତ୍ରେ ସେଠାକାର ସରକାରୀ ଅଫିସର ଆମକୁ ପ୍ରଥମେ ମନ୍ଦିରକୁ ଦର୍ଶନ ପାଇଁ ନେଇଗଲେ । ମନ୍ଦିରକୁ ଯାଇ ଶ୍ରୀରାମଙ୍କ ସମେତ ଅନ୍ୟାନ୍ୟ ସମସ୍ତ ଠାକୁରଙ୍କୁ ଦର୍ଶନ କଲୁ । ସେଠାରେ ଏକ ବିରାଟ ହନୁମାନ ମୂର୍ତ୍ତି ପୂଜା ପାଉଥିବାର ଦେଖିଲୁ । ଠିକ୍ ମିନାକ୍ଷୀ ଭଳି ଏହା ଏକ ବିରାଟ ମନ୍ଦିର ସମସ୍ତ ଦେବାଦେବୀ କଳାମୂର୍ତ୍ତିଗୁଡ଼ି ପଥରରେ ତିଆରି । ରାବଣ ସହିତ ଯୁଦ୍ଧ ପୂର୍ବରୁ ଏଠାରେ ଶ୍ରୀରାମ ପ୍ରଥମେ ମହାଦେବଙ୍କୁ ପୂଜା କରିଥିବାର କିମ୍ବଦନ୍ତୀ ଅଛି । କାଳର କରାଳ ଗତିରେ ଏହା ଶ୍ରୀଲଙ୍କାରୁ ଛିନ୍ନ ହୋଇ ଯାଇଛି । ଏଠାରେ ଲଗାଯାଇଥିବା ମୁର୍ଗୁନି ପଥର ଶ୍ରୀଲଙ୍କାରୁ ଅଣା ଯାଇଥିବା ଓ ଶ୍ରୀଲଙ୍କାର ଜଣେ ରାଜା ବହୁବର୍ଷ ପୂର୍ବେ ଏହି ମନ୍ଦିର ତିଆରି କରିଥିବାର ଶୁଣିବାକୁ ମିଳେ । ତତ୍‌ପରେ ଆମେ ସେଠାରେ ଥିବା ଏକ ସରକାରୀ ଅତିଥିଶାଳାକୁ ଯାଇ ମଧ୍ୟାହ୍ନ ଭୋଜନ ପରେ କିଛି ସମୟ ବିଶ୍ରାମ ନେଲୁ । ଅତିଥିଶାଳାଟି ସମୁଦ୍ର କୂଳରେ ଓ ଶ୍ରୀଲଙ୍କାକୁ ସେଠାରୁ ଯିବାପାଇଁ ଥିବା ପୋତାଶ୍ରୟ ନିକଟରେ ଅବସ୍ଥିତ । ସେତେବେଳେ ଶ୍ରୀଲଙ୍କାରେ ଉଗ୍ରପନ୍ଥୀ ତାମିଲଙ୍କ ଗୋଳମାଳ ଯୋଗୁ ଭାରତରୁ ଶ୍ରୀଲଙ୍କାକୁ ଯିବା ଆସିବାରେ ବିଶେଷ କିଛି କଟକଣା ନ ଥିଲା । ବିଶ୍ରାମ ପରେ ରେଳଯୋଗେ ମାଣ୍ଡାଷା ଫେରି ସେଠାରୁ ମଦୁରାଇ ଫେରିବା ପୂର୍ବରୁ ତାମିଲନାଡୁରେ ଚାକିରୀ କରିଥିବା ଜଣେ I.A.S. ଅଫିସର ଶ୍ରୀ ଷଡଙ୍ଗୀଙ୍କ ସହ ଦେଖା ହେଲା ମାଣ୍ଡାଷା ରେଳଷ୍ଟେସନରେ । ସେ ତାମିଲନାଡୁ କୋଡାରର । ତେଣୁ ସେଠାରେ ଚାକିରୀ କରିଛନ୍ତି ଓ ଏକ ତାମିଲ ରମଣୀଙ୍କୁ ମଧ୍ୟ ବିବାହ କରିଛନ୍ତି ବୋଲି କହିଲେ । ତତ୍‌ପରେ ଆମେ କାର ଯୋଗେ ରାତିକୁ (ସନ୍ଧ୍ୟା) ମଦୁରାଇ ଫେରିଲୁ ।

## ମାନ୍ଦ୍ରାଜ ଓ ତିରୁପତି ମନ୍ଦିର

ତହିଁ ପରଦିନ ମାନ୍ଦ୍ରାଜ ଯିବା ପାଇଁ ମଦୁରାଇ ଉଡ଼ାଜାହାଜ ଷ୍ଟେସନକୁ ଆସିବାରେ କାଶ୍ମୀରର ବାଚସ୍ପତି ଶ୍ରୀ ମଙ୍ଗତଲାଲ ଶର୍ମାଙ୍କ ସଙ୍ଗେ ଦେଖାହେଲା । ସେ ମଧ୍ୟ ବାଙ୍ଗାଲୋରରୁ ଫେରିଲା ବେଳେ ବିଭିନ୍ନ ସ୍ଥାନ ଦେଖି ମାନ୍ଦ୍ରାଜ ଫେରୁଥିଲେ । ସେଠାରେ ମଧ୍ୟ ସ୍ଥାନୀୟ କଲେକ୍ଟର ଓ ମଦୁରାଇ ର ମେୟରଙ୍କ ସଙ୍ଗେ ଦେଖା ହେଲା । ଉଡ଼ାଜାହାଜ ଛାଡିବାକୁ ଡେରିଥିବାରୁ କିଛି ସମୟ ହରେକୃଷ୍ଣ ମହତାବ ଓ କର୍ଣ୍ଣାଟକର ମୁଖ୍ୟମନ୍ତ୍ରୀଙ୍କ ସମ୍ପର୍କରେ ଆମ ସମସ୍ତଙ୍କ ମଧ୍ୟରେ ଆଲୋଚନା ଚାଲିଲା । ତତ୍‌ପରେ ସମସ୍ତେ ଏକା ଉଡ଼ାଜାହାଜରେ ମାନ୍ଦ୍ରାଜ ଯାତ୍ରା କଲୁ । ଏବଂ ମାନ୍ଦ୍ରାଜ ଉଡ଼ାଜାହାଜ ଷ୍ଟେସନରୁ ସେଠା ପ୍ରଟୋକଲ ଅଫିସର ଆମକୁ ସ୍ୱାଗତ ଜଣାଇ ତାଙ୍କ ଗାଡ଼ିରେ ଏକ ସରକାରୀ ଅତିଥିଶାଳାକୁ ନେଇଗଲେ । ମାନ୍ଦ୍ରାଜ ବହୁବାର ଯାଇଛି ଏବଂ ଅଳ୍ପ କେତେମାସ ତଳେ ବିଧାନସଭାର Rules Committee ରେ କେବଳ ଯାଉଥିଲା ବେଳେ ମାନ୍ଦ୍ରାଜ ଆସିଥିଲି । ଉକ୍ତ ଅତିଥିଶାଳାରେ ରାତ୍ରିଯାପନ କଲାପରେ ତହିଁ ପରଦିନ ଆମର ତିରୁପତି ମନ୍ଦିର ଦର୍ଶନ କରିବାର କାର୍ଯ୍ୟକ୍ରମ ଥିଲା । ତେଣୁ ତହିଁ ପରଦିନ ସକାଳ ଆଠଟା ବେଳକୁ ଆମେ (ମୁଁ, ମୋ ସ୍ତ୍ରୀ, ମୋ

ସେକ୍ରେଟେରୀ) ପ୍ରଟୋକଲ ଅଫିସର ଜଣେ କର୍ମଚାରୀଙ୍କ ସହିତ ତିରୁପତି ଅଭିମୁଖେ ଯାତ୍ରା କଲୁ । ବହୁଦିନରୁ ଏ ମନ୍ଦିର ସମ୍ପର୍କରେ ଅନେକ କଥା ଶୁଣିଥିଲି । ଦକ୍ଷିଣ ଭାରତରେ ତିରୁପତି ସବୁଠାରୁ ପ୍ରସିଦ୍ଧ ମନ୍ଦିର । ପ୍ରାୟ ଚାରିଘଣ୍ଟା ଯାତ୍ରା ପରେ ଦିନ ବାରଟା ବେଳକୁ ତିରୁପତି ସହରରେ ପହଞ୍ଚିଲୁ । ସେଠାରେ ମୁଖ୍ୟ କାର୍ଯ୍ୟାଳୟ, ବିଶ୍ୱବିଦ୍ୟାଳୟ, Medical College ପ୍ରଭୃତି ତିରୁପତି ମନ୍ଦିର ଅର୍ଥରେ ପରିଚାଳିତ । ସେଠାରୁ ପ୍ରାୟ ସତର କି.ମି. ଦୂର ପର୍ବତ ଉପରେ ଅବସ୍ଥିତ ତିରୁପତି ମନ୍ଦିରକୁ ଯାତ୍ରା କଲୁ । ଆମେ ଯାଉଥିବା ସମ୍ପର୍କରେ ଆଗରୁ ଜଣାଇ ଦିଆଯାଇଥିବାରୁ ମନ୍ଦିର ନିକଟରେ ପହଞ୍ଚିଲାରୁ ମନ୍ଦିର ପରିଚାଳନା ଦାୟିତ୍ୱରେ ଥିବା ଜଣେ ବ୍ୟକ୍ତି ଆମକୁ ପାଛୋଟି ନେଇ ତାଙ୍କ ଅତିଥିଶାଳାରେ ବିଶ୍ରାମ କରିବାକୁ ସ୍ଥାନ ଦେଲେ ଏବଂ କିଛି ସମୟପରେ ଆମକୁ ଦର୍ଶନ ପାଇଁ ମନ୍ଦର ଭିତରକୁ ନେଇଗଲେ । ଏତେ ଉଚ୍ଚ ପାହାଚ ଓ ସହରଠାରୁ ସତର କି.ମି. ଦୂରରେ ମନ୍ଦିରଟି ଥିଲେ ମଧ ଦର୍ଶନ ପାଇଁ ହଜାର ହଜାର ଲୋକ ଥିବାର ଦେଖି ଆଶ୍ଚର୍ଯ୍ୟ ହେଲି । ଦୈନିକ ସେହିଭଳି ବହୁ ସଂଖ୍ୟାରେ ଲୋକ ଦର୍ଶନ ପାଇଁ ଏଠାକୁ ଆସନ୍ତି ବୋଲି ଶୁଣିଲି । ସାଧାରଣ ଲୋକଙ୍କ ପାଇଁ ଦୁଇଟଙ୍କା ଟିକଟ କରି ଏକ ଲମ୍ବା ଲାଇନରେ ପ୍ରାୟ ଏକ ଘଣ୍ଟା ଅପେକ୍ଷା କଲେ ଦର୍ଶନ ମିଳେ । ଏଣୁ ଆମକୁ ପ୍ରତ୍ୟେକଙ୍କ ପାଇଁ ୨୫ଟଙ୍କା ଟିକଟ କରିବାକୁ ପଡ଼ିଲା ସ୍ୱତନ୍ତ୍ର ଦର୍ଶନ ପାଇଁ । ସକାଳଓଳି ଯେଉଁମାନେ ସ୍ୱତନ୍ତ୍ର ଦର୍ଶନ ପାଇଁ ଯାଆନ୍ତି, ସେମାନଙ୍କୁ ଅଧିକ ଟଙ୍କା ଦେବାକୁ ପଡ଼େ । ଅନ୍ୟମାନଙ୍କୁ ଏକଘଣ୍ଟା ଦର୍ଶନପାଇଁ ଲାଗୁଥିଲା ବେଳେ ଆମେ ଅନ୍ୟ ଏକ ବାଟରେ ମାତ୍ର ୧୦/୧୫ ମିନିଟ୍‌ପରେ ଠାକୁରଙ୍କ ପାଖରେ ପହଞ୍ଚି ପାରିଲୁ । ଅବଶ୍ୟ ଶେଷ ବେଳକୁ ସାଧାରଣ ଲୋକ ଯାଇଥିବା ଲାଇନରେ ଯାଇ ଦର୍ଶନ କଲୁ । ଠାକୁରଙ୍କୁ ଦର୍ଶନ ପାଇଁ ଏକ ମିନିଟ୍‌ରୁ କମ ସମୟ ମିଳେ । ଅନ୍ୟ ମନ୍ଦିର ଭଳି ଭୋଗ ଲଗାଇ ଅନେକ ସମୟ ଧରି ଦର୍ଶନ କରିବାର ବିଧି ଏଠାରେ ନାହିଁ । ଦର୍ଶନପରେ ମନ୍ଦିର ଚାରିପାଖେ ବୁଲି ଦର୍ଶନ କଲୁଁ । ମନ୍ଦିରର ଉପରଅଂଶ ତଥା ମୂର୍ତ୍ତିମାନ ବିଭିନ୍ନ ରଙ୍ଗରେ ରଞ୍ଜିତ ହୋଇଛି । ତତପରେ ସେହି ମନ୍ଦିର ବେଢ଼ା ମଧରେ ଥିବା ଏକ ଭୋଜନାଳୟରେ ଆମେ ଭୋଜନ କଲୁଁ । ସାଧାରଣ ଲୋକ ଯେଉଁମାନେ ଦୁଇଟଙ୍କା ଟିକଟ କରିଥାନ୍ତି । ସେମାନଙ୍କୁ ମନ୍ଦିର ପରିଚାଳନା ତରଫରୁ ବିନା ପଇସାରେ ମଧ୍ୟାହ୍ନ ଭୋଜନ ଦିଆଯାଉଥିବାର ଦେଖିଲି । ଦୈନିକ ସେଠାରେ ଏଭଳି ଦଶ ହଜାର ଲୋକଙ୍କ ଭୋଜନର ବ୍ୟବସ୍ଥା ଥିବା କଥା ଶୁଣିଲି । ସେଠାକୁ ବହୁ ଲୋକ ଓ ପିଲା ମୁଣ୍ଡବାଳ ଦେବାପାଇଁ ଯାଆନ୍ତି । ସେଥିରୁ ଶୁଳ୍କ ଆକାରରେ ଲକ୍ଷାଧିକ ଅର୍ଥ ଅର୍ଜନ ହୁଏ । ଏତଦ୍ ବ୍ୟତୀତ ଦକ୍ଷିଣା ବାବଦରୁ ବହୁଅର୍ଥ ଆଦାୟ ହୁଏ । ଛୋଟ ସେକ୍ରେଟେରିଏଟ୍ ପରି ଏହାର ବିରାଟ ପରିଚାଳନା ଅଫିସ୍ ଅଛି । ତଳ ସହରରୁ ଉପର ମନ୍ଦିରକୁ ଯିବା ପାଇଁ କାର ଦରକାର । ଅନ୍ୟମାନଙ୍କୁ ବସରେ ଯିବାକୁ ପଡ଼େ ଏବଂ ଉକ୍ତ ସମସ୍ତ ବସ୍ ମନ୍ଦିର ପରିଚାଳନାର ଅନ୍ୟ କୌଣସି ବସ୍‌କୁ ଯାତ୍ରୀ ନେଇ ଉପରକୁ ଯିବାପାଇଁ ଅନୁମତି ମିଳେ ନାହିଁ । ସବୁ ଦେଖି ସାରିଲାପରେ ଅପରାହ୍ଣ ୩ଟା ବେଳକୁ ଆମେ ମାନ୍ଦ୍ରାଜକୁ ପ୍ରତ୍ୟାବର୍ତ୍ତନ କଲୁଁ ଓ ସନ୍ଧ୍ୟାବେଳକୁ ଫେରି ଅତିଥିଶାଳାରେ ଅବସ୍ଥାନ କଲୁଁ । ତିରୁପତି ମନ୍ଦିରକୁ ଏକ ବ୍ୟବସାୟିକ ଅନୁଷ୍ଠାନରେ ପରିଣତ କରାଯାଇଥିବାରୁ ମୋ ମନରେ ବିଶେଷ ଭକ୍ତି ସଂଚାର ହେଲା ନାହିଁ । ଠାକୁରଙ୍କୁ ଟିକିଏ ଭଲକରି ଦର୍ଶନ କରିବାର ସୁଯୋଗ ସାଧାରଣ ଲୋକଙ୍କ ପକ୍ଷେ ନାହିଁ । ଯେଉଁମାନେ ହଜାର ହଜାର ଟଙ୍କା ଦିଅନ୍ତି ସେହିମାନେ ସକାଳଓଳି ଭଲ ଦର୍ଶନ ପାଉଥିବାର ଶୁଣିଲୁ । କିନ୍ତୁ ଅନ୍ୟ ପକ୍ଷରେ ଲୋକ ଦୈନିକ ଯାଉଛନ୍ତି ଦର୍ଶନ ପାଇଁ ତାଙ୍କୁ ଶୃଙ୍ଖଳାର ସହିତ ଦର୍ଶନ କରାଇବା ଓ ପୁଣି ହଜାର ହଜାର ଭକ୍ତଙ୍କୁ ଭୋଜନ ଦେବା କିଛି କମ୍ କଥା ନୁହେଁ । ଯାହା ହେଉ ମନ୍ଦିର ତରଫରୁ ଆମକୁ ବୁଲାଇ ଦେଖାଇଲା ପରେ ଆମେ ଅପରାହ୍ଣକୁ ମନ୍ଦିର ଛାଡ଼ି ତଳକୁ ଆସିଲୁଁ । ତହିଁ ପରଦିନ ସକାଳ ପ୍ରାୟ ପାଞ୍ଚଟା ବେଳେ ଆମେ ମାନ୍ଦ୍ରାଜ ଉଡ଼ାଜାହାଜ ଷ୍ଟେସନକୁ ଆସି ହାଇଦ୍ରାବାଦ ଯାତ୍ରା କଲୁଁ ଓ ହାଇଦ୍ରାବାଦରେ ପହଞ୍ଚି ବିଧାନସଭା ଚାଲିଥିବାରୁ ତାହା ଦେଖିବା ପାଇଁ ଗଲୁଁ । ପ୍ରଥମେ ଆନ୍ଧ୍ରର ବିଧାନସଭା ଅଧକ୍ଷ ଶ୍ରୀ ରାଓଙ୍କ ସହିତ ତାଙ୍କ ପ୍ରକୋଷ୍ଠରେ ଦେଖାହେଲା ଓ ତତ୍‌ପରେ ଦର୍ଶକ ଗ୍ୟାଲେରୀକୁ ଯାଇ କିଛି ସମୟ ବିଧାନସଭାର ଆଲୋଚନା ଶୁଣିଲୁ । ତାଙ୍କ ଭାଷା ବୁଝି ପାରୁ ନ ଥିବାରୁ ଆଲୋଚନାର ବିଷୟବସ୍ତୁ କିଛି ଜାଣି ପାରିଲୁ ନାହିଁ । ଆମ

ବିଧାନସଭାଠାରୁ ସେଠା  ବିଧାନସଭାର ବିଶେଷତ୍ୱ ହେଉଛି ଯେ ସେଠା ଦର୍ଶକ ଗ୍ୟାଲେରୀ କାଚଦ୍ୱାରା ସମ୍ପୂର୍ଣ୍ଣ ଆବୃତ୍ତ । ତେଣୁ ସେଠାରୁ କିଛି ଶବ୍ଦ ବିଧାନସଭା ଗୃହକୁ ଶୁଣାଯାଏ ନାହିଁ । ଅନେକ କ୍ଷେତ୍ରରେ ଦର୍ଶକଙ୍କ ମଧ୍ୟରୁ ବିଭିନ୍ନ ପ୍ରକାର ପ୍ରଚାରପତ୍ର ବିଧାନସଭାକୁ ପିଙ୍ଗାଯିବା  କଥା ଯାହା ଶୁଣିବାକୁ ମିଳେ, ଏଠାରେ ଦର୍ଶକ ଗ୍ୟାଲେରୀ ସମ୍ପୂର୍ଣ୍ଣଭାବେ କାଚରେ ଆବୃତ୍ତ ଥିବାରୁ ତାହା ଘଟେ ନାହିଁ ।

ବିଧାନସଭାରୁ ଆସି, ସେଠାରେ ଥିବା ଭାରତ କାହିଁକି ସମଗ୍ର ଏସିଆ ମହାଦେଶର ସର୍ବବୃହତ ସାଲାରଜଙ୍ଗ ମ୍ୟୁଜିୟମ ଦେଖିବାକୁ ଗଲୁ । ଏଥରକୁ ଲଗାଇ ଏହି ମ୍ୟୁଜିୟମ ପରିଦର୍ଶନ ମଧ୍ୟ ମୋର ତିନିଥର ହେଲା । ସାଲାରଜଙ୍ଗ ହାଇଦ୍ରାବାଦର ନିଜାମ ପରିବାରର ଲୋକ ଓ ସେ ନିଜାମଙ୍କ ଦେଓ୍ୱାନ ବା ପ୍ରଧାନମନ୍ତ୍ରୀ ଥିଲେ । ତାଙ୍କର ସମସ୍ତ ଅର୍ଥ ଏହି ମ୍ୟୁଜିୟମର ଦୁର୍ଲଭ ପଦାର୍ଥ ଗୁଡ଼ିକୁ ସଂଗ୍ରହ କରିବାରେ ଖର୍ଚ୍ଚ କରି ଏକ ଅମର କୀର୍ତ୍ତି ରଖିଯାଇଛନ୍ତି ।

ଅପରାହ୍ଣରେ ଆନ୍ଧ୍ର ବିଧାନସଭାର ଅଧ୍ୟକ୍ଷ (ତେଲୁଗୁ ଦେଶମ ଦଳର) ତାଙ୍କ ଘରକୁ ମୋତେ ଓ ମୋ ସ୍ତ୍ରୀକୁ ନିମନ୍ତ୍ରଣ କରିଥିଲେ । ତେଣୁ ତାଙ୍କ ଘରକୁ ଯାଇ କିଛି ସମୟ ଆଳାପ କରିଥିଲୁ । ସେଠାରେ ଅଧ୍ୟକ୍ଷ ଶ୍ରୀଯୁକ୍ତ ରାଓ ଜଣେ ଅତି ଭଦ୍ରଲୋକ ଓ ଜ୍ଞାନୀ ମଧ୍ୟ । ଆମ ସମ୍ମିଳନୀ ମାନଙ୍କରେ ଯୋଗଦେଇ ବିଭିନ୍ନ ଆଲୋଚନାରେ ସେ ଭାଗ ନେଇ ଅତି ଉପାଦେୟ ଯୁକ୍ତି ଉପସ୍ଥାପନ କରିଥାନ୍ତି । ଏହା ପରଦିନ ଭୁବନେଶ୍ୱର ଫେରି ସେଠାରୁ ନିଜଘର ବେଟନଟିକୁ ଆସିଥିଲି । ଏହା ହେଲା ୧୯୮୬ ମସିହାର ଶେଷ ଗସ୍ତ କାର୍ଯ୍ୟକ୍ରମ ।

## ମୋର ପରିବେଶ ସୁରକ୍ଷା କାର୍ଯ୍ୟକ୍ରମ

ମୁଁ ସବୁଦିନ ଜଙ୍ଗଲ ସୁରକ୍ଷା ପ୍ରତି ଆଗ୍ରହ ପ୍ରକାଶ କରିଥାଏ । ତେଣୁ ବିଧାନସଭାରେ ମୁଁ ସଭ୍ୟ ହେବାଦିନୁ ବିରୋଧି ଦଳ ତଥା ସରକାରୀ ଦଳରେ ଥାଇ ପ୍ରତ୍ୟେକ ଥର ଜଙ୍ଗଲ ବିଭାଗ ଆଲୋଚନାରେ ଭାଗ ନେଇଥାଏ, ତେଣୁ ବିଧାନ ସଭାର  ଜଙ୍ଗଲ ବିଶାରଦ ବୋଲି ମୋତେ ଉଭୟ ଦଳର ସଭ୍ୟମାନେ କହିଥାନ୍ତି । ବିଶେଷ କରି ସିମିଳିପାଳ ଜଙ୍ଗଲର ସୁରକ୍ଷା ଦିଗରେ ମୋର ପଦକ୍ଷେପ ଓ ବିଧାନସଭାରେ ଦଳ ନିର୍ବିଶେଷରେ ଏଥିପାଇଁ ସମସ୍ତଙ୍କ ସମର୍ଥନ ଲାଭ କରିବା, ଗୃହ କମିଟି ଗଠନ କରାଇବାରେ ସଫଳ ହେବା ମୋ ପାଇଁ ଗୌରବର ବିଷୟ କମିଟିର ସୁପାରିଶ ଅନୁଯାୟୀ ସରକାର ସେଠାରେ (S.E.D.C.)  ର ଗଛକଟା ସଂପୂର୍ଣ୍ଣ ବନ୍ଦ କରିବାର ନିଷ୍ପତ୍ତି ଗ୍ରହଣ କରିଥିବା କଥା ସମସ୍ତେ ଜାଣନ୍ତି । ୧୯୮୧ ମସିହାରେ ଫୁଲବାଣୀଠାରେ ପରିବେଶ ସୁରକ୍ଷା ସଂପର୍କୀୟ ଏକ ସମ୍ମିଳନୀରେ ଓଡ଼ିଶା ପରିବେଶ ସୁରକ୍ଷା ନାମକ ଏକ ବେସରକାରୀ ଅନୁଷ୍ଠାନ ଗଠନ କରାଯାଇ ମୋତେ ତହିଁର ସଭାପତି ନିର୍ବାଚନ କରାଯାଇଥିଲା । ସେହିଦିନୁ ପରିବେଶ ସୁରକ୍ଷା ଦିଗରେ ଜନଚେତନା ସୃଷ୍ଟି କରି ଗ୍ରାମାଞ୍ଚଳ ଜଙ୍ଗଲକୁ ରକ୍ଷା କରାଇବାରେ  ଆମେ ସଫଳ କାମ ହୋଇଛୁ । ତେଣୁ ୧୯୮୬ ମସିହାରେ କଟକ ଜିଲ୍ଲାର ଭିତର କନିକା ଅଞ୍ଚଳ ପରିଦର୍ଶନ, ସମ୍ବଲପୁର ଜିଲ୍ଲାର ବୁର୍ଲାଠାରେ ବିଶ୍ୱପରିବେଶ ଦିବସ ପାଳନ, ଢ଼େଙ୍କାନାଳ ଓ ଗଞ୍ଜାମ ଜିଲ୍ଲାର ବ୍ରହ୍ମପୁରଠାରେ ପରିବେଶ ସଂକ୍ରାନ୍ତୀୟ ବିଭିନ୍ନ ସମ୍ମିଳନୀରେ ଯୋଗଦାନ କରି ମୟୂରଭଞ୍ଜ ଜିଲ୍ଲାର ବିଭିନ୍ନ ଗ୍ରାମରେ ଜଙ୍ଗଲ ସୁରକ୍ଷାପାଇଁ କମିଟି ଗଠନ କରାଇବାରେ ସଫଳତା ଅର୍ଜନ କରିଛି ।

## ୧୯୮୭ ବିଧାନ ସଭା ଓ ଭାରତର ୪୦ ତମ ବାର୍ଷିକ ସ୍ୱାଧୀନତା ଉତ୍ସବ

ଏ ବର୍ଷର ଓଡ଼ିଶାର ବିଧାନସଭାର ବଜେଟ ଅଧିବେଶନ ଫେବୃୟାରୀ ମାସ ୨୩ ତାରିଖରୁ ଆରମ୍ଭ ହୋଇ ଏପ୍ରିଲ ମାସ ୪ ତାରିଖ ଶେଷ ହୋଇଥିଲା । ଅତିରିକ୍ତ ବଜେଟ ଅଧିବେଶନ ଅଗଷ୍ଟମାସ ୯ ତାରିଖ ଦିନ ମାତ୍ର ଦିନକ

ପାଇଁ ବସି ତତ୍‌ପରେ ପ୍ରାୟ ମାସକ ପରେ ସେପ୍ଟେମ୍ବର ମାସ ୯, ୧୦ ଓ ୧୨ ତାରିଖରେ ପୁଣି ପ୍ରାୟ ଏକମାସ ପରେ ଅକ୍ଟୋବର ମାସ ୧୩, ୧୪ ଓ ୧୫ ତାରିଖରେ ବସି ଅଧିବେଶନ ସମାପ୍ତ ହୋଇଥିଲା ।

## ଅଶୋଭନୀୟ ପରିସ୍ଥିତି

ସେତେବେଳେ ବିଜୁପଟ୍ଟନାୟକ (ବିରୁଦ୍ଧ ଦଳର ନେତା) ଜଣେ ସର୍ବଭାରତୀୟ ନେତା ହୋଇ ମଧ୍ୟ ରାଜ୍ୟପାଳ ପଦବୀର କିଛି ମୂଲ୍ୟ ନ ବୁଝି ରାଜ୍ୟପାଳ ଭାଷଣ ଦେବାକୁ ଆରମ୍ଭ କଲା ବେଳକୁ ନିଜେ ଏକ ଲିଖିତ ଭାଷଣ ପଢ଼ିବାକୁ ଆରମ୍ଭ କଲେ ଏବଂ କିଛି ସମୟ ପରେ ଅନ୍ୟମାନଙ୍କୁ ଗୋଳମାଳ କରିବାକୁ ଇଙ୍ଗିତ ଦେଇ ବିଧାନସଭା ଘରୁ ଚାଲିଯାଇଥିଲେ । ଅନ୍ୟମାନେ ବିଶେଷ କରି ଜନତା ଦଳର ସଭ୍ୟମାନେ ରାଜ୍ୟପାଳ ଭାଷଣ ଦେଉଥିଲା ବେଳେ ବିଭିନ୍ନ ଅସାମାଜିକ ଭାଷାରେ ପାଟିତୁଣ୍ଡ କରି ସ୍ଲୋଗାନମାନ ଦେଇଥିଲେ । ଭାରତୀୟ ସଂବିଧାନରେ ରାଜ୍ୟପାଳ ରାଷ୍ଟ୍ରପତିଙ୍କ ପ୍ରତିନିଧି ଭାବେ ରାଜ୍ୟରେ ଅତି ସମ୍ମାନ ଜନକ ସ୍ଥାନର ଅଧିକାରୀ । ଏହା ଗଣତନ୍ତ୍ର ଶାସନ ପଦ୍ଧତି ତଥା ସଂସଦୀୟ ଗଣତନ୍ତ୍ର (Parliamentary System) ରେ ଏକ ଉଚ୍ଚ ପରଂପରା । ତେଣୁ ସେଥିପ୍ରତି ଅସମ୍ମାନ ଅତ୍ୟନ୍ତ ଲଜ୍ଜାକର । ରାଜ୍ୟପାଳ ରାଜ୍ୟର ସାମ୍ବିଧାନିକ ମୁଖ୍ୟ ହୋଇଥିବାରୁ ତାଙ୍କର ବିଧାନସଭାର ଭାଷଣ ସଂପୂର୍ଣ୍ଣଭାବେ ସରକାରଙ୍କ ଦ୍ୱାରା ପ୍ରସ୍ତୁତ ହୋଇଥାଏ । ତେଣୁ ସରକାରଙ୍କ କାର୍ଯ୍ୟର ପ୍ରତିବାଦ ଅଯୌକ୍ତିକ ନ ହେଲେ ମଧ୍ୟ ଏକ ସମ୍ମାନ ଜନକ ପନ୍ଥାରେ ପ୍ରତିବାଦ କରିବା ଉଚିତ । ତାହା ନ କରି ଅତି ଅଶୋଭନୀୟ ପନ୍ଥା ଅନୁସରଣ କଲେ ତହିଁର ପରିଣତି ଗଣତନ୍ତ୍ର ପ୍ରତି ଭୟାବହ ହେବ । ଆମ ଦେଶର ରାଜନୈତିକ ଦଳଗୁଡ଼ିକ ମଧ୍ୟରେ କ୍ଷମତାର ମୋହ ଏତେ ପ୍ରବଳ ହୋଇଛି ଯେ ସେମାନେ ଯାହା କରୁଛନ୍ତି ସେଗୁଡ଼ିକ ଗଣତନ୍ତ୍ରର ମୌଳିକ ନୀତିର ପରିପନ୍ଥୀ ବୋଲି ଜାଣିପାରୁ ନାହାନ୍ତି । ଆମ ପଡ଼ୋଶୀ ଦେଶ ପାକିସ୍ଥାନ ଆମ ସଙ୍ଗେ ସ୍ୱାଧୀନ ହୋଇ ମଧ୍ୟ ଏହିଭଳି ବିଭିନ୍ନ କାରଣରୁ ଗଣତନ୍ତ୍ରର ପତନ ଘଟି ସେଠାରେ ଏକଛତ୍ର ଶାସନ ଚାଲୁଥିବାରୁ ଲୋକେ ପୁନରାୟ ଗଣତନ୍ତ୍ର ଫେରି ପାଇବା ପାଇଁ ଆନ୍ଦୋଳନ କରୁଅଛନ୍ତି ।

## ସରକାରୀ ଦଳର କେତେକ ସଭ୍ୟଙ୍କ ଅଦ୍‌ଭୂତ କାର୍ଯ୍ୟ

ଓଡ଼ିଶାର କଳାହାଣ୍ଡି ଓ କୋରାପୁଟ ଜିଲ୍ଲା ଗୁଡ଼ିକରେ ପ୍ରବଳ ମରୁଡ଼ି ଓ ତଦ୍‌ଜନିତ ଅନାହାର ଓ ଜଳାଭାବ ଯୋଗୁଁ ଲୋକଙ୍କ ମୃତ୍ୟୁ ଘଟିବା ଘଟଣା ଉପରେ ଆସିଥିବା ମୁଲତବୀ ପ୍ରସ୍ତାବ ଉପରେ ସଂପୂର୍ଣ୍ଣ ନିର୍ଭର ନ କରି ରାଜସ୍ୱ ମନ୍ତ୍ରୀ ନିଜେ ଯାଇ ତାହା ଅନୁଧ୍ୟାନ କରିବାକୁ କହିଥିଲି । କିନ୍ତୁ ରାଜସ୍ୱ ମନ୍ତ୍ରୀ ଯାଇ ନ ଥିବା କଥା ପ୍ରକାଶ କରିବାରୁ ବିଧାନସଭାରେ ବିରୁଦ୍ଧ ଦଳରୁ ଭୀଷଣ ଗଣ୍ଡଗୋଳ ହେଲା । ମୋ ସଭାପତିତ୍ୱରେ ବିଧାନସଭାର ଏକ ଗୃହ କମିଟି ଗଠନ କରି ଅବସ୍ଥା ଅନୁଧ୍ୟାନ କରିବାପାଇଁ ଏକ ପ୍ରସ୍ତାବ ଆଗତ ହେବାରୁ ଅବସ୍ଥାକୁ ସମ୍ଭାଳିବା ପାଇଁ ମୋର ସ୍ୱତନ୍ତ୍ର କ୍ଷମତାରେ ତାହା ସଙ୍ଗେ ସଙ୍ଗେ ଗ୍ରହଣ କରି ସଭ୍ୟମାନଙ୍କର ମତାମତ ନେବାକୁ ଚାହିଁଲାରୁ ବିରୁଦ୍ଧ ଦଳର ସଭ୍ୟମାନେ ଭୋଟ ଦାବୀ କଲେ । ଭୋଟ ନେବାରେ ସରକାରୀ ଦଳର ଉପସ୍ଥିତ ଥିବା ୧୯ ଜଣ ଅସନ୍ତୁଷ୍ଟ ଗୋଷ୍ଠୀର ସଭ୍ୟ ପ୍ରସ୍ତାବ ସପକ୍ଷରେ ଭୋଟ ଦେଲେ । ହଠାତ୍ ଏହି ଭୋଟ ହେବାରୁ ସରକାରୀ ଦଳର ନିୟମାନୁଯାୟୀ whip ବା ନିର୍ଦ୍ଦେଶ ଜାରୀ ହୋଇ ନ ଥିଲା । ଏଥି ପୂର୍ବରୁ ଏଭଳି ଏକ କମିଟି ହେବା ଦରକାର କି ନାହିଁ ବୋଲି ଗୃହ କମିଟି ଗଠନ ସଂପର୍କରେ ମତ

ଦେଇଥିଲେ । ଯାହାହେଉ ଏହା ସତ୍ତ୍ୱେ ବିପକ୍ଷରେ ଅଧିକ ଭୋଟ ହେବାରୁ ପ୍ରସ୍ତାବଟି ନାକଚ ହୋଇ ଯାଇଥିଲା । ସରକାରୀ ଦଳ ମଧ୍ୟରେ ଏଭଳି କେବେହେଲେ ବିଭେଦ ଦେଖାଯାଇ ନ ଥିବାରୁ ସଂସଦୀୟ ଗଣତନ୍ତ୍ରରେ ଏହା ଏକ ଐତିହାସିକ ଘଟଣା ହୋଇ ରହିଲା । ବର୍ତ୍ତମାନର ଦଳବଦଳ ଆଇନରେ ଗୋଟିଏ ଦଳର ସଭ୍ୟମାନେ ଦଳର ନିଷ୍ପତ୍ତି ବିରୋଧରେ ଭୋଟ ଦେଲେ । ସେମାନଙ୍କୁ ବିଧାନସଭା ସଭ୍ୟ ପଦରୁ କାଢ଼ିଦେଇ ପାରିବାର ଅଧିକାର ବିଧାନସଭା ଅଧ୍ୟକ୍ଷଙ୍କୁ ଦେଇଥିଲେ ହେଁ ନିର୍ଦ୍ଧାରିତ ସମୟ ମଧ୍ୟରେ ସଂପୃକ୍ତ ଦଳରୁ କୌଣସି ଅଭିଯୋଗ ମୋ ପାଖକୁ ଆସି ନ ଥିଲା । ତେଣୁ କାର୍ଯ୍ୟାନୁଷ୍ଠାନର ଆବଶ୍ୟକତା ଉପୁଜି ନ ଥିଲା । ଏତଦ୍ ବ୍ୟତୀତ ଏଥର ଅଧିବେଶନ ବେଳେ ବିରୁଦ୍ଧ ଦଳ ତରଫରୁ ବାରମ୍ବାର କଳାହାଣ୍ଡି ଓ କୋରାପୁଟ ଜିଲ୍ଲାର ମରୁଡ଼ିକ୍ଲିଷ୍ଟ ଲୋକଙ୍କ ସଂପର୍କରେ ବିଭିନ୍ନ ପ୍ରଶ୍ନମାନ ଉଠାଇ ଉତ୍ତେଜନା ସୃଷ୍ଟି କରିବାର ଚେଷ୍ଟା କରିଥିଲେ ହେଁ ତାହା କୌଶଳ କ୍ରମେ ସମାଧାନ କରି ମୁଁ ସୂଚାରୁ-ରୂପେ ବିଧାନସଭା ପରିଚାଳନା କରି ପାରିଥିଲି । ଆଲୋଚନା ବେଳେ ଉପୁଜିଥିବା ଉତ୍ତେଜନାକୁ ହ୍ରାସ କରିବା ପାଇଁ ସଂପୃକ୍ତ ମନ୍ତ୍ରୀମାନଙ୍କୁ ଘଟଣା ସ୍ଥଳ ପରିଦର୍ଶନ ପୂର୍ବକ ବିବରଣୀ ଗୃହକୁ ଜଣାଇବାର ପରାମର୍ଶ ଦେଇ ଉତ୍ତେଜନା କମେଇବାର ପନ୍ଥା ଅବଲମ୍ବନ କରୁଥିଲି ।

ମୁଁ ନିଜେ ଭାବପ୍ରବଣ ହୋଇ ଥରେ ଏକ ଅସୁବିଧା ସୃଷ୍ଟିକରି ତାକୁ ସମାଧାନ କରିବାରେ ସଫଳ ହେଲି । ବିଧାନସଭାରେ ଦକ୍ଷିଣ ପୂର୍ବ ରେଳବାଇର ପ୍ରଧାନ କାର୍ଯ୍ୟାଳୟ ଦାବୀକରି ବିରୁଦ୍ଧ ଦଳରୁ ଆସିଥିବା ପ୍ରସ୍ତାବକୁ ମୁଁ ଭାବପ୍ରବଣ ବଶତଃ ବିଚାର ପାଇଁ ଗ୍ରହଣ କରିଦେବା ଫଳରେ ଏକ ସାମ୍ବିଧାନିକ ଅବସ୍ଥା ଉପୁଜିଲା । ସେଦିନ ୫ଟା ବେଳକୁ ବିଭିନ୍ନ ବିଷୟ ପାଇଁ ଆସିଥିବା ଖର୍ଚ୍ଚଦାବୀର ଶେଷଦିନ ଯୋଗୁଁ ଆଲୋଚନା ହୋଇ ଗୃହୀତ ହୋଇ ନ ଥିବା ଖର୍ଚ୍ଚଦାବୀ ଗୁଡ଼ିକ ଗିଲୋଟିନ୍ ଦ୍ୱାରା ଗ୍ରହଣ କରାଇବାର ନିୟମ ଅଛି । ତେଣୁ ମୁଲତବୀ ପ୍ରସ୍ତାବ ଗ୍ରହଣ କଲେ ନିୟମାନୁଯାୟୀ ତାହା ୪ଟା ବେଳକୁ ଆରମ୍ଭ ହୋଇ ଦୁଇଘଣ୍ଟା ଆଲୋଚନା ହେବ । ତେଣୁ ଏଥି ମଧ୍ୟରୁ ଗୋଟିଏ ହେଲେ ଅନ୍ୟଟି ହୋଇ ପାରିବ ନାହିଁ । ଏଥି ପାଇଁ ସମସ୍ତଙ୍କୁ ମୋ କୋଠରୀରେ ବସାଇ ଏକ ସମାଧାନ କଲି । ମୁଲତବୀ ପ୍ରସ୍ତାବ ବିରୋଧରେ ସରକାରୀ ଦଳ ଭୋଟ ଦେବେ ତେଣୁ ତାହା କଟିଗଲେ ଖରାପ ଫଳ ହେବାଯଦି ସମସ୍ତେ No. - Date ନାମରେ ଏକ ପ୍ରସ୍ତାବ ଆଣିବେ, ତେବେ ତାହା ସର୍ବ ସମ୍ମତ ହେବ ଏବଂ ଏହାର କିଛି ଭଲ ଫଳ ହେବ ବୋଲି କହିବାରୁ ସମସ୍ତେ ମୋ କଥାରେ ରାଜି ହେବାରୁ ଏହି ସାମ୍ବିଧାନିକ ଅସୁବିଧା ଦୂର ହୋଇ ପାରିଲା ଏବଂ ଏହି ବଜେଟ ଅଧିବେଶନ ଅତିଭଲ ଭାବେ ସମାପ୍ତ ହେଲା । ଅନ୍ୟ ରାଜ୍ୟ ମାନଙ୍କରେ ବହୁ ଅସୁବିଧା ସୃଷ୍ଟି ହୋଇ ବିଧାନସଭାରେ ଅଚଳ ଅବସ୍ଥା ସୃଷ୍ଟି ହୋଇଥିଲା ବେଳେ କେତେକ ବିଧାନସଭାରେ ସେପରି ଘଟଣା ମୁଁ ଘଟିବାକୁ ଦେଇ ନ ଥିବାରୁ ବଜେଟ ଅଧିବେଶନ ଶେଷ ବେଳକୁ ମୁଖ୍ୟମନ୍ତ୍ରୀ ବିରୋଧିଦଳର ନେତା ଶ୍ରୀ ବିଜୁ ପଟ୍ଟନାୟକ, ଶ୍ରୀ ରାମ କୃଷ୍ଣ ପଟ୍ଟନାୟକ, ତ୍ରିଲୋଚନ କାନୁନଗୋ, ପ୍ରସନ୍ନ କୁମାର ପାଟଶାଣୀ ଭଳି ବିଧାନସଭା ସଭ୍ୟମାନେ ବିଧାନସଭା ପରିଚାଳନାରେ ମୋର ଧୈର୍ଯ୍ୟ ସାହସ ଓ ସହିଷ୍ଣୁତାର ଭୂୟସୀ ପ୍ରଶଂସା କରିଥିଲେ ।

## ୪୦ତମ ସ୍ୱାଧୀନତା ଉତ୍ସବ

୧୯୮୭ ମସିହା ଅଗଷ୍ଟ ମାସ ନ'ଅ ତାରିଖ ଦିନ ଜାତୀୟସ୍ତରରେ ଭାରତ ଛାଡ଼ ଆନ୍ଦୋଳନର ଭାରତର ୪୦ତମ ବାର୍ଷିକ ଉତ୍ସବ ସର୍ବତ୍ର ପାଳନ ହେବାର ସ୍ଥିର ହୋଇଥାଏ । ବିଶେଷ କରି ପ୍ରତି ରାଜ୍ୟର ବିଧାନସଭା ମାନଙ୍କରେ

ଏହା ପାଳନ ହେବାକୁ ସ୍ଥିର ହେବାପରେ ରାଜ୍ୟପାଳଙ୍କ ସଭାପତିତ୍ୱରେ ରଜ୍ୟସ୍ତରୀୟ କମିଟିମାନ ଗଠନ କରାଗଲା । ତେଣୁ ରାଜ୍ୟପାଳଙ୍କ ନିମନ୍ତ୍ରଣ କ୍ରମେ ସେଇବର୍ଷ ଜୁଲାଇ ମାସରେ ଓଡ଼ିଶାର ବିଭିନ୍ନ ରାଜନୈତିକ ଦଳର ନେତା ତଥା ସ୍ୱାଧୀନତା ସଂଗ୍ରାମୀ ଓ ଅନ୍ୟ ବିଶିଷ୍ଟ ନେତା ମାନଙ୍କର ଏକ ସ୍ୱତନ୍ତ୍ର ଅଧିବେଶନ ବସିବାର ସ୍ଥିରହେଲା । ତହିଁ ପୂର୍ବରୁ ବିଧାନସଭା ପ୍ରାଙ୍ଗଣରେ ରାଜ୍ୟପାଳଙ୍କ ସଭାପତିତ୍ୱରେ ଉକ୍ତ ଉତ୍ସବ ପାଳିତ ହେବ । ସ୍ୱାଧୀନତା ସଂଗ୍ରାମରେ ଯୋଗଦେଇ ଓଡ଼ିଶାରେ ମୃତ୍ୟୁବରଣ କରି ଶହୀଦ ହୋଇଥିବା ସ୍ଥାନମାନଙ୍କରୁ ପବିତ୍ର ମାଟି ଅଣାଯାଇ ତାକୁ କିଭଳି ଦିଲ୍ଲୀର ସର୍ବଭାରତୀୟ ଉତ୍ସବକୁ ପଠାଯିବ ସେସବୁର କାର୍ଯ୍ୟସୂଚୀ ନିରୂପଣ ପାଇଁ କେତେଜଣ ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ଓ ସରକାରଙ୍କ କେତେକ ଉଚ୍ଚପଦସ୍ଥ କର୍ମଚାରୀଙ୍କୁ ନେଇ ଏକ କମିଟି ମଧ୍ୟ ଗଠିତ ହୋଇଥିଲା । ୧୯୪୨ ମସିହା ଅଗଷ୍ଟ ନ'ଅ ତାରିଖରେ ଜାତିର ଜନକ ମହାତ୍ମାଗାନ୍ଧୀଙ୍କ ନେତୃତ୍ୱରେ, ଜାତୀୟ କଂଗ୍ରେସ, ଭାରତ ଛାଡ଼ ଆନ୍ଦୋଳନର ସଂକଳ୍ପ ନେଇଥିଲା ତାହାରି ସ୍ମୃତିକୁ ପୁଣିଥରେ ଉଦ୍‌ଜ୍ଜିବୀତ କରି ଦେଶର ଅଗଣିତ ନରନାରୀଙ୍କ ମଧ୍ୟରେ ଏକ ଜାତୀୟ ଭାବ ଉଦ୍ରେକ କରାଇବା ଏଭଳି ଉତ୍ସବ ପାଳନର ପ୍ରଧାନ ଲକ୍ଷ୍ୟଥିଲା ।

ଯାହାହେଉ ଜାତୀୟ କାର୍ଯ୍ୟକ୍ରମ ଅନୁଯାୟୀ ୧୯୮୭ ଅଗଷ୍ଟ ୯ ତାରିଖ ଦିନ ବିଧାନସଭା ପ୍ରାଙ୍ଗଣରେ ଏକ ମନୋରମ ଓ ଗାମ୍ଭୀର୍ଯ୍ୟ ପୂର୍ଣ୍ଣ ପରିବେଶ ମଧ୍ୟରେ ଉକ୍ତ ଉତ୍ସବର ଆୟୋଜନ ହେଲା । ମଂଚ ଉପରେ ରାଜ୍ୟପାଳ ମୁଖ୍ୟମନ୍ତ୍ରୀ ଓ ମୁଁ (ବାଚସ୍ପତି) ବସିଲୁଁ । କମିଟିର ନିଷ୍ପତ୍ତି ଅନୁଯାୟୀ ଓଡ଼ିଶାର ବିଭିନ୍ନ ଆଠଟି ସ୍ଥାନରୁ ମାଟିପାତ୍ରରେ ସଂଗ୍ରହ ହୋଇଥିବା ପବିତ୍ର ମାଟିକୁ ସେଠାକାର ଜଣେ ସ୍ୱାଧିନତା ସଂଗ୍ରାମୀ ଓ ଜଣେ ମନ୍ତ୍ରୀ ଧରି ଉକ୍ତ ମଣ୍ଡପରେ ପହଞ୍ଚି ସେଗୁଡ଼ିକୁ ରାଜ୍ୟପାଳଙ୍କ ହସ୍ତରେ ଅର୍ପଣ କଲେ ଏବଂ ସେ ଉକ୍ତ ପାତ୍ର ଗୁଡ଼ିକ ମୋ ହାତକୁ ବଢାଇ ଦେଉଥିଲେ । ଗୋଟି ଗୋଟି କରି ସେଗୁଡ଼ିକୁ ଟେବୁଲ୍ ଉପରେ ସଜାଇ ରଖିଲା ପରେ ସେଥିରେ ଆସିଥିବା ମାଟିକୁ ମୁଁ ଅନ୍ୟ ଏକ ବଡ଼ପାତ୍ରରେ ମିଶାଇ ସେଥିରୁ କିଛିମାଟି ଦିଲ୍ଲୀ ନେବାପାଇଁ କାଢ଼ି ଦୁଇଜଣ ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ଓ ଦୁଇଜଣ ବିଶିଷ୍ଟ ଖେଳାଳୀଙ୍କ ହାତରେ ଅର୍ପଣ କଲି ତହିଁ ପୂର୍ବରୁ ମୁଁ ପ୍ରଥମେ ଏକ ଆବେଗ ପୂର୍ଣ୍ଣ ଭାଷଣରେ ସମସ୍ତଙ୍କୁ ସ୍ୱାଗତ ଜଣାଇ ସ୍ୱାଧିନତା ସଂଗ୍ରାମର ଶହୀଦ୍ ମାନଙ୍କୁ ମୋର ଭକ୍ତିପୂତ ଶ୍ରଦ୍ଧାଞ୍ଜଳୀ ଅର୍ପଣ କଲି । ମୋ ପରେ ମୁଖ୍ୟମନ୍ତ୍ରୀ ଓ ରାଜ୍ୟପାଳ ମଧ୍ୟ ଭାଷଣ ଦେଇଥିଲେ । ଏହି ଉତ୍ସବ ପୂର୍ବାହ୍ନ ୧୦ଘଟିକାରୁ ୧୧ଘଟିକା ପର୍ଯ୍ୟନ୍ତ ପ୍ରାୟ ଏକଘଣ୍ଟା ଚାଲିବାପରେ ସମାପ୍ତ ହେଲା ଏବଂ ତା'ପରେ ବିଧାନସଭା ବୈଠକ ପୂର୍ବାହ୍ନ ୧୧ଘଣ୍ଟାରୁ ମୋ ଅଧ୍ୟକ୍ଷତାରେ ଆରମ୍ଭ ହେଲା । ଜନତା ଦଳର ବିଧାନସଭା ସଭ୍ୟମାନେ ଏହି ବୈଠକକୁ ସଂପୂର୍ଣ୍ଣ ବାସନ୍ଦ କରିଥିବାରୁ ଆସି ନ ଥିଲେ । ଅନ୍ୟ ସ୍ୱାଧୀନ ସଭ୍ୟ ଓ କେତେକ ଦଳୀୟ ସଭ୍ୟ ମିଶି ମୋଟରେ ବିରୁଦ୍ଧ ଦଳରୁ ପ୍ରାୟ ପାଞ୍ଚ, ଛଅ ଜଣ ବିଧାୟକ ସେ ଅଧିବେଶନରେ ଯୋଗ ଦେଇଥିଲେ ମାତ୍ର ସରକାରୀ ଦଳର ସମସ୍ତ ସଭ୍ୟ ଉକ୍ତ ବୈଠକରେ ଯୋଗ ଦେଇଥିଲେ । ବୈଠକ ଆରମ୍ଭରେ ସମସ୍ତେ ୧୯୪୨ ମସିହାର ଐତିହାସିକ ଭାରତଛାଡ଼ ଆନ୍ଦୋଳନରେ ତଥା ତହିଁ ପୂର୍ବରୁ ସ୍ୱାଧୀନତା ଆନ୍ଦୋଳନରେ ଯୋଗଦେଇ ଶହୀଦ ହୋଇଥିବା ବ୍ୟକ୍ତିଙ୍କୁ ଶ୍ରଦ୍ଧାଞ୍ଜଳି ଅର୍ପଣ କରି ଏକ ପ୍ରସ୍ତାବ ଆଗତ କରିଥିଲେ । ଉକ୍ତ ପ୍ରସ୍ତାବକୁ କଂଗ୍ରେସ ସହିତ ସହମତି ପ୍ରକାଶ କରି ଭାରତର ଜାତୀୟ ଆନ୍ଦୋଳନ ସଂପର୍କରେ ଭାଷଣ ଦେବାପରେ ବିଧାନ ସଭାର ବୈଠକ ସମାପ୍ତ ହୋଇ ସେପ୍ଟେମ୍ବର ମାସ ୧୦ ତାରିଖକୁ ମୁଲତବୀ ରହିଲା ।

# ''ଚତୁର୍ଥ ଥର ପାଇଁ ମୋର ବିଦେଶ ଯାତ୍ରା''

ଲଣ୍ଡନ ଠାରେ ଅନୁଷ୍ଠିତ ଅଧିବେଶନର ସମାପ୍ତି ବେଳେ ସ୍ଥିର କରାଯାଇଥିବା ଅନୁସାରେ ଏଥର ଗ୍ରାମ ଗୋଷ୍ଠୀ ସଂସଦୀୟ ସଂଘର (C.P.A.) ଅଧିବେଶନ ମାଲେସିଆର ରାଜଧାନୀ କ୍ୱାଲାଲୁମ୍ପୁର ଠାରେ ଆରମ୍ଭ ହେଲା । ତେଣୁ ପୂର୍ବ ବର୍ଷ ଭଳି ଓଡ଼ିଶା ବିଧାନ ସଭାର ପ୍ରତିନିଧି ଭାବରେ ମୋର ସେଥିରେ ଯୋଗ ଦେବାର ସ୍ଥିର ହେଲା । ଏଥିପାଇଁ ପ୍ରତିଥର ପରି ଏଥର ମଧ ଦିଲ୍ଲୀରେ ଲୋକ ସଭାର ଅଧକ୍ଷ ଶ୍ରୀଯୁକ୍ତ ବଳରାମ ଝାକରଙ୍କ ସଭାପତିତ୍ୱରେ ଭାରତର ସମସ୍ତ ରାଜ୍ୟମାନଙ୍କର ବିଧାନ ସଭା ଅଧକ୍ଷ, ଉପାଧକ୍ଷ ଓ କାଉନସିଲ ଚେୟାରମେନ୍ ମାନଙ୍କ ଅଧିବେଶନ ବସି ଉକ୍ତ କ୍ୱାଲାଲୁମ୍ପୁର ଅଧିବେଶନରେ ସ୍ଥରୀକୃତ ହୋଇଥିବା ଆଲୋଚ୍ୟ ବିଷୟ ଗୁଡ଼ିକର ଆଲୋଚନା ସଂକ୍ରାନ୍ତରେ ପ୍ରସ୍ତୁତି ହେବା ସଙ୍ଗେ ସଙ୍ଗେ ଆମଦେଶର ପ୍ରତିନିଧି ମାନଙ୍କ ମଧରୁ କିଏ କେଉଁ ବିଷୟରେ କହିବାର ମଧ ସ୍ଥିରକରାଗଲା । କ୍ୱାଲାଲୁମ୍ପୁର ଠାରେ ଅନୁଷ୍ଠିତ ହେବାକୁ ଥିବା ଖୋଲା ଅଧିବେଶନରେ ଆଲୋଚ୍ୟ ବିଷୟମାନଙ୍କ ମଧରୁ ପାର୍ଲ୍ୟାମେଣ୍ଟ ବୈଠକରେ ଜୀବନ୍ତ ଦିଗ୍‌ଦର୍ଶନ ଓ ଲୋକ ପ୍ରତିନିଧି ମାନଙ୍କ ଅପ୍ରିୟତା ପାଇଁ ଦାୟୀ କିଏ '' ଓ ତହିଁର ପେନାଲ ଅଧିବେଶନରେ Accountability of Administration to Parliament' ଏହି ଦୁଇଟି ବିଷୟରେ ମୁଁ ଏବଂ ଭାରତରୁ ଯାଉଥିବା ଅନ୍ୟ ୫/୬ ଜଣ ପ୍ରତିନିଧି ଭାଗ ନେବାର ସ୍ଥିର କରାଗଲା । ଏହି ବିଷୟ ନିୟମ ଅନୁଯାୟୀ ଆଗରୁ (C.P.A.) କେନ୍ଦ୍ର ଅଫିସକୁ ମଧ ଜଣାଇ ଦିଆଗଲା ।

ପ୍ରତିଥର ଏହି ଅଧିବେଶନକୁ ଗଲାବେଳେ ପୃଥିବୀର ଅନ୍ୟଦେଶ ଗୁଡ଼ିକ ଭ୍ରମଣ କରିବାର ସୁବିଧା ମଧ ପ୍ରତିନିଧି ମାନଙ୍କୁ ମିଳିଥାଏ । ତେଣୁଁ ଏଥର ମଧ ମାଳୟର ରାଜଧାନୀ କ୍ୱାଲାଲୁମ୍ପୁର ବ୍ୟତୀତ, କୋରିଆର ରାଜଧାନୀ ସିଓଲ, ହଂକଂ, ଜାପାନର ରାଜଧାନୀ ଟୋକିଓ ସହର, ଫିଲିପିନ୍‌ର ରାଜଧାନୀ ମାନିଲା ଓ ପରିଶେଷରେ ସିଙ୍ଗାପୁର ପ୍ରଭୃତି ଭ୍ରମଣ କରିବାର ସ୍ଥିର ହେଲା ଏ ବର୍ଷର ଭ୍ରମଣ ସଂକ୍ରାନ୍ତରେ ମୋ ପକ୍ଷରେ ଏକ ବିଶେଷ ସୁବିଧା ହେଲା ଯେ, ଆମ ବିଧାନ ସଭାର ସେକ୍ରେଟେରୀ ଶ୍ରୀ ବଳଭଦ୍ର ପାତ୍ରଙ୍କୁ ମଧ ଜଣେ ପ୍ରତିନିଧି ଭାବେ ସମ୍ମିଳନୀରେ ଯୋଗ ଦେବାର ସୁବିଧା ମିଳିଥିଲା । ପ୍ରତିବର୍ଷ ଭାରତରେ ବିଭିନ୍ନ ବିଧାନସଭାର ସେକ୍ରେଟେରୀ ମାନଙ୍କ ମଧରୁ ପାଳି ଅନୁସାରେ ତିନିଜଣଙ୍କୁ ମାତ୍ର ଅଧିବେଶନରେ ଯୋଗ ଦେବାର ତଥା ତହିଁ ସଙ୍ଗେ ସଙ୍ଗେ ବିଭିନ୍ନ ଦେଶକୁ ଭ୍ରମଣରେ ଯିବାର ସୁଯୋଗ ମିଳିଥାଏ । ଗତ ବର୍ଷ ଏହି ଅଧିବେଶନ ବ୍ରିଟେନର ଲଣ୍ଡନ ଠାରେ ହେଲା ବେଳେ ମୁଁ ଏକୁଟିଆ ଏଥିରେ ଯୋଗ ଦେଇଥିବାରୁ କେବଳ ଲଣ୍ଡନର ପାଖାପାଖି କେତେକ ଅଂଚଳକୁ ଭ୍ରମଣରେ ଯାଇ ସେଠାରୁ ଭାରତକୁ ଫେରି ଆସିଥିଲି, ମାତ୍ର ଏଥର ଆମ ବିଧାନ ସଭାର ସେକ୍ରେଟେରୀ ଶ୍ରୀ ବଳଭଦ୍ର ପାତ୍ର ମୋର ସହଯାତ୍ରୀ ହୋଇ ଥିବାରୁ ଆମେ ଦୁହେଁ ଯାକ ସମସ୍ତ ସ୍ଥାନ ପରିଭ୍ରମଣର ସୁଯୋଗ ନେଇ ପାରିଥିଲୁଁ । ଏଥର ମୁଁ ଓ ବିଧାନସଭା ସେକ୍ରେଟେରୀ ଯେଉଁ ଯେଉଁ ଦେଶ ପରିଭ୍ରମଣ କରିବା କଥା ସେ ସବୁ ଦେଶର ସରକାର ମାନଙ୍କୁ ଓ ସଂପୃକ୍ତ ଦେଶରେ ଭାରତରୁ ନିଯୁକ୍ତ ହାଇ କମିଶନରଙ୍କୁ ପୂର୍ବରୁ ଜଣାଇ ଦିଆ ଯାଇଥିଲା । ନିୟମ ଅନୁସାରେ ଯେଉଁ ଦେଶରେ ଅଧିବେଶନ ହେଉଛି ସେ ଦେଶ ବ୍ୟତୀତ ଅନ୍ୟ ତିନିଟି ଦେଶ ଭ୍ରମଣ ପାଇଁ ସୁବିଧା ମିଳିଥାଏ ସେ ସବୁ ଦେଶରେ ରହିବା ଓ ସେଠାକୁ ଯିବା ପ୍ରଭୃତି ଦାୟିତ୍ୱ ହାଇକମିସନର ତୁଲାଇ ଥାଆନ୍ତି ।

ଏହି ଦାୟିତ୍ୱ ତୁଲାଇବାରେ ସେହି ସବୁ ଦେଶରେ ପ୍ରଚଳିତ ମୁଦ୍ରା ନିର୍ଦ୍ଧାରିତ ପରିମାଣର ଯୋଗାଇ ଥାଆନ୍ତି ଓ ଉଡ଼ାଜାହାଜରେ ପହୁଁଞ୍ଚିଲା ବେଳକୁ ସେଠାରୁ ନେଇ ଏକ ହୋଟେଲରେ ରହଣୀର ବ୍ୟବସ୍ଥା କରିବା ସହ ପୁଣି ବିଦାୟ ନେଲା ବେଳକୁ ଭି.ଆଇ.ପି. ମାନଙ୍କୁ ସେମାନେ ଯେଉଁ ବିମାନରେ ଯିବାର ସ୍ଥିର ହୋଇଥିବା ସେଥିରେ ବସାଇ ଦିଅନ୍ତି । ଏ ବାବଦରେ ସମସ୍ତ ଖର୍ଚ୍ଚ ସଂପୃକ୍ତ ରାଜ୍ୟ ସରକାର ମାନେ ଭାରତ ସରକାରଙ୍କ ଜରିଆରେ ପଇଠ କରି ଥାଆନ୍ତି । ଏଥର

ଆମ ଭ୍ରମଣର ନିର୍ଦ୍ଧାରିତ ସଂଖ୍ୟକ ଦେଶ ଅପେକ୍ଷା ଦୁଇଟି ଦେଶ ଅଧିକା ହୋଇଥିବାରୁ ଉକ୍ତ ଦୁଇ ଦେଶରେ ଆମର ରହିବା ଓ ଖାଇବା ଖର୍ଚ୍ଚ ଯେଉଁ ପରିବହନ ଏଜେନ୍‌ସି ଆମ ପାଇଁ ଉଡ଼ାଜାହାଜ ଟିକଟ ଯୋଗାଇ ଥିଲେ ତାଙ୍କର ଉପରେ ନ୍ୟସ୍ତ କରାଯାଇଥିଲା । ଏହି ସମୟରେ ଭାରତର ବିଭିନ୍ନ ରାଜ୍ୟର ଅନ୍ୟ ଆଠଜଣ ଅଧକ୍ଷ ଏକ ସଙ୍ଗେ ଦଳବାନ୍ଧି କ୍ୱାଲାଲୁମ୍‌ପୁର ଯିବା ବାଟରେ ବିଭିନ୍ନ ଦେଶ ବୁଲୁଥିଲେ । ସେମାନେ ବହୁତ ଆଗରୁ ଭ୍ରମଣରେ ଯାଇଥିବାରୁ ଆମେ ତାଙ୍କ ସହଯାତ୍ରୀ ହୋଇ ପାରିଲୁଁ ନାହିଁ ।

୧୯୮୭ ମସିହା ଅଗଷ୍ଟ ତା୧୯ରିଖରେ ଦୀଲ୍ଲିର ବିମାନ ଯୋଗେ ବାହାରିବାର ଠିକଣା ହୋଇଥିବା ଅନୁସାରେ ଆମେ ତା୧୭ରିଖ ଭୂବନେଶ୍ୱରରୁ ଦିଲ୍ଲୀ ଯାତ୍ରା କଲୁଁ । ଏହା ପୂର୍ବରୁ ଆମ ବିଧାନ ସଭା ସଚିବାଳୟର ଦୁଇଜଣ ଅଫିସର ଦିଲ୍ଲୀ ଯାଇ ଆମେ ପରିଦର୍ଶନରେ ଯିବାକୁ ଥିବା ଦେଶ ଗୁଡ଼ିକର ଦୂତାବାସରୁ ଆମ ଦୁଇଜଣଙ୍କ ପାଇଁ ଭିସା ବା ପ୍ରବେଶ ଅନୁମତି ପତ୍ର ଯୋଗାଡ଼ କରିଥାଆନ୍ତି । ତେଣୁ ଆମେ କେବଳ ତା୧୮ରିଖ ଦିନଟି ଦିଲ୍ଲୀରେ ରହି ତହିଁ ପରଦିନ ବମ୍ବେ ଯାତ୍ରା କଲୁଁ । ବମ୍ବେରେ ଆମର ରହିବା ଇତ୍ୟାଦିର ଦାୟିତ୍ୱ ଆମକୁ ଟିକଟ ଯୋଗାଇ ନେଇଥିବା ଉଡ଼ା ଜାହାଜ ବହନ କରିଥିବାରୁ ବିମାନ ବନ୍ଦରରୁ ଆମକୁ ନେଇ ଏକ ହୋଟେଲରେ ରହିବାର ବନ୍ଦୋବସ୍ତ କରିଦେଲେ । ସେଦିନ ରାତି ତିନିଟା ବେଳୁ ଉଠି ସମସ୍ତ ପ୍ରାତଃ କୃତ୍ୟ ଶେଷ କରି ଆନ୍ତର୍ଜାତିକ ବିମାନବନ୍ଦର ସାନ୍ତାକ୍ରୁଜକୁ ଗଲୁଁ । ସେଠାରେ ପହୁଁଞ୍ଚି ଆମର ଜିନିଷପତ୍ର ବିମାନରେ ରଖିବାର ବନ୍ଦୋବସ୍ତ କରି ନିୟମ ଅନୁଯାୟୀ ନିଜେ ଯାଞ୍ଚ ହୋଇ ହଂକଂ ଅଭିମୁଖେ ଯାତ୍ରା କଲୁଁ ।

## ''ହଂକଂ ପରିଦର୍ଶନ''

ମୁଁ ବିମାନରେ ପ୍ରଥମ ଶ୍ରେଣୀ ଯାତ୍ରୀ ହୋଇଥିବାରୁ ମୁଁ ଏକ ସ୍ଥାନରେ ବସିଲି ଓ ଆମ ବିଧାନସଭା ସେକ୍ରେଟେରୀ Executive ଶ୍ରେଣୀର ଅନ୍ୟ ଏକ ସ୍ଥାନରେ ବସିଲେ । ପ୍ରଥମ ଶ୍ରେଣୀ ଯାତ୍ରୀ ହୋଇଥିବାରୁ ମୋତେ ଘନ ଘନ ବିଭିନ୍ନ ପ୍ରକାରର ଖାଦ୍ୟ ଓ ପାନୀୟ ଯୋଗାଇ ଦିଆ ଯାଉଥିଲା । ମୁଁ ସାମନା ଇଞ୍ଜିନ ପାଖ କୋଠରୀରେ ବସିଥିଲି, ଆମେ ଅପରାହ୍ନ ପ୍ରାୟ ୩ଟା ବେଳେ (ହଂକଂର ସମୟ ଅନୁସାରେ) ସେଠାକାର ଆନ୍ତର୍ଜାତିକ ଉଡ଼ାଜାହାଜ ଷ୍ଟେସନରେ ଓହ୍ଲାଇଲୁଁ । ହଂକଂରର ରହଣୀ ଓ ପରିଦର୍ଶନ ଆମର ସରକାରୀ ଗସ୍ତର ଅନ୍ତର୍ଭୁକ୍ତ ହୋଇ ନ ଥିଲେ ହେଁ ସେଠାକାର ଭାରତୀୟ ହାଇକମିସନଙ୍କ ଅଫିସରୁ ଜଣେ ଅଫିସର ଆସି ଆମକୁ ବିମାନ ବନ୍ଦରରେ ଦେଖାକରି ଅଭିବାଦନ ଜଣାଇ ଥିଲେ । ହଂକଂରେ ଆମର ରହଣୀ ଓ ଭୋଜନ ଇତ୍ୟାଦି ଉକ୍ତ ପରିବହନ କମ୍ପାନୀ (Carriage contact) ବହନ କରିଥିବାରୁ ସେମାନେ ସେଠାକାର ମାର୍କପୋଲ ନାମକ ଏକ ୬୦ ମହଲା ବିଶିଷ୍ଟ ପଞ୍ଚତାରକା ହୋଟେଲରେ ଆମର ରହଣୀ ସ୍ଥାନ ନିରୂପିତ ହୋଇଥିବାର ଜଣାଇ ଆମକୁ ସେଠାକୁ ନେଇଗଲେ । ସେଠାରେ କେବଳ ଅଳ୍ପକାଳ ପାଇଁ ଆମକୁ ବିନା ଖର୍ଚ୍ଚରେ ରହିବା ଓ ଖାଇବାକୁ ମିଳିଲା । ଆମେ ଭୁବନେଶ୍ୱର ଛାଡ଼ିବା ପୂର୍ବରୁ ଏଠାକାର ଖଣି ନିଗମ ପରିଚାଳନା ନିର୍ଦ୍ଦେଶକ ଶ୍ରୀଯୁକ୍ତ ଅମୂଲ୍ୟ କୁମାର ନନ୍ଦ ସେଠାରେ ଥିବା ତାଙ୍କର ଜଣେ ବନ୍ଧୁ ଭାରତୀୟ U.C.O Bank ର ବ୍ରାଞ୍ଚ ମେନେଜର ଶ୍ରୀଯୁକ୍ତ ଭେଙ୍କଟଙ୍କୁ ପତ୍ର ଯୋଗେ ଆମର ଯିବା ଖବର ଜଣାଇ ଆମକୁ ବୁଲାବୁଲି ଓ କିଣାକିଣିରେ ସାହାଯ୍ୟ କରିବାକୁ ତାଙ୍କୁ ଅନୁରୋଧ କରିଥିଲେ । ସେଠାକାର ତାଙ୍କର ଫୋନ ନମ୍ବର ମଧ ଶ୍ରୀଯୁକ୍ତ ନନ୍ଦ ଆମକୁ ଦେଇଥିଲେ । ତେଣୁ ଉକ୍ତ ମାର୍କପୋଲ ହୋଟେଲରେ ରହି ଶ୍ରୀଯୁକ୍ତ ଭେଙ୍କଟଙ୍କୁ ଆମେ ରହିଥିବା ହୋଟେଲ ଓ ଆମ କୋଠରୀର ନମ୍ବର ଜଣାଇଲୁଁ । ଆମ ପହୁଁଞ୍ଚିବା ସମ୍ବାଦ ପାଇବା ମାତ୍ରେ ସେ ଆସି ଆମକୁ ସାକ୍ଷାତ କଲେ ଓ ସଂଧ୍ୟା ବେଳକୁ ଆସି ଆମକୁ ସଙ୍ଗରେ ନେଇ କେତେକ ବ୍ୟବସାୟ କେନ୍ଦ୍ରକୁ ବୁଲି ବାହାରିଲେ । ସେଠାରେ ମୁଁ ଓ ଆମ ବିଧାନସଭା ସଚିବ ବଳଭଦ୍ର ଉଭୟେ ଦୁଇଟି ବଡ଼ ବାକ୍ସ କିଣିଲୁଁ । ତତ୍ ପରେ ତାଙ୍କ ଅନୁରୋଧ କ୍ରମେ ଆମେ ସମସ୍ତେ ଗୋଟିଏ ହୋଟେଲରେ ରାତ୍ରି

ଭୋଜନ କରି ଆମେ ରହୁଥିବା ହୋଟେଲକୁ ଆସି ରାତ୍ରି ଯାପନ କଲୁଁ । ତହିଁ ପରଦିନ ସକାଳ ପ୍ରାୟ ଦଶଟା ବେଳକୁ ଶ୍ରୀଯୁକ୍ତ ଭେଙ୍କଟ ତାଙ୍କ ବେଙ୍କର ଗୋଟିଏ କାର ଆମକୁ ସହରର ମୁଖ୍ୟ ସ୍ଥାନ ବୁଲି ଦେଖିବା ପାଇଁ ପଠାଇଲେ । ସେଦିନ ଅପରାହ୍ନ ଦୁଇଟା ପର୍ଯ୍ୟନ୍ତ ସହରର ବିଭିନ୍ନ ମୁଖ୍ୟ ଦର୍ଶନୀୟ ସ୍ଥାନ ବୁଲି ଦେଖିଲୁଁ ।

ତାଙ୍କ ଡ୍ରାଇଭର ଜଣେ ଭାରତୀୟ । ସେଠାରେ ବହୁଦିନ ଧରି ରହିବା ଫଳରେ ସେଠାକାର ନାଗରିକତ୍ୱ ମଧ ଗ୍ରହଣ କରିବାର ତାଙ୍କଠାରୁ ଜାଣିଲୁଁ । ଗାଡ଼ିରେ ବୁଲି ଦେଖାଇଲା ବେଳେ ସବୁ ସ୍ଥାନର ନାମ ଓ ଇତିହାସ ଜଣେ ଭଲ ଗାଇଡ୍ ଭାବରେ ଆମକୁ ପ୍ରାଞ୍ଜଳ ଭାବରେ ବୁଝାଉ ଥାଆନ୍ତି । ଉକ୍ତ ଡ୍ରାଇଭର ବେଙ୍କର ଚାକିରୀ କରି ମଧ ଅନ୍ୟ ସମୟରେ ଅନ୍ୟ ସଂସ୍ଥାର ଗାଡ଼ି ଚଳାନ୍ତି ଓ ମାସକୁ ସବୁଥିରୁ ମିଶି ପ୍ରାୟ ୧୨/୧୪ ହଜାର ଟଙ୍କା ଦରମା ଆକାରରେ ରୋଜଗାର କରନ୍ତି । ମାତ୍ର ତାଙ୍କ ବେଙ୍କର ମେନେଜର ମାସକୁ ୭/୮ ହଜାର ଟଙ୍କା ଦରମା ପାଆନ୍ତି । ହଂକଂ ସହର ଦୁଇଟି ଅଂଶରେ ବିଭକ୍ତ । ଏ ଦୁଇ ଅଂଶକୁ ସମୁଦ୍ର ତଳେ ଏକ ସୁଡ଼ଙ୍ଗ ଦ୍ୱାରା ସଂଯୋଗ କରାଯାଇଅଛି । ଏହି ସୁଡ଼ଙ୍ଗର ଲମ୍ୱ ପ୍ରାୟ ଦୁଇ କିଲୋମିଟର । ଉକ୍ତ ସୁଡ଼ଙ୍ଗ ମଧ ବେଶ ଓସାରିଆ ଓ ସେଥିରେ ଉଭୟ ଦିଗରୁ ଗାଡ଼ି, ମୋଟର ଓ ଲୋକେ ଅନାୟାସାରେ ଯିବା ଆସିବା କରୁଥିବାର ଦେଖିଲୁଁ । ଆମେ କାର ଯୋଗେ ହଂକଂର ଯେଉଁ ଅଂଶଟିକୁ ବୁଲି ଗଲୁଁ ତାହା ଏକ ବଡ଼ ସହର । ସେଠାକାର ବନ୍ଦରକୁ ମଧ ଗଲୁଁ । ସେଠାରୁ କିଛି ଦୂରରେ ହଂକଂର ଆଉ ଏକ ଅଂଶ (ଦ୍ୱୀପ) ଥିବାର ଦେଖିଲୁଁ । ସେଠାକୁ ଲୋକ ଜାହାଜ ଯୋଗେ ଯିବା ଆସିବା କରୁଥିବାର ଦେଖିଲୁଁ ।

ଉକ୍ତ ଡ୍ରାଇଭର ଆମକୁ ନେଇ ବୁଲୁଥିବାବେଳେ ଆମକୁ ଏକ ରହସ୍ୟପୂର୍ଣ୍ଣ କଥା କହିଲେ । ବେଙ୍କର ଦୈନନ୍ଦିନ କାମ ସାରିଲା ପରେ ଉକ୍ତ ସହରରେ ଥିବା ଏକ Night club (ରାତ୍ରି କାଳୀନ ସଂଘ) ରେ କାମ କରି ବେଶ ଭଲ ପରିମାଣର ଅର୍ଥ ରୋଜଗାର କରନ୍ତି । ପ୍ରତିଦିନ ବହୁ ରସିକ ଧନୀ ଲୋକମାନେ ରାତିରେ ଫୁର୍ତ୍ତି କରିବାକୁ ଏହି କ୍ଲବକୁ ଯାଆନ୍ତି । ବେଳେ ବେଳେ ଆମ ଭାରତୀୟ ମାନେ ଏଠାକୁ ବ୍ୟବସାୟ ବା ଅନ୍ୟ କୌଣସି ଉଦ୍ଦେଶ୍ୟରେ ଆସି ଏହି କ୍ଲବକୁ ଯାଇ ବିଶେଷ ଅସୁବିଧାରେ ପଡ଼ିଥିବାର ତାଙ୍କଠାରୁ ଶୁଣିଲୁଁ । ଉକ୍ତ କ୍ଲବକୁ ଗଲେ ସେଠାରେ ଥିବା ଯୁବତୀମାନେ ପୁରୁଷ ମାନଙ୍କୁ ଘେରି ଯାଇ ପାଖରେ ଥିବା ବିଭିନ୍ନ କୋଠରୀକୁ ଟାଣି ନିଅନ୍ତି ଓ ଯୌନ ସଂଯୋଗର ନାନା ପ୍ରକାର ପ୍ରଲୋଭନ ଦେଖାନ୍ତି । ସେଠାରେ ତାଙ୍କ ସହିତ ପ୍ରେମାଳାପ କରୁଥିବା ସମୟରେ ତାଙ୍କ ଠାରୁ କୌଶଳ କ୍ରମେ ଅତି ଦାମିକା ମଦ ଓ ଖାଇବା ଖର୍ଚ୍ଚ ଆଦାୟକରି ତାଙ୍କୁ ଅଧିକ ମଦ୍ୟପାନ କରାଇ ସଂଜ୍ଞାହୀନ ଅବସ୍ଥାରେ ତାଙ୍କର ସମସ୍ତ ଅର୍ଥ ଓ ମୂଲ୍ୟବାନ ଜିନିଷ ପତ୍ର ନେଇ ଶେଷରେ କପର୍ଦ୍ଦକ ଶୂନ୍ୟ କରି ବିଦା କରି ଦିଅନ୍ତି । ଅନେକ ସମୟରେ ଏହି ଭାରତୀୟ ବଦ୍‌ରସିକ ମାନେ ଏପରି ଦୟନୀୟ ଅବସ୍ଥାରେ ପଡ଼ି କାନ୍ଦନ୍ତି ବୋଲି ତାଙ୍କଠାରୁ ଶୁଣିଲୁଁ । ଆମର ସେଠାକୁ ଯିବାର ଅଛି କି ନାହିଁ ବୋଲି ଆମର ମତାମତ ଲୋଡ଼ିଲେ ଓ ଇଚ୍ଛାଥିଲେ ଆମ ପାଇଁ ଟିକେଟ କରି ଆଣି ଦେବେ ବୋଲି ମଧ କହିଲେ । ଆମେ ବ୍ୟବସାୟୀ ବା ଧନୀ ନୋହୁଁ ଆମେ ରାଜନୈତିକ ଉଦ୍ଦେଶ୍ୟ ନେଇ ବିଦେଶ ଭ୍ରମଣରେ ଆସିଛୁଁ । ଆମର ମତାମତ ଜାଣି ସେ ନିରବ ରହିଲେ । ଏହାପରେ ଅନ୍ୟ କେତେକ ସ୍ଥାନ ବୁଲାବୁଲି କରି ଏକ ଭାରତୀୟ ହୋଟେଲରେ ମଧ୍ୟାହ୍ନ ଭୋଜନ ସାରି ଆମେ ରହୁଥିବା ହୋଟେଲକୁ ଫେରିଲୁଁ ।

ବେଙ୍କ କାମ ସାରି ଅପରାହ୍ନରେ ଶ୍ରୀଯୁକ୍ତ ଭେଙ୍କଟ କିଣାକିଣିରେ ଆମକୁ ସାହାଯ୍ୟ କରିବା ପାଇଁ ଆମଠାରେ ଆସି ପହୁଁଚିଲେ । ସେ ବେଙ୍କ ମେନେଜର ଥିବାରୁ କେତେକ ବ୍ୟବସାୟୀଙ୍କ ସଙ୍ଗରେ ତାଙ୍କର ବେଶ ସୁ ସଂପର୍କ ଥିଲା । ଏହିପରି ଜଣେ ଜଣାଶୁଣା ବ୍ୟବସାୟିଙ୍କ ଠାରୁ ସେ ଆମ ପାଇଁ କେତେଟା ସିକୋ ହାତବନ୍ଧା ଘଡ଼ି କିଣି ଦେଲେ । ହଂକଂର ଡ଼ଲାରରେ ଆମକୁ ଗୋଟିଏ ଘଡ଼ିର ମୂଲ୍ୟ ମାତ୍ର ୨୦୦ ଡ଼ଲାର ପଡ଼ିଲା, ଯାହାର ମୂଲ୍ୟ ଆମ ଭାରତୀୟ ମୁଦ୍ରାରେ ଟ.୩୪୦.୦୦ ହେବ । ଜାପାନ ନିର୍ମିତ ଏହି ସିକୋ ହାତବନ୍ଧା ଘଡ଼ି ଭାରତକୁ ଆମଦାନୀ କରିବାକୁ ଦିଆଯାଏ

ନାହିଁ । ଯଦିବା ଚୋରା ଚାଲାଣରେ କିଛି ଘଡ଼ି ଏଠାକୁ ଆସେ ତେବେ ତାହା ଏଠାରେ ଟ.୭୦୦/୮୦୦ ରେ ବିକ୍ରି ହୁଏ । ଆମେ କିନ୍ତୁ ଅଧା ମୂଲ୍ୟରେ ହଂକଂରୁ ଏ ଘଡ଼ି କେବଳ ଭେଙ୍କଟଙ୍କ ଯୋଗୁ ହିଁ ପାଇ ପାରିଲୁଁ ।

କର୍ମ୍ମୀମାନଙ୍କୁ ଉପହାର ଦେବା ପାଇଁ ଶସ୍ତା ଦରରେ କେତେଟା ଡ଼ଟ୍ କଲମ ମଧ୍ୟ କିଣିଲି । ଆମେ ଯେଉଁ ଦୋକାନରୁ ଏ ସବୁ ଜିନିଷ କିଣିଲୁଁ ସେ ଦୋକାନର ମାଲିକ ହେଉଛନ୍ତି ପାକିସ୍ଥାନ ସିନ୍ଧୁ ପ୍ରଦେଶର ଜଣେ ଅଣ ମୁସଲମାନ ଭଦ୍ରବ୍ୟକ୍ତି । ଦେଶର ସ୍ୱାଧୀନତା ପରେ ସିନ୍ଧୁ ପ୍ରଦେଶ ପାକିସ୍ଥାନର ଅନ୍ତର୍ଭୁକ୍ତ ହେବାରୁ ଏହାଙ୍କ ପରି ବହୁ ଅଣ ମୁସଲମାନ ପୃଥିବୀର ବିଭିନ୍ନ ଦେଶକୁ ଚାଲିଯାଇ ବ୍ୟବସାୟ ବଣିଜ୍ୟ କରୁଥିବାର ଦେଖାଯାଏ । ଏହି ସିନ୍ଧୀ ଭଦ୍ରବ୍ୟକ୍ତି ଏଠାରେ ବ୍ୟବସାୟ କଲା ସମୟରେ ଜଣେ ଚୀନା ସ୍ତ୍ରୀକୁ ବିବାହ କରିଥିବା କଥା ତାଙ୍କଠାରୁ ଜାଣିଲୁ । ମାତ୍ର ତା ସତ୍ତ୍ୱେ ତାଙ୍କ ଦୋକାନରେ ଶ୍ରୀକୃଷ୍ଣ ଓ ଜଗନ୍ନାଥ ତଥା ସାଇବାବାଙ୍କ ଫଟୋ ରଖି ପୂଜା କରୁଥିବାର ଦେଖି ଆମେ ଆଶ୍ଚର୍ଯ୍ୟ ହେଲୁଁ । ସେଠାରୁ ଆମେ ଅନ୍ୟ ଏକ ଦୋକାନରେ ଚା ଓ ଗୁଣ୍ଡ ଦୁଧ କିଣୁ ଥିବା ବେଳେ ଉକ୍ତ ସିନ୍ଧୀ ଓ ଭଦ୍ରଲୋକ ସେଠାକୁ ଆସି ଆମେ କିଣିଥିବା ଚା ଓ ଦୁଧର ମୂଲ୍ୟ ଦୋକାନୀକୁ ଦେଇଦେଲେ ଏବଂ ଆମକୁ କହିଲେ, "ଆପଣମାନେ ବିଦେଶ ଭ୍ରମଣରେ ଆସିଛନ୍ତି । ସକାଳେ ଚା ଖାଇବା ବେଳେ ମୋତେ ମନେ ପକାଇବା ପାଇଁ ମୋର ଏଇ ସାମାନ୍ୟ ଦାନଟିକୁ ଗ୍ରହଣ କରିବା ପାଇଁ ଆପଣମାନଙ୍କୁ ଅନୁରୋଧ । ଏହିପରି ଭାବରେ ଆତ୍ମୀୟତା ଜନ୍ମେ ।

ହଂକଂ ଚାଇନା ଦେଶର ଏକ ଉପଦ୍ୱୀପ । ଏହାର ଲୋକ ସଂଖ୍ୟା ପ୍ରାୟ ୬୦।୭୦ ଲକ୍ଷ । ଚାଇନା ଉପନିବେଶବାଦରୁ ମୁକ୍ତ ହୋଇ ସ୍ୱାଧୀନ ହେଲାବେଳେ ଇଂରେଜ ସରକାର ବ୍ୟବସାୟ ବାଣିଜ୍ୟ ପାଇଁ ହଂକଂ ସହରକୁ ଚାଇନା ସରକାରଙ୍କଠାରୁ ୧୦୦ବର୍ଷ ପାଇଁ ପଟା ନେଇଥିଲେ । ସେହିଦିନଠାରୁ ଏହି ସହର ବ୍ରିଟିଶ ସରକାରଙ୍କ ଅଧୀନରେ ଏକ ଉପନିବେଶ ଭାବେ ରହିଆସିଛି ଏବଂ ଏକ ସଂସଦୀୟ ଗଣତାନ୍ତ୍ରିକ ଶାସନ ପ୍ରଣାଳୀରେ ଶାସିତ ହୋଇ ଆସୁଛି । ବ୍ରିଟିସ୍ କର୍ତ୍ତୃତ୍ୱାଧୀନରେ ଥିବା ଯୋଗୁଁ ସଂପୂର୍ଣ୍ଣ ଗଣତାନ୍ତ୍ରିକ ଅଧିକାର ମଧ୍ୟ ଭୋଗ କରି ପାରୁଛି । କିନ୍ତୁ ଅନ୍ୟ ପଟରେ ବିରାଟ ଚାଇନା ଦେଶ, ହିଁ ଉପଦ୍ୱୀପ ଯେଉଁ ଦେଶର ଏକ ଅବିଚ୍ଛେଦ୍ୟ ଅଙ୍ଗ ଯେଠାରେ ବ୍ୟକ୍ତି ସ୍ୱାଧୀନତା ନାହିଁ, ଏକଛତ୍ରବାଦୀ କମ୍ୟୁନିଷ୍ଟ ଶାସନ ବଳବତ୍ତର ରହିଛି । ଆଗାମୀ ୧୯୯୭ ମସିହା ବେଳକୁ ଅର୍ଥାତ୍ ଆଉ ଦଶବର୍ଷ ପରେ ବ୍ରିଟିସ ସରକାରଙ୍କ ପଟାମିଆଦ ପୂର୍ଣ୍ଣ ହେବ । ସେତେବେଳେ ଏହା ଚାଇନା ଦେଶର ଶାସନାଧୀନ ହେବାକୁ ବାଧ୍ୟ । ଯେଉଁମାନେ ଗଣତାନ୍ତ୍ରିକ ରୀତିରେ ବ୍ୟକ୍ତି ସ୍ୱାଧୀନତା ଦୀର୍ଘଦିନ ଭୋଗକରି ସ୍ୱାଧୀନଭାବେ ବ୍ୟବସାୟ ବାଣିଜ୍ୟ କରି ଚଳି ଆସିଛନ୍ତି ସେମାନଙ୍କ ପକ୍ଷରେ ବ୍ୟକ୍ତି ସ୍ୱାଧୀନତା ହରାଇ ଚାଇନା ଦେଶର ଅଙ୍ଗ ହୋଇ ଚାହିଦା ନିଶ୍ଚୟ ଦୁଃଖ ଦାୟକ ।

ଏହି ସହରଟି ଗୋଟିଏ ଦେଶ ଭାବରେ ସିଙ୍ଗାପୁର ପରି ରହି ଆସିଛି । ବ୍ରିଟିଶ ରାଣୀ ଏଠାକାର ଶାସନ ମୁଖ୍ୟ ହେଲେ ହେଁ ଏହି ସହର ଦେଶ ପାଇଁ ପ୍ରତିନିଧି ସଭା, ମନ୍ତ୍ରୀମଣ୍ଡଳ ଓ ପ୍ରଶାସନିକ ବ୍ୟବସ୍ଥା ରହିଛି । ଏଠାରେ କୃଷି ଉତ୍ପାଦନ କିମ୍ବା କୌଣସି ଶିଳ୍ପ ପ୍ରତିଷ୍ଠାନ ମଧ୍ୟ ନାହିଁ ।

କେବଳ ବାଣିଜ୍ୟ ଉପରେ ହିଁ ଲୋକେ ନିର୍ଭରଶୀଳ । ବାଣିଜ୍ୟ କହିଲେ ମୁଦ୍ରା ପରିବର୍ତ୍ତନ (Money Exchange) ଏଠାକାର ମୁଖ୍ୟ ବ୍ୟବସାୟ । ଏଠାରେ ବ୍ରିଟିସ ମୁଦ୍ରା ପ୍ରଚଳନ । ଆମେରିକୀୟ ଓ ଜାପାନୀ ମୁଦ୍ରାର ପରିବର୍ତ୍ତନ ପାଇଁ ସ୍ଥାନେ ସ୍ଥାନେ ବେଙ୍କମାନ ରହିଛି । ପୃଥିବୀର ବହୁ ଦେଶର ବ୍ୟବସାୟୀମାନେ ଏଠାରେ ବ୍ୟବସାୟ କରନ୍ତି । ଏସିଆ ମହାଦେଶର ଏହା ଏକ ସର୍ବବୃହତ ବ୍ୟବସାୟ କେନ୍ଦ୍ର କହିଲେ ଅତ୍ୟୁକ୍ତି ହେବ ନାହିଁ । ଏହା ଏକ ଶୁଳ୍କଛାଡ(customfree) ଅଞ୍ଚଳ ହୋଇଥିବାରୁ ଜାପାନ ର ସମସ୍ତ ଶିଳ୍ପ ଜାତ ଦ୍ରବ୍ୟ ଏଠାରେ ଜାପାନ ଠାରୁ ଅଧିକ ଶସ୍ତାରେ ମିଳେ । ଜାପାନ ବ୍ୟତୀତ କୋରିଆ ଟାଇୱାନ ଓ ଆମେରିକାର ଶିଳ୍ପ ଜାତ ଦ୍ରବ୍ୟ ମଧ୍ୟ ଏଠାରେ ମିଳେ । ଏଠାରୁ ବହୁ ଇଲେକ୍ଟ୍ରନିକ୍ସ ଜିନିଷ ଚୋରାରେ ଯାଇ ଆମ ଭାରତରେ ବିକ୍ରୀ ହେଉଅଛି । ଏ ଦେଶର ଲୋକଙ୍କ ପାଇଁ ଖାଦ୍ୟ ଓ ପାନୀୟ ଉଭୟ ଚାଇନା

ଦେଶରୁ ଆସେ । ଏହା ଏକ ଉପଦ୍ୱିପ ହୋଇଥିବାରୁ ପିଇବା ପାଣି ମଧ ଚାଇନାରୁ ଯୋଗାଇ ଦିଆଯାଏ । ଏ ଜଳ ଯୋଗାଣ ବ୍ୟବସ୍ଥା ଏପରି ନିୟମିତ ଯେ ଏହା ଅବ୍ୟବସ୍ଥିତ ହେବାର କେହି କହିଲେ ନାହିଁ । ଆମ ଦେଶର ଛୋଟ ବଡ଼ ସହର ମାନଙ୍କରେ ଜଳ ଥିଲେ ହେଁ ବହୁ ସମୟରେ ଜଳ ଯୋଗାଣରେ ନାନା ପ୍ରକାର ଅବ୍ୟବସ୍ଥା ଘଟେ । ଟେଙ୍କ ସାହାଯ୍ୟରେ ସହର ମାନଙ୍କର ବିଭିନ୍ନ ସାଇରେ ବୁଲି ବୁଲି ଜଳ ଯୋଗାଇ ଦିଆଯାଏ । ସେହିପରି ଆମ ଦେଶର ବିଦ୍ୟୁତ କଥା କହିଲେ ନ ସରେ । ଏଠାରେ ଆଇନ ଶୃଙ୍ଖଳା ମଧ ଭଲ ଥିବାର ଦେଖିଲୁଁ । ଯାନବାହାନ ଚଳାଚଳ ଖୁବ୍ ଶୃଙ୍ଖଳିତ । ଭାରତର ସମୟଠାରୁ ଏଠାକାର ସମୟ ମଧରେ ପ୍ରାୟ ୩/୪ଘଣ୍ଟା ଫରକ । ଦିଲ୍ଲୀରୁ ଏଠାକୁ ସିଧା ସଳଖ ଉଡ଼ାଜାହାଜ ନ ଥିବାରୁ ବେଙ୍କ୍‌କ ଦେଇ ଏଠାକୁ ଆସିବାକୁ ହୁଏ ।

## ଦକ୍ଷିଣ କୋରିଆର ରାଜଧାନୀ

## ସିଓଲ

ଅଗଷ୍ଟ ମାସ ୨୦ ଓ ୨୧ ତାରିଖ ଦୁଇଦିନ ମାତ୍ର ହଂକଂରେ କଟାଇଲାପରେ ତା ୨୨ରିଖ ସକାଳେ ସେଠାକାର ଉଡ଼ାଜାହାଜ ଘାଟିକୁ ଆସିଲୁଁ ସିଓଲ ଯାତ୍ରା ପାଇଁ । ଏହା ଏକ ଆନ୍ତର୍ଜାତିକ ବିମାନ ବନ୍ଦର ହୋଇଥିବାରୁ ଏହା ଆୟତନରେ ଖୁବ୍ ବଡ଼ ଏବଂ ଆମ ଦିଲ୍ଲୀବିମାନ ଘାଟିଠାରୁ ବଡ ହେବ ବୋଲି ମନେ ହୁଏ । କିଛି ସମୟପରେ ସିଓଲ ଅଭିମୁଖରେ ଆମର ଯାତ୍ରା ଆରମ୍ଭ ହେଲା । ବାଟରେ ଆମର ଉଡ଼ାଜାହାଜ ଟାଇୱାନଠାରେ କିଛି ସମୟ ରହିଲା । ଏହାର ପୂର୍ବନାମ ଫର୍ମୋଜା ଏବଂ ଏହା ମଧ ଚାଇନା ଦେଶର ଏକ ଦ୍ୱିପ ହିସାବରେ ପରିଗଣିତ ହେଉଥିଲା । ଚାଇନାରେ ବିପ୍ଲବ ଘଟି ମା ଓ ସେ ତୁଙ୍ଗ କମ୍ୟୁନିଷ୍ଟ ଶାସନ ପ୍ରତିଷ୍ଠା କଲାପରେ ସେତେବେଳର ସେ ଦେଶର ଶାସକ ଚ୍ୟାଙ୍ଗକାର ସାକ୍ ସେଠାରୁ ବିତାଡ଼ିତ ହୋଇ ଏହି ଦ୍ୱୀପରେ ଆଶ୍ରୟ ନେଇଥିଲେ । ଆମେରିକା ଚାଇନାର ବିରୋଧୀ ହୋଇଥିବାରୁ ଫରମୋଜା ତଥା ତାର ଶାସକ ଚ୍ୟାଙ୍ଗ କାରସାକଙ୍କୁ ସଂପୂର୍ଣ୍ଣ ସୁରକ୍ଷା କରିଥିଲେ । ଚାଇନା ବହୁବାର ଏହି ଦ୍ୱିପକୁ ନିଜର ଶାସନାଧୀନ କରିବାର ଚେଷ୍ଟାକରି ବିଫଳ ହେବାରୁ ଏହାଏକ ସ୍ୱତନ୍ତ୍ର ଦେଶ ଭାବରେ ପ୍ରତିଷ୍ଠା ଲାଭ କଲା ଓ ଚାଇନା ଦେଶ ନାମରେ ବହୁଦିନଧରି ପୃଥିବୀ ସମ୍ମିଳନୀରେ ପ୍ରତିନିଧିତ୍ୱ ମଧ କଲା । ପରିଶେଷରେ ପ୍ରକୃତ ଚାଇନା ଦେଶ ନିଜ ନାମ ବଦଳାଇ ନୂତନ ଚାଇନା (New China) ନାମରେ ନିଜକୁ ପରିଚିତ କରାଇଲା ।

ଅପରାହ୍ନ ପ୍ରାୟ ୪ଟା ବେଳେ ଆମେ ସିଓଲ ସହରର ଉଡ଼ାଜାହାଜ ଅବତରଣ କେନ୍ଦ୍ରରେ ପହଞ୍ଚିଲୁଁ । ସିଓଲ ଆମର ସରକାରୀ ଗସ୍ତ ହୋଇଥିବାରୁ ସେଠାରେ ନିଯୁକ୍ତ ଆମ ଭାରତୀୟ ଦୂତାବାସର ଜଣେ କର୍ମଚାରୀ ଆମକୁ ଉଡ଼ାଜାହାଜ କେନ୍ଦ୍ରରେ ସାକ୍ଷାତ କଲେ ଓ ଆମ ସମସ୍ତଙ୍କୁ ସହରକୁ ନେଇଗଲେ । ହୋଟେଲ ହାଏଥ ରେଜିନାରେ ଆମର ରହିବାର ବ୍ୟବସ୍ଥା ହୋଇଥାଏ । ସେଦିନ ସିଓଲ ସହରରେ ଆମ ଭାରତୀୟମାନେ ଭାରତର ୪୦ତମ ସ୍ୱାଧୀନତା ଦିବସ ଉପଲକ୍ଷେ ଏକ ଉତ୍ସବ ପାଳନ କରୁ ଥାଆନ୍ତି । ଦୂତାବାସ ତରଫରୁ ଆମ ସମସ୍ତଙ୍କୁ ନିମନ୍ତ୍ରଣ ଜଣାଇ ଆମକୁ ଉତ୍ସବ ସ୍ଥଳକୁ ନେଇଗଲେ । ଭାରତୀୟ ଦୂତସମେତ ଆମକୁ ଦେଖି ସମସ୍ତେ ଅତ୍ୟନ୍ତ ଆନନ୍ଦିତ ହେଲେ ସେଠରେ ରାତ୍ରିଭୋଜନର ବ୍ୟବସ୍ଥା ହୋଇଥାଏ । ଏଠାକାର ଦୂତାବସର ୧ମ ସେକ୍ରେଟେରୀ ଜଣେ ଓଡ଼ିଆ ଭଦ୍ରଲୋକ ଥିଲେ । ତାଙ୍କ ପିଲାମାନଙ୍କ ସହ ଆମର ପରିଚୟ ହେଲା । ତତ୍‌ପରେ ସେଠାରୁ ଫେରି ଆମେ ରହୁଥିବା ହୋଟେଲରେ ବିଶ୍ରାମ କଲୁଁ ।

ତହିଁ ପରଦିନ ଦୂତାବାସର ଦୁଇଟି ଗାଡିରେ ଜଣେ କର୍ମଚାରୀ ଆମକୁ ନେଇ ସିଓଲ ସହରର ବିଭିନ୍ନ ଦର୍ଶନୀୟ ସ୍ଥାନ ବୁଲି ଦେଖାଇଲେ । ସିଓଲ ସହରରେ ଅଳ୍ପ କେତେମାସ ପୂର୍ବେ ସମଗ୍ର ଏସିଆ ମହାଦେଶର ଯେଉଁ କ୍ରୀଡା

ପ୍ରତିଯୋଗିତା ହୋଇଥିଲା ତାର ସଫଳତା ଓ ବିଶେଷ କରି ସେସବୁର ଆୟୋଜନ କରିଥିବା ସଂଗଠନର କୃତିତ୍ୱ ସର୍ବତ୍ର ଅତ୍ୟନ୍ତ ପ୍ରସଂଶିତ ହୋଇଥିଲା । ପ୍ରଥମେ ଆମେ ସେହିସବୁ ସ୍ଥାନ ଦେଖିବାକୁ ଗଲୁଁ । ସେ ସବୁ ବିରାଟ ଷ୍ଟାଡିୟମ ଗୁଡିକ ସେଠାର ବିଖ୍ୟାତ ନଦୀ ମାନନଦୀର ଅପର ପାର୍ଶ୍ୱରେ ଅବସ୍ଥିତ କ୍ରୀଡ଼ା ପ୍ରତିଯୋଗିତା କେନ୍ଦ୍ରର ଚଳଚିତ୍ର ମଧ୍ୟ ଦର୍ଶକମାନଙ୍କୁ ଦେଖାଇ ବ୍ୟବସ୍ଥା ଥିଲା । ଆମେ ସେଠାରେ କିଛି ସମୟ ବସି ସେ ଚଳଚିତ୍ରର କିୟଦଂଶ ଦେଖିଲୁ । ଅଲମ୍ପିକର ପରବର୍ତ୍ତୀ ପ୍ରତିଯୋଗିତା ପୁଣି ତା'ପରବର୍ଷ ସେଠାରେ ହେବାକୁ ଥିବାରୁ ଆହୁରି କେତେଗୁଡ଼ିଏ ଷ୍ଟାଡିୟମର କାର୍ଯ୍ୟ ତିଆରି ଚାଲୁଥିବାର ମଧ୍ୟ ଦେଖିଲୁଁ ।

ଏ ଦେଶର ଶାସନ ଆମରିକା ଢ଼ଙ୍ଗର । ତେଣୁ ଆମ ପାର୍ଲ୍ୟାମେଣ୍ଟ ଭଳି ସେଠାରେ ସିନେଟ ଓ ସିଣ୍ଡିକେଟ ରହିଛି । ଗତ ମହାଯୁଦ୍ଧରେ ଆମେରିକା ଜାପାନଠାରୁ କୋରିଆକୁ ମୁକ୍ତ କରିଥବାରୁ ଏଠାକାର ଲୋକେ ଆମେରିକୀୟମାନଙ୍କୁ ଦେବତା ଭଳି ମାନନ୍ତି । ସୁତରାଂ ଏ ଦେଶର ଶାସନ କ୍ଷେତ୍ରରେ ବ୍ୟବସାୟ ବାଣିଜ୍ୟରେ ତଥା ଆର୍ଥିକ ପ୍ରଗତିରେ ଆମେରିକାର ଯଥେଷ୍ଟ ପ୍ରଭାବ ରହିଥିବାର ଜାଣିଲୁଁ । ଏତଦ୍ ବ୍ୟତୀତ ଆମେରିକା ଏ ଦେଶର ପ୍ରତିରକ୍ଷା (defence) ଦାୟିତ୍ୱ ନେଇଥିବାରୁ ସେ ବାବଦ ଖର୍ଚ୍ଚ ଓ ତତ୍‌ପରତାରୁ ରକ୍ଷା ପାଇ ଦେଶବାସୀ କେବଳନିଜର ଆର୍ଥିକ ଉନ୍ନତିରେ ଲାଗିଛନ୍ତି । ଆମେରିକାର ପୁଞ୍ଜି ମଧ୍ୟ ସମସ୍ତ ଶିଳ୍ପ ଓ ବାଣିଜ୍ୟରେ ବିନିଯୋଗ ହୋଇଛି । କେବଳ ସେତକ ନୁହେଁ ତାଙ୍କର ବିଜ୍ଞାନ ଓ କାରିଗରୀ କୌଶଳ ମଧ୍ୟ ବିନିଯୋଗ ହୋଇଥିବାରୁ ଶିଳ୍ପ କ୍ଷେତ୍ରରେ ତଥା ବିଶେଷକରି ଇଲେକ୍ଟ୍ରନିକ୍ସ ଶିଳ୍ପ କ୍ଷେତ୍ରରେ ଜାପାନର ସମକକ୍ଷ ହୋଇ ପୃଥିବୀର ବାଣିଜ୍ୟ ବଜାରକୁ କେତେ ପରିମାଣରେ ନିୟନ୍ତ୍ରଣ କରିବାରେ ସଫଳ ହୋଇପାରିଛି । ଇଲେକ୍ଟ୍ରନିକ୍ସ ବ୍ୟତୀତ ଇସ୍ପାତ ଓ ସିମେଣ୍ଟ ଉତ୍ପାଦନରେ ମଧ୍ୟ ଏ ଦେଶ ଉଲ୍ଲେଖନୀୟ ଅଗ୍ରଗତି ହାସଲ କରି ପାରିଛି । କୋରିଆର ସିମେଣ୍ଟ ଆମଦେଶର ସିମେଣ୍ଟ ଅପେକ୍ଷା ବହୁଗୁଣରେ ଉତ୍କୃଷ୍ଟ ବୋଲି ପ୍ରମାଣିତ ହୋଇପାରିଛି । ଆମ ଓଡ଼ିଶା ତଥା ଅନ୍ୟ ସ୍ଥାନରୁ ବହୁପରିମାଣର ଲୁହା ପଥର କଞ୍ଚାମାଲ ଭାବେ ସଂଗ୍ରହ କରି ସେ ଦେଶରେ ପ୍ରସ୍ତୁତ ଇସ୍ପାତ ସାମଗ୍ରୀମାନ ଆମ ଦେଶରେ ପ୍ରସ୍ତୁତ ଇସ୍ପାତ ଜିନିଷ ଅପେକ୍ଷା ଶସ୍ତା ମୂଲ୍ୟରେ ଏଠାରେ ବିକ୍ରୀ ହୋଇପାରୁଛି ।

ଉତ୍ତର ଓ ଦକ୍ଷିଣ କୋରିଆ ପ୍ରଥମେ ଗୋଟିଏ ଦେଶ ଥିଲା । ଗତ ମହାଯୁଦ୍ଧପରେ କୋରିଆ ଜାପାନ ଅଧୀନରେ ମୁକ୍ତ ହେଲାରୁ ରାଜନୈତିକ କାରଣ ବଶତଃ ତାହା ଉତ୍ତର ଓ ଦକ୍ଷିଣ କୋରିଆ ନାମରେ ଦୁଇଭାଗରେ ବିଭକ୍ତ ହୋଇଗଲା । ଦକ୍ଷିଣ କୋରିଆ ଆମେରିକାର କର୍ତ୍ତୃତ୍ୱାଧୀନରେ କିଛିଦିନ ରହିଲାପରେ ମାତ୍ର ୧୯୫୨ରେ ଏକ ସ୍ୱାଧୀନ ରାଷ୍ଟ୍ରରୂପେ ଜନ୍ମଲାଭ କଲା । ପୁଣି ଏହି ଦୁଇ ଅଞ୍ଚଳ ମଧ୍ୟରେ ୧୯୫୮ ପର୍ଯ୍ୟନ୍ତ ଦୀର୍ଘ ୬ବର୍ଷ ଧରି ଯୁଦ୍ଧ ଲାଗି ରହିଲା । ଏହାପରେ ମାତ୍ର ଗତ ୩୦ବର୍ଷ ମଧ୍ୟରେ ଦକ୍ଷିଣ କୋରିଆ ଏକ ଶିଳ୍ପୋନ୍ନତ ଦେଶରେ ପରିଣତ ହୋଇପାରିଛି । ଆମ ଦେଶର ସ୍ୱାଧୀନତା ପ୍ରାପ୍ତି ତାଙ୍କ ଦେଶଠାରୁ ଅଧିକ ଦିନର ହେଲେ ମଧ୍ୟ ଆମ ଦେଶର ଆର୍ଥିକ ଉନ୍ନତି ତାଙ୍କ ଦେଶଠାରୁ ବହୁ ପଛରେ ରହିଥିବାର ସ୍ୱୀକାର କରିବାକୁ ପଡ଼ିବ । କିନ୍ତୁ ଉତ୍ତର କୋରିଆ ଋଷିଆ ଦେଶର ପ୍ରଭାବ ବା କର୍ତ୍ତୃତ୍ୱାଧୀନ ଥିବାରୁ ଏହା ତୁଳନାରେ ସେପରି ଉନ୍ନତି ଲାଭ କରିଥିବାର ଜଣାଯାଏ ନାହିଁ । ଠିକ ପୂର୍ବ ଓ ପଶ୍ଚିମ ଜର୍ମ୍ମାନୀର ଅବସ୍ଥା ଯେପରି ବିଗତ ଦ୍ୱିତୀୟ ମହାଯୁଦ୍ଧପରେ ଠିକ ଏହିପରି ଜର୍ମ୍ମାନୀ ପୂର୍ବ ଓ ପଶ୍ଚିମନାମରେ ଦୁଇଭାଗରେ ବିଭକ୍ତ ହୋଇଗଲା । ପୂର୍ବ ଜର୍ମ୍ମାନୀ ଋଷ ଦେଶର କର୍ତ୍ତୃତ୍ୱାଧୀନରେ ରହିବାରୁ ପଶ୍ଚିମ ଜର୍ମ୍ମାନୀ ତୁଳନାରେ ଉନ୍ନତି ଲାଭ କରି ପାରିଲା ନାହିଁ । ସେଥିପାଇଁ ଏବେ ଦୁଇଜର୍ମାନୀର ମିଶ୍ରଣ ହୋଇ ଏକ ଶାସନାଧୀନ ହୋଇଛି । ସେହିପରି କୋରିଆରେ ମଧ୍ୟ ଉତ୍ତର ଓ ଦକ୍ଷିଣ କୋରିଆର ମିଶ୍ରଣ ପାଇଁ ଉତ୍ତର କୋରିଆର ଲୋକେ ବିଶେଷ ଭାବରେ ଆଗ୍ରହୀ ।

ଦକ୍ଷିଣ କୋରିଆର ମୋଟ ଲୋକ ସଂଖ୍ୟା ମାତ୍ର ଚାରିକୋଟି, ଆମ ଓଡ଼ିଶାର ଲୋକସଂଖ୍ୟାଠାରୁ ଅଳ୍ପ

କିଛି ଅଧିକ । ସେଥିମଧ୍ୟରୁ କେବଳ ଦକ୍ଷିଣ କୋରିଆର ରାଜଧାନୀ ସିଓଲ ସହରର ଲୋକସଂଖ୍ୟା ଏକକୋଟି ବୋଲି ଜାଣିଲୁ । ଦେଶର ମୋଟ ଲୋକସଂଖ୍ୟାର ଏକ ଚତୁର୍ଥାଂଶ ଲୋକ କେବଳ ରାଜଧାନୀରେ ହିଁ ବାସ କରନ୍ତି । ଆୟତନରେ ଏହା ଏକ ଛୋଟ ଦେଶ ହୋଇଥିଲେ ହେଁ ସମସ୍ତ ଭୂଭାଗର ପ୍ରାୟ ଅଧାଅଧି ଅଞ୍ଚଳ ଜଙ୍ଗଲ ଓ ପାହାଡପର୍ବତରେ ଆବୃତ । ଏହା ଏକ ଉଲ୍ଲେଖନୀୟ ବିଷୟ ଯେ ଦେଶର ସମସ୍ତ ଜଙ୍ଗଲ ସଂପୂର୍ଣ୍ଣ ରୂପେ ସୁରକ୍ଷିତ । ସହରାଞ୍ଚଳର ସୃଷ୍ଟି ବା ଶିଳ୍ପ ପ୍ରତିଷ୍ଠାନର ସ୍ଥାପନ ପାଇଁ ଆମ ଦେଶ ପରି ସେଠାରେ ଜଙ୍ଗଲ ସଂପଦକୁ ନଷ୍ଟ କରାଯାଉନାହିଁ । ଅଳ୍ପସ୍ଥାନର ଅଧିକ ସଦ ବ୍ୟବହାର କରାଯାଇଛି । ଆୟତନ ନ ବଢାଇ ଉପରକୁ ମହଲା ମାନ ବୃଦ୍ଧି କରାଯାଇଛି । ଏଠାରେ ବହୁଘର ୫୦।୬୦ ମହଲା ବିଶିଷ୍ଟ ଥିବାର ଦେଖାଗଲା । ଠିକ୍ ହଂକଂ ଭଳି ଏଠାରେ ମଧ୍ୟ ସମୁଦ୍ରକୁ ପୋତି ସହରର ସୀମା ବୃଦ୍ଧି କରାଯାଇଛି । ସିଓଲ ସହରଟି ବୃକ୍ଷ ଲତାରେ ଭରପୂର ହୋଇଥିବା ଏକ ପାହାଡ଼ର ପାଦ ଦେଶରୁ ଆରମ୍ଭ ହୋଇଛି । ପାହାଡ ତଳେ ସହର ମଧ୍ୟକୁ ଯାଇଥିବା ରାସ୍ତାର ଉଭୟ ପଟେ ଦଣ୍ଡାୟମାନ ବୃକ୍ଷରାଜିର ଶୋଭା ଅତୀବ ରମଣୀୟ । ସଡକ ତିଆରି କରିବାରେ କେଉଁଠି ଗୋଟିଏ ହେଲେ ଗଛକଟାଯିବାର ଦେଖିପାରିଲୁ ନାହିଁ । ଏହି ସହର ମଧ୍ୟରେ ପ୍ରବାହିତ ବିସ୍ତୃତ ମାନନଦୀର ଉଭୟ ପଟେ ଏକ କୋଟି ଜନସଂଖ୍ୟା ବିଶିଷ୍ଟ ଏକ ବିଶାଳ ନଗର ରହିଥିବାର ଜଣାଯାଏ ନାହିଁ । ବ୍ରିଟେନର ଲଣ୍ଡନ ସହରର ଟେମସ୍ ନଦୀ ପରି ଏହି ନଦୀରେ ୨୦ଟିରୁ ଅଧିକ ପୋଲ ଦୁଇ ଅଂଶକୁ ସଂଯୋଗ କରୁଛି । କିନ୍ତୁ ଟେମସ୍ ନଦୀ ଠାରୁ ଉକ୍ତ ମାନନଦୀ ଅଧିକ ଓସାରିଆ ଓ ଏହା ଆମ ଓଡିଶାର ବୈତରଣୀ ନଦୀ ପରି ଓସାରିଆ ଥିବାର ଜଣାଗଲା । ସିଓଲ ସହର ବୁଲି ଦେଖିଲା ବେଳେ ବହୁବାର ବିଭିନ୍ନ ପୋଲଉପର ଦେଇଯିବାକୁ ପଡ଼ିଛି ।

ସିଓଲ ସହର ପୃଥିବୀର କେତୋଟି ବିଖ୍ୟାତ ବୃହତ୍ତମ ସହର ମଧ୍ୟରୁ ଅନ୍ୟତମ । ଏହା ଏକ ବୃହତ ଶିଳ୍ପ ଓ ବ୍ୟବସାୟ କେନ୍ଦ୍ର । ଏଠାକାର ସର୍ବୋଚ୍ଚ ଘର ୬୩ ମହଲା ବିଶିଷ୍ଟ ଥିବାର ଦେଖିଲୁଁ । ଏଠାରେ ଆଠତାଲା ବିଶିଷ୍ଟ ଏକ ବିଖ୍ୟାତ ବ୍ୟବସାୟ କେନ୍ଦ୍ର ରହିଛି ଏବଂ ସେଠାରେ ତାଙ୍କ ଦେଶର ପ୍ରାୟ ସମସ୍ତ ଶିଳ୍ପଜାତ ପଦାର୍ଥ ମିଳେ । ଏହି ଗୃହରେ ପାହାଚ ଗୁଡ଼ିକ ବିଦ୍ୟୁତ ଚାଳିତ ଓ ସଦା ଉପରତଳ ଘୂର୍ଣ୍ଣାୟମାନ । (Revolving) ପରିଭ୍ରମଣରେ ଯାଇଥିବା ଆମେ ଆଠଜଣ ଯାକ ବିଧାନସଭାର ଅଧକ୍ଷ ଏକ ସଙ୍ଗେ ଏହି ଶିଳ୍ପକେନ୍ଦ୍ର ବୁଲି ଦେଖିଲୁଁ । ଏଠାକାର ସିନ୍ଥେଟିକ ଓ ଇଲେକଟ୍ରନିକ୍ସ ପଦାର୍ଥ ଗୁଡ଼ିକ ଅତିସୁନ୍ଦର ଓ ଶସ୍ତା । ଇଲେକଟ୍ରନିକ୍ସ ଉତ୍ପାଦନରେ ଦକ୍ଷିଣ କୋରିଆ ଜାପାନ ଭଳି ଉନ୍ନତ ଶିଳ୍ପପ୍ରଧାନ ଦେଶକୁ ପ୍ରତିଯୋଗିତା କରୁଥିବାର ଜାଣିଲୁ । ଲୁଗା ଓ କମ୍ବଳ ତିଆରି ପଦାର୍ଥ ଗୁଡ଼ିକ ମଧ୍ୟ ଅତ୍ୟନ୍ତ ସୁନ୍ଦର । ଆମେ କେତେକ କିଛି ଲୁଗା, ଜାମା ଓ କମ୍ବଳ କିଣିଲୁ । ଏତେ ଅଳ୍ପଦିନ ମଧ୍ୟରେ ଏହାର ଏପରି ଅଗ୍ରଗତିର କାରଣ ଅନୁସନ୍ଧାନ କରି ଜାଣିଲୁ ଯେ, ଆମେରିକୀୟ ଅର୍ଥ ଓ ବୈଷୟିକ ଜ୍ଞାନ ଏହାର ମୂଳରେ ରହିଅଛି । ଦ୍ୱିତୀୟ ବିଶ୍ୱଯୁଦ୍ଧ ପରେ ଜାପାନଠାରୁ ଆରମ୍ଭକରି କୋରିଆ, ଫିଲିପାଇନ, ଟାଇୱାନ ପ୍ରଭୃତି ସମସ୍ତ ଦେଶର ସୁରକ୍ଷା ଦାୟିତ୍ୱ ଥିଲା ଆମେରିକା ହାତରେ । ସୁତରାଂ ଏ ଦେଶଗୁଡିକୁ ପ୍ରତିରକ୍ଷା ବାବଦରେ ବିଶେଷ କିଛି ଖର୍ଚ୍ଚ କରିବାକୁ ପଡେ ନାହିଁ । ତେଣୁଁ ରାଜନୀତି ଓ ବ୍ୟବସାୟ ,କ୍ଷେତ୍ରରେ ଏମାନଙ୍କୁ ଆମେରିକାର ପଦାଂନତ ହେବାକୁ ପଡିଛି । ଅବଶ୍ୟ ଆମେରିକୀୟ ଅର୍ଥ ସହାୟତାରେ ଏଠାକାର ଲୋକେ ନିଜର ତଥା ଦେଶର ବହୁବିଧ ଉନ୍ନତି ସାଧନ କରିପାରିଛନ୍ତି । ତା ନହେଲେ ଅଲମ୍ପିକ କ୍ରୀଡ଼ା ପାଇଁ ଓ ଲୋକଙ୍କର ରହିବାପାଇଁ ଏତେବଡ ଆୟୋଜନ କରିବା ସମ୍ଭବପର ହୋଇପାରି ନ ଥାଆନ୍ତା । ସୁଖର ବିଷୟ ଯେ ଏଠାରେ ଗଣତନ୍ତ୍ର ଓ ସଂସଦୀୟ ଶାସନ ବ୍ୟବସ୍ଥା ପ୍ରତିଷ୍ଠିତ ହୋଇଛି । ଏସିଆ ମହାଦେଶର ପୂର୍ବାଞ୍ଚଳ ଦେଶ ଗୁଡିକରେ ସାଧାରଣତଃ ଚାଇନା ସଭ୍ୟତାର ପ୍ରଭାବ ପଡିଥାଏ । ଯେପରି ଏସିଆ ମହାଦେଶର ଅନ୍ୟ ଅଞ୍ଚଳ ଗୁଡିକରେ ଭାରତୀୟ ଭାରତୀୟ ଓ ଆରବୀୟ ସଭ୍ୟତା ଓ ସଂସ୍କୃତିର ପ୍ରଭାବ ଥିବାର ଦେଖାଯାଏ । ମାତ୍ର ଏ ସବୁ ଅଞ୍ଚଳକୁ ଏବେ ଇଉରୋପୀୟମାନେ ଏପରି ଭାବରେ ପ୍ରଭାବିତ କରିଛନ୍ତି ଯେ ଏ ଅଂଚଳରେ ପୂର୍ବ ସଭ୍ୟତା ସଂପୂର୍ଣ୍ଣଭାବେ ଲୋପ ପାଇ ଯିବାର ସେମାନଙ୍କର ପୋଷାକ, ପରିଚ୍ଛଦ ଓ

ଚାଲିଚଳନରୁ ଜଣାପଡୁଥିଲା । ସିଓଲରେ ବିଶେଷ ଭାରତୀୟ ନ ଥିବାରୁ କୌଣସିଠାରେ ଭାରତୀୟ ହେଟେଲ ବା ରେଷ୍ଟୁରାଂ ଥିବାରୁ ଦେଖିବାକୁ ପାଇଲୁନାହିଁ । ଯାହା ହେଉ ଆମ ଠାରୁ ବହୁ ପଛରେ ସ୍ୱାଧୀନତା ଲାଭ କରି ଦେଶ ଉତ୍ତର ଓ ଦକ୍ଷିଣ କୋରିଆ ନାମରେ ବିଭାଜିତ ହୋଇ ପୁଣି ଦୁଇ ଅଂଚଳ ମଧ୍ୟରେ ଦୀର୍ଘଦିନ ଧରି ଯୁଦ୍ଧ ବିଗ୍ରହ ଲାଗି ମଧ ଏକ କ୍ଷୁଦ୍ର ଦେଶ ସବୁକ୍ଷେତ୍ରରେ ଏପରି ଦ୍ରୁତ ଉନ୍ନତି ଲାଭ କରି ଏକ ବିକାଶଶୀଳ ଦେଶ ଭାବରେ ପରିଗଣିତ ହେବା ନିଶ୍ଚିତ ଭାବେ ପ୍ରସଂଶନୀୟ ।

## ''ଜାପାନ''

୨୪।୮।୮୭ ତାରିଖ ସକାଳ ଓଳି ସିଓଲର ଅନ୍ୟ କେତେକ ଅଂଚଳ ବୁଲାବୁଲି କରି ଉପରଓଳି ଏଠା ଆନ୍ତର୍ଜାତିକ ବିମାନ ବନ୍ଦରକୁ ଗଲୁଁ । ଜାପାନର ରାଜଧାନୀ ବିଖ୍ୟାତ ଟୋକିଓ ସହର ଯାତ୍ରା ଉଦ୍ଦେଶ୍ୟରେ । ଆମ ଉଡ଼ାଜାହାଜ ଟୋକିଓ ବିମାନ ଘାଟିରେ ପହଞ୍ଚିଲା ବେଳକୁ ଜାପାନର ସମୟ ଅନୁସାରେ ଉପରଓଳି ଦିନ ପ୍ରାୟ ୩ଟା ହୋଇଯାଇଥିଲା । ଆମର ଟୋକିଓ ଗ୍ରସ୍ତ ସରକାରୀ ଗ୍ରସ୍ତର ଅନ୍ତର୍ଭୁକ୍ତ ହୋଇଥିଲେ ମଧ ଟୋକିଓସ୍ଥ ଭାରତୀୟ ଦୂତାବାସର ଜଣେ କର୍ମଚାରୀ ଶ୍ରୀଯୁକ୍ତ ଆନନ୍ଦ ଆସି ଆମକୁ ଉଡ଼ାଜାହାଜ ଘାଟିରେ ଭେଟିଲେ । ଆମକୁ ଏକ ଉଡ଼ାଗାଡିରେ ଆମ ପାଇଁ ନିର୍ଦ୍ଧାରିତ ହୋଇଥିବା ହୋଟେଲକୁ ନେଇଗଲେ । ଭାରତର ଯେଉଁ ସଂସ୍ଥା ବା (Agency) ଆମକୁ ଟିକଟ ବିକ୍ରୀ କରିଥିଲା ଅମର ସମସ୍ତ ବିଦେଶ ଭ୍ରମଣ ପାଇଁ ଉକ୍ତ ସଂସ୍ଥା ତରଫରୁ ଟୋକିଓରେ ରହିବା ଓ ଖାଇବାର ମଧ ବ୍ୟବସ୍ଥା କରାଯାଇଥିଲା । ଉକ୍ତ ସଂସ୍ଥା ଦୂତାବାସକୁ ମଧ ଆମ ବିଷୟ ଜଣାଇ ଥିବାରୁ ଶ୍ରୀଯୁକ୍ତ ଆନନ୍ଦ ଆମକୁ ଉକ୍ତ ହୋଟେଲକୁନେଇ ସେଠାରେ ଆମର ରହଣୀର ବ୍ୟବସ୍ଥା କରାଇଦେଲେ । ଟୋକିଓର ଉଡ଼ାଜାହାଜ ଷ୍ଟେସନ ସହରରୁ ପ୍ରାୟ ୬୦ କି.ମି. ଦୂର ହୋଇଥିବାରୁ ଆମେ ନିର୍ଦ୍ଧାରିତ ହୋଟେଲରେ ପହଞ୍ଚିଲା ବେଳକୁ ପ୍ରାୟ ସଂଧ୍ୟା ହୋଇଯାଇଥିଲା ।

ଆମେ ବିଦେଶ ଗସ୍ତରେ ବାହାରିବା ପୂର୍ବରୁ ଟୋକିଓରେ ଥିବା କେତେକ ଓଡିଆ ଲୋକଙ୍କ ଠିକଣା ଯୋଗାଡ କରି ତାଙ୍କୁ ଆମର ଯିବା ଖବର ଦିଆଯାଇଥିଲା । ଆମକୁ ବୁଲାବୁଲି କରିବାରେ ଓ ସେଠାକାର ବିଭିନ୍ନ ବିଷୟଜାଣିବାରେ ସାହାଯ୍ୟ କରିବା ପାଇଁ ସେଥିମଧ୍ୟରୁ ଟୋକିଓ ଦୂତାବାସର ପରିବେଶ ବୈଷୟିକ ପରାମର୍ଶଦାତା ଶ୍ରୀଯୁକ୍ତ ଦାସ ଥିଲେ ଅନ୍ୟତମ । ସେ କଟକର ବିଶିଷ୍ଟ ବ୍ୟକ୍ତି ଶୈଳେନ ରାୟଙ୍କ ଜ୍ୱାଁଇ । ଆମେ ହୋଟେଲରେ ପହଞ୍ଚିଲା ପରେ ତାଙ୍କ ଘରକୁ ଯିବାପାଇଁ ନିମନ୍ତ୍ରଣ ଥିବାର ଶ୍ରୀଯୁକ୍ତ ଆନନ୍ଦ ଆମକୁ ଜଣାଇ ଦେବାରୁ ଆମେ ଅତ୍ୟନ୍ତ ଆନନ୍ଦିତ ହେଲୁ । ଏତ ଦୂର ବିଦେଶରେ ନିଜ ଦେଶ ତଥା ରାଜ୍ୟର ଲୋକଙ୍କୁ ଭେଟିବା କେତେ ଆନନ୍ଦ ଦାୟକ ତାହା କେବଳ ବିଦେଶ ଭ୍ରମଣରେ ଯାଇଥିବା ବ୍ୟକ୍ତି ହିଁ ଅନୁଭବ କରିପାରିବ । ଠିକ୍ ସେହିପରି ଅପର ପକ୍ଷରେ ବିଦେଶରେ ରହିଥିବା ବ୍ୟକ୍ତିମାନେ ଯେତେବେଳେ ନିଜ ଦେଶର ଲୋକଙ୍କୁ ଭେଟନ୍ତି ସେତେବେଳେ ସେମାନେ ତତୋଧିକ ଆନନ୍ଦ ଅନୁଭବ କରନ୍ତି । ଶ୍ରୀଯୁକ୍ତ ଆନନ୍ଦ ଆମକୁ ଶ୍ରୀଯୁକ୍ତ ଦାସଙ୍କ ନିମନ୍ତ୍ରଣ ଜଣାଇବା ସଙ୍ଗେ ସଙ୍ଗେ ଆମକୁ ନେଇ ସେଠାରେ ପହଞ୍ଚାଇବା ଓ ପୁଣି ଆଣି ଆମେ ରହୁଥିବା ହୋଟେଲରେ ଛାଡ଼ିବା ଦାୟିତ୍ୱ ମଧ ଶ୍ରୀଯୁକ୍ତ ଦାସ ତାଙ୍କୁ ଅର୍ପଣ କରିଥିବା ବିଷୟ ମଧ ଜଣାଇଲେ । ଆମେ କାଳ ବିଳମ୍ବ ନ କରି ସାଂଧ କୃତ୍ୟ ସାରି ସଙ୍ଗେ ସଙ୍ଗେ ଶ୍ରୀଯୁକ୍ତ ଦାସଙ୍କ ଘରକୁ ବାହାରି ପଡିଲୁ । ଶ୍ରୀଯୁକ୍ତ ଦାସଙ୍କ ଘରେ ଆମ ବ୍ୟତୀତ ଟୋକିଓସ୍ଥ ଭାରତୀୟ ବେଙ୍କର ମେନେଜର ଶ୍ରୀଯୁକ୍ତ ମହାନ୍ତି ଜାପାନୀ ଭାଷାରେ ଡ଼କ୍ଟରେଟ୍ କରିବାକୁ ଯାଇଥିବା ଅନ୍ୟଜଣେ ଓଡ଼ିଆ ଯୁବକ ଦୂତାବାସର ଅନ୍ୟକେତେ ଜଣ ଭଦ୍ରବ୍ୟକ୍ତି ଓ ଭଦ୍ରମହିଳା ମଧ ଉପସ୍ଥିତ ଥିଲେ । ଏକା ବେଳକେ ଏପରି ସୂଦୂର ବିଦେଶରେ ଏତେଜଣ ବିଶିଷ୍ଟ ଓଡିଆ ବନ୍ଧୁଙ୍କୁ ପାଇ ଆମର ଆନନ୍ଦର ସୀମା ରହିଲା ନାହିଁ । ଶ୍ରୀଯୁକ୍ତ ଦାସ ହିଁ ଏ ସମସ୍ତ ଯୋଗାଯୋଗର ବ୍ୟବସ୍ଥା କରିଥିଲେ । ତେଣୁ ବଂଧୁମିଳନ ଅତ୍ୟନ୍ତ ଉପଭୋଗ୍ୟ ହୋଇଥିଲା ।

ଶ୍ରୀଯୁକ୍ତ ଦାସ ସମସ୍ତଙ୍କ ସହିତ ଆମର ତଥା ଆମସହିତ ସେମାନଙ୍କର ପରିଚୟ କରାଇ ଦେଲେ । ସେ ଦୂତାବାସର ପରିବେଶ ସଂକ୍ରାନ୍ତୀୟ ପରାମର୍ଶ ଦାତା ଥିବାରୁ ଏବଂ ମୁଁ ପରିବେଶ ପ୍ରେମୀ ହୋଇଥିବାରୁ ସେଠାକାର ପରିବେଶ ନିୟନ୍ତ୍ରଣ ସଂକ୍ରାନ୍ତରେ ବହୁତଥ୍ୟ ଜାଣିବାରେ ମୋର ବିଶେଷ ଉତ୍କଣ୍ଠା ଜନ୍ମିଲା ପୂର୍ବରୁ ଜାପାନ ଭଳି ଏକ ଶିଳ୍ପ ପ୍ରଧାନ ଦେଶର ତଥା ବିଶେଷ କରି ଟୋକିଓ ସହରର ପରିବେଶ ନ୍ରିୟନ୍ତ୍ରଣ ସଂକ୍ରାନ୍ତରେ ବହୁକଥା ଶୁଣିଥିଲି । ତେଣୁ ଶ୍ରୀଯୁକ୍ତ ଦାସଙ୍କ ସହିତ ସେଠା ଶିଳ୍ପ କ୍ଷେତ୍ରରେ ପ୍ରଦୂଷଣ ଓ ତାର ନ୍ରିୟନ୍ତ୍ରଣ କାର୍ଯ୍ୟକ୍ରମ ସଂକ୍ରାନ୍ତରେ ଆଲୋଚନା କଲି । ସେଠାକାର ପ୍ରଦୂଷଣ ନ୍ରିୟନ୍ତ୍ରଣ କରୁଥିବା କଣ୍ଟ୍ରୋଲ ରୁମରୁ କ୍ୟାମ୍ପୁଟର ସାହାଯ୍ୟରେ ବିଭିନ୍ନ ଶିଳ୍ପାନୁଷ୍ଠାନଗୁଡିକ ସଂଯୁକ୍ତ ହୋଇଥିବାର ଓ ସେଥିରୁ ନିର୍ଗତ ଦୂଷିତ ବାଷ୍ପର ପରିମାଣ ସାଧାରଣ ମାପରୁ ଅଧିକ ହୋଇଯିବାର ଜଣାଗଲେ ତତ୍‌କ୍ଷଣାତ ସଂପୃକ୍ତ ଶିଳ୍ପାନୁଷ୍ଠାନଙ୍କୁ ତାହାନିୟନ୍ତ୍ରଣ କରିବାକୁ ନିର୍ଦ୍ଦେଶ ଦିଆଯିବା ବିଷୟ ତାହା ମୁଁ ଆଗରୁ ଶୁଣିଥିଲି ତାହା ସେ ସ୍ୱୀକାର କଲେ । କଣ୍ଟ୍ରୋଲ ରୁମରୁ ନିର୍ଦ୍ଦେଶ ବ୍ୟତିକ୍ରମ କଲେ ସଙ୍ଗେ ସଙ୍ଗେ ସଂପୃକ୍ତ ଶିଳ୍ପାନୁଷ୍ଠାନର ଉତ୍ପାଦନ ବନ୍ଦ କରିଦେବା ଓ ସେଥିପାଇଁ ଅନ୍ୟାଦଣ୍ଡରେ ଦଣ୍ଡିତ କରିବାର ଅଧିକାର ମଧ୍ୟ ପରିବେଶ ନିର୍ଦ୍ଦେଶକଙ୍କୁ ଦିଆଯାଇଥାଏ । ପରିବେଶ ନିୟନ୍ତ୍ରଣ ସଂପର୍କରେ ପ୍ରକାଶିତ ଦୁଇଟି ପୁସ୍ତକ ମଧ୍ୟ ମୋତେ ଦେଇଥିଲେ । ଆମ ଦେଶରେ କେନ୍ଦ୍ର ବା ରାଜ୍ୟ ସ୍ତରରେ ପ୍ରଦୂଷଣ ନିୟନ୍ତ୍ରଣ ବୋର୍ଡକୁ ଏପରି କ୍ଷମତା ଦିଆଯାଇ ନ ଥିବାରୁ କୌଣସି ଶିଳ୍ପ ସଂସ୍ଥା ଏପରି ବ୍ୟତିକ୍ରମ ବା ଆଇନ ଭଙ୍ଗ କଲେ ତା ବିରୁଦ୍ଧରେ ଅଦାଲତରେ ଆଶ୍ରୟ ନେବା ବ୍ୟତୀତ ଅନ୍ୟପନ୍ଥା ନାହିଁ । ପୁଣି ଅଦାଲତରେ ନିଷ୍ପତ୍ତି ମିଳିବା ପାଇଁ ବର୍ଷ ବର୍ଷ ଅପେକ୍ଷା କରିବାକୁ ପଡେ । ପରିଣାମରେ ପ୍ରଦୂଷଣକୁ ସଙ୍ଗେ ସଙ୍ଗେ ବନ୍ଦ କରାଯାଇପାରେ ନାହିଁ । ଏତଦ୍ ବ୍ୟତୀତ ଜାପାନନର ଶିକ୍ଷା ଓ ସଂସ୍କୃତି ବିଷୟରେ ମଧ୍ୟ ଆଲୋଚନା ହେଲା । ରାତ୍ରି ଭୋଜନ ସେଠାରେ ସାରି ଆମ ରହୁଥିବା ହୋଟେଲକୁ ଫେରିଲୁଁ । ଏକ ଦୂର ବିଦେଶରେ ଆମେ ସମସ୍ତେ ଏକ ଭାଷାଭାଷୀ ଲୋକଙ୍କର ମିଳନ ଅତି ସୌହାର୍ଯ୍ୟ ପୂର୍ଣ୍ଣ ଓ ଉପଭୋଗ୍ୟ ହେଲା ।

ବିଦେଶ ଯାତ୍ରା ପୂର୍ବରୁ ଆମକୁ ବିଦେଶରେ ସାହାଯ୍ୟ କରିବା ପାଇଁ ଅନ୍ୟ ଏକ ବ୍ୟବସ୍ଥା ମଧ୍ୟ କରିଥିଲୁ । ଟୋକିଓର ଏକ ବ୍ୟବସାୟି ସଂସ୍ଥା ଓଡ଼ିଶାରୁ ଲୁହାପଥର ଆମଦାନୀ କରନ୍ତି । ଓଡିଶା ଖଣି ବିଭାଗର ସେକ୍ରେଟେରୀ ତଥା ଖଣିନିଗମର ପରିଚାଳନା ନିର୍ଦ୍ଦେଶକ ଶ୍ରୀଯୁକ୍ତ ଅମୂଲ୍ୟ କୁମାର ନନ୍ଦ ଉକ୍ତ ସଂସ୍ଥାକୁ ଆମ ଯିବା କଥା ଜଣାଇ ଚିଠି ଦେଇ ଥାଆନ୍ତି ଓ ଆମକୁ ଟୋକିଓରେ ବୁଲାବୁଲି କରିବାରେ ସାହାଯ୍ୟ କରିବାକୁ ଅନୁରୋଧ ଜଣାଇ ଥାଆନ୍ତି । ଆମେ ମଧ୍ୟ ତାଙ୍କର ଠିକଣା ସଙ୍ଗରେ ନେଇ ଥାଉ ଆମର ଟୋକିଓ ପରିଦର୍ଶନ ସରକାରୀ ଗସ୍ତର ଅନ୍ତର୍ଭୁକ୍ତ ହୋଇ ନ ଥିବାରୁ ଦୂତାବାସ ତରଫରୁ ସେପରି ସାହାଯ୍ୟ ମିଳିବାର ନୁହେଁ । ତେଣୁ ଆମକୁ ଏ ସମସ୍ତ ବ୍ୟବସ୍ଥା କରିବାକୁ ପଡିଥିଲା । ଅବଶ୍ୟ ଏଥରକୁ ମିଶାଇ ଟୋକିଓ ପରିଦର୍ଶନ ମୋର ଦୁଇଥର ହେଲା । ପ୍ରଥମଥର ୧୯୮୫ ମସିହାରେ ବିଧାନସଭାର ଅଧକ୍ଷ ହେବାପରେ ବିଦେଶ ଭ୍ରମଣରେ ଯାଇ ଆମେରିକା କାନାଡା ହୋଇ ଟୋକିଓ ଆସିଥିଲେ ହେଁ ସେତେବେଳେ ବୁଲାବୁଲି କରିବାକୁ ଆଦୌ ସମୟ ନ ଥିଲା । ଏଥର କିନ୍ତୁ ପୂରା ସମୟ ବୁଲାବୁଲି କରି ଟୋକିଓ ସଂପର୍କରେ କିଛି ଜାଣିବାର ଇଚ୍ଛା ହେବାରୁ ଏ ସବୁର ବ୍ୟବସ୍ଥା ବିଦେଶ ଯାତ୍ରା ପୂର୍ବରୁ ହିଁ କରାଯାଇଥିଲା ।

ତହିଁ ପରଦିନ ତା ୨୫।୮।୮୭ରିଖ ସକାଳ ୮୧/୨ଟା ବେଳକୁ ଉକ୍ତ ଲୁହାପଥର କଂପାନୀର ଶ୍ରୀଯୁକ୍ତ ଥୋମେୟା ଆମେ ରହୁଥିବା ହୋଟେଲରେ ଆସି ପହୁଞ୍ଚିଲେ । ତାଙ୍କ ସଙ୍ଗରେ ଇଂରାଜୀ ଜାଣିଥିବା ତାଙ୍କ ସଂସ୍ଥାର ଅନ୍ୟଜଣେ ମହିଳା କର୍ମଚାରୀ ମଧ୍ୟ ଥାଆନ୍ତି । ଆମେ ଟୋକିଓରେ ପହୁଞ୍ଚିଲା ପରେ ଏହି କମ୍ପାନୀକୁ ମଧ୍ୟ ଆମ ଯିବାଖବର ଜଣାଇ ଦିଆଯାଇଥିଲା । ସୁତରାଂ ଠିକ ତହିଁ ପରଦିନ ଠିକ୍ ସମୟରେ ସେ ଆସି ଆମଠାରେ ପହୁଞ୍ଚିଲା । ପୂର୍ବଦିନ ଓଡିଆ ବନ୍ଧୁମାନଙ୍କୁ ଭେଟିଥିଲା ବେଳେ ସେଠାରେ ଜାପାନୀ ଭାଷାରେ P.H.D. କରୁଥିବା ଯୁବକ ଜଣଙ୍କୁ ମଧ୍ୟ ଆମକୁ ବୁଲାବୁଲିରେ ସାହାଯ୍ୟ କରିବାକୁ ଅନୁରୋଧ କରିଥିଲୁ । ସେ ମଧ୍ୟ ଯଥାସମୟରେ ଆମଠାରେ ଆସି ପହୁଞ୍ଚିଲେ ।

ଦୂତାବାସରୁ ଶ୍ରୀଯୁକ୍ତ ଆନନ୍ଦ ମଧ ଆସି ଆମ ସହିତ ଯୋଗ ଦେଲେ । ଶ୍ରୀଯୁକ୍ତ ଥୋମେୟ ଗାଡି ସହିତ ଉକ୍ତ ମହିଳା କର୍ମଚାରୀ ଜଣଙ୍କୁ ଆମଠାରେ ଛାଡି ଦେଇ ଆମେ କେଉଁ ହୋଟେଲରେ ମଧାହ୍ନ ଭୋଜନ କରିବା ସ୍ଥିର କରି ଚାଲିଗଲେ । ପୂର୍ବାହ୍ନ ପ୍ରାୟ ୯ଟା ବେଳକୁ ଆମେ ସମସ୍ତେ ବୁଲିବା ପାଇଁ ଉକ୍ତ ଗାଡ଼ିରେ ବାହାରି ପଡିଲୁ ।

## ଓଷାକାର ରାଜପ୍ରସାଦ

ଭୁବନେଶ୍ୱର ଛାଡିବା ପୂର୍ବରୁ ଅମୂଲ୍ୟ ବାବୁ ନିଶ୍ଚିତଭାବରେ ଓଷାକା ରାଜପ୍ରସାଦ ଦେଖିବା ପାଇଁ କହିଥାଆନ୍ତି । ତେଣୁ ପରିଭ୍ରମଣର ଆରମ୍ଭରେ ଏହି ସ୍ଥାନକୁ ଆଗଗଲୁଁ । ଏକ ବିରାଟ ଅତି ରମଣୀୟ ଉଦ୍ୟାନ, ଉଦ୍ୟାନ ସମ୍ମୁଖରେ ଏକ ବିସ୍ତୀର୍ଣ୍ଣ ପ୍ରାନ୍ତର । ଏହି ଉଦ୍ୟାନର ମଧ ଭାଗରେ କାଷ୍ଠନିର୍ମିତ ସୁନ୍ଦର ଓ ସୁବୃହତ ଏକ ରାଜପ୍ରସାଦ ଦଣ୍ଡାୟମାନ । ଜାପାନର ସମ୍ରାଟ ଏହି ପ୍ରାସାଦରୁ ସମସ୍ତଙ୍କୁ ଦେଖା ଦେଉଥିଲେ । ଜାପାନୀ ମାନେ ଅତ୍ୟନ୍ତ ରାଜଭକ୍ତ ଓ ସମ୍ରାଟଙ୍କଠାରେ ତାଙ୍କର ଅତୁଟ ବିଶ୍ୱାସ ଥିଲା ସମ୍ରାଟଙ୍କୁ ସ୍ୱୟଂ ଭଗବାନ ବୋଲି ସେମାନେ ମନେ କରୁଥିଲେ । ସମ୍ରାଟ ଚାହିଁଲେ ସବୁ କିଛି କରିପାରିବେ ଏପରିକି ବର୍ଷା ନ ହେଉଥିଲେ ବର୍ଷା ମଧ କରାଇପାରିବେ ବୋଲି ଲୋକଙ୍କର ବିଶ୍ୱାସ ଥିଲା । ହଜାର ହଜାର ଲୋକ ରୁଣ୍ଡ ହୋଇ ରାଜାଙ୍କୁ ପ୍ରାର୍ଥନା କରୁଥିବାର କିମ୍ବଦନ୍ତୀ ଥିବାର ଜାଣିଲୁ । ଅବଶ୍ୟ ବହୁଦିନପରେ ସମ୍ରାଟ ନିଜେ ଏହି ଅନ୍ଧବିଶ୍ୱାସ ଓ ଭଣ୍ଡାମୀକୁ ଲୋକଙ୍କ ମନରୁ ଦୂରକରିଥିଲେ । ଏହାପରେ ଆମେ ପ୍ରାସାଦ ଭିତରକୁ ପ୍ରବେଶ କଲୁଁ । ସେଠାରେ ସୁରକ୍ଷିତ ଥିବା ରାଜବ୍ୟବହାର୍ଯ୍ୟ ବିଭିନ୍ନ ଆସବାବ ପତ୍ର ଦେଖିଲୁ । ସେଠାରେ ସମ୍ରାଟ ବ୍ରିଟେନ ପରି ନାମକୁ ମାତ୍ର ଶାସନ ମୁଖ୍ୟ ହୋଇରହିଛନ୍ତି ସଂସଦୀୟ ଗଣତନ୍ତ୍ର ରୀତିରେ ଦେଶରେ ଶାସନ କାର୍ଯ୍ୟ ଚାଲେ । ପ୍ରାସାଦରେ ଲାଗିଥିବା କାଠ ଓ ଆସବାବ ପତ୍ର ଗୁଡିକରେ ଅତି ସୁନ୍ଦର ଓ ସୂକ୍ଷ୍ମକାରୁକାର୍ଯ୍ୟ ହୋଇଥିବାର ଦେଖିଲୁ । ଏହି ପ୍ରସାଦକୁ ସରକାର ସଂପୂର୍ଣ୍ଣ ଭାବରେ ସୁରକ୍ଷା କରିଛନ୍ତି । ଏଠାରେ ଏବେ କେହି ରହନ୍ତି ନାହି କି ପ୍ରାସାଦରୁ ଲୋକଙ୍କୁ ମଧ ରାଜା ଦର୍ଶନ ଦିଅନ୍ତି ନାହିଁ । ବଗିଚା ଓ ପ୍ରାସାଦ ବୁଲି ଦେଖିବା ସମସ୍ତଙ୍କ ପାଇଁ ଖୋଲା ଅବଶ୍ୟ ସୁରକ୍ଷା ପାଇଁ ସରକାରୀ ଜଗୁଆଳ ସଦାସର୍ବଦା ନିଯୁକ୍ତ ହୋଇ ରହିଛନ୍ତି । ତତ୍ପରେ ଓସାକାର ଏକ ବଡ ବ୍ୟବସାୟ କେନ୍ଦ୍ରକୁ ଗଲୁଁ । ଏହା ଜାପାନ ଦେଶର ସର୍ବବୃହତ ବ୍ୟବସାୟ କେନ୍ଦ୍ର । ସେହି ବ୍ୟବସାୟ କେନ୍ଦ୍ରାଞ୍ଚଳରେ ଏକ ମନ୍ଦିର ଥିବାର ଦେଖିଲୁ । ଏହା ଏ ଦେଶର ଏକ ବିଖ୍ୟାତ ମନ୍ଦିର । ମନ୍ଦିରର ଦ୍ୱାର ଦେଶର ଦୁଇ ପାଖରେ ଦୁଇଟି ମୂର୍ତିଥିବାର ଦେଖିଲୁଁ । ସେଥିମଧରୁ ଗୋଟିଏ ମୂର୍ତ୍ତି ବାୟୁଦେବତା ଓ ଅନ୍ୟଟି ଇନ୍ଦ୍ର ଦେବତାଙ୍କର ବୋଲି ଜାଣିଲୁ । ସେଠାକାର ଲୋକେ ବୌଦ୍ଧ ଧର୍ମାବଲମ୍ବୀ ହୋଇଥିଲେ ହେଁ ଏ ଦୁଇ ଦେବତାଙ୍କୁ ସେମାନେ ପୂଜା କରିବା ବିଷୟ ସେଠାରୁ ଜାଣିଲୁ । ଏହାର କାରଣ ହେଉଛି ପୂର୍ବେ ଜାପାନରେ ଲୋକେ କୃଷିଜୀବୀ ଥିଲେ । ଧାନ ତାଙ୍କର ପ୍ରଧାନ ଚାଷ । ତେଣୁ ଇନ୍ଦ୍ର ଦେବତା ବୋଲି ନ କହି ସେମାନେ ବର୍ଷାର ଦେବତା ବୋଲି କହୁଥିଲେ । ବର୍ଷା ସହିତ ବାୟୁର ସଂପର୍କ ଅତି ଘନିଷ୍ଠ ତେଣୁ ସେମାନେ ଏପରି କଳ୍ପନା କରିଥିବା ବିଷୟ ଲୋକମୁଖରୁ ଜାଣିଲୁଁ । ମନ୍ଦିର ବେଢା ଭିତରକୁ ପ୍ରବେଶ କରି ବହୁ ଛୋଟ ଛୋଟ ଦୋକାନ ଦେଖିଲୁଁ । ଏବଂ ଏ ସବୁ ଦେକାନ ମାନଙ୍କରେ କେବଳ କଣ୍ଢେଇ ବିକାଳି ହେଉଥିବାର ଦେଖିଲୁଁ । ଶେଷରେ ଅସଲ ମନ୍ଦିରମଧକୁ ପ୍ରବେଶ କଲୁଁ । ସେଠାରେ କୌଣସି ମୂର୍ତ୍ତି ନାହିଁ । କିନ୍ତୁ ଦର୍ଶକମାନେ ଫୁଲ ଓ ପଇସା (ଜାପାନୀ ମୁଦ୍ରା) ଫିଙ୍ଗୁଥିବାର ଦେଖି ଆଶ୍ଚର୍ଯ୍ୟ ହେଲୁଁ । ଏହାପରେ ଆମ ସଙ୍ଗରେ ଥିବା ମହିଳା ଜଣକ ଆମକୁ ସବୁସ୍ଥାନକୁ ନେଇ ଯାଉଥାଆନ୍ତି । ସେ ଆମକୁ ନେଇ ହୋଟେଲରେ ପହୁଞ୍ଚାଇଲା ବେଳକୁ ଶ୍ରୀଯୁକ୍ତ ଥୋମେୟା ମଧ ସେଠାରେ ଆସି ପହୁଞ୍ଚି ଆମ ସମସ୍ତଙ୍କର ମଧାହ୍ନ ଭୋଜନରେ ବ୍ୟବସ୍ଥା କରି ସାରିଥିଲେ । ଆମେ ସମସ୍ତେ ଏକାଠି ବସି ଭୋଜନ କଲୁଁ । ଆମେ ଖାଇଲାବେଳେ ଉକ୍ତ ମହିଳା ଜଣକ ଓ ଶ୍ରୀଯୁକ୍ତ ଥୋମେୟା ବେଳେ ବେଳେ ଏକାଠି ଖାଉଥିବାର ଦେଖିଲୁ । ତେଣୁ ଉଭୟଙ୍କ ସଂପର୍କ ରହସ୍ୟ ଜନକ ମନେ ହେଲା । ଉକ୍ତ ଭଦ୍ର ମହିଳା

ଚାଲିଚଳନ ଓ ବେଶ ଭୂଷାରେ ଅତ୍ୟନ୍ତ ଆଧୁନିକା । ସବୁବେଳେ ଦାମିକା ସିଗାରେଟ ମଧ ପିଉ ଥାଆନ୍ତ । ସଂଧ୍ୟା ୫ଟା ପରେ ତାଙ୍କ ଗାଡି ଛାଡି ଦେବାକୁ କହି ଶ୍ରୀଯୁକ୍ତ ଥୋମେୟା ଆମଠାରୁ ବିଦାୟ ନେଲେ । ଆମେ ସମସ୍ତେ ପୁଣି ପୂର୍ବ ପରି ବିଭିନ୍ନ ସ୍ଥାନ ବୁଲିବାକୁ ବାହାରି ପଡିଲୁ ।

ଏହାପରେ ଆମେ ଜାପାନର ଅନ୍ୟ ଏକ ଦର୍ଶନୀୟ ସ୍ଥାନ ଦେଖିବାକୁ ଗଲୁଁ ତାହା ହେଉଛି ଜାପାନର ବିଖ୍ୟାତ ଟୋକିଓ ଟାୱାର ଆମେ ସେଠାରେ ପହଞ୍ଚି ଟିକଟ କରି ବିଦ୍ୟୁତ ଚାଳିତ ଲିଫ୍ଟ ସାହାଯ୍ୟରେ ଟାୱାର ଉପରକୁ ଚଢିଲୁଁ । ଟାୱାରର ତିନିଚତୁର୍ଥାଂଶ ଉଚ୍ଚତାକୁ ସାଧାରଣଙ୍କର ଯିବାର ବ୍ୟବସ୍ଥା ଅଛି ତା ଉପରକୁ ନାହିଁ । ଉକ୍ତ ଟାୱାରରୁ ସହର ଦେଖିବାର ବିଶେଷ ସୁବିଧା ଜନକ । ମାତ୍ର ସେ ସ୍ଥାନରୁ ସହରର ସମସ୍ତ ଅଂଶ ଦେଖାଗଲା ନାହିଁ । ପୁଣି ସେ ଦିନ ଏତେ କୁହୁଡି ହୋଇଥିଲା ଯେ ଯେତିକି ଅଂଶ ଦେଖି ପାରିବା କଥା ତା ମଧ ଠିକ ଭାବରେ ଦେଖାଗଲା ନାହିଁ । ଏହାର ଉପର ଅଂଶରେ ଚାରିପଟେ ବୁଲାବୁଲି କରି ଦେଖିପାରିବାର ସୁବିଧା ଅଛି । ଆମ ବ୍ୟତୀତ ବହୁ ଦର୍ଶକ ମଧ ପ୍ରତିଦିନ ଏହି ଟାୱାର ଉପରକୁ ଉଠି ସହରର ସୌନ୍ଦର୍ଯ୍ୟ ଉପଭୋଗ କରନ୍ତି । ୧୯୮୪ ମସିହାର ପ୍ରଥମ ପରିଭ୍ରମଣରେ ଯାଇ ଫ୍ରାନସର ରାଜଧାନୀ ପୃଥିବୀ ବିଖ୍ୟାତ ପେରିସ ସହର ଦେଖିବାର ସୁଯୋଗ ପାଇଥିଲି । ସେଠାକାର ଏନ୍‌ଫିଲ ଟାୱାରକୁ ମଧ ଚଢିଥିଲି । ଏନ୍‌ଫିଲ ଟାୱାର ଟୋକିଓ ଟାୱାରଠାରୁ ଆୟତନ ଓ ଉଚ୍ଚତାରେ ବହୁତ ବେଶୀ । ଟୋକିଓର ଟାୱାର ୨୦୦ ଫୁଟ ଉଚ୍ଚତା ବିଶିଷ୍ଟ ଥିଲାବେଳେ ତାର ଉଚ୍ଚତା ଥିଲା ୩୦୦ଫୁଟ । ଏବଂ ଏହି ଟାବାର ଦୀର୍ଘ ୩୦୦ବର୍ଷତଳେ ଯେତେବେଳେ ବିଜ୍ଞାନ ଓ କାରିଗରୀ କୌଶଳ ସେପରି ଉତ୍କର୍ଷଲାଭ କରିପାରିନଥିଲା ସେତେବେଳେ ଫରାସୀ ମାନେ ନିଜ କାରିଗରୀ କୌଶଳ ପରାକାଷ୍ଠର ନିଦର୍ଶନ ସ୍ୱରୂପ ଏହି ଟାୱାର ନିର୍ମାଣ କରିଥିଲେ । ଏହା ଏତେ ଦୀର୍ଘ ଦିନର ହୋଇଥିଲେ ହେଁ ଏପର୍ଯ୍ୟନ୍ତ ଏହା ନିଖୁଣ ଅବସ୍ଥାରେ ରହିଅଛି ଓ ଏହା ପୃଥିବୀର ସପ୍ତାଶ୍ଚର୍ଯ୍ୟ ମଧରୁ ଅନ୍ୟତମ ଭାବରେ  ପରିଗଣିତ ହୋଇଆସୁଅଛି । ଟୋକିଓ ଟାୱାର ଏନ.ଫିଲ ଟାୱାରଠାରୁ ଉଚ୍ଚତାରେ ଛୋଟ ହେଲେ ମଧ ଏହାର ନିର୍ମାଣ କୌଶଳ ଓ କାରିଗରୀ ନୈପୁଣ୍ୟ ଅଧିକ ବୋଲି ଅବଶ୍ୟ ସ୍ୱୀକାର କରିବାକୁ ପଡିବ । ଅବଶ୍ୟ ଆମ ଦିଲ୍ଲୀରୁ କୁତବମିନାର ଓ ୱାସିଂଟନର ଟାୱାରର ତଳଭାଗ କେତୋଟି ମହଲାରେ ବିଭକ୍ତ ହୋଇ ମାଟିତଳେ ରହିଅଛି । ସେ ଗୁଡିକରେ ଜାପାନୀ ତିଆରି କେତେକ ଜିନିଷ ବିକ୍ରୟ କରାଯାଏ । ଆମେ ଭ୍ରମଣ କରୁଥିବା ଅବସରରେ କେତେ ଅଳ୍ପ ମୂଲ୍ୟର ପଦାର୍ଥ ମଧ ସେଠାରୁ କିଣିଲୁ । ଆମର ପଥପ୍ରଦର୍ଶକ ଭାବରେ ଯାଇଥିବା ମହିଳା ଜଣକ ଆମେ କିଣିଥିବା ଦ୍ରବ୍ୟଗୁଡିକର ମୂଲ୍ୟ ତାଙ୍କୁ ସ୍ମରଣ ଲେଖିବା ଉଦ୍ଦେଶ୍ୟରେ ଦେଇଦେଲେ । ସେତେବେଳକୁ ସଂଧ୍ୟା ହେଲାଣି । ତେଣୁ କରି ଉକ୍ତ ଭଦ୍ର ମହିଳା ଓ ଶ୍ରୀଯୁକ୍ତ ଆନନ୍ଦଙ୍କୁ ସେହିଠାରୁ ବିଦାୟ ଦେଲୁଁ ।

ଆମ ସହିତ ରହିଲେ କେବଳ ସେହି ଭାରତୀୟ ଯୁବକ ଜଣକ । ସେ ଜାପାନୀ ଭାଷା ଭଲଭାବରେ ଜାଣିଥିବାରୁ ଆମକୁ ବେଶ ସୁବିଧା ହେଲା । ସେ ନିକଟରେ ଥିବା ଏକ ବୃହତ ବ୍ୟବସାୟ କେନ୍ଦ୍ରକୁ ଆମକୁ ନେଇଗଲେ । ଏହି କୋଠାଟି ଟୋକିଓର ସର୍ବବୃହତ କୋଠା ଓ ମୁଖ୍ୟ ବାଣିଜ୍ୟକେନ୍ଦ୍ର । ଏହାର ପ୍ରତି ମହଲାରେ ବିଭିନ୍ନ ପ୍ରକାରର ବ୍ୟବସାୟ ବାଣିଜ୍ୟର ଦୋକାନମାନ ରହିଅଛି । ସିଓଲ ସହରରେ  ଆମେ ତଳ ମହଲାରେ ଥିବା ଗୋଟିଏ ପୁରୁଣା କ୍ୟାମେରା ଦୋକାନକୁ ପ୍ରଥମେ ଗଲୁଁ । ବହୁ ପୁରୁଣା ଜାପାନୀ କେମେରା ମାନ ଏହି ଦୋକାନରେ ବିକ୍ରି ହୁଏ । ଦିନକୁ ଦିନ ନୂଆ ଅତ୍ୟାଧୁନିକ କେମେରାମାନ ଚାଲୁଥିବାରୁ ଲୋକେ ପୁରୁଣା କେମେରା ଗୁଡିକୁ ଏଠାରେ ବିକ୍ରୟ କରିଦିଅନ୍ତି । ଆମ ଭାରତୀୟ ମୁଦ୍ରାରେ ଟ୬୦୦.୦୦ରେ ମୁଁ ଗୋଟିଏ ଓ ଆମ ସେକ୍ରେଟେରୀ ବଳଭଦ୍ର ଟ୧୦୦୦.୦୦ରେ ଗୋଟିଏ କେମେରା କିଣିଲୁ ।

ସେତେବେଳେ ସଂଧ୍ୟା ହୋଇଗଲାଣି । ସେଦିନର ରାତ୍ରି ଭୋଜନ ପାଇଁ ବେଙ୍କର ମେନେଜର ଶ୍ରୀଯୁକ୍ତ ମହାନ୍ତିଙ୍କର ଆମ ସମସ୍ତଙ୍କୁ ନିମନ୍ତ୍ରଣ ଥାଏ । ଆମ ସଙ୍ଗରେ ଥିବା ଓଡିଆ ଯୁବକ ଜଣକ ତାଙ୍କ ଘରକୁ ବାଟ ଜାଣିଥିଲେ । ତେଣୁ ଆମକୁ କୌଣସି ଯାନବାହାନ ବ୍ୟବହାର ନ କରି ଚଲାଇ ଚଲାଇ ନେଇଗଲେ । ସକାଳ ୮ ୧/୨ଟାରୁ ରାତ୍ରିପ୍ରାୟ ୮ଟା ପର୍ଯ୍ୟନ୍ତ ଦୀର୍ଘ ସମୟଧରି ବୁଲାବୁଲି କରିବାଦ୍ୱାରା ଆମେ ଅତ୍ୟନ୍ତ କ୍ଳାନ୍ତ ହୋଇ ପଡିଲୁଣି । ରାସ୍ତାରେ କୌଣସି ଯାନ ବାହନ ବି ମିଳୁ ନ ଥାଏ । ଶେଷରେ ପ୍ରାୟ ଘଣ୍ଟାଏ କାଳ ଚାଲି ଚାଲି ଯିବାପରେ ଶ୍ରୀଯୁକ୍ତ ମହାନ୍ତିଙ୍କ ଘରେ ପହୁଞ୍ଚିଲୁ । ସ୍ୱାମୀ ସ୍ତ୍ରୀ ଆମକୁ ଅତି ଉତ୍କଣ୍ଠାର ସହିତ ଅପେକ୍ଷା କରି ଥାଆନ୍ତି । ଆମ ସମସ୍ତଙ୍କୁ ପାଇ ଅତ୍ୟନ୍ତ ଆନନ୍ଦିତ ହେବା ସଙ୍ଗେ ସଙ୍ଗେ ଆମକୁ ରାତ୍ରି ଭୋଜନରେ ଆପ୍ୟାୟିତ କରାଇଲେ । କିଛି ସମୟ ବିଭିନ୍ନ ପ୍ରସଙ୍ଗରେ ଆଲୋଚନା ପରେ ଆମକୁ ଆଣି ଆମେ ରହୁଥିବା ହୋଟେଲରେ ଛାଡିଲେ । ଟୋକିଓ ସହର ଅତ୍ୟନ୍ତ ଖର୍ଚ୍ଚ ବହୁଳ ସହର ବୋଲି ତାଙ୍କ ଠାରୁ ଜାଣିଲୁ । ସେଠାରେ ମାତ୍ର ଗୋଟିଏ କୋଠରୀ ପାଇଁ ସ୍ଥାନ କିଣି ଘରକଲେ ଆମ ମୁଦ୍ରାରେ କୋଡିଏ କୋଟି ଟଙ୍କା ଖର୍ଚ୍ଚ ହେବ । ସେଠାକାର ସାଧାରଣ ହୋଟେଲ ମାନଙ୍କରେ ଗୋଟିଏ ପ୍ରକୋଷ୍ଠରେ ଦିନକୁ ଭଡା ୧୨ ଶହରୁ ୧୫ ଶହ ପର୍ଯ୍ୟନ୍ତ । ଅତି ବିଳାସ ପୂର୍ଣ୍ଣ ସୁସଜ୍ଜିତ ପ୍ରକୋଷ୍ଠର ଭଡା କଳ୍ପନାତୀତ । ଶ୍ରୀମହାନ୍ତି ଆମକୁ ଆସିଲା ବେଳେ କହିଲେ ସେଠାକାର ଯୁବକ ଯୁବତୀମାନେ ଏତେ ଉଚ୍ଛୃଙ୍ଖଳ ଯେ ରାତି ୯ଟା ବେଳେ ସାଧାରଣ ଟିକିଏ ଗଳି ରାସ୍ତାରେ ଚାଲିବା ଭଦ୍ରଲୋକ ପକ୍ଷରେ ଅତି କଷ୍ଟକର । ମଦ ପିଇ ମାତାଲ ଅବସ୍ଥାରେ ରାସ୍ତା ଉପରେ ମଧ ଟଣା ଟଣି ହୁଅନ୍ତି । ପାଶ୍ଚାତ୍ୟ ସଭ୍ୟତା ଏ ଦେଶକୁ ଆସି କେବଳ ଯେ ଏ ଅଂଚଳରେ ବିସ୍ତାର ଲାଭ କରିଛି । ତା ନୁହେଁ ବରଂ ଅଧିକ ଲଜ୍ଜାହୀନ ଅବସ୍ଥାକୁ ନେଇ ଆସିଛି । ଜାପାନରେ ଲୋକଙ୍କର ରୋଜଗାର ଖୁବ୍ ଭଲ ଓ ଅବସ୍ଥା ବେଶ ସ୍ୱଚ୍ଛଳ । ପୃଥିବୀରେ ଏବୁଠାରୁ କମ ଆନୁପାତିକ ସଂଖ୍ୟକ ବେକାର ଏ ଦେଶରେ ଦେଖା ଯାଆନ୍ତି ।

## ମାନିଲା (ଫିଲିପିନ)

ତହିଁ ପରଦିନ ଅର୍ଥାତ୍ ତା ୨୬।୮।୮୭ରିଖ ଆମର ଫିଲିପିନର ରାଜଧାନୀ ମାନିଲା ଯିବାର କାର୍ଯ୍ୟକ୍ରମ ଥାଏ । ସହର ମଧରୁ ବିମାନଘାଟି ଟିକିଏ ଦୂର ରାସ୍ତା ହୋଇଥିବାରୁ ଆମକୁ ବିମାନ ଘାଟିଠାରେ ପହୁଞ୍ଚିବା ଟିକିଏ ବିଳମ୍ୱ ହୋଇଗଲା । ସେଠାକାର ସମୟ ଅନୁସାରେ ଅପରାହ୍ଣ ୨ଟାରେ ଆମର ମାନିଲା ପହୁଞ୍ଚିବା କଥା । ବାଟରେ ଆମ ବିମାନ ପୁଣି ଟାଇୱାନ ହୋଇଗଲା ତେଣୁ ସେଠାରେ ମଧ ଆମକୁ କିଛି ସମୟ ଅଟକିବାକୁ ପଡିଲା । ଅବଶ୍ୟ ବିମାନ ମଧରେ ଆମକୁ ମଧାହ୍ନ ଭୋଜନ ଦିଆଗଲା । ଭାରତୀୟ ବିମାନରେ ଯାତ୍ରୀମାନଙ୍କୁ ଯେଉଁ ପ୍ରକାର ଭୋଜନ ପରିବେଷଣ କରାଯାଏ ଏଠାକାର ଭୋଜନ ବ୍ୟବସ୍ଥା ତା ଅପେକ୍ଷା ନିକୃଷ୍ଟତର । ମାନିଲା ପରିଦର୍ଶନ ଆମର ସରକାରୀ ଗସ୍ତକ୍ରମର ଅନ୍ତର୍ଭୁକ୍ତ ଥିବାରୁ ସେଠା ଦୂତାବାସର ଜଣେ କର୍ମଚାରୀ ଆମକୁ ଉଡ଼ାଜାହାଜ କେନ୍ଦ୍ରରୁ ନେଇ ହୋଟେଲରେ ଆମର ରହିବାର ସମସ୍ତ ବନ୍ଦୋବସ୍ତ କରାଇଦେଲେ । ଆମର ଅନ୍ୟାନ୍ୟ ଖର୍ଚ୍ଚପାଇ ନିର୍ଦ୍ଧାରିତ ପରିମାଣର ସ୍ଥାନୀୟ ମୁଦ୍ରା ମଧ ଆମକୁ ଦିଆଗଲା । ସେଦିନ ରାତ୍ରି ଭୋଜନ ପାଇଁ ଦୂତାବାସର ନିମନ୍ତ୍ରଣ ଥିବାରୁ ଆମେ ନିତ୍ୟ କର୍ମ ସାରି ନିର୍ଦ୍ଦିଷ୍ଟ ସମୟ ମଧରେ ଦୂତାବାସରେ ଯାଇ ପହୁଞ୍ଚିଲୁଁ । ବିଭିନ୍ନ ବିଧାନ ସଭାର ଅଧକ୍ଷମାନେ ମଧ ସେଠାରେ ଯୋଗ ଦେଲେ । ଅଣଆନୁଷ୍ଠାନିକ ଭାବରେ ନିଜ ନିଜ ମଧରେ କେତେକ ବିଷୟରେ ଆଲୋଚନା ଚର୍ଚ୍ଚା କରି ସେଠାରେରାତ୍ରି ଭୋଜନ ପରେ ନିଜ ନିଜର ରହିବା ହୋଟେଲକୁ ଫେରି ରାତ୍ରି ଯାପନ କଲୁ ।

ତହିଁ ପରଦିନ ସକାଳ । ପୂର୍ବ ରାତ୍ରିର ନିଷ୍ପତ୍ତି ଅନୁଯାୟୀ ଦୂତାବାସର ପ୍ରଥମ ସେକ୍ରେଟେରୀ ତାଙ୍କର ଦୁଇଟି ଗାଡ଼ିରେ ସମସ୍ତ ଅଧକ୍ଷମାନଙ୍କ ସହିତ ଏକ ସଙ୍ଗରେ ଆମକୁ ନେଇ ମାନିଲା ସହରର ବିଭିନ୍ନ ସ୍ଥାନ ବୁଲାଇ ଦେଖାଇଲେ ।

ପ୍ରଥମେ ମାନିଲାର ଏକ ଅତି ପୁରାତନ ପ୍ରାୟ ୧୫୦ ବର୍ଷ ତଳର ଦୁର୍ଗ ଦେଖିବାକୁ ଗଲୁଁ । ସେଠାରେ ଜଣାଗଲା ଯେ ଫିଲିପିନ ସ୍ପେନୀୟ ମାନଙ୍କର ଏକ ଉପନିବେଶ ଥିଲାବେଳେ ୧୮୩୬ ମସିହାରେ ତାଙ୍କର ଶାସନ ଜାହିର କରି ରଖିବା ଉଦ୍ଦେଶ୍ୟରେ ଏହି ଦୁର୍ଗ ନିର୍ମିତ ହୋଇଥିଲା । ସେ ଦେଶର ମୁକ୍ତି ଆନ୍ଦୋଳନର ନେତା ସ୍ୱର୍ଗତ ପି. ରାଇଜାଲଙ୍କୁ ବିଦେଶୀ ଶାସକମାନେ କିପରି ହତ୍ୟା କରିଥିଲେ ତାର ବିବରଣୀ ଦୁର୍ଗର ପ୍ରାଚୀରରେ ଥିବା ଚିତ୍ରରୁ ସ୍ପଷ୍ଟ ଜଣାଯାଏ । ଭାରତର ମହାତ୍ମାଗାନ୍ଧୀଙ୍କପରି ଫିଲିପିନରେ ରାଇଜାଲ ମୁକ୍ତି ଆନ୍ଦୋଳନର ପିତା ରୂପେ ଏବେ ମଧ ପୂଜିତ ହେଉଛନ୍ତି । ଉକ୍ତ ଦୁର୍ଗ ଓ ସେଠାରେ ପ୍ରାଚୀରରେ ଥିବା ଚିତ୍ର ଗୁଡିକୁ ସରକାର ସଂପୂର୍ଣ୍ଣ ସୁରକ୍ଷିତ କରି ରଖିଅଛନ୍ତି ।ସେ ଦେଶର ଇତିହାସରୁ ଜଣାଯାଏ ଯେ ଫିଲିପିନ ବହୁଦିନ ଧରି ସ୍ପେନୀୟମାନଙ୍କର ଉପନିବେଶ ଭାବରେ ରହିଥିଲା । ନିକଟସ୍ଥ ଜାପାନ ଦେଶ କିଛିଦିନ ପାଇଁ ଦଖଲ କରି ଏ ଦେଶକୁ ନିଜ ଅଧୀନରେ ରଖିଥିଲା । ପରବର୍ତ୍ତୀ କାଳରେ ବ୍ରୀଟିସମାନେ ମଧ ଫିଲିପିନ୍‌କୁ ଜାପାନଠାରୁ ଛଡାଇନେଇ ନିଜର ଉପନିବେଶ ଭାବରେ ରଖିଥିଲେ । ଶେଷରେ ୧୮୯୭ ଖ୍ରୀଷ୍ଟାବ୍ଦରେ ଆମେରିକା ବ୍ରିଟୀସ କବଳରୁ ମୁକ୍ତ କରି ତାର ଆର୍ଥିକ ସାଂସ୍କୃତିକ ଓ ଶିକ୍ଷାର ଉନ୍ନତିର ସହାୟକ ହେଲା ଓ ପୂର୍ବାଞ୍ଚଳର ଅନ୍ୟାନ୍ୟ ରାଜ୍ୟପରି ଏ ଦେଶର ସାମରିକ ସୁରକ୍ଷାର ମଧ ଦାୟିତ୍ୱ ବହନ କଲା । ଆମେରିକୀୟ ଅର୍ଥ, କାରିଗରୀ ଓ ବୈଜ୍ଞାନିକ କୌଶଳର ସହାୟତା ଲାଭ କରି ଏବେ ଏକ ସ୍ୱାଧୀନ ରାଷ୍ଟ୍ର ରୂପେ ପ୍ରତିଷ୍ଠା ଲାଭ କରି ପାରିଛି । ଜାପାନୀ ମାନେ ଏହାକୁ ଉପନିବେଶ କରି ଶୋଷଣ କରୁଥିବାରୁ ଏ ଦେଶର ଲୋକ ଅତ୍ୟନ୍ତ ଜାପାନ ବିରୋଧୀ ମାତ୍ର ଆମେରିକୀୟମାନଙ୍କୁ ଏ ଦେଶର ଲୋକେ ଦେବତା ଭଳି ମାନନ୍ତି । ସେ ଦିନର ବୁଲାବୁଲି ମାତ୍ର ଏତିକିରେ ଶେଷ ହେଲା । ସଂଧ୍ୟାରେ ଯେ ଯାହା ହୋଟେଲକୁ ଫେରିଲୁ । ଅନ୍ୟ ବିଧାନସଭାର ଅଧକ୍ଷମାନେ ସେହିଦିନ ହିଁ ମାନିଲା ଛାଡିଲେ ମାତ୍ର ଆମର ତହିଁ ପରଦିନ ପର୍ଯ୍ୟନ୍ତ କାର୍ଯ୍ୟକ୍ରମ ରହିଗଲା । ତହିଁପରଦିନ ଦୂତାବାସର ପ୍ରଥମ ସେକ୍ରେଟେରୀ ତାଙ୍କ ଗାଡିରେ ଆମକୁ ଫିଲିପିନର ଏକ ସିନେଟ ବୈଠକକୁ ନେଇଗଲେ । ଆମ ସଙ୍ଗରେ ଦୂତାବାସର ୨ୟ ସେକ୍ରେଟେରୀ (ଜଣେ ମହିଳା କୂଟନୀତିଜ୍ଞ) ମଧ ସେହି ଗାଡିରେ ଗଲେ । ଏହା ଫିଲିପିନର ଜାତୀୟଘରର (ପାର୍ଲ୍ୟାମେଣ୍ଟ ଭଳି) ହେଲେ ହେଁ ଆମଦେଶରେ ପାର୍ଲ୍ୟାମେଣ୍ଟ ବା ବିଧାନସଭା ମାନଙ୍କରେ ଦର୍ଶକମାନଙ୍କ ପାଇଁ ଯେପରି କଟକଣା ସେଠାରେ ସେପରି କିଛି କଟକଣା ଥିବାର ମନେ ହେଲାନାହିଁ । ଉକ୍ତ ସିନେଟରେ ମୋଟ ୨୪ଜଣ ସଭ୍ୟଙ୍କ ମଧରୁ ମାତ୍ର ଦୁଇଜଣ ବିରୁଦ୍ଧଦଳର ଥିବାର ଜାଣିଲୁ । ଏହି ବୈଠକରେ ଏକ ବିଶେଷତ୍ୱ ଦେଖିଲୁ ଯେ, ସଭ୍ୟମାନେ ଆଗରୁ କୌଣସି ନୋଟିସ ନ ଦେଇ ସେହିଠାରେ ମୌଖିକ ଭାବରେ ନାନା ପ୍ରକାର ପ୍ରଶ୍ନ ପଚାରୁଥିଲେ ଏବଂ ସେହିଠାରେ ହିଁ ଦୁଇଜଣ ଷ୍ଟାଣ୍ଡିଂ କମିଟିର ଚେୟାରମେନ ମଧ ସଙ୍ଗେ ସଙ୍ଗେ ସେ ଗୁଡିକର ଉତ୍ତରବି ଦେଉଥିଲେ । ଆଲୋଚନା ତାଙ୍କ ଜାତୀୟ ଭାଷାରେ ହେଉଥିବାରୁ ଆମେ କିଛି ବୁଝି ପାରୁ ନ ଥାଉଁ । ଫିଲିପିନରେ ଆମ ଭଳି ସଂସଦୀୟ ଗଣତନ୍ତ୍ର ବ୍ୟବସ୍ଥା ନାହଁ । ସେଠାରେ ଆମେରିକା ପ୍ରଭାବରୁ ରାଷ୍ଟ୍ରପତି ପ୍ରଧାନ ଶାସନ ପ୍ରଚଳିତ ।

କିଛି ସମୟ ଧରି ଆମେ ସେଠାକାର ସିନେଟ ବୈଠକ ଦେଖିଲୁ । ଆମକୁ ଦର୍ଶକ ଗେଲେରୀର ସାମନା ବେଞ୍ଚରେ ବସିବାକୁ ସ୍ଥାନ ଦିଆଯାଇଥିଲା । ସିନେଟରେ ସଭ୍ୟମାନଙ୍କ ଆସନକୁ ଲାଗି ଅଳ୍ପ ବ୍ୟବଧାନରେ ଆମେ ବସିଥିଲୁ । ଆମ ଦେଶ ଭଳି ସଭ୍ୟ ଓ ଦର୍ଶକମାନଙ୍କ ଆସନ ମଧରେ ସେପରି କୌଣସି ବ୍ୟବଧାନ ନ ଥିଲା ସାଧାରଣ ଏକ ଆନୁଷ୍ଠାନିକ ବୈଠକ ପରି ମନେ ହେଲା ତପ୍ରେ ଆମେ ଆମ ହୋଟେଲକୁ ଫେରି ବିଶ୍ରାମ ନେଲୁ । ଫେରିବା ବାଟରେ ସେଠାରୁ ୭୦ କି.ମି. ଦୂରରେ ଅବସ୍ଥିତ ଏସିଆ ମହାଦେଶର ସର୍ବବୃହତ କୃଷି ଫାର୍ମ ଦେଖିବାର ଅଭିଳାଷ ଜଣାଇଲୁ । ଓ ସେଠାକୁ ଯିବାର ଆବଶ୍ୟକୀୟ ବ୍ୟବସ୍ଥା କରିବାକୁ ଅନୁରୋଧ ଜଣାଇଲୁ । ଏହି ଫାର୍ମ ଦେଖିବା ଉଦ୍ଦେଶ୍ୟରେ ମୁ ଫିଲିପିନକୁ ଆସିବା ବିଷୟ ମଧ ତାଙ୍କୁ ଜଣାଇଲି । ଆମ ଭାରତ ସମେତ ପୃଥିବୀର ବହୁ ଦେଶର କୃଷି ବୈଜ୍ଞାନିକମାନେ ଏହି ଫାର୍ମକୁ ଉଚ୍ଚତର ଶିକ୍ଷା

ପାଇଁ ଆସିବା ବିଷୟ ମୁଁ ଆଗରୁ ଜାଣିଥିଲି । ଆମଠାରୁ ପ୍ରଥମ ସେକ୍ରେଟେରୀ ବିଦାୟ ନେଲା ବେଳେ କୃଷି ଫାର୍ମ ପରିଦର୍ଶନ ସଂପର୍କରେ ସେପରି କୌଣସି ନିର୍ଦ୍ଦିଷ୍ଟ ଜବାବ ଦେଲେ ନାହିଁ ବା ସେପରି ଆଗ୍ରହ ଦେଖାଇଲେ ନାହିଁ । ତହିଁପରଦିନ ଆମର ସେଠାରୁ ମାଳୟ ଯାତ୍ରା କରିବାର କାର୍ଯ୍ୟକ୍ରମ ଥାଏ । ତେଣୁ ପୂର୍ବାହ୍ନ ୧୨ଟା ମଧ୍ୟରେ କୃଷି ଫାର୍ମ ପରିଦର୍ଶନ କରି ଫେରିବାକୁ ହେବ ବୋଲି ଆମେ ମନେ ମନେ ନିଶ୍ଚିତ କରି ନେଲୁ । ପ୍ରଥମେ ସେକ୍ରେଟେରୀଙ୍କ ଠାରୁ କୌଣସି ନିର୍ଦ୍ଦିଷ୍ଟ ଜବାବ ନ ମିଳିବାରୁ ୨ୟ ସେକ୍ରେଟେରୀ ଏ ସଂପର୍କରେ ଖୋଦ ରାଷ୍ଟ୍ରଦୂତଙ୍କୁ ଅନୁରୋଧ କରିବାକୁ ପରାମର୍ଶ ଦେଇ ଆମକୁ ହୋଟେଲ୍‌ରେ ଛାଡି ଚାଲିଗଲେ ।

ରାତିରେ ଆମ ବିଧାନସଭା ସେକ୍ରେଟେରୀ ମୋତେ ନ ଜଣାଇ ସିଧା ରାଷ୍ଟ୍ରଦୂତଙ୍କୁ ଆମର ଫାର୍ମ ପରିଦର୍ଶନ କରିବାର ଅଭିଳାଷ ଜଣାଇ ଦେଲେ । ପ୍ରଥମେ ସେକ୍ରେଟେରୀ ବିଧାନସଭା ସେକ୍ରେଟେରୀଙ୍କୁ ଫୋନ ଯୋଗେ ଘୋର ଅସନ୍ତୋଷ ପ୍ରକାଶ କରିବା ସଙ୍ଗେ ସଙ୍ଗେ ଜଣେ ସରକାରୀ କର୍ମଚାରୀ ଭାବେ ସିଧା ସଳଖ କାହିଁକି ତାଙ୍କ ସହିତ ଯୋଗାଯୋଗ କଲେ ବୋଲି ଭାରତ ସରକାରଙ୍କୁ ଜଣାଇ ଦେବାଭଳି ଅତି ଅସୌଜନ୍ୟ ବ୍ୟବହାର ମଧ କଲେ ବୋଲି ତାଙ୍କଠାରୁ ଶୁଣିଲି ଏହି ସବୁ କାରଣରୁ କୃଷି ଫାର୍ମ ପରିଦର୍ଶନର ଇଚ୍ଛାପରିତ୍ୟାଗ କଲୁ ।

ଫିଲିପିନର ପ୍ରେସିଡେଣ୍ଟ ଶ୍ରୀମତୀ ଏକୁଇନୋ ଜଣେ ବିଚକ୍ଷଣ ମହିଳା । ପୂର୍ବତନ ପ୍ରେସିଡେଣ୍ଟଙ୍କ ବିରୁଦ୍ଧରେ ବିପ୍ଳବ ହେବା ଯୋଗୁ ସେ ଶାସନ ଗାଦୀରୁ ତଡା ଖାଇଥିଲେ । ତଥାପି ତାଙ୍କୁ ଆନୁଗତ୍ୟ କରୁଥିବା ସୈନ୍ୟମାନଙ୍କ ସାହାଯ୍ୟରେ ଶ୍ରୀମତୀ ଏକୁଇନୋଙ୍କ ବିରୁଦ୍ଧରେ ବିଦ୍ରୋହ କରିଥିଲେ । ମାତ୍ର ଆମେରିକାର ସମର୍ଥନ ଏକୁଇନୋଙ୍କ ସପକ୍ଷରେ ଥିବା ହେତୁ ବିଦ୍ରୋହୀ ପୂର୍ବତନ ପ୍ରେସିଡେଣ୍ଟ ଓ ତାଙ୍କ ସମର୍ଥକମାନେ ଏକୁଇନୋଙ୍କୁ ହଟାଇବାରେ ସମର୍ଥ ହୋଇପାରିଲେ ନାହିଁ । ଆମେ ସେଠାରେ ଥିବା ରାତିରେ ଏକୁଇନୋଙ୍କ ବିରୁଦ୍ଧରେ ବିଦ୍ରୋହୀ ମାନେ ପୁଣି ଯୁଦ୍ଧ ଘୋଷଣା କଲେ ଓ ପରିଣାମରେ ସକାଳ ବେଳକୁ ସହର ଉପକଣ୍ଠରେ ବିଦ୍ରୋହୀ ସୈନ୍ୟମାନଙ୍କ ସହିତ ସରକାରୀ ସୈନ୍ୟମାନଙ୍କର ଭୀଷଣ ଲଢେଇ ଆରମ୍ଭ ହୋଇଯାଇଥିବାର ଦୂରଦର୍ଶନରୁ ଜାଣିଲୁ । ଜନସାଧାରଣ ସରକାରୀ ସୈନ୍ୟମାନଙ୍କୁ ସମର୍ଥନ କରୁଥିବାର ମଧ ଦେଖାଗଲା ।

ତା ୨୭।୮।୮୭ରିଖ ସକାଳେ ଦୂତାବାସର ପ୍ରଥମ ସେକ୍ରେଟେରୀ ଆମ ସେକ୍ରେଟେରୀଙ୍କୁ ସଙ୍ଗରେ ନେଇ ମୋ ପ୍ରକୋଷ୍ଠକୁ ଆସିଲେ ଏବଂ ମୋର କୃଷି ଫାର୍ମ ପରିଦର୍ଶନ ସଂପର୍କରେ ପଚାରି ସମସ୍ତ ବ୍ୟବସ୍ଥା କରି ଦେବାର ଅଭିପ୍ରାୟ ମଧ ଜଣାଇଲେ । ମାତ୍ର ଏଥିରେ ତାଙ୍କର ଆନ୍ତରିକତାର ଅଭାବ ଥିବାର ମଧ ଲକ୍ଷ୍ୟ କଲି । ତେଣୁ ବର୍ତ୍ତମାନ ସହରରେ ବିଦ୍ରୋହ ଆରମ୍ଭ ହୋଇଥିବା ଦୃଷ୍ଟିରୁ ବାହାରକୁ ଯିବା ନିରାପଦ ହେବ ନାହିଁ । ତା' ବ୍ୟତୀତ ଏତେ ବିଳମ୍ବରେ ଗଲେ ସେଠାରୁ ଫେରି କ୍ୱାଲାଲୁମପୁର ଯିବାରେ ଅସୁବିଧା ହେବ ବୋଲି କହି ମନା କରିଦେଲି । ସଙ୍ଗେ ସଙ୍ଗେ ଯଥା ସମୟରେ କ୍ୱାଲାଲୁମପୁର ଯିବାର ସମସ୍ତ ବ୍ୟବସ୍ଥା ନିଶ୍ଚିତ ଭାବରେ କରିଦେବାକୁ ମଧ କହିଲି । ପ୍ରଥମ ସେକ୍ରେଟେରୀଙ୍କ ବ୍ୟବହାରରେ ଅସନ୍ତୁଷ୍ଟ ପ୍ରକାଶ କରି ଭାରତ ସରକାରଙ୍କ ବୈଦେଶିକ ବିଭାଗକୁ ଜଣାଇ ଦେବା କଥା ମଧ ପ୍ରକାଶ କଲି ।

## କ୍ୱାଲାଲୁମପୁର (ମାଲେସିଆ) ଯାତ୍ରା

ଆମେ ସେଦିନ ଯଥାଶୀଘ୍ର ମଧ୍ୟାହ୍ନ ଭୋଜନ ଶେଷ କରି ମାଲିଲାର ବିମାନ ଘାଟିରେ ନିର୍ଦ୍ଧାରିତ ସମୟରେ ପହଞ୍ଚିଗଲୁଁ । ବାଟରେ ଦେଖିଲୁ ଛକମାନଙ୍କରେ ବିମାନବନ୍ଦରନିକଟରେ ତଥା ଭିତରେ ମଧ ସରକାରୀ ସୈନ୍ୟମାନେ ଜାଗତିଆର ହୋଇ ରହିଛନ୍ତି । ବିଦ୍ରୋହୀ ସୈନ୍ୟମାନେ ତତ୍ପର ହୋଇ ଜଗି ରହିଥାଆନ୍ତି । ବାସ୍ତବରେ ଆମେ ସେଦିନ

ଆସିନଥିଲେ ବହୁ ଅସୁବିଧାର ସମ୍ମୁଖୀନ ହୋଇ ଥାଆନ୍ତୁ । ଯଥା ସମୟରେ ଆମ ବିମାନ କ୍ୱାଲାଲୁମପୁର ଅଭିମୁଖେ ଯାତ୍ରା କଲା । ଫିଲିପିନ ସମୁଦ୍ର ମଧ୍ୟରେ ଦୀପ ସମୂହର ସମଷ୍ଟି ହୋଇଥିବାରୁ ଆକାଶମାର୍ଗରେ ପୂରା ସମୁଦ୍ର ମଧ୍ୟରେ ଆମର ଯାତ୍ରା । କ୍ୱାଲାଲୁମପୁର ପହଞ୍ଚିବାକୁ ସଂଧ୍ୟା ହୋଇଗଲା । ସେଦିନକୁ ଆମର ସେଠାରେ ପହଞ୍ଚିବାର କାର୍ଯ୍ୟକ୍ରମ ଥିବାରୁ ଭାରତୀୟ ପ୍ରତିନିଧିମାନଙ୍କ ମଧ୍ୟରୁ ପ୍ରାୟ ସମସ୍ତେ ସେଠାରେ ପହଞ୍ଚିସାରିଲେଣି । ଦୁଇଦିନ ଧରି ସେଠାକାର ବିଭିନ୍ନ ଦର୍ଶନୀୟ ସ୍ଥାନ ପରିଦର୍ଶନ କରିବାର କାର୍ଯ୍ୟକ୍ରମ ପୂର୍ବରୁ ନିର୍ଦ୍ଧାରିତ ହୋଇସାରିଥାଏ । ଆମେ ଉଡ଼ାଜାହାଜ କେନ୍ଦ୍ରରେ ପହଞ୍ଚିଲା ପରେ ଆମକୁ ନେଇ ଏକ ୩୦ ମହଲା ବିଶିଷ୍ଟ ପଞ୍ଚତାରକା ହୋଟେଲରେ ରହିବାର ବ୍ୟବସ୍ଥା କରିଦେଲେ । ମୋତେ ଚତୁର୍ଦ୍ଦଶ ମହଲାର ଏକ ପ୍ରକୋଷ୍ଠ ରହିବାକୁ ମିଳିଲା ଓ ଆମ ବିଦାନସଭା ସେକ୍ରେଟେରୀ ବଳଭଦ୍ରଙ୍କୁ ୨୮ ମହଲାର ଅନ୍ୟ ଏକ ପ୍ରକୋଷ୍ଠରେ ରହିବାର ହେଲା । ଆମେ ଦୁଇଜଣ ଅନ୍ୟ ସ୍ଥାନ ପରି ପାଖାପାଖି ରହିପାରିଲୁ ନାହିଁ । ତଥାପି ବିଦ୍ୟୁତ ଚାଳିତ ଲିଫ୍ଟ୍ ସାହାଯ୍ୟରେ ଅଳ୍ପ ସମୟ ମଧ୍ୟରେ ପରସ୍ପରକୁ ଭେଟି ପାରୁଥିଲୁ । ରାତ୍ରି ଭୋଜନ ପରେ ନିଜ ନିଜ ପ୍ରକୋଷ୍ଠରେ ବିଶ୍ରମ କଲୁଁ । ପରଦିନ ସକାଳୁ ଆମର ଭ୍ରମଣ କାର୍ଯ୍ୟକ୍ରମ ଆରମ୍ଭ ହେଲା ।

## ବିଭିନ୍ନ ସ୍ଥାନ ପରିଦର୍ଶନ

ତା ୨୯।୮।୮୭ରିଖ ଭୋର ସକାଳ ବେଳୁ ହିଁ ପ୍ରତିନିଧି ମାନଙ୍କର ବିଭିନ୍ନ ଦଳ ଗୁଡିକର ଭ୍ରମଣ ଆରମ୍ଭ ହୋଇଗଲା । ମୁଁ ଯେଉଁ ଦଳରେ ରହିଲି ଆମ ସେକ୍ରେଟେରୀ ବଳଭଦ୍ର ସେ ଦଳରେ ରହି ପାରିଲେ ନାହିଁ । ତାଙ୍କ ଦଳର ଯାତ୍ରା ସକାଳ ୫୧/୨ରୁ ଆରମ୍ଭ ହେଲାବେଳକୁ ଆମଦଳର ଯାତ୍ରା ଆରମ୍ଭ ହେଲା ୭ଟାରେ ତେଣୁ ସକାଳୁ ଆମ ଦୁଇଜଣଙ୍କର ଦେଖା ସାକ୍ଷାତ ମଧ ହୋଇପାରିଲା ନାହିଁ । ପ୍ରତିନିଧି ଓ ତାଙ୍କ ପିଲାପିଲି A, B, C, D, E ପ୍ରଭୃତି ବିଭିନ୍ନ ଦଳରେ ବିଭକ୍ତ ହୋଇଥିଲେ । ମୁଁଥିଲି 'D' ଦଳର ଅନ୍ତର୍ଭୁକ୍ତ ।

ଆମକୁ ଦୁଇଦିନ ପାଇଁ ନିତ୍ୟ ବ୍ୟବହାର୍ଯ୍ୟ ଜିନିଷ ପତ୍ରନେବାକୁ କୁହାଯାଇଥାଏ । ସେତେବେଳେ ସେଠାରେ ଗ୍ରୀଷ୍ମଦିନ ହୋଇଥିବାରୁ ବିଶେଷ କିଛି ପୋଷାକ ପତ୍ର ନେବାକୁ ପଡ଼ିଲା ନାହିଁ । ଆମେ ପ୍ରଥମେ ଗୋଟିଏ ବସ ଯୋଗେ ସେ ଦେଶର ଏକ ଛୋଟ ବିମାନ ଘାଟିରେ ପହଞ୍ଚିଲୁଁ । ଏହା ସେ ଦେଶର ଯିବା ଆସିବାର ଏକମାତ୍ର ବିମାନ ବନ୍ଦର । ସେଠାରୁ ଏକ ଛୋଟ ସରକାରୀ ବିମାନରେ ପ୍ରାୟ ୨୦।୨୫ ମିନିଟ ଯାତ୍ରା କଲାପରେ ମାଳୟ ଦେଶର ଏକ ରାଜ୍ୟରେ ଯାଇ ପହଞ୍ଚିଲୁଁ । ସେ ଦେଶର ନାମ ପେରୁ ଓ ତାର ରାଜଧାନୀ ଇପକ ସହର । ସେହି ସହରର ଉଡ଼ାଜାହାଜ ଘଟିରେ ଅବତରଣ କଲୁଁ । ମାଳୟ ଦେଶର ମୋଟ ଲୋକ ସଂଖ୍ୟା ଦେଢକୋଟି ଓ ସମଗ୍ର ଦେଶଟି ପେରୁ ଭଳି ୧୩ଟି ରାଜ୍ୟରେ ବିଭକ୍ତ ହୋଇଥିବାର ଜାଣିଲୁଁ । ପ୍ରତ୍ୟେକ ରାଜ୍ୟରେ ଜଣେ ଜଣେ ରାଜା ସାମ୍ବିଧାନିକ ମୁଖ୍ୟ ଓ ସମଗ୍ର ଦେଶରେ ମଧ ଜଣେ ରାଜା ସାମ୍ବିଧାନିକ ମୁଖ୍ୟ ଅଛନ୍ତି । ଠିକ୍ ବ୍ରିଟିଶ୍ ପରି ଏଠାରେ ସଂସଦୀୟ ଗଣତନ୍ତ୍ର କେନ୍ଦ୍ର ଓ ରାଜ୍ୟ ସ୍ତରରେ ଚାଲେ । ଏହି ସାମ୍ବିଧାନିକ ମୁଖ୍ୟ ରାଜାମାନେ ସମସ୍ତେ ମୁସଲମାନେ ମାଲେସିଆନ ବୋଲାଉଥିବା ମୋଟ ଜନସଂଖ୍ୟାର ଶତକଡା ୭୦ଭାଗ ଚାଇନିଜ ସମ୍ଭୂତ । ଶତଗଡା ୬ଭାଗ ଭାରତୀୟ ବଂଶଧର ଓ ଅବଶିଷ୍ଟ ମୁସଲମାନ । ଚାଇନିଜ ମାନେ ବୌଦ୍ଧ ମୁସଲମାନ ମାନେ ଇସ୍‌ଲାମ ଓ ଭାରତୀୟମାନେ ହିନ୍ଦୁ ଓ ଖ୍ରୀଷ୍ଟିୟାନ୍ ଧର୍ମାବଲମ୍ବୀ ଅଟନ୍ତି । ମୁସଲମାନମାନେ ମାଳୟକୁ ଅଧିକାର କରି ସେଠାକାର ଅଧିବାସୀମାନଙ୍କୁ ଇସଲାମି ଧର୍ମ ଗ୍ରହଣ କରାଇଥିଲେ । ଏ ଦେଶ ଇଂରେଜମାନଙ୍କ ଅଧୀନରେ ଥିବା ବେଳେ ଭାରତୀୟ ମାନେ ସେଠାକୁ ବିଭିନ୍ନ ଧନ୍ଦା ଉଦ୍ଦେଶ୍ୟରେ ଆସି ପରିଶେଷରେ ସେଠାକାର ବାସିନ୍ଦା ହୋଇଯାଇଛନ୍ତି । ତେଣୁ ମାଲେସିଆନ କହିଲେ ପ୍ରକୃତରେ ଚାଇନିଜ ମାନଙ୍କୁ ହିଁ ବୁଝାଯାଏ । ଏମାନେ ଭିନ୍ନ ଭିନ୍ନ ଧର୍ମାବଲମ୍ବୀ ହୋଇଥିଲେ ହେଁ ଏମାନଙ୍କ ମଧ୍ୟରେ କୌଣସି ବିଭେଦ ନାହିଁ । ଭାରତୀୟମାନେ ବିଶେଷ ଭାବରେ

ତମିଲନାଡୁରୁ ଏଠାକୁ ଯାଇଛନ୍ତି । ସିଂହଳୀ ତାମିଲମାନଙ୍କପରି ଏଠାକାର ତାମିଲମାନଙ୍କର ଏବେ ବି ତାମିଲନାଡୁ ସହିତ ସଂପର୍କ ରହିଥିବାର ଜାଣିଲୁ । ଏହି ମାଲେସିଆ ଦିନେ ମାଳୟ ନାମରେ ଇଂରେଜ ଶାସନ କାଳରେ ଭାରତ ଶାସନାଧୀନ ଥିଲା । ଆଜକୁ ଏକ ଶହ ବର୍ଷ ପୂର୍ବେ ଭାରତୀୟ ମାନେ ଏ ଦେଶକୁ ଆସି ଆଜି ଏଠାକାର ବାସିନ୍ଦା ହୋଇ ଯାଇଛନ୍ତି । ସିଂହଳ ଭଳି ଭାରତୀୟ ବଂଶଧର ତାମିଲ ମାନଙ୍କର ଏଠାକାର ମୂଳ ବାସିନ୍ଦା ମାନଙ୍କ ସହିତ କୌଣସି ପ୍ରକାର ଶତ୍ରୁତା ନାହିଁ । ଉକ୍ତ ତାମିଲମାନେ ଏଠାକାର ରାଜ୍ୟ ବିଧାନ ସଭା ଓ ପାର୍ଲ୍ୟାମେଣ୍ଟର ସଭ୍ୟ ଓ ମନ୍ତ୍ରୀ ମଧ ଥିବାର ଜାଣି ଅତ୍ୟନ୍ତ ଆନନ୍ଦିତ ହେଲୁ । ବାଣିଜ୍ୟ ବ୍ୟବସାୟ କ୍ଷେତ୍ରରେ ବିଭିନ୍ନ ପ୍ରକାରର ବ୍ୟବସାୟ ଭାରତ ଓ ମାଲେସିଆ ମଧରେ ରହିଛି । ନିକଟରେ ଏଠାରୁ ମୋଟା କାଠ ଭାରତକୁ ଏବଂ କଲିକତା ବନ୍ଦର ଦେଇ ଓଡିଶାକୁ ମଧ ଯାଉଅଛି । ଏବେ ମାଲେସିଆରୁ ଅଶୋଧିତ ପେଟ୍ରୋଲ ମଧ ମିଳିବାକୁ ଯାଉଛି ।

ପେରୁ ସହରର ରାଜଧାନୀ ଇପକ ସହରରେ କିଛି ସମୟ ବୁଲାବୁଲି କରି ଦେଖିବା ଅବସରରେ ସେଠାକାର ଏକ ପୁରାତନ ରାଜପ୍ରାସାଦ ରାଜସିଂହାସନ ଓ ରାଜଦରବାରର ଆସବାବ ପତ୍ର ଗୁଡିକ ଦେଖିବାର ସୁଯୋଗ ମିଳିଥିଲା । ଏ ଗୁଡିକ ସବୁ ସେଠାକାର ସରକାରଙ୍କ ଦ୍ୱାରା ସୁରକ୍ଷିତ । ଏହି ସହରର ଏକ ସରକାରୀ ଅତିଥି ଭବନରେ ଆମର ମଧାହ୍ନ ଭୋଜନରେ ବ୍ୟବସ୍ଥା ହୋଇଥିଲା । ସେଠାରୁ ଏକ ବସ ଯୋଗେ ସମୁଦ୍ରକୂଳରେ ଯାଇ ପହୁଞ୍ଚିଲୁ ଏବଂ ଗୋଟିଏ ଯନ୍ତ୍ରଚାଳିତ ବୋଟରେ ଜଳଯାତ୍ରା କଲୁଁ । ବିଗସ୍ତ ବିସ୍ତାରୀ ଭାରତ ମହାସାଗରରେ ପ୍ରାୟ ଏକ ଘଣ୍ଟାକାଳ ଏହି ଜଳ ଯାତ୍ରା ସମସ୍ତଙ୍କ ପକ୍ଷରେ ଅତ୍ୟନ୍ତ ଆନନ୍ଦଦାୟକ ହୋଇଥିଲା । ଏହି ଦଳର ପ୍ରତିନିଧିମାନଙ୍କ ମଧରେ ଆମେ କେତେଜଣ ଭାରତୀୟ , ସିଂହଳୀ , ଆଫ୍ରିକୀୟ , ଅଷ୍ଟ୍ରେଲିଆ ଓ କାନାଡା ଭଳି ବିଭିନ୍ନ ଦେଶର ଲୋକ ଥାଉଁ ସେଠାକାର ସ୍ୱେଚ୍ଛାସେବକମାନେ ମଧ କେତେଜଣ ଆମର ସୁବିଧା ଅସୁବିଧା ବୁଝିବାପାଇଁ ଆମ ସଙ୍ଗରେ ଥାଆନ୍ତି ।

ଏହାପରେ ସମୁଦ୍ର ମଧରେ ମାଲେସିଆର ଅନ୍ୟଏକ କ୍ଷୁଦ୍ର ଦ୍ୱୀପ ପେଙ୍ଗକରଠାରେ ଯାଇ ପହୁଞ୍ଚିଲୁ । ଏ ସ୍ଥାନଟି ଅତି ମନୋରମ ''କ୍ଷଣେ କ୍ଷଣେ ଯନ୍ନବତାମୁପୈତି ତଦେବ ରୂପଂ ରମଣୀୟତାୟାଃ'' ପ୍ରକୃତରେ ଏ ଦୃଶ୍ୟ ଯେତେଥର ଦେଖୁଥିଲେ ହେଁ ସବୁବେଳେ ନୂଆ ନୂଆ ଜଣାପଡୁଥାଏ । ସମୁଦ୍ର କୂଳରେ ଏକ ଅତ୍ୟାଧୁନିକ ପାନ୍ଥନିବାସ । ସମୁଦ୍ରର ତରଙ୍ଗ ପାନ୍ଥନିବାସର ପାଦଦେଶରେ ଆସି ନବାଗତ ଅତିଥିମାନଙ୍କୁ ସତେ ଯେପରି ସ୍ୱାଗତ ସଂଭାଷଣ ଜଣାଉଥାଏ । ଏହି ପାନ୍ଥନିବାସଟି ବୃକ୍ଷଲତା ଆବୃତ ଶ୍ୟାମଳ ପର୍ବର ପାଦଦେଶରେ ଅବସ୍ଥିତ ହୋଇଥିବାରୁ ପ୍ରକୃତି ରାଣୀର ବିରାଟ ସାମ୍ରାଜ୍ୟର ରାଜଧାନୀ ପରି ମନେ ହେଉଥାଏ । ମୁଁ କବି କିଭାବୁକ ନୁହେଁ ଜଣେ ଜଗଣ୍ୟ ପ୍ରକୃତିର ଉପାସକ ମାତ୍ର । ତଥାପି ଏ ସ୍ଥାନର ନୈସର୍ଗିକ ସୌନ୍ଦର୍ଯ୍ୟ ମୋତେ ଅଭିଭୂତ କରି ପକାଇଲା । କିଛି କାଳ ଏ ସୌନ୍ଦର୍ଯ୍ୟ ଉପଭୋଗ କଲାପରେ ମୋ ପାଇଁ ଉଦ୍ଦିଷ୍ଟ ପ୍ରକୋଷ୍ଠକୁ ଗଲି । ଆମର ସମସ୍ତ ଅତିଥିମାନଙ୍କ ପାଇଁ ଭିନ୍ନ ଭିନ୍ନ ପ୍ରକୋଷ୍ଠମାନ ନିର୍ଦ୍ଧାରିତ ହୋଇଥାଏ । କୋଠରୀ ମଧରୁ ବିସ୍ତୀର୍ଣ୍ଣ ସମୁଦ୍ର ପୂର୍ଣ୍ଣରୂପେ ଦୃଷ୍ଟି ଗୋଚର ହେଉଥାଏ । କୋଠରୀ ସଂଲଗ୍ନ ବାରଣ୍ଡାରେ ମଧ ବସିବାର ବ୍ୟବସ୍ଥା ଥାଏ । ସେଠାରେ କିଛି ସମୟ ବସି ଏକାକୀ ସମୁଦ୍ରର ଦୃଶ୍ୟ ଓ ଶୀତଳ ପବନ ଉପଭୋଗ କଲି । ଆମ ଭିତରୁ କେହି କେହି ସମୁଦ୍ରକୂଳରେ ଲାଗି ଥିବା ପଥର ପିଣ୍ଡି ମାନଙ୍କରେ ବସି ଏ ସୌନ୍ଦର୍ଯ୍ୟ ଉପଭୋଗ କରୁ ଥିଲେ ସେଠାକୁ ଯାଇ କିଛି ସମୟ ସେମାନଙ୍କ ଗହଣରେ ବସିଲି । ଆମ ମଧରୁ କେହି କେହି ସସ୍ତ୍ରୀକ ସମୁଦ୍ର କୂଳରେବୁଲାବୁଲି କରି ବେଶ ଆମୋଦ ଉପଭୋଗ କରୁଥାଆନ୍ତି । ଆମ ବ୍ୟତୀତ ବହୁ ୟୁରୋପୀୟ ପରିବ୍ରାଜକ ଦମ୍ପତି ସମୁଦ୍ର କୂଳରେ ଏଣେ ତେଣେ ବୁଲାବୁଲି କରୁଥାଆନ୍ତି । ପ୍ରକୃତରେ ୟୁରୋପୀୟ ମାନେ ହିଁ ଦେଶ ଭ୍ରମଣ ଓ ପ୍ରାକୃତିକ ସୌନ୍ଦର୍ଯ୍ୟ ଉପଭୋଗ କରିବାରେ ଶ୍ରେଷ୍ଠ ବୋଲି ମୋର ମନେ ହେଲା । ମାଲେସିଆ ଭଳି ଏକ ଦେଶର ଏପରି ଏକ ଅତି ଭିତର ଅଞ୍ଚଳକୁ ମଧ ପରିଦର୍ଶନ କରିବାରେ ସେମାନେ ଛାଡି ନାହାନ୍ତି । କାଶ୍ମୀରଠାରୁ କୋଣାର୍କ ପର୍ଯ୍ୟନ୍ତ ଭାରତବର୍ଷର

କେଉଁ ପ୍ରାକୃତିକ ସୌନ୍ଦର୍ଯ୍ୟଭରା ବା ଐତିହାସିକ ସ୍ଥାନ ସେମାନେ ପରିଦର୍ଶନ କରୁନାହାନ୍ତି । ସଂଧ୍ୟା ବେଳକୁ ପାନ୍ଥଶାଳାର ପ୍ରାଙ୍ଗଣରେ ସେଠାକାର ଆଦିବାସୀ ମାନଙ୍କ ଦ୍ୱାରା ଏକ ସାଂସ୍କୃତିକ କାର୍ଯ୍ୟକ୍ରମ ମଧ୍ୟ ଆୟୋଜିତ ହୋଇଥିଲା । ନମ୍ରକମ୍ର ସଂଧ୍ୟାର ସେହି ସାଂସ୍କୃତିକ କାର୍ଯ୍ୟକ୍ରମ ଅତ୍ୟନ୍ତ ଉପଭୋଗ୍ୟ ହୋଇଥିଲା । ସେଠାରେ ରାତ୍ରି ଭୋଜନର ମଧ୍ୟ ବ୍ୟବସ୍ଥା ଥାଏ । ସମସ୍ତ ଆମୋଦ ପ୍ରମୋଦ ମଧ୍ୟରେ ଭୋଜୀ ସଭାରେ ମୋର ନିଜକୃତ ଦୁଃଖ ହିଁ ମୋତେ ଭୋଗିବାକୁ ପଡିଲା । ମୁଁ ସଂପୂର୍ଣ୍ଣ ନିରାମିଷାଶୀ ଓ କୌଣସି ପ୍ରକାର ମାଦକଦ୍ରବ୍ୟ ସେବନର ବିରୋଧୀ । ତେଣୁ ଟେବୁଲରେ ଅନ୍ୟମାନଙ୍କ ସଙ୍ଗରେ ଦିଆଯାଇଥିବା ଖାଦ୍ୟ ପଦାର୍ଥ ସ୍ପର୍ଶ ମଧ୍ୟ କରିପାରିଲି ନାହିଁ । ଏବଂ ପରିଣାମରେ ମୋତେ ସେଦିନ ଅନାହାରରେ ରହିବାକୁ ପଡିଲା ।

ପାଶ୍ଚାତ୍ୟ ସଭ୍ୟତା ପୂର୍ବାଞ୍ଚଳର ଅନ୍ୟାନ୍ୟ ଦେଶମାନଙ୍କ ଭଳି ଏଠାରେ ମଧ୍ୟ ସଂପୂର୍ଣ୍ଣପ୍ରଭାବ ବିସ୍ତାର କରିଥିବାର ଜାଣିଲୁ । ଏଠାକାର ଅଧିବାସୀମାନେ ଅଧିକାଂଶ ବୌଦ୍ଧଧର୍ମାବଲମ୍ବୀ ବୋଲାଉଥିଲେ ହେଁ ଠିକ୍ ପଶ୍ଚିମାଞ୍ଚଳର ଲୋକଙ୍କପରି ସାଧାରଣ ଲୋକ ମଦ୍ୟ, ମାଂସ ଓ ବିଶେଷ ଭାବରେ ଗୋରୁ ଓ ଘୁଷୁରୀ ମାଂସକୁ ନିଜର ମୁଖ୍ୟ ଖାଦ୍ୟ ରୂପେ ଗ୍ରହଣ କରିଥିବାର ଜଣାଗଲା । ସେଦିନ ଭୋଜୀରେ ଅନ୍ୟମାନେ ଅତି ଆଗ୍ରହର ସହିତ ଖାଉଥିଲା ବେଳେ ମୋତେ କେବଳ ସେମାନଙ୍କ ଖାଇବା ଦେଖିବାକୁ ପଡିଲା । ଆମ ଭାରତୀୟ ପ୍ରତିନିଧିମାନଙ୍କ ମଧ୍ୟରୁ ୨/୩ ଜଣ ଅବଶ୍ୟ ତାଙ୍କ ଖାଦ୍ୟଖାଇଲେ । ତହିଁ ପରଦିନ ସକାଳେ ପ୍ରାତଃ ଭୋଜନ ନ କରି ଏକ ଯନ୍ତ୍ର ଚାଳିତ ବୋଟରେ ବାହାରି ଆସିବାକୁ ପଡିଲା । ମାତ୍ର ୧୫।୨୦ ମିନିଟ ଯାତ୍ରା ପରେ ଆମେ ଯାଇ ଆଉ ଗୋଟିଏ ଛୋଟ ଦୀପରେ ପହଞ୍ଚିଲୁ । ସେଠାରେ ମଧ୍ୟ ଠିକ ପୂର୍ବପରି ସମୁଦ୍ର ତୀରକୁ ଲାଗି ଏକ ଅନୁଚ୍ଚ ପର୍ବତର ପାଦଦେଶରେ ଅତ୍ୟାଧୁନିକ ପାନ୍ଥନିବାସ ଅବସ୍ଥିତ । ସେଠାକାର ପ୍ରାକୃତିକ ପରିବେଶ ମଧ୍ୟ ଅତ୍ୟନ୍ତ ମନୋହର ଓ ଆନନ୍ଦ ଦାୟକ । ପୂର୍ବରୁ ଆସି ସ୍ୱେଚ୍ଛାସେବକମାନଙ୍କଦ୍ୱାରା ପ୍ରସ୍ତୁତ ହୋଇଥିବା ପ୍ରାତଃ ଭୋଜନ ଆମକୁ ସେଠାରେ ଦିଆଗଲା । ସେଠାରେ ଅନୁସନ୍ଧାନରୁ ଜାଣିଲି ଯେ ଏହି ଅତ୍ୟାଧୁନିକ ହୋଟେଲ ଗୁଡିକ ବିଦେଶୀ ପୁଞ୍ଜିରେ ନିର୍ମିତ ଓ ପରିଚାଳିତ । ତତ୍‌ପରେ ପୁଣି ସମୁଦ୍ର ପଥରେ ଆମର ପ୍ରତ୍ୟାବର୍ତ୍ତନ ଏବଂ ଅଳ୍ପ ସମୟ ପରେ ଆସି କୂଳରେ ଲାଗିଲୁ । ଉକ୍ତ ସ୍ଥାନଟି ପେରୁ ପ୍ରଦେଶର ଗୋଟିଏ ଛୋଟ ବନ୍ଦର । ସେଠାରେ ବହୁ ସାମୁଦ୍ରିକ ଓ ବିଭିନ୍ନ ହସ୍ତଶିଳ୍ପ ବିକ୍ରୟ ହେଉଥିବାର ଦେଖିଲୁ । କେହି କେହି କିଛି ଜିନିଷ ମଧ୍ୟ କିଣାକିଣି କଲେ । ସେଠାରୁ ପୁଣି ପୂର୍ବଦିନ ପରି ଗୋଟିଏ ବସ୍ ଯୋଗେ ଆସି ପେରୁ ପ୍ରଦେଶର ରାଜଧାନୀ ଇପବ ସହରରେ ପହଞ୍ଚିଲୁ । ସେଠାରେପେରୁ ପ୍ରଦେଶର ମୁଖ୍ୟମନ୍ତ୍ରୀ ଆମ୍ଭମାନଙ୍କୁ ସମ୍ବର୍ଦ୍ଧନା ଜଣାଇଲେ ଓ ଉପଢୌକନ ସ୍ୱରୂପ ସେଠାକର ପ୍ରସ୍ତୁତ କେତେକ ହସ୍ତଶିଳ୍ପ ପ୍ରଦାନ କଲେ । ଏହାପରେ ଏକ ମଧ୍ୟାହ୍ନ ଭୋଜନର ଆୟୋଜନ ହୋଇଥାଏ । ମଧ୍ୟାହ୍ନ ଭୋଜନ କାଳରେ ମୁଁ ଯେଉଁ ଟେବୁଲରେ ବସିଥିଲି ସେହି ଟେବୁଲରେ ସେଠାକର ବିଧାନସଭାର ଜଣେ ଯୁବବିଧାୟକ ମଧ୍ୟ ବସିଲେ । ଉକ୍ତ ଭୋଜନରେ ପରିବେଶି ସମସ୍ତ ଖାଦ୍ୟ ଆମିଷ ଓ ତାଙ୍କ ଦେଶର ଖାଦ୍ୟ ହୋଇଥିବାରୁ ମୋର ଅବସ୍ଥା ଠିକ ପୂର୍ବପରି ହେଲା । ଯାହାହେଉ ଉକ୍ତ ଯୁବକ ଜଣକ ମୋ ପ୍ରତି ସହାନୁଭୂତିଶୀଳ ହୋଇ ଜଣେ ସ୍ୱେଚ୍ଛା ସେବକଙ୍କୁ ଅନୁରୋଧ କରିବାରୁ ସେ ଆଳୁରେ ଏକ ପ୍ରକାର ପିଠା ପ୍ରସ୍ତୁତ କରି ଭାରତୀୟ ନିରାମିଷ ଖାଦ୍ୟ ବୋଲି ମୋତେ ଆଣି ଦେଲେ । ଯାହାହେଉ ତାକୁ ବେଶ ଆନନ୍ଦରେ ପେଟପୂରା ଖାଇନେଲି । ସେଠାରୁ ପୂର୍ବଦିନ ପରି କ୍ୱାଲାଲୁମପୁର ବିମାନଘାଟିରେ ଓହ୍ଲାଇ ପ୍ରତିନିଧିମାନେ ରହୁଥିବା ହିଲଟନ ହୋଟେଲରେ ଯାଇ ପହୁଞ୍ଚିଲୁଁ । ସେତେବେଳକୁ ସେଠାକାର ସମୟ ଅନୁଯାୟୀ ଅପରାହ୍ନ ୫ଟା ବାଜି ଗଲାଣି । ଖବର ନେଇ ଜାଣିଲି ଯେ ଆମ ବିଧାନ ସଭା ସେକ୍ରେଟେରୀ ଯାଇଥିବା ଦଳ ସେ ପର୍ଯ୍ୟନ୍ତ ଫେରି ନାହିଁ । ତେଣୁ ନିଜ ପ୍ରକୋଷ୍ଠ ମଧ୍ୟରେ ବସି ଦୂରଦର୍ଶନ ଦେଖିବାକୁ ଲାଗିଲି । ପ୍ରତି କୋଠରୀରେ ଅତିଥି ମାନଙ୍କର ସୁବିଧା ପାଇଁ ଦୂରଦର୍ଶନର ବ୍ୟବସ୍ଥା ଥାଏ । ରାତି ପ୍ରାୟ ୭ଟା ବେଳକୁ ଆମ ବିଧାନସଭା ସେକ୍ରେଟେରୀ ବଳଭଦ୍ର ବାବୁ ଆସି ମୋ ସହିତ ସାକ୍ଷାତ

କଲେ । ଉଭୟେ ବସି କିଛି ସମୟଧରି ପରସ୍ପର ମଧ୍ୟରେ ଭ୍ରମଣର ଅଭିଜ୍ଞତା ବର୍ଣ୍ଣନା କଲୁ । ଶେଷରେ ରାତ୍ରି ଭୋଜନପରେ ବିଶ୍ରାମ କଲୁଁ । ଅବଶ୍ୟ ଏଠାରେ ଆମ ଭାରତୀୟ ନିରାମିଷ ଖାଦ୍ୟ ପରିବେଶଣ କରାଯାଇଥିବାରୁ ଭୋଜନରେ କୌଣସି ଅସୁବିଧା ହେଲାନାହିଁ ।

## ମେଲେସିଆର ସ୍ୱାଧୀନତା ଦିବସ''

ଆଜି ତା ୩୦।୮।୮୭ରିଖ ମାଲେସିଆର ସ୍ୱାଧୀନତା ଦିବସ । ଭାରତର ସ୍ୱାଧୀନତା ପ୍ରାପ୍ତି ପରେ ପରେ ମାଲେସିଆ ମଧ୍ୟ ବ୍ରିଟୀସ କବଳରୁ ମୁକ୍ତି ଲାଭ କରିଥିଲା । ପୂର୍ବ ଦୁଇଦିନ ଆମେ ସହର ମଧ୍ୟ ଦେଇ ବୁଲିବାକୁ ଯିବା ଆସିବା ବାଟରେ ସ୍ୱାଧୀନତା ଦିବସ ପାଳନ ପାଇଁ ସହରମଧ୍ୟରେ କୌଣସିଠାରେ କିଛି ପ୍ରକାର ସାଜସଜ୍ଜା ନ ହେବାର ଦେଖି ସ୍ୱାଧୀନତା ଦିବସ ପାଳନ ପାଇଁ ଲୋକମାନଙ୍କ ମଧ୍ୟରେ ଆଗ୍ରହର ଅଭାବବୋଲି ମନେ ମନେ ଠିକ୍ କରି ନେଇଥିଲୁ । କାରଣ ଆମଦେଶରେ ସ୍ୱାଧୀନତା ପାଳନର ପୂର୍ବଦିନରୁ ହିଁ ସାଜସଜ୍ଜାର ଧୁମଧାମ ଆରମ୍ଭ ହୋଇଯାଇଥାଏ । ଆମଦେଶରେ ରାଜ୍ୟ ତଥା ଗ୍ରାମାଞ୍ଚଳରେ ସ୍ୱପାଧୀନତା ଦିବସ ପାଳନ ହେବା ବିଷୟ ପୂର୍ବଦିନରୁ ହିଁ ଜଣାପଡେ । ଏହା ପୁଣି ସମଗ୍ର ଦେଶର ରାଜଧାନୀ ତା ସହିତ ବହୁ ବିଦେଶୀ ନାଗରିକଙ୍କର ସମାବେଶ ହୋଇଛି ତେଣୁ ଆମ ମନରେ ଏପରି ଭାବନା ହେବା ସ୍ୱାଭାବିକ ।

ଯାହା ହେଉ (କାମନ ୱେଲ୍ଥ ପ୍ରିଜାଇଡିଂ ଅଫିସରର୍ସ ଏସୋସିଏସନ) ଉକ୍ତ ସ୍ୱାଧୀନତା ଦିବସର ସକାଳୁ ଯୋଗ ଦେବାପାଇଁ ନିମନ୍ତ୍ରଣ ଥାଏ । ତେଣୁ ଆମେ ସମସ୍ତେ ପ୍ରସ୍ତୁତ ହୋଇ ପ୍ରାତଃ ଭୋଜନ ଶେଷକରି ସକା ୮ ୧/୨ଟା ବେଳକୁ ଉତ୍ସବ ପାଳନ ହେବାକୁ ଥିବା ସ୍ଥାନରେ ପାଇ ପହଞ୍ଚିଲୁ । ଆମ ପାଇଁ ଉଦ୍ଦିଷ୍ଟ ସ୍ଥାନ ଗ୍ରହଣ କରିସାରିଲା ପରେ କାର୍ଯ୍ୟକ୍ରମ ଆରମ୍ଭକୁ ଉତ୍କଣ୍ଠାର ସହିତ ଅପେକ୍ଷା କରି ଥାଉଁ । ପ୍ରଥମେ ଉତ୍ସବ ସ୍ଥାନଟି ଆମର ପସନ୍ଦ ହେଲା ନାହିଁ । ଆମ ରାଜ୍ୟ ବା ଜିଲ୍ଲା ସ୍ତରରେ ଉତ୍ସବ ପାଳନ ପାଇ ଯେପରି ଏକ ବିସ୍ତାର୍ଣ୍ଣ ପ୍ରାନ୍ତରର ଆବଶ୍ୟକତା ଥାଏ ସେଠାରେ ସେପରି କୌଣସି ବ୍ୟବସ୍ଥା ନ ଥିଲା । ସାଧାରଣ ରାସ୍ତାକଡରେ ମନ୍ତ୍ରୀ, ଦର୍ଶକ, ଅତିଥି ବିଧାୟକ ଓ ସାମ୍ବିଧାନିକ ମୁଖ୍ୟ ରାଜାଙ୍କ ପାଇଁ ବସିବାର ସ୍ଥାନ ବ୍ୟବସ୍ଥା ହୋଇଛି । ରାସ୍ତା ଆରପଟେ ଗୋଟିଏ ଛୋଟ ପ୍ରାନ୍ତରସେପରି ବିସ୍ତୀର୍ଣ୍ଣ ନୁହେଁ ବା କୌଣସି ପ୍ରକାର ସାଜସଜ୍ଜା ନାହିଁ । କିଛି ସମୟପରେ ପ୍ରଧାନମନ୍ତ୍ରୀ ଅନ୍ୟ ମନ୍ତ୍ରୀମାନଙ୍କ ଗହଣରେ ଆସି ଆସନ ଗ୍ରହଣ କଲେ ଓ ସାମ୍ବିଧାନିକ ମୁଖ୍ୟ ରାଜାଙ୍କୁ ପ୍ରତୀକ୍ଷା କରି ଥାଆନ୍ତି । ପ୍ରାୟ ଦିନ ୯ଟା ବେଳକୁ ରାଜା ଆସି ପତାକା ଉତ୍ତୋଳନ କଲେ ସେହି ରାଜପଥର ଏକସ୍ଥାନରେ । ରାଜାଙ୍କର ଆମ ଦେଶର ରାଜାମାନଙ୍କ ଭଳି ପୋଷାକ ବା ପଗଡି ନ ଥିଲା । ସାଧାରଣ ସୁଟ ଟିଏ ପିନ୍ଧି ଆସିଲେ । ରାଜା ପହଞ୍ଚିଲା ବେଳକୁ ଆମ ଦେଶ ଭଳି କୌଣସି ପ୍ରକାର ସ୍ଲୋଗାନ ବା ଜୟ ଜୟ କାରର ଧ୍ୱନି ନ ଥିଲା । ରାଜା କେତେବେଳେ ଆସିଲେ କେହି ଜାଣିବି ପାରିଲେ ନାହିଁ । ପତାକା ଉତୋଳନ ପରେ ପରେ ବିଭିନ୍ନ କାର୍ଯ୍ୟକ୍ରମ ଆରମ୍ଭ ହୋଇଗଲା । ପ୍ରଥମେ ସଡକ ଉପରେ ରାଜା ପୋଲିସ ଅଭିବାଦକ ଗ୍ରହଣ କଲେ । ଏହାପରେ ରାଜପଥର ଅପର ପାର୍ଶ୍ୱରେ ଥିବା ପଡିଆରେ ପ୍ରାୟ ଦୁଇହଜାର ଯୁବତୀ ଓ ଏକହଜାର ଯୁବକ ବିଭିନ୍ନ ପ୍ରକାରର ଖେଳ ଓ ଡ୍ରିଲ ପ୍ରଦର୍ଶନ କଲେ । ସେମାନଙ୍କର ଖେଳ କସରତ ପ୍ରାୟ ୪୫ମିନିଟ ଧରି ଚାଲିଲାଅତି ସୁଶୃଙ୍ଖଳିତ ଭାବରେ ସେହି କ୍ରୀଡା ଆମ୍ଭମାନଙ୍କୁ ଅତ୍ୟନ୍ତ ମୁଗ୍ଧ କରି ପକାଇଲା । ସମସ୍ତେ ରଙ୍ଗ ବେରଙ୍ଗର ଅତି ସୁନ୍ଦର ପୋଷାକ ପରିଧାନ କରିଥାଆନ୍ତି । କ୍ରମେ ଲୋକ ସମାଗମ ବଢୁଥାଏ । ପୋଲିସ ଅଭିବାଦନ ଗ୍ରହଣ କଲା ଠାରୁ ରାଜା ପ୍ରଦାନମନ୍ତ୍ରୀ ଓ ଅନ୍ୟ ମନ୍ତ୍ରୀମାନେ ଯେଉଁ ସ୍ଥାନରେ ଛିଡା ହୋଇ ରହିଥାଆନ୍ତି । ସମସ୍ତେ ନିଜ ନିଜର ଖେଳ ପ୍ରଦର୍ଶନ ପରେ ଶୃଙ୍ଖଳାର ସହିତ ସମୟ ନଷ୍ଟ ନ କରି ମାର୍ଚ୍ଚ ପାଶ କରି ଉକ୍ତ ସଡକ ଉପରେ ଚାଲି ଯାଉ ଥାଆନ୍ତି । ସକାଳ ପ୍ରାୟ ୯ଟାଠାରୁ ଦିନ ପ୍ରାୟ ଗୋଟାଏ ପର୍ଯ୍ୟନ୍ତ ଏହି ଉତ୍ସବ ଲାଗି

ରହିଲା । ଯୁବକ ଯୁବତୀଙ୍କ ଖେଳ ପ୍ରଦର୍ଶନ ପରେ ବିଭିନ୍ନ ବେସରକାରୀ ସମାଜ ସେବୀ ଅନୁଷ୍ଠାନ ପ୍ରଶାସନର ବିଭିନ୍ନ ସରକାରୀ କର୍ମଚାରୀ ଛାତ୍ରଛାତ୍ରୀ ଓ ଏପରିକି ଅବସର ପ୍ରାପ୍ତ କର୍ମଚାରୀମାନେ ଗୋଟିକ ପରେ ଗୋଟିଏ ଦଳରେ ବିଭକ୍ତ ହୋଇ ନିଜ ନିଜର ପରିଚୟ ପାଇଁ ପୋଷ୍ଟରମାନ ଧରି ଏପରି ଶୃଙ୍ଖଳାର ସହିତ ମାର୍ଚ୍ଚପାଶ କଲେ ତାହା ଦେଖି ଆମେ ସ୍ତମ୍ଭୀଭୂତ ହୋଇଗଲୁ । ବେକାର ମାନଙ୍କର ପ୍ରତ୍ୟେକ ଦଳର ନାମୋଲ୍ଲେଖ ଥିବାରୁ କିଏ କ'ଣ ସ୍ପଷ୍ଟ ଭାବରେ ଜଣା ପଡୁଥିଲା । ଏପରିକି ଯେଉଁ ଅକର୍ମଣ୍ୟ ବୃଦ୍ଧମାନେ ଚାଲିପାରୁ ନ ଥିଲେ ସେମାନେ ମଧ ତାଙ୍କ ହସ୍ତଚାଳିତ ଗାଡିରେ ମାର୍ଚ୍ଚପାଶ କଲେ ଶେଷରେ ସୈନ୍ୟବିଭାଗର ବିଭିନ୍ନ ରେଜି ମେଣ୍ଟ ଟେଙ୍କ ତଥା ଅନ୍ୟାନ୍ୟ ଯୁଦ୍ଧ ସରଞ୍ଜାମ ସହ ବିଭିନ୍ନ ପ୍ରକାରର ଯାନ ବାହନ ନେଇ ମାର୍ଚ୍ଚ ପାଶ କଲେ । ବିଶେଷ ଉଲ୍ଲେଖନୀୟ ଯେ, ସେ ସମସ୍ତ ମାର୍ଚ୍ଚପାଶ ଗୁଡିକ ଏପରି ଶୃଙ୍ଖଳାରେ ଚାଲିଥିଲା ଯେ ଗୋଟିକପରେ ଅନ୍ୟ ଦଳଟି ବାହାରିବାରେ ପ୍ରାୟ ଦୁଇମିନିଟ ମାତ୍ର ବ୍ୟବଧାନ ରହୁଥିଲା । ଆକାଶ ମାର୍ଗରେ ଉଡ଼ାଜାହାଜ ଗୁଡିକ ସେମାନଙ୍କର ବିବିଧ ଉଡ଼ାଣ କୌଶଳ ପ୍ରଦର୍ଶନ କରୁଥାଆନ୍ତି । ସେପ୍ଟେମ୍ବର ମାସ ବେଳକୁ ସେଠାକର ଗ୍ରୀଷ୍ମକାଳ ଓ ଭୀଷଣ ଗରମ । ଆମେସବୁ ଯେଉଁ ସ୍ଥାନରେ ବସିଥାଉଁ ଉପରେ କୌଣସି ପ୍ରକାର ଆଚ୍ଛାଦନର ବ୍ୟବସ୍ଥା ନ ଥିଲା । ଭୀଷଣ ଖରା ଓ ଗରମ ସତ୍ତ୍ୱେ ରାଜା ଓ ମନ୍ତ୍ରୀମାନ ଦୀର୍ଘ ଚାରିଘଣ୍ଟା କାଳ ଛିଡ଼ାହୋଇ ସମସ୍ତଙ୍କ ଅଭିବାଦନ ଗ୍ରହଣ କରୁଥାଆନ୍ତି । ଏହି ଉତ୍ସବରେ ପ୍ରାୟ ୨୫ରୁ ୩୦ ହାଜର ଲୋକ ଯୋଗ ଦେଇଥିଲେ । ଅନ୍ୟାନ୍ୟ ପ୍ରଦେଶର ରାଜଧାନୀ ମାନଙ୍କରେ ମଧ ଏହି ଉତ୍ସବ ଯଥାରୀତି ପାଳନ କରାଯାଏ ବୋଲି ଶୁଣିଲୁ । ଆମ ଦେଶର ଦିଲ୍ଲୀ ଓ ବିଭିନ୍ନ ରାଜ୍ୟମାନଙ୍କରେ ଯେଉଁ ସ୍ୱାଧୀନତା ଉତ୍ସବ ପାଳନ କରାଯାଏ ସେଠାକୁ ବହୁତ ଲୋକ ଆସନ୍ତି ପୋଲିସ ତଥା ସୈନ୍ୟ ବିଭାଗର କ୍ରୀଡା କୌଶଳ ଦେଖି ତାକୁ ଉପଭୋଗ କରିବାକୁ । ତାଙ୍କର ଦେଶରେ ପ୍ରାୟ ସବୁ ଶ୍ରେଣୀର ଲୋକ ସ୍ୱାଧୀନତା ଉତ୍ସବରେ ଯୋଗଦେଇ ବିଭିନ୍ନ କାର୍ଯ୍ୟକ୍ରମରେ ଭାଗନିଅନ୍ତି । ଏହାହିଁ ତାଙ୍କ ଦେଶ ଓ ଆମ ଦେଶର ସ୍ୱାଧୀନତା ଦିବସ ପାଳନରେ ପାର୍ଥକ୍ୟ ।

ମାଲେସିଆର ଲୋକ ସଂଖ୍ୟା ପ୍ରାୟ ଦେଢକୋଟି । ଲୋକସଂଖ୍ୟା ଦୃଷ୍ଟିରୁ ଆମ ଓଡିଶାଠାରୁ ମଧ ବହୁତ କମ ମାତ୍ର ଏହା ଆମ ଭାରତ ଭଳି ଏକ ସ୍ୱାଧୀନ ସାର୍ବଭୌମ ରାଷ୍ଟ୍ର । ଦେଶର ଜାତୀୟ ଉତ୍ସବ ସ୍ୱାଧୀନତା ଦିବସ ପାଳନ ଅବସରରେ ଦେଶର ସମସ୍ତ ଶ୍ରେଣୀ ଓ ସଂପ୍ରଦାୟର ଲୋକେ ଯୋଗଦାନ ପୂର୍ବକ ବିଭିନ୍ନ ଭୂମିକାରେ ଭାଗନେଇ ଯେପରି ଉତ୍ସାହ ଓ ଶୃଙ୍ଖଳା ପ୍ରଦର୍ଶନ କଲେ ତାହା ପୃଥିବୀର ବିଭିନ୍ନ କୋଣରୁ ଆସିଥିବା ଶତଶତ ଦର୍ଶକଙ୍କୁ ଅଭିଭୂତ କରି ପକାଇଲା । ଆମ ଦେଶ ତୁଳନାରେ ଏହା ଏକ କ୍ଷୁଦ୍ର ଦେଶ ହେଲେ ହେଁ ସେମାନଙ୍କର ଜାତୀୟତା ଓ ଶୃଙ୍ଖଳିତ ଜୀବନରୁ ଆମ ର ବହୁ ଶିକ୍ଷା ଲାଭ କରିବାର ଅଛି । ଏ ଦେଶରେ ବୌଦ୍ଧ ମୁସଲମାନ, ଖ୍ରୀଷ୍ଟିୟାନ ଓ ହିନ୍ଦୁ ପ୍ରଭୃତି ବିଭିନ୍ନ ସଂପ୍ରଦାୟର ଲୋକେ ବାସ କରୁଥିଲେ ହେଁ ସେମାନଙ୍କ ମଧରେ ସାଂପ୍ରଦାୟିକ ବିବାଦ କେବେହେଲେ ଘଟିବାର ଶୁଣାଗଲା ନାହିଁ । ତାଙ୍କ ଦେଶର ପ୍ରଧାନମନ୍ତ୍ରୀ ଜଣେ ମୁସଲମାନଙ୍କ ଉକ୍ତିରୁ ଜାଣିଲୁ ଯେ ତାଙ୍କ ଦେଶରେ ଗୋଟିଏ ଖାଇବା ଟେବୁଲରେ ଜଣେ ଚୀନା ଘୁସୁରି ମାଂସ, ଜେଣ ମୁସଲମାନ ଗୋରୁ ମାଂସ ଖାଉଥିଲା ବେଳେ ଜଣେ ହିନ୍ଦୁ ନିରାମିଷ ଭୋଜନ ନିର୍ବିକାର ଭାବରେ କେହି କାହାରିକୁ ଘୃଣାକରି ଆଦରର ସହିତ କରନ୍ତି । ଏହା ଜାତୀୟତାର ଏକ ଭାବ ଆଦର୍ଶ କହିଲେ ଅତ୍ୟୁକ୍ତି ହେବ ନାହିଁ ।

ମାଲେସିଆର ଶାସନ ପ୍ରଣାଳୀ ବ୍ରିଟୀସ ଢାଞ୍ଚାରେ ଆମ ଭାରତ ଭଳି ଜାତୀୟ ସ୍ତରରେ ଏକ ପ୍ରତିନିଧି ସଭା ବା ପାର୍ଲ୍ୟାମେଣ୍ଟ ରହିଛି । ତା ଅଧୀନରେ ଥିବା ୧୩ଟି ରାଜ୍ୟରେ ମଧ ଆମପରି ବିଧାନସଭା ରହିଛି । ସଂପୂର୍ଣ୍ଣ ଗଣତାନ୍ତ୍ରିକ ଭିତ୍ତିରେ ସାବାଳକ ଲୋକଙ୍କ ଦ୍ୱାରା ପ୍ରତିନିଧିମାନେ ନିର୍ବାଚିତ ହୁଅନ୍ତି । ଜାତୀୟ ସ୍ତରରେ ଯେପରି ଜଣେ ରାଜା ସାମ୍ବିଧାନିକ ମୁଖ୍ୟଭାବେ ରହିଛନ୍ତି ପ୍ରତି ରାଜ୍ୟରେ ମଧ ଜଣେ ଜଣେ ରାଜା ସେହିପରି ସାମ୍ବିଧାନିକ ମୁଖ୍ୟ ଅଛନ୍ତି । ରାଜାମାନେ ନିର୍ବାଚିତ ନ ହୋଇ ପରଂପରା କ୍ରମେ ସାମ୍ବିଧାନିକ ମୁଖ୍ୟ ହୋଇ ରହିଥିଲେ ହେଁ କେବଳ ରାଜ୍ୟସ୍ତରରେ

ସେହି ପରିବାରରୁ ଜଣେ ଲେଖାଏଁ ପାଞ୍ଚବର୍ଷ ପାଇଁ ରୋଟେସେନ କ୍ରମେ ରାଜଗାଦୀରେ ବସନ୍ତି । ଏହା ତାଙ୍କ ଦେଶର ସଂବିଧାନ । ପ୍ରଧାନମନ୍ତ୍ରୀ ହେଉଛନ୍ତି ସର୍ବଶକ୍ତିମାନ । ଜାତୀୟ ସ୍ତରରେ ପାର୍ଲ୍ୟାମେଣ୍ଟ ଓ ରାଜ୍ୟସ୍ତରରେବିଧାନସଭାକୁ ସଂଖ୍ୟାଗରିଷ୍ଠ ଦଳରୁ ପ୍ରଧାନମନ୍ତ୍ରୀ ଓ ମୁଖ୍ୟମନ୍ତ୍ରୀମାନେ ନିର୍ବାଚିତ ହୁଅନ୍ତି । ତେଣୁ ତାଙ୍କର ଓ ଆମର ଶାସନ ପ୍ରଣାଳୀ ଏକ ପ୍ରକାର ସଂସଦୀୟ ଗଣତନ୍ତ୍ର ରୀତିରେ ଚାଲେ ।

## ସି.ପି.ଏ (ରାଜ୍ୟଗୋଷ୍ଠୀ ସଂସଦୀୟ ସମ୍ମିଳନୀ)

ତା୩୧।୮।୮୭ରିଖରେ ମାଲେସିଆଠାରେ ରାଜ୍ୟଗୋଷ୍ଠୀ ସଂସଦୀୟ ସମ୍ମିଳନୀ ଆରମ୍ଭ ହେଲା । ନିୟମ ଅନୁଯାୟୀ ଯେଉଁ ଦେଶରେ ଏହି ସମ୍ମିଳନୀ ଅନୁଷ୍ଠିତ ହୁଏ ସେ ଦେଶର ପାର୍ଲ୍ୟାମେଣ୍ଟର ବାଚସ୍ପତି ହିଁ ସମ୍ମିଳନୀର ସଭାପତି କରନ୍ତି । ତଦନୁଯାୟୀ ସେ ଦିନ ପୂର୍ବାହ୍ନ ସାଢେଦଶଟା ବେଳକୁ ସେଠାକାର ବାଚସ୍ପତିଙ୍କ ଅଧିନାୟକତ୍ୱରେ ସମ୍ମିଳନୀ ଆରମ୍ଭ ହେଲା ପ୍ରତ୍ୟେକ ଦେଶର ପ୍ରତିନିଧି ମାନଙ୍କୁ ଲଗା ଲଗି ଭାବରେ ଗୋଟିଏ ସ୍ଥାନରେ ଆସନ ଦିଆଯାଇଥାଏ । ପାର୍ଲାମେଣ୍ଟ ସଭ୍ୟମାନେ ପ୍ରଥମ ଧାଡିରେ ବସିଲା ବେଳେ ବିଧାନସଭାର ଅଧକ୍ଷମାନେ ତାଙ୍କ ପଛଧାଡ଼ିରେ ବସନ୍ତି । ପ୍ରତ୍ୟେକ ରାଜ୍ୟର ନାମର ଇଂରାଜୀ ଅକ୍ଷର କ୍ରମରେ ପ୍ରତ୍ୟେକଙ୍କ ନାମଲେଖା ଯାଇ ସ୍ଥାନ ନିରୂପଣ କରାଯାଇଥାଏ । ତାଙ୍କ ଦେଶର ପ୍ରଧାନମନ୍ତ୍ରୀ ଉକ୍ତ ସମ୍ମିଳନୀକୁ ଉଦ୍‌ଘାଟନ କଲେ । ସଭାପତିଙ୍କ ମଞ୍ଚରେ କେତେକ ଦେଶର ବାଚସ୍ପତିଙ୍କ ବସିବାର ନିୟମ ଥିବାରୁ ଆମର ପାର୍ଲ୍ୟାମେଣ୍ଟର ବାଚସ୍ପତି ଡକ୍ଟର ବଳରାମ ଝାକଡଙ୍କୁ ଉକ୍ତ ସମ୍ମାନ ମିଳିଥିଲା । ପ୍ରଥମେ ଆବାହକ କମିଟିର ସଭାପତି ପ୍ରତିନିଧିମାନଙ୍କୁ ସ୍ୱାଗତ ସମ୍ଭାଷଣ ଜଣାଇଲାପରେ ପ୍ରଧାନମନ୍ତ୍ରୀ ଉଦ୍‌ବୋଧନ ଦେଲେ । ରାଜ୍ୟଗୋଷ୍ଠୀ ସଂସଦୀୟ ସମ୍ମିଳନୀ ମିଳିତ ଜାତିସଂଘ ସଦୃଶ ପୃଥିବୀର ପ୍ରାୟ ଏକ ତୃତୀୟାଂଶ ଗଣତାନ୍ତ୍ରିକ ଦେଶ ଗୁଡିକର ବିଭିନ୍ନ ସମସ୍ୟା ବଳୀର ସମାଧାନ ପାଇଁ ପରାମର୍ଶ ଦେଇ ଗଣତନ୍ତ୍ର ପଦ୍ଧତିକୁ ସୁରକ୍ଷିତ କରି ପାରିଛି ଓ କ୍ରମେ ବିଭିନ୍ନ ଦେଶକୁ ସଂପ୍ରସାରିତ ହେବାରେ ଲାଗିଛି ବୋଲି କହି ଏହାର ଉଚ୍ଚ ପ୍ରସଂଶା କରିଥିଲେ । ସମଗ୍ର ପୃଥିବୀରେ ସର୍ବଶ୍ରେଷ୍ଠ ଆନ୍ତର୍ଜାତିକ ଅନୁଷ୍ଠାନ ସଂଯୁକ୍ତ ରାଷ୍ଟ୍ରସମ୍ମିଳନୀ ତଳକୁ ଏହା ୨ୟ ବୃହତ୍ତମ ଆନ୍ତର୍ଜାତିକ ସଂସ୍ଥା ରାଜ୍ୟଗୋଷ୍ଠୀ ଦେଶ ଗୁଡିକର ଶାସନମୁଖ୍ୟ ମାନଙ୍କରେ ଯେଉଁ ସମ୍ମିଳନୀ ଅଛି ତାହା ଏହିପରି ଏକ ସଂସ୍ଥା ହୋଇଥିଲେ ହେଁ ଏଥିରେ କେବଳ ଗଣତାନ୍ତ୍ରିକ ଶାସନ ପଦ୍ଧତି ପ୍ରଚଳିତ ଥିବା ଦେଶର ପ୍ରତିନିଧିମାନେ ସଭ୍ୟ ହୋଇପାରିବାର ପ୍ରତିବିଧାନ ରହିଅଛି । ଗଣତନ୍ତ୍ର ନ ଥିବା ଦେଶ ପୂର୍ବବ୍ରୀଟିଶ ଅଧିକୃତ ଦେଶ ହେଲେ ମଧ ଦେଶର ପ୍ରତିନିଧିମାନେ ଏଥିରେ ଯୋଗ ଦେଇ ପାରିବେ ନାହିଁ । ତେଣୁ ଆମ ଦେଶ ନିକଟରେ ଥିବା ପାକିସ୍ଥାନ ବାଙ୍ଗଲାଦେଶ ଓ ନେପାଳର କୌଣସି ପ୍ରତିନିଧି ଏଠାକୁ ଯାଇ ନ ଥିଲେ । ସେହିପରି ଆଫ୍ରିକାର ନାଇଜେରିଆର ମିଲିଟାରୀ ଶାସନ ଜାରି ହେଲା ଦିନଠାରୁ ଉକ୍ତ ଦେଶକୁ ଏହାର ସଭ୍ୟପଦରୁ ବାଦ ଦିଆଯାଇଥିଲା । ବାଙ୍ଗଲା ଦେଶରେ ମିଲିଟାରୀ ଶାସନ ଥାଇ ଜାତୀୟ ଏସେମ୍ବ୍ଲି ବା ପାର୍ଲ୍ୟାମେଣ୍ଟ ପାଇଁ ନିର୍ବାଚନ ହୋଇ ଏକ ଜାତୀୟ ଏସେମ୍ବ୍ଲି ଗଠିତ ହୋଇଥିଲେ ହେଁ ତାର ସ୍ଥାୟିତ୍ୱରେ ସନ୍ଦେହ ଥିବାରୁ ସେଠାକର ପ୍ରତିନିଧିମାନଙ୍କୁ କେବଳ ଦର୍ଶକ ଭାବରେ ଏଥବରେ ଯୋଗ ଦେବାକୁ ଅନୁମତି ଦିଆଯାଇଥିଲା । ପୂର୍ବତନ ବ୍ରିଟିଶ ଅଧିକୃତ ଦେଶ ସ୍ୱାଧୀନତା ପ୍ରାପ୍ତି ପରେ ଏହାର ସଭ୍ୟ ହେବା ପାଇଁ ବ୍ୟବସ୍ଥା ଥିଲେ ମଧ ଏହି ସବୁ କାରଣରୁ ଏହାର ପ୍ରତିନିଧି କରିବାରେ କେତେକ ଦେଶ ବଂଚିତ ହୋଇଥାଆନ୍ତି ।

ଏଥିରେ ବିଭିନ୍ନ ଆନ୍ତର୍ଜାତିକ ସମସ୍ୟା ଉପରେ ପରସ୍ପର ମଧ୍ୟରେ କେବଳ ଭାବର ଆଦାନ ପ୍ରଦାନ ହୋଇଥାଏ । ସେ ବର୍ଷ ସମ୍ମିଳନୀ ହେବା ପୂର୍ବରୁ ଫିଜି ଦେଶରେ ଗଣତାନ୍ତ୍ରିକ ବ୍ୟବସ୍ଥାକୁ ଭାଙ୍ଗି ଦେଇ ଜବରଦସ୍ତ ବର୍ଣ୍ଣଭେଦ ଭିତିରେ ଏକ ସରକାର ଗଠନ କରି ଉକ୍ତ ଦେଶ ସି.ପିଏ ଶାଖାରୁ ସଭ୍ୟପଦରୁ ବାଦ ଦିଆଗଲା ଓ ସେଠାକାର

ଅଧିବାସୀମାନଙ୍କର ଏକ ପ୍ରତିନିଧି ମୂଳକ ଶାସନ ପ୍ରତିଷ୍ଠା କରିବା ପାଇଁ ନିବେଦନ କରାଗଲା । ମାତ୍ର ରାଜ୍ୟ ଗୋଷ୍ଠୀ ସମ୍ମିଳନୀର ପୂର୍ବ ବ୍ରିଟିଶ ଅଧିକୃତ ସମସ୍ତ ଦେଶ ସଭ୍ୟ ରହିବାର ଅଧିକାର ଥାଏ । ସେଥିରେ ଗଣତାନ୍ତ୍ରିକ ଶାସନ ବ୍ୟବସ୍ଥା ଥିବା ନ ଥିବା ସହିତି କୌଣସି ସଂପର୍କ ନ ଥାଏ । ଏହା ହିଁ ଏହି ଉଭୟ ସଂସ୍ଥା ମଧ୍ୟରେ ପାର୍ଥକ୍ୟ । ଏହି ସମ୍ମିଳନୀରେ ବିଭିନ୍ନ ଆନ୍ତର୍ଜାତିକ ବା ଆଭ୍ୟନ୍ତରୀଣ ସମସ୍ୟା ଉପରେ ଆଲୋଚନା କରି ଏକମତ ହୋଇଥିବା ବିଷୟଗୁଡିକ କାର୍ଯ୍ୟକାରୀ କରିବାରେ କାହାରି ଉପରେ କିଛି ବାଧବାଧକତା ନ ଥାଏ । ଅବଶ୍ୟ ପ୍ରତ୍ୟେକ ଦେଶର ପ୍ରତିନିଧି ମାନଙ୍କୁ ସଂପୃକ୍ତ ଦେଶର ସରକାରଙ୍କ ଉପରେ ପ୍ରଭାବ ପକାଇ ତାହା କାର୍ଯ୍ୟକାରୀ କରିବାକୁ ଅନୁରୋଧ କରିଥାଆନ୍ତି । ପୃଥିବୀର ଜନମତକୁ ପ୍ରଭାବିତ କରି ଗଣତାନ୍ତ୍ରିକ ଶାସନ ବ୍ୟବସ୍ଥା ତଥା ଜନମଙ୍ଗଳକାରୀ ଶାସନ ଗୁଡିକୁ ବିଶ୍ୱରେ ଅଧିକ ଜନପ୍ରିୟ କରାଇବା ଏହି ସମ୍ମିଳନୀର ଅନ୍ୟତମ ଉଦ୍ଦେଶ୍ୟ ରୂପେ ଗ୍ରହଣ କରାଯାଇଅଛି । ଏହି ସବୁ କାରଣରୁ ସମଗ୍ର ବିଶ୍ୱରେ ସି.ପି.ଏ ର ଏକ ଉଲ୍ଲେଖନୀୟ ଭୂମିକା ରହିଅଛି । ଏଥିପାଇଁ ପ୍ରତିବର୍ଷ ସମ୍ମିଳନୀର ଶାଖା ଦେଶମାନାଙ୍କ ନିମନ୍ତ୍ରଣ କ୍ରମେ ସେହି ସେହି ଦେଶମାନଙ୍କରେ ସମ୍ମିଳନୀ ଅନୁଷ୍ଠିତ ହୁଏ ଓ ସେ ଦେଶର ପ୍ରତିନିଧିମାନଙ୍କୁ ସାଦର ଆତିଥ୍ୟ ପରେ ପ୍ରତିବର୍ଷପରି ସମସ୍ତ ପ୍ରତିନିଧି ଓ ଦର୍ଶକମାନଙ୍କର ଏକ ମିଳିତ ଫଟୋ ନିଆଗଲା । ତପ୍ରରେ ପ୍ରତିନିଧିମାନେ ରହିଥିବା ନିଜ ନିଜ ହୋଟେଲକୁ ଫେରି ଆସି ମଧ୍ୟାହ୍ନ ଭୋଜନ ପରେ ବିଶ୍ରାମ ନେଲେ । ସେଦିନ ଉପର ଓଳିକୁ କୌଣସି କାର୍ଯ୍ୟକ୍ରମ ରଖାଯାଇ ନ ଥିଲା । ସେଦିନ ରାତିରେ ତାଙ୍କ ଜାତୀୟ ଏସେମ୍ବ୍ଲିର ବାଚସ୍ପତି ଆମେ ରହୁଥିବା ହୋଟେଲରେ ଏକ ନୈଶ ଭୋଜନରେ ସମସ୍ତ ପ୍ରତିନିଧି ଓ ଦର୍ଶକମାନଙ୍କୁ ଆପ୍ୟାୟିତ କରିବା ସଙ୍ଗେ ସଙ୍ଗେ ତାଙ୍କ ଦେଶର ଲୋକଙ୍କଦ୍ୱାରା ଏକ ସାଂସ୍କୃତିକ କାର୍ଯ୍ୟକ୍ରମ ମଧ୍ୟ ପରିବେଷଣ କରାଯାଇଥିଲା ।

## ସମ୍ମିଳନୀରେ ଆଲୋଚନା

ତା ୧।୯।୮୭ରିଖ ଆଜି ସମ୍ମିଳନୀର କାର୍ଯ୍ୟ ଆରମ୍ଭ ଖୋଲା ଅଧିବେଶନରେ କେଉଁ ଦିନ କେଉଁ ବିଷୟ ଆଲୋଚିତ ହେବ କେଉଁ ଦେଶର କେତେ ଜଣ ପ୍ରତିନିଧି ଓ କେଉଁ ଦେଶର କିଏ କିଏ ଆଲୋଚନାରେ ଭାଗ ନେବେ ତାହା ନିର୍ଦ୍ଧାରିତ ହୋଇ ବୈଠକରେ ବହୁ ପୂର୍ବରୁ ଜଣାଇ ଦିଆଯାଇଥାଏ । ଆମ ପ୍ରତିନିଧିମାନେ ଯେଉଁ ବିଷୟବସ୍ତୁ ଉପରେ ଆଲୋଚନା କରିବେ ସେମାନଙ୍କୁ ମଧ୍ୟ ଆମ ଦେଶର ବୈଦେଶିକ ନୀତି ଦୃଷ୍ଟିରୁ ଭାରତ ସରକାରଙ୍କ ବିଶେଷଜ୍ଞମାନେ ସମ୍ୟକ ଧାରଣା ଦେବା ସଙ୍ଗେ ସଙ୍ଗେ ଏକ କ୍ଷୁଦ୍ର ଲିଖିତ ସୂଚନା ଦେଇ ଥାଆନ୍ତି । ସମ୍ମିଳନୀର ଖୋଲା ଅଧିବେଶନରେ ପ୍ରତ୍ୟେକ ବକ୍ତାଙ୍କୁ ମାତ୍ର ୭ ବା ୮ ମିନିଟ ସମୟ ଦିଆଯାଉଥିବାରୁ ବକ୍ତାମାନେ ଯେଉଁ ବିଷୟରେ କହିବେ ତାର ଏକ ଟିପ୍ପଣୀ ପ୍ରସ୍ତୁତ କରିଥାଆନ୍ତି । ସେ ଦିନର ଖୋଲା ଅଧିବେଶନରେ ମୋ ସହିତ ଆମ ଦେଶର ଅନ୍ୟ କେତେକ ପ୍ରତିନିଧିଙ୍କର ମଧ୍ୟ ଭାଗନେବାର କାର୍ଯ୍ୟକ୍ରମ ଥାଏ । ଆମେ ରହୁଥିବା ହୋଟେଲର ଗୋଟିଏ ତାଲାରେ ବଲରୁମ ନାମରେ ଗୋଟିଏ ବିରାଟ ହଲରେ ଦର୍ଶକ ମାନଙ୍କର ବସିବାର ଓ ସମ୍ମିଳନୀ ପରିଚାଳନା କରିବାର ବନ୍ଦୋବସ୍ତ ହୋଇଥିଲା । ପ୍ରତିନିଧିମାନେ ଏହି ହୋଟେଲରେ ରହୁଥିବାରୁ ଏହା ସମସ୍ତ ଦୃଷ୍ଟିରୁ ବେଶ ସୁବିଧା ଜନକ ମଧ୍ୟ ହୋଇଥିଲା । ଅନ୍ୟ ଦେଶରେ ଏପରି ସମ୍ମିଳନୀର ବୈଠକ ଅନ୍ୟ ସ୍ଥାନରେ ହେଉଥିବାରୁ ଯିବା ଆସିବାରେ ଅସୁବିଧା ହେଉଥିଲା । ମାତ୍ର ଏଠାରେ ସେହି ରହୁଥିବା ହିଲଟନ ହୋଟେଲରେ ସମ୍ମିଳନୀ ହେଉଥିବାରୁ ସେ ଅସୁବିଧା ନ ଥିଲା । ପାନେଲ ଅଧିବେଶନ ଗୁଡିକ ମଧ୍ୟ ସେହି ହୋଟେଲର ଅନ୍ୟ କୋଠରୀ ମାନଙ୍କରେ ହେଉଥିଲା । ଆଜି ରାତିରେ ସେଠାକାର ପ୍ରଧାନମନ୍ତ୍ରୀ ସମସ୍ତ ପ୍ରତିନିଧିମାନଙ୍କୁ ରିଜେଣ୍ଟ ନାମକ ଅନ୍ୟ ଏକ ହୋଟେଲରେ ଏକ ରାତ୍ରିଭୋଜନରେ ଆପ୍ୟାୟିତ କରିଥିଲେ । ରାତ୍ରି ଭୋଜନ ଅବସରରେ ପୂର୍ବପରି ସାଂସ୍କୃତିକ କାର୍ଯ୍ୟକ୍ରମ ମଧ୍ୟ ପରିବେଷଣ କରାଯାଇଥିଲା । ସେଠାକାର ପ୍ରଧାନମନ୍ତ୍ରୀ ଅତ୍ୟନ୍ତ ଦକ୍ଷ ଓ ଲୋକପ୍ରିୟ

ଥିବାର ମଧ ଶୁଣାଗଲା । ସେ ମୁସଲମାନ ସଂପ୍ରଦାୟର ହୋଇଥିଲେ ହେଁ ଅନ୍ୟଦୁଇ ସଂପ୍ରଦାୟର ମଧ ବେଶ ଆସ୍ଥାଭାଜନ ହୋଇପାରିଥିଲେ । ତାଙ୍କ ଦେଶରୁ ଆମ ଦେଶକୁ ସେହି ବର୍ଷଠାରୁ କାଠ ରପ୍ତାନୀ ହେଉଥିବା ବିଷୟ ମଧ ଏହି ଅବସରରେ ତାଙ୍କଠାରୁ ପଚାରି ବୁଝିଥିଲି । ରାତ୍ରିଭୋଜନ ପରେ ଯେଝା ହୋଟେଲକୁ ଫେରି ବିଶ୍ରାମ ନେଲୁ ।

ଆଜି ସମ୍ମିଳନୀର ୩ୟ ଦିବସ । ପୂର୍ବଦିନ ପରି ଆଜି ମଧ ସମ୍ମିଳନୀ ଆରମ୍ଭ ହେଲା ଠିକ ପୂର୍ବାହ୍ନ ୧୦ଟା ବେଳେ । ଆଜିର ଆଲୋଚ୍ୟ ବିଷୟ ଥିଲା "ପାର୍ଲ୍ୟାମେଣ୍ଟର ଜୀବନ୍ତ ଚିତ୍ର ଏବଂ ଲୋକ ପ୍ରତିନିଧିର ପତନ ପାଇଁ ଦାୟୀ କିଏ । (Life telecastle of Parliament and who is responsible for dourfall of the peoples respresentive) ଏ ସଂପର୍କରେ ସେ ଦିନ ୨୦ଜଣ ପ୍ରତିନିଧି ଭାଗନେବାର ଥିଲେ ହେଁ ସେଥିମଧରୁ ମୋ ସମେତ ମାତ୍ର ଆଠ଼ଜଣ ଅଂଶ ଗ୍ରହଣ କରିବାର ସୁଯୋଗ ପାଇଥିଲେ । ଏହି ଆଠ ଜଣଙ୍କ ମଧରୁ ମୋ ନାମ ୪ର୍ଥରେ ଥିଲା ମାତ୍ର ମୋ ନାମ ଠିକ କ୍ରମ ଅନୁସାରେ ନ ଡାକି ପ୍ରାୟ ଶେଷ ଆଡକୁ ଡକାହେଲା । ଅବଶ୍ୟ ଏଥିପାଇଁ ମୋର ଅସନ୍ତୋଷ ଆମ ପାର୍ଲ୍ୟାମେଣ୍ଟ ସେକ୍ରେଟେରୀ ଶ୍ରୀଯୁକ୍ତ ଅଗ୍ରୱାଲାଙ୍କୁ ଜଣାଇ ଦେଇଥିଲି । ଯାହା ହେଉ ମୁଁ ପାର୍ଲ୍ୟାମେଣ୍ଟ ଚାଲିଥିଲାବେଳେ ତାର ଦୂରଦର୍ଶନରେ ଜୀବନ୍ତ ଫଟୋ ଉଠାଇବାରେ ବିରୋଧକରି ମୋର ମତବ୍ୟକ୍ତ କରିଥିଲି । ଆମ ଦେଶରେ ଏହାକୁ ପବିତ୍ର ଲୋକ ବିଚାରଳୟର ଆଖ୍ୟା ଦିଆଯାଇଛି । କେମେରା ଧରି ଏହାର ଫଟୋ ଉତ୍ତୋଳନ କଲେ କାର୍ଯ୍ୟରେ ବାଧା ସୃଷ୍ଟି ହେବା ସଙ୍ଗେ ସଙ୍ଗେ ଗୃହର ପବିତ୍ରତା ନଷ୍ଟ ହେବ । ଅପର ପକ୍ଷରେ ଜଣେ ଲୋକ ପ୍ରତିନିଧି ଅପ୍ରିୟ ହେବାର କାରଣ ସେ ନିଜେ । ସେଥିପାଇଁ ପ୍ରତିନିଧି ନିଜେ ହିଁ ଦାୟୀ । ନିଜର ଚରିତ୍ରବତ୍ତା ଓ କାର୍ଯ୍ୟକୁଶଳତା ଉପରେ ଗଣତନ୍ତ୍ର ବା ଲୋକଶାସନର ସଫଳତା ନିର୍ଭର କରେ । ଅପରାହ୍ନ ଅଧିବେଶନରେ ଅନ୍ୟ ଏକ ବିଷୟରେ ଆଲୋଚନା ହୋଇଥିଲା । ମୋର ସେଥିରେ ଭାଗ ନେବାର ନ ଥିଲା । ଆମ ଭାରତର ଅନ୍ୟ କେତେଜଣ ପ୍ରତିନିଧି ଏଥିରେ ଅଂଶ ଗ୍ରହଣ କରିଥିଲେ । ସେ ଦିନ ରାତିରେ ସେଠାକାର ସିଟି ହଲରେ ରାତ୍ରିଭୋଜନ ଓ ସାଂସ୍କୃତିକ କାର୍ଯ୍ୟକ୍ରମର ବ୍ୟବସ୍ଥା ଥିଲା ସମସ୍ତ କାର୍ଯ୍ୟ ସରିଲାପରେ ଯେଝା ହୋଟେଲରେ ଆସି ବିଶ୍ରାମ କଲୁ ।

ତା ୪।୯।୮୭ ରିଖ ଆଜି ସମ୍ମିଳନୀର ଖୋଲା ଅଧିବେଶନ ନ ଥିଲା । ଆଜି ଥିଲା ଆଲୋଚନା ଚକ୍ରର କାର୍ଯ୍ୟକ୍ରମ ଏଥିରେ ଭାଗ ନେବାକୁ ଇଚ୍ଛୁକ ସଭ୍ୟମାନଙ୍କୁ A.B.C. ଏହିପରି ବିଭିନ୍ନ ଭାଗରେ ବିଭକ୍ତ କରି ବିଭିନ୍ନ ଭାଗରେ ବିଭକ୍ତ କରି ବିଭିନ୍ନ କୋଠରୀରେ ଆଲୋଚନା ଚକ୍ରର କାର୍ଯ୍ୟ ଆରମ୍ଭ ହୋଇଗଲା । ମୁଁ ବିଭାଗରେ ଯୋଗ ଦେଲି ଆମ ଭାରତର ଆନ୍ଧ୍ର ବିଧାନସଭାର ଅଧକ୍ଷ ଶ୍ରୀଯୁକ୍ତ ରାଓ ମଧ ଏଥିରେ ଭାଗ ଦେଇଥିଲେ । ଆମବ୍ୟତୀତ ସିଂହଳ, ଆଫ୍ରିକା ବ୍ରୀଟେନ ଓ କାନଡା ପ୍ରଭୃତି ଦେଶରୁ ପ୍ରାୟ ୪୦।୫୦ଜଣ ପ୍ରତିନିଧି ଏଥିରେ ଯୋଗ ଦେଇଥିଲେ । ଆମ ଅଲୋଚନା ଚକ୍ରର ବିଷୟବସ୍ତୁ ଥିଲା "Accountability of the administration to the parliament" ଏ ବିଷୟଟି ମୋର ଅତି ପ୍ରିୟ ହୋଇଥିବାରୁ ମୁଁ ଏଥିପାଇଁ ଭଲଭାବରେ ପ୍ରସ୍ତୁତ ହେଲି । ସଂସଦୀୟ ଗଣତନ୍ତ୍ରରେ ଲୋକପ୍ରତିନିଧି ଓ ପ୍ରଶାସନ ଯେଉଁଠାରେ ସୁଦୃଢ ଓ ପରସ୍ପର ସହଯୋଗୀ ସେହିଠାରୁ ହିଁ ଗଣତନ୍ତ୍ରର ମୌଳିକ ଉଦ୍ଦେଶ୍ୟ ସଫଳ ରୂପାୟନ ହୋଇପାରେ ବୋଲି ମୋର ମତାମତ ପ୍ରାୟ ସମସ୍ତସଭ୍ୟଙ୍କ ଦ୍ୱାରା ଗୃହୀତ ହୋଇଥିଲା ।

ଅପରାହ୍ନ ଅଧିବେଶନରେ ମୋର ଭାଗନେବାର ନଥିବାରୁ ମୁଁ ଓ ଆମ ବିଧାନ ସଭା ସେକ୍ରେଟେରୀ ବଳଭଦ୍ର ପାତ୍ର ବିଭିନ୍ନ ବ୍ୟବସାୟ କେନ୍ଦ୍ରମାନ ବୁଲି ଦେଖିବାର କାର୍ଯ୍ୟକ୍ରମ ରଖିଥିଲୁ । ବଳଭଦ୍ର ସେଠାକାର ଜଣେ ଭାରତୀୟ ବ୍ୟବସାୟିଙ୍କ ସହିତ ବନ୍ଧୁତା କରି ତାଙ୍କ ଗାଡିରେ ବୁଲାବୁଲି କରିବାର ବନ୍ଦୋବସ୍ତ କରିଥିଲେ । ତାଙ୍କ ଗାଡିରେ ଆମେ ବିଭିନ୍ନ ବ୍ୟବସାୟ କେନ୍ଦ୍ରମାନଙ୍କୁ ଯାଇ ବୁଲାବୁଲି କଲୁଁ । ସେଠାରେ ଅନେକ ଭାରତୀୟ (ତାମିଲ) ବ୍ୟବସାୟୀଙ୍କ

ଦୋକାନ ଥିବାର ଦେଖିଲୁଁ । ସେଠାରେ ଭଲ ରୁଦ୍ରାକ୍ଷ ମିଳେ ବୋଲି ମୁଁ ପୂର୍ବରୁ ଶୁଣିଥିଲି ମାତ୍ର ପ୍ରକୃତରେ ତା ନୁହେଁ । ଜଣେ ବ୍ୟବସାୟୀ ଆମକୁ ଅଳ୍ପ କେତୋଟି ରୁଦ୍ରାକ୍ଷ ଦେଖାଇ ସେଗୁଡ଼ିକ ସେ ମାନ୍ଦ୍ରାଜରୁ ଆମଦାନୀ କରିଥିବା କଥା ଆମକୁ କହିଲେ । ଯାହା ହେଉ ଅଳ୍ପ କେତୋଟି ରୁଦ୍ରାକ୍ଷ ସେଠାରୁ ଆଣିଲୁ । ସେଦିନ ରାତ୍ରିଭୋଜନପାଇଁ ମାଲେସିଆ ସରକାରଙ୍କ ଭାରତୀୟ ମନ୍ତ୍ରୀଙ୍କ ନିମନ୍ତ୍ରଣ ଥିବାରୁ ଆମର ଦଳପତି ଡଃ ବଳରାମ ଝାକରଙ୍କ ସହିତ ସମସ୍ତ ପ୍ରତିନିଧି ସେଥିରେ ଯୋଗଦାନ କରିଥିଲୁ । ଭାରତୀୟ ହାଇକମିସନର ମଧ୍ୟ ଉକ୍ତ ଭୋଜୀ ସଭାରେ ଆମ ଗହଣରେ ଥିଲେ । ଆଲୋଚନା କ୍ରମେ ଜାଣିଲୁଁ ଯେ ଉକ୍ତ ମନ୍ତ୍ରୀ ଜଣେ ପଞ୍ଜାବୀ ଶିଖ ହୋଇଥିଲେ ହେଁ ସେ କଟକରେ ଶିକ୍ଷା ଲାଭ କରିଥିଲେ । ତାଙ୍କ ବାପା କଟକଠାରେ ଜଣେ ବ୍ୟବସାୟୀ ଥିଲେ । ସେଠାକାର ଭାରତୀୟମାନଙ୍କର ପ୍ରତିନିଧି ଭାବରେ ତାଙ୍କୁ ମନ୍ତ୍ରୀ ମଣ୍ଡଳରେ ଗ୍ରହଣ କରାଯାଇଅଛି । ସେ ଓ ତାଙ୍କର ପତ୍ନୀ ସେଦିନ ଭୋଜୀ ସଭାରେ ଆମ୍ଭମାନଙ୍କ ସହ ବହୁତ ଚର୍ଚ୍ଚା କରିଥିଲେ ।

ଆଜି ତା ୫।୯।୮୭ରିଖ ସମ୍ମିଳନୀରେ ଉଦଯାପନ ଦିବସ । ସବୁଦିନ ପରି ଆଜି ମଧ୍ୟ ପୂର୍ବାହ୍ଣ ୧୦ଟା ବେଳକୁ ସମ୍ମିଳନୀର ଖୋଲା ଅଧିବେଶନ ଆରମ୍ଭ ହେଲା । ପ୍ରାୟ ଦିନ ୧୨ଟା ବେଳକୁ C.P.A. ସଭାପତି ପଦପାଇଁ ନିର୍ବାଚନ ହେଲା । ପ୍ରତି ତିନିବର୍ଷରେ ଥରେ ପ୍ରତିନିଧିମାନେ ସଭାପତି ବାଛିବାର ବିଧି । ତିନିବର୍ଷତଳେ ମାଲଦ୍ୱୀପଠାରେ ସମ୍ମିଳନୀ ହୋଇଥିବାବେଳେ ଭାରତର ଲୋକସଭା ଅଧ୍ୟକ୍ଷ ତଥା ଭାରତୀୟ ପ୍ରତିନିଧିଦଳର ନେତା ଉକ୍ତପଦ ପାଇଁ ସଂଖ୍ୟାଧିକ ଭୋଟରେ ନିର୍ବାଚିତ ହୋଇଥିଲେ । ସେତେବେଳେ ଡକ୍ଟର ଝାକରଙ୍କ ସହିତ କେନିଆ ଦେଶର ଶାଖାର ସଭାପତିଙ୍କ ସହିତ ତୀବ୍ର ପ୍ରତିଦ୍ୱନ୍ଦିତା ହୋଇଥିଲା । ଏଥର ଉକ୍ତ କାର୍ଯ୍ୟକାରୀ କମିଟିର ସଭାପତି ପଦପାଇଁ ଆଫ୍ରିକୀୟ ଜିମ୍ବାୱେ ଦେଶର ଶାଖାର ସଭାପତି ଓ ମାଲେସିଆ ଶାଖାର ନେତା ଯେ ସମ୍ମିଳନୀରେ ନିଜେ ସଭାପତିତ୍ୱ କରିଥିଲେ ଏଇ ଉଭୟଙ୍କ ମଧ୍ୟରେ ପ୍ରତିଦ୍ୱନ୍ଦିତା ଆରମ୍ଭ ହେଲା । ଦକ୍ଷିଣ ଆଫ୍ରିକାରେ ବର୍ଣ୍ଣ ବୈଷମ୍ୟ ଆନ୍ଦୋଳନ ଚାଲୁ ଥିବା ଦୃଷ୍ଟିରୁ ସେଠାକାର ଜଣେ ପ୍ରତିନିଧି ର ସଭାପତି ହେବା ଉଚିତ ବୋଲି ଭାରତ ସମେତ ଅନ୍ୟ ଦେଶର ପ୍ରତିନିଧିମାନେ ଚାହୁଁଥିଲେ । ତେଣୁ ମାଲେସିଆର ପ୍ରତିନିଧିଙ୍କୁ ପ୍ରତିଦ୍ୱନ୍ଦିତାରୁ ନିବର୍ତ୍ତାଇବାକୁ ଚେଷ୍ଟା କଲେ ମଧ୍ୟ ସେ ସେଥିରେ ସମ୍ମତ ହେଲେ ନାହିଁ । ମାଲେସିଆରେ ଅତିଥିଭାବେ ରହି ତାଙ୍କ ବିରୋଧରେ ଭୋଟ ଦେବାକୁ ସମସ୍ତେ ଅସୁବିଧା ଜନକ ମନେ କଲେ । ପରିଶେଷର ନିର୍ବାଚନ ହେଲା । ଭାରତ ସମେତ ବହୁ ଦେଶର ପ୍ରତିନିଧିମାନେ ଜିମ୍ବାୱେକୁ ସମର୍ଥନ କରି ଭୋଟ ଦେବାରୁ ସେ ଜୟଯୁକ୍ତ ହେଲେ । ଏହାପରେ ଉଦ୍‌ଯାପନ ଉତ୍ସବ ଅନୁଷ୍ଠିତ ହୋଇ ହର୍ଷଧ୍ୱନୀ ମଧ୍ୟରେ ସମ୍ମିଳନୀ ସମାପ୍ତ ହେଲା । ମାଲେସିଆର ଆତିଥ୍ୟ ପାଇଁ ସେଠାକାର ଶାଖା ଓ ସରକାରଙ୍କୁ ସମସ୍ତେ ବଧେଇ ଜଣାଇଲେ ।

ଏହି ଅଧିବେଶନ ଚାଲିଥିବା ବେଳେ ହଠାତ ମୋତେ ଦୁର୍ବଳ ଲାଗିଲା ଓ ସର୍ବାଙ୍ଗରୁ ଝାଳ ବୋହି ଗଲା । ପ୍ରଥମେ ମୁଁ କାହାରିକୁ ଏକଥା ଜଣାଇଲି ନାହିଁ । ସମ୍ମିଳନୀ ଶେଷରେ ମଧ୍ୟାହ୍ନ ଭୋଜନକୁ ଯାଉଥିବା ବେଳେ ପୁଣି ସେହିପରି ଅବସ୍ଥା ହେଲାରୁ ଆମ ବିଧାନସଭା ସେକ୍ରେଟେରୀଙ୍କୁ ଏ ବିଷୟ ଜଣାଇଲି ଓଖାଇବାକୁ ନଯାଇ ନିଜ ପ୍ରକୋଷ୍ଠକୁ ଚାଲିଆସିଲି । ବଳଭଦ୍ରବାବୁ ପ୍ରତିନିଧିଙ୍କ ସ୍ୱାସ୍ଥ୍ୟ ଦେଖିବା ପାଇଁ ସଠାରେ ନିଯୁକ୍ତ ହୋଇଥିବା ଚିକିତ୍ସକଙ୍କୁ ମୋ ନିକଟକୁ ଡାକି ଆଣିଲେ । ସେ ପୂର୍ବରୁ ମୋତେ ପାରାଲିସିସ୍ ହେବା କଥା ଜାଣିଲେ ଓ ବହୁମୂତ୍ର ଅଛିକି ନା ଜାଣିବା ପରେ ଆବଶ୍ୟକୀୟ ପରୀକ୍ଷା କଲେ । ହୃଦ ରୋଗ ହୋଇଥିବାର ସନ୍ଦେହ ମଧ୍ୟ କଲେ । କିଛି ଔଷଧ ମଧ୍ୟ ଦେଲେ । ମୁଁ ଖୁବ୍ ଲଘୁ ଖାଦ୍ୟ ଖାଇଲି । ପରୀକ୍ଷାରୁ ଜଣାଗଲା ଯେ ହୃଦରୋଗ ଜନିତ ଏସବୁ ଉପଚାର ନୁହେଁ । କେବଳ ଦୁର୍ବଳତାରୁ ସେପରି ହେଇଛି । ମୁଁ ସିଗାରେଟ ବ୍ୟବହାର କରୁଥିବାର ଦେଖି ଡାକ୍ତର ବଡ ଅସନ୍ତୋଷ ପ୍ରକାଶ କଲେ ଓ ଭବିଷ୍ୟତରେ ସିଗାରେଟ ଖାଇବାକୁ ବାରଣ କଲେ । ସେହିଦିନଠାରୁ ମୁଁ ସିଗାରେଟ ଟାଣିବା ଛାଡି ଦେଲି ।

# ମାଲେସିଆର ବିଶେଷତ୍ୱ

ମାଲେସିଆ ସମୁଦ୍ର ବେଷ୍ଟିତ ଏକ ଉପଦ୍ୱୀପ । ଆୟତନ ଓ ଲୋକସଂଖ୍ୟାରେ ଆମ ଦେଶଠାରୁ ଏହା ବହୁତ କମ । ଏଠାରେ ଅଧିକ ସଂଖ୍ୟକ ଚୀନା ବାସକରୁଥିଲେ ହେଁ ଏଠାକାର ଶାସକମାନେ ମୁସଲମାନ ଓ ସମୁଦାୟ ଲୋକସଂଖ୍ୟାର ଅନୁପାତ ଅନୁସାରେ ଏମାନେ ମାତ୍ର ଶତକଡା ଚବିଶ ଭାଗ ଅଟନ୍ତି । ଏହା ପ୍ରକୃତରେ ଚୀନ ସଭ୍ୟତାର ଅନ୍ତର୍ଭୁକ୍ତ । ବହୁବର୍ଷ ପୂର୍ବେ ମୁସଲମାନ ମାନେ ଏ ଦେଶକୁ ଅଧିକାର କଲାପରେ ଏଠାକାର ବହୁ ଅଧିବାସୀ ଇସଲାମ ଧର୍ମ ଗ୍ରହଣ କରିଛନ୍ତି । ବହୁବର୍ଷ ପୂର୍ବେ ଆମଦେଶକୁ ମଧ ପାରସ୍ୟ ଓ ଆଫଗାନରୁ ମୁସଲମାନ ମାନେ ଆସି ଧନ ସଂପଦ ଲୁଣ୍ଠନ କଲାପରେ ଦେଶର ଶାସନ ଡୋରୀକୁ ମଧ ନିଜ ଅକ୍ତିଆରରେ ରଖିନେଲେ । ମୁସଲମାନମାନଙ୍କ ଅତ୍ୟାଚାରରୁ ନିଜକୁ ରକ୍ଷାକରିବା ପାଇଁ ଆମ ଦେଶର ହିନ୍ଦୁମାନେ ଇସଲାମ ଧର୍ମ ଗ୍ରହଣ କଲାଭଳି ଏଠାକାର ଲୋକମାନେ ମଧ ଇସଲାମ ଧର୍ମାବଲମ୍ବୀ ହୋଇଛନ୍ତି । ହିନ୍ଦୁ ପୁରାଣ ଶାସ୍ତ୍ରରେ ମାଳୟ ଦିନେ ଭାରତୀୟ ସଭ୍ୟତାର ଅନ୍ତର୍ଭୁକ୍ତ ଥିବାର ପ୍ରମାଣ ମିଳେ । ଏଠାରେ ଚୀନା, ମୁସଲମାନ ଓ ଭାରତୀୟ ମାନଙ୍କ ମଧରେ ବିଭିନ୍ନ ଧର୍ମାବଲମ୍ବୀ ଲୋକଥିଲେ ମଧ ଏମାନଙ୍କ ମଧରେ କେବେହେଲେ ସାଂପ୍ରଦାୟିକ ଗଣ୍ଡଗୋଳ ଘଟିବା ବିଷୟ ଶୁଣାଯାଏ ନାହିଁ । ଏହା ଅତ୍ୟନ୍ତ ଆନନ୍ଦର କଥା । ସମସ୍ତେ ନିଜକୁ ମାଲେସିଆନ ବୋଲି ପରିଚୟ ଦିଅନ୍ତି । ଚୀନାମାନେ ବୌଦ୍ଧଧର୍ମାବଲମ୍ବୀ ହେଲେ ମଧ ଅନ୍ୟାନ୍ୟ ପୂର୍ବ ଏସିଆର ଦେଶଭଳି, ଏମାନେ ପାଶ୍ଚାତ୍ୟ ସଭ୍ୟତାରେ ସଂପୂର୍ଣ୍ଣ ରୂପେ ପ୍ରଭାବିତ ଏମାନଙ୍କ ଏକତାର ଅନ୍ୟଏକ କାରଣ ହେଉଛି ସେଠାକର ସବୁ ଭାଷାର ଅକ୍ଷର ଇଂରାଜୀ ଅକ୍ଷର ଅଟେ । ଗୋଟିଏ ପୋଲିସ ଜିପ ଗାଡିରେ ଲେଖାଥିବାର ଦେଖି ଏ ଶବ୍ଦକୁ ଏପରି ଭୁଲଭାବରେ ଲେଖାଯିବାର କାରଣ ବୁଝି ଜାଣିଲି ଯେ ତାହା ମାଲେସିଆ ଭାଷା ଇଂରାଜୀ ଅକ୍ଷରରେ ଲେଖାଯାଇଛି । ପ୍ରକୃତରେ ସ୍ୱାଧୀନତା ପରେ ଆମ ଦେଶରେ ବି ଯଦି ଭିନ୍ନ ଭିନ୍ନ ଭାଷା ପାଇଁ ଭିନ୍ନ ଭିନ୍ନ ଅକ୍ଷର ନ ରଖି କେବଳ ଦେବନାଗରୀ ଅକ୍ଷର ରଖାଯାଇଥାଆନ୍ତା ତେବେ ତାହା ଜାତୀୟ ସଂହତିର ଏକ ମହାନ ଉପାଦାନ ହୋଇପାରିଥାଆନ୍ତା । ଭାରତୀୟ ସମସ୍ତ ଭାଷାର ଜନ୍ମ ସଂସ୍କୃତରୁ । ତେଣୁ ପ୍ରତ୍ୟେକ ଭାଷାରେ ସଂସ୍କୃତ ଶବ୍ଦ ଥିବାର ଜଣାଯାଏ । ସବୁ ଭାଷା ଗୁଡିକର ଅକ୍ଷର ଗୋଟିଏ ପ୍ରକାରର ହୋଇଥିଲେ ଭିନ୍ନ ଭିନ୍ନ ଭାଷାର ଅର୍ଥ ସଂପୂର୍ଣ୍ଣ ରୂପେ ବୁଝି ନ ପାରୁଥିଲେ ହେଁ ସମସ୍ତେ ସବୁଭାଷା ପଢିବାର ସୁବିଧା ପାଇ ପାରିଥାଆନ୍ତେ ।

ସିଙ୍ଗାପୁର ପ୍ରଥମେ ମାଲେସିଆ ସହିତ ଥିଲା ପରେ ଅଲଗା ହୋଇ ଏକ କ୍ଷୁଦ୍ର ନଗର ରାଜ୍ୟରେ ପରିଣତ ହୋଇଛି । ମାଲେସିଆ ସହିତ ଆମର ବାଣିଜ୍ୟ ସଂପର୍କ ବହୁଦିନରୁ ରହିଆସିଛି । ଐତିହାସିକ ଯୁଗର ଉତ୍କଳୀୟ ବଣିକମାନନେ ଜାଭା, ସୁମାତ୍ରା ଓ ବର୍ଣ୍ଣିଓ ପ୍ରଭୃତି ଦ୍ୱୀପ ମାନଙ୍କରେ ନୌଯାତ୍ରା କରି ବ୍ୟବସାୟ ବାଣିଜ୍ୟ କରିବା ଦିନଠାରୁ ସେମାନଙ୍କ ସହ ଆମର ସଂପର୍କ ଲାଗି ରହିଛି । ଏବେ ଆମର ଖାଇବା ତେଲର ଅଭାବ ପୂରଣ ପାଇଁ ଆମେ ଏ ଦେଶର ପାମୋଲିନ ତେଲ ଆମଦାନୀ କରୁଛୁ । ସେଠାରେ ଏ ତେଲ ବହୁଳ ଭାବେ ଉତ୍ପାଦିତ ହେଉଛି । ଏହା ବ୍ୟତୀତ ମୋଟା ଓ ଲମ୍ବା କାଠମାନ ଏ ଦେଶର ଜଳପଥରେ ଆମ ଦେଶକୁ ଆସୁଛି । ଆମ ଓଡିଶା ଓ ପଶ୍ଚିମବଙ୍ଗରେ ଏହି କାଠ ଅଧିକ ପରିମାଣରେ ବିକ୍ରି ହେଉଛି । ଅତି ପରିତାପର ବିଷୟ ଯେ ଓଡିଶାର ସମସ୍ତ ଭୂଭାଗର ଶତକଡା ୪୦ଭାଗ ଅଂଶ ଜଙ୍ଗଲ ପାହାଡ ଓ ପର୍ବତ ଦ୍ୱାରା ଆଚ୍ଛାଦିତ ହୋଇଥିଲେ ହେଁ ଏଠାରେ ଆମପାଇଁ କାଠନାହିଁ । ଆମ ଠାରୁ ଆୟତନରେ ଅତି ଛୋଟ ଦେଶ ମାଲେସିଆ ଆମକୁ କାଠ ଯୋଗାଉଛି ଓ ତାହା ମଧ ଏଠାକାର କାଠଠାରୁ ଆମକୁ ଶସ୍ତାରେ ମିଳୁଛି । ମାଲେସିଆ ଟିଣ ଓ ପେଟ୍ରୋଲ ପ୍ରଭୃତି ବାଣିଜ୍ୟ ଦ୍ରବ୍ୟ ଉତ୍ପାଦନକାରୀ ଦେଶମଧ । ପାରସ୍ୟ ଉପସାଗରୀୟ ଦେଶ କୁଏତ୍ ଓ ଇରାକ ଘଟଣା ଯୋଗୁଁ ଏବେ ଭାରତ ସରକାର ମାଲେସିଆର କିଛି ତେଲ ଆମଦାନୀ କରିବାର ସ୍ଥିର କରିଛନ୍ତି । ମାଲେସିଆର

ରାଜଧାନୀ କ୍ୱାଲାଲୁମପୁର ବଡ ସହର ଓ ଆନ୍ତର୍ଜାତିକ ବିମାନ ବନ୍ଦର । ସୁମାତ୍ରାର କିଛି ଅଂଶ ମାଲେସିଆର ଅନ୍ତର୍ଗତ । ଜଳପଥରେ ମଧ୍ୟ ପୋତାଶ୍ରୟମାନ ଏ ଦେଶରେ ରହିଛି । କ୍ୱାଲାଲୁମପୁର ଏକ ସୁନ୍ଦର ଓ ଜନବହୁଳ ସହର । ଏହାର ଲୋକସଂଖ୍ୟା ୨୫।୩୦ଲକ୍ଷରୁ କମ ନୁହେଁ । ସହରର ରାସ୍ତାମାନ ବିସ୍ତୃତ ସୁନ୍ଦର ଓ ପରିଷ୍କାର ପରିଚ୍ଛନ୍ନ ସଡକ ବଡ ମାନଙ୍କରେ ତଥା ଛକସ୍ଥାନ ଗୁଡିକରେ ବିଭିନ୍ନ ପ୍ରକାରର ଫୁଲଗଛମାନ ଥିବାରୁ ଏଠାକାର ପରିବେଶ ଅତି ମନୋରମ । ଲୋକଙ୍କର ଚାଲିଚଳନ ଅତିଭଦ୍ର । ଚୀନା ଓ ମୁସଲମାନଙ୍କ ମଧ୍ୟରେ ଚେହେରାର କୌଣସି ପାର୍ଥକ୍ୟ ନାହିଁ ସମସ୍ତେ ପାଶ୍ଚାତ୍ୟ ସଭ୍ୟତାର ପ୍ରଭାବିତ ।

## ଶିଙ୍ଗାପୁର

ଆଜି ମାଲେସିଆରୁ ଯେ ଯାହା ବାଟଦେଇ ନିଜ ନିଜ ଦେଶକୁ ଫେରିବା କଥା । ତେଣୁ ସକାଳେ ପ୍ରସ୍ତୁତ ହୋଇ ଯେ ଯାହାର ଉଡ଼ାଜାହାଜ ସମୟ ଅନୁସାରେ ମାଲେସିଆର ଆନ୍ତର୍ଜାତିକ ଉଡାଜାହାଜ ଷ୍ଟେସନକୁ ବାହାରିଲୁ । ଆମ ଭାରତୀୟ ପ୍ରତିନିଧିମାନଙ୍କର ଫେରନ୍ତା ଯାତ୍ରା ସମାନ ନ ଥିଲା । ଆମ ଦୁଇଜଣଙ୍କ ସହ ଆଉ କେତେ ଜଣଙ୍କର ମଧ୍ୟ ଶିଙ୍ଗାପୁର ଆସିବାର କାର୍ଯ୍ୟକ୍ରମ ଥିଲା । ଆମେ ବିମାନ ଘାଟିରେ ଆସି ପହୁଞ୍ଚିଲା ପରେ ଭାରତର ହାଇକମିସନର ମଧ୍ୟ ଆମକୁ ବିଦାୟ ଦେବା ପାଇଁ ସେଠାରେ ଆସି ପହୁଞ୍ଚିଲେ । ମୁଁ ଏଥି ପୂର୍ବରୁ ଯେତେଥର ବିଦେଶ ଯାତ୍ରା କରିଛି ସବୁଠାରେ ଦୂତାବାସର କେହି ଜଣେ କର୍ମଚାରୀ ଆମର ସୁବିଧା ଅସୁବିଧା ବୁଝି ଆମକୁ ବିଦାୟ ଦେବାକୁ ଆସିଥାନ୍ତି ଏହା ମଧ୍ୟ ଆମ ସରକାରଙ୍କର ନିର୍ଦ୍ଦେଶ ଥାଏ । ଆମ ଦେଶରୁ ଯେ କେହି ସରକାରୀ ବା ବେସରକାରୀ ଗ୍ରସ୍ତରେ ଗଲେ ସେ ଦେଶରେ ଥିବା ଆମର ଦୂତାବାସ ନିୟମ ଅନୁଯାୟୀ ସେଠାରେ ସାହାଯ୍ୟ କରିଥାଆନ୍ତି । ନିଜେ ହାଇକମିସନର ତାଙ୍କ କର୍ମଚାରୀଙ୍କ ସହ ବିମାନଘାଟିକୁ ଆସିବାର କେଉଁଠି ହେଲେ ଦେଖି ନ ଥିଲି । ଏଥର କିନ୍ତୁ ଏଠାକାର ହାଇକମିସନର ଆମ ସହିତ ବସି ବିଭିନ୍ନ ବିଷୟରେ ଆମେ ବିମାନ ଘାଟିକୁ ଆସିବା ପର୍ଯ୍ୟନ୍ତ ଆଲୋଚନା ରତ ଥିଲେ । ସେଦିନ ଭାରତୀୟ ମାଲେସିଆନ ମନ୍ତ୍ରୀଙ୍କ ଘର ଭୋଜୀରେ ସେ (କମିସନର) କଟକ ରେଭେନ୍ସା କଲେଜର ଛାତ୍ର ବୋଲି ପରିଚୟ ଦେଇଥିଲେ । ଆଜିପୁଣି ବିଦାୟ ଦେବାବେଳେ ସେ କଥା ସେ ଦୋହରାଇଲେ । ତାଙ୍କର ଅନ୍ୟ ରାଜଦୂତମାନଙ୍କ ପରି ଅହମିକା ନ ଥିବାର ଦେଖି ସମସ୍ତେ ତାଙ୍କର ଉଚ୍ଚ ପ୍ରଶଂସା କଲେ । ଆମେ ବିମାନକୁ ବାହାରିଲା ବେଳେ ଶ୍ରୀଯୁକ୍ତ ଏ.ପି. ଜୈନ ଯେ ଆଗରୁ କେନ୍ଦ୍ର ମନ୍ତ୍ରୀ ତଥା ରାଜ୍ୟପାଳ ଥିଲେ ଏବେ ସେ ଲୋକସଭା ସଭ୍ୟଭାବରେ ଆମ ସହିତ ପ୍ରତିନିଧି ହୋଇ ଆସିଥିଲେ । ଏବେ ସେ ଶିଙ୍ଗାପୁର ପାଇଁ ବିମାନକୁ ବାହାରିଲାବେଳେ ତାଙ୍କରଗୋଟିଏ ବେଗ ହାଇକମିଶନର ନିଜେ ଧରି ତାଙ୍କୁ ପାଛୋଟି ଦେବାର ଦେଖି ଆମେ ଆଶ୍ଚର୍ଯ୍ୟ ହୋଇଗଲୁ । ଆମେ ବିଦାୟ ନେଇ ବିମାନ ଆରୋହଣ କରି ପ୍ରାୟ ଦୁଇଗଣ୍ଟା ଆକାଶ ମାର୍ଗରେ ଯାତ୍ରା କଲାପରେ ଶିଙ୍ଗାପୁର ବିମାନ ବନ୍ଦରରେ ପହୁଞ୍ଚିଲୁ ।

ଶିଙ୍ଗାପୁର ଟବିଦର୍ଶନ ମୋ ପକ୍ଷରେ ଏହା ୨ୟବାର । ୧୯୮୫ରେ କାନଡାରେ ଅନୁଷ୍ଠିତ ସି.ପି.ଏ ସମ୍ମିଳନୀରୁ ଫେରିବା ସମୟରେ ମୁଁ ଓ ମୋ ସହିତ ସେତେବେଳର ବିଧାନ ସଭା ସେକ୍ରେଟେରୀ ଶ୍ରୀଯୁକ୍ତ ପୁରୋହିତ ଥିଲେ । ସେତେବେଳେ ଆମେ ଏଠାରେ ଦୁଇଦିନ ରହି ଏଠାକାର କେତେକ ଦର୍ଶନୀୟ ସ୍ଥାନ ପରିଦର୍ଶନ କରିଥିଲୁ । ଏଠାରେ ଆମର ସରକାରୀ ଗସ୍ତ ଥିଲା ତେଣୁ ଆମେ ବିମାନରୁ ଅବତରଣ କଲାମାତ୍ରେ ଦୂତାବାସର ଜଣେ କର୍ମଚାରୀ ଆମକୁ ପାଛୋଟି ନେଇ ଏକ ପଞ୍ଚତାରକା ହୋଟେଲରେ ରହିବାର ବ୍ୟବସ୍ଥା କରିଦେଲେ । ଅନ୍ୟ କେତେକ ଭାରତୀୟ ପ୍ରତିନିଧିଙ୍କର ସରକାରୀ ଗସ୍ତ ନ ଥିବାରୁ ସେମାନେ ଅନ୍ୟ ସାଧାରଣ ହୋଟେଲରେ ରହିଲେ । ଅବଶ୍ୟ ଦୂତାବାସ ତାଙ୍କ ପାଇଁ ସ୍ଥାନ ସଂରକ୍ଷଣର ବ୍ୟବସ୍ଥା କରିଦେଲେ । ଆମେ ରହୁଥିବା ହୋଟେଲଟି ପଞ୍ଚତାରକା ହୋଇଥିବାରୁ ଏଠାରେ

ଖାଇବା ଖର୍ଚ୍ଚ ଅତ୍ୟଧିକ ତେଣୁ ଆମେ ଦୁହେଁ ମଧ୍ୟାହ୍ନ ଭୋଜନ ପାଇଁ ବାହାରକୁ ଚାଲି ଚାଲି ଗଲୁଁ । ମାତ୍ର ନିକଟରେ କୌଣସି ଭାରତୀୟ ରେଷ୍ଟୋରାଂ ବା ହୋଟେଲ ନ ପାଇ ଫେରିବା ରାସ୍ତାରେ ବଳଭଦ୍ର ଗୋଟିଏ ଛୋଟ ରେଷ୍ଟୋରାଂରୁ କେବଳ ଭାତ ଓ କୁକୁଡା ମାଂସ ଦୁଇଡଲାର ବ ଭାରତୀୟ ମୁଦ୍ରାରେ ୧୨ଟଙ୍କା ଦେଇ ନିଜ ପାଇଁ କିଣି ଆଣିଲେ । ନିରାମିଷ ତରକାରୀ ନ ଥିବାରୁ ମୋ ପାଇଁ ଆଣି ପାରିଲୁ ନାହିଁ । ସିଙ୍ଗାପୁରର ଏକ ଡ଼ଲାର ଏବେ ଭାରତୀୟ ମୁଦ୍ରାରେ ଟ୬.୦୦ ହେଲାଣି, ଦୁଇବର୍ଷ ପୂର୍ବେ ଡଲାରର ମୂଲ୍ୟ ଆମ ମୁଦ୍ରାରେ ୪ଟଙ୍କା ଥିଲା । ମୁଦ୍ରାର ମୂଲ୍ୟ ହ୍ରାସ ଘଟୁଥିବାରୁ ଚାରିଟଙ୍କା ପରିବର୍ତ୍ତେ ଟ୬.୦୦ ହେଲାଣି ଯାହାହେଉ ହୋଟେଲକୁ ଫେରିଲା ପରେ ସେଠାରେ ଏକ ଭାରତୀୟ ଭୋଜନାଳୟ ଥିବାର ଜାଣିଲୁଁ । ଖୋଜି ଖୋଜି ଯାଇ ଉକ୍ତ ସ୍ଥାନରୁ ମୋ ପାଇଁ ଓ ଦୁଇତିନି ପ୍ରକାରର ନିରାମିଷ ତରକାରୀ ମଗାଇ ଖାଇଲି । ସେତେବେଳକୁ ଖାଇବା ସମୟ ଅତିବାହିତ ହୋଇଗଲାଣି । ବହୁତଭୋକ ବି ହେଲାଣି । ତେଣୁ ଖାଦ୍ୟ ପଦାର୍ଥର ଦର ନ ବୁଝି ଆଣି ଖାଇଲୁଁ । ଖାଇବା ପରେ ମୋର ବିଲ ଟ୧୮୭.୦୦ ହେଲା । ପଞ୍ଚତାରକା ହୋଟେଲ ମାନଙ୍କରେ ଯେଉଁ ସବୁ ଆଡମ୍ବର ଓ ସାଜସଜ୍ଜା ରଖାଯାଇଥାଏ ସେ ସବୁ ବାବଦରେ ଖର୍ଚ୍ଚ ମଧ ଖାଇବା ଓ ରହିବାରେ ମିଶାଯାଉଥିବାରୁ ଏପରି ହୋଟେଲରେ ସବୁ ପଦାର୍ଥର ମୂଲ୍ୟ ଅଧିକ ହୋଇଥାଏ । ତେଣୁ ଧନୀଲୋକ ଓ ଯେଉଁମାନଙ୍କର କଳାଧନ ଥାଏ ସେମାନେ ହିଁ କେବଳ ଏସବୁ ହୋଟେଲରେ ରହିବାକୁ ସମର୍ଥ ହୁଅନ୍ତି । ଏତଦ୍ ବ୍ୟତୀତ ସରକାରୀ କର୍ମଚାରୀମାନେ ସରକାରୀ ଖର୍ଚ୍ଚରେ ରହନ୍ତି ।

ସିଙ୍ଗାପୁର ଗୋଟିଏ ନଗର ରାଜ୍ୟ । କେବଳ ସେହି ସହର ଓ ତାର ସନ୍ନିକଟ କେତୋଟି ଛୋଟ ଦ୍ୱୀପ ଏହାର ଅନ୍ତର୍ଭୁକ୍ତ । କଳକାରଖାନା ନ ଥିଲେ ମଧ ବ୍ୟବସାୟ ବାଣିଜ୍ୟ ଏଠା ଲୋକଙ୍କର ମୁଖ୍ୟ ସମ୍ବଳ । ସିଙ୍ଗାପୁର ଯେପରି ଏକ ବିଖ୍ୟାତ ଆନ୍ତର୍ଜାତିକ ବିମାନବନ୍ଦର ଜଳପଥରେ ମଧ ଏଠାରେ ପୃଥିବୀ ପ୍ରସିଦ୍ଧ ବନ୍ଦର ଉଡ଼ାଜାହାଜ ଓ ଜଳପଥରେ ଯାଉଥିବା ଜାହାଜ ଗୁଡିକୁ ଏଠାରେ ଅଟକିବାକୁ ପଡେ । ତେଣୁ ଏଠାକାର ସରକାରଙ୍କ ତଥା ବ୍ୟବସାୟ କ୍ଷେତ୍ରରେ ସର୍ବସାଧାରଣଙ୍କର ମଧ ଯଥେଷ୍ଟ ଆୟ ହୁଏ । ଏଠାରେ ହଂକଂ ଭଳି ବାହାରୁ ଆସୁଥିବା ସବୁ ପ୍ରକାର ଶିଳ୍ପଜାତ ଦ୍ରବ୍ୟ ଉପରେ କୌଣସି ପ୍ରକାର ଶୁଳ୍କ ଲାଗୁ ନ ଥିବାରୁ ପ୍ରାୟ ସବୁ ଦେଶରୁ ଶିଳ୍ପଜାତ ପଦାର୍ଥ ବେଶ ଶସ୍ତାରେ ମିଳେ । ଏପରିକି ଜାପାନର ଜିନିଷ ମଧ ତାଙ୍କ ଦେଶଠାରୁ ଏଠାରେ ଶସ୍ତାରେ ମିଳେ । ବିଭିନ୍ନ ଦେଶର ମୁଦ୍ରା ବିନିମୟ ପାଇଁ କେନ୍ଦ୍ରମାନ ଏଣେତେଣେ ବିକ୍ଷିପ୍ତ ଭାବରେ ରହିଛି । ତେଣୁ ମାତ୍ର ୩୦।୪୦ ଲକ୍ଷ ଲୋକ ସଂଖ୍ୟା ବିଶିଷ୍ଟ ଏହା ଏକ୍ କ୍ଷୁଦ୍ର ନଗର ରାଜ୍ୟ ହେଲେ ମଧ ସାଧାରଣ ଭାବରେ ଆମର ଦେଶର ଲୋକଙ୍କ ଅପେକ୍ଷା ଏମାନଙ୍କ ଅବସ୍ଥା ବେଶ ସ୍ୱଚ୍ଛଳ । ପରିଭ୍ରମଣକାରୀମାନେ ବିଭିନ୍ନ ଦେଶ ବୁଲି ସ୍ୱଦେଶକୁ ପ୍ରତ୍ୟାବର୍ତ୍ତନ କଲାବେଳେ ଶିଙ୍ଗାପୁର ଦେଇ କେବଳ ଶସ୍ତାରେ କିଛି ଇଲେକ୍ଟ୍ରନିକ୍ସ ଜିନିଷ କିଣିବା ଉଦ୍ଦେଶ୍ୟରେ ଆସନ୍ତି । ସଂଧ୍ୟାରେ କିଛି ଜିନିଷ କିଣିବା ଉଦ୍ଦେଶ୍ୟ ନେଇ ସେଠାକାର ବ୍ୟବସାୟ କେନ୍ଦ୍ରର ଏକ ବଡ ଦୋକାନକୁ ଗଲୁ । ଆମ ଭାରତୀୟ ପ୍ରତିନିଧିମାନେ ମଧ ସେହି ଦୋକାନକୁ କିଛି କିଣିବା ଉଦ୍ଦେଶ୍ୟରେ ଯାଇଥିଲେ । ସଂଧ୍ୟାବେଳକୁ କିଛି ଜିନିଷକିଣି ଗୋଟିଏ ଛୋଟ ରେଷ୍ଟୋରାଁରୁ ରୋଟି ଓ ତରକାରୀ ମାତ୍ର ଟ୨୪.୦୦ରେ କିଣି ହୋଟେଲକୁ ଫେରିଲୁଁ ।

ତହିଁ ପରଦିନ ତା ୬।୯।୮୭ରିଖ ସକାଳେ ଆମେ ଗୋଟିଏ କାରଭଡା କରି ସହର ବୁଲି ଦେଖିବାକୁ ବାହାରିଲୁଁ । ଶିଙ୍ଗାପୁର ନିକଟରେ ଏକ ଛୋଟ ଦୀପଟିଏ ଅଛି । ଯେଉଁମାନେ ଶିଙ୍ଗାପୁର ଯାଆନ୍ତି ସେମାନେ ସମସ୍ତେ ପ୍ରାୟ ଏହି ଦ୍ୱୀପକୁ ଯାଆନ୍ତି । ସେଠାକୁ ଯିବାପାଇଁ ସମୁଦ୍ରର ଉପରିଭାଗରେ ଆକାଶମାର୍ଗରେ ବିଦ୍ୟୁତଚାଳିତ ଏକ ରଜ୍ଜୁପଥ ରହିଛି । ଏ ଦୀପରେ ସେପରି ଦର୍ଶନୀୟ କିଛି ନାହିଁ କେବଳ ଗୋଟିଏ କାଠ ବାକ୍ସରେ ବସି ଆକାଶ ପଥରେ ଝୁଲି ଝୁଲି ଯିବାର ଆନନ୍ଦ ମାତ୍ର । ସେଠାରୁ ଫେରି ପୂର୍ବଦିନ ପରି ବାହାରୁ ଖାଦ୍ୟ କିଣିଆଣି ଖାଇଲୁଁ । ସଂଧ୍ୟା ବେଳକୁ ପୁଣି ସେହି

ଦୋକାନକୁ କିଛି କିଣିବା ଉଦ୍ଦେଶ୍ୟ ନେଇଗଲୁଁ । ମୁଁ ଏଠାରେ ଗୋଟିଏ ହାତବନ୍ଧା ସିକୋ ଘଡି କିଣିଲି ଆମ ଭାରତୀୟ ମୁଦ୍ରାରେ ଏହାର ଦାମ ଟ୪୨୦.୦୦ ପଡିଲା । ଅବଶ୍ୟ ହଂକଂରେ ମୁଁ ଏହି ଘଡି ଟ୩୪୦.୦୦ରେ କିଣିଲି । ଦୁଇଟି ଘଡି ସେଠାରୁ କାହିଁକି ନ କିଣିଲି ବୋଲି ମନସ୍ତାପ କରିବାକୁ ପଡିଲା । ଆମ ସେକ୍ରେଟେରୀ ବଳଭଦ୍ରଙ୍କର ସେଠାରୁ ଗୋଟିଏ ଭି.ସି.ଆର କିଣିବାର ଇଚ୍ଛା ଥିଲା । ସେଠାରେ ଆମ ମୁଦ୍ରାରେ ତାର ମୂଲ ମାତ୍ର ଚାରିହଜାର ଟଙ୍କା । ଭାରତକୁ ଆଣିଲେ ଏଠା ବିମାନବନ୍ଦରରେ ଆଉ ଆଠ ହଜାର ଟଙ୍କା ନେବାକୁ ପଡ଼ିବ । ଏହିପରି ଭାବରେ ତାର ମୂଲ୍ୟ ବାରହଜାର ଟଙ୍କା ହେବ । ମାତ୍ର ସେହି ଭି.ସି.ଆର ସେଠାରୁ ଚୋରାରେ ଆସି ଆମଦେଶରେ ୧୫ରୁ ୧୬ହଜାର ଟଙ୍କାରେ ବିକ୍ରି ହେଉଅଛି । ଏତେଟଙ୍କା ବିମାନବନ୍ଦରରେ ଦେବା ବ୍ୟବସ୍ଥା ଆଗରୁ କରି ନ ଥିବାରୁ କିଣିବାର ଆଶା ତ୍ୟାଗ କରିବାକୁ ପଡିଲା । ଅନ୍ୟାନ୍ୟ ଅଳ୍ପ ମୂଲ୍ୟର କେତେକ ଛୋଟ ଛୋଟ ପଦାର୍ଥ କିଣିଲୁ । ସେହି ରାତିଟି ମାତ୍ର ସେଠାରେ କଟାଇଲାପରେ ତହିଁ ପରଦିନ ସକାଳେ ପ୍ରାୟ ୮ଟାବେଳେ ବିମାନବନ୍ଦରରୁ କଲିକତା ଅଭିମୁଖେ ଯାତ୍ରା କଲୁଁ ଓ ଦିନ ୧୧ଟାବେଳେ କଲିକତା ବିମାନବନ୍ଦରରେ ଅବତରଣ କଲୁଁ । କଲିକତାର ଉତ୍କଳ ଭବନରୁ ଶ୍ରୀଶତପଥି ଓ ମୋର ପ୍ରାଇଭେଟ ସେକ୍ରେଟେରୀ ଆସିଥିଲେ ଭୁବନେଶ୍ୱର ଯିବା ବିମାନ ବିଳମ୍ବ ଥିଲାରୁ ଆମେ ଭି.ଆଇ.ପି.ପ୍ରତୀକ୍ଷାଳୟରେ ଅପେକ୍ଷା କଲୁଁ ପ୍ରାୟ ଦିନ ୨ଟା ପର୍ଯ୍ୟନ୍ତ ।

ଉଡ଼ାଜାହାଜରୁ ଅବତରଣ କଲାପରେ ଜିନିଷପତ୍ର ନେଇ ବାହାରକୁ ଯିବା ପାଇଁ ଦୁଇଟି ରାସ୍ତା ଥାଏ । ଗୋଟିଏ ସବୁଜ ଓ ଅନ୍ୟଟି ନାଲି, ନାଲି ଲେଖାଥିବା ବାଟରେ ସାଧାରଣ ଲୋକେ ଯାଆନ୍ତି । ସେମାନଙ୍କର ସମସ୍ତ ଜିନିଷପତ୍ର କଷ୍ଟମବାଲା ଯାଞ୍ଚ କରନ୍ତି ଓ ଟେକ୍ସ ପଡିବା ଭଳି କିଛି ଜିନିଷ ଥିଲେ ତାଙ୍କଠାରୁ ଉଚିତ ଶୁଳ୍କ ଆଦାୟ କରନ୍ତି । ଯେଉଁମାନେ ସବୁଜ ବାଟ ଦେଇ ଯାଆନ୍ତି ସେମାନଙ୍କ ଜିନିଷ ପତ୍ର ସାଧାରଣତଃ ଯାଞ୍ଚକରାଯାଏ ନାହିଁ । ସେ ବାଟରେ ଯିବାର ଅର୍ଥ ଟେକ୍ସ ପଡିଲାଭଳି କୌଣସି ଜିନିଷ ତାଙ୍କଠାରେ ନାହିଁ । ଯଦି କେହି ଫାଙ୍କି ଦେବା ଉଦ୍ଦେଶ୍ୟରେ ସେ ବାଟଦେଇ ଯିବାର କାଷ୍ଟମ ବାଲା ସନ୍ଦେହ କରନ୍ତି ତେବେ ତାଙ୍କର ଜିନିଷ ପତ୍ର ଯାଞ୍ଚ କରାଯାଏ ଓ୍ କର ଦେବା ଭଳି କିଛି ଜିନିଷ ବାହାରିଲେ ତାଙ୍କଠାରୁ ଦେୟ କରଠାରୁ ଦୁଇଗୁଣ କର ଆଦାୟ କରିବାର ବ୍ୟବସ୍ଥା ରହିଛି । ରାଜନୈତିକ ଲୋକ ବୋଲି ଆମକୁ ହଇରାଣ କରିପାରନ୍ତି ଏହି ଆଶଂକାରେ ଉତ୍କଳ ଭବନରୁ ଶ୍ରୀଯୁକ୍ତ ଶତପଥି ଆମ ସଂପର୍କରେ ଶୁଳ୍କ ବାଲାଙ୍କ ସହିତ କଥାବାର୍ତ୍ତା କରିଥାଆନ୍ତି । ତେଣୁ ଆମେ ଅକ୍ଳେଶରେ ଆନ୍ତର୍ଜାତିକ ବିମାନବନ୍ଦରର ସୀମା ଅତିକ୍ରମ କରି ଡୋମେଷ୍ଟିକ ବିମାନବନ୍ଦରରେ ପହୁଞ୍ଚିଲୁ । ସେଠାରେ ବିଳମ୍ବ ହେଲାରୁ ଭାରତୀୟ ଉଡ଼ାଜାହାଜ କଂପାନୀ ତରଫରୁ ଆମକୁ ମଧ୍ୟାହ୍ନ ଭୋଜନ ଦିଆଯାଇ ଦିନ ୨ଟାବେଳେ ମୁଁ ଓ ମୋ ପ୍ରାଇଭେଟ ସେକ୍ରେଟେରୀ ଭୁବନେଶ୍ୱର ଯାତ୍ରା କଲୁ । ଆମ ବିଧାନସଭା ସେକ୍ରେଟେରୀ ଶ୍ରୀବଳଭଦ୍ର ପାତ୍ର କଲିକତାରେ ତାଙ୍କ ଜ୍ୱାଇଁଙ୍କ ଘରେ ରହିଲେ । ଭୁବନେଶ୍ୱର ଉଡ଼ାଜାହାଜ କେନ୍ଦ୍ରରେ ଓହ୍ଲାଇଲା ବେଳକୁ ବିଧାନସଭାର କର୍ମଚାରୀଗଣ ସେଠାକୁ ଆସିଥିଲେ । ସମସ୍ତଙ୍କ ଗହଣରେ ନିଜ କ୍ୱାଟରକୁ ଫେରିଲି । ଦୀର୍ଘ ୨୨ଦିନ ବିଦେଶ ଭ୍ରମଣ ଶେଷ କରି ଭଲରେ ଫେରିଥିବାରୁ ଭଗବାନଙ୍କୁ ପ୍ରାର୍ଥନା କଲି । ସଙ୍ଗେ ସଙ୍ଗେ ବେତନଟୀ ମୋ ସ୍ତ୍ରୀକୁ ମଧ ମୋର ଫେରିବା ବିଷୟ ଫୋନ ଯୋଗେ ଜଣାଇ ଦେଲି । ଏହା ଥିଲା ମୋର ଶେଷ ବିଦେଶଯାତ୍ରା ।

## ''ବାରିପଦା ରଥ ଯାତ୍ରାରେ ମୋ ଜୀବନରେ ଅଭୁଲାସ୍ମୃତି''

୧୯୮୭ମସିହା ଜୁନ ୩୦ ତାରିଖ ବାରିପଦା ରଥଯାତ୍ରାର ଦ୍ୱିତୀୟଦିନ । ପ୍ରଥମଦିନ ବଳରାମଙ୍କ ରଥଟଣାଯାଇ ଗୁଣ୍ଡିଚା (ରାଧାମୋହନ) ମନ୍ଦିରରେ ପହୁଞ୍ଚିବା ପରେ ସେହିଦିନ ସୁଭଦ୍ରାଙ୍କ ରଥ ଟଣା ଯାଇ ବାରିପଦା ଥାନା ନିକଟରେ ରହେ ଓ ତାପରେ ଜଗନ୍ନାଥଙ୍କ ରଥ ଟଣା ଯିବା ପ୍ରଥା ଆବହନ କାଳରୁ ରହି ଆସିଛି । ଏବେ ମଧ ଏହିପ୍ରଥା

ଅପରିବର୍ତ୍ତିତ ରହିଛି । ମୟୂରଭଞ୍ଜ ମିଶ୍ରଣ ପରେ ରଥଟଣା କାର୍ଯ୍ୟ ପୁରୀ ଭଳି ଗୋଟିଏ ଦିନରେ କରିବାକୁ ଜିଲ୍ଲାପାଳଙ୍କ ତରଫରୁ ଥରେ ପ୍ରସ୍ତାବ ଆସିଲା । ମାତ୍ର ଏ ପ୍ରସ୍ତାବ ଉପରେ ସବୁସ୍ତରରୁ ନାନାପ୍ରକାର ଆପତ୍ତି ଉଠିଲା ତେଣୁ ଏଥିରେ କୌଣସି ପରିବର୍ତ୍ତନ ନ କରି ଯଥାପୂର୍ବ ରଖିବାର ଠିକ କରାଗଲା । ପୁରୀରେ ପହଣ୍ଡି ଦିନ ହିଁ ତିନିଠାକୁରଙ୍କର ପହଣ୍ଡି ବିଜେ ପରେ ପରେ ଏକ ସଙ୍ଗରେ ଆଗପଛ ହୋଇ ତିନିଟି ଯାକ ରଥଟଣା ଯାଏ ଓ ସେହିଦିନ ହିଁ ରଥ ଗୁଣ୍ଡିଚା ମନ୍ଦିରରେ ଲାଗିଯାଏ । ଅବଶ୍ୟ ଗତ କେତେବର୍ଷ ହେଲା ବିଶେଷ ଅସୁବିଧା ଉପୁଜିବାରୁ ଏକାଦିନରେ ତିନିଠାକୁରଙ୍କ ରଥ ଗୁଣ୍ଡିଚା ମନ୍ଦିରରେ ପହୁଞ୍ଚି ନ ପାରିବାରୁ ତହିଁ ପରଦିନ ସକାଳେ ରଥଟଣାର ବ୍ୟବସ୍ଥା କରାଯାଇଛି । ପୁରୀଠାରେ ଠାକୁରଙ୍କ ପହଣ୍ଡି ହେବା ଦିନହିଁ ବାରିପଦାରେ ମଧ୍ୟ ଠାକୁରଙ୍କୁ ପହଣ୍ଡିବିଜେ କରାଇ ରଥଉପରକୁ ଅଣାଯାଏ । ମାତ୍ର ସେଦିନ ରଥଟଣା ନ ଯାଇ ତହିଁ ପରଦିନ ଦ୍ୱିପ୍ରହରଠାରୁ ରଥଟଣା ଆରମ୍ଭ ହୁଏ । ଏ ପ୍ରଥା ବହୁଦିନରୁ ରହିଆସିଛି । ଏତଦ୍ ବ୍ୟତୀତ ବିଗତ କେତେବର୍ଷ ହେଲା ଏକ ନୂତନ ବ୍ୟବସ୍ଥା ପ୍ରଚଳିତ ହୋଇଆସୁଛି । ଏହି ନୂତନ ବ୍ୟବସ୍ଥାଟି ହେଲା ଦେବୀ ସୁଭଦ୍ରାଙ୍କ ରଥ କେବଳ ସ୍ତ୍ରୀ ଲୋକମାନେ ହିଁ ଟାଣନ୍ତି । ଏହା ସ୍ତ୍ରୀ ଲୋକମାନଙ୍କ ମଧ୍ୟରେ ଅଭୂତ ପୂର୍ବ ପ୍ରେରଣା ଉତ୍ସାହ ଓ ଧର୍ମଭାବ ସୃଷ୍ଟି କରି ପାରିଛି । ଦେବୀ ସୁଭଦ୍ରାଙ୍କ ରଥ ଏଠାରେ ଦୁଇଦିନ ଟଣାଯାଏ, ପ୍ରଥମଦିନ ମନ୍ଦିରରୁ ଥାନା ପର୍ଯ୍ୟନ୍ତ ଓ ତହିଁ ପରଦିନ ସେଠାରୁ ଗୁଣ୍ଡିଚାମନ୍ଦିର ପର୍ଯ୍ୟନ୍ତ । ସ୍ତ୍ରୀଲୋକମାନେ କେଉଁଥର ପ୍ରବଳ ଖରାରେ ତ କେଉଁଥର ଭୀଷଣ ବର୍ଷାରେ ବି ଅତ୍ୟନ୍ତ ଉତ୍ସାହର ସହିତ ରଥ ଟାଣିବାକୁ ଆସନ୍ତି । ରଥଟାଣିବା ସେମାନଙ୍କର ଧର୍ମ ବା କର୍ତ୍ତବ୍ୟ ବୋଲି ସେମାନେ ମନେ କରନ୍ତି । ରଥ ଟାଣିବାକୁ ଏତେ ସଂଖ୍ୟାରେ ସ୍ତ୍ରୀର ଲୋକଆସନ୍ତି ଯେ ଦଉଡି ଦରିବାକୁ ତାଙ୍କୁ ସ୍ଥାନ ମିଳେନି, ତେଣୁ ଆଗରୁ ଆସି ଦଉଡି ଧରିବାକୁ ବହୁ ସ୍ତ୍ରୀ ଲୋକ ଅପେକ୍ଷା କରି ରହିଥାଆନ୍ତି ।

## ''ରଥଯାତ୍ରାବେଳେ ପୋଲିସର ଲାଠି ଚାଳନା''

ଶ୍ରୀ ଜଗନ୍ନାଥ ମୋର ଆରାଧ୍ୟ ଦେବତା । ପ୍ରତିଦିନ ପ୍ରଭାତରୁ ଉଠି ଜଗନ୍ନାଥାଷ୍ଟକ ଆବୃତ୍ତି କରେ ଓ ସ୍ନାନପରେ ଜଗନ୍ନାଥଙ୍କ ଫଟୋ ପୂଜା କରି ଜଗନ୍ନାଥ ଜଣାଣ ଆବୃତ୍ତି କରିବା ମୋର ନିତ୍ୟନୈମିତ୍ତିକ କାର୍ଯ୍ୟ । ଗୁଣ୍ଡିଚା ଯାତ୍ରା ବେଳେ ମୁଁ ନିଶ୍ଚିତ ଭାବରେ ରଥଟଣାରେ ଯୋଗ ଦିଏ । ବାରିପଦାରେ ରଥଯାତ୍ରା ପୁରୀ ଗୁଣ୍ଡିଚା ଯାତ୍ରାର ପର ଦୁଇଦିନ ହୁଏ । ତେଣୁ ପୁରୀଠାରେ ଗୁଣ୍ଡିଚା ଯାତ୍ରାରେ ଯୋଗ ଦେଲାପରେ ବାରିପଦା ରଥରେ ଯୋଗଦେବା ମୋ ପକ୍ଷରେ ବିଶେଷ ଅସୁବିଧା ଜନକ ହୁଏ ନାହିଁ । ୧୯୮୭ ମସିହାର ରଥଯାତ୍ରାରେ ପ୍ରଥମେ ପୁରୀଠାରେ ଗୁଣ୍ଡିଚା ଯାତ୍ରାରେ ଯୋଗ ଦେଇସାରିଲାପରେ ତହିଁ ପରଦିନ ତା୩୦।୬।୮୭ରିଖରେ ଆସି ବାରିପଦାଠାରେ ସମସ୍ତଙ୍କ ସହିତ ମିଶି ରଥ ଟାଣିଲି । ଶ୍ରୀ ଜଗନ୍ନାଥଙ୍କ ରଥ ବାରିପଦାରେ ରାଧାମୋହନ ମନ୍ଦିରରେ ପହୁଞ୍ଚିଲାପରେ ରଥଟଣା ଶେଷ ହୁଏ । ରଥଟଣା ସରିଲାପରେ ଜଗନ୍ନାଥଙ୍କ ରଥ ଉପରୁ ମିଠେଇ ଫୋପାଡିବା ବାରିପଦା ରଥର ବିଶେଷତ୍ୱ ଓ ପରଂପରା ତେଣୁ ଏତେବେଳକୁ ଜଗନ୍ନାଥଙ୍କ ରଥ ନିକଟରେ ପ୍ରବଳ ଜନସମାଗମ ହୁଏ । ଲୋକେ ଫିଙ୍ଗା ଯାଉଥିବା ମିଠାଇ ତଳରୁ ମଧ୍ୟ ଉଠାଇ ପ୍ରସାଦ ବୋଲି ଅତି ଆଗ୍ରହରେ ଖାଆନ୍ତି । ମାଟିରୁ ଗୋଟାଇଲାବେଳେ ଦଳାଚକଟା ମଧ୍ୟ ହୋଇଯାଏ । ସେଥିପାଇଁ ବିଗତ କେତେବର୍ଷ ହେଲା ପଲିଥିନ ମୁଣାରେ ଗୋଟିଏ ଲେଖାଏଁ ମିଠାଇ ରଖି ଫୋପାଡ଼ିବାର ବ୍ୟବସ୍ଥା କରାଯାଇଛି । ସାଧାରଣତଃ ଏହି ମିଠାଇ ଫୋପଡା ବେଳର ଭିଡ ହେବା ପୂର୍ବରୁ ମୁଁ ଚାଲିଯାଏ । ସେ ବର୍ଷ ମଧ୍ୟ ରଥଟଣା ସରିଲା ପରେ ମୁଁ ଆସି ବିଶ୍ରାମ ଭବନଠାରେ ଜିଲ୍ଲାପାଳଙ୍କ ସହ କେତେକ ବିଷୟ ଆଲୋଚନା କରିବା ପାଇଁ ଅପେକ୍ଷା କଲି । ବହୁ ସମୟ ଅପେକ୍ଷାକଲାପରେ ମଧ୍ୟ ସେ ନ ଆସିବାରୁ ବାରିପଦାର ଜଣେ ବିଶିଷ୍ଟ ଓକିଲ ଶ୍ରୀଯୁକ୍ତ ହରେକୃଷ୍ଣ ଦାଶଙ୍କ ଘରକୁ ଗଲି । ସେଠାରେ ବସି ତାଙ୍କ ସହିତ କେତେକ ବିଷୟ ଆଲୋଚନା ଅବସରରେ ହଠାତ୍ ଫୋନରେ ଖବର ପାଇଲି ଯେ ମୁଁ ସେ

ସ୍ଥାନ ଛାଡିବାର ଅଳ୍ପ ସମୟ ପରେ ରଥଠାରେ ଗଣ୍ଡଗୋଳ ଘଟି ପୋଲିସର ନିର୍ମମ ଲାଠି ମାଡରେ ବହୁ ନିରୀହ ଲୋକ ଆହତ ହୋଇଛନ୍ତି ଓ କେତେକ ଦୋକାନର ବହୁ ଜିନିଷପତ୍ର ମଧ୍ୟ ନଷ୍ଟ ହୋଇଛି । ଆହତ ମାନଙ୍କୁ ଦାରିପଦା ବଡ ଡାକ୍ତର ଖାନାକୁ ଅଣାଯାଇ ଚିକିତ୍ସାର ବ୍ୟବସ୍ଥା କରାଯାଇଛି । ଖବର ପାଇଲା ମାତ୍ରେ କାଳ ବିଳମ୍ୱ ନ କରି ଡାକ୍ତରଖାନାକୁ ଗଲି । ଦେଖିଲି ସେ ସ୍ଥାନ ପୂରା ଲୋକାରଣ୍ୟ । ଆହତମାନଙ୍କର ଚିକିତ୍ସା ଚାଲିଛି । ସାଧାରଣ ଲୋକେ ଅତ୍ୟନ୍ତ ଉତ୍ୟକ୍ତ ଅବସ୍ଥାରେ ଥିବାର ଦେଖିଲି । ସେଠାରେ ସାଧାରଣ ଆଇନ ଶୃଙ୍ଖଳା ରକ୍ଷା କରିବା ପାଇଁ କାହାରିକୁ ଥିବାର ଦେଖି ପାରିଲି ନାହିଁ ପ୍ରଥମେ ଚିକିତ୍ସିତ ହେଉଥିବା ଆହତମାନଙ୍କ ନିକଟକୁ ଯାଇ ବୁଝିଲି । ମୁଖ୍ୟ ଚିକିତ୍ସକଙ୍କଠାରୁ ଜାଣିଲି ଯେ କେବଳ ଜଣେ ଦୁଇଜଣଙ୍କ ବ୍ୟତୀତ ଅନ୍ୟମାନଙ୍କୁ ପ୍ରାଥମିକ ଚିକିତ୍ସାପରେ ଛାଡିଦିଆଯିବ । କେହି ସେପରି ଗୁରୁତର ଭାବେ ଆହତ ହୋଇନାହାନ୍ତି । ଏହାପରେ ପାଟିତୁଣ୍ଡ କରୁଥିବା ଲୋକଙ୍କ ନିକଟକୁ ଆସି ନିରୀହ ଲୋକଙ୍କ ଉପରେ ଏକା ଯାତ୍ରା ମଧ୍ୟରେ ଅନ୍ୟାୟ ଭାବରେ ପୋଲିସର ଲାଠି ଚାଳନା ହେବାର ଶୁଣିଲି । ଏ ସବୁର କାରଣ ଅନୁସନ୍ଧାନ କରି ଜାଣିଲି ଯେ ମିଠେଇ ପୋପାଡ଼ିବାରୁ ଏ ସବୁ ଗଣ୍ଡଗୋଳ ଆରମ୍ଭ ହୋଇଛି । ପ୍ରତିବର୍ଷ ଏହି କାମ କେତେକ ଦାୟିତ୍ୱପୂର୍ଣ୍ଣ ସରକାରୀ ଓ ବେସରକାରୀ ଲୋକଙ୍କ ଉପରେ ନ୍ୟସ୍ତ କରାଯାଇଥାଏ ଏବର୍ଷ ସେଠାକାର କେତେକ ସ୍ଥାନୀୟ ଯୁବକଙ୍କୁ ଏହି ଦାୟିତ୍ୱ ଦିଆଯାଇଥିଲା । ସେମାନେ କେବଳ ତାଙ୍କ ନିଜ ଲୋକଙ୍କ ଆଡକୁ ମିଠେଇ ପିଙ୍ଗିଲେ ଓ କେହି କେହି ମଧ୍ୟ ନିଜ ପକେଟରେ ମିଠେଇ ନେଇ ପଳାଇ ଯିବା ଯୋଗୁଁ ଏହି ଗଣ୍ଡଗୋଳର ସୂତ୍ରପାତ ହେଲା । ଏହି ସମୟରେ କେତେକ ଅସାମାଜିକ ଯୁବକ ମାଇକ ଯୋଗେ ଅତି କଦର୍ଯ୍ୟ ଭାଷାରେ ଏସ.ପି. ଓ ଜିଲ୍ଲାପାଳଙ୍କୁ ଲକ୍ଷ୍ୟ କରି ଗାଳି ଗୁଲଜ କଲେ । ଏହାପରେ ପୋଲିସ ତରଫରୁ ଲାଠି ମାଡ ଆରମ୍ଭ ହେଲା ।

ଆହୁରି ଜଣାଗଲା ଯେ ଲାଠିମାଡ ଆରମ୍ଭ ହେଲା ବେଳକୁ ନିୟମ ଅନୁଯାରେ ସେ ସ୍ଥାନ ଛାଡି ଚାଲିଯିବା ପାଇଁ ଲୋକଙ୍କୁ ସାବଧାନ କରି ଦେବା ଭଳି କୌଣସି ଘୋଷଣା ମଧ୍ୟ କରାଯାଇ ନାହିଁ । ଏହା ସେମାନଙ୍କ ଠାରୁ ଶୁଣିଲା ପରେ ଏ ସଂପର୍କରେ ସରକାରଙ୍କ ତରଫରୁ ନିଶ୍ଚିତ ଭାବେ ତଦନ୍ତ ହେବାର ପ୍ରତିଶ୍ରୁତି ସେମାନଙ୍କୁ ଦେଲି । ସେତେବେଳକୁ କଂଗ୍ରେସ ବିରୋଧୀ ଗୁଣ୍ଡା ଶ୍ରେଣୀର କିଛି ଯୁବକ ମୋତେ ଘେରି ଛିଡା ହୋଇଥିବାର ଓ ମୋତେ ଅପଦସ୍ତ କରାଯିବାର ଉଦ୍ୟମ ହେଉଛି ବୋଲି ଜାଣିବାକୁ ପାଇଲି । ପରେ ସେଠାରୁ ଯେଉଁ ଦୋକାନଗୁଡିକର ଜିନିଷ ପତ୍ର ସବୁ ଭଙ୍ଗାରୁଜା ହୋଇଛି ସେଗୁଡିକ ଦେଖିବାକୁ ବାହାରିଲି ସେତେବେଳେ ଉକ୍ତ ଯୁବକମାନେ ଗାଡି ଆଗରେ ଛିଡା ହୋଇ ମୋ ଗାଡି ଛାଡିଲେ ନାହିଁ । ସେମାନଙ୍କର ସଙ୍ଗରେ ଯାଇ ସବୁ ଭଙ୍ଗାରୁଜା ଦେଖିବା ଥିଲା ସେମାନଙ୍କ ଦାବୀ । ମୁଁ ସେଥିରେ ରାଜୀ ହେଲି । ପ୍ରାୟ ଦୁଇଶହ ପାଖାପାଖି ଲୋକ ଆଗରେ ଚାଲିଲେ ମୁଁ ସେମାନଙ୍କ ପଛପଟେ ଗାଡିରେ ବସିଗଲି । କିଛିବାଟ ଗାଡିରେ ଗଲାପରେ ଗାଡିରୁ ଓହ୍ଲାଇ ଲୋକଙ୍କ ସହିତ ଚାଲିବାକୁ ଆରମ୍ଭ କଲି । କ୍ରମେ ଲୋକ ସଂଖ୍ୟା ବଢିବଢି ଚାରି ପାଞ୍ଚଶହ ପର୍ଯ୍ୟନ୍ତ ହୋଇଗଲାଣି । ଏ ଜନତାର ଅଗ୍ରଭାଗରେ ଖୁବ ସାହସ ସ ଦମ୍ଭର ସହିତ ମୁଁ ଚାଲିଥାଏ । ରାସ୍ତା ପାଖ ଲୋକେ ଆମକୁ ସବୁ ଅନାଇ ଥାଆନ୍ତି ଓ କିଛି ଅପୀତିକର ଘଟଣାର ମଧ୍ୟ ଆଠକା କରୁଥାନ୍ତି ଯେଉଁ ସବୁ ଦୋକାନର ଜିନିଷ ପତ୍ର ନଷ୍ଟ ହୋଇଥିଲା ସେ ସବୁ ଦୋକନାକୁ ଗଲି । ସେମାନଙ୍କର ନଷ୍ଟ ହୋଇଥିବା ଜିନିଷ ଗୁଡିକ ମଧ୍ୟ ଦେଖିଲି । ସେମାନଙ୍କଠାରୁ ବୁଝି ଜାଣିଲି ଯେ କେତେକ ସ୍ଥାନରେ ପୋଲିସ ଘଉଡାଇଲାବେଳେ ଲୋକେ ଆତ୍ମରକ୍ଷା ପାଇଁ ଭୟରେ କେତେକ ଦୋକନା ଭିତରକୁ ପଶିଗଲାରୁ ପୋଲିସ ମଧ୍ୟ ସେଠାରେ ପଶିଗଲା । ଦଳାଚକଟାରେ ମଧ୍ୟ ବହୁ ଜିନିଷ ନଷ୍ଟ ହୋଇଥିବାର ଦେଖିଲି । ଏପରି ବୁଲୁଥିଲା ବେଳେ କେତେକ ପାଖଲୋକଙ୍କୁ ଏପରିକି କେତେକ ସ୍ତ୍ରୀଲୋକଙ୍କୁ ମଧ୍ୟ ପଚାରି ଘଟଣା ସଂପର୍କରେ ସବୁ କଥା ଜାଣିଲି । ରଥ ଯାତ୍ରାରେ ପ୍ରାୟ ଏକ କିଲୋମିଟର ଲମ୍ୱରେ ଉଭୟ ପଟରେ ଦୋକାନ ଖୋଲାଯାଇ ବିକ୍ରିବଟା ଚାଲିଥିବା ବେଳେ ହଠାତ ସେଠାରେ ଲାଠିମାଡ ହେବାରୁ ଯେଉଁମାନେ ପ୍ରକୃତରେ ଗଣ୍ଡଗୋଳକାରୀ

ସେମାନେ ଖସି ପଳାଇଲେ କିନ୍ତୁ ସାଧାରଣ ନିରୀହ ଲୋକେ ସେଥିରେ ସପୃକ୍ତ ନ ଥାଇ ମଧ ମାଡଖାଇଲେ । ବିଶେଷ କରି ବହୁ ଗରିବ ଲୋକଙ୍କର ଉଠାଦୋକାନ ଗୁଡ଼ିକ ଦଳା ଚକଟାରେ ନଷ୍ଟ ହୋଇଗଲା । ପ୍ରାୟ ଦୀର୍ଘ ଦୁଇଘଣ୍ଟାକାଳ ସମଗ୍ର ସ୍ଥାନ ବୁଲାବୁଲି କରି ଦେଖିଲି । ମଝିରେ ମଝିରେ ଆମ ଗହଣରେ ଥିବା ବିରୋଧିଦଳର କେତେକ ଲୋକ କେତେବେଳେ କିମିତି ମୋ ବିରୁଦ୍ଧରେ କ୍ଷୀଣ ସ୍ୱରରେ ମନ୍ତବ୍ୟ ଦେଉଥିଲେ ହେଁ ମେର ସମାନା କରି ମୋତେ ଅପଦସ୍ତ କରିବାକୁ ସାହସ କରି ପାରୁନଥାଆନ୍ତି । ଅପର ପକ୍ଷରେ ଘଟଣା ଘଟିବାର ଅବ୍ୟବହିତ ପରେ ପରେ ମୁଁ ଯାଇ ଘଟଣା ସ୍ଥଳ ପରିଦର୍ଶନ କରି ଲୋକଙ୍କ ଆପତ୍ତି ଅଭିଯୋଗ ବୁଝିବାରୁ ଲୋକଙ୍କ ମନରେ ଆଶ୍ୱାସନା ଜନ୍ମିବାର ଜଣାଗଲା ଏବଂ ଏହା ମୋ ପକ୍ଷରେ ଏକ ଆଶୀର୍ବାଦ ହେଲା । ବିରୋଧୀ ଲୋକଙ୍କର ଷଡଯନ୍ତ୍ର ପଣ୍ଡ ହୋଇଗଲା ।

ସମସ୍ତ ଘଟଣା ଜାଣି ଓ ସବୁସ୍ଥାନ ପରିଦର୍ଶନ କଲାପରେ ଉପସ୍ଥିତ ଜନତା ଉଦ୍ଦେଶ୍ୟରେ ଏ ଅଯଥା ଓ ଅନ୍ୟାୟ ଲାଠି ଚାଳନାର ତୀବ୍ର ନିନ୍ଦା କରିବା ସଙ୍ଗେ ସଙ୍ଗେ ଉକ୍ତ ଘଟଣାର ଏକ ଉଚ୍ଚସ୍ତରୀୟ ତଦନ୍ତ କରାଇବାରେ ସରକାରଙ୍କୁ ପ୍ରଭାବିତ କରିବାର ଘୋଷଣା କଲି । ପୁଣି ଅତି ଦୃଢ଼ତାର ସହିତ ଲୋକଙ୍କୁ ଜଣାଇ ଦେଲି ଯେ ଏହି ଘଟଣାର ତଦନ୍ତ କରାଇବାରେ ଯଦି ବିଫଳକାମ ହେବି ତେବେ ଏଠା ଲୋକଙ୍କର ପ୍ରତିନିଧି ହୋଇ ରହିବାର ମୋର ନୈତିକ ଅଧିକାର ରହିବ ନାହିଁ । ଏକଥା ଶୁଣିଲାପରେ ଉପସ୍ଥିତ ଜନତା ଜୟଧ୍ୱନି ଦେଲେ । ତାପରେ ବିଶ୍ରାମ ଭବନରେ ପହୁଞ୍ଚି ଦେଖିଲି ଯେ ଜିଲ୍ଲାପାଳ, ଏସ.ପିଙ୍କ ସହ କେତେକ ଉଚ୍ଚପଦସ୍ଥ କର୍ମଚାରୀଙ୍କ ଗହଣରେ କେତେକ ସ୍ଥାନୀୟ ଭଦ୍ରଲୋକ ମଧ ମୋତେ ଅପେକ୍ଷା କରି ବସିଛନ୍ତି । ମୁଁ ସେଠାରେ ପ୍ରବେଶକରି ଜିଲ୍ଲାପାଳ ଓ ଏସ.ପିଙ୍କୁ ଲକ୍ଷ୍ୟ କରି ଅଯଥାରେ ରଥଯାତ୍ରାରେ ଏଭଳି ଏକ ଘଟଣା ଘଟାଇବା ସେମାନଙ୍କର ଷଡଯନ୍ତ୍ର ଥିଲା ବୋଲି ଅତି ଦୃଢ଼ତାର ସହିତ ପ୍ରକାଶ କଲି । ସୁତରାଂ ଏ ଘଟଣାର ନିଶ୍ଚୟ ତଦନ୍ତ ହେବ ଏବଂ ସେଥିରେ ଜିଲ୍ଲାପାଳ ବା ଏସ.ପି ଯେ କେହି ହୁଅନ୍ତୁ ନା କାହିଁକି ଦୋଷୀ ପ୍ରମାଣିତ ହେଲେ ନିଶ୍ଚୟ ଦଣ୍ଡିତ ହେବେ । ଏହା ପ୍ରକାଶ କରି ମୁଁ ଆସିଲା ବେଳକୁ ଜିଲ୍ଲାପାଳ କହିଲେ ''ବାହୁଡା ଯାତ୍ରା କିପରି ହେବ ?'' ଯେଉଁମାନେ ଏପରି ଘଟଣା ଘଟାଇଛନ୍ତି ସେହିମାନେ ହିଁ ତାହା କିପରି ହେବ ବୁଝିବେ । ଏହାକହି ମୁଁ ମୋର ନିଜଘର ବେତନଟୀ ଫେରିଲି । ତହିଁ ପରଦିନ ସକାଳେ ଭୁବନେଶ୍ୱର ଫେରି ମୁଖ୍ୟମନ୍ତ୍ରୀଙ୍କୁ ଭେଟିଲି ଓ ବାରିପଦା ରଥଯାତ୍ରା ଏହି ଦୁର୍ଭାଗ୍ୟପୂର୍ଣ୍ଣ ଘଟଣା ସଂକ୍ରାନ୍ତରେ ଆଲୋଚନା କଲି । ତା ପୂର୍ବରୁ ମଧ ମୁଖ୍ୟମନ୍ତ୍ରୀ ଏ ଘଟଣାର ଖବର ପାଇଥିଲେ । ଆଲୋଚନା ପରେ ମୋର ଅନୁରୋଧ ଅନୁଯାୟୀ ରାଜସ୍ୱ ବିଭାଗ କମିସନରଙ୍କ ଦ୍ୱାରା ଏକ ତଦନ୍ତ କମିସନ ବସାଇବାକୁ ରାଜି ହୋଇ ତହିଁର ବିଜ୍ଞପ୍ତି ପ୍ରକାଶ ପାଇଁ ନିର୍ଦ୍ଦେଶ ଦେଲେ । ପରେ ମୁଁ ନିଜେ ମଧ ରାଜସ୍ୱ କମିସନର ଶ୍ରୀ ଏସ.ଆର, ପାଲଙ୍କ ସହ କଥା ହୋଇ ତୁରନ୍ତ କାର୍ଯ୍ୟାରମ୍ଭ କରିବାକୁ ଅନୁରୋଧ ଜଣାଇଲି । ଶ୍ରୀ ପାଲ ନିଜେ ମୟୂରଭଞ୍ଜର ବାସିନ୍ଦା ହୋଇଥିବାରୁ ଏବଂ ରଥଯାତ୍ରା ମୟୂରଭଞ୍ଜର ଏକ ଗୌରବମୟ ପରଂପରା ହୋଇଥିବାରୁ ସେ ଯଥାଶୀଘ୍ର କାର୍ଯ୍ୟାନୁଷ୍ଠାନ ଆରମ୍ଭ କରିବାର ପ୍ରତିଶ୍ରୁତି ମଧ ଦେଲେ । ସତକୁ ସତ ସରକାରୀ ବିଜ୍ଞପ୍ତି ପ୍ରକାଶ ପାଇବାର ଦୁଇଦିନ ପରେ ସେ ଘଟଣାସ୍ଥଳ ପରିଦର୍ଶନ କରି ଲୋକଙ୍କଠାରୁ ସବୁକଥା ବୁଝିଲେ । ଏ ପର୍ଯ୍ୟନ୍ତ ଓଡିଶାରେ ଯେତେ ତଦନ୍ତ କମିସନ ବସିଛି ଘଟଣାର ଏତେ ଅଳ୍ପ ସମୟ ମଧରେ କେବେହେଲେ ତଦନ୍ତ କାର୍ଯ୍ୟ ଆରମ୍ଭ ହୋଇନଥିଲା ।

ଏହାପରେ ନିୟମ ଅନୁସାରେ ଲୋକଙ୍କ ଅଭିଯୋଗ ଗୁଡ଼ିକର ଏଫିଡେଭିଟ୍ ଶପଥପାଠ କରି ଆହ୍ୱାନ କରାଗଲା । ଲୋକମାନେ ମଧ ଶପଥପାଠ ପୂର୍ବକ ନିଜ ନିଜର ଅଭିଯୋଗ ପତ୍ର ଦାଖଲ କଲାପରେ ଶୁଣାଣୀ ଆରମ୍ଭ ହେଲା । ତଦନ୍ତରୁ ସମସ୍ତେ ଭଲ ଫଳ ଆଶା କରୁଥିଲେ ହେଁ ଠିକ ତାର ବିପରୀତ ଫଳ ମିଳିଲା । କିଛିଦିନ ମଧରେ ଏସ.ପିଙ୍କର ବଦଳୀ ହୋଇଗଲା ତଦନ୍ତରୁ ଜଣାଗଲା ଯେ ଜିଲ୍ଲାପାଳ ଓ ଏସ.ପି ଉଭୟେ ଲାଠି ଚାଳନା ସମୟରେ ଉପସ୍ଥିତ ଥିବାରୁ ଅନ୍ୟ କେହି ମାଜିଷ୍ଟ୍ରେଟ ଆଦେଶ ଦେଲେ ହେ ଏମାନେ ଘଟଣା ପାଇଁ ଦାୟୀ ରହିବେ । ଯାତ୍ରା ଭଳି ବହୁଲୋକ

ସମାଗମ ସ୍ଥାନରେ ଲାଠି ଚାଳନା କେବେହେଲେ ସ୍ପୃହଣୀୟ ନୁହେଁ । ପୁଣି ଲାଠିଚାଳନା ପୂର୍ବରୁ ଲୋକଙ୍କୁ ସେ ସ୍ଥାନ ଛାଡି ଚାଲିଯିବା ପାଇଁ ଯେଉଁଭଳି ସାବଧାନ କରାଯାଏ ତା ମଧ୍ୟ ଠିକ ଭାବରେ ହୋଇଥିବାର ଜଣାଗଲାନାହିଁ । ଏ ସମସ୍ତ କାରଣ ପାଇଁ ମୁଖ୍ୟତଃ ଜିଲ୍ଲାପାଳ ଓ ଏସ.ପି ଉପସ୍ଥିତ ଥିବା ଯୋଗୁ କେବେହେଲେ କ୍ଷମଣୀୟ ହୋଇପାରିବେ ନାହିଁ । ତଦନ୍ତକାରୀ ଜଣକିଆ କମିସନ ସରକାରଙ୍କର ଜଣେ ପଦସ୍ଥ ପ୍ରଶାସନିକ କର୍ମଚାରୀ ହୋଇଥିବାରୁ ଅନ୍ୟସରକାରୀ ପଦାଧିକାରୀଙ୍କ ଦ୍ୱାରା ପ୍ରଭାବିତ ହୋଇ ଶେଷରେ ସେମାନଙ୍କୁ ରକ୍ଷା କରିବା ପାଇଁ ଲାଠି ଚାଳନା ଆଇନ ସମ୍ମତ ହୋଇଥିବାର ମତାମତ ସରକାରଙ୍କୁ ଜଣାଇଦେଲେ । ଏଥିରେ ମୁଁ ଅତ୍ୟନ୍ତ କ୍ଷୁବ୍ଧ ହୋଇ ଆଉ ବାରିପଦା ରଥଯାତ୍ରାକୁ ଯିବିନାହିଁ ବୋଲି ଠିକ୍‌କରି ଦେଲି । ଏକ ସତ୍ୟ ଘଟଣାକୁ ଚାପିଦିଆଗଲା ବୋଲି ସାଧାରଣରେ ମଧ୍ୟ ମତ ପ୍ରକାଶ ପାଇଲା । କମିସନଙ୍କ ରିପୋର୍ଟ ଦୃଷ୍ଟିରୁ କ୍ଷତିଗ୍ରସ୍ତ ଲୋକଙ୍କୁ ମଧ୍ୟ କୌଣସି ପ୍ରକାର କ୍ଷତିପୂରଣ ସରକାରଙ୍କ ତରଫରୁ ମିଳିବାର ନୁହେଁ । ଶେଷରେ ମୋର ବ୍ୟକ୍ତିଗତ ଅନୁରୋଧ କ୍ରମେ ମୁଖ୍ୟମନ୍ତ୍ରୀଙ୍କ ସାହାଯ୍ୟ ପାଣ୍ଠିରୁ କିଛି ସାହାଯ୍ୟ ଦେବାର ଠିକଣା ହେଲା । ପ୍ରଥମେ ୫ଜଣ କ୍ଷତିଗ୍ରସ୍ତ ଲୋକେ ଦରଖାସ୍ତ କଲାରୁ ସେମାନଙ୍କୁ ଏକ ହଜାର ଲେଖାଏଁ ଟଙ୍କା ଓ ପରେ ଅନ୍ୟ ୯ଜଣ କ୍ଷତିଗ୍ରସ୍ତ ଲୋକଙ୍କୁ ଜଣପ୍ରତି ପାଞ୍ଚହଜାର ଲେଖାଏଁ ଟଙ୍କା ସାହାଯ୍ୟ ମିଳିଲା ।

ପରବର୍ଷ ପୁଣି ରଥଯାତ୍ରାର ସମୟ ଆସିଲା । ରଥକୁ ଯିବିନାହିଁ ବୋଲି ଆଗରୁ ପ୍ରତିଜ୍ଞା କରିଛି । ଶ୍ରୀଜଗନ୍ନାଥଙ୍କ ସମ୍ମୁଖରେ ଅନ୍ୟାୟ ହେଲେ ମଧ୍ୟ ଦଣ୍ଡ ମିଳିଲା ନାହିଁ । ମାତ୍ର ରଥଯାତ୍ରାର ତିନିଦିନ ପୂର୍ବରୁ ଜିଲ୍ଲାପାଳଙ୍କ ବଦଳି ହେଲା । ଶ୍ରୀଜଗନ୍ନାଥଙ୍କ ଉପରେ ମୋର ବିଶ୍ୱାସ ଜନ୍ମିଲା ।

## "୧୯୮୭ ମସିହାର ପ୍ରିଜାଇଡିଂ ଅଫିସର ସମ୍ମିଳନୀ"

ପ୍ରତିବର୍ଷ ପରି ଏବର୍ଷ ମଧ୍ୟ ଗ୍ରାମଗୋଷ୍ଠୀ ସମ୍ମିଳନୀ ପରେ ପରେ ଭାରତରେ ସମସ୍ତ ରାଜ୍ୟ ଓ କେନ୍ଦ୍ର ଶାସିତ ଅଞ୍ଚଳ ଗୁଡ଼ିକର ବିଧାନସଭା ସଭ୍ୟମାନଙ୍କର ଅଧକ୍ଷ, ଉପାଧକ୍ଷ ସେକ୍ରେଟେରୀ ଏବଂ ରାଜ୍ୟଗୁଡିକ ମଧ୍ୟରେ ଥିବା କାଉନସିଲ ଗୁଡ଼ିକର ଚେୟାରମେନ ଡେପୁଟି ଚେୟାରମେନ ଓ ସେକ୍ରେଟେରୀ ମାନଙ୍କର ସମ୍ମିଳନୀ ସେପ୍ଟେମ୍ବର ୧୫ ତାରିଖରୁ ୨୦ ତାରିଖ ପର୍ଯ୍ୟନ୍ତ ହେବାର ସ୍ଥିର କରାଗଲା । ଏହି ସମ୍ମିଳନୀ କାଶ୍ମୀର ରାଜ୍ୟରେ ଶ୍ରୀନଗରଠାରେ ବସିବାର ସ୍ଥିର କରାଯାଇ ସେଠାକାର ରାଜ୍ୟ ସରକାରଙ୍କ ଦ୍ୱାରା ସମସ୍ତ ଆୟୋଜନ କରାଗଲା । ତେଣୁ ବିଧାନସଭାର ଅଧକ୍ଷମାନେ ଆନ୍ତର୍ଜାତିକ ଗ୍ରାମଗୋଷ୍ଠୀ ସଂସଦୀୟ ସମ୍ମିଳନୀ ମାଲେସିଆର ଫେରିବାର ମାତ୍ର ଅଳ୍ପଦିନ ପରେ ଶ୍ରୀନଗର ଉଦ୍ଦେଶ୍ୟରେ ଯାତ୍ରା ଆରମ୍ଭ କଲୁଁ । ତେଣୁ ତା ୧୪ରିଖରେ ହିଁ ଆମକୁ ଭୁବନେଶ୍ୱରରୁ ଦୀଲ୍ଲୀ ଯାତ୍ରା କରିବାକୁ ପଡିଲା ସେଦିନ ମୁଁ ମୋର ସ୍ତ୍ରୀ ମୋର ପ୍ରାଇଭେଟ ସେକ୍ରେଟେରୀ ଓ ଅଫିସ ଏସିସଟେଣ୍ଟଙ୍କ ସହ ଉଡ଼ାଜାହାଜ ଯୋଗେ ଦିଲ୍ଲୀ ଯାତ୍ରାକଲୁଁ । ଆମ ବିଧାନସଭା ସେକ୍ରେଟେରୀ ଅନ୍ୟ କର୍ମଚାରୀ ମାନଙ୍କ ସହ ତହିଁ ପୂର୍ବଦିନରୁ ଦିଲ୍ଲୀ ଚାଲି ଯାଇଥିଲେ । ଆମେ ସଂଧ୍ୟାରେ ଦିଲ୍ଲୀ ପହଞ୍ଚି ସେଠା ଓଡିଶା ଭବନରେ ରାତ୍ରିଯାପନ କଲୁଁ । ଆଗରୁ ସେଠାରେ ପହୁଞ୍ଚିବା ଆମ ସେକ୍ରେଟେରୀ ତଥା ଅନ୍ୟ କର୍ମଚାରୀମାନଙ୍କ ସହ ମଧ୍ୟ ସେଠାରେ ସାକ୍ଷାତ ହେଲା । ତହିଁ ପରଦିନ ସକାଳେ ପ୍ରାୟ ୧୦ଟା ବେଳକୁ ଆମେ ସମସ୍ତେ ଯାଇ ଦିଲ୍ଲୀ ଉଡ଼ାଜାହାଜ ଷ୍ଟେସନରେ ପହୁଞ୍ଚିଲୁ ଓ ସେଠାରୁ ଶ୍ରୀନଗର ଯାତ୍ରା ଆରମ୍ଭ ହେଲା । ଭାରତର ଅନ୍ୟାନ୍ୟ ରାଜ୍ୟର ବିଧାନ ସଭାର ଅଧକ୍ଷ ଓ କର୍ମଚାରୀମାନଙ୍କ ସହ ମଧ୍ୟ ଦେଖା ସାକ୍ଷାତ ହେଲା । ପ୍ରାୟ ଏକଘଣ୍ଟା କାଳ ଆକାଶମାର୍ଗରେ ଯାତ୍ରା କଲାପରେକାଶ୍ମୀରର ତୁଷାରାଚ୍ଛାଦିତ ପର୍ବତମାଳା ବିମାନ ଯାତ୍ରୀଙ୍କ ଦୃଷ୍ଟି ପଥାରୁଢ ହେଲା । ଶ୍ୟାମଳ ବର୍ଣ୍ଣର ବୃକ୍ଷଲତା ସୁଶୋଭିତ ବିସ୍ତୀର୍ଣ୍ଣ ବନାନୀ ଉପରିଭାଗ ପର୍ବତ ଗୁଡ଼ିକ ବରଫାଚ୍ଛାଦିତ ହୋଇ ଏମ ମନୋରମ ପରିବେଶ ସୃଷ୍ଟି କରୁଥାଏ । କାଶ୍ମୀରକୁ ମର୍ତ୍ତ୍ୟ ବୈକୁଣ୍ଠ ଆଖ୍ୟା ଦିଆଯିବାର ସତ୍ୟତା ଏହି ପ୍ରଥମ

ଦୃଶ୍ୟରୁ ହିଁ ପ୍ରମାଣିତ ହୁଏ । ତେଣୁ ବିମାନ ଯାତ୍ରୀମାନେ ଯେ ଯେଉଁଠି ବସିଥିଲେ ଏହି ମନୋରମ ଦୃଶ୍ୟ ଉପଭୋଗ କରିବାର ସୁଯୋଗ କେହି ହରାଇଲେ ନାହିଁ । ଶ୍ରୀ ନଗର ପରିଦର୍ଶନ ଏହା ଥିଲା ମୋର ୨ୟବାର । ତେଣୁ ବିମାନରୁ ଏ ଦୃଶ୍ୟ ମୋ ପକ୍ଷରେ କିଛି ନୂଆ ନଥିଲା । ଅଳ୍ପ ସମୟପରେ ଆମେ ବିମାନରୁ ଅବତରଣ କରି ଭି.ଆ.ପି.ଙ୍କ ଅପେକ୍ଷା କରିବା ସ୍ଥାନକୁ ଗଲୁଁ । ଅନ୍ୟ ବିଧାନ ସଭାର ଅଧ୍ୟକ୍ଷ ତଥା ଅନ୍ୟମାନଙ୍କ ସହିତ ସେଠାରେ ସାକ୍ଷାତ ହେଲାରୁ ପରସ୍ପରକୁ ଅଭିବାଦନ ଜଣାଇଲୁ । କାଶ୍ମୀର ବିଧାନସଭାର ପୂର୍ବତନ ଅଧ୍ୟକ୍ଷ ଶ୍ରୀଯୁକ୍ତ ମଙ୍ଗତଲାଲ ଶର୍ମା ସେଠାକାର ଅଭ୍ୟର୍ଥନା ସମିତିର ସଭାପତି ଥିଲେ । ସେମାନେ ଆମ ସମସ୍ତ ଆଗନ୍ତୁକ ପ୍ରତିନିଧିମାନଙ୍କୁ ସ୍ୱାଗତ ସମ୍ବର୍ଦ୍ଧନା ଜ୍ଞାପନ କଲେ । ଶ୍ରୀଯୁକ୍ତ ମଙ୍ଗତଲାଲ ଶର୍ମା ଦଳ ନିର୍ବିଶେଷରେ ସମସ୍ତଙ୍କର ଅତ୍ୟନ୍ତ ପ୍ରିୟ ଥିଲେ । ପୂର୍ବବର୍ଷମାନଙ୍କରେ ବିଧାନସଭାର ଅଧ୍ୟକ୍ଷ ଥିଲାବେଳେ ସେ ବରାବର ଆନ୍ତର୍ଜାତିକ ଗ୍ରାମ ଗୋଷ୍ଠୀ ସଂସଦ ତରଫରୁ ବିଭିନ୍ନ ଦେଶରେ ଅନୁଷ୍ଠିତ ହେଉଥିବା ସମ୍ମିଳନୀମାନଙ୍କୁ ସସ୍ତ୍ରୀକ ଯାଉଥିଲେ । ବିଦେଶ ଗସ୍ତରେ ଯାଉଥିଲାବେଳେ ଆମ ଭାରତୀୟ ପ୍ରତିନିଧିମାନଙ୍କର ବଡଭାଇ ଭଳି ସମସ୍ତଙ୍କର ସୁବିଧା ଅସୁବିଧା ବୁଝୁଥିଲେ । ମୁଁ ତାଙ୍କୁ ଭାଇବୋଲି ଡାକୁଥିଲି । ସେ ଅତ୍ୟନ୍ତ ଅମାୟିକ ଓ ସ୍ନେହି ଥିଲେ । କାଶ୍ମୀରରେ କଂଗ୍ରେସ ଶାସନ ଥିଲାବେଳେ ସେ ଅଧ୍ୟକ୍ଷ ନିର୍ବାଚିତ ହୋଇଥିଲେ । ଏଥର ଫରୁକଙ୍କ ନେତୃତ୍ୱରେ ଜାତୀୟ ସମ୍ମିଳନୀ ଓ କଂଗ୍ରେସର ମିଳିତ ସରକାରରେ ସେ ବିଧାନସଭାକୁ ନିର୍ବାଚିତ ହୋଇଥିଲେ ହେଁ ଅଧ୍ୟକ୍ଷ ପଦବୀ ପାଇ ନ ଥିଲେ । ସେ ଅଧ୍ୟକ୍ଷ ଥିଲାବେଳେ ପୂର୍ବବର୍ଷ ପ୍ରିଜାଇଡିଂ ଅଫିସର ସମ୍ମିଳନୀରେ ଏବର୍ଷର ସମ୍ମିଳନୀ ଶ୍ରୀନଗରରେ ହେବ ବୋଲି ସେ ନିମନ୍ତ୍ରଣ କରିଥିବାରୁ ତାଙ୍କ ଅଭ୍ୟର୍ଥନା ସମିତିର ସଭାପତି କରାଯାଇଥିଲା ।

ଆମକୁ ବିମାନଘାଟିଠାରେ ସ୍ୱାଗତ ଜଣାଇଲାପରେ ଶ୍ରୀନଗରର ବିଖ୍ୟାତ ଡାଲହ୍ରଦ କୂଳରେ ଥିବା ଏକ ବଡ ଅତ୍ୟାଧୁନିକ ହୋଟେଲରେ ଆମ ସମସ୍ତଙ୍କର ରହିବାର ବନ୍ଦୋବସ୍ତ କରାଗଲା । ଡାଲହ୍ରଦ ଶ୍ରୀନଗରକୁ ଲାଗି ରହିଥିବାରୁ ଏହା ନଗରର ସୌନ୍ଦର୍ଯ୍ୟ ବର୍ଦ୍ଧନ କରୁଥିଲା ଚତୁର୍ଦ୍ଦିଗରେ ବଣ ପାହାଡ ଘେରି ରହିଥିବା କାଶ୍ମୀର ଉପତ୍ୟକାରେ ଶ୍ରୀନଗର ଅବସ୍ଥିତ । ଉକ୍ତ ପାହାଡ ଗୁଡିକର ପାଦ ଦେଶରେ ବହୁ ସୁନ୍ଦର ସୁନ୍ଦର ବଗିଚାମାନ ମୋଗଲ ସାମ୍ରାଜ୍ୟକାଳରୁ ତିଆରି ହୋଇଅଛି । ପ୍ରତ୍ୟେକ ଉଦ୍ୟାନରେ ସୁନ୍ଦର ସୁନ୍ଦର ଝରଣାମାନ ରହିଛି । ଡାଲହ୍ରଦରେ ଶହ ଶହ ହାଉସ ବୋଟମାନ ଧାଡ଼ି ଧାଡି ହୋଇ ରହିଅଛି । ପରିବ୍ରାଜକମାନେ ଏହି ବୋଟ ଗୁଡିକ ଉପରେ କାଷ୍ଠ ନିର୍ମିତ ଅତ୍ୟାଧୁନିକ ପ୍ରକୋଷ୍ଠ ମାନଙ୍କରେ ରହନ୍ତି ଓ ସମୟ ସମୟରେ ହସ୍ତ ଚାଳିତ ଛୋଟ ଛୋଟ ବୋଟ ସାହାଯ୍ୟରେ ସହରକୁ ଯିବା ଆସିବା କରିବାର ଦୃଶ୍ୟ ଅତ୍ୟନ୍ତ ଆମୋଦ ଦାୟକ । ଆମେ ଅବସ୍ଥାନ କରୁଥିବା ହୋଟେଲରୁ ଏହି ଦୃଶ୍ୟ ଉପଭୋଗ କରୁଥାଉଁ । ଆମ ହୋଟେଲରେ ସ୍ନାନ ଭୋଜନ ପରେ ଅପରାହ୍ନରେ ମୁଁ ମୋର ସ୍ତ୍ରୀ ବିଧାନସଭାର ସେକ୍ରେଟେରୀ ତାଙ୍କ ସ୍ତ୍ରୀ ଓ ଆମ ଗହଣରେ ଯାଇଥବା ବିଧାନସଭା କର୍ମଚାରୀ ମିଶି ସେଠାକାର ଏକ ବ୍ୟବସାୟ କେନ୍ଦ୍ରକୁ ବୁଲିଗଲୁଁ । କାଶ୍ମୀର ପଶମ ବସ୍ତ୍ର ପାଇଁ ବିଖ୍ୟାତ ଭୁବନେଶ୍ୱର ଛାଡିଲା ବେଳେ କେତେକ ବନ୍ଧୁଙ୍କର ମଧ୍ୟ କିଛି ପଶମ ଲୁଗା ନେବାର ବରାଦ ଥିଲା । ପ୍ରତ୍ୟେକ କିଛି କିଛି ଜିନିଷପତ୍ର କିଣି ସଂଧ୍ୟାକୁ ହୋଟେଲରେ ଆସି ବିଶ୍ରାମ ନେଲୁ । ଆଜି କାଲିକାପରି ସେତେବେଳେ ଏଠାରେ କୌଣସି ପ୍ରକାର ଗୋଳମାଳ ବା ହତ୍ୟାକାଣ୍ଡ ଇତ୍ୟାଦି ଘଟୁନଥିଲା ବା ସାଂପ୍ରଦାୟିକ ବିଭେଦ ନ ଥିଲା ।

## ସମ୍ମିଳନୀ ଆରମ୍ଭ - ତା ୧୬।୯।୮୨

ପୂର୍ବଦିନ ବିଧାନସଭା ଓ କାଉନସିଲ ଗୁଡିକର ସେକ୍ରେଟେରୀ ମାନଙ୍କର ସମ୍ମିଳନୀ ହେଲାପରେ ଆଜି ପ୍ରିଜାଇଡିଂ ଅଫିସରଙ୍କ ସମ୍ମିଳନୀ ଆରମ୍ଭ । ଶ୍ରୀନଗର ଡାଲହ୍ରଦ କୂଳରେ ଆମେ ସବୁ ରହୁଥିବା ହୋଟେଲର ଏକ ବଡ ହଲରେ ଏକ ମନୋରମ ପରିବେଶ ମଧ୍ୟରେ ଭାରତର ଚୋଟ ବଡ ପ୍ରାୟ ୨୫ଟି ରାଜ୍ୟ ଓ ୭ଟି କେନ୍ଦ୍ର ଶାସିତ ଅଞ୍ଚଳର

ସମସ୍ତ ବିଧାନ ସଭାଗୁଡିକର ଅଧକ୍ଷ ଓ ଉପାଧକ୍ଷ କାଉନସିଲ ଗୁଡିକର ଚେୟାରମେନ ଓ ଡେପୁଟି ଚେୟାରମେନ ମାନଙ୍କର ଅଧିବେଶନ ପୂର୍ବାହ୍ଣ ୧୦ଟା ବେଳେ ଆରମ୍ଭ ହେଲା । ବିଧାନ ସଭା ତୁଳନାରେ କାଉନିସଲର ସଂଖ୍ୟା ବହୁତ କମ । ଏଭଳି କାଉନସିଲର ଆବଶ୍ୟକତା ନ ଥିବାର ବିଚାର କରି ଅନେକ ରାଜ୍ୟ ଏଭଳି ଅନୁଷ୍ଠାନ ଗୁଡିକୁ ଉଠାଇଦେଇ ସାରିଲେଣି । ଏବେ ମାତ୍ର ୫।୬ଟି ରାଜ୍ୟରେ ବିଧାନ ସଭାର ସାଙ୍ଗକୁ କାଉନସିଲ ରହିଛି । ରାଜ୍ୟର ନାମ ଅନୁଯାୟୀ ଇଂରାଜୀ ଅକ୍ଷରର କ୍ରମ ଅନୁସାରେ ପ୍ରିଜାଇଡିଂ ଅଫିସରଙ୍କ ସ୍ଥାନ ନିରୂପଣ କରାଯାଇଥାଏ । ମୋ ପଛରେ ଆମ ବିଧାନସଭାର ଉପାଧକ୍ଷ ଶ୍ରୀଯୁକ୍ତ ଚିନ୍ତାମଣି ଦ୍ୟାନ ସାମନ୍ତରାୟ ତାଙ୍କ ପଛକୁ ବିଧାନସଭାର ସେକ୍ରେଟେରୀ ଶ୍ରୀ ବଳଭଦ୍ର ପାତ୍ର ଓ ଅନ୍ୟକର୍ମଚାରୀ ମାନଙ୍କ ପାଇଁ ଆସନର ବ୍ୟବସ୍ଥା ହୋଇଥାଏ । ସମ୍ମିଳନୀ ମଞ୍ଚ ଉପରେ ଲୋକସଭାର ଅଧକ୍ଷ ଶ୍ରୀଯୁକ୍ତ ବଳରାମ ଝାକର କାଶ୍ମୀର ଓ ଜାମୁର ମୁଖ୍ୟମନ୍ତ୍ରୀ ଡକ୍ଟର ଫରୁକ ଅବଦୁଲ୍ଲା ତଥା କାଶ୍ମୀର ବିଧାନ ସଭାର ଅଧକ୍ଷ ଶ୍ରୀଯୁକ୍ତ ସେଖ ରସିଦ ପ୍ରଭୃତି ନିଜ ନିଜର ପଦବୀର ମର୍ଯ୍ୟାଦାନୁଯାୟୀ ସସମ୍ମାନେ ଆସୀନ । ସେଖ ରସିଦ ପ୍ରଥମେ ସମସ୍ତ ପ୍ରତିଧିମାନଙ୍କୁ ସେଠାକାର ସି.ପି.ଏ ଶାଖା ତରଫରୁ ହାର୍ଦ୍ଦିକ ସଂବର୍ଦ୍ଧନା ଜଣାଇବାପରେ ଭାରତରେ ସଂସଦୀୟ ଗଣତନ୍ତ୍ରର ସଫଳ ରୂପାୟନ ଓ ତାର ଦୃଢତା ପାଇଁ ସମ୍ମିଳନୀର ଯେଉଁ ଗୁରୁଦାୟିତ୍ୱ ରହିଛି ତାର ବିଶଦ ସୂଚନା ଦେଇଥିଲେ । ସମ୍ମିଳନୀର ସଭାପତି ଡକ୍ଟର ଝାକର ତାଙ୍କର ଲିଖିତ ଅଭିଭାଷଣ ପାଠ କରିଥିଲେ । ଭାରତରେ ଗତ ପ୍ରାୟ ୪୦ବର୍ଷ ଧରି ସଂସଦୀୟ ଶାସନ ବ୍ୟବସ୍ଥାର ପ୍ରଚଳନ ହୋଇ ପୃଥିବୀରେ ଭାରତ କିପରି ଏକ ସମ୍ମାନ ଜନକ ସ୍ଥାନ ଅଧିକାର କରି ପାରିଛି ତାଙ୍କ ଭାଷଣ କ୍ରମରେ ପ୍ରକାଶ କରିଥିଲେ । ଆମ ସଙ୍ଗେ ସ୍ୱାଧୀନତା ଲାଭ କରିଥିବା ପଡୋଶୀ ଦେଶଗୁଡିକର କୁଶାସନ ଫଳରେ ଗଣତନ୍ତ୍ରର ପତନ ଘଟିବାରୁ ଏବେ ସେଠାରେ ଗଣତନ୍ତ୍ରର ପୁନଃ ପ୍ରତିଷ୍ଠା ପାଇଁ ସେଠାକାର ଜନତାକୁ କେତେ ମୂଲ୍ୟ ଦେବାକୁ ପଡୁଛି ତାହା ମଧ ତାଙ୍କ ଭାଷଣରେ ସୂଚନା ଦେଇଥିଲେ ।

ଆନ୍ତର୍ଜାତିକ ସ୍ତରରେ ଭାରତର ସମ୍ମାନ ବୃଦ୍ଧି ଅଭ୍ୟନ୍ତରୀଣ ଶାନ୍ତି ଶୃଙ୍ଖଳା ଓ ଆର୍ଥିକ ଉନ୍ନତିରେ ଈର୍ଷାନ୍ୱିତ ହୋଇ ବୈଦେଶିକ ଶକ୍ତିମାନଙ୍କ ସହାୟତାରେ ଦେଶରେ ସାମ୍ପ୍ରଦାୟିକ ଭାବର ପ୍ରସାର ଓ ସଂହତି ନଷ୍ଟ ପାଇଁ ଚାଲିଥିବା ଅପଚେଷ୍ଟା ଓ ଷଡ଼ଯନ୍ତ୍ରର ନିନ୍ଦା ମଧ କରିଥିଲେ । ଉଦ୍‌ଘାଟନ ଭାଷଣ ପରେ ସମ୍ମିଳନୀ କାର୍ଯ୍ୟ କିଛି ସମୟ ପାଇଁ ବିରତି ରହିଲା । ପରେ କାର୍ଯ୍ୟସୂଚୀ ଅନୁଯାୟୀ ପୁଣି ସଭାକାର୍ଯ୍ୟ ଆରମ୍ଭ ହେଲା । ବିଭିନ୍ନ ବିଧାନସଭା ଓ କାଉସିଲ ଅଧକ୍ଷ ମାନଙ୍କଠାରୁ ଆଲୋଚନା ପାଇଁ ପୂର୍ବରୁ ପ୍ରସ୍ତାବମାନ ଗ୍ରହଣ କରାଯାଇଥାଏ ଏବଂ ତଦନୁଯାୟୀ ଆଲୋଚନା ଚାଲେ । ପ୍ରଥମଦିନର ଆଲୋଚନା ପାଇଁ ଗୃହୀତ ହୋଇଥିବା ଦୁଇଟି ଯାକ ବିଷୟ ମୋ ନାମରେ ଥିଲା । ତେଣୁ ସମସ୍ତ ସଭ୍ୟ ପରିହାସ ଛଳରେ ଆଜି ଓଡିଆ ଦିବସ ବୋଲି କହିଲେ । ମୋର ପ୍ରଥମ ଦିନର ଆଲୋଚନା ପାଇଁ ବିଷୟ ବସ୍ତୁ ଥିଲା "ବିଧାନସଭା ଅଧିବେଶନରେ ଗୋଟିଏ ନିର୍ଦ୍ଦିଷ୍ଟ ବସ୍ତୁ ଉପରେ ଥରେ ଆଲୋଚନାଶେଷ ହୋଇଥିଲେ କେଉଁଭଳି ଅବସ୍ଥାରେ ଓ କିପରି ଭାବରେ ପୁଣି ସେହି ବିଷୟଟି ସେହି ଅଧିବେଶନରେ ଆଲୋଚନା ହୋଇପାରିବ । ଏପରି ଏକ ଘଟଣା ଓଡିଶା ବିଧାନସଭାରେ ଉପୁଜିଥବବାରୁ ବ୍ରିଟୀଶ ପାର୍ଲ୍ୟାମେଣ୍ଟରେ ଏକ ନଜିର ଥିବାର ଓ ବହୁ ପୂର୍ବେ ଓଡିଶା ବିଧାନସଭାରେ ଏଭଳି ନଜିର ଥିବାର ଦେଖି ମୁଁ ଓଡିଶା ବିଧାନସଭାରେ ଆଗରୁ ସେହିଦିନ ଆଲୋଚନା ହୋଇ ଯାଇଥିବା ବିଷୟ ବସ୍ତୁ ଉପରେ ପୁଣି ଆଲୋଚନା ପାଇଁ ନିର୍ଦ୍ଦେଶ ଦେଇଥିଲି । ତେଣୁ ସେ ସଂପର୍କରେ ପ୍ରିଜାଇଡିଂ ଅଫିସର ମାନଙ୍କର ଏହି ସମ୍ମିଳନୀରେ ଆଲୋଚନା କରାଯାଇ ସମସ୍ତ ବିଧାନସଭା ଗୁଡିକରେ ଭବିଷ୍ୟତ କାର୍ଯ୍ୟକ୍ରମ ପାଇଁ ଏକ ନିଷ୍ପତ୍ତି ବା ଦିଗଦର୍ଶନ ଦେବାପାଇଁ ସମ୍ମିଳନୀର ସଭ୍ୟମାନଙ୍କୁ ଥିଲା ମୋର ଅନୁରୋଧ ବା ନିବେଦନ । ବିଧାନ ସଭା ଗୁଡିକର ପରିଚାଳନା ନିୟମାବଳୀର କୌଣସି ଗୋଟିଏ ବିଷୟରେ ସେହି ଅଧିବେଶନରେ ପୁଣି ସେ ବିଷୟରେ ଆଲୋଚନା କରିବାକୁ ନିଷେଧ କରାଯାଇଅଛି । ଏ ସଂପର୍କରେ ଓଡିଶା ବିଧାନସଭାରେ କୁସଂସ୍କାର ଆଇନର ଆଲୋଚନା ବେଳେ

ଘଟିଥିବା ଅବସ୍ଥା ତଥା ବିଲାତ କମନସଭାର ନଜିର ସମେତ ସମସ୍ତ ତଥ୍ୟ ସଭ୍ୟମାନଙ୍କୁ ବିଶଦଭାବରେ ଜଣାଇ ଦିଆଯାଇଥିଲା । ଆଲୋଚନା ପୂର୍ବରୁ ଅଧିବେଶନର ପ୍ରତିନିଧିମାନେ ଆମ ଟୀପ୍ପଣୀ ଗୁଡିକ ଅନୁଧ୍ୟାନ କରିଥିବାରୁ ମୋତେ ଆଉ ବିଶେଷ ଆଲୋଚନା କରିବାକୁ ପଡିଲା ନାହିଁ । ସଭ୍ୟମାନଙ୍କ ମଧ୍ୟରୁ ମୁଖ୍ୟ କେତେଜଣ ଏ ବିଷୟରେ ବିଚାର ବିମର୍ଶ କରି ଓଡିଶା ବିଧାନସଭାର ନିଷ୍ପତ୍ତି ଯଥାର୍ଥ ଥିବାର କହି ଧନ୍ୟବାଦ ସହ ମୋ ପ୍ରସ୍ତାବକୁ ସମର୍ଥନ କରିଥିଲେ । ସଭାପତି ମହାଶୟ ମଧ୍ୟ ଏହାକୁ ଅନୁମୋଦନ କଲାପରେ ୨ୟ ପ୍ରସ୍ତାବକୁ ଗଲୁ ।

ସେଦିନ ପାଇଁ ମୋର ୨ୟ ପ୍ରସ୍ତାବର ବିଷୟବସ୍ତୁ ଥିଲା ବିଧାନସଭାର ନିୟମ ଅନୁଯାୟୀ ଗଠିତ ବିଭିନ୍ନ କମିଟି ଗୁଡିକ ରାଜ୍ୟ ମଧ୍ୟରେ ଗସ୍ତ କରୁଥିଲାବେଳେ ଅଥବା ସରକାରଙ୍କ କୌଣସି ଏକ ଯୋଜନା ପରିଦର୍ଶନ କରୁଥିଲା ବେଳେ ଉକ୍ତ କମିଟିର ବ୍ୟକ୍ତିବିଶେଷ ସଭ୍ୟଙ୍କୁ କିମ୍ବା ସମୂହ ଭାବେ କମିଟିର ସଭ୍ୟମାନଙ୍କୁ କେହି ଅସମ୍ମାନ କଲେ କିମ୍ବା ପରିଦର୍ଶନ କାର୍ଯ୍ୟରେ କମିଟିକୁ ବାଧା ଦେଲେ ତାହା ବିଧାନସଭାର ସ୍ୱାଧୀକାର ଭଙ୍ଗ ରୂପେ ବିବେଚିତ ହେବ କି ନା ? ଏ ସଂପର୍କରେ ମଧ୍ୟ ପ୍ରାଞ୍ଜଳବିବରଣୀ ପୂର୍ବରୁ ପ୍ରତ୍ୟେକ ସଭ୍ୟଙ୍କୁ ଅବଗତି ପାଇଁ ଜଣାଇ ଦିଆଯାଇଥାଏ । ମୁଁ ସେଦିନର ଏ ପ୍ରସ୍ତାବ ସଂପର୍କରେ ଆଲୋଚନା ଆରମ୍ଭ କଲାବେଳକୁ ମଧ୍ୟାହ୍ନ ଭୋଜନର ସମୟ ହୋଇଯାଇଥିବାରୁ ଆଲୋଚନା ଅପରାହ୍ନ ଅଧିବେଶନ ପାଇଁ ମୁଲତବୀ ରହିଲା । ଅପରାହ୍ନ ଅଧିବେଶନ ବେଳକୁ ଆଲୋଚନା ଆରମ୍ଭ ହେଲା । ଓଡିଶା ବିଧାନସଭା ଏଷ୍ଟିମେଣ୍ଟ କମିଟିର ରାଜ୍ୟ ମଧ୍ୟରେ ଗସ୍ତକାର୍ଯ୍ୟକ୍ରମ ଚାଲିଥିଲା ବେଳେ କେତେକ ନ୍ୟସ୍ତ ସ୍ୱାର୍ଥ ବ୍ୟକ୍ତି ଦଳବାନ୍ଧି କମିଟିକୁ ଏକ ନିର୍ଦ୍ଦିଷ୍ଟ ଯୋଜନାର କାର୍ଯ୍ୟ ପରିଦର୍ଶନ କରାଇ ଦେଇ ନ ଥିଲେ ତାହା ବର୍ଣ୍ଣନା କଲି । ଏ ସଂପର୍କରେ ଏକ ସ୍ୱାଧୀକାର ପ୍ରସ୍ତାବ ଆଗତ ହୋଇ ବିଧାନସଭାର ସ୍ୱାଧୀକାର କମିଟିର ବିଚାରାଧୀନ ଥିବାରୁ ସେ ସଂପର୍କରେ ଆମକୁ ସାଧାରଣ ଭାବେ ପରାମର୍ଶ ଦେବାପାଇଁ ଅନୁରୋଧ କଲି । ବିଧାନସଭାର ନିୟମ ଅନୁଯାୟୀ ବିଧାନସଭାର ବା ତହିଁର କୌଣସି କମିଟିର ବୈଠକ ବିଧାନସଭା ପରିସରର ମଧ୍ୟରେ ଅନୁଷ୍ଠିତ ହେଉଥିଲା ବେଳେ ଉକ୍ତ ଅଧିବେଶନ ବା କମିଟିର ବୈଠକକୁ ଆସିବାରେ କାହାରିକୁ ବାଧାଦେବା କିମ୍ବା ବିଧାନସଭାର ସମ୍ମାନ ହାନୀକାରକ କୌଣସି ମନ୍ତବ୍ୟ ପ୍ରକାଶ କଲେ ତାହା ସ୍ୱାଧୀକାର ଭଙ୍ଗର କାରଣ ହୋଇଥାଏ । ମାତ୍ର ଏଠାରେ ସଂପୂର୍ଣ୍ଣ ବିଧାନସଭା ବାହାରେ ଏବଂ ବିଧାନସଭାର ଏକ କମିଟିର ପରିଦର୍ଶନରେ ବାଧାଦେବା ଅଲଗା କଥା । ଅପରାହ୍ନ ଅଧିବେଶନ ଏହି ପ୍ରସ୍ତାବ ଉପରେ ଆଲୋଚନା କରି ସମାପ୍ତ ହେଲା । ମାତ୍ର ଏଥିସଙ୍ଗେ ସଙ୍ଗେ ମତ ପ୍ରକାଶ ପାଇଲା ଯେ, ଏଥିରେ ବହୁଲୋକଙ୍କ ସ୍ୱାଧୀକାର ଭଙ୍ଗର ଅନ୍ତର୍ଭୁକ୍ତ ହେଉଥିବାରୁ ତାହା ପୂର୍ବରୁ ଜାଣି କମିଟିର କାର୍ଯ୍ୟ ବନ୍ଦ କରିବା ଉଚିତ ଥିଲା ବା ପୂର୍ବରୁ ରାଜ୍ୟ ସରକାରଙ୍କୁ ଜଣାଇ କମିଟିର କାର୍ଯ୍ୟରେ ବାଧା ସୃଷ୍ଟି କରି ନ ପାରିବା ପାଇଁ ଆବଶ୍ୟକୀୟ ଶାନ୍ତିଶୃଙ୍ଖଳା ରକ୍ଷା କରିବା ପାଇଁ ସରକାରଙ୍କ ସହାୟତା ନେବା ଉଚିତ ଥିଲା । ଅବଶ୍ୟ ଏ ସଂପର୍କରେ ଆମ ବିଧାନସଭାରେ ମଧ୍ୟ ଅନୁରୂପ ମତ ପ୍ରକାଶ ପାଇଥିଲା । ଆମ ବିଧାନସଭା ମତ ସହିତ ପ୍ରାୟ ସମସ୍ତେ ଏକମତ ହୋଇଥିଲେ । ସର୍ବୋପରି ବିଧାନସଭା ବା ବିଧାନସଭା କମିଟିର କାର୍ଯ୍ୟରେ ଏକ ବିବାଦୀୟ ବା ଦଳାଦଳି ଘଟଣାର ପକ୍ଷ ନ ହୋଇ ଯେତେଦୂର ସମ୍ଭବ ସେଥିରୁ ଦୂରରେ ରହି ନିରପେକ୍ଷତା ଅବଲମ୍ବନ କରିବା ସର୍ବୋତ୍କୃଷ୍ଟ ପନ୍ଥା ବୋଲି ମତ ପ୍ରକାଶ ପାଇଥିଲା । ପ୍ରଥମ ଦିନର ଅଧବବେଶନରେ ବିଧାନସଭା ପରିଚାଳନା ସଂକ୍ରାନ୍ତରେ ଏହି ଦୁଇଟି ବିଷୟର ଆଲୋଚନା ହୋଇ ଅଧିବେଶନର ପରିସମାପ୍ତି ଘଟିଥିଲା । ତେଣୁ ସେ ଦିନର ଅଧିବେଶନ ଓଡିଶା ବିଧାନ ସଭାର ଦିବସ ଥିଲା ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ ।

ସମ୍ମିଳନୀ ପରେ ସେ ଦିନ ସଂଧ୍ୟା ୫ଟା ବେଳକୁ ଡାଲହ୍ରଦ କୂଳରେ ଥିବା ମୋଗଲ ଗାର୍ଡେନର ଏକ ମନୋରମ ପରିବେଶ ମଧ୍ୟରେ ସମସ୍ତ ପ୍ରତିନିଧିମାନଙ୍କର ଏକ ବଂଧୁମିଳନର ଆୟୋଜନ ହୋଇଥିଲା ଉକ୍ତ ବନ୍ଧୁମିଳନକୁ ସବୁ ପ୍ରତିନିଧିମାନଙ୍କୁ ସସ୍ତ୍ରୀକ ଯିବାକୁ ନିମନ୍ତ୍ରଣ ଥାଏ । ତେଣୁ ମୁଁ ମୋ ସ୍ତ୍ରୀ ସହିତ, ଆମ ବିଧାନସଭାର ସେକ୍ରେଟେରୀ ମଧ୍ୟ

ସସ୍ତ୍ରୀକ ଅନ୍ୟ ପ୍ରତିନିଧିମାନଙ୍କ ସହ ସେଥିରେ ଯୋଗଦାନ କରିଥିଲୁ । ସମସ୍ତେ ସେଠାରେ ଭେଟି ଚା'ପାନ କରିବା ସଙ୍ଗେ ସଙ୍ଗେ ଅଳ୍ପ କେତେକ ବିଷୟରେ ଆଲୋଚନା ମଧ କରିଥିଲୁ । ଏହି ବଗିଚାଟି ମୋଗଲ ସାମ୍ରାଜ୍ୟ ସମୟରେ ହୋଇଥିବାରୁ ତାର ଏପରି ନାମକରଣ ରଖାଯାଇଅଛି । ବଗିଚାର ସମ୍ମୁଖରେ ବିରାଟ ଡାଲହ୍ରଦ ଅପରର ପାର୍ଶ୍ୱରେ ସବୁଜ ରଙ୍ଗର ବୃକ୍ଷଲତାପୂର୍ଣ୍ଣ ପର୍ବତମାଳା ଓ ତହିଁ ସଙ୍ଗେ ସଙ୍ଗେ ଉକ୍ତ ପର୍ବତର ପାଦଦେଶରୁ କଳନାଦରେ ପ୍ରବାହମାନ ନିର୍ଝରଣୀର ଦୃଶ୍ୟ ବଗିଚା ମଧ୍ୟରେ ବିଭିନ୍ନ ରଙ୍ଗର ପ୍ରସ୍ଫୁଟିତ ଗୋଲାପ, ପ୍ରବାହମାନ ନିର୍ଝରିଣୀରୁ ସ୍ଥାନ ବିଶେଷରେ କୃତ୍ରିମ ଉପାୟରେ ଜଳଉପରକୁ ଉଠାଯାଇଥିବାରୁ ଏ ସ୍ଥାନରେ ସୌନ୍ଦର୍ଯ୍ୟକୁ ଅଧିକ ମନୋରମ ଓ ଉପଭୋଗ୍ୟ କରିଦେଉଥାଏ । ବାସ୍ତବରେ କାଶ୍ମୀର ଉପତ୍ୟକାକୁ ଭାରତର ମର୍ତ୍ତ୍ୟ ବୈକୁଣ୍ଠ କହିବାରେ ଯଥେଷ୍ଟ ସମୀଚୀନତା ରହିଛି । ଏପରିକି ଏହା ଇନ୍ଦ୍ରଙ୍କର ନନ୍ଦକାନନ ସଙ୍ଗେ ତୁଳନୀୟ କହିଲେ ଅତ୍ୟୁକ୍ତି ହେବ ନାହିଁ । ପ୍ରାୟ ଏକ ବର୍ଷ ପୂର୍ବେ ଉତ୍ତର ପ୍ରଦେଶର ଲକ୍ଷ୍ନୌଠାରେ ଏହିଭଳି ପ୍ରିଜାଇଡିଂ ଅଫିସରଙ୍କ ସମ୍ମିଳନୀକୁ ଆସି ସେଠା ଅଧିବେଶନରେ ଯୋଗ ଦେଲାପରେ ମୁଁ ଓ ମୋ ସ୍ତ୍ରୀ ଦୁହେଁ କାଶ୍ମୀର ଆସି ଏ ସମସ୍ତ ସ୍ଥାନ ଭ୍ରମଣ କରିବାର ସୁଯୋଗ ପାଇଥିଲୁଁ । ଶ୍ରୀନଗର ସ୍ଥିତ ଡାଲହ୍ରଦ କୂଳରେ ମୋଗଲ ଗାର୍ଡେନ ନାମରେ ଆହୁରି ୪।୫ଟି ବଗିଚା ରହିଛି । ସବୁଗୁଡିକ ପର୍ବତ ପାଦଦେଶରେ ଓ ପ୍ରତ୍ୟେକଟିରେ ଏହିପରି ଝରଣା ବହି ଯାଉଛି ଓ ରଙ୍ଗ ବେରଙ୍ଗର ଫୁଲ ଗଛମାନ ମଧ ରହିଛି ଅବଶ୍ୟ ଏହି ବଗିଚାଟି ଅନ୍ୟ ବଗିଚାଗୁଡିକ ତୁଳନାରେ ଅଧିକ ମନୋହର ଓ ଏହା ଆକାରରେ ସର୍ବବୃହତ । ଏହି ସମସ୍ତ ବଗିଚାରେ ଭ୍ରମଣ କରୁଥିବା ସମୟରେ ମୋର ଓ ମୋ ସ୍ତ୍ରୀର ଫଟୋ ଉଠାଯାଇଥିଲା । ଫଟୋ ଗ୍ରାଫରମାନେ ସେଠାରେ ପହୁଞ୍ଚି ବିଭିନ୍ନ ସମୟରେ ପ୍ରତିନିଧିମାନଙ୍କର ବ୍ୟକ୍ତିଗତ, ସ୍ୱାମୀ ସ୍ତ୍ରୀଙ୍କ ଓ ଅନ୍ୟମାନଙ୍କ ସହତ ମିଳିତ ଫଟୋ ମଧ ନେଉଥିଲେ ଓ ପରେ ତହିଁର କପି ମଧ ଦେଇ ସେସବୁର ଯଥାର୍ଥ ମୂଲ୍ୟ ମଧ ନେଉଥିଲେ । ମୁଁ ମୋ ସ୍ତ୍ରୀ ସହିତ ଦୁଇଥର ଏହି ସ୍ଥାନ ପରିଦର୍ଶନ କରିବାରେ ସୁଯୋଗ ପାଇଥିବାରୁ ନିଜକୁ ଧନ୍ୟ ମନେ କରୁଛି । ସଂଧ୍ୟା ବେଳକୁ ହୋଟେଲକୁ ଫେରି ନିଜ ନିଜ ପ୍ରକୋଷ୍ଠରେ ଅବସ୍ଥାନ କଲୁ ।

ଆଜି ସମ୍ମିଳନୀର ୨ୟ ଦିବସ । ପୂର୍ବଦିନପରି ଠିକ ପୂର୍ବାହ୍ନ ସାଢେଦଶଟା ବେଳକୁ ଡକ୍ଟର ବଳରାମ ଝାକରଙ୍କ ସଭାପତିତ୍ୱରେ ସେହି ହୋଟେଲରେ ସମ୍ମିଳନୀର କାର୍ଯ୍ୟ ଆରମ୍ଭ ହେଲା ଆଜିର ଅଧିବେଶନରେ ସେପରି କିଛି ଗୁରୁତ୍ୱ ପୂର୍ଣ୍ଣ ବିଷୟବସ୍ତୁ ଆଲୋଚନା ପାଇଁ ନ ଥିଲା । ସେଦିନ ପ୍ରଥମେ ଲୋକସଭାର ଉପାଧକ୍ଷ ଶ୍ରୀଯୁକ୍ତ ଅମ୍ବିଦେଶାଇ ତାଙ୍କ ପ୍ରସ୍ତାବ ଉପରେ ଆଲେଚନା ଆରମ୍ଭ କଲେ । ତାଙ୍କ ପ୍ରସ୍ତାବଟି ହେଲା ବିଭିନ୍ନ ବିଧାନସଭା ଗୁଡିକରେ ପରିଚାଳନା ପାଇଁ ଭିନ୍ନ ଭିନ୍ନ ନିୟମାବଳୀ ନ ରହି ସମସ୍ତଙ୍କ ପାଇଁ ଗୋଟିଏ ମଡେଲ ନିୟମାବଳୀ କରାଯାଉ । ଏଭଳି ପ୍ରସ୍ତାବ ସପକ୍ଷରେ ତାଙ୍କର ସେଭଳି ଦୃଢ ଯୁକ୍ତିମଧ ନ ଥିଲା । ମୋ ସମେତ ଅନ୍ୟ ବିଧାନସଭାର କେତେଜଣ ଅଧକ୍ଷ ଏ ପ୍ରସ୍ତାବରେ ବିରୋଧ କଲୁ । ଆମର ଯୁକ୍ତି ହେଲା ବିଭିନ୍ନ ବିଧାନସଭାରେ ଭିନ୍ନ ଭିନ୍ନ ପ୍ରକାରର ନିୟମ ଓ ପରଂପରା ସେଠା ଅବସ୍ଥାକୁ ଖାପ ଖୁଆଇ ବହୁ ଦିନରୁ ଚଳି ଆସଛି ଓ ଏବେ ତାହା ପରିବର୍ତ୍ତନ କଲେ ଅନେକ ଅସୁବିଧା ଉପୁଜିବ । ଉଦାହରଣ ସ୍ୱରୂପ ଆମ ଅବସ୍ଥା ଦୃଷ୍ଟିରୁ ଓଡିଶା ବିଧାନସଭାରେ ପ୍ରତିଦିନ ସର୍ବାଧିକ ଦୁଇଟି ମୂଳତବି ପ୍ରସ୍ତାବ ବିଚାର ପାଇଁ ଆସିବାର ନିୟମ କରାଯାଇଛି । ମାତ୍ର ଅନ୍ୟଠି ତାହା ନାହିଁ । ଏହାର ପରିବର୍ତ୍ତନ କରାଗଲେ ଘୋର ଅସନ୍ତୋଷ ସୃଷ୍ଟି ହେବ । ଅନ୍ୟ ପ୍ରତିନିଧି ବା ଅଧକ୍ଷମାନେ କେହି ଏ ପ୍ରସ୍ତାବ ସଂପର୍କରେ ମତ ନ ଦେବାରୁ ତାହା ବାଦ ଦିଆଗଲା । ଏହାପରେ ବିଭିନ୍ନ ବିଧାନସଭା ସଭ୍ୟମାନଙ୍କର ରହଣୀପାଇଁ ଯେଉଁ ହଷ୍ଟେଲ ଗୁଡିକ ରହିଛି ସେଗୁଡିକର ରକ୍ଷଣାବେକ୍ଷଣ ଓ ସଂପୂର୍ଣ୍ଣ ନିୟନ୍ତ୍ରଣ ବିଧାନସଭା ଅଧକ୍ଷଙ୍କ କର୍ତ୍ତୃତ୍ୱାଧୀନରେ ରହିବା ସଂପର୍କରେ ଏକ ପ୍ରସ୍ତାବ ଆସିଲା । ପୂର୍ବପରି ଆମେ କେତେଜଣ ଏ ପ୍ରସ୍ତାବରେ ମଧ ଘୋର ବିରୋଧ କଲୁ । ଆମ ଓଡିଶାରେ କେଉଁ ସଭ୍ୟ କେଉଁଠି ରହିବ ତାହା ଅଧକ୍ଷଙ୍କ ନିୟନ୍ତ୍ରଣ ବ୍ୟତୀତ ସେ ଗୁଡିକର ମରାମତି ଓ ରକ୍ଷଣାବେକ୍ଷଣ ସରକାରଙ୍କ ଦାୟିତ୍ୱରେ ଥିବାରୁ ସେଗୁଡିକର ତତ୍ତ୍ୱ ଭଲଭାବରେ ବୁଝାଯାଇ ପ୍ରତିକାର

କରାଯାଇପାରୁଥିବା ବେଳେ ଅଯଥାରେ ବିଧାନସଭା ଅଧକ୍ଷ ଏ ଦାୟିତ୍ୱ ମୁଣ୍ଡାଇବା ବିଜ୍ଞତାର ପରିଚାୟକ ହେବ ନାହିଁ । ପ୍ରାୟ ସମସ୍ତ ଅଧକ୍ଷ ଏହିମତ ପୋଷଣ କଲାରୁ ତାହା ମଧ ବାଦ ହୋଇଗଲା । ଏହାପରେ ସମ୍ମିଳନୀରେ ଆଲୋଚନା ପାଇଁ କୌଣସି ବିଷୟବସ୍ତୁ ନ ଥିବା ଦୃଷ୍ଟିରୁ ସମ୍ମିଳନୀ କାର୍ଯ୍ୟ ଅପରାହ୍ନକୁ ମୁଲତବୀ ରହିଲା ।

ଅପରାହ୍ନ ଅଧିବେଶନରେ ସମ୍ମିଳନୀର ଉଦ୍ଯାପନ ଉତ୍ସବ ଆରମ୍ଭ ହୋଇଗଲା । ପ୍ରଥମେ ଆମ ପ୍ରତିନିଧିମାନଙ୍କ ତରଫରୁ କାଶ୍ମୀର ବିଧାନସଭା ଓ କାଶ୍ମୀର ସରକାରଙ୍କ ଶୃଙ୍ଖଳିତ ଓ ସନ୍ତୋଷ ଜନକ ଆତିଥ୍ୟ ପାଇଁ ଉଭୟଙ୍କୁ ବିଶେଷ ଭାବେ ଧନ୍ୟବାଦ ପ୍ରଦାନ କରାଗଲା । ଅବଶ୍ୟ ଏହା ଏକ ଗତାନୁଗତିକ ବ୍ୟବସ୍ଥା ବା ପରଂପରା ଉଦ୍ଯାପନ ଶେଷକୁ ଆସାମ ମୁଖ୍ୟମନ୍ତ୍ରୀ ଓ ଆସାମ ବିଧାନସଭାର ଅଧକ୍ଷଙ୍କ ପରବର୍ତ୍ତୀ ବର୍ଷର ସମ୍ମିଳନୀ ଗୌହାଟୀ ଠାରେ କରାଯିବାର ଅନୁରୋଧ ଗ୍ରହଣ କରାଗଲା । ଅପରାହ୍ନ ଅଧିବେଶନରେ ଅନ୍ୟ କୌଣସି କାର୍ଯ୍ୟକ୍ରମ ନ ଥିବାରୁ ପ୍ରାୟ ସମସ୍ତେ ଶ୍ରୀନଗରର ମୁଖ୍ୟ ବ୍ୟବସାୟ କେନ୍ଦ୍ରକୁ ଯାଇ ବିଭିନ୍ନ ପ୍ରକାରର ଶାଲ ଓ ପଶମ ବସ୍ତ୍ର କିଣାକିଣିରେ ବ୍ୟସ୍ତ ରହିଲୁ ।

ସଂଧ୍ୟାବେଳକୁ କାଶ୍ମୀରର ମୁଖ୍ୟମନ୍ତ୍ରୀ ଡଃ ଫରୁକ ଅବଦୁଲ୍ଲାଙ୍କ ନିମନ୍ତ୍ରଣ ଥିବାରୁ ସସ୍ତ୍ରୀକ ସମସ୍ତ ପ୍ରତିନିଧି ସେଠାକାର ଗଣ୍ୟମାନ୍ୟ ବ୍ୟକ୍ତି ତଥା ମନ୍ତ୍ରୀମଣ୍ଡଳର ବହୁ ସଦସ୍ୟ ଉକ୍ତ ଉତ୍ସବରେ ଯୋଗଦାନ କରିଥିଲେ । ସେଠାରେ ଏକ ସାଂସ୍କୃତିକ କାର୍ଯ୍ୟକ୍ରମର ମଧ ଆୟୋଜନ କରାଯାଇଥିଲା ଉକ୍ତ ଉତ୍ସବରେ କାଶ୍ମୀରର ଝିଅ ଓ ମହିଳାମାନେ ତାଙ୍କର ପାରଂପରିକ ନୃତ୍ୟ ଗୀତ ପରିବେଷଣ କରି ନବାଗତ ଅତିଥିମାନଙ୍କୁ ମୁଗ୍ଧକରି ଥିଲେ । ଏହି ସାଂସ୍କୃତିକ କାର୍ଯ୍ୟକ୍ରମ ଏକ ମୁକ୍ତ ଆକାଶତଳେ ଆୟୋଜିତ ହୋଇ ଥିଲେ ହେଁ ଏବଂ ଏହା ରାତ୍ରିର ବିଳମ୍ବିତ ପ୍ରହର ପର୍ଯ୍ୟନ୍ତ ଚାଲିଥିଲେ ହେଁ ଆଦୌ ଥଣ୍ଡା ଅନୁଭବ ନ କରିବା ଅତ୍ୟନ୍ତ ଆଶ୍ଚର୍ଯ୍ୟର ବିଷୟଥିଲା । ଏହି ନୃତ୍ୟ ଓ ଗୀତ ଏତେ ମନୋମୁଗ୍ଧକର ହୋଇଥିଲା ଯେ ନିଜେ ଫରୁକ ଅବଦୁଲ୍ଲା ସେମାନଙ୍କ ସହିତ ନାଚିଲେ ଓ ଡଃ ଝାକରଙ୍କୁ ନେଇ ମଧ ତାଙ୍କ ସହ ନଚାଇଲେ । ପ୍ରାୟ ଏକ ବର୍ଷ ପୂର୍ବେ ନଭେମ୍ବର ମାସ ବେଳକୁମୁଁ ମୋ ସ୍ତ୍ରୀ ସହିତ କାଶ୍ମୀର ଆସିଥିଲା ବେଳେ ଭୀଷଣ ଶୀତ ଅନୁଭୂତ ହେଉଥିଲା । ବୁଲିଗଲାବେଳେ ସମସ୍ତ ଗରମ ପୋଷାକ ପିନ୍ଧି ମଧ ଓଭରକୋଟ ନ ପିନ୍ଧି ରହିପାରିଲୁ ନାହିଁ । ରାତିରେ ଶୋଇଲାବେଳେ ଦୁଇଟା ଲେଖାଏଁ କମ୍ବଳ ଘୋଡାଇ ହୋଇ ବିଛଣାଚଦର ତଳେ ଗରମ ପାଣିର ବୋତଲ ରଖାଯାଇ ବ୍ୟବହାର କରାଯାଇଥିଲା । ମାତ୍ର ଏବର୍ଷ ସେପ୍ଟେମ୍ବରମାସ ହେଲେ ମଧ ସେତଳି ଥଣ୍ଡା ଅନୁଭୂତ ହେଉ ନ ଥିଲା । ବରଂ ଗରମ ଅନୁଭବ କରୁଥିବାରୁ ପଙ୍ଖା ବ୍ୟବହାର କରୁଥିଲୁ । ଉତ୍ସବ ଶେଷରେ ସେଠାରେ ରାତ୍ରିଭୋଜନ କରି ନିଜନିଜ ବିଶ୍ରାମ ସ୍ଥଳକୁ ଫେରି ବିଶ୍ରାମ କଲୁ । ସମ୍ମିଳନୀ ଶେଷ ହେବାପରେକୌଣସି ଏକ ବିଶେଷ ବିଷୟରେ ଆଲୋଚନା ହେବା ଏକ ଚିରାଚରିତ ପ୍ରଥା । ଏହି ଆଲୋଚନା ଚକ୍ରର ଉଦ୍‌ଘାଟନ ସାଧାରଣତଃ ସେହି ରାଜ୍ୟର ମୁଖ୍ୟମନ୍ତ୍ରୀଙ୍କ ଦ୍ୱାରା ହୋଇଥାଏ । ଏଥର କାସ୍ମୀର ଏହି ଆଲୋଚନା ଚକ୍ରରେ ଆଲୋଚ୍ୟ ବିଷୟ ଥିଲା ପାର୍ଲ୍ୟାମେଣ୍ଟ ଓ ପ୍ରେସ ଏହି ଆଲୋଚନା ଚକ୍ରରେ ବିଭିନ୍ନ ରାଜ୍ୟରୁ ଯୋଗ ଦେଇଥବବା ଅଧକ୍ଷ ମାନଙ୍କ ବ୍ୟତୀତ ସେହିରାଜ୍ୟର ବିଧାନସଭା ସଭ୍ୟ ତଥା ପାର୍ଲ୍ୟାମେଣ୍ଟ ସଭ୍ୟମାନଙ୍କର ମଧ ଭାଗନେବାର ବିଧି ରହିଅଛି । ତେଣୁ ଉକ୍ତ ଦିନ ପୂର୍ବ ଦୁଇଦିନ ଭଳି ପୂର୍ବାହ୍ନ ୧୦ ୧/୨ଟା ବେଳକୁ ଲୋକସଭା ତଥା ସମ୍ମିଳନୀର ଅଧକ୍ଷ ଡକ୍ଟର ବଳରାମ ଝାକରଙ୍କ ସଭାପତିତ୍ୱରେ ଆଲୋଚନା ଚକ୍ର ଆରମ୍ଭ ହେଲା । ଏବଂ ସେଠାକର ମୁଖ୍ୟମନ୍ତ୍ରୀ ଡଃ ଫାରୁକ ଅବଦୁଲ୍ଲା ମୁଖ୍ୟ ଅତିଥି ଭାବେ ଯୋଗ ଦେଇ ଆଲେଚନା ଚକ୍ର ଉଦ୍‌ଘାଟନ କଲେ । ସେଦିନ ଡଃ ଫାରୁକଙ୍କ ଭାଷଣ ଅତ୍ୟନ୍ତ ଆବେଗ ପୂର୍ଣ୍ଣ ଓ ମର୍ମସ୍ପର୍ଶୀ ହୋଇଥିଲା । ସେ ତାଙ୍କ ଭାଷଣରେ ଭାରତର ମହାନ ପରଂପରା ଓ ଜାତୀୟ ସଂହତି କିପରି ସାଂପ୍ରଦାୟିକ ବିଷରେ ବିଷାକ୍ତ ହୋଇଯାଉଥିବା ଯୋଗୁଁ ଯେଉଁ ବିଷମୟ ପରିଣତି ଘଟିବ ତହିଁର ସୂଚନା ଦେଇ ଦେଶର ଅଖଣ୍ଡତାକୁ ବଜାୟ ରଖିବା ସଙ୍ଗେ ସଙ୍ଗେ ଗଣତନ୍ତ୍ର ତଥା ସଂସଦୀୟ ବ୍ୟବସ୍ଥାକୁ ସୁଦୃଢ଼ କରିବାକୁ ନିବେଦନ କରିଥିଲେ । ତାଙ୍କର ଆବେଗମୟ ଭାଷଣରେ ନିଜ ହୃଦୟରେ ସମସ୍ତ ଭାବନା ଏପରି ପ୍ରାଞ୍ଜଳ ଓ ସ୍ପଷ୍ଟ ଭାବରେ

ପ୍ରକାଶ କରିଥିଲେ ଯେ ସମସ୍ତେ ସେଥିରେ ମୁଗ୍ଧ ହୋଇଯାଇଥିଲେ ସେ ସାଂପ୍ରଦାୟିକ ଭାବର ପ୍ରବର୍ତ୍ତକ ଓ କାମୀରକୁ ଭାରତରୁ ବିଚ୍ଛିନ୍ନ କରିବାର ପକ୍ଷପାତୀ ବୋଲି କେତେକଙ୍କ ମନରେ ଯେଉଁ ଭ୍ରାନ୍ତ ଧାରଣା ଥବଳଶ ତାହା ତାଙ୍କର ସେଦିନର ଭାଷଣରୁ ସଂପୂର୍ଣ୍ଣ ରୂପେ ଦୂରୀଭୂତ ହୋଇଗଲା ।

ଆଲୋଚନା ଚକ୍ର ଉଦ୍‌ଘାଟିତ ହେଲାପରେ ଆମ ପ୍ରତିନିଧି ତଥା ସେଠାକାର ବିଧାନସଭା ଓ ପାର୍ଲ୍ୟାମେଣ୍ଟ ସଭ୍ୟ ମାନଙ୍କ ମଧ୍ୟରୁ କେତେକ ଉକ୍ତ ଆଲେଚନାରେ ଭାଗନେଇଥିଲେ । ଅଳ୍ପ କେତେଦିନ ପୂର୍ବରୁ ମାଳୟର କ୍ୱାଲାଲୁମପୁରଠାରେ ଅନୁଷ୍ଠିତ ଗ୍ରାମଗୋଷ୍ଠୀ ସଂସଦୀୟ ସମ୍ମିଳନୀରେ ଏହି ବିଷୟରେ ଦିନେ ଆଲୋଚନା ହୋଇଥିବା ଅବସରରେ ମୁଁ ମଧ୍ୟ ସେଥିରେ ଅଂଶ ଗ୍ରହଣ କରିଥିଲି । ତେଣୁଁ ଏଠାରେ ପୁଣି ସେହି ବିଷୟରେ ଆଲୋଚନା ହେବାରୁ ମୁଁ ଏଥିରେ ଦକ୍ଷତାର ସହିତ ଅଂଶ ଗ୍ରହଣ କରିବାରେ ସମର୍ଥ ହୋଇଥିଲି । ଏହି ଆଲୋଚନା ଚକ୍ର ସେଦିନ ପ୍ରାୟ ଅପରାହ୍ଣ ଦୁଇଟାବେଳ ପର୍ଯ୍ୟନ୍ତ ଚାଲି ଶେଷ ହେଲା । ହୋଟେଲରେ ମଧ୍ୟାହ୍ନ ଭୋଜନ ପରେ ବିଶ୍ରାମ ନେଲୁ । ସେଦିନ ଅପରାହ୍ଣ ବା ରାତିକୁ ଅନ୍ୟ କୌଣସି ପ୍ରକାର କାର୍ଯ୍ୟକ୍ରମ ନ ଥିଲା ।

## ଦର୍ଶନୀୟ ସ୍ଥାନ ପରିଦର୍ଶନ

ଯେଉଁ ଠାରେ ପ୍ରିଜାଇଡିଂ ଅଫିସରମାନଙ୍କର ଏପରି ସମ୍ମିଳନୀ ହୁଏ ପ୍ରତିଥର ସମ୍ମିଳନୀ ଶେଷରେ ପରବର୍ତ୍ତୀ ଦୁଇଦିନ ସେ ଅଞ୍ଚଳରେ ଥିବା ବିଭିନ୍ନ ସ୍ଥାନମାନ ପରିଦର୍ଶନ କରିବାର ପ୍ରତିନିଧିମାନଙ୍କୁ ସୁଯୋଗ ଦିଆଯାଇଥାଏ । ପ୍ରାୟ ଦୁଇଶହ ପର୍ଯ୍ୟନ୍ତ ପ୍ରତିନିଧି ମାନଙ୍କର ଯିବା ଆସିବାରେ ଯାନବାହନ ତଥା ସେ ସମସ୍ତ ସ୍ଥାନମାନଙ୍କରେ ସେମାନଙ୍କର ଭୋଜନ ଇତ୍ୟାଦିର ବ୍ୟବସ୍ଥା ସ୍ଥାନୀୟ ସି.ପି.ଏ ଶାଖା ତରଫରୁ କରାଯାଇଥାଏ । ତଦନୁଯାୟୀ ୧୯ ଓ ୨୦ ତାରିଖ ଦୁଇଦିନ ପାଇଁ ପରିଦର୍ଶନ ଓ ଭ୍ରମଣ କାର୍ଯ୍ୟକ୍ରମ ଆମକୁ ଆଗରୁ ଜଣାଇ ଦିଆଯାଇ ଥାଏ । ଅବଶ୍ୟ ଉକ୍ତ ଦୁଇଟି ଯାକ ସ୍ଥାନ ମୁଁ ଏହାପୂର୍ବରୁ ସସ୍ତ୍ରୀକ ଆସି ପରିଦର୍ଶନ କରିବାର ସୁଯୋଗ ପାଇଥିଲି ତଥାପି ସମସ୍ତଙ୍କ ଗହଣରେ ଭ୍ରମଣ କରିବା ମଧ୍ୟ ଏକ ଆନନ୍ଦ । ପ୍ରଥମଦିନ ପହିଲଗା ପରିଦର୍ଶନ ଓ ସେଠାରେ ମଧ୍ୟାହ୍ନ ଭୋଜନ ବ୍ୟବସ୍ଥା ହୋଇଥାଏ । ପ୍ରିଜାଇଡିଂ ଅଫିସର ଓ ସେକ୍ରେଟେରୀମାନେ ପ୍ରଥମେ ଶ୍ରୀନଗରରେ ପହଞ୍ଚିଲା ପରଠାରୁ ସମ୍ମିଳନୀ ଶେଷ ପର୍ଯ୍ୟନ୍ତ ପ୍ରତ୍ୟେକଙ୍କୁ ଯିବା ଆସିବା କରିବା ପାଇଁ ଯେଉଁ କାରମାନ ଦିଆଯାଇଥିଲା ସେହିଥିରେ ଏହି ପରିଦର୍ଶନର ବ୍ୟବସ୍ଥା ହୋଇଥିବାରୁ ସେଦିନ ସକାଳ ପ୍ରାୟ ୮ ୧/୨ଟା ବେଳକୁ ପ୍ରତ୍ୟେକଙ୍କ ଗାଡିରେ ବାହାରିପଡିଲୁ । ମୋ ପାଇଁ ଏବଂ ଆମ ଉପାଧକ୍ଷ ଓ ସେକ୍ରେଟେରୀଙ୍କ ଉଦ୍ଦେଶ୍ୟରେ ଯେଉଁ ଗାଡି ମିଳିଥିଲା ସେଥିରେ ଆମ ବିଧାନସଭାର ଅନ୍ୟକର୍ମଚାରୀ ମାନେ ବାଣ୍ଟି ହୋଇ ବସିଗଲୁ । ପ୍ରଥମେ ଇଚ୍ଛାବରନାମକ ଏକ ମନୋରମ ସ୍ଥାନରେ କିଛି ସମୟପାଇଁ ଅଟକିଲୁ । ଏହି ବାଟ ଦେଇ ମୁଁ ପୂର୍ବରୁ ଯାଇଥିବାରୁ ଏ ସ୍ଥାନ ସମେତ ଆଉ କେତେଗୁଡିଏ ସ୍ଥାନ ମଧ୍ୟ ଦେଖିଥିଲି । ଏ ସ୍ଥାନଟି ଗୋଟିଏ ପାହାଡର ପାଦଦେଶରେ ଥିବା ଏକ ସୁନ୍ଦର ବଗିଚା । ଏହା ମଧ୍ୟ ଦେଇ ପାହାଡରୁ ବାହାରି ଏକ ଝରଣା କୁଳୁ ନାଦରେ ପ୍ରବାହିତ । ନୀଳ ରଙ୍ଗର ପାହାଡ ତଳେ ବିଭିନ୍ନ ରଙ୍ଗର ଗୋଲାପ ଫୁଲ ବଗିଚା । ଝରଣାର ମଝିରେ ମଝିରେ କୃତ୍ରିମ ଉପାୟରେ ସ୍ପ୍ରିଙ୍ଗ ମାନ କରାଯାଇଥବାରୁ ତାହା ଅତ୍ୟନ୍ତ ମନୋରମ ଦେଖାଯାଉଥାଏ । ବାଟରେ ଅନ୍ୟ ଏକ ସ୍ଥାନ । ସୁନ୍ଦର ହିନ୍ଦୁ ମନ୍ଦିର ଓ ତା ସମ୍ମୁଖରେ ଏକ ବିରାଟ ପୁଷ୍କରିଣୀ । ଏଠାରେ ଓହ୍ଲାଇ ଦିଅଁ ଦର୍ଶନକରି ପୁଣି ଆଗକୁ ଚାଲିଲୁଁ । ସେଠାରୁ ଉଭୟ ପାର୍ଶ୍ୱରେ କାଶ୍ମୀରର ବିଖ୍ୟାତ ସେଓ ଫଳ ବଗିଚା ମାଇଲ ମାଇଲ ଧରି ଲାଗି ରହିଥାଏ । ଦୀର୍ଘ ପଥ ଅତିକ୍ରମ କଲାପରେ ଦିନ ପ୍ରାୟ ୧୧ ୧/୨ଟା ବେଳକୁ ପହିଲଗାଁରେ ପହଞ୍ଚିଲୁ । ସେଠାରେ ବୁଲାବୁଲି କରି ମଧ୍ୟାହ୍ନ ଭୋଜନ କଲୁଁ । ଏହି ସ୍ଥାନଟିର ଦୁଇପାଖରେ ବୃକ୍ଷଲତା ପରିପୂର୍ଣ୍ଣ ଉଚ୍ଚ ପର୍ବତମାଳା ଏହି ଦୁଇ ପର୍ବତମାଳାର ମଧ୍ୟଭାଗରେ କ୍ଷୁଦ୍ର ସହର ପହଲିଗାଁ ।

ପରିଦର୍ଶକମାନଙ୍କ ପାଇଁ ଏକ ତୀର୍ଥସ୍ଥାନ ରୂପେ ଦଣ୍ଡାୟମାନ । ଚତୁର୍ଦ୍ଦିଗରେ ବିଭିନ୍ନ ରଙ୍ଗର ଗୋଲାପ ଫୁଲର ବଗିଚା ଏବଂ ତନ୍ମଧରେ ପ୍ରବାହିତ କ୍ଷୁଦ୍ର ନିର୍ଝରିଣୀ ଦର୍ଶକମାନଙ୍କର ମନୋହରଣ କରୁଅଛି । ଦୁଇ ପାର୍ଶ୍ୱସ୍ଥ ପ୍ରାଚେରୀ ସଦୃଶ ଉଚ୍ଚ ପର୍ବତମାଳାର ଶୀର୍ଷସ୍ଥାନ ଶୁଭ୍ର ତୁଷାରବୃତ୍ତ ହୋଇଥିବାରୁ ତାହା ସତେ ଯେପରି କୃଷ୍ଣ କେଶ ଉପରେ ଧଳାରଙ୍ଗର ଗାନ୍ଧିଟୋପୀ ପରିଧାନ କଲାପରେ ସୁନ୍ଦର ଦେଖାଯାଉଅଛି । ଏହି ପଥଦେଇ ହିମାଳୟର ତୁଙ୍ଗ ଶିଖରରେ ଥିବା ବିଶ୍ୱବିଖ୍ୟାତ ଅମରନାଥର ଶିବଲିଙ୍ଗ ଦର୍ଶନ କରିବାକୁ ଅଗଣିତ ଭକ୍ତମାନେ ଯାଆନ୍ତି ବୋଲି ଲୋକମୁଖରୁ ଶୁଣିଲୁ । ସେଠାକୁ ଯିବାପାଇଁ ହେଲେ ଯାତ୍ରୀମାନଙ୍କୁ ପାଦରେ ଚାଲି ବା ଘୋଡା ସାହାଯ୍ୟରେ ଯିବାକୁ ପଡେ । ଯାତ୍ରୀମାନଙ୍କର ସୁବିଧା ପାଇଁ ଏଠାକାର ଲୋକେ ଘୋଡା ରଖିଥିବାର ମଧ ଦେଖାଗଲା । ଯାତ୍ରୀମାନଙ୍କର ବିଶ୍ରାମ ପାଇଁ ମଝିରେ ମଝିରେ ପାନ୍ଥଶାଳା ମଧ ରହିଅଛି । ଘୋଡା ରଖି ଏଠାକାର ଅଧିବାସୀମାନେ ଯାତ୍ରୀମାନଙ୍କୁ ସାହାର୍ଯ୍ୟ କରି ବେଶ ଲାଭବାନ ହେଉଥିବାର ମଧ ଜାଣିବାକୁ ମିଳିଲା । ସେଠାରେ ପରିବ୍ରାଜକ ମାନଙ୍କ ପାଇଁ କେତେକ ହୋଟେଲ ମଧ ରହିଅଛି । ହୋଟେଲ ଗୁଡିକ ସେପରି ବିଶେଷ ଉଚ୍ଚ କୋଟୀର ନ ହେଲେ ମଧ ବେଶ ରୁଚିସମ୍ପନ୍ନ ହୋଇଅଛି । ସରକାରୀ କର୍ମଚାରୀ ବା ସରକାରୀ ଅତିଥିମାନଙ୍କ ପାଇଁ ଛୋଟ ଛୋଟ ପାନ୍ଥଶାଳା ବା ସରକାରୀ ଡାକବଙ୍ଗଳାମାନ ମଧ ଥିବାର ଦେଖାଗଲା । ଆମେ ପ୍ରାୟ ସ୍ତ୍ରୀପୁରୁଷ ମିଶି ୨୦୦ ଜଣ ସେଠାରେ ଦିନ ୧୨ଟା ବେଳେ ପହଞ୍ଚି ଦଳ ବାନ୍ଧି ବିଭିନ୍ନ ବଗିଚା ମାନଙ୍କରେ ଭ୍ରମଣ କଲୁ । କେହି କେହି ଘୋଡାରେ ବସି ଅଳ୍ପବାଟ ଯାଇ ବୁଲାବୁଲି କଲେ । ପର୍ବତର ବହୁ ଉଚ୍ଚରେ ବରଫ ଥିବାରୁ ଏତେ ଅଳ୍ପ ସମୟ ମଧରେ ଏତେ ବାଟ ଯିବା ସମ୍ଭବପର ନ ଥିଲା । ମଧାହ୍ନ ଭୋଜନ ପରେ ବଗିଚାର ବିଭିନ୍ନ ଗଛତଳେ ବସି ସମସ୍ତେ ବିଶ୍ରାମ କଲୁ । ଏଥର ସେପରି ଶୀତ ନ ଥିବାରୁ ବୁଲାବୁଲି କରିବା ବେଶ ଆରାମଦାୟକ ହୋଇଥିଲା ଅଳ୍ପ ଶୀତ ସାଙ୍ଗକୁ ମଝିରେ ମଝିରେ ଖରା ବେଶ ଉପଭୋଗ୍ୟ ହୋଇଥିଲା । ପୂର୍ବଥର ମୁଁ ଏଠାକୁ ଆସିଥିଲା ବେଳେ ଅଧିକ ଶୀତ ଥିବାରୁ ଓଭରକୋଟ ଓ ମୁଣ୍ଡରେ ଟୋପୀ ଦେଇ ମଧ ବାହାରକୁ ବାହାରିବା କଷ୍ଟକର ହେଉଥିଲା । ଅପରାହ୍ନ ପ୍ରାୟ ୩ ୧/୨ଟା ବେଳକୁ ପ୍ରତିନିଧିମାନେ ଯେ ଯାହାର ଗାଡିରେ ଶ୍ରୀନଗର ପ୍ରତ୍ୟାବର୍ତ୍ତନ ଆରମ୍ଭ କଲେ । ସେଠାରୁ ଶ୍ରୀନଗର ୯୫କି.ମି. ଦୂର ପ୍ରାୟ ସଂଧ୍ୟା ୭ଟା ବେଳକୁ ଆମେ ଆସି ଶ୍ରୀନଗରସ୍ଥ ଆମେ ରହୁଥିବା ହୋଟେଲରେ ପହଞ୍ଚିଲୁ ।

ଆଜି ସମ୍ମିଳନୀ ସରିଲାର ୨ୟ ଦିବସ । ଗତକାଲି ପରି ଆଜି ମଧ ପରିଦର୍ଶନର କାର୍ଯ୍ୟକ୍ରମ ରହିଅଛି । ଆଜିପାଇଁ ଦର୍ଶନୀୟ ସ୍ଥାନ ନିରୂପଣ କରାଯାଇଛି କାଶ୍ମୀର ବିଖ୍ୟାତ ସ୍ଥାନ ଗୋଲମାର୍ଗ । କାଶ୍ମୀର ଆସି ଗୋଲମାର୍ଗ ପରିଦର୍ଶନ ନ କଲେ କାଶ୍ମୀର ପରିଦର୍ଶନର କିଛି ମୂଲ୍ୟ ନାହିଁ ବୋଲି ଲୋକେ କହନ୍ତି । ପୂର୍ବଦିନ ପରି ଆଜି ମଧ ସକାଳେ ୮ ୧/୨ଟା ବେଳକୁ ସମସ୍ତ ପ୍ରତିନିଧି ନିଜ ନିଜ ଲୋକଙ୍କ ସହିତ ଅତ୍ୟନ୍ତ ଆଗ୍ରହର ସହକାରେ ଗୋଲମାର୍ଗ ପରିଦର୍ଶନ ଉଦ୍ଦେଶ୍ୟରେ ବାହାରି ପଡିଲୁ । ପ୍ରାୟ ଅଢେଇଘଣ୍ଟା କାରରେ ଯାତ୍ରା କଲାପରେ ଆମେ ଯାଇ ଗୋଲମାର୍ଗ ପହଞ୍ଚିଲୁ । ଏଠାରେ ମଧ ପ୍ରତିନିଧିମାନଙ୍କ ପାଇଁ ବିଶ୍ରାମ ପରିଦର୍ଶନ ଓ ଭୋଜନ ପାଇଁ ସମସ୍ତ ଆୟୋଜନ କରାଯାଇଥାଏ । କାଶ୍ମୀରର ଅନ୍ୟାନ୍ୟ ସ୍ଥାନ ତୁଳନାରେ ଏଠାରେ ପ୍ରବଳ ଶୀତ ହୁଏ । ପୂର୍ବଥର ମୁଁ ଏହିସ୍ଥାନ ପରିଦର୍ଶନ କଲାବେଳେ ଶୀତର ମାତ୍ରା ଏତେ ଅଧିକ ଥିଲା ଯେ ବାହାରେ ଛିଡାହେବା ମଧ ଅସମ୍ଭବ ହୋଇପଡୁଥିଲା ।ଏଥର କିନ୍ତୁ ଶୀତର ମାତ୍ରା ଅଧିକ ନ ଥିଲେ ହେଁ ଅନ୍ୟାନ୍ୟ ସ୍ଥାନ ତୁଳନାରେ ଅପେକ୍ଷାକୃତ ଅଧିକ ଶୀତ ଅନୁଭୂତ ହେଉଥିଲା । ଏଠାରେ ପରିବ୍ରାଜକମାନଙ୍କ ପାଇଁ ବାସିନ୍ଦାମାନେ ବହୁପରିମାଣରେ ଘୋଡା ରଖିଥାଆନ୍ତି । ପରିଦର୍ଶକ ମାନେ ଏହି ଘୋଡାରେ ବରଫାବୃତ ପର୍ବତ ଉପରକୁ ଯାଇ ବୁଲାବୁଲି କରନ୍ତି । ପର୍ବତର ଉପରଭାଗରେ ମଧ ଛୋଟ ଛୋଟ ହୋଟେଲ ଓ ଦୋକାନମାନ ରହିଅଛି । ଗତଥର ଅତ୍ୟଧିକ ଥଣ୍ଡା ହେତୁ ମୁଁ ଏହାର ସୁଯୋଗ ନେଇପାରି ନ ଥିଲି । ଏହି ଘୋଡା ଗୁଡିକ ଅତି ଶାନ୍ତ ଓ ଧୀର । ଏହି ସ୍ଥାନରେ ଲୋକେ ଏତେ ଘୋଡା ରଖିଥାଆନ୍ତି ଯେ ତାହା ଏକ ଘୋଡା ବିକା କିଣା କେନ୍ଦ୍ର ବୋଲି ମନେ ହେଉଥାଏ । ଘୋଡା

ଗୁଡିକ ଏତେ ଶାନ୍ତ ଯେ ସ୍ତ୍ରୀ ଲୋକମାନେ ମଧ୍ୟ ଘୋଡା ଚଢି ପର୍ବତ ଉପରକୁ ଉଠିବାର ଦେଖାଯାଉଥାଏ । ଆମ ଅଧ୍ୟକ୍ଷମାନଙ୍କ ମଧ୍ୟରେ ରାଜସ୍ଥାନର ଅଧ୍ୟକ୍ଷ ଅତ୍ୟନ୍ତ ରସିକ ଓ ମଉଜିଆ ଲୋକ । ସେ ଗୋଟାଏ ଘୋଡାରେ ଚଢି କିଛି ସମୟ ବୁଲାବୁଲି କରି ସମସ୍ତଙ୍କ ମନରେ କୌତୁହଳ ସୃଷ୍ଟିକଲେ । ଏଥର କିନ୍ତୁ ପର୍ବତ ଶିଖରକୁ ସେପରି ବେଶି ସଂଖ୍ୟାରେ ଲୋକ ଯାଉ ନ ଥାଆନ୍ତି କାରଣ ସେଠାରେ ବରଫ ପଡି ନ ଥାଏ । ସେଠାରୁ ଆହୁରି ଅଧିକ ଉଚ୍ଚ ଅଞ୍ଚଳରେ ବରଫ ପଡିଥାଏ । ଉକ୍ତ ପର୍ବତର ସାମାନ୍ୟ କିଛି ଉଚ୍ଚ ପର୍ଯ୍ୟନ୍ତ ସେଠାରେ ଏକ ବିଦ୍ୟୁତଚାଳିତ ରଜ୍ଜୁପଥ ସରକାରଙ୍କ ପର୍ଯ୍ୟଟନ ବିଭାଗ ପକ୍ଷରୁ ରଖାଯାଇଅଛି । ଅବଶ୍ୟ ଶିଙ୍ଗାପୁରର ସହର ଉପକଣ୍ଠରୁ ସମୁଦ୍ର ଉପର ଦେଇ ଅପର ପାର୍ଶ୍ୱରେ ଥିବା ଦୀପକୁ ଯିବା ପାଇଁ ଯେଉଁ ରଜ୍ଜୁପଥ ରହିଅଛି ତାହା ଉନ୍ନତ ଧରଣର । ଏହା ସେ ତୁଳନାରେ ସେତେ ଉନ୍ନତି ନ ହେଲେ ମଧ୍ୟ ଆମୋଦ ଦାୟକ । ମୁଁ ମୋ ସ୍ତ୍ରୀ ସହିତ ଏହି ରଜ୍ଜୁପଥରେ କିଛି ସମୟ ବୁଲାବୁଲି କଲୁ । ଏହାପରେ ସେଠାରେ ଆୟୋଜିତ ମଧ୍ୟାହ୍ନ ଭୋଜନରେ ସମସ୍ତେ ଯୋଗ ଦେଲାପରେ ଶ୍ରୀନଗର ଅଭିମୁଖେ ପ୍ରତ୍ୟାବର୍ତ୍ତନ କଲୁ ଓ ପ୍ରାୟ ଅପରାହ୍ନ ୪ଟା ବେଳେ ଶ୍ରୀନଗରରେ ପହଞ୍ଚି ହୋଟେଲରେ ବିଶ୍ରାମ କଲୁ । କାଶ୍ମୀରକୁ ଆସୁଥିବା ପରିବ୍ରାଜକ ମାନେ ଗୋଲମାର୍ଗ ପରିଦର୍ଶନ ନିଶ୍ଚିତ ଭାବରେ ତାଙ୍କ କାର୍ଯ୍ୟକ୍ରମରେ ରଖି ଥାଆନ୍ତି । ତେଣୁକରି ସେମାନଙ୍କ ପାଇଁ ସେଠାରେ ସଂପୂର୍ଣ୍ଣ କାଷ୍ଠନିର୍ମିତ ଅତ୍ୟାଧୁନିକ ହୋଟେଲମାନ ରହିଅଛି । ଏହି ସବୁ ହୋଟେଲମାନଙ୍କରେ ରହିବା ଓ ଖାଇବା ଅତ୍ୟନ୍ତ ବ୍ୟୟ ବହୁଳ । ଗୋଲମାର୍ଗ କାଶ୍ମୀର ତଥା ଭାରତର ଶେଷ ସୀମା ସେଠାରେ ଦେଖା ଯାଉଥିବା ପର୍ବତମାଳାର ଅପର ପାର୍ଶ୍ୱରେ ପାକିସ୍ଥାନ ଅବସ୍ଥିତ ତେଣୁ ଏ ସ୍ଥାନଟି ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ମଧ୍ୟ । ଭାରତର ଅନ୍ୟରାଜ୍ୟ ଓ ଅଞ୍ଚଳ ଅପେକ୍ଷା କାଶ୍ମୀର ଉପତ୍ୟକା ପରିବ୍ରାଜକ ମାନଙ୍କପାଇଁ ଅତ୍ୟନ୍ତ ଆକର୍ଷଣୀୟ । ତେଣୁ ସବୁଦିନେ ବହୁ ପରିବ୍ରାଜକ ଏଠାକୁ ଆସୁଥିବାରୁ ଏହା ସରକାର ତଥା ସ୍ଥାନୀୟ ଲୋକଙ୍କର ଆର୍ଥିକ ଉନ୍ନତିର ଅଧିକ ସହାୟକ ହୋଇଥାଏ । ଏଠାକାର ମୋଗଲ ଗାର୍ଡେନ ଗୁଡିକର ଝରଣା ଓ ରଙ୍ଗ ବେରଙ୍ଗରେ ଗୋଲାପ ଫୁଲ, ପର୍ବତମାଳା ଗୁଡିକର ମନୋରମ ଦୃଶ୍ୟ ଅତ୍ୟନ୍ତ ବିରଳ । ନୀଳ ବର୍ଣ୍ଣର ପର୍ବତମାଳା ଗୁଡିକର ଶିଖର ଦେଶର ଶ୍ୱେତ ରଙ୍ଗର ବରଫ ମୁକୁଟ ଦର୍ଶକମାନଙ୍କୁ ଅଧିକ ଆକର୍ଷଣ କରେ । ସର୍ବୋପରି ଡାଲହ୍ରଦର ବୋଟ ହାଉସରେ ପାଣି ମଧ୍ୟରେ କାଠ ତିଆରି ଘରେ ରହିବା ମଧ୍ୟ ଅନ୍ୟ ଏକ ଆକର୍ଷଣ । ଏ ସମସ୍ତର ସମାବେଶ ଯଥାର୍ଥରେ କାଶ୍ମୀରକୁ ମର୍ତ୍ତ୍ୟ ବୈକୁଣ୍ଠରେ ପରିଣତ କରିଛି ।

ଏହିପରି ଏକ ସୁନ୍ଦର ପ୍ରାକୃତିକ ପରିବେଶ ମଧ୍ୟରେ ପ୍ରାୟ ସପ୍ତାହେ କାଳ ଭାରତର ୨୫ଟି ରାଜ୍ୟ ଓ ୭ଟି କେନ୍ଦ୍ରଶାସିତ ଅଞ୍ଚଳରେ ପ୍ରାୟ ୨୫୦ ଜଣ ପ୍ରତିନିଧି ତାଙ୍କ ପରିବାର ଗର୍ବଙ୍କ ସହ ଗୋଟିଏ ହୋଟେଲରେ ରହିବା ଖାଇବା ବେଳେ ଏକାଠି ବସି ଖାଇବା ଏକ ମର୍ମସ୍ପର୍ଶୀ ଅଭୁଲା ସ୍ମୃତି । ୭ମ ଦିନ ସକାଳେ ପ୍ରାତଃ ଭୋଜନ ପରେ ସମସ୍ତେ ସମସ୍ତଙ୍କଠାରୁ ବିଦାୟ ନେବାର ଦୃଶ୍ୟ ମଧ୍ୟ ଅତ୍ୟନ୍ତ ଆବେଗ ପୂର୍ଣ୍ଣ ହୋଇଥିଲା । ସେ ଦିନ ପୂର୍ବାହ୍ନ ପ୍ରାୟ ୧୧ଟା ବେଳେ ଶ୍ରୀନଗର ବିମାନଘାଟୀରୁ ଦୀଲ୍ଲୀଅଭିମୁଖେ ଯାତ୍ରା କଲୁ ଏବଂ ଆକାଶମାର୍ଗରେ ପ୍ରାୟ ଏକଘଣ୍ଟା ଯାତ୍ରା କଲାପରେ ଦୀଲ୍ଲିବିମାନଘାଟିରେ ଅବତରଣ କରି ଓଡିଶା ଭବନକୁ ଆସି ଅବସ୍ଥାନ କଲୁଁ ।

## ଉପରାଷ୍ଟ୍ରପତିଙ୍କ ବିଦାୟ ଓ ରାଷ୍ଟ୍ରପତିରୂପେ

## ଦାୟିତ୍ୱ ଗ୍ରହଣ

୧୯୮୭ ମସିହାର ସେପ୍ଟେମ୍ବର ମାସକୁ ମାଳୟର ରାଜଧାନୀ କ୍ୱାଲାଲୁମପୁରଠାରେ ହେବାକୁ ଥିବା ଗ୍ରାମଗୋଷ୍ଠୀ ସଂସଦୀୟ ସମ୍ମିଳନୀର ପ୍ରସ୍ତୁତି ପାଇଁ ଦୀଲ୍ଲୀଠାରେ ଭାରତର ସମସ୍ତ ବିଧାନସଭାର ଅଧ୍ୟକ୍ଷ ଓ ଅଫିସରମାନଙ୍କର

ଏକ ସମ୍ମିଳନୀ ତା ୨୪।୭।୮୭ରିଖକୁ ଆହୂତ ହୋଇଥାଏ । ସି.ପି.ଏ ସମ୍ମିଳନୀରେ କିଏ କେଉଁ ଆଲୋଚ୍ୟ ବିଷୟରେ ଭାଗ ନେବେ ତାହା ଏହି ସମ୍ମିଳନୀରେ ଚୂଡାନ୍ତ କରାଯାଏ ଏବଂ ତା ସଙ୍ଗେ ସଙ୍ଗେ ଭାରତ ସରକାରଙ୍କ ବିଭାଗୀୟ କର୍ମଚାରୀଗଣ ମଧ ଏ ସଂପର୍କରେ ପ୍ରତିନିଧି ମାନଙ୍କୁ ସମ୍ୟକ ଧାରଣା ଦିଅନ୍ତି । ମୋଟାମୋଟି ଭାବରେ କହିବାକୁ ଗଲେ ଗ୍ରାମଗୋଷ୍ଠୀ ସଂସଦୀୟ ସମ୍ମିଳନୀ ପୂର୍ବର ଏହା ଏକ ପ୍ରସ୍ତୁତିପର୍ବ । ଏହି ସମ୍ମିଳନୀରେ ଭାରତର ସମସ୍ତ ରାଜ୍ୟର ବିଧାନସଭା ଅଧକ୍ଷମାନେ ଯୋଗ ଦେଇ ଥାଆନ୍ତି । ସମ୍ମିଳନୀ ସରିବାର ଠିକ ପରଦିନ ଉପରାଷ୍ଟ୍ରପତିଙ୍କ ବିଦାୟ ଉତ୍ସବ ଓ ତହିଁ ପରଦିନ ରାଷ୍ଟ୍ରପତିଙ୍କର ଦ୍ୱାୟିତ୍ୱ ଗ୍ରହଣ ବା ଗାଦିନସିନ ପର୍ବ ଅନୁଷ୍ଠିତ ହେବାର କାର୍ଯ୍ୟକ୍ରମ ଠିକ ହୋଇଥାଏ । ଉକ୍ତ ଉତ୍ସବରେ ଯୋଗ ଦେବା ପାଇଁ କେନ୍ଦ୍ର ସରକାରଙ୍କ ତରଫରୁ ସମସ୍ତ ଅଧକ୍ଷମାନଙ୍କୁ ନିମନ୍ତ୍ରଣ କରାଗଲା ।ଏଭଳି ଏକ ଉତ୍ସବରେ ଯୋଗ ଦେବା ମୋ ପକ୍ଷରେ ଏହାଥିଲା ପ୍ରଥମ । ଶ୍ରୀଯୁକ୍ତ ରାମାସ୍ୱାମୀ ଭେଙ୍କଟ ରମଣ ଭାରତର ଉପରାଷ୍ଟ୍ରପତି ରୂପେ ମନୋନୀତ ହୋଇ କାର୍ଯ୍ୟ ତୁଲାଇଥିଲେ ଏବେ ରାଷ୍ଟ୍ରପତି ଜୈଲସିଂ ଙ୍କ କାର୍ଯ୍ୟକାଳ ପୂରିଯିବା ପରେ ଯେଉଁ ନିର୍ବାଚନ ହୋଇଥିଲା ସେଥିରେ ଶ୍ରୀଯୁକ୍ତ ଭେଙ୍କଟରମଣ ସର୍ବାଧିକ ଭୋଟପାଇ ଜୟଯୁକ୍ତ ହୋଇଥିଲେ । ତେଣୁ ତାଙ୍କୁ ଉପରାଷ୍ଟ୍ରପତି ପଦରୁ ବିଦାୟ ଦେଲାପରେ ରାଷ୍ଟ୍ରପତିଭାବେ ଦାୟିତ୍ୱ ଅର୍ପଣ କରାଯିବାର ଉତ୍ସବ ପାଳିତ ହେବ । ଏଥିପୂର୍ବରୁ ଶ୍ରୀଯୁକ୍ତ ଭେଙ୍କଟ ରମଣ ୧୯୮୦ ନିର୍ବାଚନରେ ନିର୍ବାଚିତ ହୋଇ ଶ୍ରୀମତୀ ଗାନ୍ଧୀଙ୍କ ମନ୍ତ୍ରୀମଣ୍ଡଳରେ ସ୍ଥାନ ପାଇଥିଲେ ଓ ପରେ ଶ୍ରୀଯୁକ୍ତ ରାଜୀବ ଗାନ୍ଧୀଙ୍କ ମନ୍ତ୍ରୀମଣ୍ଡଳରେ ମଧ ଜଣେ ବରିଷ୍ଠ ମନ୍ତ୍ରୀ ପଦରେ ଥିଲେ ।

## ଉପରାଷ୍ଟ୍ରପତିଙ୍କ ବିଦାୟ ଉତ୍ସବ

ତା ୨୪।୭।୮୭ରିଖ ସଂଧ୍ୟା ସୁଦ୍ଧା ପ୍ରିଜାଇଡିଂ ଅଫିସର ମାନଙ୍କର କାର୍ଯ୍ୟକ୍ରମ ଶେଷ ହେଲା । ରାତିରେ ପାର୍ଲ୍ୟାମେଣ୍ଟ ଭବନରେ ଏକ ବଡ ପ୍ରକୋଷ୍ଠରେ ଉପରାଷ୍ଟ୍ରପତିଙ୍କ ବିଦାୟ ଉତ୍ସବ ଆୟୋଜିତ ହେଲା । ଲୋକସଭା ଓ ରାଜ୍ୟସଭାର ସମସ୍ତ ସଭ୍ୟ ପ୍ରଧାନମନ୍ତ୍ରୀଙ୍କ ସମେତ ତାଙ୍କ ମନ୍ତ୍ରୀମଣ୍ଡଳର ସମସ୍ତ ସଦସ୍ୟ ବିଭିନ୍ନ ରାଜ୍ୟ ବିଧାନ ସଭାର ଅଧକ୍ଷ ଗଣଙ୍କ ବ୍ୟତୀତ ବହୁ ମାନ୍ୟଗଣ୍ୟ ବ୍ୟକ୍ତି ସ୍ୱତନ୍ତ୍ରଭାବେ ନିମନ୍ତ୍ରିତ ହୋଇ ଏହି ଉତ୍ସବରେ ଯୋଗ ଦେଇଥିଲେ । ପ୍ରାୟ ସଂଧ୍ୟା ୮ଟା ବେଳକୁ ରାଜ୍ୟ ସଭାର ଉପାଧକ୍ଷା ଶ୍ରୀମତୀ ପ୍ରତିଭା ପଟେଲଙ୍କ ସଭାପତିତ୍ୱରେ ଏକ ନିରାଡମ୍ବର ପରିବେଶ ମଧରେ ବିଦାୟ ଉତ୍ସବ ଆରମ୍ଭ ହେଲା । ପ୍ରତ୍ୟେକ ବିଦାୟ ଦୁଃଖପୂର୍ଣ୍ଣ ହୋଇଥାଏ । ମାତ୍ର ଉପରାଷ୍ଟ୍ରପତିଙ୍କ ଏ ବିଦାୟ ଥିଲା ତାର ବ୍ୟତିକ୍ରମ । ଏ ବିଦାୟ ପର ମୁହୂର୍ତ୍ତରେ ଆଣି ଦେଇଥିଲା ତାଙ୍କ ପାଇଁ ଦେଶର ଶୀର୍ଷତମ ଆସନ । ମଞ୍ଚ ଉପରେ ସଭାପତି ଶ୍ରୀମତୀ ପଟେଲଙ୍କ ବ୍ୟତୀତ ପ୍ରଧାନମନ୍ତ୍ରୀ ଶ୍ରୀଯୁକ୍ତ ରାଜୀବଗାନ୍ଧୀ, ବିଦାୟୀ ରାଷ୍ଟ୍ରପତି ଶ୍ରୀଯୁକ୍ତ ଭେଙ୍କଟରମଣ, ଲୋକସଭାର ଅଧକ୍ଷ ଡକ୍ଟର ବଳରାମ ଝାକର ରାଜ୍ୟସଭା ବିରୁଦ୍ଧଦଳର ନେତା ସି.ପି.ଆଇ (ଏମ) ଦଳର ଶ୍ରୀଯୁକ୍ତ ସୋମନାଥ ଚାଟାର୍ଯ୍ୟ ଆସୀନ ଥବଲେ । ଉତ୍ସବରେ ମୁଖ୍ୟ ଅତିଥବ ଶ୍ରୀଯୁକ୍ତ ରାଜବୀ ଗାନ୍ଧୀ ସମ୍ମାନୀୟ ଅତିଥି ରାଜ୍ୟ ସଭାର ବିରୁଦ୍ଧଦଳର ନେତା ତଥା ଅଧକ୍ଷା ଶ୍ରୀମତୀ ପଟେଲ ପ୍ରଭୃତି ସେମାନଙ୍କର ସଂକ୍ଷିପ୍ତ ଭାଷଣରେ ଶ୍ରୀଯୁକ୍ତ ଭେଙ୍କଟରମଣଙ୍କ ପ୍ରଶାସନିକ ଦକ୍ଷତା ପାଣ୍ଡିତ୍ୟ, ଉଦାରଭାବ ଓ ମହାନୁଭବତା ସଂପର୍କରେ ବହୁ ଉଚ୍ଚ ପ୍ରସଂଶା କରି ବିଦାୟ ବେଳାର ଦୁଃଖ ପ୍ରକାଶ କରିବା ପରିବର୍ତ୍ତେ ରାଷ୍ଟ୍ରପତି ଭାବେ ନିର୍ବାଚିତ ହୋଇ ଦାୟିତ୍ୱ ନେବାକୁ ଯାଉଥିବାରୁ ଆନନ୍ଦ ପ୍ରକାଶ କରିଥିଲେ । ଶେଷରେ ଶ୍ରୀଯୁକ୍ତ ଭେଙ୍କଟରମଣ ତାଙ୍କ ଭାଷଣରେ ଜଣେ ଲୋକ ପ୍ରତିନିଧିର ଦାୟିତ୍ୱ ତଥା କର୍ତ୍ତବ୍ୟ ସଂପାଦନରେ ସଂପର୍କରେ ବହୁ ଉପାଦେୟ ଉପଦେଶମାନ ପ୍ରଦାନ କରିଥିଲେ । ତାଙ୍କ ବିଧାୟକ ଜୀବନର ତଥା ମନ୍ତ୍ରିତ୍ୱ ବେଳର ବହୁ ଅଭିଜ୍ଞତା ବର୍ଣ୍ଣନା କରି ମନ୍ତ୍ରୀମାନଙ୍କୁ ତଥା ବିଧାୟକ ମାନଙ୍କୁ ବହୁ ସୁପରାମର୍ଶ ଦେଇଥିଲେ । ଏହି ଉତ୍ସବ ପ୍ରକୃତରେ ଉପରାଷ୍ଟ୍ରପତିଙ୍କର ବିଦାୟ ଉତ୍ସବ ହୋଇଥିଲେ ହେଁ ତାହା ବିଦାୟ ଉତ୍ସବ ନ ହୋଇ ଏକ ପ୍ରକାର ସ୍ୱାଗତ ଉତ୍ସବର

ପରିଣତ ହୋଇଥିଲା ଅତି ଉତ୍ସାହ ଓ ଆନନ୍ଦ ମଧ୍ୟରେ ବିଦାୟ ଉତ୍ସବ ସଂପନ୍ନ ହେଲାପରେ ତହିଁ ପରଦିନର ରାଷ୍ଟ୍ରପତିଙ୍କ ଗାଗିନସୀନ ପର୍ବ ଅପେକ୍ଷାରେ ସେ ଦିନ ପାଇଁ ସମସ୍ତେ ବିଦାୟ ନେଲୁଁ ।

## "ନୂତନ ରାଷ୍ଟ୍ରପତିଙ୍କ ଦାୟିତ୍ୱ ଗ୍ରହଣ ଓ ପୂର୍ବତନ·ରାଷ୍ଟ୍ରପତିଙ୍କ ବିଦାୟ ଉତ୍ସବ ।"

ଆଜି ତା ୨୫।୭।୮୭ରିଖ । ପୂର୍ବାହ୍ନ ଠିକ ୧୦ ୧/୨ଟା ବେଳକୁ ପାର୍ଲ୍ୟାମେଣ୍ଟର ସେଣ୍ଟ୍ରାଲ ହଲରେ ନୂତନ ରାଷ୍ଟ୍ରପତିଙ୍କ ସପଥ ଗ୍ରହଣ ଉତ୍ସବ ବେଶ ସମାରୋହ ଓ ଗାମ୍ଭୀର୍ଯ୍ୟ ପୂର୍ଣ୍ଣ ବାତାବରଣ ମଧ୍ୟରେ ଆରମ୍ଭ ହେଲା । ମଞ୍ଚ ଉପରେ ନୂତନ ରାଷ୍ଟ୍ରପତି ଶ୍ରୀଯୁକ୍ତ ଭେଙ୍କଟ ରମଣ, ବିଦାୟୀ ରାଷ୍ଟ୍ରପତି ଶ୍ରୀଯୁକ୍ତ ଜ୍ଞୈଲ ସିଂ ଲୋକସଭାର ଅଧକ୍ଷ ଶ୍ରୀଯୁକ୍ତ ଡଃ ବଲରାମ ଝାକର, ରାଜ୍ୟ ସଭା ଉପାଧାକ୍ଷା ଶ୍ରୀମତୀ ପ୍ରତିଭା ପଟେଲ ତଥା ସୁପ୍ରିମ କୋର୍ଟର ମୁଖ୍ୟ ବିଚାରପତି ପ୍ରଭୃତି ସସମ୍ମାନେ ଆସୀନ । ପ୍ରଧାନମନ୍ତ୍ରୀ ଶ୍ରୀଯୁକ୍ତ ରାଜୀବ ଗାନ୍ଧୀ, ଶ୍ରୀମତୀ ଗାନ୍ଧୀ, ମନ୍ତ୍ରୀମଣ୍ଡଳର ସମସ୍ତ ସଭ୍ୟ ଓ ସେମାନଙ୍କ ପରିବାରବର୍ଗ କେତେକ ରାଜ୍ୟର ରାଜ୍ୟପାଳ, ଲୋକସଭା ଓ ରାଜ୍ୟସଭାର ସଦସ୍ୟ, ବିଭିନ୍ନ ବିଧାନସଭାର ଅଧକ୍ଷଗଣ ତଥା ସ୍ୱତନ୍ତ୍ରଭାବେ ନିମନ୍ତ୍ରିତ ହୋଇ ଏଥବରେ ଯୋଗ ଦେଇଥବବା ବିଶିଷ୍ଟ ବ୍ୟକ୍ତି ଓ କୂଟନୀତିଜ୍ଞଙ୍କ ଦ୍ୱାରା ଦର୍ଶକଗେଲେରୀ ଭରପୂର ହୋଇ ରହିଥାଏ । ସେ ଦିନ ଦୀଲ୍ଲୀରେ ଭୀଷଣ ଗରମ ଅନୁଭୂତ ହେଉଥିଲା । ସେଣ୍ଟ୍ରାଲ ହଲରେ ସ୍ଥାୟୀ ଭାବରେ ଲାଗିଥିବା ପଙ୍ଖା ସହିତ ଅସ୍ଥାୟୀ ଭାବରେ ଶୀତଳ ପବନ ସଞ୍ଚାରଣର ବ୍ୟବସ୍ଥା ହୋଇଥିଲେ ହେଁ ତାହା ଲୋକସମାବେଶ ଦୃଷ୍ଟିରୁ ଯଥେଷ୍ଟ ନ ଥିବାରୁ ଦର୍ଶକମାନେ ଭୀଷଣ ଗରମ ଦାଉରେ ହନ୍ତସନ୍ତ ହୋଇ ପଡୁଥିଲେ । ମାତ୍ର ଉତ୍ସବ ସମାପନ ନ ହୋଇଥିବାରୁ କେହି ସେଠାରୁ ଅନ୍ୟତ୍ର ଚାଲିଯାଇପାରୁ ନ ଥିଲେ । ଜଣେ ବର୍ଷୀୟାନ ଚାଜ୍ୟପାଳ ଅତ୍ୟଧିକ ଗରମ ସହ୍ୟ କରି ନ ପାରି ହଠାତ ଚେତନାଶୂନ୍ୟ ହୋଇ ପଡିବାରୁ ତାଙ୍କୁ ଷ୍ଟ୍ରେଚର ଦ୍ୱାରା ବାହାରକୁ ନିଆଯାଇ ଥିଲା ।

ପ୍ରଥମେ ନୂତନ ଭାବେ ନିର୍ବାଚନ ରାଷ୍ଟ୍ରପତି ଶ୍ରୀଯୁକ୍ତ ଭେଙ୍କଟରମଣଙ୍କ ପରିଚୟ ପ୍ରାଦନ କରାଗଲା ଓ ତତପରେ ସୁପ୍ରିମ କୋର୍ଟର ମୁଖ୍ୟ ବିଚାର ପତି ଯଥାବିଧି ତାଙ୍କୁ ଶପଥପାଠ କରାଇଲେ । ଏହାପରେ ବିଦାୟୀ ରାଷ୍ଟ୍ରପତି ଶ୍ରୀଯୁକ୍ତ ଜ୍ଞୈଲସିଂ ନିଜ ଆସନରେ ଆସୀନ ହେବାକୁ ଅନୁରୋଧ କଲେ । ନୂତନ ରାଷ୍ଟ୍ରପତି ଆସନ ଗ୍ରହଣ କଲାପରେ ଜ୍ଞୈଲସିଂ ଭେଙ୍କଟରମଣଙ୍କ ଆସନରେ ଆସି ବସିଲେ । ରାଜ୍ୟସଭାର ଉପାଧକ୍ଷା ଶ୍ରୀମତୀ ପଟେଲ ଏକ କ୍ଷୁଦ୍ର ଉପାଦେୟ ଭାଷଣରେ ନୂତନ ରାଷ୍ଟ୍ରପତିଙ୍କୁ ସ୍ୱାଗତ ସମ୍ବର୍ଦ୍ଧନା ଜଣାଇଲେ ଏବଂ ନୂତନ ରାଷ୍ଟ୍ରପତି ମଧ ତାଙ୍କର ସଂକ୍ଷିପ୍ତ ଭାଷଣରେ ସମସ୍ତଙ୍କୁ କୃତଜ୍ଞତା ଜ୍ଞାପନ କରି ଦେଶବାସୀ ତାଙ୍କୁ ଦେଇଥିବାରୁ ଦାୟିତ୍ୱ ତୁଲାଇବାରେ ତାଙ୍କୁ ସାହାଯ୍ୟ କରିବାପାଇଁ ନିବେଦନ କରିଥିଲେ । ଏହାପରେ ପୂର୍ବତନ ଓ ନୂତନ ରାଷ୍ଟ୍ରପତି ବାହାରକୁ ଆସିଲେ ଏବଂ ନୂତନ ରାଷ୍ଟ୍ରପତି ପୋଲିସ ବାହିନୀର ଅଭିବାଦନ ଗ୍ରହଣକଲା ପରେ ପରେ ପୂର୍ବତନ ରାଷ୍ଟ୍ରପତି ଶ୍ରୀଯୁକ୍ତ ଜୈଲସିଂ ପୂର୍ବରୁ ତାଙ୍କପାଇଁ ଉଦ୍ଦିଷ୍ଟ ନୂତନ ବାସଭବନକୁ ପ୍ରସ୍ଥାନ କଲେ । ଏକ ଘୋଡା ସୱାର ବାହିନୀ ସମ୍ମାନର ସହିତ ତାଙ୍କ ବାଟ କଢାଇ ତାଙ୍କର ନୂତନ ବାସଭବନକୁ ନେଇଗଲେ : ଅଳ୍ପ ସମୟ ପରେ ନୂତନ ରାଷ୍ଟ୍ରପତି ପ୍ରଧାନ ମନ୍ତ୍ରୀ ଶ୍ରୀଯୁକ୍ତ ରାଜୀବଗାନ୍ଧୀଙ୍କ ଗହଣରେ ଶ୍ରୀଯୁକ୍ତ ଜୈଲ ସିଂଙ୍କ ନୂତନ ବାସଭବନକୁ ଯାଇ ତାଙ୍କଠାରୁ ବିଦାୟ ନେଇ ଆସିଲେ । ପୂର୍ବତନ ରାଷ୍ଟ୍ରପତିଙ୍କ ବିଦାୟ ଉତ୍ସବ ଅତ୍ୟନ୍ତ ମର୍ମ୍ମସ୍ପର୍ଶୀ ହୋଇଥିଲା ।

## ମୟୂରଭଞ୍ଜ ମୁକ୍ତି ସଂଗ୍ରାମର ଇତିହାସ ରାଜ୍ୟପାଳଙ୍କ ଦ୍ୱାରା ଉଦ୍‌ଘାଟିତ" ।

ଭାରତର ଅନ୍ୟାନ୍ୟ ଗଡଜାତ ଗୁଡିକ ପରି ପୂର୍ବତନ ମୟୂରଭଞ୍ଜ ରାଜ୍ୟରେ ୧୯୩୯ ଠାରୁ ୧୯୪୮ ମସିହା ପର୍ଯ୍ୟନ୍ତ ଯେଉଁ ସ୍ୱାଧୀନତା ଆନ୍ଦୋଳନ ହୋଇ ଥିଲା ତାର ଏକ ଇତିହାସ ଲେଖିବାକୁ ମୋତେ ବହୁ ଲୋକ

ଅନୁରୋଧ କରୁଥିଲେ । ଏହି ଆନ୍ଦୋଳନରେ ମୂଳରୁ ଶେଷ ପର୍ଯ୍ୟନ୍ତ ମୋର କିଛି ନା କିଛି ଭୂମିକାଥିବାରୁ ପ୍ରାୟ ପ୍ରତ୍ୟେକ ଘଟଣା ସହିତ ମୁଁ ସଂପୃକ୍ତ ଥିଲି । ସ୍ୱର୍ଗୀୟ ଶରତଚନ୍ଦ୍ର ଦାସ ଏହି ପ୍ରଜାମଣ୍ଡଳର ସଭାପତି ଥିଲେ ଏବଂ ତାଙ୍କରି ପ୍ରେରଣାରେ ଅନୁପ୍ରାଣିତ ହୋଇ ମୋ ସମେତ ବହୁ ଯୁବକ ତଥା ଜନ ସାଧାରଣ ଏହି ସକ୍ରି ଆନ୍ଦୋଳନରେ ଯୋଗ ଦେଇ ଏହାକୁ ଏକ ସକ୍ରିୟ ଗଣଅନୁଷ୍ଠାନରେ ପରିଣତ କରିଥିଲେ । ମୁଁ ସବୁବେଳେ ସଭାପତିଙ୍କ ପାଖେ ପାଖେ ରହୁଥିଲି ଓ ସମସ୍ତ ଘଟଣା ସହିତ ଓତଃପ୍ରୋତ ଭାବରେ ଜଡିତ ଥିଲି । ତେଣୁଁ ପରବର୍ତ୍ତୀ ବଂଶଧରମାନଙ୍କ ଅବଗତ ପାଇଁ ସମସ୍ତ ଘଟଣାର ଉଲ୍ଲେଖ ଥିବା ଏକ ପୁସ୍ତକର ଆବଶ୍ୟକତା ଥିଲା । ତେଣୁଁ ମୁଁ ଏକ ଇତିହାସ ଏ ସଂପର୍କରେ ଲେଖି ତଦାନୀନ୍ତନ କେତେଜଣ ପ୍ରଜାମଣ୍ଡଳ କର୍ମୀଙ୍କର ଅନୁମୋଦନ ପାଇଁ ପଠାଇଲି । ସେ ପର୍ଯ୍ୟନ୍ତ ବଞ୍ଚିରହିଥିବା କେତେକ ବିଶିଷ୍ଟ କର୍ମୀଙ୍କ ଅନୁମୋଦନ ଲାଭକଲାପରେ ଓଡିଶାର ପୂର୍ବତନ ମନ୍ତ୍ରୀ ତଥା ରାଜ୍ୟ କଂଗ୍ରେସର କୋଷାଧକ୍ଷ ଶ୍ରୀଯୁକ୍ତ ବସନ୍ତ କୁମାର ବଶ୍ୱାଳଙ୍କ ବ୍ୟକ୍ତିଗତ ଉଦ୍ୟମ ଓ ଆର୍ଥିକ ସହାୟତାରେ ଉକ୍ତ ପୁସ୍ତକଟି ମୁଦ୍ରିତ ହୋଇ ପାରିଲା । ମୁଦ୍ରିତ ହୋଇଥିବା ଏକ ହଜାର ପୁସ୍ତକ ମଧ୍ୟରୁ ସେ ମୋତେ ଦୁଇଶହଟି ବହି ସାଧାରଣରେ ବଣ୍ଟନ ପାଇଁ ଦେଇଥିଲେ । ଉକ୍ତ ପୁସ୍ତକଟିର ଉନ୍ମୋଚନ ଏକ ବିଶେଷ ବ୍ୟକ୍ତି ତଥା ଭାରତର ମୁକ୍ତି ସଂଗ୍ରାମର ଜଣେ ବିଶିଷ୍ଟ ଯୋଦ୍ଧାଙ୍କ ଦ୍ୱାରା କରାଇବା ପାଇଁ ମୋର ଏକାନ୍ତ ଇଚ୍ଛା ଥିଲା । ତେଣୁ ସେତେବେଳର ଓଡିଶାର ମହାମାନ୍ୟ ରାଜ୍ୟପାଳ ଯେ ନିଜେ ଜଣେ ମୁକ୍ତି ସଂଗ୍ରାମର ମୁଖ୍ୟ ଭାଗୀଦାର ଥିଲେ ଓ ଭାରତର ମୁକ୍ତି ଆନ୍ଦୋଳନର ଇତିହାସ ସଂକଳନର ମୁଖ୍ୟ ଦାୟିତ୍ୱ ଗ୍ରହଣ କରିଥିଲେ ତାଙ୍କୁ ଅନୁରୋଧ କରିବାରୁ ସେ ତାଙ୍କର ସଦୟ ସମ୍ମତି ପ୍ରଦାନ କରି ମୋତେ ଉତ୍ସାହିତ କଲେ ।

୧୯୮୭ ମସିହାର ଓଡିଶା ବିଧାନସଭାର ବଜେଟ୍ ଅଧିବେଶନ ପରେ ରାଜ୍ୟପାଳ ଡକ୍ଟର ବିଶ୍ୱମ୍ଭର ନାଥ ପାଣ୍ଡେଙ୍କ ସମ୍ମତି କ୍ରମେ ଏପ୍ରିଲ ମାସ ୧୩ତାରିଖରେ ଆମ୍ବଯୋଡା ଗ୍ରାମଠାରେ ଏକ ଉତ୍ସବର ଆୟୋଜନ କରାଗଲା । ଆମ୍ବଯୋଡା ମୟୂରଭଞ୍ଜ ଜିଲ୍ଲାର ବେତନଟୀ ଥାନା ଅନ୍ତର୍ଗତ ଏକ କ୍ଷୁଦ୍ର ଆଦିବାସୀ ଅଧ୍ୟୁଷିତ ଅନୁନ୍ନତ ଗ୍ରାମ । ଏହି ଗ୍ରାମରେ ସ୍ୱର୍ଗତ ଶରତଚନ୍ଦ୍ର ଦାସ ତାଙ୍କ ନିଜ ଚାଷ ଘରେ ରହି ତାକୁ ଏକ ଆଶ୍ରମରେ ପରିଣତ କରି ମୟୂରଭଞ୍ଜ ପ୍ରଜାମଣ୍ଡଳ ଆନ୍ଦୋଳନ ଆରମ୍ଭରୁ ପରିଚାଳନା କରିଥିବାରୁ ଏହାଥିଲା ମୟୂରଭଞ୍ଜ ମୁକ୍ତି ସଂଗ୍ରାମର ପ୍ରାଣକେନ୍ଦ୍ର । ତେଣୁଁ ସେଦିନ ଏହି ନଗଣ୍ୟ କ୍ଷୁଦ୍ର ପଲ୍ଲୀଟି ମହାମାନ୍ୟ ରାଜ୍ୟପାଳଙ୍କ ଆଗମନରେ ମୁଖରିତ ହୋଇଉଠିଥିଲା ସମସ୍ତ ଗ୍ରାମବାସୀଙ୍କ ମନରେ ଅପୂର୍ବ ଉତ୍ସାହ ଓ ଉଦ୍ଦୀପନା । ସମସ୍ତେ ତତ୍ପର ହୋଇ ଉଠିଥାଆନ୍ତି ମହାମାନ୍ୟ ରାଜ୍ୟପାଳଙ୍କ ଆଗମନ ଓ ଅଭ୍ୟର୍ଥନା ପାଇଁ ମୋର ଅନୁରୋଧ କ୍ରମେ ତହିଁ ପୂର୍ବଦିନ ରାଜ୍ୟପାଳ ସସ୍ତ୍ରୀକ ବାରିପଦା ଆସି ସେଠାରେ ରାତ୍ରିଯାପନ କରିଥିଲେ । ସେଦିନ ଆମ୍ବଯୋଡା ଗ୍ରାମ ସୀମା ମଧ୍ୟରେ ମାନ୍ୟବର ରାଜ୍ୟପାଳଙ୍କ ପାଇଁ ଦୁଇଟି କାର୍ଯ୍ୟକ୍ରମ ରଖାଯାଇଥିଲା । ବେତନଟୀର ଅନତି ଦୂରରେ ସର୍ବସାଧାରଣଙ୍କ ଦାନ ଓ ସ୍ଥାନୀୟ ତହସିଲଦାର ଶ୍ରୀ ମଦନ ମୋହନ ମହାନ୍ତିଙ୍କ ଅକ୍ଲାନ୍ତ ଉଦ୍ୟମ ଫଳରେ ଗଢି ଉଠି ଥିବା ୨୦।୨୫ ଜଣ କୁଷ୍ଠରୋଗୀଙ୍କ ନୂତନ ବସତି ପରିଦର୍ଶନ ଥିଲା ପ୍ରଥମ କାର୍ଯ୍ୟକ୍ରମ ସେଠାରେ ମୁଁ ଓ ମୋ ସ୍ତ୍ରୀ ଉଭୟ ରାଜ୍ୟପାଳ ଦମ୍ପତିଙ୍କୁ ସ୍ୱାଗତ ଜଣାଇବା ପରେ ସେମାନଙ୍କୁ ନେଇ ଆମ୍ବଯୋଡା ଗଲୁଁ । ସେଠାରେ ପହଞ୍ଚି ରାଜ୍ୟପାଳ ସ୍ୱର୍ଗତ ଶରତ ଚନ୍ଦ୍ର ଦାସ ଯେଉଁ ଘରେ ରହି ଆନ୍ଦୋଳନ ପରିଚାଳନା କରୁଥିଲେ ସେ ଘରଟି ପରିଦର୍ଶନ କଲେ । ସେ ଘରଟି ୪୫ବର୍ଷ ପୂର୍ବେ ଯେଉଁ ପରି ଝାଟିମାଟି କାନ୍ଥ ଓ ଟାଳ ଛପର ଥିଲା ଏବେ ବି ସେହିପରି ଅପରିବର୍ତ୍ତିତ ଅବସ୍ଥାରେ ରହିଅଛି । ତାପରେ ସେଠାରେ ଥିବା ଉ.ପ୍ରା. ସ୍କୁଲକୁ ଆସି ଆୟୋଜିତ ସାଧାରଣ ସଭାରେ ଯୋଗ ଦେଇଥିଲେ । ମୋର ଅନୁରୋଧ କ୍ରମେ ରାଜ୍ୟପାଳ ମୁଖ୍ୟ ଅତିଥିଭାବରେ ମୟୂରଭଞ୍ଜ ମୁକ୍ତି ଆନ୍ଦୋଳନର ଇତିହାସ'' ବହିଟି ଉନ୍ମୋଚନ କରିଥିଲେ । ଏହି ସଭାରେ ପ୍ରଜାମଣ୍ଡଳ ଆନ୍ଦୋଳନରେ ଭାଗ ନେଇଥିବା କର୍ମୀମାନଙ୍କ ମଧ୍ୟରୁ ବହୁକର୍ମୀ ଯୋଗ ଦେଇଥିଲେ । ପ୍ରଥମେ ମୁଁ ସଭାରେ ସଭାପତି ଭାବରେ ରାଜ୍ୟପାଳ ଦମ୍ପତିଙ୍କୁ ସ୍ୱାଗତ ଜଣାଇଁ



ରାଜ୍ୟପାଳ ଡାଃ ବିଶ୍ୱମ୍ଭରନାଥ ପାଣ୍ଡେଙ୍କ ଦ୍ୱାରା ଚେତନଟୀ ନିକଟସ୍ଥ ପ୍ରଜାମଣ୍ଡଳ କେନ୍ଦ୍ର ଅଫିସ ଆମ୍ରକୋଦ୍ଧାଠାରେ
ମୟୂରଭଞ୍ଜ ମୁକ୍ତି ଆନ୍ଦୋଳନର ଇତିହାସ ପୁସ୍ତକଟି ଉନ୍ମୋଚିତ

ସ୍ୱର୍ଗତ ଶରତ ଚନ୍ଦ୍ର ଦାସଙ୍କ ତ୍ୟାଗ ଓ ନିଷ୍ଠା ସଂପର୍କରେ ଏକ ସଂକ୍ଷିପ୍ତ ସୂଚନା ଦେଇଥିଲି । ସେତେବେଳର ଅନ୍ଧାରୀ ମୂଳକ ଭଳି ଥିବା ଗଡଜାତ ଶାସନ ବିରୁଦ୍ଧରେ ଶରତ ଚନ୍ଦ୍ର ଦାସଙ୍କ ନେତୃତ୍ୱ କିପରି ହଜାର ହଜାର ନିଷ୍ପେସିତ ଓ ଅତ୍ୟାଚାରିତ ବିଶେଷ କରି ଆଦିବାସୀମାନଙ୍କୁ ଆକୃଷ୍ଟ କରି ଜାତୀୟ ଆନ୍ଦୋଳନରେ ଯୋଗ ଦେବାକୁ ପ୍ରରୋଚିତ କରି ପାରିଥିଲା ତାହା ବିଶଦ ଭାବରେ ବର୍ଣ୍ଣନା କଲି । ମାନ୍ୟବର ରାଜ୍ୟପାଳ ଉତ୍ତର ପ୍ରଦେଶର ଜଣେ ସ୍ୱାଧୀନତା ସଂଗ୍ରାମୀ ଥିବାରୁ ତାଙ୍କ ଭାଷଣରେ ନିଜର ବହୁ ଅଭିଜ୍ଞତା ବର୍ଣ୍ଣନା କରିଥିଲେ । ଏହି ପୁସ୍ତକଟିର ମୂଳ ପାଣ୍ଡୁଲିପି ମୁଁ ପ୍ରସ୍ତୁତ କରିଥିଲେ ହେଁ ତାହା ପ୍ରଜାମଣ୍ଡଳର ଅନ୍ୟଦୁଇଜଣ ସକ୍ରିୟ କର୍ମୀ ଶ୍ରୀଯୁକ୍ତ ରାମଚନ୍ଦ୍ର ମହାପାତ୍ର ଓ ଶ୍ରୀଯୁକ୍ତ ଗୌର ମୋହନ ପ୍ରଧାନ ତର୍ହିଁର କିଛି ଅଂଶ ସଂଶୋଧନ କରିଥିଲେ ।

## ପଣ୍ଡିଚେରୀ ଠାରେ ଗ୍ଲୋରିଆ କୃଷିଫାର୍ମ୍ମ ଓ ଅରବିନ୍ଦ ଆଶ୍ରମ ପରିଦର୍ଶନ

ରାଜ୍ୟ ପରିବେଶ ବିଭାଗର ବିଜ୍ଞାନ ବିଶେଷଜ୍ଞ ଶ୍ରୀଯୁକ୍ତ ରାଧାମୋହନଙ୍କଠାରୁ ପଣ୍ଡିଚେରୀଠାରେ ପ୍ରତିଷ୍ଠାଲାଭ କରିଥିବା ଗ୍ଲୋରିଆ କୃଷି ଫାର୍ମରେ ବିନା ରାସାୟନିକ ସାର ପ୍ରୟୋଗ କରି ମଧ କୃଷି ଉତ୍ପାଦନ ବିଶେଷ ଭାବରେ ବୃଦ୍ଧି କରାଯାଇ ପାରିଛି ଓ ଉକ୍ତ ଉତ୍ପାଦନ ପ୍ରଣାଳୀ ଏପରି ବୈଜ୍ଞାନିକ ଢଙ୍ଗରେ କରାଯାଇ ପାରିଛି ଯେ ତାହା ଆନ୍ତର୍ଜାତିକ କ୍ଷେତ୍ରରେ ମଧ ସମସ୍ତଙ୍କ ଦୃଷ୍ଟି ଆକର୍ଷଣ କରିଥିବାର ଶୁଣି ତାହା ଦେଖିବାକୁ ବିଶେଷ ଭାବରେ ଆଗ୍ରହାନ୍ୱିତ ହେଲି । ଏଭଳି ଏକ ଆଦର୍ଶ କୃଷି ଫାର୍ମରେ ପରୀକ୍ଷିତ ବଜ୍ଞାନର ସଂପ୍ରସାରଣ ପାଇଁ ରାଜ୍ୟ କୃଷି ବିଭାଗକୁ ଜଣାଇବାରୁ ତାଙ୍କର ଜଣେ ଅତିରିକ୍ତ କୃଷି ନିର୍ଦ୍ଦେଶକ ମଧ ମୋ ସହିତ ପଣ୍ଡିଚେରୀ ଯିବାର ସ୍ଥିର ହେଲା । ଏହାଙ୍କ ବ୍ୟତୀତ ପରିବେଶ ବିଭାଗର ବିଶେଷଜ୍ଞ ଶ୍ରୀଯୁକ୍ତ ରାଧାମୋହନ, ବିଧାନସଭା ସେକ୍ରେଟେରୀ ଶ୍ରୀଯୁକ୍ତ ବଳଭଦ୍ର ପାତ୍ର ଓ ମୋର ପ୍ରାଇଭେଟ ସେକ୍ରେଟେରୀ ମଧ ମୋ ସହିତ ଏ ପରିଦର୍ଶନରେ ଯିବାର ସ୍ଥିର ହେଲା । ଆମର ପରିଦର୍ଶନ ସଂକ୍ରାନ୍ତରେ ପଣ୍ଡିଚେରୀ ସରକାର ଓ ଉକ୍ତ ଫାର୍ମକୁ ମଧ ଜଣାଇ ଦିଆଗଲା । ଆମକୁ ହାଇଦ୍ରାବାଦ ଓ ମାଡ୍ରାଜ ଦେଇ ଫାର୍ମକୁ ମଧ ଜଣାଇ ଦିଆଗଲା । ଆମକୁ ହାଇଦ୍ରାବାଦ ଓ ମାଡ୍ରାଜ ଦେଇ ଯିବାକୁ ହେଉଥିବାରୁ ଆନ୍ଧ୍ର ଓ ତାମିଲନାଡୁ ସରକାରଙ୍କୁ ମଧ ଉକ୍ତ ଦୁଇସ୍ଥାନରେ ରାତ୍ରିଯାପନ ଓ ମାଡ୍ରାଜରୁ ପଣ୍ଡିଚେରୀ ଯିବା ଆସିବା କରିବା ପାଇଁ ବ୍ୟବସ୍ଥା କରିବାକୁ ଅନୁରୋଧ କରାଗଲା । ଭୁବନେଶ୍ୱରରୁ ମାଡ୍ରାଜକୁ ସିଧାସଳଖ ବିମାନ ଯୋଗାଯୋଗ ନ ଥିବାରୁ ଆମେ ତା ୯।୧୨।୮୭ରିଖରେ ଭୁବନେଶ୍ୱରରୁ ଉଡାଜାହାଜ ଯୋଗେ ହାଇଦ୍ରାବାଦ ଗଲୁଁ । ହାଇଦ୍ରାବାଦରେ ପହୁଞ୍ଚିଲା ବେଳକୁ ସେଦିନ ଆଉ ମାଡ୍ରାଜ ଯିବା ପାଇଁ ବିମାନ ନ ଥିବାରୁ ବିମାନ ଘାଟିରୁ ଆସି ହାଇଦ୍ରାବାଦ ରାଜ୍ୟ ଅତିଥିଶାଳାରେ ରାଜ୍ୟସରକାରଙ୍କ ଅତିଥିହୋଇ ରହିଲୁଁ । ଆନ୍ଧ୍ର ରାଜ୍ୟସରକାରଙ୍କ ପ୍ରଟୋକଲ ଅଫିସର ଓ ଆନ୍ଧ୍ର ବିଧାନ ସଭାର ଜଣେ କର୍ମଚାରୀ ଆମକୁ ବିମାନ ବନ୍ଦରରୁ ନେଇ ଅତିଥିଶାଳାରେ ଆମର ରହିବାର ସମସ୍ତ ବନ୍ଦୋବସ୍ତ କରି ଦେଲେ । ସେତେବେଳକୁ ରାତି ପ୍ରାୟ ୯ଟା । ତେଣୁଁ ସେଠାରେ ରାତ୍ରି ଯାପନ କରି ପରଦିନ ସକାଳ ଯାତ୍ରା କଲୁଁ । ମାଡ୍ରାଜ ଉଡାଜାହାଜ ଷ୍ଟେସନରେ ଅବତରଣ କଲା ବେଳକୁ ସେଠାକାର ବିଧାନସଭାର ଜଣେ ଅଫିସର ଓ ରାଜ୍ୟ ସରକାରଙ୍କ ପ୍ରଟୋକଲ ଅଫିସର ଆମକୁ ସ୍ୱାଗତ ଜଣାଇଁ ରାଜ୍ୟ ଅତିଥିଶାଳାକୁ ନେଇଗଲେ ଓ ଆମର ମଧାହ୍ନ ଭୋଜନର ବ୍ୟବସ୍ଥା କରିଦେଲେ । ମଧାହ୍ନ ଭୋଜନ ପରେ ଅପରାହ୍ଣରେ ରାଜ୍ୟ ସରକାରଙ୍କ ଗାଡ଼ିରେ ଆମେ ସମସ୍ତେ ପଣ୍ଡିଚେରୀ ଯାତ୍ରା କଲୁଁ । ମାଡ୍ରାଜର ଜଣେ ବିଖ୍ୟାତ ନାଶାକାନ (E.N.T) ବିଶେଷଜ୍ଞଙ୍କ ଠାରେ ମୋର କାନ ପରୀକ୍ଷା କରିବା କଥା କହିଲାରୁ ପ୍ରଥମେ ତାଙ୍କ ଚିକିତ୍ସାଳୟକୁ ନେଇଗଲେ । ଉକ୍ତ ଚିକିତ୍ସକ ଜଣେ ବିଖ୍ୟାତ ଚିକିତ୍ସକ ହୋଇଥିବାରୁ ହଠାତ୍ ତାଙ୍କୁ ସାକ୍ଷାତ କରିବା ସମ୍ଭବପର ହେଲା ନାହିଁ । ଯାହାହେଉ ସେଠାକାର ବିଧାନସଭା ଅଫିସରଙ୍କ ପ୍ରଚେଷ୍ଟା ଫଳରେ ଘଣ୍ଟାଏ କାଳ ଅପେକ୍ଷା କଲା ପରେ ତାଙ୍କର ସାକ୍ଷାତ ମିଳିଲା । ସେ ପ୍ରାୟ ଅଧଘଣ୍ଟା ପର୍ଯ୍ୟନ୍ତ ମୋର କାନ ପରୀକ୍ଷା କରି ସବୁ ଠିକ୍ ଥିବାର ସାର୍ଟିଫିକେଟ ଦେଲେ । ମଝିରେ ମଝିରେ ମୋର

କାନ ପାଚୁଥିବାରୁ ପ୍ରତିକାର ପାଇଁ ମଧ୍ୟ ଔଷଧ ଲେଖିଦେଲେ । ତାଙ୍କର ନିର୍ଦ୍ଧାରିତ ପରୀକ୍ଷା ଫି ବାବଦରେ ଟ୮୦/- ଦେଇ ଆମେ ପ୍ରାୟ ଅପରାହ୍ଣ ୪ଟା ବେଳକୁ ପଣ୍ଡିଚେରୀ ଯାତ୍ରା କଲୁଁ ଓ ରାତି ୧୦ଟା ବେଳେ ସେଠାରେ ପହୁଁଞ୍ଚି ସରକାରୀ ଅତିଥିଶାଳାରେ ଅବସ୍ଥାନ କଲୁଁ । ମାନ୍ଦ୍ରାଜରୁ ସେଠା ସରକାରଙ୍କ ତରଫରୁ ଆମକୁ ଯୋଗାଇ ଦିଆ ଯାଇଥିବା କାର ଦୁଇଟି ମଧ୍ୟ ଆମ ପରିଭ୍ରମଣ ଶେଷ ପର୍ଯ୍ୟନ୍ତ ଆମ ପାଖରେ ରହିଲା ।

## ଚେରିଆ କୃଷି ଫାର୍ମ୍ମ

ତହିଁ ପରଦିନ ଡ଼ିସେମ୍ବର ୧୮ ତାରିଖ ସକାଳେ ପ୍ରସ୍ତୁତ ହୋଇ କୃଷି ଫାର୍ମ୍ମ ପରିଦର୍ଶନ ପାଇଁ ବାହାରି ପଡ଼ିଲୁଁ । ପଣ୍ଡିଚେରୀରୁ ପ୍ରାୟ ୧୭ କି.ମି.ଗଲାପରେ ଅରବିନ୍ଦ ଆଶ୍ରମ ଦ୍ୱାରା ପରିଚାଳିତ ଚେରିଆ କୃଷି ଫାର୍ମ୍ମରେ ପୂର୍ବାହ୍ଣ ୧୦ଟା ବେଳେ ପହୁଁଞ୍ଚିଲୁଁ । ଜଳସେଚନ କରୁଥିବା ଏକ କେନାଲ ନିକଟରେ ଏକଶହ ଏକର ପରିମିତ ଅଞ୍ଚଳରେ ଏହି ଆଦର୍ଶ କୃଷି ଫାର୍ମ୍ମଟି ପ୍ରତିଷ୍ଠିତ । ଆଗରୁ ଆମର ପରିଦର୍ଶନ କାର୍ଯ୍ୟକ୍ରମ ଉକ୍ତ ଫାର୍ମ୍ମର ମେନେଜରଙ୍କୁ ଜଣାଇ ଦିଆଯାଇଥିବାରୁ ଆମେ ପହଞ୍ଚିଲା ମାତ୍ରେ ଉକ୍ତ ଫାର୍ମ୍ମ ମେନେଜର ଶ୍ରୀପାଲ ଆମକୁ ତାଙ୍କର ଫାର୍ମ୍ମ ଅଫିସକୁ ପାଛୋଟି ନେଲେ । ଆଗରୁ ରାଧାମୋହନ ବାବୁ ଏଠାକୁ ଯାଇଥିବାରୁ ମେନେଜର ଶ୍ରୀପାଲଙ୍କ ସହିତ ତାଙ୍କର ଜଣାଶୁଣା ଥିଲା । ତେଣୁ ସେ ଶ୍ରୀପାଲଙ୍କୁ ଆମ ସମସ୍ତଙ୍କ ପରିଚୟ ପ୍ରଦାନ କଲେ । ତାପରେ କିପରି ଭାବରେ ରାସାୟନିକ ସାର ତଥା କୀଟନାଶକ ଔଷଧ ବ୍ୟବହାର ନ କରି ସାଧାରଣ ଗୋବରସାର ଦ୍ୱାରା ହିଁ ପ୍ରଚଳିତ ପ୍ରଣାଳୀରେ ଉତ୍ପାଦନ ବୃଦ୍ଧି କରିବାରେ ସଫଳ କାମ ହୋଇପାରିଛନ୍ତି ତହିଁର ଅଭିଜ୍ଞତା ଓ ତାଙ୍କ ଉଦ୍ଭାବିତ ବୈଜ୍ଞାନିକ ପ୍ରଣାଳୀ ସଂପର୍କରେ ପ୍ରାୟ ଦୁଇଘଣ୍ଟା ଧରି ଆଲୋଚନା ହେଲା । ଆମ ରାଜ୍ୟ କୃଷି ବିଭାଗର ଅତିରିକ୍ତ ନିର୍ଦ୍ଦେଶକ ଜଣେ କୃଷି ବିଶେଷଜ୍ଞ ଆମ ସାଙ୍ଗରେ ଥାଆନ୍ତି । ଜଣେ ସାଧାରଣ ଚାଷୀ ହିସାବରେ ମୋର ମଧ୍ୟ କୃଷି ସଂପର୍କରେ କିଛି ଧାରଣା ଥାଏ । ଆଲୋଚନା ମଝିରେ ଆମେ ଦୁହେଁ ତାଙ୍କୁ ନାନା ପ୍ରକାର ପ୍ରଶ୍ନ ପଚାରୁ ଥାଇଁ ଓ ସେ ସବୁର ସନ୍ତୋଷ ଜନକ ଉତ୍ତର ମଧ୍ୟ ସେ ଆମକୁ ଦେଉଥାଆନ୍ତି । ଯାହାହେଉ ଆମେ ସେ ପର୍ଯ୍ୟନ୍ତ ତାଙ୍କର ବାସ୍ତବ କାର୍ଯ୍ୟକ୍ରମ ଗୁଡିକ ଦେଖିପାରି ନ ଥିଲେ ହେଁ ତାଙ୍କ ଅଭିଜ୍ଞତାର ସଫଳ ରୂପାୟନରେ ଆମେ ସନ୍ତୁଷ୍ଟ ହେଲୁଁ ।

କୃଷି ବିଶେଷଜ୍ଞମାନଙ୍କ ଆଧୁନିକ ଉନ୍ନତ ତଥା ବିଜ୍ଞାନ ସମ୍ମତ କାର୍ଯକ୍ରମ ଉପରେ କେଉଁ କାରଣରୁ ତାଙ୍କର ବିତୃଷ୍ଣା ଜନ୍ମିଲା ସେ ସଂପର୍କରେ ପ୍ରଥମେ ବିସ୍ତୃତ ଭାବରେ ଆଲୋଚନା କଲେ । ଶ୍ରୀ ଅରବିନ୍ଦ ଆଶ୍ରମର ଟ୍ରଷ୍ଟ ତରଫରୁ ଦାୟିତ୍ୱ ନେବାପରେ ପ୍ରଥମେ ସେ ବୈଜ୍ଞାନିକ ପ୍ରଣାଳୀରେ ରାସାୟନିକ ସାର ଓ କୀଟନାଶକ ଔଷଧ ପ୍ରଭୃତିର ବହୁଳ ପ୍ରୟୋଗ କରି କୃଷିକାର୍ଯ୍ୟ ସଂପାଦନ କରୁଥିଲେ । ଥରେ ତାଙ୍କ କୃଷିଫାର୍ମ୍ମ ନିକଟରେ ଜଳସେଚନ ପାଇଁ ପ୍ରବାହିତ କେନାଲରେ ବହୁମାଛ ମରି ଭାସୁଥିବାର ଦେଖି ତହିଁର କାରଣ ଅନୁସନ୍ଧାନରୁ ଜାଣିଲେ ଯେ କୀଟନାଶକ ଔଷଧ ଥିବା ବୋତଲ ଗୁଡିକ କେନାଲରେ ଧୋଇବାଫଳରେ କେନାଲ ଜଳ ବିଷାକ୍ତ ହୋଇ ଏପରି ଦୁର୍ଘଟଣା ଘଟିଅଛି । ତେଣୁ ମାନସିକ ତଥା ନୈତିକ ଦୃଷ୍ଟିରୁ ତଥାକଥିତ ବୈଜ୍ଞାନିକ ପ୍ରଣାଳୀ ପରିତ୍ୟାଗ କରି ପ୍ରାକୃତିକ ଉପାୟରେ ପରିବେଶର ସମସ୍ତ ଦିଗ ସୁରକ୍ଷିତ କରି କାହାରି କିଛି କ୍ଷତି ନ ଘଟାଇ ଆମର ପ୍ରଚଳିତ ପ୍ରଣାଳୀରେ କିଛି ବୈଜ୍ଞାନିକ ବ୍ୟବସ୍ଥା ମିଶାଇ ବର୍ତ୍ତମାନର ନୂତନ ପ୍ରଣାଳୀ ଉଦ୍ଭାବନ କରି ତଦ୍ୱାରା ଆଶାଜନକ ଉତ୍ପାଦନ ବୃଦ୍ଧି କରି ପାରିଛନ୍ତି ବୋଲି ସେ ଆମ୍ଭମାନଙ୍କୁ ବିସ୍ତୃତ ଭାବରେ ବୁଝାଇଲେ । ବର୍ତ୍ତମାନର ବୈଜ୍ଞାନିକ ପ୍ରଣାଳୀରେ ଉଦ୍ଭାବିତ ହୋଇଥିବା ଅଧିକ ଅମଳକ୍ଷମ ଧାନ ଚାଷ ନ କରି ଆମର ପୁରୁଣା ଦେଶୀୟ ପ୍ରଚଳିତ ଧାନ ଗୁଡିକର ଚାଷ କେବଳ ଗୋବର ଓ କମ୍ପୋଷ୍ଟ ଖତ ସାହାଯ୍ୟରେ କରି ଆଶାଜନକ ଭାବରେ ଉତ୍ପାଦନ ଫଳ ବୃଦ୍ଧି ହୋଇ ପାରିଛି । ଗୋଟିଏ ଖର୍ଚ୍ଚରେ ଧାନଚାଷ, ଦୁଗ୍ଧ ଉତ୍ପାଦନ, ଫଳ ଓ ମତ୍ସ୍ୟଚାଷ ତଥା

ହଂସ ପାଳନ କରି ଅଣ୍ଡା ଉତ୍ପାଦନ ପ୍ରଭୃତି କରି ପାରୁଥିବାରୁ ତାଙ୍କ କୃଷିଫାର୍ମ ସ୍ୱାବଲମ୍ୱୀ ହୋଇ ପାରିଥିବା ବିଷୟ ମଧ ସେ ଆମ୍ଭମାନଙ୍କୁ ଜଣାଇଲେ । ପ୍ରଗାଢ ଚେଷ୍ଟା ଓ ଅଧ୍ୟବସାୟ ଯୋଗୁଁ ତାଙ୍କର କୃଷି କାର୍ଯ୍ୟ ଓ ଉତ୍ପାଦନର ସଫଳତା ସଂପର୍କରେ ଅନୁଧ୍ୟାନ କରିବାପାଇଁ ଭାରତର ବିଭିନ୍ନ ପ୍ରାନ୍ତରୁ ତଥା ବିଦେଶରୁ ମଧ କୃଷି ବୈଜ୍ଞାନିକମାନେ ଆସି ସନ୍ତୋଷ ପ୍ରକାଶ କରିଥିବା ବିଷୟ ମଧ ସେ ଆମକୁ କହିଲେ । ଉକ୍ତ ଫାର୍ମରେ ୨୦୦ରୁ ଉର୍ଦ୍ଧ୍ୱଗାଈ ପାଳନ କରାଯାଉଛି । ତାଙ୍କ ଦେହରୁ ଟିଙ୍କ ଓ ଅନ୍ୟାନ୍ୟ କୀଟ ଗୁଡିକୁ ଖାଇ ନଷ୍ଟ କରିବା ପାଇଁ ହଂସ ପାଳନ କରାଯାଉଛି । ଗାଈ ଗୁଡ଼ିକ ଯେଉଁ ସ୍ଥାନରେ ବନ୍ଧା ଯାଆନ୍ତି ସେ ସ୍ଥାନରେ ମାଟି ମଳମୂତ୍ର ତ୍ୟାଗ ଫଳରେ ଉର୍ବର ହୋଇଥାଏ । ଉକ୍ତ ଉର୍ବର ମାଟି ପ୍ରତି ୬ମାସରେ ଥରେ ଲେଖାଏଁ ସେଠାରୁ ଉଠାଇ ନେଇ ଫଳଗଛମୂଳରେ ବା ଅନ୍ୟ ଅନୁର୍ବର ସ୍ଥାନରେ ପକାଯାଏ ଏବଂ ମାଟି ଉଠିଯିବା ସ୍ଥାନରେ ଅନ୍ୟମାଟି ପକାଯାଇ ସେ ସ୍ଥାନ ପୂରଣ କରାଯାଏ । ଏହି ଉର୍ବରମାଟି ପକାଯିବା ସ୍ଥାନରେ ପନିପରିବା ଚାଷ କରାଯାଏ । ଗାଈଗୋରୁଙ୍କ ଗୋବର ଓ ମୂତ୍ର ଯୋଗେ ବଡ ଧରଣର ୪ଟି ଗୋବର ଗେସ୍ ଯୋଜନା କାର୍ଯ୍ୟକାରୀ ହୋଇ ତହିଁରୁ ଉତ୍ପାଦିତ ଗେସ୍ ସାହାଯ୍ୟରେ ଆଲୁଅ ଓ ରନ୍ଧନ ପାଇଁ ଆବଶ୍ୟକ ଜାଳେଣୀ ଯୋଗାଇ ଦିଆଯାଇପାରୁଛି । ଉକ୍ତ ଯୋଜନାରୁ ଗେସ୍ ଉତ୍ପାଦନ ହେଲାପରେ ତହିଁରୁ ନିର୍ଗତ ତରଳ ଗୋବରକୁ ନାଳ ସାହାଯ୍ୟରେ ନେଇ କେତେକ ଛୋଟ ଛୋଟ ଗଡିଆକରି ତହିଁରେ ପକାଯାଇଅଛି । ସେଠାରେ ଥିବା ପାଣିରେ ସେହି ତରଳ ଗୋବର ମିଶିଯାଇ ପୂରା ଗୋବର ପାଣିରେ ପରିଣତ ହେଲାପରେ ଉକ୍ତ ପାଣିକୁ ଡ଼ିଜେଲପମ୍ପ ସାହାଯ୍ୟରେ ପକ୍କାକେନାଲରେ ନେଇ ଧାନ ଚାଷ ହେଉଥିବା କ୍ଷେତରେ ଓ ଅନ୍ୟାନ୍ୟ ଚାଷ ହେଉଥିବା ଫସଲରେ ଜଳସେଚନରୂପେ ମଡାଯାଉଥିବାରୁ ଉକ୍ତ ଜମିର ଉର୍ବରଶକ୍ତି ଅଭୂତ ଭାବେ ବୃଦ୍ଧି ପାଇ ଯଥେଷ୍ଟ ଉତ୍ପାଦନ ଅତିକ୍ରମ ଖର୍ଚ୍ଚରେ କରାଯାଇ ପାରୁଛି । ତେଣୁ କୌଣସି ପ୍ରକାର ରାସାୟନିକ ସାର ବ୍ୟବହାର ନ କରି ମଧ ଦେଶୀ ପ୍ରଣାଳୀ ଓ ଗୋବର ଖତ ସାହାଯ୍ୟରେ କୃଷି ଉତ୍ପାଦନ ଆଶା ଜନକ ଭାବେ ବୃଦ୍ଧି ପାଇଛି । ଅପର ପକ୍ଷରେ ରାସାୟନିକ ସାର ଅତ୍ୟଧିକ ପରିମାଣରେ ପ୍ରୟୋଗକରି ପ୍ରଥମ ଅବସ୍ଥାରେ ଉତ୍ପାଦନ ବଢାଇ ପରେ ଉକ୍ତ ଜମିଗୁଡିକ ଯେପରି ଭାବରେ ନଷ୍ଟ ହୋଇ ଯାଉଛି ଓ ଉତ୍ପାଦିକା ଶକ୍ତି ହରାଇ ବସୁଛି ସେଥିରୁ ଏହି ପ୍ରଣାଳୀ ପ୍ରୟୋଗଦ୍ୱାରା ଜମିକୁ ରକ୍ଷା କରାଯାଇ ପାରୁଛି ଓ ସବୁଦିନ ପାଇଁ ଜମିର ଉର୍ବରତା ସୁରକ୍ଷିତ ହୋଇପାରୁଛି ।

ଯେଉଁ ଛୋଟ ଗଡିଆ ଗୁଡିକରୁ ସାରପାଣି ନେଇ ଜମିରେ ଜଳସେଚନ କରାଯାଇଛି । ତହିଁରେ ମାଛ ଚାଷ କରି ମଧ ଲାଭବାନ ହୋଇ ପାରୁଥିବାର ଜଣାଗଲା । ଗାଈ ଗୋରୁଙ୍କୁ ବିଭିନ୍ନ କୀଟ କବଳରୁ ରକ୍ଷା କରି ପାରୁଥିବା ହଂସଗୁଡିକ ଠାରୁ ଉତ୍ପାଦିତ ଅଣ୍ଡା ବିକ୍ରୟ କରିବା ଦ୍ୱାରା ଫାର୍ମର ଆୟ ବୃଦ୍ଧି ମଧ ହୋଇ ପାରୁଛି । କଦଳୀ ଚାଷ କରି ଆଶ୍ରମକୁ ପାଚିଲା ଓ କଞ୍ଚା କଦଳୀ ତଥା ବିଭିନ୍ନ ପ୍ରକାରର ପରିବା ଯୋଗାଇ ଦିଆଯାଇପାରୁଛି । ଫଳ ବଗିଚାରେ କଦଳୀ ଓ ନଡିଆ ଚାଷ ହେବା ସଙ୍ଗେ ସଙ୍ଗେ ଗୋଖାଦ୍ୟ ମଧ ଉତ୍ପାଦିତ ହୋଇପାରୁଛି । ଏଠାରୁ ୧୭କି.ମି. ଦୂରରେ ପଣ୍ଡିଚେରୀ ଠାରେ ଥିବା ଶ୍ରୀଅରବିନ୍ଦ ଆଶ୍ରମକୁ ଏହି କୃଷି ଫାର୍ମରୁ ଦୈନିକ ଆବଶ୍ୟକ ପରିମାଣରେ ଚାଉଳ, ଗହମ, ପାଞ୍ଚହଜାର ଫଳ, ପନିପରିବା ପ୍ରତିଦିନ ୫୦୦ ଲିଟର ଦୁଧ ଅକ୍ଳେଶରେ ଯୋଗାଇ ଦିଆଯାଇ ପାରୁଛି । ଏହା ଏକ ମିଶ୍ରିତ ଫାର୍ମ ହୋଇଥିବାରୁ ଏଠାରେ ଧାନ ଚାଉଳ ଗହମ ଦୁଧ ଅଣ୍ଡା ମାଛ ବିଭିନ୍ନ ପ୍ରକାରର ଫଳ ଓ ପନିପରିବା ପ୍ରଭୃତି ଉତ୍ପାଦିତ ହୋଇପାରୁଛି ଓ ସର୍ବୋପରି ଶ୍ରୀଯୁକ୍ତ ପାଲଙ୍କ ପରି ଜଣେ ଅତି ନିଷ୍ଠାପର, ଅଧ୍ୟବସାୟୀ ତଥା ନୂଆନୂଆ ଜିନିଷ ଉଦ୍ଭାବନ କରିବାର ଦୃଢ ମନୋବଳ ତଥା ଧୈର୍ଯ୍ୟ ଯୋଗୁଁ ଏହା ଏକ ଆଦର୍ଶ କୃଷି ଫାର୍ମରେ ପରିଣତ ହୋଇଥିବାର ତାଙ୍କର ଚିନ୍ତା ଓ କାର୍ଯ୍ୟରୁ ଜଣାପଡୁଥିଲା । ଉକ୍ତ ଫାର୍ମରେ ମୟୂରଭଞ୍ଜ ଜିଲ୍ଲାର ଅମର୍ଦ୍ଦା ଅଞ୍ଚଳର ମଙ୍ଗଳପୁର ଗ୍ରାମର କୃଷ୍ଣନାମକ ଜଣେ ଯୁବକ ଥିବାର ଦେଖି ଅତ୍ୟନ୍ତ ଆନନ୍ଦିତ ହେଲି । ସେ ଶ୍ରୀଯୁକ୍ତ ପାଲଙ୍କର ଅତି ବିଶ୍ୱାସୀ ଓ ସହଯୋଗୀ ଭାବେ କାମ କରୁଥିଲେ ସେ ଆଗରୁ ମୋତେ ଜାଣନ୍ତି ଓ ହରପୁର ଗ୍ରାମପଞ୍ଚାୟତର ସରପଞ୍ଚ ଶ୍ରୀ ଦୈତାରୀ କୃଷ୍ଣଙ୍କ ଭାଇ ବୋଲି ମୋତେ

ତାଙ୍କର ପରିଚୟ ଦେଲେ । ଏହି ଫାର୍ମ୍ମ ତରଫରୁ ଓଡିଶାର ଜଗତସିଂହପୁର ଅଞ୍ଚଳରେ ଏକ ଛୋଟ ଧରଣର କୃଷି ଫାର୍ମ୍ମ ଆରମ୍ଭ କରାଯାଇଥିବା ବିଷୟ ମଧ ତାଙ୍କଠାରୁ ଶୁଣିଲୁ । ଉକ୍ତ କୃଷିଫାର୍ମ୍ମରେ ଆଉ ଗୋଟିଏ ଭଲ ଜିନିଷ ଦେଖିଲି । ସେଠାକାର ଧାନ କିଆରି ଗୁଡିକର ହିଡରେ ବାବୁଲ ନାମକ ଏକ ପ୍ରକାର ଗୋଖାଦ୍ୟ ଯୋଗାଉଥିବା ଗଛ ଲଗାଯାଇଅଛି । ସେଗୁଡିକରେ ପତ୍ର ଗାଈକୁ ଖାଇବାକୁ ଦେଲେ କ୍ଷୀର ବୃଦ୍ଧି ହୁଏ । ଏଥିପାଇଁ କିଛି ଖର୍ଚ୍ଚନାହିଁ । ଶ୍ରୀଯୁକ୍ତ ପାଲ ଆମ ପାଇଁ ସେଠାରେ ମଧ୍ୟାହ୍ନ ଭୋଜନର ବ୍ୟବସ୍ଥା କରିଥିଲେ ଓ ଭୋଜନପରେ ଆମେ ବିଶ୍ରାମନେଲୁ ।

## ''ଅରୋଭିଲ''

ଅପରାହ୍ନରେ ସେଠାରୁ ଅଳ୍ପଦୂରରେ ଥିବା ଶ୍ରୀଅରବିନ୍ଦଙ୍କ ଆଦର୍ଶରେ ଅନୁପ୍ରାଣୀତ କେତେକ ବିଦେଶୀ ନାଗରିକମାନଙ୍କ ଦ୍ୱାରା ପ୍ରତିଷ୍ଠିତ ଅନ୍ୟ ଏକ ସଂସ୍ଥା ଆରୋଭିଲ ପରିଦର୍ଶନରେ ଗଲୁ । ସେଠାରେ ଦାୟିତ୍ୱରେ ଥିବା ଜଣେ ବିଦେଶୀ ମହିଳା ଆମକୁ ପାଛୋଟି ନେଇ ତାଙ୍କ ମୁଖ୍ୟ କାର୍ଯ୍ୟାଳୟରେ ବସାଇଲେ । ଏହି କାର୍ଯ୍ୟାଳୟଟି ସେମାନଙ୍କର ବିଭିନ୍ନ କାର୍ଯ୍ୟକ୍ରମର କେନ୍ଦ୍ରସ୍ଥଳ ଓ ଶ୍ରୀଅରବିନ୍ଦ ଓ ଶ୍ରୀମାଙ୍କ ଦର୍ଶନର ମଧ ପ୍ରଚାର କେନ୍ଦ୍ର ରୂପେ କାର୍ଯ୍ୟ କରୁଥିବାର ଦେଖିଲୁ । ଶ୍ରୀ ଅରବିନ୍ଦଙ୍କ ଚିନ୍ତାଧାରା ପ୍ରକାଶ ପାଉଥିବା ଅନେକ ଫଟୋଚିତ୍ର ସାଧାରଣଙ୍କ ଶିକ୍ଷା ଓ ଚେତନା ସୃଷ୍ଟି ପାଇଁ କାନ୍ଥମାନଙ୍କରେ ଟଙ୍ଗା ଯାଇଛି । ଉକ୍ତ ସଂସ୍ଥାରେ ପ୍ରାୟ ୬୦୦ ଜଣ ବିଦେଶୀ ନାଗରିକ (ସ୍ତ୍ରୀ ଓ ପୁରୁଷ ମିଶି) ରହି ବିଭିନ୍ନ କାର୍ଯ୍ୟ ତୁଲାଉଥିବା ବିଷୟ ଉକ୍ତ ମହିଳା ଜଣକ ଆମଠାରେ ପ୍ରକାଶ କଲେ । ଏହି ସଂସ୍ଥାଉକ୍ତ ବିଦେଶୀ ନାଗରିକଙ୍କ ଦ୍ୱାରା ଗଠିତ ଏକ ନ୍ୟାସ ଦ୍ୱାରା ପରିଚାଳିତ । ଶ୍ରୀମା ଜୀବିତ ଥିବା ସମୟରେ ତାଙ୍କରି ପ୍ରେରଣା ଓ ଆକର୍ଷଣରେ ଯେଉଁ ବିଦେଶୀ ନାଗରିକମାନେ ଶ୍ରୀଅରବିନ୍ଦ ଆଶ୍ରମରେ ଆସି ରହିଥିଲେ ସେମାନେ ସରକାରଙ୍କ ଏକ ବିରାଟ ଅନୁର୍ବର ଓ ଖାଲ ଢିପ ଅବସ୍ଥାରେ ଥିବା ଏହି ଜମିକୁ ଏକ ଟ୍ରଷ୍ଟ ନାମରେ ନେଇ ବହୁ ପରିଶ୍ରମ କରି ସେଠାରେ ଧାନ ତଥା ଅନ୍ୟାନ୍ୟ ଚାଷ ପାଇଁ କିଛି ଜମି ଆବାଦ ଯୋଗ୍ୟ କରି କୃଷି ଉତ୍ପାଦନ କରୁଥିବାରୁ ତଥା ତହିଁରୁ ଅଧିକ ଅଞ୍ଚଳରେ ବନୀକରଣ ଯୋଜନାନୁଯାୟୀ ଅତିସୁନ୍ଦର ଘଞ୍ଚ ଜଙ୍ଗଲ ସୃଷ୍ଟି କରି ପାରିଥିବାର ଦେଖି ଅତ୍ୟନ୍ତ ଆନନ୍ଦିତ ହେଲୁ । ଯେଉଁ ସ୍ଥାନ ଅତ୍ୟନ୍ତ ଅନୁର୍ବର ଅବସ୍ଥାରେ ଖାଲ ଢିପ ହୋଇ ପଡିରହିଥିଲା ଓ ସାମାନ୍ୟ ଘାସ ମଧ ଜନ୍ମୁ ନଥିଲା ସେହି ସ୍ଥାନରେ ଚାଷ ଜମି ସୃଷ୍ଟି ହେବା ସଙ୍ଗେ ସଙ୍ଗେ ଏକ ଘନ ଜଙ୍ଗଲ ସୃଷ୍ଟି ହୋଇ ବିଭିନ୍ନ ପକ୍ଷୀମାନଙ୍କର କଳରବରେ ପରିପୂର୍ଣ୍ଣ ହୋଇ ଉଠିଛି ତାହା ଦେଖି ଯେ କୌଣସି ବ୍ୟକ୍ତି ସ୍ତମ୍ଭୀଭୁତ ହେବ ।

ଉକ୍ତ ଟ୍ରଷ୍ଟ ସରକାରଙ୍କ ଠାରୁ ଜମି ପଟାନେଇ ଜମିର ଉନ୍ନତି ସାଧନ କରି ତାହାକୁ ଉତ୍ପାଦନ କ୍ଷମ କରିବା ସଙ୍ଗେ ସଙ୍ଗେ ବିସ୍ତୀର୍ଣ୍ଣ ଅଞ୍ଚଳରେ ଜଙ୍ଗଲ ସୃଷ୍ଟି କରି କେବଳ ଯେ ପରିବେଶ ସୁରକ୍ଷା କରିପାରିଛି ସେତକ ନୁହେଁ ଅଧିକନ୍ତୁ ବିଭିନ୍ନ ହସ୍ତଶିଳ୍ପ ଯୋଜନା କାର୍ଯ୍ୟକାରୀ କରି ବହୁ ସ୍ଥାନୀୟ ଲୋକଙ୍କୁ ଧନ୍ଦା ଯୋଗାଇଛି ଓ ପରିଣାମରେ ଟ୍ରଷ୍ଟ ସ୍ୱାବଲମ୍ବୀ ହୋଇ ପାରିଛି ବୋଲି ଜାଣିବାକୁ ପାଇଲୁଁ । ଶ୍ରୀମାଙ୍କ ମୃତ୍ୟୁପରେ ଶ୍ରୀଅରବିନ୍ଦ ଆଶ୍ରମରେ ଥିବା ବିଦେଶୀ ନାଗରିକ ଓ ଭାରତୀୟ ମାନଙ୍କ ମଧରେ ସେଠାକାର ପରିଚାଳନା କାର୍ଯ୍ୟରେ ମନୋମାଳିନ୍ୟ ଘଟି ସରକାରୀ ହସ୍ତକ୍ଷେପର ଆବଶ୍ୟକତା ପଡିଲା । ଯାହାହେଉ ଉକ୍ତ ବିବାଦର ସମାଧାନ ପାଇଁ ବିଦେଶୀ ନାଗରିକମାନେ ଶ୍ରୀଅରବିନ୍ଦ ଆଶ୍ରମରୁ ଅଲଗା ହୋଇ ଏହି ଅରୋଭିଲ ସଂସ୍ଥା ଗଠନ କରି ଶ୍ରୀଅରବିନ୍ଦ ଓ ଶ୍ରୀମାଙ୍କ ମହାନ ଆଦର୍ଶର ସଫଳ ରୂପାୟନ ପାଇଁ ଏଠାରେ ନିଜକୁ ନିୟୋଜିତ କରିଅଛନ୍ତି । ତାପରେ ମୁଖ୍ୟ କାର୍ଯ୍ୟାଳୟରୁ ଯାଇ ସେଠାକାର ଅନ୍ୟାନ୍ୟ କାର୍ଯ୍ୟକ୍ରମ ପରିଦର୍ଶନ କଲୁଁ । ସେଠାରେ ସେହି ଜଙ୍ଗଲ ଭିତରେ ବୁଲୁଥିଲାବେଳେ ସେହି ଜଙ୍ଗଲ ଦାୟିତ୍ୱରେ ଥିବା ଜଣେ ବିଦେଶୀ ନାଗରିକଙ୍କୁ ଭେଟିଲୁ । ସେ ଗୋଟେ ହାପ୍‌ପେଣ୍ଟ ଓ ଗଞ୍ଜି ପିନ୍ଧି ଗୋଟିଏ ଘରତିଆରି କାମରେ ଲାଗିଥିଲେ । ତାଙ୍କର ମନୋବଳ ଓ କାର୍ଯ୍ୟ କରିବାର

ନିଷ୍ଠା ଅବଶ୍ୟ ପ୍ରସଂଶନୀୟ । ଜଣେ ବିଦେଶୀ ନାଗରିକ ଦୂର ଦେଶରୁ ଆସି ଏହି ଅପନ୍ତରା ସ୍ଥାନରେ ଗୋଟିଏ ଛୋଟ ଘରେ ଜଙ୍ଗଲ ମଧ୍ୟରେ ରହି ଯେଉଁ କାମ କରୁଛନ୍ତି ତାହା ଏକ ସାଧନା ବୋଲି ନିଶ୍ଚୟ ସ୍ୱୀକାର କରିବାକୁ ପଡିବ । ଏତେ ଅଳ୍ପ ଦିନ ମଧ୍ୟରେ ଏତେ ବଡ ମୋଟେଇର ଗଛ କିପରି ହୋଇପାରିଛି ବୋଲି ତାଙ୍କୁ ପ୍ରଶ୍ନକଲାରୁ ସେ ଉକ୍ତ ଗଛ ଗୁଡିକର ଚାରା ବା ମଞ୍ଜି ଏଠା ଜଳବାୟୁକୁ ସୁହାଇଲା ଭଳି ଗବେଷଣା କରି ବାହାରୁ ଆଣି ଲଗାଇଛନ୍ତି ବୋଲି ଆମକୁ କହିଲେ । ଏହି ବିଦେଶୀ ଗଛ ଗୁଡିକ ମାତ୍ର ୧୦।୧୨ ବର୍ଷ ମଧ୍ୟରେ ଅଦ୍ଭୁତ ଭାବରେ ବଢି ମହାଦ୍ରୁମରେ ପରିଣତ ହୋଇଛନ୍ତି । ସେ ଜଙ୍ଗଲ ମଧ୍ୟରେ ବୁଲି ବୁଲି ଅତି ଆଗ୍ରହର ସହିତ ଆମକୁ ସବୁ ଦେଖାଉଛନ୍ତି ବୁଲିବା ଅବସରରେ ଜାଣିଲୁ ଯେ ଉକ୍ତ ଜଙ୍ଗଲରେ ପକ୍ଷୀ ଛଡା ଅନ୍ୟ କୌଣସି ଜୀବଜନ୍ତୁ ନାହାନ୍ତି, ମାତ୍ର ଜଙ୍ଗଲ ବଢିଯିବାପରେ ବିଭିନ୍ନ ବିଷଦର ସାପ ଥିବା କଥା ସେ ପ୍ରକାଶ କଲେ । ଏ ଅବସ୍ଥାରେ ସେ ଏକାକୀ ଏଠାରେ କିପରି ରହିଛନ୍ତି ବୋଲି ପଚାରିବାରୁ ସେ କହିଲେ ଯେ ସେ କେବେହେଲେ ସାପ ମାରନ୍ତି ନାହିଁ, ତେଣୁ ତାଙ୍କର ସାପ ପ୍ରତି ଭୟ ମଧ୍ୟ ନାହିଁ । ସେ ଯେଉଁଠାରେ ରହନ୍ତି ତାର ଅତି-ନିକଟରେ ଅତି ବିଷଧର ସର୍ପ ଥିବାର ସେ ବରାବର ଦେଖିଥିଲେ ହେଁ ଉକ୍ତ ସାପ କେବେହେଲେ ତାଙ୍କୁ ବିପଦ ହୋଇନାହିଁ । ଏ ସଂପର୍କରେ ମୋର ମହାତ୍ମା ଗାନ୍ଧୀଙ୍କ ବିଷୟରେ ଗୋଟିଏ କଥା ମନେ ପଡେ । ସ୍ୱାଧୀନତା ପ୍ରାପ୍ତିର ବହୁ ପୂର୍ବରୁ ଗାନ୍ଧୀଜୀ ଥରେ ଓଡିଶାରେ ପଦଯାତ୍ରା କରୁଥିଲେ । ଦିନେ ରାତିରେ ଅତ୍ୟଧିକ ଗରମ ହେବାରୁ ମୁକ୍ତ ଆକାଶତଳେ ଛୋଟ ଛୋଟ ଗଛପତ୍ର ଥିବା ଏକ ସ୍ଥାନରେ ଶୋଇବାକୁ ଗଲାବେଳେ କର୍ମୀମାନେ ସେ ସ୍ଥାନରେ ବିଷଧର ସାପର ଭୟଅଛି ବୋଲି କହି ସେଠାରେ ଶୋଇବାକୁ ତାଙ୍କୁ ମନା କଲେ । ଗାନ୍ଧୀଜୀ ଏକଥା ଶୁଣି ହସିଦେଲେ ଏବଂ କହିଲେ ମୁଁ ତ କେବେହେଲେ ସାପ ମାରିନାହିଁ । ସୁତରାଂ ସାପ ମଧ୍ୟ ମୋତେ କେବେ ହେଲେ କାମୁଡିବ ନାହିଁ । ଏହା ନିଶ୍ଚିତ । ଏହା କହି ସେ ସେହି ସ୍ଥାନରେ ହିଁ ଶୋଇଲେ । ତାଙ୍କ ଜୀବନରୁ ଜଣାଯାଏ ଯେ ଗାନ୍ଧୀଜୀ ଶୋଇଥିଲା ବେଳେ କେତେକ ସମୟରେ ବିଷଧର ସାପ ମଧ୍ୟ ତାଙ୍କର କୌଣସି କ୍ଷତି ନ କରି ତାଙ୍କ ଉପର ଦେଇ ଚାଲି ଯାଇଛି ଏବଂ ସେ ନିର୍ବିକାର ଚିତ୍ତରେ ଆଦୌ ଭୟଭୀତ ନ ହୋଇ ଧୀର ସ୍ଥିର ଭାବରେ ଶୋଇ ରହିଥାଆନ୍ତି । ପୁରାଣ ଯୁଗରେ ଋଷି ମହର୍ଷିମାନଙ୍କ ଆଶ୍ରମରେ ଏପରି ଶାନ୍ତି ଓ ମୈତ୍ରୀର ବାତାବରଣ ସୃଷ୍ଟି ହୋଇଥିଲା ଯେ ପରସ୍ପର ପ୍ରତି ବୈରୀ ଥିବା ଜୀବ ଜନ୍ତୁଗଣ ନିଜର ବୈରଭାବ ଭୁଲି ପରସ୍ପର ପ୍ରତି ବନ୍ଧୁଭାବାପନ୍ନ ହୋଇ ଚଳୁଥିଲେ ଓ କେହି କାହାରି ହେଲେ କ୍ଷତି କରୁନଥିଲି । ପୁରାଣରେ ବର୍ଣ୍ଣନା କରାଯାଇଛି ଯେ, ଥରେ ଜଣେ ମହର୍ଷି ଅନ୍ୟଜଣେ ତପସ୍ୱୀଙ୍କ ଆଶ୍ରମରେ ଅତିଥି ହୋଇ ପହୁଞ୍ଚିଲା ଦିନ ଦ୍ୱିପ୍ରହର ସମୟରେ ଗୋଟିଏ ବେଙ୍ଗ ସୂର୍ଯ୍ୟଙ୍କର ପ୍ରଖର ଉତ୍ତାପ ସହି ନ ପାରି ବିକଳରେ ଚିତ୍କାର କରୁଛି ଓ ଅଦ୍ଭୁତ ଭାବେ ଗୋଟିଏ ସାପ ଫଣା ଟେକି ତା ପାଖରେ ଛିଡା ହୋଇ ତାକୁ ରୌଦ୍ର ତାପରୁ ରକ୍ଷା କରୁଛି । ବେଙ୍ଗ ସାପର ଖାଦ୍ୟ ହେଲେ ମଧ୍ୟ ଆଶ୍ରମର ଶାନ୍ତି ପୂର୍ଣ୍ଣ ଅହିଂସ ବାତାବରଣ ଖାଦ୍ୟ ଖାଦକ ମଧ୍ୟରେ ବି ମଧୁର ବନ୍ଧୁତା ସୃଷ୍ଟି କରି ପାରିଛି । ''ଋଷି ସଙ୍ଗ ପ୍ରଭାବେ ସ୍ୱାପଦେ ଯହିଁ ନିରୀହ ଶାନ୍ତ ଭାବେ ଅଛନ୍ତି ରହିଁ ।'' ତେଣୁ ଉକ୍ତ ବିଦେଶୀ ନାଗରିକଙ୍କ ସାଧନାକୁ ପ୍ରସଂଶା ନ କରି ରହିପାରିଲିନାହିଁ ।

ସେଠାରେ ଏପରି ଏକ ଜଙ୍ଗଲ ସୃଷ୍ଟି ହୋଇଥିବାର ଦେଖି ମୋର ମନେ ପଡିଲା ଆମ ଜଙ୍ଗଲ ବିଭାଗର ବନୀକରଣ ଯୋଜନାର ବିଫଳତା ଓ ସଡକ ଦୁଇପାଖରେ ଇଉକାଲି ପଟାସ ଗଛର ଜଙ୍ଗଲ ସୃଷ୍ଟି । ଗଛରେ ବଡ ବଡ ପତ୍ର ନ ଥିବାରୁ ଛାଇ ନାହିଁ କି ଫଳ ମଧ୍ୟ ନାହିଁ । ବିଭିନ୍ନ ବନୀକରଣ ଯୋଜନାରେ ଯେଉଁ କୋଟି କୋଟି ଟଙ୍କା ଖର୍ଚ୍ଚ ହେଉଛି ସେଥିରେ ଯେତିକି ଜଙ୍ଗଲ ସୃଷ୍ଟି ହେଉଛି ଅନ୍ୟ ଦିଗରେ ତାଠାରୁ ଅଧିକ ନଷ୍ଟ ହୋଇଛି ସେଥିପ୍ରତି ଦୃଷ୍ଟି ଦିଆଯାଉନାହିଁ । ଗବେଷଣା କରି ଅଳ୍ପଦିନ ମଧ୍ୟରେ ବଡ ବଡ ବୃକ୍ଷ ସୃଷ୍ଟି କରିବାର ଉଦ୍ୟମ ହେଉନାହିଁ । ମୁଁ ବହୁ ସମୟରେ ଜଙ୍ଗଲ ବିଭାଗର ସମାଲୋଚନା କରି କହେ ''ହାତୀ ବଞ୍ଚିଥିଲେ ଲକ୍ଷେ ମଲେ ମଧ୍ୟ ଲକ୍ଷେ'' ଏହି ଉକ୍ତିଟି ବନବିଭାଗର କର୍ମଚାରୀ ମାନଙ୍କ ପ୍ରତି ଅକ୍ଷରେ ଅକ୍ଷରେ ପ୍ରଯୋଜ୍ୟ । ଜଙ୍ଗଲ ବିଭାଗର କର୍ମଚାରୀ ମାନଙ୍କର ବ୍ୟକ୍ତିଗତ ଲାଭ ଦୃଷ୍ଟିରୁ ଜଙ୍ଗଲ ରହିଥିଲେ

ଯେତିକି ଲାଭ ଜଙ୍ଗଲ ନଷ୍ଟ ହୋଇଗଲାପରେ ସେଠାରେ ଯେତେବେଳେ ବନୀକରଣ ଯୋଜନା କାର୍ଯ୍ୟକାରୀ ହେବ ତାହା ତତୋଽଧିକ ଲାଭଜନକ ହେବ । ଅତ୍ୟନ୍ତ ଦୁଃଖ ଓ ପରିତାପର ବିଷୟ ଏହି ଯେ, ବର୍ତ୍ତମାନ ସମଗ୍ର ପୃଥିବୀର ବାୟୁମଣ୍ଡଳ ପ୍ରଦୂଷିତ ହୋଇ ସମସ୍ତ ସୃଷ୍ଟି ଏକ ଭୟଙ୍କର ବିପଦର ସମ୍ମୁଖୀନ ହୋଉଥିବା ବେଳେ ସେଥିରୁ ରକ୍ଷା ପାଇବାର ପ୍ରତିକାର ରୂପେ ଜଙ୍ଗଲ ଓ ବୃକ୍ଷଲତା ସୃଷ୍ଟି ଓ ସଂରକ୍ଷଣ ପ୍ରତି ଗୁରୁତ୍ୱ ଦିଆଯାଉଥିଲା ବେଳେ ଭାରତବର୍ଷ ବିଶେଷ କରି ଆମ ଓଡିଶାର ଜଙ୍ଗଲ ବିଭାଗର କର୍ମଚାରୀମାନେ ତାହା ଏପର୍ଯ୍ୟନ୍ତ ବୁଝି ପାରୁନାହାନ୍ତି ।

ଏହାପରେ ଉକ୍ତ ଟ୍ରଷ୍ଟ ତରଫରୁ ଚାଲିଥିବା ଅନ୍ୟାନ୍ୟ କାର୍ଯ୍ୟକ୍ରମମାନ ବୁଲି ଦେଖିଲୁ । ଗୋଟିଏ ସ୍ଥାନରେ ସୂତା ଓ ଲୁଗା ରଙ୍ଗ କରାଯାଇ ସେଥିରେ ଛାପା ମରା ହେଉଥିବାର ଦେଖିଲୁ । ଅନ୍ୟ ଏକ ସ୍ଥାନରେ ସୂତା ତିଆରି କପଡାରେ ପୋଷାକ ତିଆରି କରି ସେଗୁଡିକ ପେକିଙ୍ଗ କରାଯାଉଥିବାର ଦେଖିଲୁଁ । ପଚାରି ବୁଝିଲୁଁ ଯେ ଉକ୍ତ ପୋଷାକ ଗୁଡ଼ିକ ପଶ୍ଚିମ ଜର୍ମାନୀକୁ ରପ୍ତାନୀ ହେଉଛି । ସୂତା ତିଆରି ପୋଷାକ ଗୁଡିକର ଚାହିଦା ସେଠାରେ ଅତି ବେଶି ଏହି ସମସ୍ତ ହସ୍ତ ଶିଳ୍ପ କାର୍ଯ୍ୟରେ ସେଠାକାର ସ୍ଥାନୀୟ ଲୋକ ବିଶେଷକରି ବହୁ ସ୍ତ୍ରୀଲୋକ ନିଯୁକ୍ତ ହୋଇଥିବାର ଦେଖାଗଲା । ଏ ସମସ୍ତ ଶିଳ୍ପ ଗୁଡିକର ଦାୟିତ୍ୱରେ ସେହି ବିଦେଶୀ ମହିଳାମାନେ ଥିବାର ଦେଖିଲୁ । ଏହି ଟ୍ରଷ୍ଟ ଅଞ୍ଚଳରେ ଶ୍ରୀମାଙ୍କ ଉଦ୍ଦେଶ୍ୟରେ ଏକ ବିରାଟ ମନ୍ଦିର ନିର୍ମାଣ ହେଉଥିବାର ଦେଖାଗଲା । ଉକ୍ତ ନିର୍ମାଣ କାର୍ଯ୍ୟ ଶେଷ ହେଲା ବେଳକୁ ପ୍ରାୟ ୫୦ଲକ୍ଷ ଟଙ୍କାରୁ କମ ଖର୍ଚ୍ଚ ହେବ ନାହିଁ ବୋଲି ମନେ ହେଲା । ଏ ସମସ୍ତ କାର୍ଯ୍ୟ ଦେଖି ଏହି ବିଦେଶୀ ନାଗରିକ ମାନଙ୍କୁ ପ୍ରଶଂସା ନ କରି ରହି ହେବ ନାହିଁ । ସେଠାରେ ଭାରତୀୟ ନାଗରିକଙ୍କ ଚରିତ୍ର ଓ ବିଦେଶୀ ନାଗରିକଙ୍କ ଚରିତ୍ର ମଧ୍ୟରେ ଆକାଶ ପାତାଳ ତଫାତ ଥିବାର ଦେଖାଗଲା । ଶ୍ରୀ ଅରବିନ୍ଦ ଆଶ୍ରମରୁ ଏହି ଅରୋଭିଲ ଅଲଗା ହେଲାପରେ ଉଭୟ ସଂସ୍ଥାମଧ୍ୟରେ ଯେଉଁ ତିକ୍ତତା ସୃଷ୍ଟି ହୋଇଥିଲା ସେ ସଂପର୍କରେ ଅରବିନ୍ଦ ଆଶ୍ରମର ଲୋକଙ୍କଠାରୁ ବହୁ ବିରୁଦ୍ଧାତ୍ମକ କଥା ଶୁଣିବାକୁ ପାଇଲୁଁ । ଏପରିକି ଏହି ଅରୋଭିଲ ପରିଦର୍ଶନ କରିବାର ଆମର କାର୍ଯ୍ୟକ୍ରମ ଶୁଣି ସେମାନଙ୍କଠାରୁ କୌଣସି ପ୍ରକାର ଉତ୍ସାହର ବାଣୀ ଶୁଣିବାକୁ ମିଳି ନ ଥିଲା ବରଂ ଏମାନଙ୍କ ବିରୁଦ୍ଧାତ୍ମକ ବହୁ କଥା ଶୁଣିଥିଲୁ । ମାତ୍ର ଏଠାରେ ଏହି ବିଦେଶୀ ନାଗରିକଙ୍କ ସହିତ ବୁଲାବୁଲି କଲାବେଳେ ଶ୍ରୀଅରବିନ୍ଦ ଆଶ୍ରମର କୌଣସି ବ୍ୟକ୍ତି ବିଶେଷଙ୍କ ବିରୁଦ୍ଧରେ କିଛି ହେଲେ ସୂଚନା ପାଇ ନ ଥିଲୁ । ଗୋଟିଏ ଆଦର୍ଶରେ ଅନୁପ୍ରାଣୀତ ହେଲେ ମଧ ପଛରୁ ଗୋଡ ଟାଣିବା ରାଜନୀତି କ୍ଷେତ୍ରରେ ଯେପରି ଦେଖିବାକୁ ମିଳେ ଆଧ୍ୟାତ୍ମିକ ସଂସ୍ଥା ଗୁଡିକରେ ମଧ ତାହାଠାରୁ କିଛି କମ ଅନୁଭୂତ ହୁଏ ନାହିଁ ।

ଏହି ଅରୋଭିଲ ଟ୍ରଷ୍ଟ ଅଞ୍ଚଳର ବିଭିନ୍ନ କାର୍ଯ୍ୟକ୍ରମ ଦେଖି ସାରିଲାପରେ ସଂଧ୍ୟା ବେଳକୁ ପଣ୍ଡିଚେରୀ କେନ୍ଦ୍ର ଶାସିତ ଅଞ୍ଚଳର ବିଧାନସଭା କାର୍ଯ୍ୟାଳୟକୁ ଗଲୁଁ । ସେଠାରେ ଅଧ୍ୟକ୍ଷଙ୍କ ଅନୁପସ୍ଥିତ ହେତୁ ତାଙ୍କ ସହିତ ସାକ୍ଷାତ ନ ହେବାରୁ ପଣ୍ଡିଚେରୀର ମୁଖ୍ୟ ମନ୍ତ୍ରୀଙ୍କୁ ସୌଜନ୍ୟତା ଦୃଷ୍ଟିରୁ ସାକ୍ଷାତ କଲୁ । ତାଙ୍କ ସହିତ ତଥା ସେଠାରେ ଉପସ୍ଥିତ ଥିବା ଯୁବ କଂଗ୍ରେସର କେତେକ ଯୁବକଙ୍କ ସହିତ ତାଙ୍କ ରାଜ୍ୟ ତଥା ଦେଶର ରାଜନୈତିକ ପରିସ୍ଥିତି ସଂପର୍କରେ ଆଲୋଚନା କରି ରାତିରେ ସରକାରୀ ଅତିଥି ଶାଳାରେ ଅବସ୍ଥାନ କଲୁ ।

## ''ଶ୍ରୀ ଅରବିନ୍ଦ ଆଶ୍ରମ ପରିଦର୍ଶନ''

ତହିଁ ପରିଦିନ ପୂର୍ବାହ୍ନ ପ୍ରାୟ ୯ ୧/୨ଟା ବେଳକୁ ଆମେ ସୁପ୍ରସିଦ୍ଧ ଅରବିନ୍ଦ ଆଶ୍ରମକୁ ପରିଦର୍ଶନରେ ବାହାରିଲୁ । ଆମ ପରିଦର୍ଶନ କାର୍ଯ୍ୟକ୍ରମ ଆଗରୁ ଆଶ୍ରମର କର୍ତ୍ତୃପକ୍ଷଙ୍କୁ ଜଣାଇ ଦିଆଯାଇଥାଏ । ତେଣୁ ଆମେ ଆଶ୍ରମରେ ପହଞ୍ଚିଲାମାତ୍ରେ ଆଶ୍ରମ ଦାୟିତ୍ୱରେ ଥିବା ଜଣେ ମହାରାଷ୍ଟ୍ରୀୟ ସାଧକ ଆମକୁ ଆଶ୍ରମ ଭିତରକୁ ନେଇଗଲେ । କିଛି ସମୟପରେ ପ୍ରଫେସର ଓ ପୂର୍ବତନ ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତି ଡକ୍ଟର ମନ୍ମଥନାଥ ଦାସଙ୍କ ଭାଇ ସେଠାକାର

ଆଶ୍ରମର ପ୍ରଫେସର ଶ୍ରୀଯୁକ୍ତ ମନୋଜ ଦାସଙ୍କ ସହିତ ସେଠାରେ ଦେଖାହେଲା । ସେ ଅରବିନ୍ଦ ଆଶ୍ରମର ଜଣେ ବିଶିଷ୍ଟ ବ୍ୟକ୍ତି । ଏହି ଆଶ୍ରମରେ ଥିବା ବହୁ ଓଡିଆ ଲୋକଙ୍କ ସହିତ ମଧ ସାକ୍ଷାତ ହେଲାପରେ ଆମ ସମସ୍ତଙ୍କୁ ଶ୍ରୀ ଅରବିନ୍ଦ ଓ ଶ୍ରୀମାଙ୍କ ଆସ୍ଥାନ ନିକଟକୁ ନେଇଗଲେ । ସେଠାରେ ସମସ୍ତଙ୍କ ସହିତ ଆମେ ମଧ କିଛି ସମୟ ପାଇଁ ନୀରବ ପ୍ରାର୍ଥନା ଓ ଧ୍ୟାନରେ ବସିଲୁ । ତା'ପରେ କୋରାପୁଟର ଶ୍ରୀରାମନାଥ ପଣ୍ଡାଙ୍କ ଭାଇ ଯେ କି ଆଶ୍ରମର ଯୋଗାସନ ଓ କୁସ୍ତିକସରତ ଶିକ୍ଷାଦାନ କରନ୍ତି ସେ ଆମକୁ ନେଇ ସେ ସଂକ୍ରାନ୍ତୀୟ କେତେକ କର୍ମଶାଳା ଦେଖାଇଲେ । ଏଠାରେ ଅଧ୍ୟୟନ କରୁଥିବା ଛାତ୍ରମାନଙ୍କୁ ଯୋଗାସନ ପ୍ରଭୃତି ଶିକ୍ଷା ଦିଆଯାଏ । ଏତଦ୍ ବ୍ୟତୀତ ହାତତିଆରି କାଗଜ କାରଖାନା ଓ ଗଞ୍ଜି କାରଖାନା ମଧ ବୁଲି ଦେଖିଲୁ । ଏହି ଆଶ୍ରମ ମଧରେ ଥିବା ଓଡିଆମାନଙ୍କ ଦ୍ୱାରା ପରିଚାଳିତ ନବଜୀବନ ନାମକ ଅନୁଷ୍ଠାନକୁ ଗଲାରୁ ସେଠାରେ ବହୁ ଓଡିଆ ଲୋକଙ୍କ ସହିତ ଦେଖାହେଲା । ଆଶ୍ରମର ପ୍ରପତି ଶ୍ରୀଯୁକ୍ତ କାଙ୍ଗାଳୀ ଚରଣ ଦାସଙ୍କୁ ସାକ୍ଷାତ କଲୁ । ସେ ସରକାରୀ ମହାବିଦ୍ୟାଳୟର ଅଧ୍ୟାପକ ପଦଛାଡି ବହୁଦିନ ହେଲା ଆଶ୍ରମରେ ରହିଛନ୍ତି । ତାଙ୍କ ସହିତ ମୋର ବହୁ ଦିନରୁ ପରିଚୟ ଥିଲା । ସେତେବେଳକୁ ସେ ବାତ ରୋଗରେ ଆକ୍ରାନ୍ତ ହୋଇ ଅଚଳ ଅବସ୍ଥାରେ ଶଯ୍ୟାଶାୟୀ ହୋଇଥିବାର ଦେଖିଲି । ମୁଁ ତାଙ୍କ ନିକଟକୁ ଗଲାରୁ ସେ ଶ୍ରୀମଦ୍ ଭଗବତ ଗୀତା ଉପରେ ତର୍ଜମା କରାଯାଇ ଓଡିଆରେ ଲେଖାଥିବା ଏକ ପୁସ୍ତକ ଅତି ଶ୍ରଦ୍ଧା ଓ ଆଦରରେ ଉପହାର ଦେଲେ । ଉକ୍ତ ପୁସ୍ତକର ସେ ନିଜେ ତର୍ଜମାକାରୀ ଲେଖକ । ସେଠାରେ ପ୍ରତିଷ୍ଠିତ ନବଜୀବନ ଛାପା କଳଟି ଓଡିଆମାନଙ୍କ ଦ୍ୱାରା ପରିଚାଳିତ ହୋଇ ଶ୍ରୀଅରବିନ୍ଦ ଓ ଶ୍ରୀମାଙ୍କ ଦର୍ଶନ ଓ ଚିନ୍ତାଧାରା ସଂପର୍କୀୟ ପୁସ୍ତକ ଓ ପାକ୍ଷିକ ପତ୍ରିକାମାନ ପ୍ରକାଶିତ ହେଉଥିବାର ଜାଣିଲୁ । ଶ୍ରୀ ଅରବିନ୍ଦ ଆଶ୍ରମରେ ବହୁ ଓଡିଆ ଲୋକ ରହି ସେଠାରେ ତାଙ୍କର ବିଶେଷ ପ୍ରଭାବ ପକାଇ ଥିବାର ଜାଣି ଅତ୍ୟନ୍ତ ଆନନ୍ଦିତ ହେଲୁ । ସେତେବେଳକୁ ମଧ୍ୟାହ୍ନ ଭୋଜନରେ ସମୟ ହୋଇ ଯାଇଥିଲା ଏବଂ ସେଦିନ ସେହି ଆଶ୍ରମରେ ଆମର ମଧ୍ୟାହ୍ନ ଭୋଜନ କରିବାର ବ୍ୟବସ୍ଥା ମଧ ହୋଇଥାଏ । ପ୍ରତିଦିନ ବାହାରୁ ପରିଦର୍ଶନରେ ଆସୁଥିବା ଲୋକଙ୍କ ପାଇଁ ଆଶ୍ରମରେ ଭୋଜନ ବ୍ୟବସ୍ଥା କରାଯିବା ଆଶ୍ରମର ବିଧି । ସେଥିପାଇଁ ବାହାର ଲୋକଙ୍କୁ ଭୋଜନ ବାବଦରେ ଟ୮.୦୦ ଲେଖାଏଁ ଦେବାକୁ ପଡିଥାଏ । ଆମେ ପ୍ରତ୍ୟେକ ଟ୮.୦୦ ଲେଖାଏଁ ଦେଇ ଟିକଟ ପାଇଥାଉଁ । ତେଣୁ ଭୋଜନ ବେଳକୁ ସମସ୍ତଙ୍କ ସହିତ ଥାଳି ତାଟିଆ ଧରି ଧାଡିରେ ଠିଆ ହେଲୁ । ଅରୁଆ ଚାଉଳ ଭାତ, ଡାଲି ତରକାରୀ ସହ ଗୋଟିଏ ଲେଖାଏଁ କଦଳୀ ସମସ୍ତଙ୍କୁ ମିଳିଲା । ଅନ୍ୟ ମାନଙ୍କ ସହ ଆମେ ମଧ ତଳରେ ବସି ଭୋଜନ କଲୁ । ଭୋଜନ ପରେ ସେଠାରୁ ବିଦାୟ ନେଇ ସରକାରୀ ଅତିଥିଶାଳାକୁ ଫେରିଲୁ । ପୁଣି ଅପରାହ୍ନରେ ମାଡ୍ରାଜ ଅଭିମୁଖେ ଯାତ୍ରା କରି ରାତିରେ ପର୍ବପରି ସେଠା ଅତିଥିଶାଳାରେ ଅବସ୍ଥାନ କଲୁ ।ତହିଁ ପରଦିନ ସକାଳ ପ୍ରାୟ ୫ଟା ବେଳେ ମାଡ୍ରାଜର ଉଡାଜାହାଜ ଷ୍ଟେସନକୁ ଆସି ସେଠାରୁ ହାଇଦ୍ରାବାଦ ଯାତ୍ରା କଲୁଁ । ଆମର ସେଦିନକୁ ପ୍ରତ୍ୟାବର୍ତ୍ତନର କାର୍ଯ୍ୟକ୍ରମ ଥିବାରୁ ସେଠାକାର ସରକାରୀ ପ୍ରୋଟୋକଲ ଅଫିସର ଆମ ପାଇଁ ଅପେକ୍ଷାକରି ଥାଆନ୍ତି ଓ ଆମେ ପହୁଞ୍ଚିଲା ପରେ ଆମକୁ ଅତିଥିଶାଳାରେ ନେଇ ପହୁଞ୍ଚାଇଲେ । ଅତିଥି ଶାଳାରେ ମଧ୍ୟାହ୍ନ ଭୋଜନ ପରେ ଭୁବନେଶ୍ୱରକୁ ବିମାନ ଛାଡ଼ିବାର ନିର୍ଦ୍ଧାରିତ ସମୟ ସଂଧ୍ୟା ପର୍ଯ୍ୟନ୍ତ ଅପେକ୍ଷା କରିବାକୁ ପଡିଲା । ବିଧାନସଭାର ଅଧକ୍ଷ ଭାବରେ ବିଭିନ୍ନ ସ୍ଥାନରେ ସରକାରୀ ଅତିଥି ହୋଇଥିବାରୁ, ପରିଭ୍ରମଣ ସମୟରେ ଆମର କୌଣସି ସ୍ଥାନରେ କୌଣସି ପ୍ରକାର ଅସୁବିଧା ହୋଇନାହିଁ ବରଂ ସବୁସ୍ଥାନରେ ଆମକୁ ସବୁପ୍ରକାର ସାହାଯ୍ୟ ଓ ସୁବିଧା ମିଳିଛି । ଆମେ ସେଦିନ ହାଇଦ୍ରାବାଦରେ ଥିଲାବେଳେ ସେଠାକାର ପରିବେଶ ନିୟନ୍ତ୍ରଣ ବା ସୁରକ୍ଷା ସଂକ୍ରାନ୍ତୀୟ ଏକ ବେସରକାରୀ ସଂସ୍ଥାର ପ୍ରତିଷ୍ଠାତ୍ରୀ ଶ୍ରୀମତୀ ନିଶା ରାଓ ଓ ତାଙ୍କ ସ୍ୱାମୀ ଆସି ମୋତେ ଦେଖା କରିଥିଲେ । ଆମ ସହିତ ଯାଇଥିବା ରାଜ୍ୟପରିବେଶ ବିଭାଗର ବରିଷ୍ଠ ବୈଜ୍ଞାନିକ ଶ୍ରୀଯୁକ୍ତ ରାଧାମୋହନଙ୍କର ସେମାନଙ୍କ ସହିତ ଆଗରୁ ପରିଚୟ ଥିଲା । ତେଣୁ ସେ ସେମାନଙ୍କୁ ମୋର ସେଠାକୁ ଯାଉଥିବାର ଖବର ଦେବାରୁ ସେମାନେ ଉଭୟେ ଆସି ମୋ ସହିତ ସାକ୍ଷାତ

କଲେ । ହାଇଦ୍ରାବାଦରେ ପରିବେଶ ଚେତନା ସୃଷ୍ଟି କରିବାରେ ଚାଲିଥିବା ତାଙ୍କ କାର୍ଯ୍ୟକ୍ରମ ସଂପର୍କରେ ଆମ ସହିତ ଆଲୋଚନା ମଧ କଲେ । ଜନସାଧାରଣଙ୍କ ମଧ୍ୟରେ ପରିବେଶ ଚେତନା ସୃଷ୍ଟି କରିବାକୁ ଶିକ୍ଷା ଦେବାପାଇଁ ତାଙ୍କ ସଂସ୍ଥା ତରଫରୁ ପ୍ରକାଶିତ କେତେଖଣ୍ଡ ବହି ମଧ ଏହି ଅବସରରେ ସେମାନେ ମୋତେ ଦେଲେ । ଉକ୍ତ ସଂସ୍ଥାର କାର୍ଯ୍ୟକ୍ରମ କେବଳ ସେହି ସହରାଞ୍ଚଳ ବା ତାର ଆଖପାଖ କେତେକ ଅଞ୍ଚଳରେ ସୀମାବଦ୍ଧ ବୋଲି ଜାଣିଲି । ଓଡିଶାରେ ଆମ ପରିବେଶ ସୁରକ୍ଷା ସମିତିର ବିଭିନ୍ନ ଗ୍ରାମାଞ୍ଚଳର କାର୍ଯ୍ୟଭଳି ତାଙ୍କର କାର୍ଯ୍ୟକ୍ରମ ନ ଥିଲା । ତା ସତ୍ୱେ ବି ସେମାନେ ସରକାରୀ ସାହାଯ୍ୟ ପାଇପାରୁଛନ୍ତି । ସଂଧ୍ୟା ବେଳକୁ ସେଠାକାର ବିମାନ ଘାଟିକୁ ଯାଇ ହାଇଦ୍ରାବାଦରୁ ଭୁବନେଶ୍ୱର ଦେଇ କଲିକତା ଯାଉଥିବା ବିମାନ ଯୋଗେ ଭୁବନେଶ୍ୱର ଫେରିଲୁ ।

## ''୧୯୮୭ରେ ବିଭିନ୍ନ ସଂସ୍ଥା ଓ ଅନୁଷ୍ଠାନରେ ମୋର କାର୍ଯ୍ୟକ୍ରମ''

## ଗୋପାଳକୃଷ୍ଣ ଗୋଖେଲଙ୍କ ଜନ୍ମ ଶତବାର୍ଷିକୀ''

କଟକର ବିଶିଷ୍ଟ ଲୋକଙ୍କ ଏକ ସଂସ୍ଥା ପକ୍ଷରୁ ଭାରତର ସ୍ୱନାମଧନ୍ୟ ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ଗୋପାକୃଷ୍ଣ ଗୋଖେଲଙ୍କ ଜନ୍ମଶତବର୍ଷିକୀ ସମାରୋହର ଆୟୋଜନ କରି ଉକ୍ତ ସମାରୋହରେ ସଭାପତିତ୍ୱ କରିବା ପାଇଁ ମୋତେ ଅନୁରୋଧ କଲେ । ବିଶେଷ କରି ଡକ୍ଟର ସଦାଶିବ ମିଶ୍ର ବ୍ୟକ୍ତିଗତ ଭାବରେ ମୋ ନାମ ସଭାପତି ଭାବରେ ପ୍ରସ୍ତାବ କରିଥିବା ବିଷୟ ଫୋନ ଯୋଗେ ମୋତେ ଜଣାଇ ସେଥିରେ ଯୋଗ ଦେବା ପାଇଁ ଅନୁରୋଧ କଲେ । ସଦାଶିବ ବାବୁ ଏହିଭଳି କେତେଥର ବିଭିନ୍ନ କାର୍ଯ୍ୟକ୍ରମରେ ଯୋଗ ଦେବାପାଇଁ ମଧ ମୋତେ ଡାକନ୍ତି । ତେଣୁଁ ମୁଁ ସମ୍ମତି ପ୍ରଦାନ କରି ସେଦିନ ଉକ୍ତ ସମାରୋହରେ ଯୋଗ ଦେଲି । ଉକ୍ତ ଉତ୍ସବରେ ମୁଁ ସଭାପତି ଭାବେ, ଶ୍ରୀମତୀ ମନୋରମା ମହାପାତ୍ର, ଶ୍ରୀଯୁକ୍ତ ପଠାଣୀ ପଟ୍ଟନାୟକ ଓ ରାଜସ୍ୱ କମିସନର ଶ୍ରୀଯୁକ୍ତ ସାହୁ ଯଥାକ୍ରମେ ମୁଖ୍ୟ ଅତିଥି, ସମ୍ମାନନୀୟ ଅତିଥି ଓ ମୁଖ୍ୟ ବକ୍ତା ଭାବରେ ଯୋଗ ଦେବାର କାର୍ଯ୍ୟକ୍ରମ ଥାଏ । ମୋ ବ୍ୟତୀତ ଅନ୍ୟମାନେ ସମସ୍ତେ ବିଶିଷ୍ଟ ଶିକ୍ଷାବିତ ଓ ଜ୍ଞାନୀ ଓ ସୁଧୀ ବ୍ୟକ୍ତି ଥିଲେ । ଶ୍ରୀଯୁକ୍ତ ସଦାଶିବ ମିଶ୍ରଙ୍କ ଭଳି କଟକର ବହୁଜ୍ଞାନୀ ଓ ବିଜ୍ଞ ବ୍ୟକ୍ତି ଉକ୍ତ ସଭାରେ ଶ୍ରୋତା ଭାବରେ ଯୋଗ ଦେଇ ଥାଆନ୍ତି । ସୌଭାଗ୍ୟକୁ ମୁଁ ସଭାପତି ହୋଇଥିବାରୁ ସମସ୍ତଙ୍କ ଶେଷରେ ମୋତେ କହିବାକୁ ପଡିବ ଏତିକି ମାତ୍ର ଥାଏ ମୋ ମନରେ ସାହସ । ମୁଁ ଆମ ବିଧାନସଭା ଲାଇବ୍ରେରୀରୁ ଗୋଖେଲଙ୍କ ଜୀବନୀଟି ପଢି ପ୍ରସ୍ତୁତ ହୋଇଥିଲି । ପ୍ରଥମେ ସେମାନେ ତିନିଜଣ ଯାକ ଯେଉଁ ଭାଷଣ ଦେଲେ ସେମାନେ ସେଥିରେ ପ୍ରକୃତ ବିଷୟ ଉପରେ ନ କହି ଅନ୍ୟ ବିଷୟମାନଙ୍କର ଅବତାରଣା କରି ଏତେ ଲମ୍ବା ଭାଷଣମାନ ଦେଲେ ଯେ ତାହା ଶ୍ରୋତାମାନଙ୍କୁ ବିଶେଷ ଭାବରେ ପ୍ରଭାବିତ କରି ପାରିଲାନାହିଁ ।

''ମିତଂ ଚ, ସାରଂ ଚ ବଚୋହି ବାଗ୍ମିତା'' ଏହି ନୀତି ଅନୁଯାୟୀ ମୁଁ ମୋର ଭାଷଣଟିକୁ ବିଶେଷ ଲମ୍ବା ନ କରି କେବଳ ସେତେବେଳର ଭାରତର ରାଜନୈତିକ ପରିସ୍ଥିତି, ଗୋଖେଲଙ୍କ ବ୍ୟକ୍ତିତ୍ୱ ଓ ଅବଦାନ ସଂପର୍କରେ ସୀମିତ ରଖିଲି । ଭାରତର ସ୍ୱାଧୀନତା ଆନ୍ଦୋଳନକୁ ଦୁଇଭାଗରେ ବିଭକ୍ତ କରି ଗୋଖେଲ ଯୁଗ ଓ ମହାତ୍ମାଗାନ୍ଧୀଙ୍କ ଯୁଗ ଆଖ୍ୟାଦେଇ ଉଭୟ ଯୁଗର ଏକ ତୁଳନାତ୍ମକ ବିବରଣୀ ପ୍ରଦାନ କଲି । ମହାତ୍ମାଗାନ୍ଧୀ ଆଫ୍ରିକା ଦେଶରୁ ଅହିଂସା ଆନ୍ଦୋଳନର ଅଭିଜ୍ଞତା ଅର୍ଜନ କରି ଭାରତକୁ ଫେରିଆସି ଏଠାକାର ଜାତୀୟ ଆନ୍ଦୋଳନରେ ଯୋଗ ଦେଇ ଯେଉଁ ନୂତନ ଦିଗଦର୍ଶନ ଦେଲେ ତାହାରି ପରିଣାମରେ ଭାରତ ସ୍ୱାଧୀନ ହେଲା । ମହାତ୍ମାଗାନ୍ଧୀଙ୍କ ଆଦର୍ଶର ପଥ ସମୟୋପଯୋଗୀ ଓ ସମସ୍ତଙ୍କ ଗ୍ରହଣୀୟ ହେବାରରୁ ତହିଁର ସୁଫଳ ଅବଶ୍ୟ ମିଳିଲା । ମାତ୍ର ୧୮୮୫ ମସିହାରୁ ଭାରତର ଜାତୀୟ କଂଗ୍ରେସ ଜନ୍ମଲାଭ କଲା ପରେ ସ୍ୱର୍ଗତ ଗୋପାଳକୃଷ୍ଣ ଗୋଖେଲ ସେଥିରେ ଯୋଗଦାନ କରି ଯେଉଁଭଳି ଭାବେ କିଛିଦିନ ପଥପ୍ରଦର୍ଶକ

ହେଲେ ତାଙ୍କର ଆଦର୍ଶ ମଧ୍ୟ ଠିକ ସେହିପରି ସମୟୋପଯୋଗୀ ଓ ସମସ୍ତଙ୍କର ଗ୍ରହଣୀୟ ହୋଇଥିବାରୁ ସେ ଜାତୀୟ ଆନ୍ଦୋଳନକୁ ଠିକଣା ବାଟରେ ପରିଚାଳିତ କରିପାରିଥିଲେ । ସେତେବେଳର ଜାତୀୟ କଂଗ୍ରେସର ନେତାମାନଙ୍କ ମଧ୍ୟରେ ଗୋଖେଲଙ୍କୁ ସମସ୍ତେ ମାନ୍ଦାଦଳିଆ ଓ ବାଳଗଙ୍ଗାଧର ତିଳକ ଭଳି ନେତାଙ୍କୁ ବିପ୍ଳବୀ ବୋଲି ଆଖ୍ୟା ଦିଆଯାଇଥିଲା । ଅନ୍ୟ କେତେକ ହିଂସାରେ ବିଶ୍ୱାସ କରୁଥିବାରୁ ସେମାନଙ୍କୁ ଆତଙ୍କ ବାଦୀ ବୋଲି କୁହାଯାଇଥିଲା । ଏହି ତିନୋଟି ଆଦର୍ଶ ମଧ୍ୟରୁ ଗୋଖେଲଙ୍କୁ ସର୍ବଶ୍ରେଷ୍ଠ ନେତା ଭାବେ ଗ୍ରହଣ କରିଥିବାର ସ୍ୱାଧୀନତା ଆନ୍ଦୋଳନର ପ୍ରଥମ ଭାଗକୁ ଗୋଖେଲ ଯୁଗ ଓ ପରବର୍ତ୍ତୀ ସ୍ୱାଧୀନତା ପ୍ରାପ୍ତି ପର୍ଯ୍ୟନ୍ତ ସମୟକୁ ଗାନ୍ଧୀଯୁଗ ବୋଲି ବର୍ଣ୍ଣନା କରି ମୋର ଯୁକ୍ତି ଶ୍ରୋତୃବର୍ଗଙ୍କ ସମକ୍ଷରେ ଉପସ୍ଥାପନ କଲି । ମହାତ୍ମାଗାନ୍ଧୀ ନେତୃତ୍ୱ ନେବା ପୂର୍ବରୁ କଂଗ୍ରେସ ଅନୁଷ୍ଠାନ କେବଳ ଦେଶର ବଡ ବଡ ସହରରେ ଓ ଉଚ୍ଚ ଶିକ୍ଷିତ ବ୍ୟକ୍ତିବିଶେଷଙ୍କ ମଧ୍ୟରେ ସୀମିତ ହୋଇ ରହିଥିଲା । ସିପାହୀ ବିଦ୍ରୋହର ଦମନ ପରେ ଇଂରେଜ ଶାସନ ଅଧିକ ଶକ୍ତିଶାଳୀ ଓ କୂଟନୀତି ପୂର୍ଣ୍ଣ ହୋଇଯାଇଥିଲା । ତେଣୁ ଇଂରେଜସରକାରଙ୍କ ସହିତ କେବଳ ଆପୋଷ ଆଲୋଚନା ମାଧ୍ୟମରେ କେତେକ ରାଜନୈତିକ ଅଧିକାର ଯଥା ବିଭିନ୍ନ ପ୍ରକାର ସ୍ୱାୟତ୍ତ ଶାସନ ଭାରତର ବଡଲାଟଙ୍କ ପରାମର୍ଶ ଦାତା କାଉନ୍ସିଲ ଗଠନ ଇତ୍ୟାଦି ହାସଲ କରିବାରେ ଗୋପାଳକୃଷ୍ଣ ଗୋଖେଲ ସମର୍ଥ ହୋଇପାରିଥିଲେ । ଏହା ଭାରତୀୟ ମାନଙ୍କ ମଧ୍ୟରେ ବ୍ୟକ୍ତିତ୍ୱ ବଢାଇବାରେ ଓ କଂଗ୍ରେସ ଅନୁଷ୍ଠାନକୁ ଶକ୍ତିଶାଳୀ କରିବାରେ ଯଥେଷ୍ଟ ସହାୟକ ହୋଇଥିଲା । ପରିଣାମରେ ପରବର୍ତ୍ତୀ ଅବସ୍ଥାରେ ମହାତ୍ମାଗାନ୍ଧୀଙ୍କ ନେତୃତ୍ୱରେ ସେହି ଅନୁଷ୍ଠାନ ବିପ୍ଳବାତ୍ମକ ଭୂମିକା ଗ୍ରହଣ କରିପାରିଥିଲା । ସେତେବେଳେ ଯଦି ତିଳକ ପ୍ରଭୃତିଙ୍କ ବିପ୍ଳବାତ୍ମକ ପଥ ଅନୁସରଣ କରାଯାଇ ଥାଆନ୍ତା ତେବେ ଶକ୍ତିଶାଳୀ ଇଂରେଜ ସରକାର ଦମନର ପଥ ପ୍ରଥମରୁ ଜାତୀୟ ଆନ୍ଦୋଳନକୁ ସଂପୂର୍ଣ୍ଣ ଧ୍ୱଂସ କରି ପାରିଥାଆନ୍ତି । ସେତେବେଳେ ଜନସାଧାରଣ ଜାତୀୟ ଆନ୍ଦୋଳନରେ ଅନ୍ତର୍ଭୁକ୍ତ ହୋଇ ନ ଥିବାରୁ କେବଳ ସହର ବଜାରରେ ମୁଷ୍ଟିମେୟ ଆରାମ ଓ ଅବସର ରହୁଥିବା ଶିକ୍ଷିତ ଲୋକେ କେବେହେଲେ ପ୍ରବଳ ପରାକ୍ରମୀ ଇଂରେଜ ସରକାରଙ୍କ ସାମନା କରି ପାରି ନ ଥାଆନ୍ତେ । ତେଣୁ ଗୋଖେଲେଙ୍କ ଆଦର୍ଶ ଓ ନେତୃତ୍ୱ ଯଥାର୍ଥରେ ସମୟୋପଯୋଗୀ ହୋଇ ଥିବାରୁ ତାହାକୁ ଗୋଖେଲ ଯୁଗ ବୋଲି ଅଭିହିତ କରିବା ଯଥାର୍ଥ । ମହାତ୍ମାଗାନ୍ଧୀଙ୍କ ଯୋଗଦାନ ବେଳକୁ କ୍ରମେ ଭାରତୀୟଙ୍କ ମଧ୍ୟରେ ସ୍ୱାଧୀନତାର ଚେତନା ପ୍ରସାର ଲାଭ କଲାଣି ଓ ଲୋକେ ଅଧିକ କ୍ଷମତା ପାଇଁ ଆକାଙ୍କ୍ଷିତ ହେଲେଣି । ତେଣୁ ଗାନ୍ଧୀଜୀ ସଂଗ୍ରାମର ଆବଶ୍ୟକତା ଉପଲବ୍ଧି କଲେ ଓ ଅହିଂସ ନୀତିରେ ସତ୍ୟାଗ୍ରହ ଆନ୍ଦୋଳନ ଆରମ୍ଭ କଲେ । ସେହି ନୀତିରେ ପ୍ରଥମେ ଲୁଣମରା ଓ ବିଦେଶୀ ଜିନିଷ ବର୍ଜନ ଭଳି ଆନ୍ଦୋଳନାତ୍ମକ କାର୍ଯ୍ୟକ୍ରମକୁ ଲୋକେ ଅଧିକ ପସନ୍ଦ କଲେ ଓ ଆଗ୍ରହର ସହିତ ବହୁ ସଂଖ୍ୟାରେ ଜନସାଧାରଣ ଏଥିରେ ଝାସ ଦେଲେ । ପରିଶେଷରେ ସ୍ୱାଧୀନତା ଲାଭ ହେଲା ତେଣୁ ଏହି ଉଭୟ ସମୟପାଇଁ ଗୋଖେଲ ଓ ଗାନ୍ଧୀଜୀ ଥିଲେ ପ୍ରକୃତରେ ଦୁଇଟି ଯୁଗର ପ୍ରବର୍ତ୍ତକ ।

## ''ବାଣୀବିହାର ଆନ୍ତର୍ଜାତିକ ସମ୍ମିଳନୀରେ ସମ୍ମାନନୀୟ ଅତିଥି ଭାବରେ ଯୋଗଦାନ''

ଉତ୍କଳ ବିଶ୍ୱବିଦ୍ୟାଳୟ ଆନୁକୂଲ୍ୟରେ ବାଣୀବିହାରଠାରେ ବିଶ୍ୱବିଦ୍ୟାଳୟର ସ୍ନାତକୋତ୍ତର ଆଇନ ବିଭାଗ ଦ୍ୱାରା ରାଷ୍ଟ୍ରମୁଖ୍ୟ ଶାସନ ବନାମ ସଂସଦୀୟ ଶାସନ ସଂକ୍ରାନ୍ତରେ ଏକ ଆଲୋଚନା ଚକ୍ରର ଆୟୋଜନ କରିମୋତେ ସେଥିରେ ସମ୍ମାନନୀୟ ଅତିଥିଭାବରେ ଯୋଗଦେବାର ସୁଯୋଗ ମିଳିଥିଲା । ଏହି ଆଲୋଚନା ଚକ୍ର ତିନିଦିନ ଧରି ଅନୁଷ୍ଠିତ ହୋଇଥିଲା ଓ ଏଥିରେ ଭାରତର ଜାତୀୟ ସ୍ତରରୁ ତଥା ଆନ୍ତର୍ଜାତିକ କ୍ଷେତ୍ରରୁ ମଧ୍ୟ ବହୁବିଜ୍ଞ ଓ ଜ୍ଞାନୀ ଲୋକେ ବିଶେଷ ଭାବେ ନିମନ୍ତ୍ରିତ ହୋଇ ଯୋଗ ଦେଇଥିଲେ । ତେଣୁ ଏଭଳି ଏକ ସମାରୋହରେ ସମ୍ମାନନୀୟ

ଅତିଥିରୂପେ ପ୍ରଥମ ଦିନ ସୁଯୋଗ ମିଳିବା ସୌଭାଗ୍ୟର ବିଷୟ । ବିଶ୍ୱବିଦ୍ୟାଳୟର କୁଳପତି ଶ୍ରୀଯୁକ୍ତ ପି.କେ ଦାସଙ୍କ ସଭାପତିତ୍ୱରେ ଆଲୋଚନା ଚକ୍ର ଆରମ୍ଭ ହେଲା । ଓଡିଶା ହାଇକୋର୍ଟର ମୁଖ୍ୟ ବିଚାରପତି ନ୍ୟାୟମୂର୍ତ୍ତି ଶ୍ରୀଯୁକ୍ତ ହରିଲାଲ ଅଗ୍ରୱାଲା ମୁଖ୍ୟ ଅତିଥିଭାବେ ଓ ରାଜ୍ୟସରକାରଙ୍କ ମୁଖ୍ୟ ସରକାରୀ ଓକିଲ ଶ୍ରୀଯୁକ୍ତ ଗଙ୍ଗାଧର ରଥ ମୁଖ୍ୟବକ୍ତା ଭାବେ ଏବଂ ସୁଇଜର ଲେଣ୍ଡର ଜଣେ ଅଧ୍ୟାପକ ସମ୍ମାନୀୟ ଅତିଥି ଭାବେ ଯୋଗଦେଇ ଉକ୍ତ ବିଷୟ ଉପରେ ଆମର ଲିଖିତ ଭାଷଣମାନ ପାଠ କରିଥିଲୁ । ବହୁ ଚିନ୍ତାଶୀଳ ବ୍ୟକ୍ତିଙ୍କ ବଚାର ବିମର୍ଶ ତଥା ମହାତ୍ମା ଗାନ୍ଧୀଙ୍କ ଦିଗଦର୍ଶନ କ୍ରମେ ଆମ ସମ୍ବିଧାନରେ ସଂସଦୀୟ ଶାସନ ବ୍ୟବସ୍ଥା ରଖାଯାଇ ସ୍ୱାଧୀନତାପ୍ରାପ୍ତି ପରଠାରୁ ଏତେଦିନ ପର୍ଯ୍ୟନ୍ତ ଚଳି ଆସିଛି, ମାତ୍ର ସେତେବେଳେ କେତେକ ଏ ବ୍ୟବସ୍ଥାର ପରିବର୍ତ୍ତନ କରି ଆମେରିକା ଢଙ୍ଗର ରାଷ୍ଟ୍ରମୁଖ୍ୟ ଗଣତନ୍ତ୍ରର ପ୍ରବର୍ତ୍ତନ ପାଇଁ ବିଚାର କରୁଥିଲେ । ତେଣୁ ସେ ସଂପର୍କରେ ଏକ ଜନମତ ପ୍ରକାଶ ପାଇଁ ଏହି ଉଦ୍ୟମ ଆରମ୍ଭ ହୋଇଥିଲା ।

ମୁଖ୍ୟ ଅତିଥିଙ୍କ ସମେତ ପ୍ରାୟ ସମସ୍ତ ବକ୍ତା ସଂସଦୀୟ ଗଣତନ୍ତ୍ରକୁ ଅଧିକ ଯୁଗପଯୋଗୀ ଓ ଗଣତାନ୍ତ୍ରିକ ବୋଲି ମତ ଦେଲେ ଓ ଭାରତ ପକ୍ଷରେ ରାଷ୍ଟ୍ରମୁଖ୍ୟ ଶାସନ ଅପେକ୍ଷା ପ୍ରଚଳିତ ସଂସଦୀୟ ଗଣତନ୍ତ୍ର ରାଷ୍ଟ୍ରମୁଖ୍ୟ ଗଣତନ୍ତ୍ର ଶାସନ ଅପେକ୍ଷା ସର୍ବୋତ୍କୃଷ୍ଟ ଶାସନ ବ୍ୟବସ୍ଥା ବୋଲି ବିଭିନ୍ନ ଯୁକ୍ତି ଦ୍ୱାରା ପ୍ରତିପାଦନ କଲି । ଗଣତନ୍ତ୍ର ଶାସନରେ ଯେଉଁ ମୌଳିକ ଲକ୍ଷ୍ୟ ରହିଛି ତହିଁର ସଫଳତା ପାଇଁ ଜନସାଧାରଣଙ୍କ ଇଚ୍ଛା ଓ ଅଭିଯୋଗରେ ସିଧା ପ୍ରତିଫଳନ ଓ ପ୍ରଶାସନିକ କ୍ଷେତ୍ରରେ ଅମଲାତନ୍ତ୍ରର ନିୟନ୍ତ୍ରଣ ତଥା ତହିଁର ତନଖି ଓ ସମନ୍ୱୟର ଯେପରି ସୁଯୋଗ ରହିଛି ରାଷ୍ଟ୍ରମୁଖ୍ୟ ଶାସନରେ ସେପରି ସୁଯୋଗ ନାହିଁ ! ପାର୍ଲ୍ୟାମେଣ୍ଟ ବା ରାଜ୍ୟ ବିଧାନସଭା ଗୁଡିକ ଯେପରି ଲୋକଙ୍କ ପାଖରେ ଦାୟୀ ଏବଂ ଉକ୍ତ ସଭାମାନଙ୍କରୁ ବଛାଯାଇ ସର୍ବାଧିକ ମତଥିବା ଦଳର ନେତା ପ୍ରଧାନମନ୍ତ୍ରୀ ବା ମୁଖ୍ୟମନ୍ତ୍ରୀ ମାନଙ୍କ ମନ୍ତ୍ରୀମଣ୍ଡଳ ଯେପରି ସଂପୃକ୍ତ ପାର୍ଲ୍ୟାମେଣ୍ଟ ବା ବିଧାନସଭା ନିକଟରେ ଦାୟୀ ତଥା ସେଥିରେ ସଂଖ୍ୟାଧିକ ସମର୍ଥନ ଲାଭ କରି ପାରୁଥିବା ପର୍ଯ୍ୟନ୍ତ ହିଁ ସେମାନେ ସେହି ସେହି ଦାୟିତ୍ୱରେ ରହିପାରିବାର ବ୍ୟବସ୍ଥା ଯାହା ରହିଛି ରାଷ୍ଟ୍ର ମୁଖ୍ୟ ଶାସନରେ ତାହା ନାହିଁ । ରାଷ୍ଟ୍ରମୁଖ୍ୟ ଶାସନରେ ସେକ୍ରେଟେରୀ (ମନ୍ତ୍ରୀ) ମାନଙ୍କୁ ରାଷ୍ଟ୍ରପତି ବାହାରୁ ମନୋନୀତ କରନ୍ତି ଓ ସେମାନେ ପାର୍ଲ୍ୟାମେଣ୍ଟ ବା ସର୍ବୋଚ୍ଚ ଲୋକ ପ୍ରତିନିଧି ସଂସ୍ଥା ନିକଟରେ ଦାୟୀ ନୁହନ୍ତି । ସଂସଦୀୟ ଗଣତନ୍ତ୍ରରେ ସବୁଠାରୁ ବଡ ଆଙ୍କୁଶ ହେଉଛି ପାର୍ଲ୍ୟାମେଣ୍ଟ ବା ବିଧାନସଭାର ମଞ୍ଜୁରୀ ବା ଅନୁମୋଦନ ବ୍ୟତିରେକେ ଗୋଟିଏ ପଇସା ଖର୍ଚ୍ଚ କରି ପାରିବେ ନାହିଁ ବା ଗୋଟିଏ ପଇସା ଲୋକଙ୍କ ଉପରେ ଟିକସ ବସାଇ ପାରିବେ ନାହିଁ । ସଂସଦୀୟ ଗଣତନ୍ତ୍ରରେ ଲୋକପ୍ରତିନିଧିଙ୍କ ଜରିଆରେ ଜନସାଧାରଣଙ୍କ ଅଭିଯୋଗ ଗୁଡିକ ଯେପରି ସିଧାସଳଖ ପ୍ରତିବିମ୍ବିତ ହୋଇ ସେଗୁଡିକର ପ୍ରତିକାର କରାଯାଇପାରେ ଅନ୍ୟ କେଉଁ ଶାସନ ବ୍ୟବସ୍ଥାରେ ତାହା ସମ୍ଭବ ନୁହେଁ । ତେଣୁ ସଂସଦୀୟ ଗଣତନ୍ତ୍ର ଭାରତର ଐତିହ୍ୟ ଓ ପରଂପରା ଦୃଷ୍ଟିରୁ ସର୍ବଶ୍ରେଷ୍ଠ ବୋଲି ମୋର ମତ ବ୍ୟକ୍ତ କରିଥିଲି ।

## ପରିବେଶ ସୁରକ୍ଷା କାର୍ଯ୍ୟକ୍ରମ ପିଠାବଟା (ଶିମିଳିପାଳ କର୍ମଶାଳା)

ଜଙ୍ଗଲର ସୁରକ୍ଷା ଓ ଉନ୍ନତି ପାଇ ସଦାସର୍ବଦା ମୋର ଅତ୍ୟଧିକ ଆଗ୍ରହ ଥିବାରୁ ପରିବେଶ ସୁରକ୍ଷା ଦିଗରେ ଜଙ୍ଗଲର ଏକ ବଡଭୂମିକା ଥିବାର ଉପଲବ୍ଧି କଲାଦିନୁ କ୍ରମେ ପରିବେଶସୁରକ୍ଷା କାର୍ଯ୍ୟକ୍ରମ ପ୍ରତି ଆକୃଷ୍ଟ ହେଲି । ୧୯୮୧ ମସିହାରେ ଫୁଲବାଣୀ ଠାରେ ଅନୁଷ୍ଠିତ ହୋଇଥିବା ପରିବେଶ ସଂପର୍କୀୟ ଏକ ଜାତୀୟ ସମ୍ମିଳନୀରେ ବିଧାନସଭାର ଜଣେ ସଭ୍ୟ ଭାବରେ ଯୋଗ ଦେଇଥିଲି । ସେଠାରେ ପ୍ରଥମ କରି ଓଡିଶା ପରିବେଶ ସମିତି ଗଠନ କରି ଅଚାନକ ଭାବେ ମୋତେ ତହିଁର ସଭାପତି ନିର୍ବାଚନ କରାଗଲା । ସେହି ଦିନଠାରୁ ମୁଁ କ୍ରମେ ଅଧିକରୁ ଅଧିକତର ପରିବେଶ କାର୍ଯ୍ୟକ୍ରମ ଓ ସେ ସଂକ୍ରାନ୍ତୀୟ ବୈଜ୍ଞାନିକ ଜ୍ଞାନ ଅର୍ଜ୍ଜନରେ ନିଜକୁ ନିୟୋଜିତ କରିବାରେ ଲାଗିଲି, ମୋ ଜିଲ୍ଲାରେ ଥିବା ବିଖ୍ୟାତ ଶିମିଳିପାଳ ପର୍ବତର ସୁରକ୍ଷା ମୋର ସମସ୍ତ ପରିବେଶ କାର୍ଯ୍ୟକ୍ରମରେ ସର୍ବଶେଷ ସ୍ଥାନ ଅଧିକାର

କରିଥିଲା । ବିଧାନସଭାରେ ଶିମିଳିପାଳ ସୁରକ୍ଷା ସଂପର୍କରେ ଆଲୋଚନା କରାଯାଇ ପ୍ରଥମ କରି ଓଡିଶା ବିଧାନସଭା ଇତିହାସରେ ଏକ ବିଧାନସଭା ଗୃହକମିଟି ଗଠିତ ହେଲାପରେ ରାଜ୍ୟରେ ଲୋକଙ୍କ ମଧରେ ଜଙ୍ଗଲ ସୁରକ୍ଷା କରି ପରିବେଶ ଚେତନା ସୃଷ୍ଟିକରିବା କାର୍ଯ୍ୟକ୍ରମ ତ୍ୱରାନ୍ୱିତ ହେବାକୁ ଲାଗିଲା । ସେତେବେଳେ ଆମ ଓଡିଶା ପରିବେଶ ସଭାର ଅଧକ୍ଷ ହେଲାପରେ ଉକ୍ତ ଗୃହକମିଟିର ସଭାପତି ହେଲାରୁ ଉକ୍ତ ପରିବେଶ ଆମରି ଉଦ୍ୟମରେ ପ୍ରତିଜିଲ୍ଲାରେ ସଂପୃକ୍ତ ଜିଲ୍ଲାପାଳଙ୍କ ସଭାପତିତ୍ୱରେ ସରକାରୀ ଓ ବେସରକାରୀ ଲୋକଙ୍କ ମିଳିତ ଉଦ୍ୟମରେ ଜିଲ୍ଲାପରିବେଶ ସୁରକ୍ଷା କମିଟିମାନ ଗଢିଉଠିଲା । ଏ ଦିଗରେ ମୟୂରଭଞ୍ଜ ଜିଲ୍ଲା ସମଗ୍ର ରାଜ୍ୟରେ ଅଗ୍ରଣୀ ହେଲା । ଜଙ୍ଗଲ ସୁରକ୍ଷା ପ୍ରତି ଲୋକେ ଏପରି ଭାବରେ ଆକୃଷ୍ଟ ହେଲେ ଯେ ମୟୂରଭଞ୍ଜ ଜିଲ୍ଲାରେ ଲୋକେ ସ୍ୱତଃ ଉତ୍ସାହିତ ହୋଇ ଗ୍ରାମ୍ୟ ଜଙ୍ଗଲ ସୁରକ୍ଷା କମିଟିମାନ ଗଠନ କରି ସରକାରୀ ଆର୍ଥିକ ସାହାଯ୍ୟ ବିନା ମଧ ନିଜ ନିଜ ମଧରେ ଚାନ୍ଦା ଆଦାୟ କରି ନିଜ ନିଜ ଗ୍ରାମ ନିକଟସ୍ଥ ଜଙ୍ଗଲର ସୁରକ୍ଷା ପାଇଁ ନିଜ ଗାଁ ଲୋକଙ୍କୁ ନିଯୁକ୍ତି ଦେଲେ । ଏବେ ପ୍ରତ୍ୟେକ ଗାଁ ନିକଟରେ ଥିବା ଜଙ୍ଗଲ ବଢିବାରେ ଲାଗିଛି । ରାଜ୍ୟସରକାର ମୟୂରଭଞ୍ଜର ଶିମିଳିପାଳ ପର୍ବତ ଅଞ୍ଚଳରେ ଗଛକଟା କାର୍ଯ୍ୟ କରୁଥିବା ଶିମିଳିପାଳ ବନ ଉନ୍ନୟନ ନିଗମ (S.F.D.C) ନାମକ ସଂସ୍ଥାକୁ ଗଛକଟାରୁ ନିବୃତ୍ତ କଲାପରେ ପରିବେଶ ସୁରକ୍ଷାର ପ୍ରଭାବ ଲୋକଙ୍କ ମଧରେ ଅଧିକ ମାତ୍ରାରେ ପଡିଲା । କିନ୍ତୁ କେତେକ ନ୍ୟସ୍ତ ସ୍ୱାର୍ଥବ୍ୟକ୍ତି ଜଙ୍ଗଲ ବିଭାଗର ଦୁର୍ନୀତି ଗ୍ରସ୍ତ କର୍ମଚାରୀଙ୍କ ସହାୟତାରେ ଜଙ୍ଗଲରୁ ଗଛକାଟି ଚୋରାଚାଲାଣ କରୁଥିବାରୁ ତହିଁର ନିରାକରଣ ପାଇଁ ଶିମିଳିପାଳ ପର୍ବତର ପାଦଦେଶରେ ଥିବା ଗ୍ରାମବାସୀଙ୍କ ମଧରେ ଜଙ୍ଗଲ ସୁରକ୍ଷାର ଚେତନା ସୃଷ୍ଟି କରିବା ଉଦ୍ଦେଶ୍ୟରେ ଓଡିଶାର ପରିବେଶ ସମିତି କେତେକ କାର୍ଯ୍ୟକ୍ରମ ଗ୍ରହଣ କଲେ । ଆମର ଏହି ଉଦ୍ଦେଶ୍ୟକୁ ସଫଳ କରିବା ପାଇଁ କେନ୍ଦ୍ର ସରକାରଙ୍କ ପରିବେଶ ସୁରକ୍ଷା ଓ ଜଙ୍ଗଲ ବିଭାଗ ତରଫରୁ କିଛି ଆର୍ଥିକ ସାହାଯ୍ୟ ମଧ ମିଳିଲା । ତଦନୁଯାୟୀ ଶିମିଳିପାଳ ପର୍ବତର ଚାରିପାଖର କେତେକ ମୁଖ୍ୟ ସ୍ଥାନମାନଙ୍କରେ ପରିବେଶ ଚେତନାର କର୍ମଶାଳାମାନ ଆୟୋଜନ କରାଗଲା । ଏହି କାର୍ଯ୍ୟକ୍ରମର ପ୍ରଥମ କର୍ମଶାଳା ବାଙ୍ଗିରୀପୋଷୀ ଠାରେ ଦୁଇଦିନଧରି ଅନୁଷ୍ଠିତ ହୋଇଥିଲା । ବିଭିନ୍ନ ଗ୍ରାମମାନଙ୍କରୁ ବହୁ ଯୁବକ ଏଥିରେ ଯୋଗ ଦେଇଥିଲେ । ବିଶିଷ୍ଟ ପରିବେଶବିଜ୍ଞାନୀ ମାନେ ଏଥିରେ ଭାଗନେଇ ଏହି ଯୁବକମାନଙ୍କୁ ଉପାଦେୟ ଶିକ୍ଷାଦାନ କରିଥିଲେ । ଏହାର ସଫଳତା ଲାଭହେବାରୁ ୨ୟ କର୍ମଶାଳା ଶିମିଳିପାଳ ମଧରେ ପୀଠାବଟାଠାରେ କରିବାରେ ଆୟୋଜନ କରାଗଲା । ଏଥିରେ ବାରିପଦା ସବଡିଭିଜନର ପୀଠାବଟା ନିକଟବର୍ତ୍ତୀ ଗ୍ରାମମାନଙ୍କର ଯୁବକସଂଘ ଓ ମହିଳା ସମିତିର ସଭ୍ୟମାନେ ଯୋଗ ଦେଇଥିଲେ । ମୁଁ ପ୍ରଧାନ ଅତିଥିଭାବେ ଯୋଗ ଦେଇ କର୍ମଶାଳା ଉଦ୍‌ଘାଟନ କରିଥିଲି । ମୟୂରଭଞ୍ଜ ଜିଲ୍ଲାପାଳଙ୍କ ପୌରହିତ୍ୟରେ ଆଲୋଚନା ଚକ୍ର ଆରମ୍ଭ ହେଲା ପ୍ରାୟ ପାଞ୍ଚଶହ ସ୍ତ୍ରୀ ଓ ପୁରୁଷ ଖୁବ୍ ଉତ୍ସାହର ସହିତ ଏଥିରେ ଯୋଗ ଦେଇଥିଲେ । ଜିଲ୍ଲାପ୍ରଶାସନ ଏହି କର୍ମଶାଳାକୁ ସଫଳ କରିବାରେ ବେଶ ତତ୍ପରତା ପ୍ରକାଶ କରିଥିଲା । ଶିମିଳିପାଳ ବନଉନ୍ନୟନ ନିଗମର ପରିଚାଳନା ନିର୍ଦ୍ଦେଶକ ଶ୍ରୀଯୁକ୍ତ ତ୍ରିଲୋଚନ ରଥ ଏହି କର୍ମଶାଳାରେ ସମ୍ମାନନୀୟ ଅତିଥିଭାବରେ ଯୋଗ ଦେଇଥିଲେ । ଏହି କର୍ମଶାଳା ଶିମିଳିପାଳ ପର୍ବତ ମଧରେ ଏକ ବୃକ୍ଷଲତା ଭରା ସ୍ଥାନରେ ଅନୁଷ୍ଠିତ ହୋଇଥିବାରୁ ଏକ ଉତ୍ସାହମୂଳକ ପରିବେଶ ସୃଷ୍ଟି ହୋଇପାରିଥିଲା, ମଧାହ୍ନ ଭୋଜନ ପରେ ବାରିପଦା ଓ କପ୍ତିପଦା ସବଡିଭିଜନର ବିଭିନ୍ନ ଗ୍ରାମରୁ ଆସିଥିବା ଯୁବକସଂଘ ଓ ମହିଳା ସମିତିର ପ୍ରତିନିଧିମାନଙ୍କ ମଧରେ ପରିବେଶ ଚେତନା ସଂକ୍ରାନ୍ତରେ ଏକ ପ୍ରତିଯୋଗିତା ମୂଳକ ଜ୍ଞାନ ପରୀକ୍ଷା କରାଯାଇ ସେମାନଙ୍କୁ ପୁରସ୍କାର ମଧ ପ୍ରଦାନ କରାଯାଇଥିଲା । ବିଜ୍ଞ ବ୍ୟକ୍ତି ମାନଙ୍କର ଆଲୋଚନା, ପ୍ରତିନିଧିମାନଙ୍କର ଆଗ୍ରହ ଓ ଉତ୍ସାହ ପ୍ରଭୃତି ସବୁ ଦୃଷ୍ଟିରୁ ଏହି କର୍ମଶାଳାଟି ଜଙ୍ଗଲ ମଧରେ ଅନୁଷ୍ଠିତ ହୋଇ ବେଶ ସଫଳତା ଲାଭ କରି ପାରିଥିଲା ।

## "ଓଡିଶାର ବିଛିନ୍ନାଞ୍ଚଳ ସହିତ ମୋର ସଂପର୍କ"

ଇଂରେଜମାନେ ଭାରତର ପ୍ରାୟ ସମସ୍ତ ଅଞ୍ଚଳ ଦଖଲ କରିସାରିଲାପରେ ୧୮୦୩ ଖ୍ରୀ.ରେ ଓଡିଶା ଇଂରେଜ ଶାସନର ଅନ୍ତର୍ଭୁକ୍ତ ହେଲା । ସେତେବେଳେ ଓଡିଶାକୁ ଲାଗିଥିବା ମାଡ୍ରାସ ପ୍ରେସିଡେନ୍ସି , ବେଙ୍ଗଲ ପ୍ରେସିଡେନ୍ସି ଓ ସେଣ୍ଟ୍ରାଲ ପ୍ରେସିଡେନ୍ସି ନାମରେ ତିନୋଟି ରାଜ୍ୟ ଇଂରେଜ ମାନଙ୍କର ପ୍ରତ୍ୟକ୍ଷ ନିୟନ୍ତ୍ରଣାଧୀନ ହୋଇ ରହିବାରୁ ଓଡିଆ ଅଂଚଳକୁ ଖଣ୍ଡବିଖଣ୍ଡ କରି ଏହି ତିନିଟି ଇଂରେଜ ଶାସନ ଅଞ୍ଚଳରେ ସାମିଲ କରିଦେଇ ଭାରତର ଏକ ପୁରାତନ ତଥା ଐତିହ୍ୟପୂର୍ଣ୍ଣ ଭାଷାଭାଷୀ ଅଞ୍ଚଳର ବିଲୋପ ସାଧନ କରିବାରେ ଏକ ଦୁଃଖଦାୟକ ଅଧ୍ୟାୟ ଆରମ୍ଭ କରାଗଲା । ଫଳରେ ଓଡିଶାର ଭାଷା, ସଂସ୍କୃତି ଓ ପରଂପରା ତଥା ଗୌରବମୟ ଇତିହାସ ଉପରେ ଏକ ପ୍ରଚଣ୍ଡ ଆଘାତ ଆସିଲା । ଆଜିର ଗଞ୍ଜାମ, କୋରାପୁଟ୍ ଓ ସେଥି ସଂଲଗ୍ନ କେତେକ ଅଞ୍ଚଳ ମାଡ୍ରାସ ପ୍ରେସିଡେନ୍ସିର, କଟକ, ପୁରୀ, ବାଲେଶ୍ୱର ଓ ଅନ୍ୟକେତେକ ଅଞ୍ଚଳ ସେଣ୍ଟ୍ରାଲ ପ୍ରେସିଡେନ୍ସିର ଅନ୍ତର୍ଭୁକ୍ତ ହେବା ଫଳରେ ଓଡିଆ ଲୋକଙ୍କ ମଧ୍ୟରେ ନିଜର ସଂସ୍କୃତି ଓ ଭାଷାକୁ ରକ୍ଷା କରିବା ଦିଗରେ କୌଣସି ଯୋଗସୂତ୍ର ରହିପାରିଲା ନାହିଁ । ଏହି ଅବସ୍ଥାରେ ସମଗ୍ର ଓଡିଆ ଅଂଚଳ ତଥା ତାର ଭାଷା ଓ ସଂସ୍କୃତି ପ୍ରାୟ ଏକଶହ ବର୍ଷ ରହିଲାପରେ ବିଂଶ ଶତାବ୍ଦୀର ପ୍ରାରମ୍ଭରେ କଟକ, ପୁରୀ, ବାଲେଶ୍ୱର ପ୍ରଭୃତି ଅଞ୍ଚଳ ବେଙ୍ଗଲ ପ୍ରେସିଡେନ୍ସିରୁ ଆସି ବିହାର ସହିତ ମିଶି ବିହାର ଓଡିଶା ନାମରେ ଏକ ସ୍ୱତନ୍ତ୍ର ପ୍ରଦେଶ ଗଠିତ ହେବାପ ରେ ଓଡିଆ ମାନଙ୍କ ମଧ୍ୟରେ ଏକ ନୂତନ ପ୍ରେରଣା ସଞ୍ଚାର ହେଲା । ଓଡିଶାକୁ ସ୍ୱତନ୍ତ୍ର ରାଜ୍ୟରେ ପରିଣତ କରିବା ଦିଗରେ ପୂର୍ବରୁ ଚାଲିଥିବା ଉଦ୍ୟମ କ୍ରମେ ଶକ୍ତିଶାଳୀ ହୋଇଉଠିଲା ଏବଂ ପରିଣାମରେ ୧୯୩୬ ମସିହା ବେଳକୁ ବିଲାତର ଗୋଲଟେବୁଲ ବୈଠକର ନିଷ୍ପତ୍ତି ଅନୁଯାୟୀ ସେହିବର୍ଷ ଏପ୍ରିଲମାସର ପହିଲା ତାରିଖରୁ ଉପରୋକ୍ତ ତିନି ଅଞ୍ଚଳରୁ କଟକ, ପୁରୀ, ବାଲେଶ୍ୱର, ଗଞ୍ଜାମ, କୋରାପୁଟ ଓ ସମ୍ବଲପୁରକୁ ନେଇ ମାତ୍ର ୬ଟି ଜିଲ୍ଲାରେ ଏକ କ୍ଷୁଦ୍ର ଓଡିଶା ପ୍ରଦେଶ ଗଠନ କରାଗଲା; କିନ୍ତୁ ଅନ୍ୟ ଅଞ୍ଚଳ ଗୁଡିକ ବିଚ୍ଛିନ୍ନ ହୋଇ ମାଡ୍ରାଜ ବେଙ୍ଗଲ ଓ ମଧ୍ୟପ୍ରଦେଶରେ ସେହି ଦିନୁ ଯେ ରହିଗଲା ତାହା ଆଜି ପର୍ଯ୍ୟନ୍ତ ସେହିପରି ରହିଗଲା । ସ୍ୱାଧୀନତା ପ୍ରାପ୍ତିପରେ ଓଡିଆ ଭାଷାଭାଷୀ ଗଡଜାତ ଗୁଡିକ ଓଡିଶା ରାଜ୍ୟ ସହିତ ମିଶି ଏକ ବୃହତ୍ତର ଓଡିଶା ରାଜ୍ୟ ଗଠିତ ହେଲା ଏବଂ ପୂର୍ବ ୬ଟି ଜିଲ୍ଲାପରେ ମୟୂରଭଞ୍ଜ, କେଉଁଝର, ଢେଙ୍କାନାଳ, ସୁନ୍ଦରଗଡ, ବଲାଙ୍ଗୀର, କଳାହାଣ୍ଡି ଫୁଲବାଣୀ ପ୍ରଭୃତି ପୂର୍ବ ଗଡଜାତ ଗୁଡିକୁ ନେଇ ଆଉ ସାତଗୋଟି ଜିଲ୍ଲା ଗଠିତ ହୋଇ ତହିଁର ଅନ୍ତର୍ଭୁକ୍ତ ହେଲେ ହେଁ ଅନ୍ୟ ବହୁ ବିରାଟ ଓଡିଆ ଅଞ୍ଚଳ ଆଜିପର୍ଯ୍ୟନ୍ତ ବିଚ୍ଛିନ୍ନ ହୋଇ ଏକ ଦୁଃଖ ଦାୟକ ସ୍ତମ୍ଭରୂପେ ଆଜିର ଆନ୍ଧ୍ର, ପଶ୍ଚିମବଙ୍ଗ ବିହାର ଓ ମଧ୍ୟପ୍ରଦେଶରେ ରହିଯାଇଛି ।

୧୯୫୬ମସିହା ବେଳକୁ ବିଭିନ୍ନ ଭାଷାଭାଷୀ ଭିତ୍ତିରେ ପ୍ରଦେଶ ଗଠନ ପାଇଁ ଭାରତ ସରକାର ଯେଉଁ କମିସନ ବସାଇଲେ ତଦ୍ଦ୍ୱାରା ଭାରତର ଆଉ କେତେଟି ନୂତନ ରାଜ୍ୟ ନିଜ ଭାଷାଭାଷୀର ଅଞ୍ଚଳକୁ ନେଇ ଗଠିତ ହୋଇପାରିଲେ ମଧ ଓଡିଶାର ଦୁର୍ବଳ ନେତୃତ୍ୱ ଉକ୍ତ ୪ଟି ରାଜ୍ୟରେ ରହିଯାଇଥିବା ଓଡିଆ ଅଞ୍ଚଳ ଗୁଡିକୁ ଫେରାଇ ଆଣିବାରେ ବିଫଳ ହେଲା । ଭାରତର ଅନ୍ୟାନ୍ୟ ଅଞ୍ଚଳ ଅପେକ୍ଷା ଓଡିଶା ସବୁଠାରୁ ଅଧିକ କ୍ଷତିଗ୍ରସ୍ତ ହେଲା ଓ ସଂପୂର୍ଣ୍ଣ ଓଡିଆ ଭାଷାଭାଷୀ ଅଂଚଳ ଗୁଡିକୁ ଚିରଦିନ ପାଇଁ ସେହିପରି ବିଚ୍ଛିନ୍ନାଞ୍ଚଳ ଭାବେ ରହିଗଲା । ଏହିଭଳି ସମସ୍ୟା ଭାରତର ବହୁ ରାଜ୍ୟରେ କିଛି ମାତ୍ରାରେ କରିବାର ବ୍ୟବସ୍ଥା ଭାରତର ସଂବିଧାନରେ କରାଗଲା ତଥା ସଂପୃକ୍ତ ରାଜ୍ୟ ଗୁଡିକୁ ତାର ସୁରକ୍ଷାର ଦାୟିତ୍ୱ ମଧ ଦିଆଗଲା । ମାତ୍ର ସଂପୃକ୍ତ ରାଜ୍ୟସରକାର ମାନେ ଜାଣିଶୁଣି ଏହାର ଖିଲାପ କଲେ ମଧ ଏହାର ପ୍ରତିକାର ଜାତୀୟ ସ୍ତରରେ ଯଥାଯଥ ଭାବେ ହୋଇପାରୁନାହିଁ । ଅବଶ୍ୟ ସେଗୁଡିକର ସୁରକ୍ଷାର ଅନୁଧାନ କରିବା ପାଇଁ ସାମ୍ବିଧାନିକ ବ୍ୟବସ୍ଥା ଅନୁଯାୟୀ କେନ୍ଦ୍ର ସରକାର ଏକ କମିସନର ବ୍ୟବସ୍ଥା କରିଛନ୍ତି ଏବଂ ଉକ୍ତ କମିସନ ସଂପୃକ୍ତ ରାଜ୍ୟ ସରକାର ମାନଙ୍କ ସାଂବିଧାନିକ ଖିଲାପ ସଂପର୍କରେ ରିପୋର୍ଟମାନ ଦେଉଥିଲେ ହେଁ ତାର ଫଳପ୍ରଦ ପ୍ରତିକାର ହୋଇପାରୁନାହିଁ । ତେବେ ଯେଉଁ ବିଚ୍ଛିନ୍ନାଞ୍ଚଳରେ ଓଡିଆମାନେ ସଂଗଠିତ ହୋଇ ନିଜ ଭାଷା ଓ ସଂସ୍କୃତିର ସୁରକ୍ଷା ପାଇଁ ଆନ୍ଦୋଳନ କରିପାରୁଛନ୍ତି ସେଠାରେ ସଂପୂର୍ଣ୍ଣ ଭାବରେ ନ ହେଲେ ମଧ କିଛି କିଛି ଦାବୀ ହାସଲ କରି ପାରୁଛନ୍ତି । ଏମାନଙ୍କୁ

ନୈତିକ ସାହାଯ୍ୟ ଦେବାପାଇଁ ଓଡିଶାରେ ଉତ୍କଳ ସମ୍ମିଳନୀ ନାମରେ ଏକ ଅଣରାଜନୈତିକ ବେସରକାରୀ ଅନୁଷ୍ଠାନ କାର୍ଯ୍ୟ କରୁଥିଲେ ହେଁ ତାହା ବିଶେଷ ଫଳପ୍ରଦ ହୋଇପାରୁନାହିଁ । ମୁଁ ବିଧାନ ସଭାର ସଭ୍ୟ ହେଲା ଦିନୁଁ ବିଶେଷ କରି ବିହାର ରାଜ୍ୟର ଓଡିଆ ମାନଙ୍କ ମାତୃଭାଷାର ରକ୍ଷାପାଇଁ ଓଡିଆ ସ୍କୁଲ ଗୁଡିକର ପ୍ରତିଷ୍ଠା ଓ ରକ୍ଷଣାବେକ୍ଷଣ ସଂକ୍ରାନ୍ତରେ ଯେତେବେଳେ ଯେଉଁ ଅଭିଯୋଗମାନ ଖବର କାଗଜରେ ପ୍ରକାଶ ପାଉଥିଲା ସେ ସଂପର୍କରେ ବିଧାନସଭାରେ ଦୃଷ୍ଟି ଆକର୍ଷଣକାରୀ ପ୍ରଶ୍ନମାନ ଉଠାଇ ରାଜ୍ୟ ସରକାରଙ୍କୁ ସେ ଦିଗରେ ପ୍ରତିକାର ପାଇଁ ପ୍ରଭାବିତ କରୁଥିଲି । ବିହାରରେ ଥିବା ଓଡିଆ ମାନଙ୍କ ପ୍ରତି ସ୍ୱତନ୍ତ୍ର ଭାବରେ ମୋର ଏପରି ଆଗ୍ରହ ହେବାର କାରଣ ହେଉଛି ମୋର ପୂର୍ବପୁରୁଷମାନେ ପ୍ରାୟ ଏକଶହ ବର୍ଷ ପୂର୍ବେ ବିହାରର ଷଢେଇକଳାରୁ ମୟୂରଭଞ୍ଜକୁ ଆସିଥିଲେ । ମୁଁ ବିଧାନସଭାର ଅଧ୍ୟକ୍ଷ ହେବାପରେ ଉକ୍ତ ବିହାର ଅଞ୍ଚଳର ଓଡିଆ ମାନଙ୍କର ଅଧିକ ସଂପର୍କରେ ଆସିଲି ଓ ପ୍ରଥମ କରି ଓଡିଶା ବିଧାନସଭାରେ ବିଚ୍ଛିନ୍ନାଞ୍ଚଳର ଓଡିଆ ମାନଙ୍କର ସାଂବିଧାନିକ ଅଧିକାର ଗୁଡିକର ସୁରକ୍ଷା ସଂପର୍କରେ ଅନୁଧ୍ୟାନ କରି ରାଜ୍ୟସରକାରଙ୍କୁ ପରାମର୍ଶ ଦେବାପାଇଁ ଏକ ଗୃହକମିଟି ଗଠନ କରିବାରେ ସଫଳକାମ ହେଲି । ଉକ୍ତ କମିଟିରେ ବିଧାନସଭାର ଅଧ୍ୟକ୍ଷଙ୍କ ସମେତ ସରକାରୀ ଓ ବିରୁଦ୍ଧ ଦଳରୁ ମିଶି ୧୨ଜଣ ସଭ୍ୟ ରହିଲେ ଏହି କମିଟିର ବୈଠକକୁ ବିଚ୍ଛିନ୍ନାଞ୍ଚଳର ବିଶିଷ୍ଟ ବ୍ୟକ୍ତିମାନଙ୍କୁ ମଧ ନିମନ୍ତ୍ରଣ କରାଯାଇ ତାଙ୍କ ଠାରୁ ସାକ୍ଷ୍ୟ ଗ୍ରହଣ କରିବାର ତଥା କମିଟି ବିଚ୍ଛିନ୍ନାଞ୍ଚଳକୁ ପରିଦର୍ଶନରେ ଯାଇ ସମସ୍ୟାର ଅନୁଧ୍ୟାନ କରିବାର ମଧ ବ୍ୟବସ୍ଥା ରଖାଗଲା । ମୋର ଏହି ପଦକ୍ଷେପ ନିଜ ଭାଷା ଓ ସଂସ୍କୃତିର ସୁରକ୍ଷା ପାଇଁ ବିଚ୍ଛିନ୍ନାଞ୍ଚଳର ଓଡିଆମାନଙ୍କ ମଧରେ ଏକ ନୂତନ ଆଶା ଓ ପ୍ରେରଣା ଉଦ୍ରେକ କରିବାରେ ବେଶ୍ ସଫଳ ହୋଇପାରିଲା ।

## ''ବିହାର ସରକାରଙ୍କ ବାଧା''

୧୯୮୭ମସିହା ଜାନୁୟାରୀ ମାସ ବେଳକୁ ବିଧାନସଭାର ଗୃହ କମିଟି ସିଂହଭୂମି ଜିଲ୍ଲାର ଓଡିଆ ଲୋକେ ବାସ କରୁଥିବା ଅଞ୍ଚଳ ପରିଦର୍ଶନ କରିବାର କାର୍ଯ୍ୟକ୍ରମ ବିଚ୍ଛିନ୍ନାଞ୍ଚଳର ମୁଖ୍ୟ ବ୍ୟକ୍ତି ମାନଙ୍କ ଅନୁରୋଧ କ୍ରମେ ସ୍ଥିର କଲାପରେ ସେଠାକାର ବିଭିନ୍ନ ସ୍ଥାନରେ ଥିବା ଓଡିଆମାନେ ଅତି ଆଗ୍ରହର ସହିତ ସମ୍ବର୍ଦ୍ଧନାର ଆୟୋଜନ ମାନ କଲେ । ଏହି ପରିଦର୍ଶନ ସମୟରେ ସେଠାରେ ଚାଲିଥିବା ଓଡିଆ ସ୍କୁଲଗୁଡିକ ପ୍ରତି ବିହାର ସରକାରଙ୍କ ସାହାଯ୍ୟ ସହନୁଭୂତିରେ ପାତର ଅନ୍ତର ବ୍ୟବହାର, ଅନ୍ୟ ହୀନ୍ଦି ସ୍କୁଲମାନଙ୍କରେ ଓଡିଆ ଶିକ୍ଷକଙ୍କର ଅଭାବ, ତଥା ଓଡିଆ ପାଠ୍ୟପୁସ୍ତକ ଯୋଗାଣ ପ୍ରଭୃତି ବିଷୟ ଗୃହକମିଟି ଅନୁଧ୍ୟାନ କରିବାର କାର୍ଯକ୍ରମ ରଖାଯାଇ ବିହାର ସରକାରଙ୍କୁ ଜଣାଇ ଦିଆଗଲା । ବିହାର ସରକାର ସର୍ବଦା ସାମ୍ବିଧାନିକ କର୍ତ୍ତବ୍ୟ ପାଳନରେ ଅବହେଳା କରି ସଂଖ୍ୟାନ୍ୟୁନ ଓଡିଆ ମାନଙ୍କର ଭାଷା ଓ ସଂସ୍କୃତି ରକ୍ଷା ଦିଗରେ ଖିଲାପ କରୁଥିବାରୁ ଓଡିଶା ବିଧାନସଭା ଗୃହକମିଟି ଆଗରେ ଲୋକେ ଆପତ୍ତି ଅଭିଯୋଗ କରିବାର ଜାଣିପାରି ବିହାରର ମୁଖ୍ୟମନ୍ତ୍ରୀ ଓଡିଶାର ମୁଖ୍ୟମନ୍ତ୍ରୀଙ୍କୁ ଆଇନ ଶୃଙ୍ଖଳା ରକ୍ଷା କରିବା ଦିଗରେ ବ୍ୟାଘାତ ଘଟିବାର ଆଳ ଦେଖାଇ ଉକ୍ତ ଗୃହକମିଟିର ଗ୍ରସ୍ତକାର୍ଯ୍ୟକ୍ରମକୁ ସ୍ଥଗିତ ରଖିବାକୁ ଅନୁରୋଧ କଲେ । ଆମେ ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ଜାନକୀବଲ୍ଲଭ ପଟ୍ଟନାୟକ ଏପରି ଅବସ୍ଥାରେ ରାଜ୍ୟରାଜ୍ୟ ମଧରେ ଅଯଥା ବିବାଦ ଘଟିବାର ସମ୍ଭାବନା ଥିବାରୁ ଗୃହ କମିଟିର ଉକ୍ତ ଗସ୍ତକାର୍ଯ୍ୟକ୍ରମ ବନ୍ଦ କରିବାକୁ ମୋତେ ଅନୁରୋଧ କଲେ । ଠିକ୍ ଆମ ନିର୍ଦ୍ଧାରିତ ଗସ୍ତ କାର୍ଯ୍ୟକ୍ରମର ପୂର୍ବଦିନ ଏହା ସ୍ଥଗିତ କରାଯିବାରୁ ସିଂହଭୂମିର ଓଡିଆମାନେ ଅତ୍ୟନ୍ତ ମର୍ମାହତ ହେଲେ ତେଣୁ ମୁଁ ସେଦିନ ସକାଳେ ଏକୁଟିଆ ମୟୂରଭଞ୍ଜ ଓ ସିଂହଭୂମି ଜିଲ୍ଲାର ସୀମା ଯାମଶୋଳାଘାଟର ଅପର ପାର୍ଶ୍ୱରେ ଥିବା ମାତ୍ର ଦୁଇଟି ଗ୍ରାମ ପରିଦର୍ଶନ କରି ଫେରିଆସିବାକୁ ବାଧ ହେଲି । ମାତ୍ର ଏଥିପୂର୍ବରୁ ଆନ୍ଧ୍ରର ସିକାକୁଲମ ଜିଲ୍ଲାରେ ଏହି ଗୃହକମିଟିର ଗସ୍ତକାର୍ଯ୍ୟକ୍ରମ ଅବାଧରେ ଚାଲି ପାରିଥିଲା ।

## ''ରାଜ୍ୟ ମଧ୍ୟରେ ତଥା ବିହାର ଓ ଆନ୍ଧ୍ର ପ୍ରଦେଶର ବିଭିନ୍ନ ସ୍ଥାନରେ ସମ୍ମାନିତ''

ବିଧାନ ସଭାର ଅଧ୍ୟକ୍ଷ ଥିବା ସମୟରେ ଓଡ଼ିଶାର ବିଭିନ୍ନ ସମାବେଶ ଓ ଶିକ୍ଷାନୁଷ୍ଠାନ ମାନଙ୍କରେ ମୋତେ ସମ୍ମାନିତ କରାଯାଇଥିଲା । ପୁରୀ ଜିଲ୍ଲାର ବାଣପୁରସ୍ଥ ଗୋଦାବରୀଶ ମହାବିଦ୍ୟାଳୟରେ, ମୟୁରଭଞ୍ଜ ଜିଲ୍ଲାର ଉପେନ୍ଦ୍ର ମହାବିଦ୍ୟାଳୟରେ ତଥା ରାଇରଙ୍ଗପୁର ମହାବିଦ୍ୟାଳୟ ମାନଙ୍କର ବାର୍ଷିକ ଉତ୍ସବରେ ଯୋଗ ଦେବାର ସୁଯୋଗ ମିଳିଥିଲା । ଏତଦ୍ ବ୍ୟତୀତ ଭୁବନେଶ୍ୱରରେ ଅନୁଷ୍ଠିତ ଇତିହାସ କଂଗ୍ରେସରେ ଯୋଗ ଦେବା ଓ ବାରିପଦା ଠାରେ ଅନୁଷ୍ଠିତ ଓଡ଼ିଶାର ଏକ ବଡ଼ ଧରଣର ସାହିତ୍ୟିକ ସମାରୋହର ଅଭ୍ୟର୍ଥନା ସମିତିର ସଭାପତି ହେବାର ସୁଯୋଗ ମଧ୍ୟ ମୋତେ ମିଳିଥିଲା । ବିହାରର ସିଂହଭୂମି ଜିଲ୍ଲା ଓ ଆନ୍ଧ୍ରର ସିକାକୁଲମ ଜିଲ୍ଲାରେ ବିଛିନ୍ନାଞ୍ଚଳ ଓଡ଼ିଆ ମାନଙ୍କର ବହୁ ସମାବେଶରେ ଯୋଗଦେଇ ଥିବାରୁ ସେମାନେ ସମ୍ବର୍ଦ୍ଧନା ଜ୍ଞାପନ କରିଥିଲେ । ବିହାର ଷଢ଼େଇକଳା ଛଉନୃତ୍ୟ ଅନୁଷ୍ଠାନର ବାର୍ଷିକ ଉତ୍ସବରେ ଯୋଗ ଦେବାର ସୁଯୋଗ ମଧ୍ୟ ମୋତେ ମିଳିଥିଲା । ମୋର ପୂର୍ବ ପୁରୁଷଙ୍କୁ ଛଉନୃତ୍ୟଗୁରୁ ଭାବରେ ଷଢ଼େଇକଳାରୁ ମୟୂରଭଞ୍ଜକୁ ରାଜଶାସନ ସମୟରେ ଅଣାଯାଇଥିବାରୁ ଏଠା ବିଛିନ୍ନାଞ୍ଚଳର ଓଡ଼ିଆମାନେ ମୋତେ ତାଙ୍କ ଭିତରୁ ଜଣେ ବୋଲି ସର୍ବଦା ମନେ କରନ୍ତି । ଏତଦ୍ ବ୍ୟତୀତ ମୁଁ ଓଡ଼ିଶା ପରିବେଶ ସଂକ୍ରାନ୍ତୀୟ ସମାବେଶରେ ପୁରୋଧା ହେବାର ସୁଯୋଗ ମିଳିଥିଲା । କଟକ ଠାରେ ଅନୁଷ୍ଠିତ ଏକ ଆନ୍ତର୍ଜାତିକ ପରିବେଶ ସମ୍ମିଳନୀରେ ମୁଖ୍ୟ ଅତିଥି ହେବାର ସୁଯୋଗ ମିଳିଥିଲା ।

## 'ରାଷ୍ଟ୍ରପତିଙ୍କ ଆଗମନ'
## ''ମହତାବ ଜୟନ୍ତୀ ଓ ପଣ୍ଡିତ ନେହେରୁଙ୍କ ମୂର୍ତ୍ତି ଉନ୍ମୋଚନ''

ରାଷ୍ଟ୍ରପତିଙ୍କ ଓଡ଼ିଶା ଆସିବାର କାର୍ଯ୍ୟକ୍ରମ ଥାଏ । ତେଣୁଁ ଆମେ ସମସ୍ତେ ଦିନ ୧୨ଟା ସୁଦ୍ଧା ବିମାନଘାଟିଠାରେ ଯାଇ ପହଞ୍ଚିଲୁ । ସେଠାରେ ରାଷ୍ଟ୍ରପତିଙ୍କ ଅଭ୍ୟର୍ଥନା ପାଇଁ ଏକ ସ୍ୱତନ୍ତ୍ର ମଣ୍ଡପ ନିର୍ମାଣ ହୋଇଥାଏ । ରାଷ୍ଟ୍ରପତି ଏକ ବିମାନ ଯୋଗେ ଦୀଲ୍ଲିରୁ ଆସି ଦିନ ୧୨ଟା ବେଳେ ଭୁବନେଶ୍ୱର ବିମାନ ଘାଟିରେ ଅବତରଣ କଲେ । ମୁଖ୍ୟମନ୍ତ୍ରୀ ଓ ରାଜ୍ୟପାଳ ପ୍ରଥମେ ରାଷ୍ଟ୍ରପତିଙ୍କ ଅଭ୍ୟର୍ଥନା ଜଣାଇଲା ପରେ ରାଷ୍ଟ୍ରପତି ଆମ୍ଭମାନଙ୍କ ନିକଟରେ ଆସି ସମସ୍ତଙ୍କ ଅଭିବାଦନ ଗ୍ରହଣ କଲେ । ଅପରାହ୍ଣରେ ଡ଼କ୍ଟର ହରେକୃଷ୍ଣ ମହତାବଙ୍କ ଜୟନ୍ତୀ ତଥା ସ୍ୱାଧୀନତା ସଂଗ୍ରାମୀ ମାନଙ୍କର ଏକ ସମ୍ମିଳନୀ ଥିବାରୁ ଏଥିରେ ଆୟୋଜିତ ଏକ ସମାବେଶରେ ରାଷ୍ଟ୍ରପତି ଉଦ୍‌ବୋଧନ ଦେଇଥିଲେ । ଅଭ୍ୟର୍ଥନା ସମିତି ପକ୍ଷରୁ ସ୍ୱାଗତ ଭାଷଣ ଦେବାପରେ ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ଜାନକୀ ପଟ୍ଟନାୟକଙ୍କ ସମେତ କେତେକ ସ୍ୱାଧୀନତା ସଂଗ୍ରାମୀ ଭାଷଣ ଦେଇଥିଲେ । ମୁଁ ସ୍ୱାଧୀନତା ସଂଗ୍ରାମୀ ଭାବେ ନିମନ୍ତ୍ରୀତ ହୋଇ ଏଥିରେ ଯୋଗଦାନ କରିଥିଲି ।

## ''ଭୁବନେଶ୍ୱର ଠାରେ ପଣ୍ଡିତ ନେହେରୁଙ୍କ ପ୍ରତିମୂର୍ତ୍ତି ଉନ୍ମୋଚନ''

ବିଧାନସଭା ମାର୍ଗ ଆରମ୍ଭରେ ଭୁବନେଶ୍ୱର ରେଳଷ୍ଟେସନ ନିକଟସ୍ଥ ଏକ ଛୋଟ ବଗିଚା ମଧ୍ୟରେ ସ୍ୱର୍ଗତ ପଣ୍ଡିତ ନେହେରୁଙ୍କ ଏକ ପ୍ରତିମୂର୍ତ୍ତି ତିଆରି ହୋଇଥିଲା । ଏହା ବ୍ରଞ୍ଜ ନିର୍ମିତ ଏକ ପ୍ରତିମୂର୍ତ୍ତି । ରାଜଧାନୀର ପ୍ରବେଶ ପଥରେ ଏକ ସୁସଜ୍ଜିତ ପାର୍କ ମଧ୍ୟରେ ଏହି ମୂର୍ତ୍ତିଟି ସ୍ଥାପନ କରାଯାଇଥିଲା । ତା୪/୧/୮୯ ରିଖ ଦିନ ରାଷ୍ଟ୍ରପତି ଆମ ସମସ୍ତଙ୍କ ଉପସ୍ଥିତିରେ ଏହି ମୂର୍ତ୍ତିଟି ଉନ୍ମୋଚନ କରିଥିଲେ । ଭୁବନେଶ୍ୱରଠାରେ ପଣ୍ଡିତ ନେହେରୁଙ୍କ ବ୍ୟତୀତ ଶ୍ରୀମତୀ ଇନ୍ଦିରାଗାନ୍ଧୀ, ପଣ୍ଡିତ ଗୋପବନ୍ଧୁ ଦାସ, ମହାତ୍ମାଗାନ୍ଧୀ ପ୍ରଭୃତିଙ୍କ ପ୍ରତିମୂର୍ତ୍ତି ମାନ ବିଭିନ୍ନ ସାଧାରଣ ସ୍ଥାନ ମାନଙ୍କରେ ସ୍ଥାପନ କରାଯାଇଅଛି । ଆମ ଭବିଷ୍ୟତ ବଂଶଧର ମାନଙ୍କ ଆଦର୍ଶ ତଥା ଚରିତ୍ର ଗଠନରେ କିଛିନା କିଛି ପ୍ରଭାବ ପକାଇବା ଉଦ୍ଦେଶ୍ୟରେ ସର୍ବଭାରତୀୟ ସ୍ତରର ମହାନ୍ ବ୍ୟକ୍ତିମାନଙ୍କର ମୂର୍ତ୍ତି ସାଧାରଣ ସ୍ଥାନମାନଙ୍କରେ ସ୍ଥାପନ କରାଯାଇଅଛି । ହୁଏତ ଏହାପରେ ଯେଉଁମାନେ ଜନ୍ମ ଗ୍ରହଣ କରିବେ ସେମାନେ ଏହି ପ୍ରତିମୂର୍ତ୍ତିମାନ ଦର୍ଶନ କରି ମହାପୁରୁଷ ମାନଙ୍କଠାରୁ କିଛି କିଛି ପ୍ରେରଣା ପାଇ ନିଜର ପାଥେୟ ସୃଷ୍ଟି କରିବାରେ କ୍ଷମ ହେବେ । ଅବଶ୍ୟ ଆଜିକାଲି ସହର ବଜାର ଓ ରାଜଧାନୀ ମାନଙ୍କରେ ଥିବା ଯୁବକ ଓ ଛାତ୍ର ମାନଙ୍କର ଯେପରି କ୍ରମେ ନୈତିକ ପତନ ଆରମ୍ଭ ହେବାର ଦେଖାଗଲାଣି ଓ ବିଶେଷ କରି ଯୁବକ ମାନଙ୍କଠାରୁ ସହନଶୀଳତା ଦୂରେଇ ଯାଉଛି ଓ ପ୍ରତିବଦଳରେ କଥା କଥାକେ ହିଂସା ଆଚରଣ କରିବାକୁ ପଶ୍ଚାତପଦ ହେଉନାହାନ୍ତି । ଏହା କେବଳ ପରିତାପର ବିଷୟ ନୁହେଁ ବରଂ ଏହା ଭାରତୀୟ ସଂସ୍କୃତି ଓ ପରଂପରାର ପରିପନ୍ଥୀ ।

# ''ଡ଼େରାଡୁନ୍ ପରିଦର୍ଶନ''

ବହୁ ଦିନର ଉତ୍ତର ପ୍ରଦେଶରେ ଚାଲିଥିବା ପରିବେଶ ଆନ୍ଦୋଳନର ମୁଖ୍ୟ ଶ୍ରୀଯୁକ୍ତ ବହୁଗୁଣାଙ୍କୁ ଭେଟି ତାଙ୍କ ସହିତ ଆଲୋଚନା କରିବାକୁ ମୋ ମନରେ ଅତ୍ୟନ୍ତ ଆଗ୍ରହ ଜନ୍ମିଲା । ଉତ୍ତର ପ୍ରଦେଶର ହିମାଳୟ ପାଦ ଦେଶରେ ଜଙ୍ଗଲ କଟା ବନ୍ଦ କରିବାପାଇଁ ଜନସାଧାରଣଙ୍କ ମଧ୍ୟରେ ଯେଉଁ ଚିପ୍‌କୋ ଆନ୍ଦୋଳନର ସୂତ୍ରପାତ ହୋଇଛି ତାର ସ୍ରଷ୍ଟା ହେଉଛନ୍ତି ଶ୍ରୀଯୁକ୍ତ ବହୁଗୁଣା । ଲୋତକ ପରିବେଶ ସୁରକ୍ଷା ପାଇଁ ଏତେ ସଚେତନ ଯେ ସରକାରଙ୍କ ତରଫରୁ ନିଯୁକ୍ତ ଠିକାଦାର ମାନେ ଗଛ କାଟିବାକୁ ଯିବା ବେଳେ ନିକଟସ୍ଥ ଗ୍ରାମ ଗୁଡ଼ିକର ନିଯୁକ୍ତ ଠିକାଦାର ମାନେ ଗଛ କାଟିବାକୁ ଯିବାବେଳେ ନିକଟସ୍ଥ ଗ୍ରାମଗୁଡ଼ିକର ଗ୍ରାମବାସୀମାନେ ସ୍ତ୍ରୀ ଓ ପୁରୁଷ ଉଭୟେ ଆସି ସେହି ଗଛ ଗୁଡ଼ିକୁ କୁଣ୍ଢାଇ ଧରି ରଖନ୍ତି ଓ ତା ଫଳରେ ଗଛକଟା କାମ ହୋଇପାରେ ନାହିଁ । ଗଛକୁ ଏହିପରି ଭାବରେ କୁଣ୍ଢାଇ ରଖି ସେ ଗୁଡ଼ିକୁ ନଷ୍ଟ କରିବାକୁ ଦେଉ ନଥିବାରୁ ଏହାର ନାମ ଚିପ୍‌କୋ ଆନ୍ଦୋଳନ ରଖାଯାଇଛି । ଶ୍ରୀଯୁକ୍ତ ବହୁଗୁଣା ଆଜିନୁହେଁ ବ୍ରିଟିଶ ଶାସନ ଅମଳରୁ ଏହି ପରିବେଶ ରକ୍ଷା ଆନ୍ଦୋଳନର ଜଣେ ବଡ଼ ପ୍ରବର୍ତ୍ତକ ଭାବରେ ବେଶ ଜନପ୍ରିୟ ହୋଇ ପାରିଛନ୍ତି । କେବଳ ଆମ ଦେଶରେ ନୁହେଁ ସମଗ୍ର ବିଶ୍ୱରେ ସେ ଏଥିପାଇଁ ବିଶେଷ ଖ୍ୟାତି ଅର୍ଜନ କରିଛନ୍ତି । ସେ ଉତ୍ତର ପ୍ରଦେଶର ଡ଼େରାଡୁନ ଠାରେ ଏକ ଆଶ୍ରମ ନିର୍ମାଣ କରି ରହୁଥିବାର ଜାଣି ତାଙ୍କ ସହିତ ଦେଖାକରିବାର ସ୍ଥିର କଲି । ଏତଦ୍ ବ୍ୟତୀତ ଡ଼େରାଡୁନ ଠାରୁ ହରଦ୍ୱାର, ଋଶିକେଶ, ଲକ୍ଷ୍ମଣଝୁଲା, କେଦାରନାଥ, ବୈଦ୍ୟନାଥ ପ୍ରଭୃତି ଅଞ୍ଚଳ ପରିଦର୍ଶନ କରିବାର ଅଭିପ୍ରାୟ ରଖି ଏକ ପରିଦର୍ଶନ କାର୍ଯ୍ୟକ୍ରମ ପ୍ରସ୍ତୁତ କଲି ଓ ତଦନୁଯାୟୀ ବିଭିନ୍ନ ସ୍ଥାନରେ ରହିବାର ଆବଶ୍ୟକ ବ୍ୟବସ୍ଥା କରିବାକୁ ମଧ୍ୟ ଉତ୍ତର ପ୍ରଦେଶ ସରକାରଙ୍କୁ ଅନୁରୋଧ କଲି । ଶ୍ରୀଯୁକ୍ତ ବହୁଗୁଣାଙ୍କୁ ମଧ୍ୟ ଜଣାଇ ଦେବାକୁ ସେଠାକାର ରାଜ୍ୟ ସରକାରଙ୍କୁ ଅନୁରୋଧ ଜଣାଇଲି ।

୧୯୮୮ ମସିହାର ଜୁଲାଇ ମାସରେ ଏହି ଭ୍ରମଣ କାର୍ଯ୍ୟକ୍ରମ କରିବାର ସ୍ଥିର କରି ଦିଲ୍ଲୀ ବାହାରିଲି । ମୋ ସଙ୍ଗରେ ମୋର ସ୍ତ୍ରୀ ଓ ପ୍ରାଇଭେଟ ସେକ୍ରେଟେରୀ ମୋର ସହଯାତ୍ରୀ ଥାଆନ୍ତି । ଏହା ଦେଖି ବିଧାନ ସଭାର ସେକ୍ରେଟାରୀ ଶ୍ରୀ ବଳଭଦ୍ର ପାତ୍ର ଓ ତାଙ୍କ ସ୍ତ୍ରୀ ମଧ୍ୟ ଆମ ସଙ୍ଗରେ ବାହାରିଲେ । ଦିଲ୍ଲୀ ପହଞ୍ଚି ତହିଁ ପରଦିନ ସେଠାରୁ ଡ଼େରାଡୁନ ଯାଉଥିବା ବାୟୁଦୂତରେ ଯିବାର ସ୍ଥିର କରି ବିମାନ ବନ୍ଦରରେ ପହଞ୍ଚି ଟିକଟ କରି ଆକାଶ ମାର୍ଗରେ ଯାତ୍ରା ଆରମ୍ଭ କଲୁଁ । ଦିଲ୍ଲୀରୁ ଡ଼େରାଡୁନକୁ ବିମାନ ଯାତ୍ରା ମାତ୍ର ଏକଘଣ୍ଟା ସମୟ ଅତିବାହିତ ହୋଇଗଲେ ମଧ୍ୟ ଅବତରଣ କରୁ ନ ଥିବାରୁ ତହିଁର କାରଣ ପଚାରି ଜାଣିଲୁଁ ଯେ ଡ଼େରାଡୁନରେ ପ୍ରବଳ ବର୍ଷା ହେଉଥିବାରୁ ସେଠାରେ ବିମାନ ଅବତରଣ କରି ନପାରି ପୁଣି ଦିଲ୍ଲୀକୁ ଫେରି ଆସୁଛି । ଦିଲ୍ଲୀ ବିମାନ ଘାଟିରେ ଓହ୍ଲାଇଲାପରେ ଓଡ଼ିଶା ଭବନକୁ ଫେରି ନଯାଇ ସେଠାରେ ତହିଁ ପରଦିନ ଯାତ୍ରା କରିବାପାଇଁ ଅପେକ୍ଷା କଲୁଁ । ନିୟମ ଅନୁଯାୟୀ ଆମର ଟିକଟ ମୂଲ୍ୟ ଫେରସ୍ତ ଦେଇନଥିବାରୁ ସେଦିନ ରାତିରେ ରହିବା ଓ ଖାଇବାର ଦାୟିତ୍ୱ ଉଡ଼ାଜାହାଜ କମ୍ପାନୀ ତରଫରୁ ବହନ କରିବା ବିଧି । ତେଣୁ ଉଡ଼ାଜାହାଜ କମ୍ପାନୀ ତରଫରୁ ସେ ଦିନକ ପାଇଁ ଆମର ସେଠାରେ ଏକ ହୋଟେଲରେ ରହିବା ଓ ଖାଇବାର ବ୍ୟବସ୍ଥା କଲେ । ତହିଁ ପରଦିନ ପୁଣି ଆମେ ଉଡ଼ାଜାହାଜ କେନ୍ଦ୍ରକୁ ଯାଇ ବିମାନ ଯାତ୍ରା ପାଇଁ ଅପେକ୍ଷା କଲୁଁ । ମାତ୍ର ସେଦିନ ମଧ୍ୟ ପୂର୍ବଦିନ ପରି ଡ଼େରାଡୁନର ପାଗ ଖରାପ ଥିବାରୁ ଉଡ଼ାଜାହାଜ ଯିବାର ନଥିଲା । ତେଣୁ ଆମ ଟିକଟ ପଇସା ଫେରାଇ ଦିଆଗଲା ଓ ଆମେ ଓଡ଼ିଶା ଭବନକୁ ଫେରି ସେଦିନକ ସେଠାରେ ଅବସ୍ଥାନ କଲୁଁ । ତହିଁ ପରଦିନ ମଧ୍ୟ ଉଡ଼ାଜହାଜ ଯିବାର ସମ୍ଭାବନା ନଥିବାର ଜାଣି କାର ଯୋଗେ ସଡ଼କ ପଥରେ ଯିବାର ସ୍ଥିର କରି ଆମର ପରିବର୍ତ୍ତିତ ଯାତ୍ରା ସମ୍ପର୍କରେ ଉତ୍ତର ପ୍ରଦେଶ ସରକାରଙ୍କୁ ଜଣାଇ ଦେଲୁଁ ।

ସେଦିନ ସକାଳେ ସହଳ ମଧ୍ୟାହ୍ନ ଭୋଜନ ସାରି ପୂର୍ବାହ୍ନ ପ୍ରାୟ ସାଢ଼େ ଏଗାରଟା ବେଳେ ଗୋଟିଏ ଭଡ଼ା କାରରେ ଡ଼େରାଡୁନ ଯାତ୍ରା ଆରମ୍ଭ କଲୁଁ । ଡ଼େରାଡୁନ ଦିଲ୍ଲୀରୁ ପ୍ରାୟ ୨୦୦ କି.ମି. ଦୂର । ବାଟରେ ଆମକୁ କେବଳ ଚା ଓ ଜଳଖିଆ ଖାଇବାକୁ ପଡ଼ିଲା । ଡ଼େରାଡୁନ ପହଞ୍ଚିବାକୁ ଆମକୁ ପ୍ରାୟ ୫/୬ ଘଣ୍ଟା ସମୟ ଲାଗିଲା । ଅବଶ୍ୟ ଉଡ଼ାଜହାଜ ଯାତ୍ରା ଅପେକ୍ଷା ସଡ଼କ ପଥର ଯାତ୍ରା ବେଶ ଆମୋଦ ଦାୟକ ହେଲା । ଆମେ ମାତ୍ର ୫ଜଣ ଯାତ୍ରୀ ଥିବାରୁ କାରରେ ଯିବା ସେପରି କଷ୍ଟ ହେଲା ନାହିଁ ।

ବରଂ ବାଟରେ ଗଲାବେଳେ ବିଭିନ୍ନ ବଡ଼ ବଡ଼ ଓ କେତେକ ଛୋଟ ସହର ମଧ୍ୟ ଦେଇ ଗଲୁଁ । ଉତ୍ତର ପ୍ରଦେଶର ଏହି ଅଞ୍ଚଳଟି ଯେପରି ଶିଳ୍ପସମୃଦ୍ଧ ସେହି ପରିମାଣରେ କୃଷିସମୃଦ୍ଧ ମଧ୍ୟ । ଆମେ ଡ଼େରାଡୁନ ପହଞ୍ଚିବା ମଧ୍ୟରେ ପ୍ରାୟ ୩୦/୩୫ ଟି ଶିଳ୍ପ ପ୍ରତିଷ୍ଠା ହୋଇଥିବାର ଦେଖିଲୁ । ଜଳସେଚନ ବ୍ୟବସ୍ଥା ମଧ୍ୟ ବ୍ୟାପକ ଭାବରେ ହୋଇଥିବାରୁ ସଡ଼କ ଦୁଇପାଖ ବେଶ ଶସ୍ୟ ଶ୍ୟାମଳ । କେନ୍ଦ୍ର ସରକାରରେ ଉତ୍ତର ପ୍ରଦେଶର ଅଧିକ ପ୍ରତିନିଧିତ୍ୱ ତଥା ପ୍ରାୟ ସମସ୍ତ ପ୍ରଧାନ ମନ୍ତ୍ରୀ ଉତ୍ତର ପ୍ରଦେଶର ହୋଇଥିବା ଯୋଗୁଁ ଏବଂ ମନ୍ତ୍ରୀ ମଣ୍ଡଳରେ ମଧ୍ୟ ଏହି ପ୍ରଦେଶର ଅଧିକ ପ୍ରତିନିଧି ଥିବାରୁ ଏହା ସମ୍ଭବ ପର ହୋଇଥିବାର ମନେ ହେଲା । ଆମ ଓଡ଼ିଶାରେ ଠିକ୍ ଏହିପରି କଟକ ଜିଲ୍ଲା ଶାସନ କ୍ଷେତ୍ରରେ ତଥା ଉନ୍ନୟନ ଦିଗରେ ଅନ୍ୟ ଜିଲ୍ଲା ମାନଙ୍କ ତୁଳନାରେ ଅଧିକ ସୁଯୋଗ ନେଉଥିବାର ସମସ୍ତେ ବରାବର ଅଭିଯୋଗ କରି ଥାଆନ୍ତି । ସର୍ବଭାରତୀୟ ସ୍ତରରେ ଉତ୍ତର ପ୍ରଦେଶର ମଧ୍ୟ ସେହିପରି ସ୍ଥାନ ଥିବାର ଦେଖାଯାଏ ।

ଦିଲ୍ଲୀରୁ ବାହାରିଲା ପରେ ଅନତିଦୂରରେ ମୁଜାଫରପୁର ଓ ତତ୍‌ପରେ ମିରଟ ସହର ପାଇଲୁଁ । ମିରଟରେ ଅଳ୍ପ କିଛିଦିନ ପୂର୍ବେ ସାଂପ୍ରଦାୟିକ ଦଙ୍ଗା ହୋଇଥିବାର ଜାଣିଥିଲୁଁ । ତେଣୁଁ ସ୍ୱତଃ ମନରେ ଟିକିଏ ଭୟଜାତ ହେଲା । ବିଧାନସଭା ଅଧକ୍ଷ ଭାରତର ଯେ କୌଣସି ରାଜ୍ୟକୁ ଗଲେ ସେଠାକାର ସରକାରଙ୍କ ଅତିଥି ହୁଅନ୍ତି ଏବଂ ତାଙ୍କର ନିରାପତ୍ତା ପାଇଁ ସଂପୃକ୍ତ ରାଜ୍ୟ ସରକାରଙ୍କ ତରଫରୁ ସ୍ୱତନ୍ତ୍ର ବ୍ୟବସ୍ଥା କରାଯାଏ ମାତ୍ର ଆମର ଏହି ଯାତ୍ରା ପୂର୍ବ ନିର୍ଦ୍ଧାରିତ କାର୍ଯ୍ୟସୂଚୀ ଅନୁଯାୟୀ ହୋଇ ନ ପାରିବାରୁ ଓ ଆମେ ନିଜ ଦାୟିତ୍ୱରେ ଯାଉଥିବା ଯୋଗୁଁ କୌଣସି ନିରାପତ୍ତା ବ୍ୟବସ୍ଥା ହେବା ସମ୍ଭବପର ନ ଥିଲା । ଯାହା ହେଉ ଆମକୁ ଉକ୍ତ ଦଙ୍ଗାଗ୍ରସ୍ତ ମିରଟ ସହରକୁ ଯିବାକୁ ପଡ଼ିଲାନାହିଁ । ଆମେ ସହରଠାରୁ ପ୍ରାୟ ଏକ କି.ମି. ଦୂରରେ ଥିବା ବାଇପାସ ଦେଇ ଅତିକ୍ରମ କରିଗଲୁଁ, ଏହା ପରେ ବିଖ୍ୟାତ ରୁରକି ସହରରେ ଯାଇ ପ୍ରବେଶ କଲୁଁ, ଏଠାରେ କାରିଗରୀ ବିଦ୍ୟାର ଏକ ମହାବିଦ୍ୟାଳୟ ରହିଅଛି ଏବଂ ଏହା ପଶ୍ଚିମ ବଙ୍ଗର ଯାଦବପୁର ଭଳି ଏକ ବିଶ୍ୱ ବିଦ୍ୟାଳୟରେ ପରିଣତ ହୋଇଅଛି । ବାଟରେ ଗଲାବେଳେ ବହୁ ସଂଖ୍ୟାରେ ଟ୍ରେକର ଗୁଡ଼ିକ ଯାତାୟତ କରୁଥିବାର ଦେଖିଲୁଁ । ଆମ ଓଡ଼ିଶାର ଭଦ୍ରଖରୁ କଟକ ପର୍ଯ୍ୟନ୍ତ ଯେପରି ଗୋଟିଏ ଗୋଟିଏ ଟ୍ରେକରରେ ୨୦/୨୨ ଜଣ ଲେଖାଏଁ ଲୋକେ ଯିବା ଆସିବା କରନ୍ତି ଏଠାରେ ମଧ ଠିକ ସେହିପରି ଅବସ୍ଥାରେ ଏହି ଗାଡ଼ି ଗୁଡ଼ିକ ଯିବାର ଦେଖିଲୁଁ । ଅବଶେଷରେ ପ୍ରାୟ ସଂଧ୍ୟା ବେଳକୁ ଯାଇ ଆମେ ଆମର ଲକ୍ଷ୍ୟସ୍ଥଳ ଡେ଼ରାଡୁନ ସହରରେ ପହଞ୍ଚିଗଲୁ । ସହରଟି ଏକ ପର୍ବତରେ ଉପତ୍ୟକା ଅଞ୍ଚଳରେ ଅବସ୍ଥିତ । ସହରଟି ହିମାଳୟର ସନ୍ନିକଟ । ତେଣୁଁ ଏଠାକାର ଜଳବାୟୁ ବେଶ ଥଣ୍ଡା ଓ ଗ୍ରୀଷ୍ମଦିନେ ବେଶ ଆରାମ ଦାୟକ । ସହରଟି ଲମ୍ବା, ଆମପାଇଁ ନିର୍ଦ୍ଧାରିତ ସରକାରୀ ଅତିଥିଶାଳାଟି ସହରର ଅନ୍ୟ ମୁଣ୍ଡରେ ରହିଥିବାରୁ ଆମକୁ ପ୍ରାୟ ସମସ୍ତ ସହର ଅତିକ୍ରମ କରି ସେଠାରେ ପହୁଞ୍ଚିବାକୁ ପଡ଼ିଲା । ଆଗରୁ ରାଜ୍ୟ ସରକାର ଆମର ଯିବାର କାର୍ଯ୍ୟକ୍ରମ ପାଇଁ ସେଠାରେ ରହିବାର ସମସ୍ତ ବ୍ୟବସ୍ଥା କରିଥିଲେ । ସେଠାକାର ଜଳବାୟୁରେ ବର୍ଷସାରା ସମସ୍ତ ପ୍ରକାରର ପନିପରିବା ଉତ୍ପାଦିତ ହୋଇ ପାରୁଥିବାର ଦେଖିଲୁଁ । ସେଠାରୁ ପ୍ରାୟ ୧୪ କି.ମି. ଦୂରରେ ଏକ ପର୍ବତର ଶିଖର ଦେଶରେ ମସୋରୀ ସହର ଅବସ୍ଥିତ । ଶିମଳା ଓ ନୈନିତାଲ ଭଳି ଏହା ଭାରତର ଏକ ଗ୍ରୀଷ୍ମନିବାସ । ରାତିରେ ଏହି ପର୍ବତ ଶିଖରରୁ ମସୋରୀ ସହରର ବିଦ୍ୟୁତ ଆଲୋକମାଳା ଦେଖାଯାଉଥିଲା । ଅତି ମନୋରମ ଥିଲା ସେ ଦୃଶ୍ୟ । ପୂର୍ବେ ବ୍ରିଟିସ ଶାସନ ସମୟରେ ଲାଟ୍ ଓ ଗଭର୍ଣ୍ଣର ମାନେ ମସୋରୀରେ ଗ୍ରୀଷ୍ମଦିନେ ରହୁଥିଲେ ଓ ସାମୟିକ ଭାବରେ ଗଭର୍ଣ୍ଣରଙ୍କ କାର୍ଯ୍ୟାଳୟ ମଧ ଏଠାରେ ହେଉଥିଲା । ଏହି ସ୍ଥାନଟି ଯେପରି ସ୍ୱାସ୍ଥ୍ୟକର ସେହିପରି ସୌନ୍ଦର୍ଯ୍ୟପୂର୍ଣ୍ଣ ମଧ । ଆଜିକାଲି ସେଠାରେ ଆଇ.ଏ.ଏସ୍ ଅଫିସର ମାନଙ୍କର ପ୍ରଶିକ୍ଷଣ କେନ୍ଦ୍ର ପ୍ରତିଷ୍ଠା କରାଯାଇଛି । ଯେଉଁ ଯୁବକମାନେ ସର୍ବଭାରତୀୟ ପ୍ରତିଯୋଗିତାରେ ଅଧିକ ବୁଦ୍ଧିଜୀବିଭାବେ ସାଫଲ୍ୟ ଲାଭ କରୁଅଛନ୍ତି । ସେମାନଙ୍କ ସେଠାରେ ପ୍ରଶାସନିକ ବ୍ୟବସ୍ଥା ସଂପର୍କରେ ଶିକ୍ଷା ଦେଲାପରେ ବିଭିନ୍ନ ପ୍ରଶାସନିକ କ୍ଷେତ୍ରକୁ ପଠାଯାଉଛି । ତାହା ଦେଖିବାର ବହୁ ଆଗ୍ରହ ଥିଲେ ହେଁ ଆଗରୁ ପୋଗ୍ରାମ କରି ରାଜ୍ୟ ସରକାରଙ୍କୁ ଜଣାଇ ନ ଥିବାରୁ ଏ ଅନୁଷ୍ଠାନ ପରିଦର୍ଶନର ସୁବିଧା ମିଳିଲା ନାହିଁ । ଡେ଼ରାଡୁନ ବ୍ରିଟିସ ଅମଳର ଏକ ପୁରୁଣା ସହର ।

ଏଠାରେ ଜଙ୍ଗଲ ବିଭାଗର ଏକ ବୃହତ୍ ଗବେଷଣା କେନ୍ଦ୍ର ଓ ଜଙ୍ଗଲ ସଂପର୍କୀୟ ଭାରତର ସର୍ବୋଚ୍ଚ ଶିକ୍ଷାନୁଷ୍ଠାନ ବହୁଦିନରୁ ରହି ଆସିଛି । ଜଙ୍ଗଲ ବିଭାଗରେ ଯେଉଁମାନେ ଡ଼ି.ଏଫ୍.ଓ ଭାବରେ ନିଯୁକ୍ତି ପାଆନ୍ତି ସେମାନେ ଜଙ୍ଗଲ ସଂପର୍କୀୟ ବିଜ୍ଞାନ, ପରିଚାଳନା, ପ୍ରଶାସନ ତଥା ଜଙ୍ଗଲ ଆଇନ ବିଷୟରେ ପ୍ରଥମେ ଏଠାରେ ପ୍ରଶିକ୍ଷଣ ଲାଭ କଲାପରେ ବିଭିନ୍ନ କ୍ଷେତ୍ରରେ ନିଯୁକ୍ତି ପାଆନ୍ତି । ଏହା ପ୍ରଥମେ ଭାରତରେ ଏକମାତ୍ର ଗବେଷଣା ଓ ପ୍ରଶିକ୍ଷଣ କେନ୍ଦ୍ର ଥିଲା । ଏବେ ଅବଶ୍ୟ ଅନ୍ୟ କେତୋଟି କେନ୍ଦ୍ର ଦେଶର ବିଭିନ୍ନ ସ୍ଥାନରେ ପ୍ରତିଷ୍ଠା କରାଗଲାଣି । ଜଙ୍ଗଲ ବିଭାଗର ଡ଼ି.ଏଫ୍.ଓ ଙ୍କ ବ୍ୟତୀତ ସର୍ବଭାରତୀୟ କ୍ଷେତ୍ରରେ ହେଉଥିବା ପ୍ରତିଯୋଗିତାରେ ଯେଉଁମାନେ ଉତ୍ତୀର୍ଣ୍ଣ ହୋଇ ଆଇ.ଏଫ୍.ଏସ୍. ପଦବୀ ପାଆନ୍ତି । ସେମାନେ ମଧ ପ୍ରଥମେ ଏଠାକାର ପ୍ରଶିକ୍ଷଣ କେନ୍ଦ୍ରରେ ଶିକ୍ଷାଲାଭ କଲାପରେ ଜଙ୍ଗଲ ବିଭାଗର ଉଚ୍ଚତର ପଦବୀରେ ନିଯୁକ୍ତି ପାଆନ୍ତି । ଏଠାରେ ପ୍ରଶିକ୍ଷଣ ବ୍ୟତୀତ ଜଙ୍ଗଲଜାତ ଜିନିଷ ଗୁଡ଼ିକ ସଂପର୍କରେ ଏକ ଗବେଷଣା ଗାର ମଧ ରହିଅଛି । ଏହି ଗବେଷଣା କେନ୍ଦ୍ରଟି ସମଗ୍ର ଦେଶରେ ସର୍ବବୃହତ୍ ଓ ସର୍ବଶ୍ରେଷ୍ଠ ମଧ । ଆମେ ସେଦିନ ସେଠାକାର ଅତିଥିଶାଳାରେ ଅବସ୍ଥାନ କରି ପରଦିନ ସକାଳେ ଉକ୍ତ ପ୍ରଶିକ୍ଷଣ ଓ ଗବେଷଣା କେନ୍ଦ୍ର ବୁଲି ଦେଖିଲୁଁ । ତାପରେ ଅନ୍ୟାନ୍ୟ ଦର୍ଶନୀୟ ସ୍ଥାନ ପରିଦର୍ଶନ କଲୁଁ ।

ଏଠାରେ ପ୍ରତିଷ୍ଠିତ ପ୍ରଶିକ୍ଷଣ ଓ ଗବେଷଣା ଦୁଇଟି କେନ୍ଦ୍ର ପାଇଁ ବିଦେଶରୁ ଜଙ୍ଗଲ ତଥା ଉଦ୍ଭିଦ ବିଜ୍ଞାନ ସଂପର୍କୀୟ ବୈଜ୍ଞାନିକ ଜ୍ଞାନ ଲାଭ କରିଥିବା ଜଣେ ଲେଖାଏଁ ବିଶେଷଜ୍ଞ ଅନୁଷ୍ଠାନର ନିର୍ଦ୍ଦେଶକ ଅଛନ୍ତି, ଏବଂ ଏ ଦୁଇ ସଂସ୍ଥାକୁ ନିୟନ୍ତ୍ରଣ କରିବା ପାଇଁ ଉକ୍ତ ଦୁଇଜଣ ନିର୍ଦ୍ଦେଶକଙ୍କ ଉପରେ ଜଣେ ମହାନିର୍ଦ୍ଦେଶକ ମଧ ନିଯୁକ୍ତ ହୋଇଛନ୍ତି । ସେଦିନ ଉକ୍ତ ମହାନିର୍ଦ୍ଦେଶକ ନ ଥିବାରୁ ଅନ୍ୟ ଦୁଇ ନିର୍ଦ୍ଦେଶକ ଆମ୍ଭମାନଙ୍କୁ ଉଭୟ କେନ୍ଦ୍ର ବୁଲାଇ ସେଠାକାର ବିଶେଷତ୍ୱ ବୁଝାଇଥିଲେ । ବ୍ରିଟିଶ୍ ସମୟରୁ ଏହା ଏକ ପୁରାତନ ଶିକ୍ଷା ଓ ଗବେଷଣା କେନ୍ଦ୍ର ରୂପେ ପ୍ରଥମ ସ୍ଥାନ ପାଇଁ ଆସିଅଛି'। ବିଶେଷ ଭାବରେ ଗବେଷଣା କେନ୍ଦ୍ରଟି ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ସେଠାରେ ସମସ୍ତ ଜଙ୍ଗଲଜାତ (କ୍ଷୁଦ୍ର ଓ ବୃହତ୍) ଦ୍ରବ୍ୟ ଗୁଡ଼ିକର ସର୍ବବିଧ ଗବେଷଣା କରାଯାଉଛି । ଇଉକାଲିପଟାସ୍ କାଠରେ ତିଆରି ବିଭିନ୍ନ ଆସବାବ ପତ୍ର ଦେଖି ମୁଁ ଅତ୍ୟନ୍ତ ଆଶ୍ଚର୍ଯ୍ୟାନ୍ୱିତ ହେଲି । ଉକ୍ତ କାଠର ବେଶ ଓସାରିଆ ପଟା ଖୁବ ଶକ୍ତ ଥିବାର ଦେଖିଲି । ଇଉକାଲି ପଟାସ ଗଛ ନାନା କାରଣରୁ କ୍ଷତିକାରକ ବୋଲି ଅନେକ ବୈଜ୍ଞାନିକ

ମତ ଦେଉଥିବା ବେଳେ ସେମାନେ ସେଠାରେ ଉକ୍ତ ବୃକ୍ଷ ରୋପଣକୁ କିପରି ଉତ୍ସାହିତ କରୁଛନ୍ତି ବୋଲି ପଚାରିବାରୁ ସେମାନେ ମୋ ସହିତ ଏକମତ ହୋଇ ନଥିଲେ । ଅବଶ୍ୟ ଅନେକ ପ୍ରକାରର ଇଉକେଲି ପଟାସ୍ ଗଛ ମଧ୍ୟରୁ କେତେକ ଜାତିର ଗଛ କ୍ଷତିକାରକ ଅଟନ୍ତି ଏବଂ ସେହି ଜାତିର ଗଛ ଗୁଡ଼ିକୁ ସନ୍ତସନ୍ତିଆ ଯାଗାରେ ଲଗାଇଲେ ତାହା ମଙ୍ଗଳକର ହୋଇପାରିବ ବୋଲି ସେମାନେ ମତ ଦେଲେ । ସେ ଅଞ୍ଚଳରେ କେତେକ ସ୍ଥାନରେ ଲୋକେ ଏହି ଗଛ ଚାଷ କରୁଥିବାର ଦେଖିଲୁଁ । ସେଠାରୁ ବିଦାୟ ନେଲାବେଳେ ସାଇନ୍‌ବୋର୍ଡ଼ ହେଲାଭଳି ଉକ୍ତ ଗଛର ଏକ ପଟା ମୋତେ ଦେଇଥିଲେ । ଉକ୍ତ ଅନୁଷ୍ଠାନର ସମସ୍ତ ଜିନିଷ ବୁଲି ଦେଖିବାରେ ଆମକୁ ପ୍ରାୟ ଦୁଇଘଣ୍ଟା ସମୟ ଲାଗିଗଲା । ସେମାନଙ୍କ ସହିତ ପରିବେଶ ସଂପର୍କରେ ମଧ୍ୟ ଆଲୋଚନା ହେଲା । ପରିବେଶ ସଂକ୍ରାନ୍ତରେ ମୋର ଆଗ୍ରହ ଦେଖି ସେମାନେ ଅତ୍ୟନ୍ତ ଆନନ୍ଦିତ ହୋଇଥିଲେ ।

ଏହାପରେ ସେଠାରେ ଥିବା ବିଖ୍ୟାତ ଡୁନ୍ ସ୍କୁଲ ପରିସର ମଧ୍ୟକୁ ଗଲୁଁ । ଏହି ଅନୁଷ୍ଠାନରେ ଭାରତର ବହୁଧନୀ ଲୋକଙ୍କ ପିଲା ଓ ବଡ଼ ବଡ଼ ରାଜନୀତିଜ୍ଞଙ୍କ ପିଲାମାନେ ଅଧ୍ୟୟନ କରନ୍ତି । ଆଜି ରାଜନୀତି କ୍ଷେତ୍ରରେ ଉଚ୍ଚସ୍ଥାନରେ ଥିବା ବହୁ ନେତୃବର୍ଗ ଏହି ଅନୁଷ୍ଠାନର ଛାତ୍ର ଥିବା ଜଣାଯାଏ । ପୂର୍ବତନ ପ୍ରଧାନମନ୍ତ୍ରୀ ଶ୍ରୀଯୁକ୍ତ ରାଜୀବ ଗାନ୍ଧୀ, ତାଙ୍କ ଭାଇ ସ୍ୱର୍ଗୀୟ ସଞ୍ଜୟ ଗାନ୍ଧୀ, ଅରୁଣ ନେହେରୁ, ଅରୁଣ ସିଂ, ଚଳଚିତ୍ର ଅଭିନେତା ଅମିତାଭ ବଚନ ପ୍ରଭୃତି ଏହି ଡୁନ୍ ସ୍କୁଲରେ ମାଧ୍ୟମିକ ଶିକ୍ଷାଲାଭ କରିଥିବାର ଜଣାଯାଏ । ଏହା ବ୍ୟତୀତ ଏଠାରେ ଏକ ବିରାଟ ସାମରିକ ଶିକ୍ଷା କେନ୍ଦ୍ର ଓ ଏକ ବିରାଟ ଉଡ଼ାଜାହାଜ ଘାଟି ଥିବାର ଦେଖିବାକୁ ପାଇଲୁଁ । ଡେରାଡୁନ୍ ଏକ ଉତ୍ତମ ସ୍ୱାସ୍ଥ୍ୟକର ସ୍ଥାନ । ଏଠାକାର ଜଳବାୟୁ ବର୍ଷର ସବୁଦିନେ ପନିପରିବା ଚାଷୋପଯୋଗୀ । ଆଳୁ କୋବି ପ୍ରଭୃତି ପରିବା ମାନ ପ୍ରଚୁର ପରିମାଣରେ ସେତେବେଳେ ଚାଷ କରୁଥିବାର ଦେଖିଲୁଁ । ସହରଟି ଏକ ପାର୍ବତ୍ୟ ଉପତ୍ୟକାରେ ଲମ୍ବ ଆକାରରେ ଅବସ୍ଥିତ ।

## ''ହରଦ୍ୱାର ପରିଦର୍ଶନ''

ଅତିଥିଶାଳାରେ ସେଦିନ ମଧ୍ୟାହ୍ନ ଭୋଜନ ଶେଷ କରି ପ୍ରାୟ ଅପରାହ୍ନ ୨ଟା ବେଳକୁ ଦୁଇଟି ଗାଡ଼ିରେ ଆମେ ହରଦ୍ୱାର ଅଭିମୁଖେ ଯାତ୍ରା ଆରମ୍ଭ କଲୁଁ । ଏତେବେଳକୁ ଉତ୍ତରପ୍ରଦେଶ ସରକାରଙ୍କ ତରଫରୁ ଆମକୁ ଦୁଇଟି କାର ଓ ଜଣେ ନିରାପତ୍ତା ରକ୍ଷୀ ଯୋଗାଇ ଦିଆଗଲା । ପ୍ରାୟ ଦୁଇଘଣ୍ଟା ଯାତ୍ରା କଲାପରେ ଅପରାହ୍ନ ୪ଟା ବେଳକୁ ହରଦ୍ୱାରର ଗଙ୍ଗାକୂଳରେ ଥିବା ଏକ ଡ଼ାକବଙ୍ଗଳାରେ ପହଁଞ୍ଚି ଅବସ୍ଥାନ କଲୁଁ । ଡ଼ାକବଙ୍ଗଳାର ଏକ ପାର୍ଶ୍ୱରେ ମୂଳ ଗଙ୍ଗାନଦୀ ଓ ଅପର ପାର୍ଶ୍ୱରେ ଗଙ୍ଗା ନଦୀରୁ ନିର୍ଗତ ଏକ ଶାଖା ନଦୀ ହରଦ୍ୱାର ସହରକୁ ଲାଗି ପ୍ରବାହିତ । ଏହି ଶାଖା ନଦୀଟି ଏକ କୃତ୍ରିମ ନଦୀ ଭଳି ମନେହେଲା । ଡ଼ାକବଙ୍ଗଳାର ପରିବେଶ ଅତି ମନୋହର । ତହିଁ ପରଦିନ ଆମର ସେଠାରୁ ଋଷିକେଶ ଯିବାର କାର୍ଯ୍ୟକ୍ରମ ଥିବାରୁ ସେଠାକାର ଗାଇଡ଼ ଓ ନିରାପତ୍ତା ରକ୍ଷୀ ପୋଲିସ୍ ଆମକୁ ସେହିଦିନ ଅବଶିଷ୍ଟ ସମୟ ମଧ୍ୟରେ ହରଦ୍ୱାରର ସମସ୍ତ ଦର୍ଶନୀୟ ସ୍ଥାନ ବୁଲାଇ ଦେଖାଇଲେ ।

ଆମେ ସମସ୍ତେ ଗାଡ଼ିରେ ଉକ୍ତ ଗଙ୍ଗାନଦୀର ଶାଖା ନଦୀ ଉପରେ ଥିବା ପୋଲ ଦେଇ ସହର ମଧ୍ୟକୁ ଗଲୁଁ ଓ ସେଠାକାର କୌଣସି ଏକ ସ୍ଥାନରୁ ବିଦ୍ୟୁତ୍ ଚାଳିତ ରଜ୍ଜୁପଥ ସାହାଯ୍ୟରେ ଏକ ଉଚ୍ଚ ପର୍ବତ ଶିଖରକୁ ଗଲୁଁ । ସେଠାରେ ବହୁ ମହଲା ବିଶିଷ୍ଟ ପ୍ରସିଦ୍ଧ ମନୀଷା ଦେବୀ ମନ୍ଦିର ଅବସ୍ଥିତ । ତଳ ମହଲାରୁ ସମସ୍ତ ମହଲା ଦେଇ ବିଦ୍ୟୁତ୍ ଚାଳିତ ପାହାଚ ସବୁ ରହିଛି । ଯାହା ଫଳରେ ଅତି ଅଳ୍ପ ସମୟ ମଧ୍ୟରେ ଆମେ ଶେଷ ମହଲା ପର୍ଯ୍ୟନ୍ତ ଯାଇ ବୁଲାବୁଲି କରି ସମସ୍ତ ଅଂଶ ଦେଖିପାରିଲୁଁ । ଓହ୍ଲାଇଲା ବେଳକୁ ମନ୍ଦିରର ପରିଚାଳନା ଅଫିସ ରହିଅଛି । ସେତେବେଳକୁ ଆମର ପରିଚୟ ପାଇ ସେଠାରେ ଆମକୁ କିଛି ସମୟ ବସାଇଲେ ଓ ପରିଚାଳନା ଅଫିସ ତରଫରୁ ମୋତେ ଗଙ୍ଗା ପାଣି ବୋତଲ, ତୁଳସୀ ମାଳ ଓ କେତୋଟି ଛୋଟ ଛୋଟ ବହି ଉପହାର ଦେଲେ । କିନ୍ତୁ ଆମ ବିଧାନସଭା ସେକ୍ରେଟାରୀଙ୍କୁ ସେତକ ଜିନିଷ ନେବା ପାଇଁ ଟ ୨୫/- ଦେବାକୁ ପଡ଼ିଲା ।

## ''ପବନ ଭବନ''

ଏହାପରେ ଅନତିଦୂରବର୍ତ୍ତୀ ପବନ ଭବନ ପରିଦର୍ଶନ ପାଇଁ ଗଲୁଁ । ପବନ ଭବନ କହିଲେ ମହାବୀର ହନୁମାନଙ୍କ ମନ୍ଦିର । ସେଠାରେ କାରିଗରୀ କୌଶଳର ଏକ ଅଦ୍ଭୁତ ନିଦର୍ଶନ ଦେଖିବାକୁ ମିଳିଲା । ସେଠାରେ ରାଧାକୃଷ୍ଣ, ଲକ୍ଷ୍ମୀ ନାରାୟଣ, ସୀତାରାମ ଓ ହନୁମାନଙ୍କ ଗୋଟିଏ ଲେଖାଏଁ ମୂର୍ତ୍ତି ଏପରି ଭାବରେ ସଜାଇ ରଖା ଯାଇଛି ଯେ ବାହାରୁ ଯେଉଁ ଦିଗରୁ ଚାହିଁଲେ ବହୁମୂର୍ତ୍ତି ଥିବାର ଦେଖା ଯାଇଥିଲା, ଏହା କାରିଗରୀର ଏକ ଉଚ୍ଚ କୌଶଳ ବୋଲି ମାନିବାକୁ ପଡ଼ିବ ।

## "ଗଙ୍ଗାମାତାଙ୍କ ଆଳତି"

ସେଠାରୁ ସନ୍ଧ୍ୟା ବେଳକୁ ଆମେ ହରଦ୍ୱାର ନିକଟରେ ପ୍ରବାହିତ ଗଙ୍ଗା ନଦୀ କୂଳକୁ ଗଲୁଁ । ଆମ ସଙ୍ଗରେ ଥିବା ଗାଇଡ୍ ଗଙ୍ଗାମାତାଙ୍କ ଆଳତି ହେଉଥିବା ସ୍ଥାନକୁ ଆମକୁ ନେଇଗଲେ । ନଦୀ କୂଳରେ ପାଣି ପର୍ଯ୍ୟନ୍ତ ପକ୍କା ପାହାଚମାନ କରାଯାଇଛି । ସ୍ଥାନେ ସ୍ଥାନେ ବସିବା ପାଇଁ ପିଣ୍ଡିମାନ ମଧ୍ୟ ରହିଛି ଓ ଏହି ପିଣ୍ଡି ଗୁଡ଼ିକ ଉପରେ କାଠ ଖଟମାନ ମଧ୍ୟ ପଡ଼ିଛି । ଏହି ପିଣ୍ଡି ଓ ତା ଉପରେ ଥିବା ଖଟ ଗୁଡ଼ିକ ବିଭିନ୍ନ ପଣ୍ଡା ମାନଙ୍କର ସଂପତ୍ତି । ଯେଉଁ ଭକ୍ତ ବା ପରିଦର୍ଶକମାନେ ଯାଆନ୍ତି ସେମାନଙ୍କ ମଧ୍ୟରୁ ଅନେକେ ଏହି ପଣ୍ଡାମାନଙ୍କ ଦ୍ୱାରା ତାଙ୍କ ପୂର୍ବପୁରୁଷଙ୍କ ଶ୍ରାଦ୍ଧ ଇତ୍ୟାଦି କରାନ୍ତି ଓ ଆଳତି ସମୟରେ ଦୀପ ଭସାନ୍ତି । ସେଠାରେ ଏଭଳି ବ୍ୟକ୍ତିଗତ ପିଣ୍ଡି ବ୍ୟତୀତ କେତେକ ସରକାରୀ ପିଣ୍ଡି ମଧ୍ୟ ରହିଛି । କେହି ସରକାରୀ ଅତିଥି ଆସିଲେ ସେମାନଙ୍କୁ ସରକାରଙ୍କ ପିଣ୍ଡିରେ ବସି ତର୍ପଣ କରିବାକୁ ବା ଗଙ୍ଗା ମାତାଙ୍କ ପବିତ୍ର ଆଳତି ଦେଖିବାକୁ ଦିଆ ଯାଇଥାଏ । ତେଣୁ ଆମ ସଙ୍ଗେ ଯାଇଥିବା ଗାଇଡ୍ ଆମକୁ ସରକାରୀ ପିଣ୍ଡିକୁ ନେଇଯାଇ ସେଠାରେ ବସାଇଲେ । ଅନ୍ୟ ସମସ୍ତ ପିଣ୍ଡି ମାନଙ୍କରେ ପଣ୍ଡାମାନେ ତିଳତର୍ପଣ କରିବାକୁ ଆସିଥିବା ଯାତ୍ରୀ ମାନଙ୍କ ପାଇଁ ଦୀପ ଜାଳି ତିଳତର୍ପଣ କରୁଥିବାର ଓ କେତେକ ଗଙ୍ଗାନଦୀରେ ପ୍ରବେଶ କରି ବୁଡ଼ ଦେଉଥିବାର ଦେଖିଲୁ । ସେଠାରେ ଗଙ୍ଗା ନଦୀର ଶାଖାଟି ଅଗଭୀର ହୋଇଥିବାରୁ ଲୋକେ ନିର୍ଭୟରେ ନଦୀ ମଧ୍ୟକୁ ଯାଇ ବୁଡ଼ ଦେଇ ଥାଆନ୍ତି । ଅନେକେ ନଦୀର ଅପର ତୀରକୁ ଯାଇ ଆମପରି ଆଳତି ଦେଖିବାକୁ ଅପେକ୍ଷା କରିଥାଆନ୍ତି । କ୍ରମେ ସନ୍ଧ୍ୟା ହୋଇ ଆସିବା ସଙ୍ଗେ ସଙ୍ଗେ ହଜାର ହଜାର ଲୋକ ସମାଗମ ହେବାକୁ ଲାଗିଲା । ଅସଂଖ୍ୟ ଦୀପ ଜଳି ଉଠିଲା ଓ ଗଙ୍ଗାମାତାଙ୍କ ଜୟଧ୍ୱନି ତଥା ସ୍ତ୍ରୀ ଲୋକ ମାନଙ୍କର ହୁଳହୁଳି ନାଦରେ ଗଗନ ପବନ ମୁଖରିତ ହୋଇପଡ଼ିଲା । ଦୀପ ଗୁଡ଼ିକର ଆଲୁଅ ସନ୍ଧ୍ୟାକାଳୀନ ଅନ୍ଧାକାରକୁ ଆଲୋକିତ କରି ଦେଉଥାଏ । ପ୍ରତ୍ୟହ ଏହିପରି ହଜାର ହଜାର ଲୋକ ସମାଗମ ସେଠାରେ ହୁଏ ବୋଲି ଶୁଣିବାକୁ ପାଇଲୁଁ । ସେଠାକାର ନଦୀଟି ସହର ତଳି ଦେଇ ପ୍ରବାହିତ ହେଉଥିବାରୁ ନଦୀଜଳ ଅତ୍ୟନ୍ତ ଅପରିଷ୍କାର ଥିବାର ଦେଖାଗଲା । ତଥାପି ହଜାର ହଜାର ଲୋକ ସ୍ତ୍ରୀ ପୁରୁଷ ନିର୍ବିଶେଷରେ ହାତ ଧରାଧରି ହୋଇ ନଦୀ ମଧ୍ୟରେ ପ୍ରବେଶ କରି ନିର୍ବିକାର ଚିତ୍ତରେ ସ୍ନାନ କରୁଥାଆନ୍ତି । ଲୋକ ମୁଖରେ ଯାହା କଥିତ ଅଛି, "ଗଙ୍ଗାଜଳ ଗୋଳିଆ - କୁଳକନ୍ୟା କାଳିଆ" ପ୍ରକୃତରେ ସେଦିନ ସେଠାକାର ଗଙ୍ଗାଜଳ ଦେଖି ଏବଂ ସେଥିରେ ନିର୍ବିକାର ଭାବରେ ଲୋକଙ୍କୁ ସ୍ନାନରତ ଥିବାର ଦେଖି ଏ ଉକ୍ତିର ସତ୍ୟତା ପ୍ରମାଣିତ ହେଲା । ଆମେ ଅବଶ୍ୟ ସନ୍ଧ୍ୟାବେଳ ହୋଇଥିବାରୁ ଗାଧୋଇଲୁଁ ନାହିଁ ମାତ୍ର ପାଣି ଭିତରକୁ ଯାଇ ଦେହରେ ପାଣି ଛିଞ୍ଚି ହେଲୁଁ । ହରଦ୍ୱାର ଆସି ଗଙ୍ଗାମାତାଙ୍କ ଆଳତି ନ ଦେଖିଲେ ହରଦ୍ୱାର ଆସିବାର କିଛି ଅର୍ଥ ହୁଏ ନାହିଁ ବୋଲି ସେଠାକାର ଲୋକଙ୍କ ମୁଖରୁ ଶୁଣିବାକୁ ପାଇଲୁଁ । ସେଠାକାର ସମସ୍ତ ଦର୍ଶନୀୟ ଦୃଶ୍ୟ ମଧ୍ୟରେ ଗଙ୍ଗାମାତାଙ୍କ ଆଳତି ବାସ୍ତବରେ ଅତ୍ୟନ୍ତ ଆକର୍ଷଣୀୟ ।

## "ଗଙ୍ଗାଜଳ ଶୁଦ୍ଧ ଯୋଜନା"

ଗଙ୍ଗାନଦୀକୁ ଆମ ସନାତନ ଧର୍ମରେ ଗଙ୍ଗା ଦେବୀ ବା ଗଙ୍ଗାମାତା ବୋଲି କହି ପୂଜା କରୁ । ପୁରାଣରୁ ଜଣାଯାଏ ଯେ, ରାଜା ଭଗୀରଥ ତପସ୍ୟାକରି ଏହି ନଦୀକୁ ହିମାଳୟରୁ ପ୍ରବାହିତ କରାଇ ନିଜ ବଂଶକୁ ଅଭିଶାପରୁ ମୁକ୍ତ କରିଥିଲେ । ଗଙ୍ଗାନଦୀରେ ସ୍ନାନ କଲେ ଓ ଗଙ୍ଗାନଦୀର ଜଳ ପାନ କଲେ ସମସ୍ତ ପାପ ମୋଚନ ହୋଇଯାଏ ବୋଲି ଆମର ବିଶ୍ୱାସ । ମୃତ ବ୍ୟକ୍ତିର ଅସ୍ଥି ଗଙ୍ଗାନଦୀରେ ବିସର୍ଜନ କଲେ ମୃତ ବ୍ୟକ୍ତିର ଆତ୍ମା ସ୍ୱର୍ଗପ୍ରାପ୍ତି ଲାଭକରେ ବୋଲି ଦୃଢ଼ ବିଶ୍ୱାସ ହିନ୍ଦୁମାନଙ୍କ ମଧ୍ୟରେ କାଳକାଳ ଧରି ରହିଆସିଛି ।

ଏହି ନଦୀ ହିମାଳୟରୁ ବାହାରି ଉତ୍ତର ପ୍ରଦେଶ, ବିହାର, ପଶ୍ଚିମବଙ୍ଗ ଓ ଆଜିର ବଙ୍ଗଳାଦେଶ ମଧ୍ୟଦେଇ ବଙ୍ଗୋପସାଗରରେ ଯାଇ ମିଶିଛି । ତେଣୁ ଉତ୍ତର ଭାରତର ବହୁ ବଡ଼ବଡ଼ ସହର ଓ ଶିଳ୍ପାଞ୍ଚଳ ମଧ୍ୟଦେଇ ପ୍ରବାହିତ ହୋଇଥିବାରୁ ସହର ଓ ବିଭିନ୍ନ କାରଖାନାର ଦୂଷିତ ଜଳ ଏହି ନଦୀରେ ମିଶୁଛି । ଏତଦ୍ ବ୍ୟତୀତ ଯମୁନା ଓ ସରସ୍ୱତୀ ପ୍ରଭୃତି ନଦୀ ବିଭିନ୍ନ ସହର ଓ ଶିଳ୍ପାଞ୍ଚଳ ମଧ୍ୟରେ ପ୍ରବାହିତ ହୋଇ ଏହି ନଦୀରେ ମିଶିଥିବାରୁ ସେ ସବୁର ଦୂଷିତ ଜଳ ଗଙ୍ଗାରେ ମିଶି ଅଧିକ ପରିମାଣରେ ଦୂଷିତ କରି ପକାଇଛି ।

ଆମେ ଗଙ୍ଗାନଦୀ ଜଳ ପାନକରି ପବିତ୍ର ହେବାର ଧର୍ମ ବିଶ୍ୱାସ ପୋଷଣ କରିଥିବା ବେଳେ ସ୍ୱାସ୍ଥ୍ୟ ଓ ପରିବେଶ ବିଭାଗ ଗଙ୍ଗାନଦୀ ଜଳ ଅତ୍ୟନ୍ତ ଦୂଷିତ ହୋଇଥିବାରୁ ବହୁ ରୋଗ ବ୍ୟାଧିର ଏକ ମାତ୍ର କାରଣ ବୋଲି ମତ ଦେଉଅଛନ୍ତି । ତେଣୁ ଭାରତ ସରକାରଙ୍କ ପରିବେଶ ବିଭାଗ ତରଫରୁ ଗଙ୍ଗା ନଦୀଶୁଦ୍ଧ ଯୋଜନା ନାମରେ ଏକ ଯୋଜନାର କାମ ଆରମ୍ଭ କରାଯାଇଛି । ମୁଁ ଓଡ଼ିଶା ରାଜ୍ୟ ପ୍ରଦୂଷଣ ବୋର୍ଡ଼ର ଜଣେ ସଭ୍ୟ ତଥା ପରିବେଶ ସମିତିର (ଏକ ବେସରକାରୀ ସଂସ୍ଥା) ସଭାପତି ହୋଇଥିବାରୁ ମୋର ହରଦ୍ୱାର ଗସ୍ତକ୍ରମ ସମୟରେ ଭାରତର ପରିବେଶ ବିଭାଗର ଗଙ୍ଗାନଦୀ ଜଳ ଦୂଷିତ

ଦୂରୀକରଣ କାର୍ଯ୍ୟକ୍ରମ ସଙ୍ଗେ ଆଲୋଚନା କରିବା ପାଇଁ ସଂପୃକ୍ତ ବିଭାଗକୁ ଆଗରୁ ଜଣାଇଦିଆଯାଇଥିଲା । ତେଣୁ ସେଦିନ ପରିଭ୍ରମଣ ଶେଷରେ ଡ଼ାକବଙ୍ଗଳାରେ ବିଶ୍ରାମ ନେଉଥିବା ସମୟରେ ସେଠାକାର ପରିବେଶ ବିଭାଗର ଦୁଇଜଣ ଅଫିସର ଆସି ମୋ ସହିତ ସାକ୍ଷାତ କଲେ । ସେମାନେ ସେହି ଗଙ୍ଗାଜଳ ଦୂଷିତ ନିବାରଣ କାର୍ଯ୍ୟରେ ନିଯୁକ୍ତ ବ୍ୟକ୍ତି ।

ଆଲୋଚନା ପ୍ରସଙ୍ଗରେ ଉକ୍ତ ଗଙ୍ଗାଜଳ ଶୁଦ୍ଧ ଯୋଜନାର ବିଭିନ୍ନ ଟିକିନିଖି ବିବରଣୀ ସେମାନେ ମୋତେ ଦେଇଥିଲେ । ଗଙ୍ଗା ଓ ଯମୁନା ନଦୀର କୂଳରେ ଥିବା ସହରମାନଙ୍କର ଦୂଷିତ ଜଳ ତଥା ଉକ୍ତ ଦୁଇ ନଦୀର କୂଳରେ ଥିବା ବଡ଼ ବଡ଼ କାରଖାନା ମାନଙ୍କରୁ ବ୍ୟବହୃତ ହୋଇ ନିଷ୍କାସିତ ଦୂଷିତ ଜଳ ନଦୀରେ ମିଶିବା ଫଳରେ ଜଳ ଦୂଷିତ ହେବାରେ ଲାଗିଛି । ଏହି ଦୂଷିତ ଜଳ ନଦୀକୁ ଛଡ଼ା ହେବା ପୂର୍ବରୁ ତାକୁ ଯନ୍ତ୍ର ସାହାଯ୍ୟରେ ଶୁଦ୍ଧ କରି ଏବଂ ତାକୁ ଭଲ ଭାବରେ ପରୀକ୍ଷା କରି ନଦୀକୁ ଛଡ଼ା ଗଲେ ନଦୀ ଜଳ ଆଉ ଦୂଷିତ ହେବାର ଭୟ ରହିବ ନାହିଁ । ଏହି ଯୋଜନା ଉକ୍ତ ଦୁଇ ନଦୀର ସମସ୍ତ ଛୋଟ ବଡ଼ ସହର ତଥା କାରଖାନା ମାନଙ୍କରେ କରାଗଲା ପରେ ଗଙ୍ଗାଜଳ ନିଶ୍ଚିତ ଭାବରେ ପରିଷ୍କୃତ ହୋଇପାରିବ । ଏବେ ଗଙ୍ଗାନଦୀର ଜଳରେ ଦୂଷିତ ପରିମାଣ ଶତକଡ଼ା ୪୦ ଭାଗ ରହିଛି ବୋଲି ଜାଣିବାକୁ ପାଇଲି ।

୧୯୮୭ ମସିହାରେ ଲଣ୍ଡନଠାରେ ଗ୍ରାମଗୋଷ୍ଠୀ ସଂସଦୀୟ ସମ୍ମିଳନୀ ଚାଲିଥିଲା ବେଳେ ସେଠାରେ ପ୍ରବାହିତ ଟେମସ୍ ନଦୀର ବିଭିନ୍ନ ସ୍ଥାନରେ ଏହିପରି ଜଳ ଶୁଦ୍ଧିକରଣ ଯୋଜନା ମାନ କାର୍ଯ୍ୟକାରୀ କରାଯାଇ ଜଳ ପରୀକ୍ଷା କରୁଥିବାର ଦେଖିବାକୁ ପାଇଥିଲି । ସେଠାରେ ଏଭଳି କାର୍ଯ୍ୟକ୍ରମ ଗ୍ରହଣ କରାଯାଇ ନଥିବା ପୂର୍ବରୁ ନଦୀଜଳ ଏପରି ଦୂଷିତ ହୋଇଯାଇଥିଲା ଯେ ଉକ୍ତ ନଦୀର ମାଛ ସବୁ ମରି ଯାଉଥିବାର ଶୁଣିଥିଲି । ଅବଶ୍ୟ ଏହି କାର୍ଯ୍ୟକ୍ରମ ପ୍ରଚଳନ ହେବା ଫଳରେ ନଦୀଜଳ ଶୁଦ୍ଧ ହୋଇ ଯାଇଛି ଓ ମାଛ ସଂଖ୍ୟା ମଧ୍ୟ ବୃଦ୍ଧି ପାଉଛି । ଆମ ଗଙ୍ଗା ନଦୀର ଜଳ ବିଶୁଦ୍ଧ ଯୋଜନା ସେହି ବ୍ରିଟିସ ସହାୟତାରେ ଆରମ୍ଭ ହୋଇଛି । ଏହା ଠିକ ଭାବରେ କାର୍ଯ୍ୟକାରୀ ହେଲେ ପ୍ରଭୂତ ସହାୟକ ହେବ ବୋଲି ଆଶା କରାଯାଏ ।

## ''ଋଷିକେଶ ପରିଦର୍ଶନ''

ହରଦ୍ୱାର ପରିଦର୍ଶନ ପରେ ସେଦିନ ସେଠାରେ ଅବସ୍ଥାନ କଲୁଁ । ତହିଁ ପରଦିନ ସକାଳ ପ୍ରାୟ ସାଢ଼େ ଆଠଟା ବେଳକୁ ଆମେ ଋଷିକେଶ ଅଭିମୁଖେ ଯାତ୍ରା ଆରମ୍ଭ କଲୁଁ । ଆମେ ଡ଼େରାଡୁନ୍‌ରୁ ହରଦ୍ୱାର ଗଲାବେଳେ ବାଟରେ ଋଷିକେଶ ଛକରୁ ହରଦ୍ୱାର ଯାଇଥିଲୁଁ । ତେଣୁଁ ପୁଣି ଆମକୁ ସେହିବାଟ ଦେଇ ଫେରିବାକୁ ପଡ଼ିଲା । ହରଦ୍ୱାରରୁ କିଛି ବାଟ ଗଲାପରେ ଦୁଇ ଗଙ୍ଗାନଦୀ ମଧ୍ୟରେ ଥିବା ଏକ ବିସ୍ତୀର୍ଣ୍ଣ ପଡ଼ିଆରେ କୁମ୍ଭମେଳା ହେବା ଜାଣିଲି । ପ୍ରତି ୧୨ ବର୍ଷରେ ଥରେ ହରଦ୍ୱାର ନିକଟରେ ଏହି କୁମ୍ଭମେଳା ଅନୁଷ୍ଠିତ ହୁଏ । ଏଥିପାଇଁ ସାରା ଭାରତରୁ ଲକ୍ଷଲକ୍ଷ ଲୋକ ଓ ବହୁ ସନ୍ଥ ସନ୍ୟାସୀ ତଥା ନାଗାମାନେ ଏଥିରେ ଯୋଗ ଦିଅନ୍ତି । ବହୁକାଳରୁ ଉକ୍ତ ପବିତ୍ର ତୀର୍ଥରେ ଲୋକେ ପବିତ୍ର ଗଙ୍ଗା ନଦୀରେ ସ୍ନାନ କରନ୍ତି । ମୂଳ ଗଙ୍ଗା ନଦୀରୁ ଏକ ଶାଖା ବାହାରି ହରଦ୍ୱାର ଦେଇ କିଛି ଦୂରରେ ପୁଣି ତାହା ମୂଳ ଗଙ୍ଗାନଦୀରେ ମିଶି ଯାଉଛି । ଆମେ ଆସିଲା ବେଳେ ଗଙ୍ଗା ନଦୀର ପୋଲଉପର ଦେଇ ଋଷିକେଶ ଛକଠାରେ ଆସି ପହୁଁଞ୍ଚିଲୁ । ସେଠାରୁ ଋଷିକେଶ ମାତ୍ର ଦଶ କିଲୋମିଟର ଦୂର ।

ଆମେ ଋଷିକେଶ ପୂର୍ବାହ୍ନ ୧୦ଟା ବେଳକୁ ଯାଇ ପହୁଁଞ୍ଚିଲୁ । ଉତ୍ତରପ୍ରଦେଶ ସରକାରଙ୍କୁ ଆମ କାର୍ଯ୍ୟକ୍ରମ ଜଣାଇ ଦିଆ ଯାଇଥିବାରୁ ଆମକୁ ଏକ ଡ଼ାକବଙ୍ଗଳାରେ ଅବସ୍ଥାନ କରାଇଲେ । ଅଳ୍ପ ସମୟ ପରେ ସେ ଆମକୁ ବୁଲାଇ ନେଇଗଲେ । ଋଷିକେଶର ଲୋକ ସଂଖ୍ୟା ମାତ୍ର ତିରିଶ ହଜାରେ ବୋଲି ଶୁଣିଲି । ସହରଟି ଛୋଟ ହେଲେ ହେଁ ହିମାଳୟର ପାଦଦେଶରେ ଲମ୍ୱଭାବରେ ଅବସ୍ଥିତ । ଯେଉଁମାନେ ହରଦ୍ୱାର ଆସନ୍ତି ସେମାନେ ପ୍ରାୟ ଋଷିକେଶ ମଧ୍ୟ ଆସିଥାଆନ୍ତି । କାରରେ ମାତ୍ର ଦୁଇ ଘଣ୍ଟାର ରାସ୍ତା । ଗଙ୍ଗାନଦୀ ହିମାଳୟରୁ ପ୍ରବାହିତ ହୋଇ ପ୍ରଥମେ ଏହି ଋଷିକେଶଠାରେ ସମତଳ ଅଞ୍ଚଳରେ ପ୍ରବେଶ କରିଛି । ଆମେ ପ୍ରଥମେ ତ୍ରିବେଣୀ ଘାଟକୁ ଗଲୁଁ । ଏଠାରେ ଗଙ୍ଗାନଦୀ ସହିତ ଦୁଇଟି ଛୋଟ ନାଳ ମିଶି ଥିବାରୁ ସେଗୁଡ଼ିକୁ ଲୋକେ ଯମୁନା ଓ ସରସ୍ୱତୀ ବୋଲି କହନ୍ତି । ସେଥିପାଇଁ ଏହି ସ୍ଥାନକୁ ତ୍ରିବେଣୀ ଘାଟ ବୋଲି କୁହାଯାଏ । ତୀର୍ଥଯାତ୍ରୀମାନେ ଏଠାରେ ମଧ୍ୟ ବୁଡ଼ ଦିଅନ୍ତି । ଏଠାରେ ଗଙ୍ଗାନଦୀର ଜଳ ଅତି ସ୍ୱଚ୍ଛ ଏବଂ ଏହି ସ୍ଥାନଟି ମଧ୍ୟ ଅତି ମନୋରମ । ତେଣୁଁ ସକାଳେ ଥରେ ଗାଧୋଇଥିଲେ ମଧ୍ୟ ପୁଣି ଏଠାରେ ସ୍ନାନ କଲି । ତା ନହେଲେ ମନରେ ଅବଶ୍ୟ ଅବଶୋଷ ରହିଯାଇ ଥାଆନ୍ତା । ଆମ ବିଧାନସଭା ସେକ୍ରେଟେରୀ ଶ୍ରୀ ବଳଭଦ୍ର ପାତ୍ର ମଧ୍ୟ ଏଠାରେ ବୁଡ଼ ଦେଲେ । ଅନ୍ୟମାନେ ଅବଶ୍ୟ ପାଣି ନେଇ ଛିଞ୍ଚି ହେଲେ ।

## ''ଲକ୍ଷ୍ମଣଝୁଲା ଓ ରାମଝୁଲା ପରିଦର୍ଶନ''

ଏହାପରେ ଲକ୍ଷ୍ମଣଝୁଲା ବାହାରିଲୁଁ । ନଦୀ କୂଳେ କୂଳେ ରାସ୍ତା । ଅଳ୍ପ ସମୟପରେ ସେଠାରେ ଯାଇ ପହୁଁଚିଲୁ । ଦୁଇପାର୍ଶ୍ୱରେ ପର୍ବତମାଳା - ପର୍ବତକୁ ଲାଗି ଦୁଇ ପାଖରେ ଲମ୍ବିଯାଇଛି ସହର, ମଝିରେ ଗଙ୍ଗାନଦୀ ଖୁବ ଗଭୀର ଏବଂ ପୋଲ ସ୍ଥାନଟି ଖୁବ୍ ଉଚ୍ଚ । ଅନ୍ୟସ୍ଥାନ ପରି ନଦୀ ଉପରେ ପୋଲ କରିବା ସେଠାରେ ସମ୍ଭବପର ନୁହେଁ । କେତୋଟି ମୋଟା ଲୁହା ତାରରେ ନଦୀର ଦୁଇପାଖକୁ ସଂଯୋଗ କରାଯାଇଅଛି ଓ ଏହାକୁ ଲକ୍ଷ୍ମଣଝୋଲା ବୋଲି କୁହାଯାଏ । ଏହି ପୋଲ ଉପରଦେଇ ଗାଡ଼ି ମୋଟର ପ୍ରଭୃତି ଯାଇପାରେ ନାହିଁ । କେବଳ ଲୋକେ ପୋଲ ଉପର ଦେଇ ଏ ପାଖରୁ ସେପାଖକୁ ଯିବା ଆସିବା କରନ୍ତି । ଅବଶ୍ୟ ଅଳ୍ପ କିଛି ସାଇକେଲ ଓ ଛୋଟ ମୋଟର ସାଇକେଲ ଗଡ଼େଇ ଗଡ଼େଇ ଏକ ପାଖରୁ ଅନ୍ୟ ପାଖକୁ ନେଇଥିବାର ଦେଖିଥିଲୁଁ । ପୋଲଟି ତାର ଉପରେ ଝୁଲା ଯାଇଥିବାରୁ ତା ଉପରେ ଗଲାବେଳେ ହଲୁଥିବାର ଜଣାଯାଇଥିଲା ।

କିମ୍ବଦନ୍ତୀରୁ ଜଣାଯାଏ ଯେ ବନବାସ ସମୟରେ ଲଙ୍କାର ରାଜା ରାବଣ ସୀତାଙ୍କୁ ଅପହରଣ କରି ଲଙ୍କାକୁ ନେଇଗଲା । ତାପରେ ରାମ ଓ ଲକ୍ଷ୍ମଣ ମାଙ୍କଡ଼ ରାଜା ସୁଗ୍ରୀବ ଓ ହନୁମାନଙ୍କ ସହାୟତାରେ ସମୁଦ୍ର ଉପରେ ଏକ ସେତୁ ବାନ୍ଧି ଲଙ୍କାର ରାଜଧାନୀ ଆକ୍ରମଣ କଲେ । ଯୁଦ୍ଧରେ ରାବଣକୁ ସବଂଶରେ ମାରି ସୀତାଙ୍କୁ ଉଦ୍ଧାର କଲେ । ରାବଣ ଜଣେ ଅସୁର ପ୍ରକୃତିର ଲୋକ ହୋଇଥିଲେ ମଧ ଜଣେ ନୈଷ୍ଠିକ ବ୍ରାହ୍ମଣ ଥିଲେ । ତେଣୁଁ ତାଙ୍କୁ ହତ୍ୟା କରିଥିବାରୁ ରାମ ଓ ଲକ୍ଷ୍ମଣ ଉଭୟଙ୍କୁ ବ୍ରହ୍ମହତ୍ୟା ଦୋଷ ଲାଗିଲା । ସୁତରାଂ ୧୪ ବର୍ଷକାଳ ବନବାସ ପୂରଣ ପରେ ଅଯୋଧ୍ୟାକୁ ଫେରିବା ବାଟରେ ଗଙ୍ଗାନଦୀ କୂଳରେ ବ୍ରହ୍ମହତ୍ୟା ଜନିତ ଅପରାଧର ପ୍ରାୟଶ୍ଚିତ ପାଇଁ ଏହି ସ୍ଥାନରେ ତପସ୍ୟା କରିଥିବାରୁ ଏହି ଦୁଇ ସ୍ଥାନରେ କରାଯାଇଥିବା ପୋଲ ଦୁଇଟିକୁ ଲକ୍ଷ୍ମଣଝୁଲା ଓ ରାମଝୁଲା ନାମ କରଣ କରାଯାଇଅଛି । ଗଙ୍ଗାନଦୀର ଏହି ଦୁଇସ୍ଥାନ ସଂକୀର୍ଣ୍ଣ ଓ ଗଭୀର । ଦୁଇପାଖରେ ପର୍ବତମାଳା ଥିବାରୁ ସେଠାରେ ପୋଲ ତିଆରି କରିବା ସମ୍ଭବପର ନୁହେଁ । ତେଣୁଁ କେବଳ ଲୋକଙ୍କ ଯିବା ଆସିବା କରିବା ନିମନ୍ତେ ଝୁଲା ପୋଲ କରାଯାଇଛି । ଆମେ ମଧ ଆମର ଗାଡ଼ି ଏଠାରେ ରଖି ଏହି ପୋଲ ଉପର ଦେଇ ଏକ ପାଖରୁ ଅନ୍ୟ ପାଖକୁ ଗଲୁଁ । ପୋଲ ପାରି ହୋଇ ଅପର ପାର୍ଶ୍ୱରେ ଥିବା ଏକ ବଡ଼ ମନ୍ଦିରକୁ ଗଲୁଁ । ଏହା ଠିକ ଭାରତମାତା ମନ୍ଦିର ଭଳି ହୋଇଛି । ଏହି ମନ୍ଦିରଟି ୧୩ ମହଲା ବିଶିଷ୍ଟ ଏକ ବିରାଟ ସୌଧ । ପ୍ରଥମ ମହଲାରେ ଶିବ ପାର୍ବତୀ, ରାମସୀତା, ଲକ୍ଷ୍ମୀନାରାୟଣ ଓ ରାଧାକୃଷ୍ଣଙ୍କ ଯୁଗଳ ମୂର୍ତ୍ତି ଗୁଡ଼ିକ କାଚ ଆବରଣ ଭିତରେ ସୁନ୍ଦର ଭାବରେ ସଜାଇ ରଖା ଯାଇଥିବାର ଦେଖିଲୁଁ । ଉପର ମହଲା ଗୁଡ଼ିକରେ ମଧ ଏହିପରି କେତେକ ପୌରାଣିକ ଓ ଐତିହାସିକ ମୂର୍ତ୍ତି ସହିତ ଆଜି କାଲିକା ୫୦/୧୦୦ ବର୍ଷ ମଧରେ ଜନ୍ମ ଗ୍ରହଣ କରିଥିବା ମହାପୁରୁଷ ମାନଙ୍କର ମୂର୍ତ୍ତିମାନ ସଜ୍ଜିତ ହୋଇ ରଖା ଯାଇଥିବାର ଜାଣିଲୁଁ । ପ୍ରଥମ ମହଲାପରି ଉପରକୁ ଅନ୍ୟ ୧୨ଟି ମହଲାରେ ବିଭିନ୍ନ ଜାତି ଓ ଧର୍ମର ସନ୍ଥ ଓ ସନ୍ୟାସୀଙ୍କ ମୂର୍ତ୍ତିମାନ ରଖା ଯାଇଥିବାର ଜାଣିବାକୁ ପାଇଲୁଁ । ଉପର ମହଲାଗୁଡ଼ିକୁ ଅନ୍ୟସ୍ଥାନ ପରି ବିଦ୍ୟୁତ ଚାଳିତ ପାହାଚର ବ୍ୟବସ୍ଥା ନଥିବାରୁ ମୁଁ ଓ ମୋ ସ୍ତ୍ରୀ ଉଭୟେ ଅନ୍ୟ ମହଲା ଗୁଡ଼ିକୁ ଯାଇ ପାରିଲୁ ନାହିଁ । ଅନ୍ୟମାନେ ଅବଶ୍ୟ ଉପରକୁ ଅନ୍ୟ ଦୁଇଚାରି ମହଲା ପର୍ଯ୍ୟନ୍ତ ଯାଇ ସେଠାରୁ ଫେରିଲେ । ଏହାପରେ ଆମେ ସମସ୍ତେ ପୁଣି ସେହି ଲକ୍ଷ୍ମଣଝୁଲା ପୋଲ ଉପରଦେଇ ନଦୀର ଏ ପଟକୁ ଫେରିଲୁଁ ଓ ଗାଡ଼ି ସାହାଯ୍ୟରେ ଦୁଇତିନି କିଲୋମିଟର ଗଲାପରେ ରାମଝୁଲା ଠାରେ ଯାଇ ପହୁଁଚିଲୁ ।

ଏହି ପୋଲଟି ମଧ ଠିକ ଲକ୍ଷ୍ମଣଝୁଲା ଢ଼ଙ୍ଗରେ ନିର୍ମିତ । ନଦୀର ଅପର ପାର୍ଶ୍ୱରେ ଥିବା ଏକ ମହାଦେବ ମନ୍ଦିରକୁ ଯାଇ ଠାକୁରଙ୍କୁ ଦର୍ଶନ କଲୁଁ । ଏହା ଏକ ଅତି ପୁରୁଣା ମନ୍ଦିର । ରାମ ଓ ଲକ୍ଷ୍ମଣ ଏଠାରେ ବ୍ରହ୍ମହତ୍ୟା ପାପରୁ ମୁକ୍ତି ପାଇବା ପାଇଁ ମହାଦେବଙ୍କୁ ଆରାଧନା କରିଥିବା ବିଷୟ ଲୋକମୁଖରୁ ଶୁଣିବାକୁ ପାଇଲୁଁ । ଏଠାକାର ଶିବ ଲିଙ୍ଗ ଖୁବ ବଡ଼ ଓ ବେଶ ଦର୍ଶନୀୟ । ସେଠାରୁ କିଛିଦୂର ଯାଇ ସେଠାରେ ଥିବା ଗୀତା ଭବନ ନାମକ ଏକ ସ୍ଥାନକୁ ଗଲୁଁ । ଗୋରଖପୁରଠାରେ ଥିବା ଗୀତା ପ୍ରେସ୍‌ରେ ଛପାଯାଇ ସନାତନ ଧର୍ମର ବହୁ ପୁସ୍ତକମାନ ପ୍ରଚାର ଉଦ୍ଦେଶ୍ୟରେ ଏଠାରେ ଖୁବ କମ ଦାମରେ ବିକ୍ରୟ ହୁଏ ବୋଲି ଲୋକଙ୍କଠାରୁ ଶୁଣିଲୁଁ । ଏହି ଗୀତା ଭବନଟି ଏକ ଧର୍ମଶାଳା କହିଲେ ମଧ ଅତ୍ୟୁକ୍ତି ହେବନାହିଁ । ବହୁ ପ୍ରକୋଷ୍ଠ ବିଶିଷ୍ଟ ଏହି ଗୃହରେ ଅନେକ ତୀର୍ଥ ଯାତ୍ରୀ ମଧ ରହିବାର ବ୍ୟବସ୍ଥା ଅଛି । କିଛି ସମୟ ଆମେ ତାଙ୍କ କାର୍ଯ୍ୟାଳୟରେ ବସି ଆଲୋଚନା କଲୁଁ । ଆସିବା ବେଳେ ଇଂରାଜୀରେ ଲେଖା ଏକ ଗୀତା ଓ ଅନ୍ୟ କେତେକ ବହି ମୋତେ ସେମାନେ ଉପହାର ଦେଲେ । ଆମ ବିଧାନସଭା ସେକ୍ରେଟେରୀ ଗୀତା ଓ ତୁଳସୀ ରାମାୟଣ କିଣିବା ପାଇଁ ଚାହିଁବାରୁ ତାଙ୍କୁ ମଧ ସେ ବହି ଗୁଡ଼ିକ ବିନା ମୂଲ୍ୟରେ ଦେଲେ । ସେଠାରେ ଆମକୁ କିଛି ଖାଇବାକୁ ମଧ ଦେଲେ । ତାଙ୍କ ଗୀତା ଭବନର ପାୱାର ବୋଟରେ ଗଙ୍ଗାନଦୀରେ ଭ୍ରମଣ କରିବାର ସୁବିଧା ମଧ କରିଦେଲେ । ସେହିବୋଟ ସାହାଯ୍ୟରେ ଆମେ ଗାଡ଼ି ପାଖକୁ ବେଶ ସୁବିଧାରେ ଆସି ପାରିଲୁଁ । ସେଠାରୁ ଡ଼ାକବଙ୍ଗଳାକୁ ଫେରି ମଧ୍ୟାହ୍ନ ଭୋଜନ ପରେ ଦିଲ୍ଲୀ ଅଭିମୁଖେ ଯାତ୍ରା କଲୁଁ । ରାତି ପ୍ରାୟ ୮ଟା ବେଳକୁ ଦିଲ୍ଲୀରେ ପହୁଁଚି ଓଡ଼ିଶା ଭବନରେ ରହିଲୁଁ ।

## "୧୯୮୮ ମସିହା ଆରମ୍ଭ"

ଗତବର୍ଷଟି ସବୁ ଦୃଷ୍ଟିରୁ ମୋ ପକ୍ଷରେ ଏକ ସଫଳତାର ବର୍ଷ ଥିଲା । ବିଦେଶ ଭ୍ରମଣରୁ ଆରମ୍ଭ କରି ଭାରତର ବହୁ ଦର୍ଶନୀୟ ଓ ପ୍ରସିଦ୍ଧ ସ୍ଥାନମାନ ଭ୍ରମଣ ଓ ବିଧାନସଭା ପରିଚାଳନାରେ ସଫଳତା ହାସଲ ପ୍ରଭୃତି ଭିତରେ ଅତି ଆନନ୍ଦ ଓ ଉତ୍ସାହର ସହିତ ୧୯୮୭ ବର୍ଷଟି ଅତିବାହିତ ହେଲାପରେ ୧୯୮୮ ନୂତନ ବର୍ଷର ଆଗମନ । ଗତ ବର୍ଷ ମାନଙ୍କର ରାଜନୈତିକ ପରିସ୍ଥିତି ତଥା ସଫଳତାର ସହିତ ବିଧାନସଭା ପରିଚାଳନାର ଅଭିଜ୍ଞତାକୁ ପାଥେୟ କରି ୧୯୮୮ ବର୍ଷର ଆଗମନକୁ ସ୍ୱାଗତ ଜଣାଇ ମୋର କର୍ତ୍ତବ୍ୟ ପଥରେ ଅଗ୍ରସର ହେଲି । ନୂତନ ବର୍ଷଟି ସାଧାରଣତଃ ମୁଁ ମୋର ନିଜଘର ବେତନଟୀରେ ମୋ ନିଜ ପରିବାରଙ୍କ ସହିତ କଟାଇବାକୁ ବିଶେଷ ଆନନ୍ଦ ଅନୁଭବ କରେଁ । ଏହାର କାରଣ ମୁଁ ସବୁଦିନେ କର୍ମରତ ଜୀବନର ବ୍ୟସ୍ତତା ଭିତରେ ଥିବାରୁ ମୋ ନିଜ ପରିବାର ବର୍ଗଙ୍କ ସହିତ ରହିବାର ସୁବିଧା ସୁଯୋଗ ପାଇ ପାରେନି । ତେଣୁଁ ବର୍ଷରେ ଗୋଟିଏ ମାତ୍ର ଦିନ ବିଶେଷ ଆବଶ୍ୟକତା ନଥିଲେ ବାହାରକୁ ଯାଏନାହିଁ । ଅବଶ୍ୟ ଆଜି ପାଇଁ ସେପରି ବିଶେଷ କାର୍ଯ୍ୟକ୍ରମ ନ ଥିଲେ ହେଁ ବାରିପଦାରେ ସେଦିନ ସକାଳେ ଏକ ଗଣ ଦୌଡ଼ର ଆୟୋଜନ ହୋଇ ମୋତେ ତାହା ଉଦ୍‌ଘାଟନ କରିବାକୁ ନିମନ୍ତ୍ରଣ ଆସିଲାରୁ ଅଗତ୍ୟା ସକାଳ ପ୍ରାୟ ୯ଟା ବେଳକୁ ବାରିପଦାର ସାନ ଜଗନ୍ନାଥ ମନ୍ଦିର ନିକଟବର୍ତ୍ତୀ ଡାକ୍ତର ବିନୋଦ ଚନ୍ଦ୍ର ଦାସଙ୍କ ଘରେ ପହଁଞ୍ଚିଲୁ । ବାରିପଦାର ଶ୍ରୀ ଅମୃତ ପୃଷ୍ଟି ନାମକ ଜଣେ ଉତ୍ସାହୀ ଯୁବକ ଏହି ଗଣ ଦୌଡ଼ର ଆୟୋଜନ କରି ଥାଆନ୍ତି । ସହର ଓ ସହରତଳି ଅଞ୍ଚଳର ପ୍ରାୟ ଏକ ଶହ ଯୁବକ ଏହି ଦଉଡ଼ରେ ଅଂଶ ଗ୍ରହଣ କରିଥାଆନ୍ତି । ବାରିପଦାର ବଡ଼ ସାହି ଥାନାର ହରିପୁର ପର୍ଯ୍ୟନ୍ତ ଏହି ଦଉଡ଼ର ସୀମା ନିର୍ଦ୍ଧାରିତ ହୋଇଥାଏ । ବାରିପଦାରୁ ହରିପୁର ୧୬ କି.ମି. ଦୂର । ବହୁ ପୂର୍ବେ ଏହି ହରିପୁର ମୟୂରଭଞ୍ଜର ରାଜଧାନୀ ଥିଲା । ଇତିହାସ ପ୍ରସିଦ୍ଧ ସ୍ଥାନଟି ବୁଢ଼ାବଳଙ୍ଗ ନଦୀକୂଳରେ ଅବସ୍ଥିତ । ତତ୍‌କାଳୀନ ରାଜନଗର ଓ ଗଡ଼ର ଏହି ଭଗ୍ନାବଶେଷ ମୂକସାକ୍ଷୀ ରୂପେ ଏବେ ବି ବିଦ୍ୟମାନ । ପୁରୁଣା କୀର୍ତ୍ତି ଓ କିମ୍ବଦନ୍ତୀର ସୁରକ୍ଷା ଆଇନ ଅନୁଯାୟୀ ହରିପୁର ଗଡ଼ର ଏହି ଭଗ୍ନାବଶେଷ କେନ୍ଦ୍ର ସରକାରଙ୍କ ପ୍ରତ୍ନତତ୍ତ୍ୱ ବିଭାଗ ଅଧୀନରେ ସୁରକ୍ଷିତ । ଏହି ସ୍ଥାନଟି ବାରିପଦାର ଏତେ ନିକଟବର୍ତ୍ତୀ ହେଲେ ହେଁ ବହୁଲୋକ ସେ ସ୍ଥାନଟି ଦେଖିନାହାନ୍ତି । ତେଣୁଁ ଭାରତର ଜାତୀୟ ସଂହତିର ପ୍ରତୀକ ରୂପେ ଏହି ଦୌଡ଼କୁ ଗ୍ରହଣ କରି ଉଦ୍‌ଘାଟନ ପୂର୍ବକ ସେମାନଙ୍କ ସହିତ କିଛିବାଟ ଯାଇ ପରେ ଜିଲ୍ଲା ମୁଖ୍ୟ ଚିକିତ୍ସାଧୀକାରୀଙ୍କୁ କେହି ଜଣେ ସଞ୍ଚକାରୀ ଡ଼ାକ୍ତରକୁ ଏହି ଗଣ ଦୌଡ଼ ପଛରେ ଯିବାପାଇଁ ନିର୍ଦ୍ଦେଶ ଦେବାକୁ ଅନୁରୋଧ ଜଣାଇ ବେତନଟୀ ପ୍ରତ୍ୟାବର୍ତ୍ତନ କଲି ।

## "ଏ ବର୍ଷର ବିଧାନସଭାର ବିଶେଷତ୍ତ୍ୱ"

ଅନ୍ୟ ବର୍ଷମାନଙ୍କ ପରି ଏବର୍ଷ ବିଧାନସଭାର ପ୍ରଥମ ବଜେଟ ଅଧିବେଶନ ତା ୨୪-୨-୮୮ରେ ଆରମ୍ଭ ହୋଇ ଏପ୍ରିଲ ମାସ ୮ ତାରିଖ ପର୍ଯ୍ୟନ୍ତ ପ୍ରାୟ ୪୫ଦିନ ଚାଲି ଶେଷ ହୋଇଥିଲା । ସେହିପରି ଦ୍ୱିତୀୟ ଅତିରିକ୍ତ ବଜେଟ ଅଧିବେଶନ ସେପ୍ଟେମ୍ବର ତା୨୮ରିଖରୁ ଆରମ୍ଭ ହୋଇ ଅକ୍ଟୋବର ୧୨ ତାରିଖ ପର୍ଯ୍ୟନ୍ତ ମୋଟ ୧୫ ଦିନ ଚାଲି ଶେଷ ହୋଇଥିଲା । ଏହି ଦୁଇଟିଯାକ ବିଧାନସଭାର ଅଧିବେଶନ ମୋଟ ୬୦ ଦିନ ଧରି ଚାଲିଥିଲା । ଅବଶ୍ୟ ଏହା ଭିତରେ ଶନିବାର, ରବିବାର ତଥା ଅନ୍ୟ ଛୁଟିଦିନ ଗୁଡ଼ିକୁ ବାଦ ଦେଲେ ମୋଟ କାର୍ଯ୍ୟ ଦିବସ ୪୦ ଦିନରୁ କମ ନ ଥିଲା । ଅନ୍ୟ ବର୍ଷ ମାନଙ୍କ ତୁଳନାରେ ଏ ବର୍ଷ ବିଧାନସଭା ଅଧିକ ଦିନ ବସିଥିଲା ।

ବିଗତ ବର୍ଷ ମାନଙ୍କରେ ବଜେଟ୍ ଅଧିବେଶନଠାରୁ ଏ ବର୍ଷର ବଜେଟ୍ ଅଧିବେଶନ କୌଣସି ଗୁଣରେ କମ ଗୁରୁତ୍ୱପୂର୍ଣ୍ଣ ନ ଥିଲା ବରଂ ଅଧିକ ଆକର୍ଷଣୀୟ ଥିବାର କହିଲେ ଅତ୍ୟୁକ୍ତି ହେବ ନାହିଁ । ୧୯୮୫ର ନିର୍ବାଚନ ପରଠାରୁ ଓଡ଼ିଶା ବିଧାନସଭାର ବଜେଟ୍ ଅଧିବେଶନ ଗୁଡ଼ିକ ଯେତେ ଆଗେଇ ଆଗେଇ ଚାଲିଛି ସେଥିରେ ଆଗତ ହେଉଥିବା ବିଭିନ୍ନ ବିଭାଗର ଖର୍ଚ୍ଚଦାବୀ, ବଜେଟର ସାଧାରଣ ଆଲୋଚନା ତଥା ବିଭିନ୍ନ ଚିଠା ଆଇନ ଗୁଡ଼ିକର ଆଲୋଚନା ଯେତେ ଆକର୍ଷଣୀୟ ହେଉ ନଥିଲା; ବିଭିନ୍ନ ଗୁରୁତ୍ୱପୂର୍ଣ୍ଣ ବିଷୟ ଗୁଡ଼ିକର ଆଲୋଚନା ସମୟରେ ସଭ୍ୟମାନଙ୍କର ବିଧାନସଭାରେ ତତୋଧିକ ଅଗଣତାନ୍ତ୍ରିକ ଓ ଅଶୋଭନୀୟ କାର୍ଯ୍ୟକଳାପ ବୃଦ୍ଧି ପାଇ ବିଧାନସଭାର ମର୍ଯ୍ୟାଦା ହାନୀ ଘଟୁଥିଲା । ବିଶେଷ କରି ସଂବାଦପତ୍ର ଗୁଡ଼ିକରେ ଏ ସମସ୍ତ ବିଷୟର ସଂବାଦ ପରିବେଷଣ ସେହିପରି ଆକର୍ଷଣୀୟ ମଧ୍ୟ ହେଉଥିଲା । ଅବଶ୍ୟ ଏଭଳି ଅଶୋଭନୀୟ କାର୍ଯ୍ୟ ପ୍ରଦର୍ଶନ କରୁଥିବା ସଭ୍ୟମାନେ ଏଥିପାଇଁ ନିଜକୁ ଅତି ଲଜ୍ଜାହୀନ ଭାବରେ ଗୌରବାନ୍ୱିତ ମନେ କରୁଥିଲେ । ପରବର୍ତ୍ତୀ ସାଧାରଣ ନିର୍ବାଚନର ସମୟ ଯେତେଯେତେ ନିକଟବର୍ତ୍ତୀ ହେଉଥାଏ, ବିଭିନ୍ନ ରାଜନୈତିକ ଦଳ ଗୁଡ଼ିକ ବିଧାନସଭାର ମୌଳିକ କାର୍ଯ୍ୟକ୍ରମ, ଯଥା ପ୍ରତ୍ୟେକ ବିଷୟରେ ଟିକିନିଖି ଆଲୋଚନା, ଯୁକ୍ତିତର୍କ ଓ ପ୍ରଶ୍ନ ପ୍ରଭୃତି ମାଧ୍ୟମ ଗୁଡ଼ିକରୁ ଦୂରେଇ ଯାଇ ବିଧାନସଭାକୁ ଏକ ରଣ ଭୂମିରେ ପରିଣତ କରିବାରେ ଅଧିକ ତତ୍ପର ହେବାର ଦେଖାଗଲା । ଏଭଳି ଅସଦାଚରଣ ଓ ଅଗଣତାନ୍ତ୍ରିକ କାର୍ଯ୍ୟ କିଏ କେତେ ପରିମାଣରେ ପ୍ରଦର୍ଶନ କରିପାରିବ ସେଥିପାଇଁ ସଭ୍ୟମାନଙ୍କ ମଧ୍ୟରେ ବିଶେଷ କରି

ବିରୋଧିଦଳର ସଭ୍ୟମାନଙ୍କ ମଧ୍ୟରେ ଏକ ପ୍ରତିଯୋଗିତାରେ ପରିଣତ ହେବାକୁ ଲାଗିଲା ବୋଲି କହିଲେ ଅତ୍ୟୁକ୍ତି ହେବନାହିଁ । ସମ୍ବାଦପତ୍ର ଗୁଡ଼ିକ ଏଭଳି କାର୍ଯ୍ୟ କଳାପର ଅଧିକ ମାତ୍ରାରେ ପ୍ରକାଶ କରି ସେଗୁଡ଼ିକୁ ନିନ୍ଦା କରିବା ପରିବର୍ତ୍ତେ ବରଂ ଅଧିକ ପ୍ରୋତ୍ସାହନ ଦେଉଥିବା ଅତ୍ୟନ୍ତ ପରିତାପର ବିଷୟ ଥିଲା ।

ଏପରି ଘଟଣା କେବଳ ଯେ ଓଡ଼ିଶା ବିଧାନସଭାରେ ଘଟୁଥିଲା ତାହା ନୁହେଁ ଅନ୍ୟ ରାଜ୍ୟର ବିଧାନସଭା ଗୁଡ଼ିକରେ ବରଂ ତାଠାରୁ ଅଧିକ ଅଶୋଭନୀୟ କାର୍ଯ୍ୟ ଦାୟିତ୍ୱପୂର୍ଣ୍ଣ ଲୋକ ପ୍ରତିନିଧିମାନେ ପ୍ରଦର୍ଶନ କରିବାକୁ ପଶ୍ଚାତ୍‌ପଦ ହେଉ ନଥିଲେ । ଭାରତର ସର୍ବୋଚ୍ଚ ଲୋକପ୍ରତିନିଧି ସଂସ୍ଥା ପାର୍ଲ୍ୟାମେଣ୍ଟ (ଲୋକସଭା ଓ ରାଜ୍ୟସଭା) ଯାହାକି ଭାରତର ସାର୍ବଭୌମତ୍ୱର ପ୍ରତୀକ ରୂପେ ପରିଗଣିତ ସେଠାକାର ଅଧିକ ଦାୟିତ୍ୱପୂର୍ଣ୍ଣ ଲୋକପ୍ରତିନିଧି (ଏମ୍.ପି.) ମାନେ ମଧ୍ୟ ଏହି ପ୍ରତିଯୋଗିତାରେ ବିଧାନସଭାର ସଭ୍ୟମାନଙ୍କ ଠାରୁ ଊଣା ନ ଥିବା ସବୁଠାରୁ ଦୁଃଖ ଓ ପରିତାପର ବିଷୟ । ଗଣତନ୍ତ୍ର ତଥା ବିଶେଷ କରି ସଂସଦୀୟ ଗଣତନ୍ତ୍ରର ଏକ ସରକାରର କର୍ମକୁ ପଦାରେ ପକାଇବା ସଙ୍ଗେ ସଙ୍ଗେ ସଂପୂର୍ଣ୍ଣ ଶାଳୀନତା ରକ୍ଷା କରି ଅତି ସାଂଘାତିକ ଭାବରେ ପ୍ରତିବାଦ ଜଣାଇବାର ନିଦର୍ଶନମାନ ପୃଥିବୀର ଅନ୍ୟ ଗଣତାନ୍ତ୍ରିକ ଦେଶର ପାର୍ଲ୍ୟାମେଣ୍ଟାରି ଇତିହାସରେ ଉଲ୍ଲେଖ ଥିଲେ ମଧ୍ୟ ତାହା ଜାଣିବାକୁ ଚେଷ୍ଟା କରିବାରେ କାହାରି ସାମାନ୍ୟତମ ଧୈର୍ଯ୍ୟ ଦେଖାଯାଉନାହିଁ । ଏହା ଭାରତୀୟ ଗଣତନ୍ତ୍ର ଶାସନର ଭବିଷ୍ୟତ ଅନ୍ଧକାରମୟ ବୋଲି ମୋ ପରି ଲୋକଙ୍କର ମନେ ହେଉଥିଲା । ଓଡ଼ିଶା ବିଧାନସଭାରେ ସମସ୍ତ ପ୍ରକାର ଅଶୋଭନୀୟ କାର୍ଯ୍ୟ ସତ୍ତ୍ୱେ ବିଧାନସଭାର ନିର୍ଦ୍ଧାରିତ କାର୍ଯ୍ୟକ୍ରମ ଗୁଡ଼ିକ ସମାପନ ହୋଇ ବରଂ ଅଧିକ ଦିନ ଅଧିବେଶନ ବସି ପାରୁଥିଲା । ମାତ୍ର ଅନ୍ୟକେତେକ ବିଧାନସଭାର କାର୍ଯ୍ୟ ନିର୍ଦ୍ଧାରିତ ସମୟ ପୂର୍ବରୁ ଅନିର୍ଦ୍ଦିଷ୍ଟକାଳ ପର୍ଯ୍ୟନ୍ତ ବନ୍ଦ ହୋଇ ଯାଉଥିବାର ଦେଖାଗଲା । ଅନ୍ୟ ବିଧାନସଭାର କେତେକ ସଭ୍ୟ ଏଭଳି ଅଶୋଭନୀୟ କାର୍ଯ୍ୟ ପାଇଁ ସାମୟିକ ବା ଅବଶିଷ୍ଟ ବିଧାନସଭାର ଅଧିବେଶନର ଅବଧି ପର୍ଯ୍ୟନ୍ତ ଅଧିବେଶନରୁ ସସପେଣ୍ଡ ହେଉଥିଲେ ହେଁ ଓଡ଼ିଶା ବିଧାନସଭାରେ ଅତ୍ୟନ୍ତ ଗୁରୁତର ପରିସ୍ଥିତି ସୃଷ୍ଟିକରି ଅତ୍ୟଧିକ ଅଶୋଭନୀୟ କାର୍ଯ୍ୟ ପ୍ରଦର୍ଶନ କରିଥିବା କୌଣସି ସଭ୍ୟ ପ୍ରତି କେବେହେଲେ କୌଣସି ପ୍ରକାର ଦଣ୍ଡ ବିଧାନ ନ କରି ଗଣ୍ଡଗୋଳ ମଧ୍ୟରେ ମଧ୍ୟ ଶୃଙ୍ଖଳିତ ଭାବରେ କୌଶଳକ୍ରମେ ଉକ୍ତ ଦିନର ନିର୍ଦ୍ଧାରିତ କାର୍ଯ୍ୟକ୍ରମ ଯଥାଯଥ ଭାବରେ ସମାପନ ହୋଇ ପାରିଥିବାରୁ ଉକ୍ତ ଗଣ୍ଡଗୋଳକାରୀ ସଭ୍ୟମାନେ ଅଧ୍ୟକ୍ଷଙ୍କର ଧୈର୍ଯ୍ୟ ଓ କୌଶଳ ପାଇଁ ଭୂୟସୀ ପ୍ରଶଂସା କରି ବିଧାନସଭାରେ କ୍ଷମା ମାଗିଛନ୍ତି ।

ଏବର୍ଷର ବଜେଟ ଅଧିବେଶନ ଫେବୃୟାରୀ ୨୪ ତାରିଖ ପୂର୍ବାହ୍ନ ୧୧ଟା ବେଳେ ଆରମ୍ଭ ହେଲା । ସାମ୍ବିଧାନିକ ବ୍ୟବସ୍ଥାନୁଯାୟୀ ରାଜ୍ୟପାଳ ଭାଷଣ ଦେଇ ବିଧାନସଭା ଅଧିବେଶନ ଉଦ୍‌ଘାଟନ କରିବା କଥା, ତଦନୁଯାୟୀ ରାଜ୍ୟପାଳ ଯଥା ସମୟରେ ବିଧାନସଭା ପରିସର ମଧ୍ୟରେ ପ୍ରବେଶ କରି ପୋଲିସ୍‌ର ଅଭିବାଦନ ଗ୍ରହଣ କଲାପରେ ଅଧ୍ୟକ୍ଷଭାବେ ମୁଁ ଓ ମୋ ସହିତ ବିଧାନସଭା ସଚିବ ଉଭୟେ ତାଙ୍କୁ ବିଧାନସଭା ଗୃହକୁ ପାରଂପାରିକ ରୀତିରେ ପାଛୋଟି ନେଲୁଁ । ରାଜ୍ୟପାଳ ତାଙ୍କର ଉଦ୍‌ଘାଟନ ଭାଷଣ ଆରମ୍ଭ କଲାମାତ୍ରେ ଶ୍ରୀଯୁକ୍ତ ବିଜୁପଟ୍ଟନାୟକ, ବିରୁଦ୍ଧ ଦଳର ନେତା, ଛିଡ଼ା ହୋଇ ଏକ ବିବୃତ୍ତି ପଢ଼ିବାକୁ ଆରମ୍ଭ କରିଦେଲେ । ଏହାଫଳରେ ଗୃହରେ ପାଟିତୁଣ୍ଡ ଆରମ୍ଭ ହୋଇଗଲା । ଶ୍ରୀଯୁକ୍ତ ବିଜୁପଟ୍ଟନାୟକ ଓଡ଼ିଶା ବିଧାନସଭାକୁ ଆସି ବିରୁଦ୍ଧ ଦଳର ନେତା ହେବା ଦିନଠାରୁ ବରାବର ଏପରି ଅଶୋଭନୀୟ କାର୍ଯ୍ୟ ପ୍ରଦର୍ଶନ କରିବାର ଦେଖାଯାଉଛି । ସେ ଜଣେ ସର୍ବଭାରତୀୟ ନେତା ହୋଇ ବିଧାନସଭାର ସଭ୍ୟ ରହିବା ପସନ୍ଦ କରି ତହିଁର ସଭ୍ୟ ରହିବାରୁ ଗଣତନ୍ତ୍ରର ଉଚ୍ଚ ପରଂପରା ରକ୍ଷା କରିବାର ଯେଉଁ ଆଶା ସମସ୍ତେ ପୋଷଣ କରିଥିଲେ ସେଥିରେ ନିରାଶ ହେବାକୁ ପଡ଼ିଛି । ତେଣୁ ସେଦିନର ଏଭଳି ଦୃଶ୍ୟ କିଛି ନୂଆ କଥା ନୁହେଁ, ବରଂ ତାଙ୍କର ଏ ଭଳି ଦାୟିତ୍ୱ ହୀନତା କ୍ରମେ ବଢ଼ିବାରେ ଲାଗିଛି । କିଛି ସମୟ ଏପରି ଗଣ୍ଡଗୋଳ ସୃଷ୍ଟି କଲାପରେ ବିଜୁବାବୁ ଓ ତାଙ୍କ ଦଳର ସଭ୍ୟମାନେ ବିଧାନସଭା ଗୃହ ଛାଡ଼ି ଚାଲିଗଲେ । ରାଜ୍ୟପାଳ ତାଙ୍କର ଭାଷଣ ଶେଷ କଲାପରେ ଯେଉଭଳି ଭାବରେ ଆମ ଗହଣରେ ଆସିଥିଲେ ସେହିପରି ଭାବରେ ତାଙ୍କୁ ପୁଣି ବିଦାୟ ଦିଆଗଲା । ରାଜ୍ୟପାଳ ଚାଲିଗଲା ପରେ ଉକ୍ତ ବିରୁଦ୍ଧ ଦଳର ନେତା ଓ ସଭ୍ୟମାନେ ଗୃହକୁ ଆସିଲେ ଓ ରାଜ୍ୟପାଳଙ୍କ ଭାଷଣ ଉପରେ ସରକାରୀ ଦଳରୁ ଆସିଥିବା ଧନ୍ୟବାଦ ପ୍ରସ୍ତାବ ଉପରେ ଆଲୋଚନାରେ ଭାଗନେବା ପାଇଁ ବିରୁଦ୍ଧ ଦଳରୁ ସଂଶୋଧନ ପ୍ରସ୍ତାବ ମଧ୍ୟ ଦେଲେ । ରାଜ୍ୟପାଳଙ୍କ ଭାଷଣ ଚାଲିଥିଲା ବେଳେ ସମ୍ବାଦପତ୍ରରେ ପ୍ରକାଶ ପାଇଁ ସଭ୍ୟମାନଙ୍କ ମଧ୍ୟରେ ବଣ୍ଟା ଯାଇଥିବା ତାଙ୍କ ଭାଷଣର ଛପା ନକଲ ବିରୁଦ୍ଧ ଦଳର କେତେକ ସଭ୍ୟ ଚିରିଦେଇ ଗୃହଛାଡ଼ି ଚାଲି ଯାଇଥିଲେ । ଗଣତନ୍ତ୍ର ଶାସନରେ ବିଶେଷ କରି ସଂସଦୀୟ ଗଣତନ୍ତ୍ରରେ ରାଜ୍ୟପାଳ କେବଳ ସାମ୍ବିଧାନିକ ମୁଖ୍ୟ । ପ୍ରଶାସନରେ ତାଙ୍କର ଭାଗନେବାର କିଛି ନଥାଏ । ଯଦିଓ ତାଙ୍କ ନାମରେ ଶାସନ ଚାଲେ । ତେଣୁ ସଂସଦୀୟ ଗଣତନ୍ତ୍ରରେ ରାଷ୍ଟ୍ରପତି ଓ ତାଙ୍କର ପ୍ରତିନିଧି ରାଜ୍ୟପାଳ ଗଣତନ୍ତ୍ରର ପ୍ରତୀକ । ସେମାନଙ୍କୁ ଆକ୍ଷେପ କରିବା ବା ସମାଲୋଚନା କରିବା ବିଧି ସମ୍ମତ ନୁହେଁ । ଉକ୍ତ ସ୍ଥାନକୁ ସେମାନେ ଯିବାମାତ୍ରେ ସେମାନଙ୍କୁ ନିରପେକ୍ଷ ଓ ନିର୍ଦ୍ଦଳୀୟ ହେବାକୁ ପଡ଼େ, ସେମାନଙ୍କୁ ଅସମ୍ମାନ ଅର୍ଥ ଆମ ସମ୍ବିଧାନକୁ ଅସମ୍ମାନ । ଏପରି ଅବସ୍ଥାରେ ଯେଉଁମାନେ ତାଙ୍କ ଭାଷଣକୁ ପ୍ରତ୍ୟାଖାନ କରି ପରେ ପୁଣି ତାଙ୍କ ଭାଷଣ ଉପରେ ସଂଶୋଧନ ଦେଇ କିପରି ଆଲୋଚନାକୁ ଆସନ୍ତି ତାହା ହୃଦୟଙ୍ଗମ କରିବା ମୋ ପକ୍ଷରେ କଷ୍ଟକର ହୋଇପଡ଼େ । ମୁଁ ସବୁଦିନେ ବିଧାନସଭାର ସଭ୍ୟମାନଙ୍କୁ କହିଥାଏ ଯେ ଶାସନ ବା ସରକାରଙ୍କୁ ତୀବ୍ର ସମାଲୋଚନା

କରିବାର ଅଧିକାର ପ୍ରତ୍ୟେକ ସଭ୍ୟଙ୍କର ରହିଛି । ଗଣତନ୍ତ୍ର ଶାସନରେ ଏହା ହେବା ମଧ୍ୟ ବିଧେୟ । ଏଇଥିପାଇଁ ବିରୁଦ୍ଧ ଦଳକୁ ସ୍ୱୀକୃତ ଦିଆଯାଇଥାଏ ଓ ବିରୁଦ୍ଧ ଦଳର ନେତାଙ୍କୁ ପ୍ରଧାନମନ୍ତ୍ରୀ ବା ମୁଖ୍ୟମନ୍ତ୍ରୀଙ୍କ ସହିତ ସମାନ ଆସନ ଦିଆଯାଇଥାଏ । କାରଣ ଆଜି ବିରୁଦ୍ଧ ଦଳର ନେତା ଅଛନ୍ତି କାଲି ଶାସନର ପରିବର୍ତ୍ତନ ଘଟିଲେ ସେ ପୁଣି ମୁଖ୍ୟମନ୍ତ୍ରୀ ସ୍ଥାନ ଅଧିକାର କରିବାର ଯଥେଷ୍ଟ ସମ୍ଭାବନା ଥାଏ । ତେଣୁ ବିରୁଦ୍ଧ ଦଳରେ ଥିବା ସମୟରେ ସେ ଯଦି ଦାୟିତ୍ୱହୀନ ଭାବେ ଶସ୍ତା ଲୋକପ୍ରିୟତା ଅର୍ଜନ ପାଇଁ ଏଭଳି ଆଶୋଭନୀୟ ଓ ରୁଚିବିରୁଦ୍ଧ କାର୍ଯ୍ୟ ପ୍ରଦର୍ଶନ କରନ୍ତି ତେବେ ପରବର୍ତ୍ତୀ ଅବସ୍ଥାରେ ସେ ବା ତାଙ୍କଦଳ ସରକାରକୁ ଆସିଲେ ତାଙ୍କ ପୂର୍ବାର୍ଜିତ କାର୍ଯ୍ୟର ଫଳ ତାଙ୍କୁ ନିଶ୍ଚିତ ଭାବରେ ଏକ ପରଂପରା ରୂପେ ଅଧିକତର ଭାବରେ ଭୋଗିବାକୁ ପଡ଼ିବ । ଏ ସବୁ ସତ୍ତ୍ୱେ ମଧ୍ୟ ସେମାନେ କେବେହେଲେ ଏ ଭଳି କାର୍ଯ୍ୟରୁ ବିରତ ହେଉ ନ ଥିଲେ ।

ଏବର୍ଷ ବଜେଟ ଅଧିବେଶନ ଆରମ୍ଭର ପୂର୍ବଦିନ ଜନତାଦଳ ତରଫରୁ ଭୁବନେଶ୍ୱରରେ ଏକ ବଡ଼ ଧରଣର ବିକ୍ଷୋଭ ପ୍ରଦର୍ଶନ କରାଯାଇଥିଲା । ଏଥିରେ ସରକାରଙ୍କ ତରଫରୁ କୌଣସି ପ୍ରକାର ଦମନ ମୂଳକ କାର୍ଯ୍ୟପନ୍ଥା ଗ୍ରହଣ କରାଗଲେ ସେହି ଆଳରେ ବିଧାନଧଭାରେ ଗଣ୍ଡଗୋଳ ସୃଷ୍ଟି କରିବା ଥିଲା ଏହାର ଲକ୍ଷ୍ୟ । ତେଣୁ ସରକାରଙ୍କ ତରଫରୁ ମଧ୍ୟ ପୋଲିସକୁ ଶାନ୍ତିଶୃଙ୍ଖଳା ରକ୍ଷା କରିବା ପାଇଁ ଯଥେଷ୍ଟ ସଂଯମର ସହିତ ନିଜ ଦାୟିତ୍ୱ ତୁଲାଇବାକୁ ନିର୍ଦ୍ଦେଶ ଦିଆଯାଇଥିଲା । ଜନତା ଦଳର ବିକ୍ଷୋଭକାରୀ ମାନେ ଯେ କୌଣସି ମତେ ସେଦିନ କିଛି ଅପ୍ରୀତିକର ପରିସ୍ଥିତି ସୃଷ୍ଟି କରିବାର ଚେଷ୍ଟା କରି ମଧ୍ୟ କିଛି ହୋଇ ନ ପାରିବାରୁ ଶେଷରେ ଏକ ମିଥ୍ୟାର ଆଶ୍ରୟ ନେଇ ପୋଲିସର ମାଡ଼ରେ ଜଣେ ବିକ୍ଷୋଭକାରୀର ମୃତ୍ୟୁ ଘଟିଛି ବୋଲି ପ୍ରଚାର କରି ଏକ ଅଯଥା ଉତ୍ତେଜନା ସୃଷ୍ଟି କଲେ । ପ୍ରକୃତ ପକ୍ଷରେ ଜନତା ଦଳର ବିକ୍ଷୋଭକୁ ଆସିଥିବା ଜଣେ ବ୍ୟକ୍ତି ରାଜଧାନୀରେ ହୃଦରୋଗରେ ପ୍ରାଣ ହରାଇବା ମାତ୍ରେ ସେ ପୋଲିସ୍ ମାଡ଼ରେ ମରିଥିବା ମିଥ୍ୟା ପ୍ରଚାର କରି ଉକ୍ତ ଲୋକର ଶବକୁ ସେଠା ହାସପାତାଳକୁ ନେଇଗଲେ । ଚିକିତ୍ସକମାନେ ଉକ୍ତ ଲୋକର ମୃତ୍ୟୁ ହୃଦ୍‌ରୋଗ ଜନିତ ଘଟିବାର ପ୍ରକାଶ କଲେ ମଧ୍ୟ ମିଥ୍ୟା ପ୍ରଚାରରୁ ବିରତ ହେଲେ ନାହିଁ ବରଂ ବିଧାନସଭା ଆରମ୍ଭ ପୂର୍ବରୁ ପୋଲିସର ଲାଠି ଚାଳନାରେ ଜଣକର ମୃତ୍ୟୁ ଘଟିଥିବାର ଏକ ସନ୍ଦେହର ଛାୟା ସମଗ୍ର ରାଜଧାନୀରେ ସୃଷ୍ଟି କରିବାରେ କେତେକାଂଶରେ ସଫଳ ହେଲେ । ବିଧାନସଭାର ୨ ୟ ଦିନ ବୈଠକରେ ସେହି ମର୍ମରେ ଏକ ମୁଲତବୀ ପ୍ରସ୍ତାବ ମଧ୍ୟ ଆଗତ କଲେ । ଏଭଳି ମୁଲତବୀ ପ୍ରସ୍ତାବ ଆସିଲେ ନିୟମ ଅନୁଯାୟୀ ତାହା ଗ୍ରହଣ ଯୋଗ୍ୟ କି ନୁହେଁ ତାହା ସ୍ଥିର କରିବା ପାଇଁ ପ୍ରଥମେ ସରକାରୀ ଦଳର ସଂପୃକ୍ତ ମନ୍ତ୍ରୀଙ୍କୁ ମୁଲତବୀ ପ୍ରସ୍ତାବରେ କରାଯାଇଥିବା ଅଭିଯୋଗ ଓ ଘଟଣାର ମୋଟାମୋଟି ବିଷୟ ସଂକ୍ରାନ୍ତରେ ଏକ ବିବୃତି ଦେବାକୁ କୁହାଯାଏ । ପରେ ବିବୃତ୍ତି ଉପରେ କିଛି ପ୍ରଶ୍ନ ପଚାରି ଅଧିକ ଜାଣିବା ପାଇଁ ନୋଟିସ ଦେଇଥିବା ଅଭିଯୋଗକାରୀଙ୍କୁ ସୁଯୋଗ ମଧ୍ୟ ଦିଆଯାଏ । ସରକାରୀ ଉତ୍ତର ଯଥାର୍ଥ ହୋଇଥିଲେ କିମ୍ବା ସରକାରଙ୍କ ତରଫରୁ କାର୍ଯ୍ୟାନୁଷ୍ଠାନ ଆରମ୍ଭ ହୋଇଥିବାର ଜଣାଗଲେ ସାଧାରଣତଃ ଅଧ୍ୟକ୍ଷ ବା ଅଧ୍ୟକ୍ଷ ଆସନରେ ଥିବା ବ୍ୟକ୍ତି ସେ ମୁଲତବୀ ପ୍ରସ୍ତାବଟି ନାକଚ କରିବାର ଘୋଷଣା କରନ୍ତି । ସେହିପରି ରାଜ୍ୟର କୌଣସି ବିଶେଷ ସ୍ୱାର୍ଥ ସଂଶ୍ଳିଷ୍ଟ ବିଷୟ ହୋଇଥିଲେ ପ୍ରସ୍ତାବଟି ଗ୍ରହଣ କରାଯାଏ ଏବଂ ଅଧ୍ୟକ୍ଷଙ୍କ ତରଫରୁ ଗୃହୀତ ହେବାର ଘୋଷଣା କରାଗଲା ପରେ ସେହିଦିନ ୪ଟା ବେଳକୁ ଅନ୍ୟ ସମସ୍ତ ଆଲୋଚନା ମୁଲତବୀ ରଖାଯାଇ ପରଦିନକୁ ମୁଲତବୀ ରହେ । ଏହାହିଁ ମୁଲତବୀ ପ୍ରସ୍ତାବ ସଂକ୍ରାନ୍ତୀୟ ବିଧାନସଭା ନିୟମ ।

ତଦନୁଯାୟୀ ଉକ୍ତ ମୁଲତବୀ ପ୍ରସ୍ତାବ ଆସିଲାରୁ ମୁଁ ପ୍ରଥମେ ମୁଖ୍ୟମନ୍ତ୍ରୀଙ୍କୁ ତାଙ୍କର ବିବୃତ୍ତି ଦେବାକୁ କହିଲି । ମାତ୍ର ବିରୁଦ୍ଧ ଦଳରୁ କୌଣସି ଆଲୋଚନା ନ କରି ପ୍ରସ୍ତାବଟି ଗ୍ରହଣ କରିନେବାକୁ ଦାବୀ ଆରମ୍ଭ କରି ପାଟିତୁଣ୍ଡ କରିବାକୁ ଆରମ୍ଭ କରିଦେଲେ । ଏହା ସତ୍ତ୍ୱେ ବି ମୁଁ ମୁଖ୍ୟମନ୍ତ୍ରୀଙ୍କୁ ବିବୃତ୍ତି ଦେବାକୁ ଅନୁରୋଧ କଲି ଓ ତାପରେ ତାଙ୍କକଥା ବିଚାର କରିବା ବୋଲି କହିଲି । କିନ୍ତୁ ସେମାନେ ତାହା ନଶୁଣି ପୂର୍ବପରି ପାଟିତୁଣ୍ଡ କରିବାକୁ ଲାଗିଲେ । ସେହି ଗଣ୍ଡଗୋଳ ମଧ୍ୟରେ ମୁଖ୍ୟମନ୍ତ୍ରୀ ତାଙ୍କ ବିବୃତ୍ତିରେ ଉକ୍ତ ମୃତ୍ୟୁ ହୃଦରୋଗ ଜନିତ ଓ ସେଦିନ ପୋଲିସ କାହାରି ଉପରେ ଲାଠିମାଡ଼ ଦେଇ ନଥିବା ବିଷୟ ଅତି ଦୃଢ଼ ଭାବରେ ଘୋଷଣା କଲେ । ଏହାପରେ ବିରୁଦ୍ଧ ଦଳରୁ ମୁଲତବୀ ପ୍ରସ୍ତାବ ଦେଇଥିବା ସଭ୍ୟମାନଙ୍କୁ ଜଣ ଜଣକରି ତାଙ୍କର ବକ୍ତବ୍ୟ ରଖିବାକୁ ଡ଼ାକିଲାରୁ କେହି ଜଣେ ହେଲେ ଭାଗ ନେଲେ ନାହିଁ ବରଂ ପାଟିତୁଣ୍ଡ କରି ଗୃହ ମଧ୍ୟକୁ ମାଡ଼ି ଆସିଲେ । ଏହାପରେ ଏହି ମୁଲତବୀ ସହିତ ସରକାରୀ ଦଳରୁ ଦୃଷ୍ଟି ଆକର୍ଷଣ ପାଇଁ ନୋଟିସ ଦେଇଥିବା ସଭ୍ୟମାନଙ୍କ ସନ୍ଦେହ ଦୂରୀକରଣ ପାଇଁ ପଚାରିବାରୁ ଅନୁରୋଧ କଲାରୁ ସେମାନେ ସେହି ଗୋଳମାଳ ମଧ୍ୟରେ ବି ଆଲୋଚନା କଲେ ଓ ତପ୍ରେ ପୁଣି ମୁଖ୍ୟମନ୍ତ୍ରୀଙ୍କୁ ସେ ସଂପର୍କରେ ଉତ୍ତର ଦେବାକୁ କହିଲି । ସେ ଏଥର ଘଟଣାଟିର ପ୍ରକୃତ ତଥ୍ୟ ଦେଲେ ତଥାପି ସଭ୍ୟମାନଙ୍କର ସନ୍ଦେହ ହେଉଥିବାରୁ କେନ୍ଦ୍ରାଞ୍ଚଳ ରାଜସ୍ୱ କମିଶନରଙ୍କ ଦ୍ୱାରା ଏକ ପ୍ରଶାସନିକ ତଦନ୍ତ କରାଇବାର ଘୋଷଣା କଲାରୁ ମୁଁ ମୁଲତବୀ ପ୍ରସ୍ତାବଟିର ନାକଚ ଘୋଷଣା କରିଦେଲି । ଏଥିରେ ବିରୁଦ୍ଧ ଦଳର ସଭ୍ୟମାନେ ଗୃହ ମଧ୍ୟଭାଗକୁ ପ୍ରବେଶ କରି ଅଧିକ ଗଣ୍ଡଗୋଳ ଆରମ୍ଭ କରିଦେଲେ । ବିଧାନସଭାର ରିପୋର୍ଟର ମାନଙ୍କଠାରୁ କାଗଜପତ୍ର ଛଡ଼ାଇ ନେଲେ । ତାଙ୍କ ଟେବୁଲ ଉପରେ ଛିଡ଼ା ହୋଇ ସ୍ଲୋଗାନମାନ ଦେଲେ । ମୋ ଟେବୁଲ ପାଖ ତଳକୁ ମାଡ଼ି ଆସି ମାଇକଟି ମଧ୍ୟ ନେଇଗଲେ । ଏହିପରି ଭାବରେ ଯେତେ ପ୍ରକାର ଶିଷ୍ଟାଚାରହୀନ ଓ ଅଶୋଭନୀୟ କାର୍ଯ୍ୟ କରାଯାଇ ପାରେ ତାହା

କରିବାକୁ କୁଣ୍ଠାବୋଧ କଲେ ନାହିଁ । ବିରୁଦ୍ଧଦଳର ନେତା ତାଙ୍କ ଦଳର ସଭ୍ୟମାନଙ୍କୁ ଏହିପରି ଅପକର୍ମରେ ଲଗାଇ ଦେଇ ଗୃହମଧ୍ୟରେ ନ ରହି ବିଧାନସଭା ଲବିରେ ବସି ସେଠାରୁ ପ୍ରୋତ୍ସାହନ ଦେଉଥାଆନ୍ତି । ମୃତ୍ୟୁ ଘଟଣାଟି ଅସତ୍ୟ ହେଲେ ହେଁ ବିଧାନସଭା ପ୍ରାୟ ଦେଢ଼ମାସ ଧରି ବସିବାକୁ ଥିବାରୁ ଉକ୍ତ ଘଟଣା ଉପରେ ଅଧିବେଶନ ସାରା ଉତ୍ତେଜନା ସୃଷ୍ଟିକରି ରଖିବା ଉଦ୍ଦେଶ୍ୟରେ ଏଭଳି ଏକ ଘଟଣା ସୃଷ୍ଟି କଲେ ଓ ଏଥିରୁ ଏକ ରାଜନୈତିକ ଫାଇଦା ଉଠାଇବା ଥିଲା ତାଙ୍କର ମୂଳଲକ୍ଷ୍ୟ । ଏଭଳି ଘଟଣା ଯେ କେବଳ ଏଥରକ ହେଲା ତା’ ନୁହେଁ । ଏଭଳି ଅଶୋଭନୀୟ କାର୍ଯ୍ୟପଳାପ ବିରୁଦ୍ଧଦଳ ପକ୍ଷରୁ ସଦା ସର୍ବଦା ଲାଗିରହିଥାଏ । ବିଶେଷ କରି ଶ୍ରୀଯୁକ୍ତ ବିଜୁପଟ୍ଟନାୟକ ଭଳି ଜଣେ ସର୍ବଭାରତୀୟ ନେତା ବିଧାନସଭାରେ ବିରୁଦ୍ଧ ଦଳର ମୁଖ୍ୟ ହୋଇ ରହିବା ଦିନୁଁ ଏପରି ଅଶୋଭନୀୟ କାର୍ଯ୍ୟ ଅଧିକ ପରିମାଣରେ ହେବାର ଦେଖାଗଲା । ସବୁଠାରୁ ଦୁଃଖ ଓ ପରିତାପର ବିଷୟ ଯେ, ସେ ଲଜ୍ଜାହୀନ ଭାବରେକେତେକ ସମୟରେ ନିଜେ ଗୃହ ମଧ୍ୟରେ ତାଙ୍କ ନିଜ ସ୍ଥାନରେ ବସି ଏଭଳି ବିଶୃଙ୍ଖଳା ସୃଷ୍ଟି କରିବାର କୁପରାମର୍ଶ ଓ ଉତ୍ସାହ ଦେବାକୁ ସଂକୋଚ କରନ୍ତି ନାହିଁ । କେତେବେଳେ ମଧ୍ୟ ଗଣ୍ଡଗୋଳ ସୃଷ୍ଟି କରିବାର ଇଙ୍ଗିତ ଦେଇ ବାହାରୁ ଅର୍ଥାତ୍ ଲବିରେ ବସି ଅନୁଧ୍ୟାନ କରନ୍ତି । କେତେବେଳେ ଅବା ତାଙ୍କ ଦଳର ଗଣ୍ଡଗୋଳକାରୀଙ୍କ ବୁଦ୍ଧିର ଅଭାବ ଘଟିବାର ଉପଲବ୍ଧି କଲେ ଗୃହ ମଧ୍ୟକୁ ଆସି କିଛି କୁପରାମର୍ଶ ଦେଇ ପୁଣି ବିଧାନସଭାରୁ ଚାଲିଯିବାରୁ ଦେଖାଯାଏ । ଏତେ ଗଣ୍ଡଗୋଳ ମଧ୍ୟରେ ବି ମୁଁ ସେମାନଙ୍କ କାର୍ଯ୍ୟକୁ ଆଦୌ ଭ୍ରୂକ୍ଷେପ ନ କରି ସେଦିନର ନିର୍ଦ୍ଧାରିତ ବିଭିନ୍ନ କାର୍ଯ୍ୟକ୍ରମ ଗୋଟିକ ପରେ ଗୋଟିଏ ଆରମ୍ଭ କରି ଚାଲିଲି । ଏହିପରି ଭାବରେ ଦିନ ପ୍ରାୟ ଗୋଟାଏ ପର୍ଯ୍ୟନ୍ତ କାର୍ଯ୍ୟକାରୀ ସବୁଦିନ ଭଳି ଗୃହର କାର୍ଯ୍ୟ ଅପରାହ୍ନ ୨ଟା ୩୦ମି. ପର୍ଯ୍ୟନ୍ତ ମୁଲତବୀ ରଖିବସାକୁ ଚାଲିଗଲି । ସାଧାରଣତଃ ଅପରାହ୍ନ ଅଧିବେଶନରେ ବିଧାନସଭା ଉପାଧ୍ୟକ୍ଷ କାର୍ଯ୍ୟ ଚଳାନ୍ତି ଓ ମଝିରେ ମଝିରେ ଚେୟାରମେନ୍ ମାନଙ୍କ ମଧ୍ୟରୁ କେହିଥିଲେ ସେମାନେ ବା ଉପାଧ୍ୟକ୍ଷ ଅଧ୍ୟକ୍ଷ ଆସନରେ ଥାଇ ଅଧିବେଶନ ଆରମ୍ଭ କଲାମାତ୍ରେ ପୁଣି ବିରୁଦ୍ଧଦଳର ଲୋକେ ଗଣ୍ଡଗୋଳ ଆରମ୍ଭ କରିଦେଲେ ଓ ବିଧାନସଭାର କୌଣସି କାର୍ଯ୍ୟ କରାଇ ଦେଲେନାହିଁ । ଏହାପରେ ମୁଁ ମୋର ବିଧାନସଭା ପ୍ରକୋଷ୍ଠରେ ପହୁଁଛିଲା ପରେ ଉଭୟପକ୍ଷର ସଭ୍ୟମାନେ ଆସି ଏହାର ଏକ ସମାଧାନ ପାଇଁ ଚେଷ୍ଟା କଲେ । ମାତ୍ର ମୁଁ ରୋକଠୋକ ଭାବେ ଜଣାଇ ଦେଲି ଯେ ସରକାରଙ୍କ ପ୍ରଥମ ବିବୃତିରେ ସେଦିନ ପୋଲିସର ଲାଠିମାଡ଼ ଆଦୌ ହୋଇନାହିଁ ଏବଂ ଲୋକଟି ଶୋଭାଯାତ୍ରାରେ ଚାଲୁଥିବା ବେଳେ ପୂର୍ବରୁ ଥିବା ହୃଦ୍‌ରୋଗଜନିତ ମୃତ୍ୟୁ ଘଟିଛି ଓ ଏହାପରେ ପୁଣି ରାଜସ୍ୱ କମିଶନଙ୍କ ଦ୍ୱାରା ଏକ ପ୍ରଶାସନିକ ତଦନ୍ତ କରାଯିବାର ମୁଖ୍ୟମନ୍ତ୍ରୀ ଘୋଷଣା କଲାପରେ ଉକ୍ତ ମୁଲତବୀ ପ୍ରସ୍ତାବ ଥରେ ନାକଚ ହେଲାପରେ ପୁଣିଥରେ ଆଲୋଚନା ହେବାର ବିଧି ବିଧାନସଭା ନିୟମ ବହିର୍ଭୂତ । ସରକାରୀ ଦଳ ବିଧାନସଭା ଆରମ୍ଭରେ ଏପରି ଏକ ଗଣ୍ଡଗୋଳ ଚାହୁଁ ନଥିଲେ । ତେଣୁ ବିରୁଦ୍ଧଦଳକୁ କୌଣସି ମତେ ସନ୍ତୁଷ୍ଟ କରି ଶାନ୍ତିପୂର୍ଣ୍ଣ ଭାବରେ ବିଧାନସଭା ଚାଲିବା ଚାହୁଁଥିବାରୁ ଏଥିପାଇଁ ଏକ ସମାଧାନ ମଧ୍ୟ ଚାହିଁଲେ । ଏ ବିଷୟରେ ସମାଧାନ ନ ହେବା ପର୍ଯ୍ୟନ୍ତ ସେ ଦିନର ଅବଶିଷ୍ଟ କାର୍ଯ୍ୟକ୍ରମ ଗୁଡ଼ିକ ମଧ୍ୟ ଆରମ୍ଭ ହୋଇ ପାରୁନାହିଁ । ଅବଶେଷରେ ସର୍ବସମ୍ମତି କ୍ରମେ ଏକ ପ୍ରସ୍ତାବ ଆସିବାର ସ୍ଥିର ହେଲା । ସେଥିରେ ପୋଲିସର ଲାଠିମାଡ଼ କଥା ରହିବ ନାହିଁ କେବଳ ଶୋଭାଯାତ୍ରାରେ ଯାଉଥିବା ବେଳେ ମୃତ୍ୟୁ ହୋଇଥିବାର ଉଲ୍ଲେଖ ରହିବ । ଏହି ମର୍ମରେ ଏକ ପ୍ରସ୍ତାବ ଆସିଲେ ମୁଁ ମୋର ସ୍ୱତନ୍ତ୍ର କ୍ଷମତା ବଳରେ ଗ୍ରହଣକରି ଆଲୋଚନାର ସୁଯୋଗ ଦେବି । ଏହି ନିଷ୍ପତ୍ତିପରେ ମୁଁ ବିଧାନସଭାର ଅଧ୍ୟକ୍ଷ ଆସନକୁ ଗଲି ଏବଂ ଉକ୍ତ ସର୍ବସମ୍ମତ ନିଷ୍ପତ୍ତି ଘୋଷଣା କଲାପରେ ବିଧାନସଭା ଶାନ୍ତିପୂର୍ଣ୍ଣ ଭାବେ ଚାଲି ସେଦିନର ବାକିଥିବା କାର୍ଯ୍ୟକ୍ରମ ଗୁଡ଼ିକ ଶେଷ ହେଲା ଓ ପରେ ୪ଟାରୁ ୬ଟା ପର୍ଯ୍ୟନ୍ତ ଦୁଇଘଣ୍ଟା କାଳ ମୋସନ୍‌ଟିର ଆଲୋଚନା ହୋଇ ତହିଁ ପରଦିନକୁ ବିଧାନସଭା ମୁଲତବୀ ରହିଲା ।

ଏହିପରି ଅନ୍ୟଦିନ ମାନଙ୍କରେ ମଧ୍ୟ ବିଭିନ୍ନ ସମସ୍ୟା ଉପରେ ବିରୁଦ୍ଧ ଦଳ ପକ୍ଷରୁ ଦୈନନ୍ଦିନ କୌଣସି କାରଣ ବା ସରକାରୀ ଅବହେଳା ଦର୍ଶାଇ ବିଧାନସଭାରେ ଗଣ୍ଡଗୋଳ କରିବାର ଚେଷ୍ଟା କରିଥାଆନ୍ତି । ମାତ୍ର ସେସବୁର ସମାଧାନ ପାଇଁ ମୁଁ ନିରପେକ୍ଷ ଭାବରେ ଏପରି ପଦକ୍ଷେପ ଗ୍ରହଣ କରେ ଯାହା ଫଳରେ ସମସ୍ତେ ଶାନ୍ତ ହେବାକୁ ବାଧ୍ୟ ହୁଅନ୍ତି । କଟକ ଜିଲ୍ଲା ତଥା ସମୁଦ୍ର ଘେର ଅଞ୍ଚଳର ନଳକୂପ ଗୁଡ଼ିକର ତ୍ରୁଟି ପାଇଁ ମିଠାପାଣି ପରିବର୍ତ୍ତେ ଲୁଣାପାଣି ବାହାରିବାରୁ ଲୋକେ ଅପରିଷ୍କୃତ ଜଳ ପିଇ ମୃତ୍ୟୁବରଣ କରୁଥିବା ହେତୁ ଏକ ଗଣ୍ଡଗୋଳ ତରେ ଉଠାଇଲେ । ତେଣୁ ମୁଁ ସଙ୍ଗେ ସଙ୍ଗେ ବିଭାଗୀୟ (P.H.D.) ତଥା ବିଭାଗୀୟ ମନ୍ତ୍ରୀଙ୍କୁ ଘଟଣା ସ୍ଥଳ ପରିଦର୍ଶନ କରି ତୁରନ୍ତ କାର୍ଯ୍ୟାନୁଷ୍ଠାନ କରିବାକୁ ଓ ୭ଦିନ ମଧ୍ୟରେ ଗୃହକୁ ଜଣାଇବାକୁ ନିର୍ଦ୍ଦେଶ ଦେଲାରୁ ଉଭୟ ସରକାରୀ ଓ ବିରୁଦ୍ଧଦଳ ମୋ ନିଷ୍ପତ୍ତିକୁ ସ୍ୱାଗତ ଜଣାଇଲେ । ପରେ ଗୃହର କାର୍ଯ୍ୟ ଶାନ୍ତି ଶୃଙ୍ଖଳାର ସହିତ ଚାଲିଲା ।

ଏହିପରି ଅନ୍ୟ ଏକ ଘଟଣା ମଧ୍ୟ ରାଜ୍ୟ ପରିବହନ ନିଗମ ସଂକ୍ରାନ୍ତରେ ଘଟିଲା । ଦୁଇଟିଯାକ ସରକାରୀ ପରିଚାଳିତ ନିଗମରେ ପ୍ରଭୂତ କ୍ଷତି ସାଧନ ଓ ପରିଚାଳନା ଗତ ଗୁରୁତର ତ୍ରୁଟି ସଂକ୍ରାନ୍ତରେ ବିରୁଦ୍ଧ ଦଳରୁ ଏକ ମୁଲତବୀ ପ୍ରସ୍ତାବର ଆଲୋଚନା ବେଳେ ବିରୁଦ୍ଧଦଳର ସଭ୍ୟମାନେ ବିଭଗୀୟ ମନ୍ତ୍ରୀଙ୍କୁ ଅକ୍ଷେପ କରି ସେ ଲକ୍ଷ ଲକ୍ଷ ଟଙ୍କା ଲାଞ୍ଚ ନେଇଥିବାର ଅଭିଯୋଗ ମାନ କଲେ । ବିଭାଗୀୟ ମନ୍ତ୍ରୀ ଏହାର ପ୍ରତିବାଦ ନ କରି ନୀରବ ରହିଲେ ଓ ସରକାରୀ ଦଳରୁ

କେତେକ ସଭ୍ୟ ମଧ୍ୟ ବହୁ ଘରୋଇ ବସ ଗୁଡ଼ିକୁ ନିଗମ ବସ ଯିବା ଆଗରୁ ଚଳାଇବାକୁ ଅନୁମତି ଦିଆଯାଇଥିବା ତଥା ବିନା ଲାଇସେନ୍ସରେ ବହୁ ଘରୋଇ ବସ ମନ୍ତ୍ରୀ ତଥା କର୍ମଚାରୀଙ୍କ ଜ୍ଞାତସାରରେ ଚାଲୁଥିବାର ନିର୍ଦ୍ଦିଷ୍ଟ ଅଭିଯୋଗମାନ ଆଣିବାରୁ ବିଧାନସଭାରେ ଏକ ଗୁରୁତର ପରିସ୍ଥିତି ଉପୁଜିଲା ଓ ବିଧାନସଭା କାର୍ଯ୍ୟ ଅଚଳ ହୋଇପଡ଼ିଲା । ବିଭାଗୀୟ ମନ୍ତ୍ରୀ ଉକ୍ତ ଅଭିଯୋଗ ଗୁଡ଼ିକର ଲିଖିତ ଉତ୍ତର ଦେଲେ ତହିଁର ତଦନ୍ତ କରି ବିହିତ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିବାର ଘୋଷଣା ଓ ପ୍ରତିଶ୍ରୁତି ଦେଲେ ମଧ୍ୟ ଉଭୟ ପକ୍ଷର ସଭ୍ୟମାନେ ଏଥିରେ ସନ୍ତୁଷ୍ଟ ହେଲେ ନାହିଁ । ଏ ସମସ୍ତ ଅଭିଯୋଗ ଯେ ସତ୍ୟ ଏଥିରେ କିଛି ହେଲେ ସନ୍ଦେହ ନ ଥିବା ବିଷୟ ମୁଁ ମଧ୍ୟ ନିଜ ଅଭିଜ୍ଞତାରୁ ଜାଣିଥିଲି । ମୁଁ ନିଜେ ମଧ୍ୟ ଏହିପରି ଏକ ଅଭିଯୋଗ ପୂର୍ବରୁ ବିଭାଗୀୟ ମନ୍ତ୍ରୀଙ୍କ ଦୃଷ୍ଟିକୁ ଆଣିଥିଲେ ହେଁ ତାର କୌଣସି ପ୍ରତିକାର ହୋଇ ନଥିଲା । ସରକାରୀ ତଦନ୍ତଦ୍ୱାରା କିଛି ସୁଫଳ ହୃଦବୋଧ ନ ହେବାରୁ ବିଧାନସଭାର ଏକ କମିଟି ଦ୍ୱାରା ମିଳିବାର ଉକ୍ତ ଅଭିଯୋଗ ଗୁଡ଼ିକର ତଦନ୍ତ କରି ପରବର୍ତ୍ତୀ ବିଧାନସଭା ବୈଠକରେ ଉପସ୍ଥାପନ କରିବାକୁ ନିର୍ଦ୍ଦେଶ ଦେଲି । ଏଥିରେ ଉଭୟ ପକ୍ଷର ସଭ୍ୟମାନେ ଆନନ୍ଦିତ ହେଲେ ଓ ଏପରି ପ୍ରସ୍ତାବକୁ ସ୍ୱାଗତ ଜଣାଇଲେ । ମୁଁ ଏହା ଘୋଷଣା କଲାବେଳେ ପରିବହନ ବିଭାଗର ସମସ୍ତ କର୍ମଚାରୀ ଦୁର୍ନୀତିଗ୍ରସ୍ତ ହୋଇଥିବା ହେତୁ ଉକ୍ତ ତଦନ୍ତ ବିଧାନସଭାର ଏକ କମିଟି କରିବା ଉଚିତ ବୋଲି ମନ୍ତବ୍ୟ ଦେବାରୁ ବିଭାଗୀୟ କର୍ମଚାରୀମାନେ ବିଶେଷ ଭାବେ କ୍ଷୁବ୍ଧ ହୋଇଥିଲେ । ଏହା ଏକ ଅପ୍ରିୟ ସତ୍ୟ ହୋଇଥିଲେ ହେଁ ଉକ୍ତ ଦିନର ପରିସ୍ଥିତି ଦୃଷ୍ଟିରୁ ମୋ ପକ୍ଷରେ ଗୃହକାର୍ଯ୍ୟ ପରିଚାଳନା ପାଇଁ ଏହି ପରି ଏକ ମନ୍ତବ୍ୟ ଦେବା ବ୍ୟତୀତ ଉପାୟାନ୍ତର ନ ଥିଲା । ଏହାପରେ ବୋଧହୁଏ ଉକ୍ତ ବିଭାଗୀୟ ମନ୍ତ୍ରୀ ଏ ସଂପର୍କରେ ମୁଖ୍ୟମନ୍ତ୍ରୀଙ୍କ ସହିତ ଆଲୋଚନା କରିଥିଲେ । ଯାହା ଫଳରେ ଅପରାହ୍ନରେ ମୁଖ୍ୟମନ୍ତ୍ରୀ ଅନ୍ୟ ଏକ ବିଷୟରେ ଆଲୋଚନା କରିବା ପାଇଁ ମୋ ପ୍ରକୋଷ୍ଠକୁ ଆସିଥିଲା ବେଳେ ମୋତେ ତାଙ୍କ ମନ୍ତ୍ରୀମାନଙ୍କ ପ୍ରତି କୋହଳ ମନୋଭାବ ପୋଷଣ କରିବାକୁ ଓ ସେମାନଙ୍କୁ ଯଥାସମ୍ଭବ ସାହାଯ୍ୟ କରିବାକୁ ଅନୁରୋଧ କରିଥିଲେ । ଅବଶ୍ୟ ସେ ଦିନର ଘଟଣା ମୁଁ ମୁଖ୍ୟମନ୍ତ୍ରୀଙ୍କ ଦୃଷ୍ଟିକୁ ଆଣିଥିଲି ଓ ତାଙ୍କୁ କହିଲି ଯେ ମନ୍ତ୍ରୀମାନଙ୍କ ବିରୁଦ୍ଧରେ ଗୁରୁତର ଅଭିଯୋଗ ଆସିଲେ ଯଦି ସେମାନେ ତହିଁର ପ୍ରତିବାଦ ନ କରି ନିରୁତ୍ତର ରହିବେ ତେବେ ସେଥିରେ ବା ମୁଁ ସେମାନଙ୍କୁ କିପରି ସାହାଯ୍ୟ ବା ରକ୍ଷା କରିପାରିବି ।

## ''ବିଧାନସଭା ଚାଲିଥିଲା ବେଳର ସମାଗମ''

ବିଧାନସଭା ଚାଲିଥିଲା ବେଳେ କେବଳ ଯେ ସଭ୍ୟମାନଙ୍କର ନିର୍ବାଚନ ମଣ୍ଡଳୀରୁ ବିଭିନ୍ନ ସମସ୍ୟା ନେଇ ଆସିଥିବା ଲୋକଙ୍କର ସମାଗମ ହୁଏ ତା ନୁହେଁ, ରାଜ୍ୟର ବିଭିନ୍ନ ରାଜନୈତିକ ଦଳର ଶକ୍ତି, ସମର୍ଥନ ତଥା ସାମର୍ଥ୍ୟ ପ୍ରଦର୍ଶନ ପାଇଁ ସଂପୃକ୍ତ ଲୋକମାନଙ୍କର ସମାଗମ ମଧ୍ୟ ହୋଇଥାଏ । ଏଥର ବିଧାନସଭା ସଂପୃକ୍ତ ଲୋକମାନଙ୍କର ଜନତାଦଳ ତରଫରୁ ଏକ ବିକ୍ଷୋଭ ପ୍ରଦର୍ଶନ କଲାପରେ କଂଗ୍ରେସ ତରଫରୁ ମଧ୍ୟ ଏକ ବିରାଟ ଜନ ସମାବେଶ କରାଯାଇ ତହିଁର ଜବାବ ଦିଆଯାଇଥିଲା । ଏତଦ୍ ବ୍ୟତୀତ ବାମପନ୍ଥୀଦଳ (ଦୁଇ କମ୍ୟୁନିଷ୍ଟ ପାର୍ଟି) ଏସ.ୟୁ.ସି.ଆଇ ଓ ବିଭିନ୍ନ ଶ୍ରମିକ ସଂଗଠନ ତରଫରୁ ବିକ୍ଷୋଭ ପ୍ରଦର୍ଶନ କରାଯାଇଥିଲା । ଆହୁରି ମଧ୍ୟ ଶିକ୍ଷକ ମହାସଂଘ ପକ୍ଷରୁ ସ୍କୁଲ କଲେଜ (ସରକାରୀ ଓ ବେସରକାରୀ) ମାନେ ବେଆଇନ ଭାବେ ଦଳ କରି ରାଜଦାଣ୍ଡରେ ବିଭିନ୍ନ ଧ୍ୱନିମାନ ଦେଇ ତାଙ୍କ ଦାବୀ ପୂରଣ ପାଇଁ ପେଶାଦାର ରାଜନୈତିକ ଦଳପରି ଏହି ପ୍ରତିଯୋଗିତାରେ ଅବତୀର୍ଣ୍ଣ ହୁଅନ୍ତି । ମାତ୍ର ଏଥର ଆଉଟିକିଏ ଆଗେଇ ଯାଇ ଜେଲଭରା ଅର୍ଥାତ୍ ଆଇନ୍ ଭାଙ୍ଗି ଜେଲଯିବାର କାର୍ଯ୍ୟକ୍ରମ ମଧ୍ୟ ଏମାନଙ୍କ ତରଫରୁ ରଖାଯାଇଥିଲା । ଶିକ୍ଷକମାନଙ୍କ ପରେ ବିଭିନ୍ନ ଛାତ୍ରାନୁଷ୍ଠାନ ଗୁଡ଼ିକ ମଧ୍ୟ ଭିନ୍ନ ଭିନ୍ନ ରାଜନୈତିକ ଦଳମାନଙ୍କ ଦ୍ୱାରା ପ୍ରୋତ୍ସାହିତ ହୋଇ ନିଜ ନିଜର ଦାବୀ ଉପସ୍ଥାପନ ପାଇଁ ଏତିକି ବେଳେ ଉପସ୍ଥିତ ହୁଅନ୍ତି । ରାଜ୍ୟ ସଚିବାଳୟ ବିଭିନ୍ନ ବିଭାଗର ମୁଖ୍ୟଦପ୍ତର ତଥା ଜିଲ୍ଲା ସ୍ତରୀୟ ଅଣଗେଜେଟେଡ଼ କର୍ମଚାରୀମାନଙ୍କର ବିଭିନ୍ନ ସଂଗଠନ ତରଫରୁ ମଧ୍ୟ ବିକ୍ଷୋଭ ପ୍ରଦର୍ଶିତ ହୋଇ ତାଙ୍କର ଦାବୀ ମଧ୍ୟ ଉପସ୍ଥାପିତ ହୋଇଥାଏ । କେତେକ ଶ୍ରମିକ (ଛଟେଇ ହୋଇଥିବା) ବେକାର ଯୁବକମାନେ ବିଧାନସଭାର ଚାରିପାଖେ ନିଷିଦ୍ଧ ଅଞ୍ଚଳ ବାହାରେ ତମ୍ବୁମାନ ପକାଇ ମାସ ମାସ ଧରି ଧାରଣା ଦେଇ ବସି ବିଭିନ୍ନ ଦୋକାନ ବା ଷ୍ଟଲ ଖୋଲିଲାଭଳି ଶୋଭାବର୍ଦ୍ଧନ କରିଥାଆନ୍ତି । ଏଥର ଶେଷକୁ ମହିଳାମାନେ ମଧ୍ୟ ପଛରେ ପଡ଼ି ନ ରହି ସେମାନଙ୍କର ଏକ ବିକ୍ଷୋଭ ମଧ୍ୟ ପ୍ରଦର୍ଶିତ ହୋଇଥିଲା । ପୁରୁଷ ଓ ସ୍ତ୍ରୀକୁ ସମାନ ଆସନ ମିଳୁଥିବା ବେଳେ ସେମାନେ ବା ପଛରେ ପଡ଼ନ୍ତେ କାହିଁକି ? କିନ୍ତୁ ସମସ୍ତ ବିକ୍ଷୋଭକାରୀ ସଂସ୍ଥାମାନଙ୍କ ତରଫରୁ ଅଧିକାଂଶ ବିଭାଗୀୟ ମନ୍ତ୍ରୀଙ୍କ ନିକଟକୁ ନ ଯାଇ ବିଧାନସଭା ଅଧ୍ୟକ୍ଷଙ୍କ ନିକଟରେ ନିଜ ନିଜର ଦାବୀପତ୍ର ଦେଇଥାଆନ୍ତି । ବିଧାନସଭା ଆଗରେ ସେପରି ସ୍ଥାନ ନ ଥିବାରୁ ଏ ବିକ୍ଷୋଭକାରୀଗଣ ସଡ଼କ ଉପରେ ସଭାମାନ କରି ଘଣ୍ଟାଘଣ୍ଟାଧରି ଡ଼ାକବାଜା ଯନ୍ତ୍ରରେ ଏଭଳି କର୍ଣ୍ଣଫଟା ସ୍ୱରରେ ଭାଷଣ ଦେଉଥାଆନ୍ତି ଯେ ପାଖ ପ୍ରତିବେଶୀମାନେ ଅସ୍ତବ୍ୟସ୍ତ ହୋଇପଡ଼ନ୍ତି । କିନ୍ତୁ ଏ ସବୁର ପ୍ରଦର୍ଶନ ସତ୍ତ୍ୱେ ଓ ଓଜସ୍ୱିନୀ ଭାଷାରେ ଦୀର୍ଘ ଭାଷଣମାନ ଦେଉଥିଲେ ହେଁ ଏସବୁର ପ୍ରଭାବ ନା ସରକାର ନା ଜନ ସାଧାରଣଙ୍କ ଉପରେ କିଛି ମାତ୍ରାରେ ପଡୁଥିବାର ଜଣାଯାଏ ନାହିଁ । ଏ ସମସ୍ତ ଏକ ଚିରାଚରିତ ପ୍ରଥା ହୋଇଥିବାରୁ

ଏଥିପ୍ରତି କେହି ଗୁରୁତ୍ୱ ଦିଅନ୍ତି ନାହିଁ । ପୂର୍ବରୁ କେବଳ ବିଶେଷ ଆବଶ୍ୟକତା ବା କାରଣ ଥିଲେ ଉକ୍ତ ସଂସ୍ଥା ପକ୍ଷରୁ ସରକାରଙ୍କ ଦୃଷ୍ଟି ଆକର୍ଷଣ ଉଦ୍ଦେଶ୍ୟରେ ଏଭଳି ବିକ୍ଷୋଭ ପ୍ରଦର୍ଶନ କରାଯାଉଥିଲା ଓ ସରକାର ମଧ୍ୟ ତହିଁର କିଛି ପ୍ରତିକାର କରୁଥିଲେ । ମାତ୍ର ଏବେ ଦଳୀୟ ସଂଗଠନକୁ ସୁଦୃଢ଼ କରିବା ପାଇଁ ଜନସାଧାରଣଙ୍କ ଠାରୁ ଚାନ୍ଦା ଆଦାୟ କରି ଟ୍ରେନରେ ବିନା ଟିକେଟରେ ଜବରଦସ୍ତ ଆସିବା ଓ ଭୁବନେଶ୍ୱରରେ ଫୁର୍ତ୍ତି କରିବା ଥାଏ ମୁଖ୍ୟ ଲକ୍ଷ୍ୟ । ସେହିପରି ସରକାରଙ୍କ ତରଫରୁ ପ୍ରତିଷେଧକ ବ୍ୟବସ୍ଥା ରୂପେ ବହୁ ପୋଲିସ୍ କର୍ମଚାରୀଙ୍କୁ ରାଜ୍ୟର ବିଭିନ୍ନ ଅଞ୍ଚଳରୁ ଆଣି ଭୁବନେଶ୍ୱରରେ ମୁତୟନ କରାଯାଇଥାଏ ଏବଂ ସେଥିପାଇଁ ମଧ୍ୟ ରାଜକୋଷରୁ ବହୁଅର୍ଥ ଅପବ୍ୟୟ ହୋଇଥାଏ । ପୁଣି ଏ ବର୍ଷଟି ନିର୍ବାଚନର ପୂର୍ବବର୍ଷ ହୋଇଥିବାରୁ ଅନ୍ୟାନ୍ୟ ବର୍ଷ ଅପେକ୍ଷା ଅଧିକ ବିକ୍ଷୋଭ ପ୍ରଦର୍ଶନ ହେଉଥାଏ । ବିଧାନସଭାର ବଜେଟ ଅଧିବେଶନ ହୋଇଥିବାରୁ ଏବଂ ପ୍ରାୟ ଦେଢ଼ମାସ ଧରି ବିଧାନସଭାର କାର୍ଯ୍ୟ ଚାଲୁଥିବାରୁ ବହୁଲୋକ ସମାଗମ ଯୋଗୁଁ ବଜାରରେ ଜିନିଷପତ୍ରର ଦରଦାମ ମଧ୍ୟ ବୃଦ୍ଧି ପାଇଥାଏ ।

## ''ବିଧାନସଭା ଶେଷଦିନ ଗଣ୍ଡଗୋଳ''

ବିଧାନସଭାର ବଜେଟ ଅଧିବେଶନରେ ରାଜ୍ୟର ବଜେଟ ଖର୍ଚ୍ଚ ଅଟକଳର ବିଭିନ୍ନଦିଗ ଆଲୋଚନା କରାଯାଏ । ସେଥିପାଇଁ ନିୟମ ଅନୁଯାୟୀ ମାତ୍ର ୧୪ଦିନ ସମୟ ଧାର୍ଯ୍ୟ ହୋଇଥିବାରୁ ସମସ୍ତ ବିଭାଗ ଗୁଡ଼ିକର ଆଲୋଚନା ସମ୍ଭବପର ହୁଏନାହିଁ । ତେଣୁ ଦୁଇପକ୍ଷ ସହ ପରାମର୍ଶ କରି ମୁଖ୍ୟ ବିଭାଗ ଗୁଡ଼ିକର ଆଲୋଚନା କରାଯାଏ । ଏଥର କୃଷି ବିଭାଗ ଏକ ମୁଖ୍ୟ ବିଭାଗ ହୋଇଥିଲେ ହେଁ ତାହା ବଜେଟ ମଧ୍ୟରେ ଆଲୋଚନା ହୋଇପାରି ନ ଥିବାରୁ ମୋ ପରାମର୍ଶ କ୍ରମେ ବିଧାନସଭାର ଶେଷଦିନ ତହିଁର ଆଲୋଚନା କରିବାପାଇଁ ସ୍ଥିର କରାଯାଇଥିଲା । ତେଣୁ ଦିନ ଧାର୍ଯ୍ୟ ନଥିବା ନାମରେ କୃଷି ବିଭାଗର ଆଲୋଚନା ପାଇଁ ଏକ ପ୍ରସ୍ତାବ ବିରୁଦ୍ଧ ଦଳର ସଚେତକଙ୍କଠାରୁ ଆସିବାରୁ ମୁଁ ତାହା ମୋର ସ୍ୱତନ୍ତ୍ର କ୍ଷମତାନୁଯାୟୀ ଗ୍ରହଣ କରି ଆଲୋଚନା ପାଇଁ ଅନୁମତି ଦେଲି । ସେଦିନ ବିଧାନସଭାର ଶେଷଦିନ ସେଦିନକୁ ଅନ୍ୟ କୌଣସି କାର୍ଯ୍ୟକ୍ରମ ଏପରିକି ପ୍ରଶ୍ନଘଣ୍ଟା ମଧ୍ୟ ନ ଥିବାରୁ ପୁରାଦିନ ଆଲୋଚନା ହେବାର ସ୍ଥିର ହେଲା । ସେଦିନ ସମସ୍ତେ ପ୍ରାୟ ଖୁସିଥିବାର ଦେଖାଯାଉଥିଲା । ଆଲୋଚନା ଭଲଭାବରେ ହେବ ଓ ସମସ୍ତେ କିଛି କହିବାର ସୁଯୋଗ ପାଇବେ । ତେଣୁ ସମୟ ବଢ଼ାଇ ସନ୍ଧ୍ୟା ବେଳକୁ ଆଲୋଚନା ଶେଷ ହେବ ଓ ସମସ୍ତେ ପରସ୍ପରଙ୍କଠାରୁ ବିଦାୟନେବେ । ଅପରାହ୍ନରେ ଅଧ୍ୟକ୍ଷ ଆସନରେ ଜଣେ ଅଭିଜ୍ଞ ସଭ୍ୟ ଶ୍ରୀଯୁକ୍ତ ଭାଗବତ ପ୍ରସାଦ ମହାନ୍ତିଙ୍କୁ ବସାଇ ମୁଁ ପ୍ରକୋଷ୍ଠକୁ ଚାଲିଆସିଲି । ଆସିଲାବେଳେ ମୁଁ କହି ଆସିଲି ଯେ, ଆଲୋଚନା ଶେଷ ହେଲେ ମୁଁ ପୁଣି ଗୃହକୁ ଆସିବି ଓ ସମସ୍ତଙ୍କୁ ଶୁଭକାମନା କରି ବିଦାୟନେବି । କିନ୍ତୁ ମୋର ଏ ସମସ୍ତ କଳ୍ପନା ଚୂରମାର ହୋଇଗଲା ଜଣେ କୁଚକ୍ରୀ ସଭ୍ୟଙ୍କ ପାଇଁ ସେ ସଭ୍ୟଜଣକ ହେଉଛନ୍ତି ଜନତା ଦଳର ଶ୍ରୀ ଶ୍ରୀକାନ୍ତ ଜେନା । ସେ ସବୁଦିନ କିଛି ଗଣ୍ଡଗୋଳ ଭିଆଇ ତାଙ୍କ ନାମର ପ୍ରଚାର ଚାହାନ୍ତି । ବିଧାନସଭାକୁ ଶାନ୍ତିପୂର୍ଣ୍ଣ ଭାବରେ ଚଳାଇ ନ ଦେବା ତାଙ୍କର ଧର୍ମ । ତେଣୁ ସେ ଶେଷ ମୁହୂର୍ତ୍ତରେ ଉକ୍ତ ଆଲୋଚନା ପ୍ରସ୍ତାବ ଉପରେ ଏକ ବିବାଦୀୟ ବିଷୟ ସଂଶୋଧନ ଆକାରରେ ଆଣିବାକୁ ଚାହିଁଲେ । ମୁଁ ସେଥିରେ ଅସମ୍ମତି ପ୍ରକାଶ କରି ସେ ତାଙ୍କ ବକ୍ତବ୍ୟ ଦେଲା ବେଳେ ଉକ୍ତ ବିଷୟ ଉଲ୍ଲେଖ କରିବେ ଓ ମୁଁ ବିଭାଗୀୟ ମନ୍ତ୍ରୀଙ୍କୁ ସେ ସଂପର୍କରେ ସରକାରୀ ଉତ୍ତର ଦେବାପାଇଁ କହିବି ବୋଲି ଜଣାଇଦେଲି । ଅଧ୍ୟକ୍ଷ ଅନୁମତି ନ ଦେଲେ କୌଣସି ବିଷୟ ଆଗତ ହୋଇ ପାରିବାର ବିଧିନାହିଁ ଏହା ତାଙ୍କୁ ଭଲଭାବରେ ଜଣାଇଥିଲେ ହେଁ ବାରମ୍ବାର ଗୃହରେ ଦୃଷ୍ଟି ଆକର୍ଷଣ ନାମରେ ଉକ୍ତ ବିଷୟଟି ଉଠାଇ ଚେୟାରମେନଙ୍କ ସଙ୍ଗେ ଘଣ୍ଟା ଘଣ୍ଟା ଧରି ଯୁକ୍ତିତର୍କ ଦ୍ୱାରା ଅଯଥା ସମୟ ନଷ୍ଟ କଲେ । ଚେୟାରମେନ ବାରମ୍ବାର ତାଙ୍କୁ ଅଧ୍ୟକ୍ଷଙ୍କ ଅନୁମତି ଆଣିବାକୁ ଅନୁରୋଧ କଲେ ମଧ୍ୟ ସେ କିଛି ନ ଶୁଣି ପାଟିତୁଣ୍ଡ କଲେ । ଶେଷରେ ନିଜ ଦଳର କିଛି ସଭ୍ୟଙ୍କ ସଙ୍ଗେ ବିଧାନସଭାର ମଧ୍ୟ ଭାଗକୁ ଆସି ଏପରି ଭାବରେ ପାଟିତୁଣ୍ଡ କଲେ ଯେ ବିଧାନସଭା ଏକ ସୁସ୍ଥ ବାତାବରଣ ମଧ୍ୟରେ ଚାଲିବା ଅସମ୍ଭବ ହୋଇପଡ଼ିଲା । ଏପରି ପରିସ୍ଥିତି ଉପୁଜିବାରୁ ଅଧ୍ୟକ୍ଷ ଆସନରେ ବସିଥିବା ଶ୍ରୀ ଭାଗବତ ପ୍ରସାଦ ମହାନ୍ତି ମୋ ଯିବା ପର୍ଯ୍ୟନ୍ତ ଅପେକ୍ଷା ନ କରି ଅଗତ୍ୟା ବିଧାନସଭାକୁ ଅନିର୍ଦ୍ଦିଷ୍ଟ କାଳପାଇଁ ମୁଲତବୀ କରିଦେଲେ । ବହୁସଭ୍ୟ ତାଙ୍କ ଅଞ୍ଚଳ ସଂପର୍କରେ କିଛି କହିପାରିଲେ ନାହିଁ ବା ବିଭାଗୀୟ ମନ୍ତ୍ରୀ ମଧ୍ୟ କିଛି କହିପାରିବାର ସୁଯୋଗ ପାଇଲେ ନାହିଁ ବିଧାନସଭା ଆରମ୍ଭର ୨ୟଦିନ ଯେପରି ଗଣ୍ଡଗୋଳ ହୋଇଥିଲା ଶେଷ ହେଲାଦିନ ମଧ୍ୟ ସେହିପରି ଭାବରେ ଗଣ୍ଡଗୋଳ ମଧ୍ୟରେ ସରିଲା । ମୁଁ ମଧ୍ୟ ସଭ୍ୟମାନଙ୍କୁ ତଥା ଗୃହରନେତା ମୁଖ୍ୟମନ୍ତ୍ରୀଙ୍କୁ ବା ବିରୁଦ୍ଧଦଳର ନେତାଙ୍କୁ ସହଯୋଗ ପାଇଁ ଧନ୍ୟବାଦ ଦେଇ ପାରିଲିନାହିଁ ଅଥବା ସେମାନେ ମଧ୍ୟ ବିଧାନସଭାର ସୁପରିଚାଳନା ପାଇଁ ଅଧ୍ୟକ୍ଷଙ୍କୁ ବଧେଇ ଜଣାଇ ପାରିଲେ ନାହିଁ ।

# "୧୯୮୮-୮୯ର ଅତିରିକ୍ତ ବଜେଟ୍"

ଏଥର ବିଧାନସଭାର ଅତିରିକ୍ତ ବଜେଟ ଅଧିବେଶନ ତା।୨୮-୦୯-୮୮ରୁ ଆରମ୍ଭ ହୋଇ ତା।୧୨-୧୦-୮୮ ପର୍ଯ୍ୟନ୍ତ ୧୫ଦିନ ମଧ୍ୟରୁ ମାତ୍ର ୧୦ଦିନ କାର୍ଯ୍ୟଦିବସ ଥିଲା । ଏହି ଅଧିବେଶନ ଅଳ୍ପଦିନ ପାଇଁ ହୋଇଥିଲେ ହେଁ ଏହା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ଥିଲା । କ୍ଷୁଦ୍ର ସର୍ପର ବିଷ ଉତ୍କଟ ପରି ବୈଠକ ଆରମ୍ଭ ହେବାର ଘଟଣାରୁ ଏହାର ସୂଚନା ମିଳୁଥିଲା । ପ୍ରଥମଦିନ ମୁଁ ଗୃହରେ ପ୍ରବେଶ କରି ସଭ୍ୟମାନଙ୍କର ଅଭିବାଦନ ଗ୍ରହଣ କଲାମାତ୍ରେ ସେଦିନ ମୋର ଜନ୍ମଦିନ ବୋଲି ମୁଖ୍ୟମନ୍ତ୍ରୀ ଜାଣିଥିବାରୁ ସେ ମୋର ଦୀର୍ଘଜୀବନ କାମନା କଲେ । ବିରୁଦ୍ଧଦଳର ନେତା ମଧ୍ୟ ଅନୁରୂପ ଶୁଭକାମନା କରି ମୋର କର୍ତ୍ତବ୍ୟ ନିଷ୍ଠାର ଭୂୟସୀ ପ୍ରଶଂସା କଲେ । ଏଥର ବିଧାନସଭା ବସିବାର କେତେଦିନ ପୂର୍ବରୁ ରାଜ୍ୟର ସରକାରୀ ଡ଼ାକ୍ତରମାନଙ୍କର ଯେଉଁ ଧର୍ମଘଟ ହୋଇଥିଲା ତାହା ବିଧାନସଭା ବସିବାର ପୂର୍ବ ରାତିରେ ସରକାରଙ୍କ ସହିତ ସମାଧାନ ହୋଇଯିବାରୁ ସେମାନେ ତାଙ୍କ ଧର୍ମଘଟ ପ୍ରତ୍ୟାହାର କରିନେଲେ । କିନ୍ତୁ ବିରୁଦ୍ଧଦଳର ସଭ୍ୟମାନେ ପୂର୍ବରୁ ସଜବାଜ ହୋଇ ସେ ସଂପର୍କରେ ଏକ ମୁଲତବୀ ପ୍ରସ୍ତାବର ନୋଟିସ ଦେଇଥିଲେ । ନିକଟରେ ଏକ ଗୁରୁତ୍ୱପୂର୍ଣ୍ଣ ଘଟଣା ଦ୍ୱାରା ଚିକିତ୍ସା କ୍ଷେତ୍ରରେ ଅବ୍ୟବସ୍ଥା ତଥା ଚିକିତ୍ସକମାନଙ୍କର ଅବହେଳା ଯୋଗୁଁ ରୋଗୀଙ୍କ ମୃତ୍ୟୁ ଘଟିବା ବିଷୟଟି ଅତ୍ୟନ୍ତ ଜରୁରୀ ହୋଇଥିବାରୁ ଏହା ମୁଲତବୀ ପ୍ରସ୍ତାବର ସମସ୍ତ ସର୍ତ୍ତ ପୂରଣ କରୁଥିଲା । ତଦନୁଯାୟୀ ବିରୁଦ୍ଧଦଳରୁ ଯେପରି ନୋଟିସ ଆସିଥିଲା ସେହିପରି ସରକାରୀ ଦଳରୁ ମଧ୍ୟ ଆଲୋଚନା ପାଇଁ ଦୃଷ୍ଟି ଆକର୍ଷଣ କାରୀ ନୋଟିସ ମାନ ଆସିଥିଲା । ମୁଁ ମଧ୍ୟ ଆଗରୁ ଏ ସଂପର୍କରେ ମୁଲତବୀ ପ୍ରସ୍ତାବ ଆସିବାର ଅନୁମାନ କରୁଥିଲି ଏବଂ ଏପରି ପ୍ରସ୍ତାବ ଆସିଲେ ତାହା ଆଲୋଚନା ପାଇଁ ଗ୍ରହଣ କରିବାର ମନସ୍ଥ ମଧ୍ୟ କରିଥିଲି । ମାତ୍ର ସେଦିନ ସକାଳ ଆଞ୍ଚଳିକ ସଂବାଦରେ ଡ଼ାକ୍ତରମାନଙ୍କର ଧର୍ମଘଟ ପ୍ରତ୍ୟାହୃତ ହୋଇଥିବାର ଶୁଣିଲା ମାତ୍ରେ ନିଶ୍ଚିନ୍ତ ରହିଲି । ତେଣୁ ସେଦିନ ବିଧାନସଭାରେ ଅନ୍ୟ ଦୁଇଟି ମୁଲତବୀ ପ୍ରସ୍ତାବ ସଂପର୍କରେ ବିବୃତ୍ତିପାଇ ତୁମୁଳ ପାଟିତୁଣ୍ଡ ଆରମ୍ଭ କରିଦେଲେ । ସେମାନଙ୍କୁ ବି ପ୍ରଶ୍ନ ପଚାରିବାକୁ ଅନୁରୋଧ କଲାରୁ କିଛି ହେଲେ ଶୁଣିଲେ ନାହିଁ । ଏଭଳି ଗଣ୍ଡଗୋଳରେ ମୁଁ କେବେହେଲେ ଦବି ନଯାଇ ମୋ କର୍ତ୍ତବ୍ୟରେ ମୁଁ ଆଗେଇଚାଲେ । ସୁତରାଂ ମନ୍ତ୍ରୀମାନଙ୍କ ବିବୃତ୍ତି ପରେ ବିରୁଦ୍ଧଦଳର ସଭ୍ୟମାନେ କିଛି ନ ଶୁଣିଲାରୁ ସରକାରୀ ଦଳରୁ ସଂପୃକ୍ତ ମୁଲତବୀ ପ୍ରସ୍ତାବ ଗୁଡ଼ିକ ଉପରେ ଦୃଷ୍ଟି ଆକର୍ଷଣକାରୀ ନୋଟିସ ଦେଇଥିବା ସଭ୍ୟମାନଙ୍କୁ ଡ଼ାକିବାରୁ ସେମାନେ ବି ସେହି ଗଣ୍ଡଗୋଳ ମଧ୍ୟରେ ପ୍ରଶ୍ନ ପଚାରିଲେ ଓ ମନ୍ତ୍ରୀମାନେ ମଧ୍ୟ ସେ ସବୁର ଉତ୍ତର ଦେଲେ । ଏହାପରେ ଦୁଇଟିଯାକ ମୁଲତବୀ ପ୍ରସ୍ତାବ ନାକଚ କରିଦେଲି । ବିରୁଦ୍ଧଦଳର ସଭ୍ୟମାନଙ୍କୁ ପରବର୍ତ୍ତୀ ଦିନ ମୁଲତବୀ ପ୍ରସ୍ତାବର ଆଲୋଚନା ପାଇଁ ଅନୁମତି ଦିଆଯିବ ବୋଲି ଯେତେ ବୁଝାଇ କହିଲେ ହେଁ ସେମାନେ କିଛି ନ ଶୁଣି ଗଣ୍ଡଗୋଳ କରିବାକୁ ଲାଗିଲେ । ଏହାପରେ ସ୍ୱାସ୍ଥ୍ୟମନ୍ତ୍ରୀ ନିଜ ପକ୍ଷରୁ ଡ଼ାକ୍ତରମାନଙ୍କ ଧର୍ମଘଟ ସଂପର୍କରେ ଏକ ବିବୃତ୍ତି ଦେବାରୁ ମୁଁ ମୋର ସ୍ୱତନ୍ତ୍ର କ୍ଷମତା ବଳରେ ସେ ସଂପର୍କରେ ଆଲୋଚନା ପାଇଁ ଅନୁରୋଧ କଲାପରେ ମଧ୍ୟ ସେମାନେ ସେହିପରି ଗଣ୍ଡଗୋଳ କଲେ ଓ ଆଉ ଗୋଟିଏ ମୁଲତବୀ ପ୍ରସ୍ତାବ ଗ୍ରହଣ କରିବାକୁ ଦାବୀ କଲେ । କିନ୍ତୁ ମୁଁ ନିୟମ ବାହାରେ କିଛି କରିବାପାଇଁ ରାଜି ହେଲି ନାହିଁ । ମୁଁ କେବେହେଲେ କାହାରିକୁ ସନ୍ତୁଷ୍ଟ କରିବା ପାଇଁ ନିୟମ ଭାଙ୍ଗି କୌଣସି କାର୍ଯ୍ୟ କରେନାହିଁ । ଥରେ ବିଧିବିଧାନ ଭଙ୍ଗକଲେ ସମସ୍ତେ ଏହାର ସୁଯୋଗ ନେବେ ଓ ଏହାଦ୍ୱାରା ପରିଚାଳନା ଗତ ତ୍ରୁଟି ବିଚ୍ୟୁତି ମଧ୍ୟ ଘଟିବ । ସୁତରାଂ ଏଥିପ୍ରତି ମୁଁ ସଦାବେଳେ ସତର୍କ ରହିଥାଏ । ସେଦିନ ଏହିପରି ଗଣ୍ଡଗୋଳ ମଧ୍ୟରେ ଦିନ ଗୋଟାଏ ପର୍ଯ୍ୟନ୍ତ ବିଧାନସଭା ଚଳାଇ ମୁଲତବୀ ଘୋଷଣା କଲି । ଏହାପରେ ବିଧାନସଭାର ବିଜିନେସ୍ ପରାମର୍ଶଦାତା କମିଟି ଡ଼କାଇ ସେଠାରେ ସମସ୍ତଙ୍କୁ ବୁଝାଇ ଅପରାହ୍ନରେ ଏକ ଶାସନ ଜରିଆରେ ଉକ୍ତ ଡ଼ାକ୍ତରଙ୍କ ଧର୍ମଘଟ ସଂକ୍ରାନ୍ତରେ ଆଲୋଚନା ପାଇଁ ସମସ୍ତଙ୍କୁ ଏକମତ କରାଇଲି । ଅପରାହ୍ନ ବୈଠକ ଆରମ୍ଭ ହେଲାମାତ୍ରେ ଉଭୟ ସଭ୍ୟଙ୍କ ଉପସ୍ଥିତିରେ ହୋଇଥିବା ନିଷ୍ପତ୍ତିର ଘୋଷଣାପରେ ବିଧାନସଭା ଶାନ୍ତିପୂର୍ଣ୍ଣ ଭାବରେ ଚାଲିଲା ଏବଂ ସେ ଦିନର ନିର୍ଦ୍ଧାରିତ ବିଷୟଗୁଡ଼ିକ ଗୋଟି ଗୋଟି କରି ନିଆଗଲା । ପୁଣି ୪ଟା ବେଳକୁ ସର୍ବସମ୍ମତ ନିଷ୍ପତ୍ତି ଅନୁଯାୟୀ ଡ଼ାକ୍ତରମାନଙ୍କର ଧର୍ମଘଟ ସଂକ୍ରାନ୍ତରେ ଆସିଥିବା ପ୍ରସ୍ତାବଟିର ଦୁଇଘଣ୍ଟା ଆଲୋଚନା ଚାଲି ସେ ଦିନର ବୈଠକ ଶେଷ ହେଲା ।

ଏହାପରେ ଏହି ବିଧାନସଭା ଅଧିବେଶନ ଅନ୍ୟ ୯ଦିନ ସେଭଳି କିଛି ଗଣ୍ଡଗୋଳ ହୋଇ ନଥିଲା । ଅବଶ୍ୟ ବିରୁଦ୍ଧଦଳ ତରଫରୁ ପ୍ରତିଦିନ ନାନା ଆଳରେ କିଛି ନା କିଛି ଗଣ୍ଡଗୋଳ ଭିଆଇ ରାଜନୈତିକ ଫାଇଦା ଉଠାଇବାର ପ୍ରଚେଷ୍ଟା ଚାଲିଥାଏ, ମାତ୍ର କୌଶଳକ୍ରମେ ସମସ୍ତଙ୍କୁ ସନ୍ତୁଷ୍ଟକରି ତାଙ୍କର ସେ ଉଦ୍ଦେଶ୍ୟ ପୂରଣର ସୁଯୋଗ ମୁଁ ଦେଉ ନଥାଏ । ବିଧାନସଭା ଶେଷ ବେଳକୁ ସ୍ୱାସ୍ଥ୍ୟ ବିଭାଗ ଭଳି ରାଜ୍ୟର ଅନ୍ୟ ସମସ୍ତ ସେବାସଂସ୍ଥା ଗୁଡ଼ିକରେ ଧର୍ମଘଟ କରି ଭବିଷ୍ୟତରେ ଯେପରି ସାଧାରଣଙ୍କ କ୍ଷତି ଘଟାଇ ପାରିବେ ନାହିଁ । ତହିଁର ପ୍ରତିକାର ସ୍ୱରୂପ ଏକ ଆଇନ ଆଗତ କଲେ । ଏଭଳି ଆଇନ ଆଗତ କରିବାକୁ ନ ଦେବା ପାଇଁ ବିରୁଦ୍ଧଦଳ ପକ୍ଷରୁ ସବୁପ୍ରକାର ଉଦ୍ୟମ କରି ବିଫଳ ହେଲାରୁ ଉକ୍ତ ଚିଠା ଆଇନ ଉପରେ ବହୁ ସଂଶୋଧନ ପ୍ରସ୍ତାବ ଦେଲେ । ଉକ୍ତ ଆଇନଟିର ଆଲୋଚନା ପାଇଁ ଶେଷ ଦିନଟି ଗୋଟିଏ ମାତ୍ର ଦିନଥାଏ । ଆଗରୁ ବିଧାନସଭାର ଅବଧି ନ ବଢ଼ାଇବାର ଠିକଣା କରଯାଇଥାଏ । ବିରୁଦ୍ଧଦଳ ତରଫରୁ ସଂଶୋଧନ ପ୍ରସ୍ତାବ ଗୁଡ଼ିକର

ଆଲୋଚନା ପାଇଁ ଜିଦ୍ ଧରି ବସିଲେ ତାହା ମଧ୍ୟ ବିଧି ସମ୍ମତ । ଏଭଳି ଏକ ଦଣ୍ଡ ବିଧାନ ରହିଥିବା ନୂତନ ଆଇନଟିର ପୂର୍ଣ୍ଣ ଆଲୋଚନା ନ କରି ଗ୍ରହଣ କରିନେବା ସପକ୍ଷରେ ମୁଁ ମଧ୍ୟ ନ ଥିଲି । ସେଥିପାଇଁ ଗୋଟିଏ ଦିନର ସମୟ ଲାଗିଲେ ମଧ୍ୟ ସମସ୍ତ ସଭ୍ୟ ଗୃହରେ ରହି ପୂରା ଆଲୋଚନା ପରେ ଆଇନଟିକୁ ଗ୍ରହଣ କରିନେବାର ନିଷ୍ପତ୍ତି ଘୋଷଣା କଲି । ଏହା ପୂର୍ବ ବିଧାନସଭାର ଅନ୍ୟ କେତେକ ବୈଠକର ଶେଷଦିନ ସଭ୍ୟମାନଙ୍କୁ ସେମାନଙ୍କର ସହଯୋଗ ପାଇଁ ବଧେଇ ଜଣାଇ ହସଖୁସି ମଧ୍ୟରେ ଅଧିବେଶନ ଶେଷ କରିପାରି ନଥିବାରୁ ଏ ଥରକ ସେ ସବୁ ଔପଚାରିକ ପାଳନ କରିବାର ଯେଉଁ ଆଶା ରଖିଥିଲି ତାହା ମଧ୍ୟ ହୋଇପାରିଲା ନାହିଁ । ରାତି ୧୦ଟା ପର୍ଯ୍ୟନ୍ତ ବିଧାନସଭା ଶେଷ ନ ହେବାରୁ ମୋ ସ୍ୱାସ୍ଥ୍ୟ ଦୃଷ୍ଟିରୁ ମୋତେ ଚାଲିଯିବାକୁ ପଡ଼ିଲା । ବିଧାନସଭାର ଉପାଧ୍ୟକ୍ଷ ତଥା ଅନ୍ୟ ପେନାଲ ଚେୟାରମେନ୍ ମାନଙ୍କୁ ମୋ ଦାୟିତ୍ୱ ଅର୍ପଣ କରି ମୋତେ ବିଦାୟ ନେବାକୁ ହେଲା । ସେଦିନ ରାତି ପ୍ରାୟ ଗୋଟାଏ ପର୍ଯ୍ୟନ୍ତ ଆଲୋଚନା ଚାଲି ପ୍ରସ୍ତାବ ଗୃହୀତ ହେଲା ବେଳକୁ ବିରୁଦ୍ଧ ଦଳର ସଭ୍ୟମାନେ ପ୍ରତିବାଦ ସ୍ୱରୂପ ଗୃହଛାଡ଼ି ଚାଲିଗଲେ । ଆଇନଟି ଗୃହୀତ ହେଲାପରେ ଅତିରିକ୍ତ ବଜେଟ୍ ଅଧିବେଶନ ସମାପ୍ତ ହେଲା । ମୋ ଅନୁପସ୍ଥିତିରେ ଉପାଧକ୍ଷ ଏଥର ଅଧିବେଶନ ସମାପ୍ତି ଘୋଷଣା କଲେ ।

## "ମୋର ପୁଣି ଚକ୍ଷୁ ଅସ୍ତ୍ରୋପଚାର"

ଚଳିତ ବର୍ଷ ମୋର ୨ୟ ଥର ପାଇଁ ଦୁଇ ଚକ୍ଷୁର ଅସ୍ତ୍ରୋପଚାର ବ୍ୟକ୍ତିଗତ ଜୀବନରେ ଏକ ସଫଳତା ବୋଲି ମନେକରେ । ଏଥିପୂର୍ବରୁ ମୋର ଦୁଇଟି ଯାକ ଚକ୍ଷୁରେ ମୋତିଆବିନ୍ଦୁ ହୋଇ ଦେଖିବା ଓ ପଢ଼ାପଢ଼ିରେ ଅସୁବିଧା ହେବାରୁ ଦିଲ୍ଲୀର ବିଶିଷ୍ଟ ଓଡ଼ିଆ ଚକ୍ଷୁ ଚିକିତ୍ସକ ଡ଼ାକ୍ତର ବିଜୟାନନ୍ଦ ପଟ୍ଟନାୟକଙ୍କଠାରେ ପ୍ରାୟ ବର୍ଷେ ପୂର୍ବେ ଦୁଇଟି ଯାକ ଚକ୍ଷୁର ଅସ୍ତ୍ରୋପଚାର କରାଇଥିଲି । ସେଥିପାଇଁ ଦୂରଦୃଷ୍ଟି ଅର୍ଥାତ୍ ଚଲାବୁଲା କରିବା ପାଇଁ ଓ ନିକଟ ଦୃଷ୍ଟି ପଢ଼ାପଢ଼ି ପାଇଁ ଦୁଇଟି ବିଭିନ୍ନ ଚଷମା ବ୍ୟବହାର କରିବାକୁ ପଡୁଥିଲା । ବିନା ଚଷମାରେ ପଢ଼ିବା ତ ଦୂରର କଥା ଚାଲିବା ମଧ୍ୟ ସମ୍ଭବପର ନ ଥିଲା । ବିଶେଷ କରି ବିଧାନସଭା କାର୍ଯ୍ୟ ପରିଚାଳନା କଲାବେଳେ ପ୍ରଶ୍ନୋତ୍ତର ଓ ଅନ୍ୟ ଆଲୋଚନା ସମୟରେ ତାଲିକା ଦେଖି ଜଣେ ସଭ୍ୟଙ୍କୁ ଡ଼ାକିବା ପୁଣି ଅନ୍ୟ କିଏ କ'ଣ କହୁଛନ୍ତି ତାହା ଜାଣିବା ପାଇଁ ସଙ୍ଗେ ସଙ୍ଗେ ଦୁଇଟି ଚଷମା ବ୍ୟବହାର କରିବାକୁ ପଡୁଥିବାରୁ ବହୁ ଅସୁବିଧାର ସମ୍ମୁଖୀନ ହେଉଥିଲି । ସବୁ ସମୟରେ ମୋତେ ଦୁଇଟିଯାକ ଚଷମା ଧରି ଯିବାକୁ ପଡୁଥିଲା । ଯଦି ଗୋଟିଏ ଚଷମା ହଜିଯାଏ ତେବେ ସବୁକାମ ବନ୍ଦ ହୋଇଯାଉଥିଲା । ଥରେ କଟକରେ ପ୍ରସିଦ୍ଧ ଚକ୍ଷୁ ଚିକିତ୍ସକ ଡ଼ାକ୍ତର ଚଣ୍ଡି ଚରଣ ଦାସଙ୍କୁ ସାକ୍ଷାତ କରି ମୋର ଅସୁବିଧା କଥା କହିଲାରୁ ସେ ମୋର ଚକ୍ଷୁ ପରୀକ୍ଷା କରି ଅସ୍ତ୍ରୋପଚାର କରି ସ୍ଥାୟୀ ଭାବରେ ଦୁଇଟି ଯାକ ଚକ୍ଷୁରେ ଲେନ୍ସ ଲଗାଇବାକୁ ପରାମର୍ଶ ଦେଲେ । ତଦ୍ୱାରା ଚଲାବୁଲା ପାଇଁ ମୋତେ ଚଷମା ବ୍ୟବହାର କରିବାକୁ ପଡ଼ିବ ନାହିଁ, ପଢ଼ାପଢ଼ି ବେଳେ କେବଳ ଚାଳିଶିଆ ଚଷମା ବ୍ୟବହାର କରିବାକୁ ପଡ଼ିବ ବୋଲି କହିଲେ । ଉକ୍ତ ବିଖ୍ୟାତ ଚକ୍ଷୁ ଚିକିତ୍ସକଙ୍କଠାରୁ ଏ ଚିକିତ୍ସା ବ୍ୟବସ୍ଥା ସେ ନିଜେ ଶିକ୍ଷାଲାଭ କରିଥିବା ବିଷୟ ଜଣାଇ ତାଙ୍କ ସହିତ ଯୋଗଯୋଗ କରାଇ ଦେବା କଥା ମଧ୍ୟ ସେ ମୋତେ କହିଲେ । କେତେ ମାସପରେ ଭୁବନେଶ୍ୱରରେ ଚକ୍ଷୁ ଚିକିତ୍ସକ ସମ୍ମିଳନୀ ହେବାର ଥାଏ ଏବଂ ଉକ୍ତ ସମ୍ମିଳନୀକୁ ସେହି ବିଖ୍ୟାତ ଚକ୍ଷୁ ଚିକିତ୍ସକ ଡ଼ାକ୍ତର ହରଜିତ୍ ସିଂ ମଧ୍ୟ ଆସିବାର କାର୍ଯ୍ୟକ୍ରମ ଅଛି ବୋଲି ମଧ୍ୟ ସେତେବେଳେ ଜାଣିବାକୁ ପାଇଲି । ଡ଼ାକ୍ତର ଦାସ ଡ଼ାକ୍ତର ସିଂଙ୍କୁ ମୋ ବିଷୟ ଜଣାଇ ମୋତେ ତାଙ୍କ ସହିତ ଯୋଗଯୋଗ କରାଇ ଦେବାର ପ୍ରତିଶ୍ରୁତି ମଧ୍ୟ ଦେଲେ । ଏହାପରେ ଓଡ଼ିଶାର ରାଜ୍ୟପାଳ ଡକ୍ଟର ବିଶ୍ୱନାଥ ପାଣ୍ଡେଙ୍କ ସହିତ ସାକ୍ଷାତ ମଧ୍ୟ ତାଙ୍କଠାରେ ଲେନ୍ସ ଲଗାଇ ନେବାକୁ ପରାମର୍ଶଦେଲେ । ସେଥିପାଇଁ ଆସନ୍ତା ସେପ୍ଟେମ୍ବର ମାସକୁ ଉକ୍ତ ଡ଼ାକ୍ତର ଭୁବନେଶ୍ୱର ଆସିଲା ବେଳେ ତାଙ୍କୁ ଦେଖିବାକୁ ଆସିଲେ ମୋତେ ରାଜଭବନରେ ତାଙ୍କ ସହିତ ଦେଖା କରାଇ ଦେବାକୁ କହିଲାରୁ ମୁଁ ବିଶେଷ ଆସ୍ୱସ୍ତ ଲାଭକଲି ଓ ସେହିଦିନକୁ ଅପେକ୍ଷା କରି ରହିଲି । ଠିକ୍ ସେହି ସମୟରେ ଅଷ୍ଟ୍ରେଲିଆରେ ରାଜ୍ୟଗୋଷ୍ଠୀ ସଂସଦୀୟ ଅଧକ୍ଷମାନଙ୍କର ସମ୍ମିଳନୀ ପଡୁଥିବାରୁ ମୁଁ ଅଷ୍ଟ୍ରେଲିଆ କାର୍ଯ୍ୟକ୍ରମ ବଦଳରେ ଭୁବନେଶ୍ୱରରେ ରହିଲି । ପୃଥିବୀର ଏକ ମହାଦେଶ ଦେଖିବା ସଙ୍ଗେ ସଙ୍ଗେ ସେହି ଉପଲକ୍ଷେ ଅନ୍ୟଦେଶ ପରିଦର୍ଶନରୁ ନିଜକୁ ବଞ୍ଚିତ କଲି କେବଳ ମୋର ଚକ୍ଷୁର ଅସ୍ତ୍ରୋପଚାର ପାଇଁ । ସେଥିପାଇଁ ଅଷ୍ଟ୍ରେଲିଆ ସମ୍ମଳନୀରେ ମୋ ବଦଳରେ ବିଧାନସଭାର ଉପାଧକ୍ଷ ଶ୍ରୀ ଚିନ୍ତାମଣି ଦ୍ୟାନ ସାମନ୍ତରାୟଙ୍କୁ ଯୋଗ ଦେବାର ସୁଯୋଗ ଦେଲି ।

ସେହି ବର୍ଷର ସେପ୍ଟେମ୍ବର ମାସ ବେଳକୁ ଭୁବନେଶ୍ୱରରେ ଯେଉଁ ଚକ୍ଷୁ ଚିକିତ୍ସକ ସମ୍ମିଳନୀ ହେଲା ସେଥିରେ ଯୋଗ ଦେବା ପାଇଁ ଉକ୍ତ ଡ଼ାକ୍ତର ଆସିଲେ । ତାଙ୍କ ସହିତ ରାଜଭବନରେ ସାକ୍ଷାତ କରିବାର ସୁଯୋଗ ବି ମୋତେ ମିଳିଲା । ମୋର ଚକ୍ଷୁ ପରୀକ୍ଷା କରି ଚିକିତ୍ସାପାଇଁ ଅମୃତସର ଯିବାକୁ କହିବା ସଙ୍ଗେ ସଙ୍ଗେ ଆଗରୁ ଦିଲ୍ଲୀର ଓଡ଼ିଆ ଚକ୍ଷୁ ଚିକିତ୍ସକ ଡ଼ାକ୍ତର ବିଜୟାନନ୍ଦ ପଟ୍ଟନାୟକଙ୍କଠାରୁ ମୋ ଚକ୍ଷୁରେ ରେଟିନା ସଂପର୍କରେ ଏକ ପରୀକ୍ଷା ରିପୋର୍ଟ ମଧ୍ୟ ନେଇଯିବାକୁ କହିଲେ । ଡ଼ାକ୍ତର ପଟ୍ଟନାୟକ ମଧ୍ୟ ସେହି ସମ୍ମିଳନୀକୁ ଆସିଥିଲେ । ତାଙ୍କୁ ସାକ୍ଷାତ କରି କହିଲାରୁ ସବୁ ବିଷୟ ବେଶ ସୁବିଧାରେ ହୋଇଗଲା । ଡ଼ାକ୍ତର ହରଜିତ ସିଂଙ୍କ ସହିତ କଥା ହୋଇ ଡ଼ିସେମ୍ବର ମାସ ବେଳକୁ ଯିବାର ସ୍ଥିର ହେଲା ଏବଂ ନିର୍ଦ୍ଦିଷ୍ଟ ଦିନ

ତାଙ୍କୁ ପୂର୍ବରୁ ଜଣାଇ ଯିବାକୁ କହିଲେ ।

ସେହି ବର୍ଷ ଡ଼ିସେମ୍ବର ପ୍ରଥମ ସପ୍ତାହରେ ଯିବାର ସ୍ଥିର କରି ଡ଼ାକ୍ତରଙ୍କ ସହିତ ଫୋନ ଯୋଗେ ଯୋଗାଯୋଗ କଲାରୁ ତା-୦୫-୧୨-୯୦ରେ ଅମୃତସରଠାରେ ତାଙ୍କୁ ଦେଖା କରିବାକୁ କହିଲେ । ସେ ସମୟରେ ପଞ୍ଜାବରେ ଆତଙ୍କବାଦୀଙ୍କ ହିଂସାତ୍ମକ କାର୍ଯ୍ୟ ବରାବର ଚାଲିଥାଏ, ବିଶେଷକରି ଅମୃତସର ଜିଲ୍ଲା ଓ ସହର ପାକିସ୍ଥାନ ସୀମାକୁ ଲାଗିଥିବା ଯୋଗୁଁ ଅନେକ ନିରୀହ ଲୋକେ ଅକାରଣରେ ପ୍ରାଣ ହରାଇଥିଲେ । ତେଣୁ ସେ ସମୟରେ ମୋତେ ନ ଯିବାପାଇଁ ଅନେକେ ପରାମର୍ଶ ଦେଲେ ହେଁ ଏଭଳି ସୁଯୋଗ ହରାଇବାକୁ ମୁଁ ରାଜି ହେଲିନାହିଁ । ମୁଁ ବିଧାନସଭାର ଅଧକ୍ଷ ଥିବାରୁ ଆର୍ଥିକ ସହାୟତା ଠାରୁ ଆରମ୍ଭକରି ଅନ୍ୟାନ୍ୟ ବହୁ ସୁବିଧା ସୁଯୋଗ ପାଇବା ପାଇଁ ମୁଁ ହକଦାର । ପରେ ଅବଶ୍ୟ ରାଜନୈତିକ ପରିସ୍ଥିତି ବଦଳି ଗଲେ କାହାର ଭବିଷ୍ୟତ କ'ଣ ହେବ କହିହେବ ନାହିଁ । ଏ ସମସ୍ତ ବିଷୟ ବିଚାରକୁ ନେଇ ଭଗବାନଙ୍କ ଉପରେ ସଂପୂର୍ଣ୍ଣ ଆସ୍ଥା ରଖି ଅମୃତସର ଯିବାର ସ୍ଥିରକଲି । ଡ଼ିସେମ୍ବର ୪ ତାରିଖ ଦିନ ଦିଲ୍ଲୀଯାଇ ସେଠାରୁ ତହିଁ ପରଦିନ ସକାଳେ ବିମାନ ଯୋଗେ ଅମୃତସର ଯିବାର କାର୍ଯ୍ୟକ୍ରମ ରଖାଗଲା ଓ ତଦନୁଯାୟୀ ପଞ୍ଜାବ ସରକାରଙ୍କୁ ମୋର ସେଠାରେ ଗୋଟିଏ ସପ୍ତାହର ରହଣୀ ସହ ଯାନବାହନ ଓ ନିରାପତ୍ତା ପାଇଁ ଆବଶ୍ୟକ ବ୍ୟବସ୍ଥା କରିବାକୁ ଅନୁରୋଧ କରାଗଲା । ମୋ ସଙ୍ଗରେ ମୋର ପ୍ରାଇଭେଟ୍ ସେକ୍ରେଟେରୀ, ଜଣେ ଅର୍ଦ୍ଦଲୀ ଓ ଭୁବନେଶ୍ୱର କେପିଟାଲ ହାସପାତାଳର ଜଣେ ଚକ୍ଷୁ ବିଶେଷଜ୍ଞ ମଧ୍ୟ ଯିବାର ଠିକ ହେଲା । ପୂର୍ବଥର ଦିଲ୍ଲୀରେ ଅପରେସନ ବେଳେ ମୋ ସଙ୍ଗରେ ମୋ ସ୍ତ୍ରୀ ମଧ୍ୟ ଯାଇଥିଲେ ମାତ୍ର ଏଥର ମୁଁ ଯିବାପାଇଁ ମନା କଲି । ଯିବା ପର୍ଯ୍ୟନ୍ତ ମୋତେ ନ ଯିବାପାଇଁ ପ୍ରଭାବିତ କରିବାକୁ ସମସ୍ତେ ଚେଷ୍ଟା କରୁଥାଆନ୍ତି । ଭୁବନେଶ୍ୱରର ଯେଉଁ ଚକ୍ଷୁରୋଗ ବିଶେଷଜ୍ଞ ଡ଼ାକ୍ତର ମୋ ସହିତ ଯିବାପାଇଁ ଆଗ୍ରହ ପ୍ରକାଶ କରି କହିଥିଲେ ଓ ସେଥିପାଇଁ ସରକାରୀ ଅନୁମତି, ଯିବା ଆସିବାର ସମସ୍ତ ଖର୍ଚ୍ଚ ମଞ୍ଜୁର ହୋଇଥିଲା ସେ ଡ଼ାକ୍ତର ଶେଷରେ ବିଭିନ୍ନ ଆଳ ଦେଖାଇ ଯିବାପାଇଁ ମନା କରିଦେଲେ । ମୋ ସ୍ତ୍ରୀ ମଧ୍ୟ ନ ଯିବାପାଇଁ ପ୍ରବର୍ତ୍ତାଇଥିଲେ ମାତ୍ର ମୁଁ ସାହସର ସହିତ ବାହାରି ପଡ଼ିଲି । ମୋର ପ୍ରାଇଭେଟ୍ ସେକ୍ରେଟେରୀ ଓ ଅର୍ଦ୍ଦଲୀ ଇଚ୍ଛା ନ ଥିଲେ ମଧ୍ୟ ମୁଁ ଯାଉଥିବାରୁ ମନା କରି ପାରିଲିନାହିଁ । ସେତେବେଳକୁ ଅମୃତସରରେ ଭୀଷଣ ଶୀତ ପଡ଼ିଲାଣି । ଆମେ ଦିଲ୍ଲୀ ପହଞ୍ଚିବାର ପୂର୍ବଦିନ ଅମୃତସରର ତାପମାତ୍ରା ଜିରୋ ଡ଼ିଗ୍ରୀରୁ କମ୍ ଥିବାର ଶୁଣି କିଛି ଶୀତ ଲୁଗା ମଧ୍ୟ କିଣିଲୁଁ । ମୋ ଅର୍ଦ୍ଦଲୀ ଆମେ ପହଞ୍ଚିବା ପୂର୍ବରୁ ଟ୍ରେନ୍ ଯୋଗେ ଦିଲ୍ଲୀରେ ଆଗ ପହଞ୍ଚି ସାରିଥିଲା । ତା୫ରିଖ ସକାଳେ ଆମେ ତିନିଜଣ ବିମାନ ଯୋଗେ ଅମୃତସର ଯାତ୍ରା କଲୁଁ ଏବଂ ଯିବା ପୂର୍ବରୁ ଟେଲିଫୋନ୍ ଯୋଗେ ଉକ୍ତ ଡ଼ାକ୍ତରଙ୍କୁ ଆମ ଯିବା ଖବର ଜଣାଇ ଦେଇଥିଲି । ଆକାଶ ପଥରେ ଦୀଲ୍ଲିରୁ ଅମୃତସର ମାତ୍ର ୫୦ ମିନିଟର ଯାତ୍ରା । ଆମେ ଅମୃତସର ବିମାନ ବନ୍ଦରରେ ଅବତରଣ କଲାମାତ୍ରେ ସେଠାକାର ଜିଲ୍ଲାପାଳଙ୍କ ପ୍ରତିନିଧି ପ୍ରଟୋକଲ ଅଫିସର ଓ ପୋଲିସ ଅଫିସରମାନେ ମୋତେ ପାଛୋଟି ନେଇ ସେଠାକାର ଭି.ଆଇ.ପି. ପ୍ରତୀକ୍ଷାଳୟରେ ଅଳ୍ପସମୟ ବସାଇ ପରେ ସରକାରୀ କାରରେ ନେଇ ଅତିଥିଶାଳାରେ ଅବସ୍ଥାନ କରାଇଲେ । ମୋ ସଙ୍ଗେ ସଙ୍ଗେ ପୋଲିସର ଏକ ନିରାପତ୍ତା ଗାଡ଼ି ମଧ୍ୟ ସେଠାକୁ ଗଲା । ଆମେ ସେଠାରେ ପହଞ୍ଚି ହରଜିତ ସିଂଙ୍କ ଚିକିତ୍ସାଳୟକୁ ଜଣାଇବା ମାତ୍ରେ ସେ ମଧ୍ୟାହ୍ନ ଭୋଜନ ନ କରି ତୁରନ୍ତ ସେଠାକୁ ଯିବାକୁ କହିଲେ । ତେଣୁ ଆମେ ସେଠାରୁ ଫେରି ମଧ୍ୟାହ୍ନ ଭୋଜନ କରିବାର ସ୍ଥିର କରି ଅବିଳମ୍ବେ ତାଙ୍କ ଚିକିତ୍ସାଳୟରେ ଯାଇ ପହୁଁଚିଲୁ । ଆମ ସଙ୍ଗରେ ଗାଡ଼ିରେ ନିରାପତ୍ତା ପାଇଁ ଜଣେ ପୋଲିସ୍ ଅଫିସର ଓ ଆମ ପଛରେ ଅନ୍ୟ ଗୋଟିଏ ଗାଡ଼ିରେ ନିରାପତ୍ତା ପୋଲିସ ମଧ୍ୟ ଗଲେ । ସେତେବେଳକୁ ଗୋଟାଏ ବାଜିଲାଣି ତେଣୁ ଚିକିତ୍ସାଳୟର କାମ ଶେଷ ହୋଇଯାଇ ଥିବାରୁ କେବଳ ତାଙ୍କର କର୍ମଚାରୀ ବ୍ୟତୀତ ଅନ୍ୟ କେହି ଲୋକ ନ ଥିଲେ । କେବଳ ମୋତେ ପରୀକ୍ଷା କରିବା ପାଇଁ ସମସ୍ତେ ଅପେକ୍ଷା କରିଥିବା ପରି ମୋର ମନେ ହେଲା । ପ୍ରଥମେ ଡ଼ାକ୍ତର ହରଜିତ ସିଂ ମୋତେ ପରୀକ୍ଷା କଲେ ଓ ତତ୍ପରେ ତାଙ୍କର ଜଣେ କର୍ମଚାରୀ ମୋତେ ସେଠାକାର ବିଭିନ୍ନ କୋଠରୀକୁ ନେଇଗଲେ । ଉକ୍ତ କୋଠରୀ ମାନଙ୍କରେ ବସିଥିବା ବିଭିନ୍ନ ବିଷୟରେ ବିଶେଷଜ୍ଞମାନେ ଆଖି ପରୀକ୍ଷା କରି ଫଳାଫଳ ରେକର୍ଡ଼ କଲେ । ଏହିପରି ୬/୭ଟି ସ୍ଥାନରେ ମୋର ଚକ୍ଷୁ ବିଭିନ୍ନ ଯନ୍ତ୍ର ସାହାଯ୍ୟରେ ପରୀକ୍ଷା କରାଗଲା । ଅତି ତାତ୍ପର୍ଯ୍ୟର ବିଷୟ ଯେ ମୁଁ ତାଙ୍କର ବିଭିନ୍ନ କର୍ମଚାରୀ ବ୍ୟତୀତ ଅନ୍ୟ କେହି ନ ଥିବା ସତ୍ତ୍ୱେ ଜଣେ ସଶସ୍ତ୍ର ପୋଲିସ୍ ମୋ ସଙ୍ଗରେ ଯାଉଥିବାରୁ ମୋତେ ଲାଜ ଲାଗିଲା । ମାତ୍ର ମୁଁ ସେଠା ରାଜ୍ୟ ସରକାରଙ୍କ ଅତିଥି ହୋଇଥିବାରୁ ତାଙ୍କ ନିରାପତ୍ତା ବ୍ୟବସ୍ଥା ସଂପର୍କରେ ମୋର କିଛି କହିବାର ନଥିଲା । ପ୍ରାୟ ଦିନ ସାଢ଼େ ଦୁଇଟା ସୁଦ୍ଧା ମୋର ସମସ୍ତ ପରୀକ୍ଷା ସରିଲା ପର୍ଯ୍ୟନ୍ତ ଡ଼ାକ୍ତର ନିଜେ ତଥା ତାଙ୍କର ସମସ୍ତ କର୍ମଚାରୀ ଉପସ୍ଥିତ ଥିଲେ । ମୋତେ ବିଦାୟ ଦେଲାବେଳେ ପରଦିନ ସକାଳ ସାଢ଼େ ଛ'ଟା ବେଳକୁ ଅପରେସନ ପାଇଁ ପ୍ରସ୍ତୁତ ହୋଇ ଆସିବାକୁ କହିଲେ । ତାଙ୍କର ପୂର୍ବ ପରାମର୍ଶ ଅନୁଯାୟୀ ମୁଁ ଭୁବନେଶ୍ୱରରୁ ମୋର ରକ୍ତ ଓ ଝାଡ଼ା ପରୀକ୍ଷାର ତଥା ଏକ୍ସିନାର ରିପୋର୍ଟ ନେଇ ଯାଇଥିବାରୁ ସେ ସବୁକୁ ଦେଖି ପରଦିନ ସକାଳ ଅପରେସନ ପାଇଁ ସମୟ ନିର୍ଦ୍ଧାରଣ କଲେ । ତା'ପରେ ନିରାପତ୍ତା ରକ୍ଷୀଙ୍କ ଗହଣରେ ଅତିଥିଶାଳାକୁ ଫେରି ଦିନ ୩ଟା ବେଳକୁ ମଧ୍ୟାହ୍ନ ଭୋଜନ କଲି । ସେଦିନ ସମସ୍ତ ପରୀକ୍ଷା କାର୍ଯ୍ୟ ସାରି ନଥିଲେ ମୋତେ ଆଉ ଗୋଟିଏ ଦିନ ସେଠାରେ ଅଧିକା ରହିବାକୁ ପଡ଼ିଥାଆନ୍ତା । ସେ ଦିନ ରାତିଟି ସରକାରୀ ଅତିଥିଶାଳାରେ ଆମେ ତିନିଜଣ କଟାଇଲୁ । ସେଠାରେ ଭୀଷଣ ଶୀତ ଅନୁଭବ କଲୁଁ । ଆମକୁ ସେଠାରେ ରହିବାକୁ ଦୁଇଟି

କୋଠରୀ ମିଳିଥିଲା । ଭୀଷଣ ଶୀତରୁ ରକ୍ଷା ପାଇବା ପାଇଁ ପ୍ରଥମେ ଗୋଟିଏ ବିଦ୍ୟୁତ୍ ଚାଳିତ ହିଟର ଦେଇଥିଲେ ମାତ୍ର ସେଥିରେ ଶୀତର ପ୍ରକୋପ ନ କମିବାରୁ ଆମ ଅନୁରୋଧ କ୍ରମେ ଆଉ ଗୋଟିଏ ହିଟର ଦେବାରୁ ଆମେ ରାତିରେ ଶୋଇ ପାରିଲୁଁ । ମୁଁ ସରକାରୀ ଅତିଥି ହୋଇଥିବାରୁ ଅତିଥିଶାଳାର କେୟାର ଟେକର ଆମର ସବୁ ପ୍ରକାର ସୁବିଧା ଅସୁବିଧା ବୁଝୁଥାଏ ।

## "ଆଜି ଅପରେସନ ହେଲା"

ଆମକୁ ସକାଳ ସାଢ଼େ ଛ'ଟା ବେଳକୁ ହାସପାତାଳରେ ପହୁଞ୍ଚିବାକୁ ହେବ । ସକାଳକୁ ଅଧିକ ଶୀତ ଅନୁଭୂତି ହେଉଥାଏ । ଯାହାହେଉ ପ୍ରସ୍ତୁତ ହୋଇ ପ୍ରାୟ ୬ଟା ବେଳକୁ ବାହାରି ପଡ଼ିଲୁ । ଅନ୍ୟମାନେ ସାମାନ୍ୟ ଧରଣର ପ୍ରାତଃ ଭୋଜନ କରି ଗଲେ । ମୋତେ ଖାଲିପେଟରେ ଯିବାକୁ ଡ଼ାକ୍ତର ପରାମର୍ଶ ଦେଇଥିଲେ । ଆମପାଇଁ ମିଳିଥିବା ଗାଡ଼ିଟି ମଧ୍ୟ ଠିକ୍ ସମୟରେ ଆସିଗଲା । ମୋ ଗାଡ଼ିରେ ମୋ ସଙ୍ଗେ ରହିବା ପାଇଁ ଯେଉଁ ନିରାପତ୍ତା ରକ୍ଷୀଙ୍କୁ ନିଯୁକ୍ତ ଦିଆଯାଇଥିଲା ସେ ଓ ତାଙ୍କ ସଙ୍ଗେ ଆଉଜଣେ ନିରାପତ୍ତା ରକ୍ଷୀ ମଧ୍ୟ ଆସିଥିଲେ । ଆଜି ପୋଲିସର ଗୋଟିଏ ନିରାପତ୍ତା ଗାଡ଼ି ସ୍ଥାନରେ ଦୁଇଟି ସଶସ୍ତ୍ର ପୋଲିସ ଗାଡ଼ି ଥିଲା । ଏହାର କାରଣ ବୁଝିବାରୁ ଜଣାଗଲା ଯେ ଗୋଟିଏ ଗାଡ଼ି ପଞ୍ଜାବ ପୋଲିସ ତରଫରୁ ଓ ଅନ୍ୟ ଗାଡ଼ିଟି ନିରାପତ୍ତା ପୋଲିସ୍ ତରଫରୁ ଏହିପରି ଦୁଇଟି ଗାଡ଼ି ଦିଆଯାଇଥିଲା । ମୁଁ ଡ଼ାକ୍ତରଖାନାରେ ପହଞ୍ଚିଲା ବେଳକୁ ଡ଼ାକ୍ତର ହରଜିତ ସିଂ ଓ ତାଙ୍କ ହାସପାତାଳର ଅନ୍ୟ ସମସ୍ତ ଡ଼ାକ୍ତର ଓ କର୍ମଚାରୀ ଆସି ଯାଇଥିଲେ । ମୁଁ ପହଞ୍ଚିଲା ପରେ ମୋତେ ଜଣେ ଡ଼ାକ୍ତର ପରୀକ୍ଷାକଲେ ଏବଂ ମୋତେ ଗୋଟେ ପ୍ରକୋଷ୍ଠକୁ ନେଇ ସେଠାରେ ଥିବା ଗୋଟିଏ ଖଟରେ ଶୋଇ ରହିବାକୁ କହିଲେ । ଶୋଇଥିବା ଅବସ୍ଥାରେ ମୋର ରକ୍ତଚାପ ପରୀକ୍ଷା କଲାପରେ ମୋତେ ଅସ୍ତ୍ରୋପଚାର ପ୍ରକୋଷ୍ଠକୁ ନେଇଗଲେ । ସେଠାରେ ଥିବା ୪ଟି ଅପରେସନ ଟେବୁଲରେ ଚାରିଜଣ ମୋ ପୂର୍ବରୁ ଶୋଇଥିଲେ । ପ୍ରଥମେ ମୋ ଆଖିପତାର ଚାରିପଟେ ନିଶ୍ଚେତକ ଇଞ୍ଜେକସନ ଦେବା ଫଳରେ ସମସ୍ତ ଆଖି ଲାଲ ପଡ଼ିଗଲା । ତାପରେ ମୋ ମୁହଁ ଉପରେ କେବଳ ଆଖିଟି ଦେଖାଯିବା ଭଳି ଏକ କଣାଥିବା କନା ଘୋଡ଼ାଇ ଦିଆଗଲା । ଅଳ୍ପ ସମୟ ଏହି ଅବସ୍ଥାରେ ରହିଲାପରେ ନିଜେ ଡ଼ାକ୍ତର ହରଜିତ୍ ସିଂ ଅନ୍ୟ ସହଯୋଗୀଙ୍କ ସହ ଅସ୍ତ୍ରୋପଚାର ଆରମ୍ଭ କରିଦେଲେ । ପ୍ରାୟ ୧୫ ମିନିଟ୍ ମଧ୍ୟରେ ଅସ୍ତ୍ରୋପଚାର ଶେଷ ହେଲାପରେ ଆଉ ଗୋଟିଏ ଟେବୁଲକୁ ଚାଲିଗଲେ କିନ୍ତୁ ଆଖିପତାର ସିଲାଇ ଓ ଡ୍ରେସିଂ ପ୍ରଭୃତି କାର୍ଯ୍ୟ ଅନ୍ୟ ଡ଼ାକ୍ତରମାନେ କରୁଥାଆନ୍ତି । ସେ ଏକ ସମୟରେ ୪ଟି ଅପରେସନ ଆରମ୍ଭ କରିଦିଅନ୍ତି ମୋର ଡ୍ରେସିଂ ସରିଲାପରେ ସେହି ଅବସ୍ଥାରେ ମୋତେ ପ୍ରଥମେ ଶୋଇଥିବା କୋଠରୀକୁ ଚଲାଇ ଚଲାଇ ନେଇ ଆସିଲେ ଓ କିଛି ସମୟ ସେ ଖଟରେ ଶୋଇ ରହିବାକୁ କହିଲେ । ତାପରେ ନିଜେ ଡ଼ାକ୍ତର ମୋ ପାଖକୁ ଆସି କଥାବାର୍ତ୍ତା ହେଲେ ଓ ମୋତେ ସରକାରୀ ଅତିଥିଶାଳାକୁ ଚାଲିଯିବା ପାଇଁ କହିଲେ । ମୁଁ ଭାବିଥିଲି ମୋତେ ବୋଧହୁଏ ସେଠା ନର୍ସିଂ ହୋମରେ ରହିବାକୁ ପଡ଼ିବ । ଅତିଥିଶାଳାକୁ ଯାଇ ସେଠାରେ ବିଶ୍ରାମ କରିବାର ସୁଯୋଗ ମିଳିବାରୁ ବେଶ ଖୁସି ହେଲି । ପୂର୍ବଥର ଦିଲ୍ଲୀରେ ଅସ୍ତ୍ରୋପଚାର ବେଳେ ମୋତେ ନର୍ସିଂହୋମରେ ରହିବାକୁ ପଡ଼ିଥିଲା ଓ ଦୀର୍ଘ ୭ଦିନ ପର୍ଯ୍ୟନ୍ତ ବେଣ୍ଡେଜ କରି ସଫା ସୁତୁରା କରାଯାଉଥିଲା । ଅବଶ୍ୟ ଅସ୍ତ୍ରୋପଚାର ସେପରି ଗୁରୁତର ନ ହେଲେ ମଧ୍ୟ ଅତି ସୂକ୍ଷ୍ମ । ମୋତେ ବିଦାୟ ଦେଲାବେଳେ ସଂଧ୍ୟାବେଳେ ତାଙ୍କ ଘରକୁ ଯିବାପାଇଁ କହିଲେ ଓ ସେତେବେଳେ ସେ ଆଖିର ବନ୍ଧା ଖୋଲି ଦିଆଯିବ ବୋଲି ମଧ୍ୟ ଜଣାଇଦେଲେ । ତାପରେ ସେହିପରି ସମସ୍ତଙ୍କ ଗହଣରେ ଅତିଥିଶାଳାକୁ ଫେରି ମଧ୍ୟାହ୍ନ ଭୋଜନ ପରେ ବିଶ୍ରାମ ନେଲି । ଅବଶ୍ୟ ଅପରେସନ ପରେ ପ୍ରାୟ ଦୁଇଘଣ୍ଟା ପର୍ଯ୍ୟନ୍ତ ଆଖି ସାମାନ୍ୟ ଜଳିଲା ସେପରି ଅସହ୍ୟ ନୁହେଁ । ପୁଣି ଡ଼ାକ୍ତରଙ୍କ ପରାମର୍ଶ ଅନୁଯାୟୀ ସଂଧ୍ୟାବେଳକୁ ତାଙ୍କ ଘରକୁ ଗଲୁଁ । ଡ଼ାକ୍ତର ନିଜେ ମୋ ଆଖିରୁ ପଟି ଖୋଲିଦେଇ ଅସ୍ତ୍ରୋପଚାର ଓ ଚକ୍ଷୁର ଅବସ୍ଥା ଭଲ ଥିବାର ମୋତେ ଜଣାଇଦେଲେ । ସେଠାରେ ତାଙ୍କ ସ୍ତ୍ରୀ ଓ ଅନ୍ୟମାନଙ୍କ ସହିତ ମୋର ପରିଚୟ ମଧ୍ୟ କରାଇଦେଲେ । ଚା ଓ ଜଳଖିଆଦ୍ୱାରା ଆମ୍ଭମାନଙ୍କର ଆତିଥ୍ୟ ମଧ୍ୟ କଲେ । ଆମେ ଆସିଲା ବେଳକୁ ତହିଁ ପରଦିନ ସକାଳେ ତାଙ୍କ ଡ଼ାକ୍ତରଖାନାକୁ ଯିବାପାଇଁ କହିଲେ । ସକାଳେ ତାଙ୍କ ଡ଼ାକ୍ତରଖାନାକୁ ଗଲାରୁ ସେ ଚିଠା ଦେଇ ଚିକିତ୍ସାଳୟକୁ ଯିବାକୁ ପଡ଼ିଲା । ଅମୃତସରରୁ ବିଦାୟ ନେବାର ଦୁଇଦିନ ପୂର୍ବରୁ ମୁଁ ଡ଼ାକ୍ତର ସିଂଙ୍କୁ ମୋର ଅପରେସନ ଓ ଯୋଗାଇଥିବା ଔଷଧ ବାବଦକୁ ଏକ ବିଲ କରିଦେବାକୁ ଅନୁରୋଧ କଲି । ପ୍ରଥମେ ସବୁକଥା ଶୁଣି ମଧ୍ୟ ସେ ନୀରବ ରହିଲେ । ପୁଣି ଅନୁରୋଧ କଲାରୁ କିଛି ଦରକାର ନାହିଁ ବୋଲି କହିଲେ । ମୁଁ ବଡ଼ ଅଡୁଆରେ ପଡ଼ିଲି । ଶେଷରେ ମୁଁ କହିଲି ଯେ, ବିଧାନସଭାର ଅଧ୍ୟକ୍ଷ ଭାବରେ ଏ ସମସ୍ତ ବାବଦର ଖର୍ଚ୍ଚ ଆମ ରାଜ୍ୟ ସରକାର ବହନ କରିବେ, ମୋତେ ହାତରୁ କିଛି ଦେବାକୁ ପଡ଼ିବନାହିଁ । ସୁତରାଂ ବିଲ୍‌ଟିଏ କରିଦେବାକୁ ଆପଣ ବା ଦ୍ୱିଧାବୋଧ କରିବେ କାହିଁକି ? ଏହାଶୁଣି ଡ଼ାକ୍ତର କହିଲେ "ବିଧାନସଭା ଔର ଯାହାଁ ସେ ଚଦନେମେ ଓ ତ ହମାରେ ସେ ଲେକର ଦେଏଙ୍ଗେ ।" ଆସିଲା ବେଳକୁ ଆଉ କିଛି ଔଷଧ ମଧ୍ୟ ବିନାମୂଲ୍ୟରେ ଦେଲେ । ପୁଣି ଅନ୍ୟ ଆଖିଟି ଅସ୍ତ୍ରୋପଚାର ପାଇଁ ଛ ସପ୍ତାହପରେ ଆଉଥରେ ଆସିବାର ପରାମର୍ଶ ଦେଲେ । ବର୍ତ୍ତମାନ କିଛି ଦିନ ଆଖିର ସୁରକ୍ଷା ପାଇଁ କଳା ଚଷମା ବ୍ୟବହାର କରିବାକୁ

କହିଲେ । ତେଣୁଁ ଆନନ୍ଦରେ ଓ ନିରାପଦରେ ଫେରିଲି । ଏହି ରହଣୀକାଳ ମଧ୍ୟରେ ସେଠାକାର କେତେକ ଦର୍ଶନୀୟ ସ୍ଥାନ ମଧ୍ୟ ପରିଦର୍ଶନ କରିବାର ସୁଯୋଗ ପାଇଲି ।

## ''ଅମୃତସର ରହଣୀ ସମୟରେ ବିଭିନ୍ନ ସ୍ଥାନ ପରିଦର୍ଶନ''

ଏହି ରହଣୀକାଳ ମଧ୍ୟରେ ସେଠାକାର ବିଭିନ୍ନ ସ୍ଥାନ ପରିଦର୍ଶନ କରିବା ସଂପର୍କରେ ପ୍ରଥମେ ମୋର ନିରାପତ୍ତା ରକ୍ଷୀଙ୍କ ସହିତ ଆଲୋଚନା କରି କାର୍ଯ୍ୟକ୍ରମ ନିର୍ଦ୍ଧାରଣ କରାଗଲା । ନିରାପତ୍ତା ତରଫରୁ ନିର୍ଦ୍ଧାରିତ କାର୍ଯ୍ୟକ୍ରମ ସଂପୃକ୍ତ ସ୍ଥାନ ଓ ଜିଲ୍ଲା କର୍ତ୍ତୃପକ୍ଷଙ୍କୁ ଜଣାଇ ଦିଆଗଲା । ମୋର ଅସ୍ତ୍ରୋପଚାର ହେବାର ୪ର୍ଥ ଦିନ ସକାଳେ ଚିକିତ୍ସାଳୟକୁ ଯାଇ ଚକ୍ଷୁ ପରୀକ୍ଷା କଲାପରେ ଦର୍ଶନୀୟ ସ୍ଥାନ ପରିଦର୍ଶନରେ ବାହାରିଲି । ସେହିସ୍ଥାନ ଆତଙ୍କବାଦ ପ୍ରପୀଡ଼ିତ ଏପରି ଆଦୌ ମନେ ହେଉ ନଥାଏ । ତଥାପି ଏପରି କଡ଼ା ନିରାପତ୍ତା ବ୍ୟବସ୍ଥା ଦେଖି ମନରେ ବେଳେ ବେଳେ ସନ୍ଦେହ ଉଦ୍ରେକ ହେଉଥାଏ । ରାଜ୍ୟ ସ୍ୱରାଷ୍ଟ୍ର ବିଭାଗ ତରଫରୁ ମୋ ପରିଦର୍ଶନର ଅନୁମତି ଦେବା ସଙ୍ଗେ ସଙ୍ଗେ ସଂପୃକ୍ତ ସ୍ଥାନ ମାନଙ୍କରେ ମଧ୍ୟ କଡ଼ା ନିରାପତ୍ତା ବ୍ୟବସ୍ଥା କରାଇ ଥଆନ୍ତି ।

## ''ଜାଲିଓ୍ୱାନାବାଗ ପରିଦର୍ଶନ''

ଭାରତର ଜାତୀୟମୁକ୍ତି ଆନ୍ଦୋଳନରେ ଯେ ଯୋଗ ଦେଇଛି ତାକୁ ବ୍ରୀଟିଶ ଶାସନ ବେଳର ନାରକୀୟ ଓ ଅମାନୁଷିକ ଘଟଣା ସଂପର୍କରେ କିଛି ହେଲେ ଅଜ୍ଞାତ ନାହିଁ । ଅମୃତସରର ଜାଲିଓ୍ୱାନା ବାଗଠାରେ ଯେଉଁ ନାରକୀୟ ନରସଂହାର ଘଟିଥିଲା ତାହା ବା କାହାକୁ ଅଜଣା । ଏହାର ପ୍ରତିଶୋଧ ନେବାପାଇଁ ବହୁବର୍ଷ ପରେ ମଧ୍ୟ ଉଦ୍ଧାମ ସିଂ ନାମକ ଜଣେ ବୀର ଶିଖ ଯୁବକ ଲଣ୍ଡନଠାରେ ସେଠାକାର ପାର୍ଲ୍ୟାମେଣ୍ଟ ଚାଲିଥିଲାବେଳେ ଏହି ଜଘନ୍ୟ କାଣ୍ଡର ନାୟକଙ୍କୁ ଗୁଳିକରି ହତ୍ୟା କରିଥିଲେ ।

ଆଜକୁ ପ୍ରାୟ ୫୨ବର୍ଷ ପୂର୍ବେ ଜାତୀୟ ଆନ୍ଦୋଳନରେଯୋଗଦାନ କରି ଏହି ଜାଲିଓ୍ୱାନାବାଗର ଲୋମହର୍ଷଣକାରୀ ହତ୍ୟାକାଣ୍ଡ ସଂପର୍କରେ ଓଜସ୍ୱିନୀ ଭାଷଣମାନ ଦେଇ କେତେଯେ ଉତ୍ତେଜନା ସୃଷ୍ଟି କରିଥିଲି ତାର ଇୟତ୍ତା ନାହିଁ । ସ୍ୱାଧୀନତା ସଂଗ୍ରାମୀଙ୍କ ମନରେ ଏହି ଜାଲିଓ୍ୱାନାବାଗ କେତେ ଯେ ପ୍ରେରଣା ଓ ଉତ୍ତେଜନା ଯୋଗାଇଛି ତାର ବି କଳନା ନାହିଁ । ଜାଲିଓ୍ୱାନାବାଗ ଘଟଣା ବେଳକୁ ହୁଏତ ମୋର ଜନ୍ମ ନ ହୋଇ ଥାଇପାରେ ବା ଜନ୍ମିଥିଲେ ବି ଶିଶୁ ଅବସ୍ଥାରେ ଥାଇପାରେ ମାତ୍ର ଗୋରା ପୋଲିସ୍ ଅଫିସର ଡ଼ାୟାର ସାହେବର ପ୍ରତିଶୋଧ ମୂଳକ ହତ୍ୟା ଘଟଣାର ସଂବାଦ ଜାଣିଲା ମାତ୍ରକେ ମୋ ଭଳି ବହୁ ସ୍ୱାଧୀନତା ସଂଗ୍ରାମୀଙ୍କ ମନରେ କେତେ ଯେ ଆତ୍ମସନ୍ତୋଷ ସୃଷ୍ଟି କରିଥିଲା ତାହା ଅବର୍ଣ୍ଣନୀୟ । ଭାରତର ସ୍ୱାଧୀନତା ଆନ୍ଦୋଳନର ସେହି ସର୍ବଶ୍ରେଷ୍ଠ ପବିତ୍ର ଯଜ୍ଞବେଦୀ ଦର୍ଶନ କରି ଯାହାର ପବିତ୍ର ଧୂଳିମାଟି ଦିନେ ବିଦେଶୀ ଗୋରା ସରକାରର ବନ୍ଧୁକ ଓ ଗୁଳିରେ ରକ୍ତ ତର୍ପଣ କରିଥିଲା ସେହି ମାଟିକୁ ମୁଣ୍ଡରେ ମାରି ନିଜକୁ ଧନ୍ୟ ମନେ କରିବି, ଏହି ଭାବନା ମୋ ମନରେ ବହୁବାର ଜାଗ୍ରତ ହେଉଥିଲେ ହେଁ ତାର ସୁଯୋଗ ମୋତେ କେବେ ମିଳିପାରି ନ ଥିଲା । ଆଜି ବହୁଦିନ ପରେ ରାଜନୈତିକ ଜୀବନରେ ପରିଣତ ବୟସରେ ସେହି ପବିତ୍ର ସ୍ଥାନର ଦର୍ଶନ କରିବାର ସୁଯୋଗ ପାଇ ମନରେ ଯେଉଁ ଆନନ୍ଦ ଜନ୍ମିଲା ତା ବର୍ଣ୍ଣନାତୀତ ସେହି ଜାଲିଓ୍ୱାନାବାଗ ଅମୃତସର ସହରର ଏକ ଜନଗହଳି ଅଞ୍ଚଳରେ ଅବସ୍ଥିତ । ସେଦିନ ଡ଼ାକ୍ତରଙ୍କ ଚିକିତ୍ସାଳୟରୁ ବାହାରି ଅନ୍ୟ କୌଣସି ସ୍ଥାନକୁ ନ ଯାଇ ପ୍ରଥମେ ଏହିଠାକୁ ଆସିଲି । ସେହି ମହାନ ସ୍ୱାଧୀନତା ଯଜ୍ଞରେ ନିଜକୁ ଆହୁତି ଦେଇଥିବା ଶହୀଦମାନଙ୍କୁ ମୋର ଭକ୍ତିପୂତ ଶ୍ରଦ୍ଧାଞ୍ଜଳୀ ଅର୍ପଣ କରିବାପାଇଁ ମୋ ଦେହରକ୍ଷୀ ତଥା ନିରାପତ୍ତାରକ୍ଷୀ ମାନଙ୍କ ଗହଣ୍‌ରେ ଯାଇ ସେହି ଉଦ୍ୟାନର ଦ୍ୱାର ଦେଶରେ ଗାଡ଼ିରୁ ଓହ୍ଲାଇଲି । ବହୁଦିନରୁ ରହି ଆସିଥିବା ଏକମାତ୍ର ଦ୍ୱାର ଦେଇ ଭିତରକୁ ଗଲି । ସେ ସ୍ଥାନର ମାଟି ନେଇ ମୁଣ୍ଡରେ ମାରିଲି । ଅମୃତସରର ଏହି ଛୋଟ ଉଦ୍ୟାନଟି ଜାଲିଓ୍ୱାନାବାଗ ନାମରେ ପରିଚିତ ହେଉଥିଲେ ହେଁ ଏହାର ପବିତ୍ର ଇତିହାସ ପ୍ରତ୍ୟେକ ଭାରତୀୟଙ୍କ ପକ୍ଷରେ ଏକ ଗର୍ବ ଓ ଗୌରବର ବିଷୟ ହୋଇ ରହିବ ।

ଇତିହାସର ବର୍ଣ୍ଣନାନୁଯାୟୀ ଏହା ମଧ୍ୟକୁ ପ୍ରବେଶ ପାଇଁ ସେହି କାଳରୁ ରହିଥିବା ଏକମାତ୍ର ପ୍ରବେଶ ପଥ ଅଦ୍ୟାବଧି ଅପରିବର୍ତ୍ତନୀୟ ଭାବରେ ରହିଛି । ଏହି ପଥରେ ଦିନେ ବ୍ରୀଟିଶ ସରକାରଙ୍କ ତୋପକମାଣଦ୍ୱାରା ଶାନ୍ତିପୂର୍ଣ୍ଣ ଭାବେ ସଭା କରୁଥିବା ଜନତାର ପଥରୋଧ କରି ଶହ ଶହ ଲୋକଙ୍କୁ ଗୁଳିଚୋଟରେ ହତ୍ୟା କରାଯାଇଥିଲା । ୧୯୧୯ ମସିହାର ଏହି ଘଟଣାା ପରେ ମଧ୍ୟ ଜାଲିଓ୍ୱାନାବାଗ ବ୍ରୀଟିଶ ଶାସନରେ ଏକ କଳଙ୍କିତ ଅଧ୍ୟାୟର ମୂକ ସାକ୍ଷୀରୂପେ ଏବେ ବି ବିଦ୍ୟମାନ । ଭାରତବାସୀଙ୍କ ଅତି କଷ୍ଟଲବ୍ଧ ସ୍ୱାଧୀନତା ତଥା ମହାତ୍ମାଗାନ୍ଧୀଙ୍କ ଗଣତାନ୍ତ୍ରିକ ଆଦେଶକୁ ରକ୍ଷା କରି ଜାତି,

ଧର୍ମ, ଭାଷା ଓ ଆଞ୍ଚଳିକ ଭେଦଭାବ ଭୁଲି ସଂଘବଦ୍ଧ ଭାବରେ ଦେଶର ଆଦର୍ଶ ଓ ସମ୍ମାନକୁ ସମଗ୍ର ବିଶ୍ୱରେ ଏକ ଶାନ୍ତିକାମୀ ଦେଶରୂପେ ଗଢ଼ି ତୋଳିବାକୁ ଏହି ସ୍ଥାନ ଭବିଷ୍ୟତ ବଂଶଧର ମାନଙ୍କୁ ସର୍ବଦା ସୂଚାଇ ଦେଉଅଛି । ଭାରତର ପ୍ରଧାନମନ୍ତ୍ରୀ ଏହି ଟ୍ରଷ୍ଟର ଜଣେ ସଭ୍ୟ । ଏହା ଦାୟିତ୍ୱରେ ଜଣେ ମେନେଜର ମଧ୍ୟ ରହିଛନ୍ତି ସେ ଆଗରୁ ମୋର ପରିଦର୍ଶନର ସଂବାଦ ପାଇଥିଲେ । ତେଣୁ ସେ ଆମକୁ ନେଇ ବିଭିନ୍ନ ସ୍ଥାନ ବୁଲାଇ ଦେଖାଇଲେ ଓ ବିଭିନ୍ନ ସ୍ଥାନର ଐତିହାସିକ ଘଟଣାମାନ ମଧ୍ୟ ବର୍ଣ୍ଣନାକରି ବୁଝାଇ ଦେଉଥିଲେ । ତାଙ୍କର ବର୍ଣ୍ଣନାଶୈଳୀ ଏପରି ପ୍ରାଞ୍ଜଳ ଓ ଭାବୋଦ୍ଦୀପକ ଥିଲା ସତେ ଯେପରି ସମସ୍ତ ଘଟଣା ସେ ନିଜେ ପ୍ରତ୍ୟକ୍ଷ ଭାବରେ ଦେଖିଛନ୍ତି ବା ଅନୁଭବ କରିଛନ୍ତି । ମାତ୍ର ତାଙ୍କ ବୟସରୁ ସେ ସେତେବେଳକୁ ଜନ୍ମଲାଭ କରି ନ ଥିବା ଭଳି ବେଶ ଜଣା ପଡୁଥିଲା । ବିଦେଶୀ ଗୋରା ସରକାର ସ୍ୱାଧୀନତା ଆନ୍ଦୋଳନକୁ ପ୍ରତିହତ କରିବା ଉଦ୍ଦେଶ୍ୟରେ ପଞ୍ଜାବରେ ସଭାସମିତି ନିଷିଦ୍ଧ କରିଥିଲେ । ତା ସତ୍ତ୍ୱେ ଏହି ଉଦ୍ୟାନ ମଧ୍ୟରେ ହଜାର ହଜାର ହିନ୍ଦୁ, ଶିଖ, ମୁସଲମାନ, ଏକତ୍ରିତ ହୋଇ ଶାନ୍ତିପୂର୍ଣ୍ଣ ଭାବରେ ସଭାକରି ଏହି ନିଷେଧ ଆଇନର ପ୍ରତିବାଦ ଜଣାଉଥିବା ବେଳେ ଜେନେରାଲ ଡାୟାର ସାହେବଙ୍କ ନେତୃତ୍ୱରେ ବ୍ରିଟିଶ ଫୌଜ ଉଦ୍ୟାନର ଏକମାତ୍ର ପ୍ରବେଶ ପଥକୁ ଅବରୋଧ କରି କମାଣରୁ ଜନତା ଉପରକୁ ଗୁଳି ବର୍ଷଣ କଲେ । ଲୋକେ ପଳାଇବାକୁ ଅନ୍ୟ ବାଟ ନ ପାଇ ପ୍ରବଳ ଚିତ୍କାର କରି ଗୁଳିମାଡ଼ରେ ଟଳି ପଡୁଥିଲେ । କେହି କେହି ପ୍ରାଣ ବିକଳରେ ଉପାୟାନ୍ତର ନ ପାଇ ସେଠାରେ ଥିବା କୂଅ ଭିତରକୁ ଜଣକ ଉପରେ ଆଉ ଜଣେ ଡେଇଁ ପଡୁଥିଲେ । ଉକ୍ତ କୂଅଟିକୁ ସେହିପରି ଅବସ୍ଥାରେ ସଂରକ୍ଷିତ କରି ରଖାଯାଇଛି । ଉଦ୍ୟାନର ମଧ୍ୟଭାଗରେ ସେହି ଶହୀଦମାନଙ୍କ ସ୍ମୃତି ଉଦ୍ଦେଶ୍ୟରେ ସ୍ୱାଧୀନତା ପ୍ରାପ୍ତି ପରେ ୧୯୬୧ ମସିହାରେ ଏକ ସ୍ତମ୍ଭ ନିର୍ମାଣ କରାଯାଇଅଛି । ସ୍ୱାଧୀନ ଭାରତର ପ୍ରଥମ ରାଷ୍ଟ୍ରପତି ତଥା ସ୍ୱାଧୀନତା ଆନ୍ଦୋଳନର ଅନ୍ୟତମ କର୍ଣ୍ଣଧାର ଡକ୍ଟର ରାଜେନ୍ଦ୍ର ପ୍ରସାଦ ଏହି ସ୍ତମ୍ଭ ଉଦ୍‌ଘାଟନ କରିଥିବା ମଧ୍ୟ ଜାଣିଲି । ବୁଲି ସାରିଲାପରେ ମେନେଜରଙ୍କ କାର୍ଯ୍ୟାଳୟରେ କିଛି ସମୟ ବସି ସେଠାରେ ଥିବା ପରିଦର୍ଶନ ବହିରେ ମୋର ମନ୍ତବ୍ୟ ଲେଖିଦେଲି । ସ୍ୱାଧୀନତା ଆନ୍ଦୋଳନର ଏହି ପବିତ୍ରପୀଠ ପରିଦର୍ଶନରେ ଆନନ୍ଦିତ ହେବା ସଙ୍ଗେ ସଙ୍ଗେ ବୀର ଶହୀଦମାନଙ୍କ ଉଦ୍ଦେଶ୍ୟରେ ମୋର ଭକ୍ତିପୂତ ଶ୍ରଦ୍ଧାଞ୍ଜଳୀ ଅର୍ପଣକରି ନିଜକୁ ଧନ୍ୟ ମନେ କଲି । ଯେଉଁ ଶିଖ ସଂପ୍ରଦାୟ ଅନ୍ୟମାନଙ୍କ ସଙ୍ଗେ କାନ୍ଧକୁ କାନ୍ଧ ମିଶାଇ ସ୍ୱାଧୀନତା ଆନ୍ଦୋଳନର ପବିତ୍ର ପୀଠରେ ଆତ୍ମାହୁତି ଦେଇଥିଲେ ସେହି ଶିଖ ସଂପ୍ରଦାୟର ଏବର ଯୁବଶକ୍ତି ପଞ୍ଜାବକୁ ଭାରତରୁ ଅଲଗା କରି ଖଲିସ୍ଥାନ ଆନ୍ଦୋଳନ ଦ୍ୱାରା ନିର୍ମମ ଭାବରେ ନିରୀହ ଲୋକଙ୍କ ହତ୍ୟା ଓ ହିଂସା ଆଚରଣ କଥା ମନେ ପକାଇ ଦୁଃଖ ଓ ବିଷାଦରେ ମ୍ରିୟମାଣ ହୋଇ ପଡ଼ିଲି ।

## ''ଦୁର୍ଗାମନ୍ଦିର''

ଜାଲିଓ୍ୱାନାବାଗ ପରିଦର୍ଶନପରେ ସେହି ସହରରେ ଥିବା ଦୁର୍ଗା ଓ ସତ୍ୟନାରାୟଣ ମନ୍ଦିର ପରିଦର୍ଶନ କରିବାକୁ ଗଲି । ହିନ୍ଦୁ ମାନଙ୍କର ଏହା ଏକ ସୁନ୍ଦର ମନ୍ଦିର । ସେଠାକାର ସ୍ୱର୍ଣ୍ଣମନ୍ଦିର ଢାଞ୍ଚାରେ ହିନ୍ଦୁମାନଙ୍କ ଏହି ମନ୍ଦିରଟି ନିର୍ମିତ ହୋଇଛି । ମନ୍ଦିର ପ୍ରାଙ୍ଗଣରେ ଏକ ବିରାଟ ପୁଷ୍କରିଣୀ ମନ୍ଦିର ଚୂଡ଼ାରେ ସ୍ୱର୍ଣ୍ଣଖଚିତ କଳସ ଏହାର ଶୋଭାବର୍ଦ୍ଧନ କରୁଅଛି । ପୁଷ୍କରିଣୀର ଚାରିପାଖରେ ମନ୍ଦିର ଓ ବିଭିନ୍ନ ଗୃହମାନ ରହିଅଛି । ମୁଖ୍ୟ ମନ୍ଦିରରେ ଦୁର୍ଗା ଓ ସତ୍ୟନାରାୟଣ ପ୍ରଭୃତି ଦେବାଦେବୀଙ୍କ ଅତି ସୁନ୍ଦର ମୂର୍ତ୍ତିମାନ ସ୍ଥାପନ କରାଯାଇଛି । ପରିଦର୍ଶନ ଶେଷରେ ମନ୍ଦିର ପରିଚାଳନା କମିଟିର କାର୍ଯ୍ୟାଳୟରେ ବସି ମନ୍ଦିରର ମାହାତ୍ମ୍ୟ ବିଷୟରେ ଆଲୋଚନା କଲି । ସେଠାରୁ ଜାଣିଲି ଯେ, ଏହି ମନ୍ଦିରକୁ ଯେପରି ହିନ୍ଦୁ ଓ ଶିଖ ମାନେ ଦର୍ଶନ ପାଇଁ ଆସନ୍ତି ସେହିପରି ଉଭୟ ସଂପ୍ରଦାୟର ଲୋକେ ବହୁକାଳରୁ ସ୍ୱର୍ଣ୍ଣମନ୍ଦିରକୁ ମଧ୍ୟ ଦର୍ଶନ କରିବାକୁ ଯାଆନ୍ତି । କୌଣସି ପ୍ରକାର ସାଂପ୍ରଦାୟିକ ବିବାଦ କେବେ ନ ଥିଲା । ଏ ଅଞ୍ଚଳର ସବୁ ମନ୍ଦିର ପରିସର ମଧ୍ୟରେ ହାତ ଗୋଡ଼ ଧୋଇ ପବିତ୍ର ଭାବରେ ଦର୍ଶନ କରିବାକୁ ଯିବାପାଇଁ ପୁଷ୍କରିଣୀମାନ ରଖାଯାଇଅଛି ।

## ''ବାଲ୍ମୀକି ଆଶ୍ରମ''

ଅମୃତସର ସହରଠାରୁ ପ୍ରାୟ ୧୦ କିଲୋମିଟର ଦୂରରେ ପୁରାଣ ଯୁଗର ବାଲ୍ମୀକି ଆଶ୍ରମ ନାମରେ ତୀର୍ଥସ୍ଥାନ ଥିବାର ଶୁଣି ସେଠାକୁ ଯିବାପାଇଁ ମୋର ନିରାପତ୍ତା ରକ୍ଷୀଙ୍କ ସହ ଆଲୋଚନା କଲାରୁ ସେମାନେ ମଧ୍ୟ ରାଜି ହୋଇ ମୋତେ ନେଇ ଯିବାପାଇଁ ସ୍ଥିର କଲେ । ଆଗରୁ ନିରାପତ୍ତା ଦଳର ଗୋଟିଏ ଗାଡ଼ି ସେଠାରୁ ଚାଲିଗଲା । ଅନ୍ୟ ଗାଡ଼ିଟି ମୋ ସହିତ ଗଲାବେଳେ ସେଠାକାର କୃଷକ ଚାଷକରି କିପରି ଭାବରେ ଜମିର ସଦୁପଯୋଗ କରୁଛନ୍ତି ତାହା ଦେଖିବା ଥିଲା ମୋର ମୁଖ୍ୟ ଉଦ୍ଦେଶ୍ୟ । ଗଲାବେଳେ ପଥପାର୍ଶ୍ୱସ୍ଥ ଗ୍ରାମ ଗୁଡ଼ିକର ଲୋକେ କୃଷିର ଉନ୍ନତି କରି ଆର୍ଥିକ ପ୍ରଗତି କରି ପାରିଥିବାର ଅନୁମାନ କରି ପାରିଲି । ଯାହା ଦେଖିଲି ସେଥିରୁ ସ୍ପଷ୍ଟ ଭାବରେ ପ୍ରତୀତ ହେଲା ଯେ ସେଠାକାର କୃଷକ ବାସ୍ତବରେ ଅତ୍ୟନ୍ତ ପରିଶ୍ରମୀ । ଚାଷ ନ ହୋଇ କୌଣସିଠାରେ ଜମି ପଡ଼ିଆ ପଡ଼ିରହିବାର ଦେଖିବାକୁ ପାଇଲି ନାହିଁ । କ୍ରମେ ଆମେ ଯାଇ

ବାଲ୍ମୀକି ଆଶ୍ରମରେ ପହଞ୍ଚିଲୁ । ଏଠାରେ ମଧ୍ୟ ବାଲ୍ମୀକି ଆଶ୍ରମ ମଧ୍ୟରେ ଏକ ବିରାଟ ପୁଷ୍କରିଣୀ ଥିବାର ଦେଖିଲି । ସେ ଅଞ୍ଚଳରେ ପ୍ରତି ତୀର୍ଥ ବା ମନ୍ଦିର ନିକଟରେ ଏହିଭଳି ବିରାଟ ପୁଷ୍କରିଣୀ ରହିବା ଏକ ବିଶେଷତ୍ୱ । ପୁଷ୍କରିଣୀର ଦକ୍ଷିଣ ତୀରରେ ଏକ ମଠ ପ୍ରତିଷ୍ଠା କରାଯାଇଛି ଓ ଉତ୍ତର ପାର୍ଶ୍ୱରେ ବାଲ୍ମୀକି ମୁନିଙ୍କ ଏକ ମନ୍ଦିର ରହିଅଛି । ଏହାର ନିକଟରେ ସୀତାଦେବୀ ରହୁଥିବା ଓ ଲବକୁଶଙ୍କ ଜନ୍ମସ୍ଥାନ ବୋଲି କୁହାଯାଉଥିବା ଏକ ସ୍ଥାନ ମଧ୍ୟ ରହିଅଛି । ସବୁ ସ୍ଥାନରେ ଛୋଟ ମନ୍ଦିରମାନ ନିର୍ମିତ ହୋଇଅଛି । ସାଧାରଣ ସ୍ଥାନ ସେପରି ବିଶେଷ କିଛି ସାଜସଜ୍ଜା ବା ଆଡ଼ମ୍ବର ମଧ୍ୟ ନାହିଁ । ଏହି ସ୍ଥାନଟି ମହର୍ଷି ବାଲ୍ମୀକିଙ୍କ ତପୋବନ ଓ ଜନକ ନନ୍ଦିନୀ ସୀତା ଅଯୋଧ୍ୟାର ରାଜା ରାମଚନ୍ଦ୍ରଙ୍କ ଦ୍ୱାରା ପରିତ୍ୟକ୍ତା ହୋଇ ଏହିଠାରେ ଲବକୁଶ ଦୁଇ ଯମଜ ସନ୍ତାନଙ୍କୁ ଜନ୍ମ କରିଥିଲେ ବୋଲି ଏଠାକାର ଲୋକେ ବିଶ୍ୱାସ କରୁଥିବାର ଜାଣିଲି । ସେଠାରୁ ଫେରି ଅତିଥିଶାଳାରେ ବିଶ୍ରାମ ନେଲି । ପଞ୍ଜାବରେ ଆତଙ୍କବାଦୀ ହତ୍ୟା ବା ଆତଙ୍କ ରାଜର ଚିହ୍ନବର୍ଣ୍ଣ ଥିବାର କିଛି ଅନୁଭବ କରିପାରିଲି ନାହିଁ ।

## ''ଐତିହାସିକ ସ୍ୱର୍ଣ୍ଣମନ୍ଦିର ପରିଦର୍ଶନ''

ଆଜି ସକାଳେ ଚିକିତ୍ସାଳୟକୁ ଯାଇ ଆଖି ପରୀକ୍ଷା କଲାପରେ ସ୍ୱର୍ଣ୍ଣମନ୍ଦିର ପରିଦର୍ଶନରେ ଯିବାର କାର୍ଯ୍ୟକ୍ରମ ରଖିଥିଲି ତଦନୁଯାୟୀ ନିରାପତ୍ତା ରକ୍ଷୀଙ୍କ ସହ ଆଲୋଚନା କରି ଜିଲ୍ଲା କର୍ତ୍ତୃପକ୍ଷଙ୍କୁ ମଧ୍ୟ ଜଣାଇ ଦିଆଯାଇଥିଲା । ଏ ମନ୍ଦିର ଦର୍ଶନକୁ ଗଲେ କୌଣସି ଅସୁବିଧା ନାହିଁ ବୋଲି ସେମାନେ ବି ମୋତେ କହିଲେ । ଶିଖ ମାନଙ୍କର ଏହି ମନ୍ଦିର କେବଳ ଭାରତ ନୁହେଁ ସମଗ୍ର ବିଶ୍ୱରେ ସ୍ୱର୍ଣ୍ଣ ମନ୍ଦିର ବୋଲି ପ୍ରସିଦ୍ଧି ଲାଭ କରି ବହୁ ଉତ୍ଥାନ ପତନର ମୂକସାକ୍ଷୀ ରୂପେ ଦଣ୍ଡାୟମାନ ହୋଇ ବହୁଦିନରୁ ମଣିଷ ମଣିଷ ମଧ୍ୟରେ ବିଭେଦ ଓ ହିଂସାର ବିଲୋପ ପାଇଁ ବହୁ ସାଧୁ ସନ୍ଥଙ୍କ ଅମରବାଣୀ ମାନବ ଜାତିକୁ ଶୁଣାଇ ଆସିଛି । ଯେଉଁ ଶିଖ ସଂପ୍ରଦାୟ ଦିନେ ଭାରତର ଜାତୀୟ ମୁକ୍ତି ଆନ୍ଦୋଳନରେ ଚରମ ତ୍ୟାଗ ପ୍ରଦର୍ଶନ କରି ସମଗ୍ର ଜାତିର ନମସ୍ୟ ହେବାର ଗର୍ବ ଓ ଗୌରବ ଅର୍ଜନ କରିଥିଲା ଓ ସ୍ୱାଧୀନତା ପ୍ରାପ୍ତିପରେ ନୂତନ ଭାରତ ଗଠନରେ ଅନ୍ୟମାନଙ୍କ ଭଳି କୃଷି, କାରିଗରୀ ବିଜ୍ଞାନ ଓ ଦେଶରକ୍ଷା କ୍ଷେତ୍ରରେ ବହୁ ଅବଦାନ ପ୍ରଦାନ କରିଥିଲା, ସମୟର ଗତିରେ ଆଜି ସେହି ସଂପ୍ରଦାୟର ମୁଷ୍ଟିମେୟ ଅକାଳୀ ଯୁବକ ବାବରଖାଲସା ନାମରେ ନିରୀହ ଲୋକଙ୍କୁ ହତ୍ୟାକରି ଆତଙ୍କରାଜ ସୃଷ୍ଟି କରି ଚାଲିଛନ୍ତି । ପାକିସ୍ଥାନ ଭଳି ଏ ଭାରତ ବିରୋଧୀ ଦେଶ ସାହାଯ୍ୟରେ ପଞ୍ଜାବ ତଥା ଅନ୍ୟ ଶିଖ ଜନବହୁଳ ଅଞ୍ଚଳକୁ ନେଇ ଖଲିସ୍ଥାନ ନାମରେ ଏକ ସ୍ୱାଧୀନ ରାଷ୍ଟ୍ର ପ୍ରତିଷ୍ଠାନର ଅପଚେଷ୍ଟା କରିବାର ଉଦ୍ୟମ ଚଳାଇଛନ୍ତି । ନିରୀହ ଓ ନିର୍ଦ୍ଦୋଷ ଲୋକଙ୍କୁ ହତ୍ୟା କରି କେତେ ସ୍ତ୍ରୀକୁ ବିଧବା କରାଇବା କେତେ ଦୁଗ୍ଧ ପୋଷ୍ୟଙ୍କୁ ପିତୃମାତୃଶୂନ୍ୟ କରାଇବା କେତେ ପିତାମାତାଙ୍କୁ ପୁତ୍ରହରା କରାଇବା ଦିଗରେ ଟିକିଏ ହେଲେ କୁଣ୍ଠା କରୁନାହାନ୍ତି । ଏସବୁ ପ୍ରତ୍ୟକ୍ଷୀଭୂତ କରିବା ପାଇଁ ମୋ ମନରେ ଥିବା ବହୁ ଦିନର ଉତ୍କଣ୍ଠା ଆଜି ପ୍ରଶମିତ ହେଲା ।

ଅମୃତସର ସହର ମଧ୍ୟରେ ଏକ ଜନବହୁଳ ବସତି ସ୍ଥାନରେ ଏହି ବିଶ୍ୱବିଖ୍ୟାତ ସ୍ୱର୍ଣ୍ଣମନ୍ଦିର ଅବସ୍ଥିତ । ଶିଖ ଧର୍ମର ସର୍ବଶ୍ରେଷ୍ଠ ଧର୍ମ ସଂସ୍କୃତିର କେନ୍ଦ୍ରସ୍ଥଳ ଏକ ବିରାଟ ମନ୍ଦିର । ମନ୍ଦିରରେ ଗୋଟିଏ ମାତ୍ର ପ୍ରବେଶ ପଥ । ପୁରୀର ଜଗନ୍ନାଥ ମନ୍ଦିର ପରି ଚାରିଦିଗକୁ ଚାରି ଦ୍ୱାର ନାହିଁ । ଆୟତନରେ ପୁରୀର ଜଗନ୍ନାଥ ମନ୍ଦିରର ଆୟତନରୁ କିଛି କମ୍ ହେବାର ମନେ ହେଲା । ମୋ ସହିତ ଯାଇଥିବା ସମସ୍ତ ନିରାପତ୍ତା ରକ୍ଷୀ ପୋଲିସ ପ୍ରବେଶ ପଥ ନିକଟରେ ରହିଗଲେ । କେବଳ ସାଧା ପୋଷାକ ପରିହିତ ଜଣେ ପୋଲିସ ଅଫିସର ଆମ ବିଧାନସଭା କର୍ମଚାରୀଙ୍କ ସହ ମୋତେ ନେଇ ଭିତରକୁ ଗଲେ । ପ୍ରବେଶ ଦ୍ୱାର ନିକଟରେ ବହିଯାଉଥିବା ପାଣିରେ ଆମେ ଗୋଡ଼ ହାତ ଧୋଇ ଖାଲିପାଦରେ ମନ୍ଦିର ପ୍ରାଙ୍ଗଣକୁ ପ୍ରବେଶ କଲୁଁ । ମନ୍ଦିର ପ୍ରାଙ୍ଗଣରେ ଧାଡ଼ି ଧାଡ଼ି ହୋଇ ବହୁ କୋଠରୀ ଲମ୍ବି ଯାଇଥିବାର ଦେଖିଲୁଁ । ଆମ ସହିତ ଯାଇଥିବା ପୋଲିସ ଅଫିସର ସେହି କୋଠରୀ ଗୁଡ଼ିକୁ ଲକ୍ଷ୍ୟ କରି କହିଲେ ଇନ୍ଦିରାଗାନ୍ଧୀଙ୍କ ବ୍ଲୁଷ୍ଟାର ଅପରେସନ ପୂର୍ବରୁ ଏହି କୋଠରୀ ଗୁଡ଼ିକରେ ଆତଙ୍କବାଦୀ ବହୁ ସଂଖ୍ୟାରେ ରହି ନିର୍ଭୟରେ ବହୁ ହତ୍ୟାକାଣ୍ଡ ପବିତ୍ର ଦେବମନ୍ଦିର ମଧ୍ୟରେ କରୁଥିଲେ । ସବୁବେଳେ ନିଜକୁ ଅସ୍ତ୍ରଶସ୍ତ୍ର ଓ ଏପରିକି ଅତି ଭୟଙ୍କର ମାରଣାସ୍ତ୍ରରେ ସୁସଜ୍ଜିତ କରି ରଖିଥିଲେ । ଏହି ପବିତ୍ର ଧର୍ମପୀଠକୁ ସେମାନେ ଏକ ଦୁର୍ଗରେ ପରିଣତ କରିବା ସେ ଆମକୁ ସୂଚାଇ ଦେଇଥିଲେ । ଏହି କୋଠରୀ ମାନଙ୍କରେ ରହି ଆତଙ୍କବାଦୀମାନେ ତାଙ୍କ ବିରୋଧୀ ଲୋକ ଓ ତାଙ୍କ ଶତ୍ରୁ ତାଲିକାରେ ଥିବା ଲୋକମାନଙ୍କୁ ହତ୍ୟାକରି ମୃତଦେହ ଗୁଡ଼ିକୁ ମନ୍ଦିର ପ୍ରାଙ୍ଗଣ ମଧ୍ୟରେ ପୋଡ଼ି ଦେଉଥିଲେ । ମୃତ ଦେହ ପୋଡ଼ି ଦେଉଥିବା ସ୍ଥାନଟି ମଧ୍ୟ ଉକ୍ତ ପୋଲିସ ଅଫିସର ଆମକୁ ଦେଖାଇ ଦେଇଥିଲେ । ସରକାରୀ ସୈନ୍ୟମାନେ ସ୍ୱର୍ଣ୍ଣମନ୍ଦିର ଦଖଲ କରି ଆତଙ୍କ ବାଦୀଙ୍କୁ ସେଠାରୁ ବାହାର କଲାପରେ ସେହି ସ୍ଥାନରୁ ବହୁ ମୃତଦେହ ବାହାର କରାଯାଇଥିଲା । ଧର୍ମସ୍ଥଳୀ ବା ମନ୍ଦିର ଭଳି ପବିତ୍ର ସ୍ଥାନରେ ମଣିଷକୁ ହତ୍ୟା କରିବା ଓ ହତ୍ୟା କରିବା ପରେ ସେହି ପ୍ରାଙ୍ଗଣ ମଧ୍ୟରେ ମୃତ ଦେହକୁ ପୋତିବା ପୃଥିବୀର କୌଣସି ଧର୍ମରେ କେବେହେଲେ ଘଟିବାର ଶୁଣାଯାଏ ନାହିଁ । ଏହା ସତ୍ତ୍ୱେ ଆମ ଦେଶର ଶିଖ ସଂପ୍ରଦାୟ ଓ ଧର୍ମାବଲମ୍ବୀମାନେ ଏହି ଘୃଣ୍ୟ ଘଟଣାର ପ୍ରତିବାଦ ନ କରିବା ଅତ୍ୟନ୍ତ କ୍ଷୋଭର ବିଷୟ । ଏହି ନାରକୀୟ କାର୍ଯ୍ୟକୁ ବନ୍ଦ କରି ସ୍ୱର୍ଣ୍ଣ ମନ୍ଦିରର ପବିତ୍ରତା ରକ୍ଷା କରିବାପାଇଁ ସୈନ୍ୟମାନେ ପଥରେ ପ୍ରବେଶ କରିଥିବାରୁ ମନ୍ଦିର କଳଙ୍କିତ

ହୋଇଛି ବୋଲି ଶିଖ ଧର୍ମ ଗୁରୁଙ୍କ ସରକାରଙ୍କ ବିରୁଦ୍ଧରେ ଅଭିଯୋଗ ତତୋଧିକ ପରିତାପର ବିଷୟ । ସେଠାରେ ଥିବା ପୁଷ୍କରିଣୀର ଚାରିପାଖରେ ବୁଲୁଥିବା ବେଳେ ଏକ ତିନିମହଲା ବିଶିଷ୍ଟ ସୌଧର ପୁନନିର୍ମାଣ ହେଉଥିବାର ଦେଖିଲି । ଉକ୍ତ ସୌଧଟି "ଅକାଳ ତାକତ" ବୋଲି ଶୁଣିଲି । ସେଠାରେ ଶିଖ ଧର୍ମଗୁରୁ ସନ୍ଥମାନଙ୍କର ତଥା ପରିଚାଳନା ଦାୟିତ୍ୱରେ ଥିବା ନେତୃବର୍ଗଙ୍କର ବୈଠକ ବସେ ବୋଲି ଶୁଣିବାକୁ ପାଇଲି । ତହିଁର କେତେକ ଅଂଶ ଭାଙ୍ଗି ଯାଇଥିବାରୁ ତାହା ପୁନନିର୍ମାଣ ହେଉଛି । ଉକ୍ତ ବିରାଟ ପୁଷ୍କରିଣୀ ମଧ୍ୟରେ ଏକ ଛୋଟ ମନ୍ଦିର ରହିଛି ଏବଂ ସେଠାକୁ ଯିବାପାଇଁ ପାଣି ମଧ୍ୟରେ ଦୁଇପାଖେ ବାଡ଼ ରହିଥିବା ଏକ ବାଟ ମଧ ଅଛି । ଏହା ହେଉଛି ଶିଖ ଧର୍ମର ସର୍ବଶ୍ରେଷ୍ଠ ମନ୍ଦିର ଯାହାର ନାମ ହରମନ୍ଦିର ସାହେବ । ଏହି ମନ୍ଦିରର କଳସ ଓ ଚୂଡ଼ା ସୁବର୍ଣ୍ଣରେ ତିଆରି ହୋଇଥିବାରୁ ଏହାକୁ ହିଁ ସ୍ୱର୍ଣ୍ଣ ମନ୍ଦିର କୁହାଯାଏ । ଅକାଳ ତାକତ ଓ ଅନ୍ୟ କେତେକ ମନ୍ଦିରର ଗୁମ୍ବୁଜ ଗୁଡ଼ିକରେ ମଧ ସୁବର୍ଣ୍ଣ ଖଞ୍ଜା ଯାଇଛି । ପୁଷ୍କରିଣୀ ଚାରିପାଖ ମନ୍ଦିର ପ୍ରାଙ୍ଗଣ ମଧ୍ୟରେ ରହିଥିବା ସମସ୍ତ ସ୍ଥାନ ଅତି ମୂଲ୍ୟବାନ ମାର୍ବଲ ପଥରରେ ତିଆରି ହୋଇ ଅତ୍ୟନ୍ତ ଆକର୍ଷଣୀୟ ହୋଇଛି । ସବୁ ଅଞ୍ଚଳ ବୁଲିସାରିବା ପରେ ଉକ୍ତ ପୁଷ୍କରିଣୀ ମଧ୍ୟରେ ଥିବା ଛୋଟ ରାସ୍ତାଦେଇ ପ୍ରଧାନ ମନ୍ଦିର ହରମନ୍ଦିର ସାହବକୁ ଗଲୁଁ । ସେଠାରେ ଦିନରାତି ସଦାସର୍ବଦା ଭଜନ ଚାଲିଥିବାର ଦେଖିଲି । ଉକ୍ତ ଭଜନ ଅତି ମଧୁର ଓ ଆକର୍ଷଣୀୟ । ଏହା ଯେ କୌଣସି ଶ୍ରୋତାର ଭଗବତ ଚେତନା ସୃଷ୍ଟି କରିପାରିବ । ମନ୍ଦିର ମଧ୍ୟରେ ହିନ୍ଦୁମାନଙ୍କ ଭଳି କୌଣସି ଦେବ ମୂର୍ତ୍ତି ସ୍ଥାପନ କରାଯାଇ ନାହିଁ । ଶିଖ ଧର୍ମର କେତେକ ଧର୍ମ ପୁସ୍ତକ ରଖାଯାଇ ସେ ଗୁଡ଼ିକୁ ପୂଜା କରାଯାଉଛି ଓ ଯେଉଁ ଦର୍ଶକମାନେ ସେଠାକୁ ଯାଉଛନ୍ତି ସେମାନେ ଏହି ଧର୍ମପୁସ୍ତକ ଗୁଡ଼ିକୁ ସାଷ୍ଟାଙ୍ଗ ପ୍ରଣିପାତ କରୁଥିବାରୁ ଦେଖିଲୁଁ । ଆମେ ମଧ ଅନ୍ୟମାନଙ୍କ ସଙ୍ଗେ ସେଠାରେ ବସି ଭଜନ ଶୁଣିଲୁଁ ଓ ପ୍ରଣିପାତ ମଧ ହେଲୁଁ । ସେଠାରୁ ମୁଖ୍ୟ ଦ୍ୱାରକୁ ଆସୁଥିବା ସମୟରେ ଆମ ସହିତ ଯାଇଥିବା ପୋଲିସ ଅଫିସରଙ୍କୁ ଜଣେ ଶିଖ ଯୁବକ ହୋଇଥିବାରୁ ପଚାରିଲି । ଏଭଳି ଏକ ପବିତ୍ରତମ ସ୍ଥାନ, ସେଥିରେ ପୁଣି ଅହୋରାତ୍ର ଭଜନ ହେଉଥିବା ବେଳେ ଏହି ମନ୍ଦିରକୁ ଗୋଳାବାରୁଦର ଭଣ୍ଡାର କରି ରକ୍ତାକ୍ତ ଲଢ଼ାଇ କରିବା, ସର୍ବୋପରି ନିରୀହ ଲୋକଙ୍କୁ ଏହାମଧ୍ୟରେ ହତ୍ୟାକରି ସେମାନଙ୍କ ଶବ ମନ୍ଦିର ପ୍ରାଙ୍ଗଣ ମଧ୍ୟରେ ପୋତିବା କିପରି ସମ୍ଭବ ହୋଇପାରୁଛି ମୁଁ ବୁଝି ପାରୁନାହିଁ । ଉକ୍ତ ପୋଲିସ ଅଫିସର ଜଣେ ଶିଖ ହୋଇଥିବାରୁ ଅତ୍ୟନ୍ତ ଦୁଃଖକରି ମୋତେ କହିଲେ ସେମାନଙ୍କର (ଆତଙ୍କବାଦୀ) କିଛି ହେଲେ ଧର୍ମବିଶ୍ୱାସ ନାହିଁ । ସାମାନ୍ୟତମ ଧର୍ମବିଶ୍ୱାସ ଥିବା ଲୋକ କେବେହେଲେ ଏଭଳି ନିର୍ମମ କାର୍ଯ୍ୟ କରିପାରିବ ନାହିଁ । ଏହାପରେ ମୁଁ ପ୍ରବେଶ ଦ୍ୱାର ପାରିହୋଇ ଆମ ଗାଡ଼ିକୁ ଆସିଲି ଓ ଉକ୍ତ ପୋଲିସ୍ ଅଫିସରଙ୍କୁ ଧନ୍ୟବାଦ ଦେଇ ବିଦାୟ ନେଲି ।

ଏହାପରେ ଆମ ନିରାପତ୍ତାରକ୍ଷୀଙ୍କ ଗହଣରେ ଏକ ସରକାରୀ ବଡ଼ ପଶମ ଦୋକାନକୁ ଗଲୁଁ । ଅମୃତସର ଉତ୍କୃଷ୍ଟ କମ୍ବଳ ପାଇଁ ପ୍ରସିଦ୍ଧ । ଅବଶ୍ୟ ଏ ସମସ୍ତ ଲୁଧିଆନା ତିଆରି, ଉକ୍ତ କର୍ପୋରେସନ ବିଶେଷ ଭାବରେ କମ୍ବଳ ବ୍ୟବସାୟ କରନ୍ତି । ଆମେ ସମସ୍ତେ କିଛି କିଛି କମ୍ବଳ କିଣିଲୁ । ସେଠାରୁ ଅତିଥିଶାଳାକୁ ଫେରି ମଧ୍ୟାହ୍ନ ଭୋଜନ ପରେ ବିଶ୍ରାମ କରି ଅମୃତସରର ଉଡ଼ାଜାହାଜ ଷ୍ଟେସନକୁ ଗଲୁଁ । ସେଠାରୁ ଦିଲ୍ଲୀ ଫେରି ଓଡ଼ିଶା ଭବନରେ ରାତ୍ରି କଟାଇ ପରଦିନ ସକାଳ ବିମାନରେ ଭୁବନେଶ୍ୱର ଫେରିଲୁ ।

ଅମୃତସର ଛାଡ଼ିବା ପୂର୍ବରୁ ପୁଣିଥରେ ଡ଼ାକ୍ତର ହରଜିତ ସିଂଙ୍କୁ ସାକ୍ଷାତ କରି ତାଙ୍କ ପ୍ରାପ୍ୟ କଥା ପଚାରିଲି । ଏଥର ମଧ କିଛି କହିଲେ ନାହିଁ ଓ ହାତ ଯୋଡ଼ି ବିଦାୟ ଦେଲେ । ଏପରିକି ଔଷଧ ଦୋକାନରୁ ଯୋଗାଇ ଥିବା ଔଷଧ ଓ ଚଷମାର ମଧ କୌଣସି ମୂଲ୍ୟ ଗ୍ରହଣ କଲେନାହିଁ ।

## "ହରଜିତ ସିଂଙ୍କ ବ୍ୟକ୍ତିତ୍ୱ"

ହରଜିତ ସିଂ ଯେ କେବଳ ଜଣେ ଅତି ଉଚ୍ଚକୋଟୀର ଆନ୍ତର୍ଜାତିକ ଖ୍ୟାତିସଂପନ୍ନ ଚକ୍ଷୁ ଚିକିତ୍ସକ ତା ନୁହେଁ । ସେ ଜଣେ ଅତି ଅମାୟିକ ଓ ଜନପ୍ରିୟ ବ୍ୟକ୍ତି ମଧ । ସେ ମଧ ଆତଙ୍କବାଦୀଙ୍କ ଦ୍ୱାରା ଅର୍ଥ ଶୋଷଣର ଶିକାର ହୋଇଥିବାର ଶୁଣିଲି । ତାଙ୍କର ବହୁ ଅର୍ଥ ଉପାର୍ଜନ ଦେଖି ଡ଼ାକ୍ତର ସିଂ ଅତ୍ୟନ୍ତ ବ୍ୟଥିତ ହୋଇ ଅମୃତସର ଛାଡ଼ି ବମ୍ବେରେ ଏକ ଚିକିତ୍ସାଳୟ ଖୋଲି ସେଠାରେ ରହିବାର ସ୍ଥିର କଲେ । ଏହା ଦେଖି ସାଧାରଣ ଲୋକେ ଏଭଳି ଜଣେ ଖ୍ୟାତାନାମା ଚିକିତ୍ସକଙ୍କୁ ହରାଇବାକୁ ଚାହିଁଲେ ନାହିଁ । ଜନ ସାଧାରଣ ତାଙ୍କୁ ଏ କ୍ଷେତ୍ରରେ ନିରାପତ୍ତା ଯୋଗାଇବାରୁ ଆତଙ୍କବାଦୀଙ୍କ ଅର୍ଥ ଶୋଷଣରୁ ରକ୍ଷା ପାଇଲେ । ଜନସାଧାରଙ୍କ ସ୍ନେହ ଓ ସର୍ବୋପରି ଜନ୍ମ ସ୍ଥାନର ମୋହ ତାଙ୍କୁ ଅମୃତସରରେ ବାନ୍ଧି ରଖିଲା । ଅମୃତସର ଏକ ଅସୁବିଧା ଜନକ ସ୍ଥାନରେ ଅବସ୍ଥିତ ହୋଇଥିଲେ ହେଁ ପ୍ରତିଦିନ ଭାରତ ତଥା ଭାରତ ବାହାରୁ ଶହ ଶହ ଲୋକ ଚିକିତ୍ସା ପାଇଁ ତାଙ୍କ ନିକଟକୁ ଆସୁଛନ୍ତି । ବିଶିଷ୍ଟ ଲୋକଙ୍କ ପାଇଁ ସିନା ସୁରକ୍ଷାର ବ୍ୟବସ୍ଥା କରାଯାଇଛି, ମାତ୍ର ସାଧାରଣ ଲୋକଙ୍କ ପାଇଁ କୌଣସି ପ୍ରକାର ସୁରକ୍ଷାର ବ୍ୟବସ୍ଥା ନାହିଁ । ତାଙ୍କର ଉଚ୍ଚକୋଟୀର ଚିକିତ୍ସା ଓ ଉତ୍ତମ ବ୍ୟବହାର ଦ୍ୱାରା ଲୋକେ ବିଶେଷ ଭାବରେ ଆକୃଷ୍ଟ । ସେ ଅମୃତସରରେ ନ ରହି ଦିଲ୍ଲୀ ବମ୍ବେ ବା କଲିକତା ଭଳି ସ୍ଥାନରେ ରହିଥିଲେ ଆହୁରି ଅଧିକ ରୋଜଗାର

କରିପାରନ୍ତେ । ମାତ୍ର କେବଳ ଅର୍ଥୋପାର୍ଜନ ତାଙ୍କ ଜୀବନରେ ଲକ୍ଷ୍ୟ ନ ଥିବାରୁ ସେ ନିଜେ ଜନ୍ମସ୍ଥାନରେ ରହି ନିଜ ଲୋକଙ୍କ ଚିକିତ୍ସାରେ ନିଜକୁ ନିୟୋଜିତ କରିଥାନ୍ତି । ଲୋକଙ୍କୁ ଉପଯୁକ୍ତ ସେବା ଯୋଗାଇଦେବା ଜୀବନର ଲକ୍ଷ୍ୟ ହୋଇଥିବାରୁ ଅର୍ଥୋପାର୍ଜନକୁ ସେ ଗୌଣ ମନେ କରନ୍ତି ।

ଏଠାରେ ଥିବା ସମୟରେ ପଞ୍ଜାବ ବିଧାନସଭାର ଅଧ୍ୟକ୍ଷ ଶ୍ରୀଯୁକ୍ତ ସୁରଜିତ ସିଂ ସିହ୍ନା ମୋତେ ସାକ୍ଷାତ କରି ମୋର ଅପରେସନ୍ ତଥା ରହଣୀର ସୁବିଧା ଅସୁବିଧା କଥା ବୁଝିଥିଲେ । ଶ୍ରୀଯୁକ୍ତ ସୁରଜିତ୍ ସିଂ ସିହ୍ନାଙ୍କ ସହିତ ମୋର ବହୁଦିନରୁ ଅତ୍ୟନ୍ତ ଆତ୍ମୀୟତା ରହିଛି । ସମ୍ମିଳନୀ ମାନଙ୍କରେ ସବୁଦିନ ମୋର ତାଙ୍କ ସହିତ ସାକ୍ଷାତ ହୁଏ ଓ ଆମେ ଦୁହେଁ ସବୁ ସମ୍ମିଳନୀରେ ପାଖେ ପାଖେ ବସୁ । ପଞ୍ଜାବର ବିଧାନସଭା ଭାଙ୍ଗି ଯାଇଥିଲେ ମଧ୍ୟ ନିୟମ ଅନୁଯାୟୀ ସାନି ନିର୍ବାଚନ ପର୍ଯ୍ୟନ୍ତ ସେ ଅଧ୍ୟକ୍ଷ ଭାବରେ ରହି ଆସିଛନ୍ତି ।

## "ଅମୃତସରରେ ମୋର ୨ୟ ଅସ୍ତ୍ରୋପଚାର"

ମୋ ଆଖିର ପ୍ରଥମ ଅପରେସନ ହେବାର ଛଅ ସପ୍ତାହ ପରେ ଅନ୍ୟ ଆଖିଟିର ଅପରେସନ କରାଇବା ପାଇଁ ଡାକ୍ତରଙ୍କ ପରାମର୍ଶ ଥିଲା । କାଳେ କୌଣସି ଅଘଟଣ ଘଟିପାରେ ସେଥିପାଇଁ କୌଣସି ଚିକିତ୍ସକ ଏକ ସଙ୍ଗେ ଦୁଇଟି ଆଖିର ଅପରେସନ କରନ୍ତି ନାହିଁ । ତେଣୁ ପ୍ରଥମେ ଅସ୍ତ୍ରୋପଚାର ପରେ ଛଅ ସପ୍ତାହ ବ୍ୟବଧାନ ରଖି ପୁଣି ଅନ୍ୟ ଆଖିଟିର ଚିକିତ୍ସା ପାଇଁ ଯିବାକୁ ପ୍ରସ୍ତୁତ ହେଲି । ୧୯୮୯ ଫେବୃୟାରୀ ମାସରେ ବିଧାନସଭା ବସୁଥିବାର ଜାଣି ତା ପୂର୍ବରୁ ଅପରେସନ କରାଇବାର ସ୍ଥିରକଲି । ଅମୃତସର ସହିତ ଯୋଗାଯୋଗ କରି ଫେବୃୟାରୀ ପହିଲା ତାରିଖରେ ଯିବାର ସ୍ଥିର କଲି । ପ୍ରଥମ ଅପରେସନ ବେଳେ ଡ଼ାକ୍ତର ସିଂ ମୋ ଠାରୁ କୌଣସି ପାରିଶ୍ରମିକ ନ ନେବାରୁ ତାଙ୍କୁ ଗୋଟିଏ କିଛି ଭଲ ଉପହାର ଦେବାର ସ୍ଥିର କଲି । ମୋ ବିଧାନସଭା କର୍ମଚାରୀଙ୍କୁ କଟକ ପଠାଇ ସୁନ୍ଦର ତାରକସୀ କାମର ଏକ ବୋଇତ ନିର୍ମାଣ କରାଇ କାଚ ଫ୍ରେମର ସଜାଇ ଯିବାବେଳେ ମୋ ସହିତ ନେଇଗଲି । ପୂର୍ବଥର ମୋ ସହିତ ଯାଇଥିବା କର୍ମଚାରୀଙ୍କୁ ସଙ୍ଗରେ ନେଇ ପହିଲା ତାରିଖରେ ଦିଲ୍ଲୀ ଯାତ୍ରା କଲି । ଥରେ ଅମୃତସର ଯାଇ ସେଠାରେ ଗୋଟିଏ ସପ୍ତାହ କଟାଇ ବିଭିନ୍ନ ସ୍ଥାନ ପରିଦର୍ଶନ କଲାପରେ ପୂର୍ବପରି ଏଥରକୁ ଆଉ ଆତଙ୍କବାଦର ଭୟ ନଥିଲା ।

ଫେବୃୟାରୀ ୨ ତାରିଖଦିନ ଅମୃତସର ବିମାନ ବନ୍ଦରରେ ଅବତରଣ କଲାପରେ ସେଠାକାର ପ୍ରଟୋକଲ ଅଫିସର ତଥା ନିରାପତ୍ତା ରକ୍ଷୀଙ୍କ ସହ ଅତିଥିଶାଳାକୁ ଗଲି । ଅତିଥିଶାଳାକୁ ଖବର ଦେଇ ପୂର୍ବଭଳି ସଙ୍ଗେ ସଙ୍ଗେ ପରୀକ୍ଷା କରାଇନେବା କଥା ପଚାରିଲାରୁ ଜାଣିବାକୁ ପାଇଲି ଯେ ସେଦିନ ଡ଼ାକ୍ତରଙ୍କ ଅସୁସ୍ଥତା ଯୋଗୁ ଚିକିତ୍ସାଳୟକୁ ଆସି ନାହାନ୍ତି ତେଣୁ ତହିଁ ପରଦିନ ସକାଳୁ ଯିବାକୁ ଡ଼ାକ୍ତରଙ୍କ ଅନ୍ୟ କର୍ମଚାରୀମାନେ ପରାମର୍ଶ ଦେଲେ । ତେଣୁ ଆମେ ସେଦିନ ସେଠାରେ ଅପେକ୍ଷା କରି ରହିଲୁଁ । ମାତ୍ର ସେଦିନ ସଂଧ୍ୟା ବେଳକୁ ଡ଼ାକ୍ତର ହରଜିତ ସିଂ ଓ ତାଙ୍କ ସ୍ତ୍ରୀ ଆସି ଅତିଥିଶାଳାରେ ମୋତେ ଦେଖାକଲେ ଏବଂ ଅସ୍ତ୍ରୋପଚାର କେତେକ ଅନିବାର୍ଯ୍ୟ କାରଣ ହେତୁ ଗୋଟିଏ ଦିନ ବିଳମ୍ବ ହେବ ବୋଲି କହି ଦୁଃଖ ପ୍ରକାଶ କଲେ । ତାଙ୍କର ଏପରି ବ୍ୟବହାର ଦେଖି ମୁଁ ହତବାକ ହୋଇ ପଡ଼ିଲି । ଏହି ଅପରେସନ ପାଇଁ ସେ ମୋଠାରୁ କୌଣସି ମୂଲ୍ୟ ନେଲେ ନାହିଁ ଏପରିକି ଯୋଗାଇଥିବା ଔଷଧ ପତ୍ରର ମୂଲ୍ୟ ମଧ୍ୟ ନେବାକୁ ମନାକଲେ । ଜଣେ ଆନ୍ତର୍ଜାତିକ ଖ୍ୟାତି ସଂପନ୍ନ ଚିକିତ୍ସକ, ମୁଁ ଗଲାବେଳକୁ ନିଜର ଅସୁସ୍ଥତା ପାଇଁ ଅନୁପସ୍ଥିତ ଥିଲେ ତଥାପି ମୋ ଯିବାର ଖବର ପାଇ ସେ ଓ ତାଙ୍କ ସ୍ତ୍ରୀ ମୋ ନିକଟକୁ ଆସି ଅସ୍ତ୍ରୋପଚାର ହେବାର ଗୋଟିଏ ଦିନ ବିଳମ୍ବ ପାଇଁ ଦୁଃଖ ପ୍ରକାଶ କରୁଛନ୍ତି । ତାଙ୍କର ଏପରି ଅମାୟିକ ବ୍ୟବହାରରେ ମୁଁ ଅଭିଭୂତ ହୋଇପଡ଼ିଲି । ନିଜର ପାରିଶ୍ରମିକ ପାଇଁ ଯଥେଷ୍ଟ ଅର୍ଥ ନେଉଥିବା ଜଣେ ଡ଼ାକ୍ତର ମଧ୍ୟ ଏପରି କରିବନାହିଁ ।

ତା ୦୩-୦୨-୮୯ରିଖ ଦିନ ଗୋଟାଏ ବେଳେ ପୂର୍ବଭଳି ମୋର ଅନ୍ୟ ଆଖିଟିର ମଧ୍ୟ ଅସ୍ତ୍ରୋପଚାର ହେଲା ଓ ଅପରେସନ ପରେ ମୋତେ ଅତିଥିଶାଳାକୁ ପଠାଇଦେଲେ । ପୁଣି ସଂଧ୍ୟାବେଳକୁ ଡ଼ାକ୍ତର ସିଂ ଅତିଥିଶାଳାକୁ ଆସି ମୋ ଆଖିରେ ବନ୍ଧା ଯାଇଥିବା ପଟି ଖୋଲିଦେଲେ ଓ ପରୀକ୍ଷା କରି ଆଖି ଭଲ ଅଛି ବୋଲି କହିଲେ । ତହିଁ ପରଦିନ ସକାଳେ ଚିକିତ୍ସାଳୟକୁ ଯାଇ ଆଖି ପରୀକ୍ଷା ମଧ୍ୟ କରାଇଲି । ସେଦିନ ସଂଧ୍ୟାବେଳକୁ ତାଙ୍କ ଘରକୁ ଯାଇ ସଙ୍ଗରେ ନେଇଥିବା ତାରକସି କାମର ବୋଇତଟି ତାଙ୍କୁ ଉପହାରଦେଲି । ବୋଇତଟି ଦେଖି ସେ ଓ ତାଙ୍କ ସ୍ତ୍ରୀ ଅତ୍ୟନ୍ତ ଖୁସି ହେଲେ । ତାଙ୍କୁ ଉପହାର ଦେଉଥିବା ବେଳର ଫଟୋ ମଧ୍ୟ ଉଠାଇଲେ । ଏଥରକ ରହଣୀକାଳ ମଧ୍ୟରେ ବି ପଞ୍ଜାବ ବିଧାନସଭାର ଅଧ୍ୟକ୍ଷ ମୋ ପାଖକୁ ଆସିଥିଲେ ।

## "ଭାରତର ବିଧାନସଭା ଅଧ୍ୟକ୍ଷଙ୍କ ସମ୍ମିଳନୀ"

ସାଧାରଣତଃ ବିଧାନସଭା ଅଧ୍ୟକ୍ଷମାନଙ୍କର ସମ୍ମିଳନୀ ବର୍ଷକେ ଥରେ ମାତ୍ର ସେପ୍ଟେମ୍ବର ବା ଅକ୍ଟୋବର ମାସ

ଥାଡ଼କୁ ହୋଇଥାଏ । ପୂର୍ବବର୍ଷର ସମ୍ମିଳନୀ ହେଉଥିବା ବେଳେ ପରବର୍ତ୍ତୀ ଅଧିବେଶନ ଯେଉଁ ରାଜ୍ୟରେ ହେବ ସେଥିପାଇଁ ସେହି ସଂପୃକ୍ତ ରାଜ୍ୟ ତରଫରୁ ନିମନ୍ତ୍ରଣ କରାଯାଇଥାଏ । ତଦନୁଯାୟୀ ବର୍ଷକ ଆଗରୁ ତାହା ସ୍ଥିର କରାଯାଇଥାଏ । ୧୯୮୮ରେ ଆସାମର ମୁଖ୍ୟମନ୍ତ୍ରୀଙ୍କ ନିମନ୍ତ୍ରଣ କ୍ରମେ ଗୁଆହାଟୀରେ ଏହି ସମ୍ମିଳନୀ ହେବା କଥା । ମାତ୍ର ସେବର୍ଷ ସେତେବେଳକୁ ଆସାମ ରାଜ୍ୟରେ ପ୍ରବଳ ବନ୍ୟା ହେବା ଯୋଗୁଁ ଉକ୍ତ ଅଧିବେଶନ ପରବର୍ତ୍ତୀ ୧୯୮୯ ଜାନୁୟାରୀ ମାସକୁ ଘୁଞ୍ଚାଇ ଦିଆଯାଇଥିଲା । ୧୯୮୯ ମସିହାର ଅଧିବେଶନଟି ଠିକ୍ ପୂର୍ବ ବର୍ଷମାନଙ୍କ ପରି ସେପ୍ଟେମ୍ବର ମାସକୁ ସ୍ଥିର କରାଯାଇଥିଲା । ତେଣୁ ଏବର୍ଷ ଏହିପରି ଦୁଇଟି ଅଧିବେଶନ ଗୋଟିଏ ବର୍ଷର ଆରମ୍ଭରେ ଭାରତର ପୂର୍ବ ସୀମାରେ ଓ ଅନ୍ୟଟି ବର୍ଷର ଶେଷଭାଗରେ ଭାରତର ପ୍ରାୟ ପଶ୍ଚିମ ସୀମାରେ ଯଥାକ୍ରମେ ଗୁଆହାଟୀ ଓ ଭୋପାଳରେ ହେବାର ସ୍ଥିର ହୋଇଥିଲା ।

## "ଜାଲହାପଡ଼"

ଗୁଆହାଟୀଠାରେ ହେବାକୁ ଥିବା ସମ୍ମିଳନୀକୁ ଯିବା ବାଟରେ ପଶ୍ଚିମବଙ୍ଗ ଦେଇ ଯିବାକୁ ହେବ । ତେଣୁ ବାଟରେ ଜାଲହାପଡ଼ାର ବନ୍ୟଜନ୍ତୁ ସଂରକ୍ଷଣ ବ୍ୟବସ୍ଥା ଦେଖି ସେଠାରୁ ଗୁଆହାଟୀ ଯିବାର ସ୍ଥିରକରି ଆମର ଗସ୍ତ କାର୍ଯ୍ୟକ୍ରମ ତଥା ରହଣୀ ସଂପର୍କରେ ପଶ୍ଚିମବଙ୍ଗ ସରକାରଙ୍କୁ ଆଗରୁ ଜଣାଇ ଦିଆଗଲା । ତେଣୁଁ ସମ୍ମିଳନୀର ତିନିଦିନ ପୂର୍ବରୁ ଆମେ ବିମାନ ଯୋଗେ ଜାନୁୟାରୀ ୧୬ତାରିଖ ଦିନ କଲିକତାରୁ ବିମାନଯୋଗେ ବାଗଡେମରା ଗଲୁଁ । ମୋ ସଙ୍ଗରେ ମୋ ସ୍ତ୍ରୀ ମୋର ପ୍ରାଇଭେଟ୍ ସେକ୍ରେଟେରୀ ଓ ଅନ୍ୟ ଜଣେ ଅଫିସ କର୍ମଚାରୀ ମଧ୍ୟ ଥିଲେ । ବାଗଡେମରାଠାରେ ପଶ୍ଚିମବଙ୍ଗ ସରକାରଙ୍କ ତରଫରୁ ଜଣେ ଅଫିସର ସେଠାରେ ଆମର ରହଣୀ ପ୍ରଭୃତିର ବ୍ୟବସ୍ଥା କରିଥାଆନ୍ତି । ସେଠାରେ ମଧ୍ୟାହ୍ନ ଭୋଜନ ପରେ ବିଶ୍ରାମ ନେଇ ଅପରାହ୍ନରେ ଜାଲହାପଡ଼ା ଯାତ୍ରା କଲୁ । ବାଗାଡେମରା ଏକ ସାଧାରଣ ବିମାନଘାଟି । ଭାରତର ପୂର୍ବାଞ୍ଚଳ ଆସାମ ଓ ଅନ୍ୟ ସ୍ଥାନମାନଙ୍କୁ ଦିଲ୍ଲୀ ବା ଉତ୍ତର ଭାରତର କୌଣସି ସ୍ଥାନରୁ ଆସୁଥିବା ବିମାନ ଗୁଡ଼ିକ କଲିକତା ନ ଯାଇ ସିଧା ବାଗଡେମରା ଦେଇ ଗୁଆହାଟୀ ବା ଅନ୍ୟ ସ୍ଥାନମାନଙ୍କୁ ଯାଏ । ଏଠାରେ ଏତଦ୍ ବ୍ୟତୀତ ଏକ ପ୍ରତିରକ୍ଷା ଟ୍ରେନିଂ କେନ୍ଦ୍ର ଓ ପ୍ରତିରକ୍ଷା ବିମାନଘାଟି ମଧ୍ୟ ରହିଛି । ବାଗଡେମରା ଏକ ବ୍ୟବସାୟ କେନ୍ଦ୍ର ମଧ୍ୟ । ସେଠାରୁ ଜାଲହାପଡ଼ା ଯିବା ବାଟରେ ଦାର୍ଜିଲିଂ ଜିଲ୍ଲାର ଏକ ସବ୍‌ଡିଭିଜନର ପ୍ରଧାନ କାର୍ଯ୍ୟାଳୟ ଜଲପାଇଗୁଡ଼ି ପଡ଼େ । ଏହା ବାଗଡେମରାର ଅତି ନିକଟବର୍ତ୍ତୀ ସ୍ଥାନ । ବାଟରେ ଜାଲହାପଡା ଯିବାବେଳେ ପଥର ଉଭୟ ପାର୍ଶ୍ୱରେ ଏକ ବିସ୍ତୀର୍ଣ୍ଣ ଅଞ୍ଚଳରେ ବହୁ ଚା ଚାଷ ହୋଇଥିବାର ଦେଖିଲୁ । ଆମେ ଦାର୍ଜିଲିଂ ଛକ ଦେଇ ଜାଲଦାପଡ଼ା ଗଲୁ ମାତ୍ର ଦାର୍ଜିଲିଂ ଯିବାର ଆମର କାର୍ଯ୍ୟକ୍ରମ ନ ଥିବାରୁ ଯିବାର ଇଚ୍ଛା ଥିଲେ ମଧ୍ୟ ସେଠାକୁ ଯିବାର ସୁବିଧା ମିଳିଲା ନାହିଁ । ବାଗଡେମରାରୁ ଜାଲହାପଡ଼ା ୬୦ କି.ମି. ବାଟ । ମୋ ଗାଡ଼ିରେ ଜଣେ ନିରାପତ୍ତା ରକ୍ଷୀ ପୋଲିସ କର୍ମଚାରୀ ଥିଲେ ଓ ଆମ ଗାଡ଼ି ପଛରେ ଏକ ପୋଲିସ ଜିପରେ ବନ୍ଧୁକଧାରୀ ପୋଲିସ ମଧ୍ୟ ଯାଉଥାଆନ୍ତି । ପ୍ରାୟ ସଂଧ୍ୟା ୬ଟା ପରେ ଜାଲହାପଡ଼ାରେ ପହଞ୍ଚିଲୁ । ଜଙ୍ଗଲ ମଧ୍ୟରେ ଥିବା ଏକ ଛୋଟ ପାହାଡ଼ ଉପରେ ଜଙ୍ଗଲ ବିଭାଗ ଅଧୀନରେ କାଠରେ ତିଆରି ଏକ ସୁନ୍ଦର ଡ଼ାକବଙ୍ଗଳା ଚାରିପାଖରେ ପରିବେଶ ଅତି ଆକର୍ଷଣୀୟ ଓ ଆନନ୍ଦ ଦାୟକ । ଆଗରୁ ପଶ୍ଚିମବଙ୍ଗ ସରକାରଙ୍କୁ ମୋର ସେଠାରେ ରହିବା ବିଷୟ ଜଣାଇ ଦିଆଯାଇଥିବାରୁ ଆମକୁ ରାଜ୍ୟ ସରକାରଙ୍କ ଅତିଥି ଭାବରେ ସେଠାରେ ଅବସ୍ଥାନ କରାଇଲେ । ମୟୂରଭଞ୍ଜ ଜିଲ୍ଲାର ଶିମିଳିପାଳ ବ୍ୟାଘ୍ର ସଂରକ୍ଷଣ ଯୋଜନାରେ ମଧ୍ୟ ଏହିପରି କାଠ ତିଆରି କେତେକ ଡ଼ାକବଙ୍ଗଳା ରହିଛି କିନ୍ତୁ ଏହି ଡ଼ାକବଙ୍ଗଳାଟି ସେଠାକାର ଡ଼ାକବଙ୍ଗଳା ତୁଳନାରେ ବଡ଼ । ଜାନୁୟାରୀ ମାସ ହୋଇଥିବାରୁ ପୁଣି ଏହା ଏକ ପାର୍ବତ୍ୟ ଅଞ୍ଚଳ ହେତୁ ଏଠାରେ ବେଶ ଥଣ୍ଡା ପଡୁଥାଏ । ଥଣ୍ଡା ପାଇଁ ଆମେ ଆବଶ୍ୟକୀୟ ଶୀତବସ୍ତ୍ର ସଙ୍ଗରେ ନେଇଥାଉଁ । ଆମେ ସମସ୍ତେ ସେଠାରେ ରାତ୍ରି ଯାପନ କଲୁ । ଆମ ବ୍ୟତୀତ ଡ଼ାକବଙ୍ଗଳାରେ ସେଦିନ ପଶ୍ଚିମବଙ୍ଗର ମଧ୍ୟ କେତେକ ପରିଦର୍ଶକ ଥିଲେ ।

ତହିଁପରଦିନ ସକାଳ ୯ଟାପରେ ଆମେ ସେଠାକାର ଜୀବଜନ୍ତୁ ସବୁ ଦେଖିବା କଥା । ସେହି ବଙ୍ଗଳାରେ ରହିଥିବା କେତେକ ବଙ୍ଗାଳୀ ପରିଦର୍ଶକ ଭୋର ସକାଳେ ବୁଲିଯାଇ ବାଘ ଦେଖିଲେ ବୋଲି କହୁଥିବାର ଶୁଣିଲୁଁ । ବାଘ ଦେଖିବାକୁ ହେଲେ ଭୋର ସକାଳ ହିଁ ପ୍ରକୃଷ୍ଟ ସମୟ । ମାତ୍ର ଅତ୍ୟଧିକ ଥଣ୍ଡା ଯୋଗୁଁ ଭୋର ସକାଳ ଆମ ପକ୍ଷରେ ଯିବା ସମ୍ଭବପର ହେଲାନାହିଁ । ଏହି ଜଙ୍ଗଲଟି ଅଭୟାରଣ୍ୟ ହୋଇଥିବାରୁ ବିଭିନ୍ନ ସ୍ଥାନରେ ଜୀବଜନ୍ତୁ ସବୁ ଦେଖାଯିବା ସ୍ୱାଭାବିକ । ସକାଳ ସାଢ଼େ ନ'ଟା ବେଳକୁ ଡ଼ାକବଙ୍ଗଳାର ଅନତି ଦୂରରେ ଥିବା ସେଠାକାର ବନ ବିଭାଗ ତରଫରୁ ରଖାଯାଇଥିବା ଦୁଇଟି ହାତରେ ଆମେ ସମସ୍ତେ ବୁଲି ବାହାରିଲୁ । ସେଠା ଦାୟିତ୍ୱରେ ଥିବା ରେଞ୍ଜ ଅଫିସର ମୋ ପାଇଁ ଥିବା ହାତୀରେ ନିରାପତ୍ତା ଦୃଷ୍ଟିରୁ ଏକ ବନ୍ଧୁକ ଧରି ବସିଲେ । କିଛି ଦୂର ଆମେ ଭଲ ରାସ୍ତାରେ ଗଲାପରେ ଏକ ସନ୍ତସନ୍ତିଆ ସ୍ଥାନରେ ପହଞ୍ଚିଲୁ । ସେଠାରେ ରାସ୍ତା ନଥାଏ ଗଛ ଡ଼ାଳ ଓ ଲତା ମଧ୍ୟ ଦେଇଗଲୁଁ । ଅନତି ଦୂରରେ ଦୁଇଟି ଗଣ୍ଡା ଗୁଡ଼ିକ ଦେଖିପାରିଲୁ । ପ୍ରତିଦିନ

ପରିଦର୍ଶକମାନେ ଏହିପରି ହାତୀ ପିଠିରେ ବସି ଯାଉଥିବାରୁ ଗଣ୍ଡାଗୁଡ଼ିକ ମଧ୍ୟ ଅଭ୍ୟସ୍ତ ହୋଇଯାଇଥାନ୍ତି ଓ ନିର୍ଭୟ ଚରାବୁଲା କରୁଥାଆନ୍ତି । ଏହିଭଳି ୨୭ଟି ଗଣ୍ଡା ସେହି ଜାତୀୟ ଉଦ୍ୟାନରେ ଥିବା କଥା ଆମକୁ ଉକ୍ତ ରେଞ୍ଜ ଅଫିସର କହିଲେ । ଏତଦ୍ ବ୍ୟତୀତ ସେହି ପ୍ରକଳ୍ପରେ ଅରଣା ମଇଷି, ବାଘ, ହରିଣ ମୟୂର ପ୍ରଭୃତି ଜନ୍ତୁ ସେଠାରେ ଥିବା କଥା ଜାଣିଲୁଁ । ତାପରେ ସେଠାରୁ ଫେରି ହାତୀରୁ ଓହ୍ଲାଇ କାରଯୋଗେ ବିଭିନ୍ନ ଅଂଚଳ ବୁଲିଗଲୁ । ବାଟରେ ଉକ୍ତ ପ୍ରକଳ୍ପ ଅଧୀନରେ ଏକ ଚିଡ଼ିଆଖାନା ମଧ୍ୟ ଥିବାର ଦେଖିଲୁଁ । ତାପରେ ସେଠାରେ ବିଭିନ୍ନ ଜନ୍ତୁଙ୍କ ନାମାନୁସାରେ ନାମିତ ଏକ ଅନୁଷ୍ଠାନ ଅଛି । ସେଠାରେ ବିଭିନ୍ନ ଜନ୍ତୁଙ୍କ ଫଟୋଚିତ୍ର ଏବଂ ହାତୀ ଓ ଗଣ୍ଡାର ସଂରକ୍ଷିତ ଗୋଡ଼ ରଖାଯାଇଛି । ଗୋଟିଏ ଛୋଟ ଗଣ୍ଡାଛୁଆ ମରିଗଲା ପରେ ତା ଦେହରୁ ହାଡ଼ ଓ ମାଂସ କାଢ଼ିନେଇ ଦେହ ମଧ୍ୟରେ ରାସାୟନିକ ପ୍ରଣାଳୀରେ ଅନ୍ୟ ଜିନିଷ ପୂରାଇ ବାହାରକୁ ଜୀବନ୍ତ ଦେଖାଗଲା ଭଳି ସୁରକ୍ଷିତ କରାଯାଇଅଛି । ଏହି ପ୍ରକଳ୍ପର ଚାରିପାଖ ବୁଲି ଆସିବାପାଇଁ ୧୬୦ କି.ମି. ଦୈର୍ଘ୍ୟର ଏକ ସଡ଼କ ପଥ ରହିଛି । ତହିଁର କିଛି ଅଂଶ ଆମେ ବୁଲି ଦେଖିଲୁଁ । ଏହି ପ୍ରକଳ୍ପଟି ଅତ୍ୟନ୍ତ ଛୋଟ ଏବଂ ଆମ ଶିମିଳିପାଳ ତୁଳନାରେ ଅତି ନଗଣ୍ୟ । ଏହା ସତ୍ତ୍ୱେ ବି ଏହା ଅତି ସୁନ୍ଦର ଓ ଲୋକଙ୍କୁ ଆକର୍ଷଣ କଲାଭଳି ସୁରକ୍ଷିତ ହୋଇଅଛି । ଜଙ୍ଗଲ ମଧ୍ୟରେ ପରିଦର୍ଶକମାନେ ଅବସ୍ଥାନ କରି ଏହାର ସୌନ୍ଦର୍ଯ୍ୟ ଉପଭୋଗ କରିବା ପାଇଁ ବିଭିନ୍ନ ସ୍ଥାନରେ ଡ଼ାକବଙ୍ଗଳାମାନ ରହିଅଛି ଓ ଦର୍ଶକମାନଙ୍କର ବୁଲାବୁଲି ପାଇଁ ହାତୀ, କାର ଓ ଜିପ ମାନ ରଖାଯାଇଅଛି । ତେଣୁ ଜାଲହାପଡା ପରିଦର୍ଶନରେ ଯାଉଥିବା ବ୍ୟକ୍ତିମାନଙ୍କ ପାଇଁ ସେଠାରେ ସୁବିଧାରେ ରହି ଜୀବଜନ୍ତୁଙ୍କୁ ଭଲ ଭାବରେ ଦେଖିପାରିବାର ସମସ୍ତ ସୁବିଧା ଥିବା ଦୃଷ୍ଟିରୁ ପ୍ରକଳ୍ପଟି ଛୋଟ ହୋଇଥିଲେ ମଧ୍ୟ ଏହା ଲାଭଜନକ ଓ ପରିଚାଳନା କ୍ଷେତ୍ରରେ ସ୍ୱାବଲମ୍ବୀ ହୋଇଥିବାର ଜାଣିଲୁ । ଦାର୍ଜିଲିଂ ବନ୍ୟଜନ୍ତୁ ଡ଼ିଭିଜନ ମଧ୍ୟରେ ଏହା ଏକ ପ୍ରଧାନ ସବଡ଼ିଭିଜନ ଭାବେ ପରିଗଣିତ ।

ଆମ ଶିମିଳିପାଳର ତିନିହଜାର ବର୍ଗମାଇଲ ଘନ ଜଙ୍ଗଲ ମେଘାସନ ଭଳି ଉଚ୍ଚଶୃଙ୍ଗ, ବରେଇପାଣି ଓ ଜୋରନ୍ଦା ଭଳି ଅତି ମନୋରମ ଜଳପ୍ରପାତ ଏବଂ ଅତୁଳନୀୟ ପ୍ରାକୃତିକ ସଂପଦ ସାଙ୍ଗକୁ ଅସୁମାରି ବନ୍ୟଜନ୍ତୁ, ମହାବଳ ତଥା ଅନ୍ୟ ଜାତୀୟ ବ୍ୟାଘ୍ର, ଅସଂଖ୍ୟ ହରିଣ, ମିରିଗ, ବରାହ, ଜଳିଆ କୁକୁର, ପଲପଲ ହାତୀ, ବହୁଜାତିର ପକ୍ଷୀ ଏପରିକି ଶାରୀପରି କେତେକ ଅସାଧାରଣ ପକ୍ଷୀ ଅଜଗରଠାରୁ ଆରମ୍ଭକରି ବହୁ ଶ୍ରେଣୀର ସରିସୃପ, ବଣବିରାଡ଼ି, ବଣକୁକୁଡ଼ା ପ୍ରଭୃତି ଭରପୂର ହୋଇ ରହିଛି । ଏତଦ୍ ବ୍ୟତୀତ ଯେତେ ଶ୍ରେଣୀର ବୃକ୍ଷଲତା ଓ ଔଷଧି ବୃକ୍ଷ ଶିମିଳିପାଳରେ ରହିଛି ତାର କିୟଦଂଶ ଓଡ଼ିଶା କାହିଁକି ସମଗ୍ର ଭାରତରେ ମଧ୍ୟ ବିରଳ କହିଲେ ଅତ୍ୟୁକ୍ତି ହେବନାହିଁ । ଏହାଛଡ଼ା ବନ୍ୟଜାତ ଦ୍ରବ୍ୟ ଝୁଣା, ପାଳୁଅ ମହୁ, ଅଠା, ଶାଳମଞ୍ଜି ଓ ମହୁଆ ପ୍ରଭୃତି ପର୍ଯ୍ୟାପ୍ତ ପରିମାଣରେ ଏଠାରେ ରହିଛି । ଯେ ଥରେ ମେଘାସନ ଶୃଙ୍ଗର ଶିଖରକୁ ଯିବ ସେ ଏଠାକାର ପ୍ରାକୃତିକ ସୌନ୍ଦର୍ଯ୍ୟରେ ଆମ୍ବହରା ହୋଇପଡ଼ିବ । ସର୍ବୋପରି ଶିମିଳିପାଳର ସ୍ଥିତି ଓଡ଼ିଶା, ବିହାର ଓ ପଶ୍ଚିମବଙ୍ଗ ପ୍ରଭୃତି ରାଜ୍ୟର ଏକ ବିରାଟ ଅଞ୍ଚଳର ଯେପରି ପରିବେଶ ସୁରକ୍ଷା କରିପାରିଛି ଏହାର କୌଣସି ତୁଳନା ନାହିଁ । ଏଭଳି ଏକ ମହାନ ପ୍ରାକୃତିକ ବିଭବର ଅଧିକାରୀ ହୋଇ ତାର ଉନ୍ନତି କରିବା ତ ଦୂରର କଥା ତାହାକୁ ଅନ୍ତତଃ ଜାତିର ଭବିଷ୍ୟତ ବଂଶଧରଙ୍କ ପାଇଁ ସୁରକ୍ଷିତ କରି ନ ପାରିବ ଆମ ପକ୍ଷରେ ଅତ୍ୟନ୍ତ କ୍ଷୋଭର ବିଷୟ ।

ଭୁବନେଶ୍ୱର ନିକଟସ୍ଥ ନନ୍ଦନ କାନନର ସର୍ବବିଧ ଉନ୍ନତି ପାଇଁ ରାଜ୍ୟ ଓ କେନ୍ଦ୍ର ସରକାର ବର୍ଷକୁ ଯେତେ ଅନୁଦାନ ଦେଉଛନ୍ତି ତାର ଶହେଭାଗରୁ ଭାଗେ ଅଂଶ ଯଦି ଶିମିଳିପାଳକୁ ମିଳନ୍ତା ସେଥିରେ ଏହାର ବହୁବିଧ ଉନ୍ନତି ସାଧିତ ହୋଇପାରନ୍ତା । ଶିମିଳିପାଳ ହେଉଛି ପ୍ରକୃତିର ଏକ ମହାନ ଦାନ । ନନ୍ଦନ କାନନର ପ୍ରାକୃତିକ ପରିବେଶ ସୃଷ୍ଟି କରାଯାଇ ତାକୁ ଆକର୍ଷଣୀୟ କରାଯାଇଛି । ଅତ୍ୟନ୍ତ ଦୁର୍ଭାଗ୍ୟର ବିଷୟ ଯେ ଶିମିଳିପାଳ ଓଡ଼ିଶାର ଏକ ପର୍ବତନ ଗଡ଼ଜାତ ଅଞ୍ଚଳରେ ଅବସ୍ଥିତ ତେଣୁ ଏହି ମହାନ ପ୍ରାକୃତିକ ସଂପଦର ମୂଲ୍ୟ କେହି ହେଲେ ଆଜି ପର୍ଯ୍ୟନ୍ତ ବୁଝିଲେ ନାହିଁ । ଭାରତର ଅନ୍ୟ କୌଣସି ଅଞ୍ଚଳରେ ଏହା ଥିଲେ ଏହାର ଉପଯୁକ୍ତ ରକ୍ଷଣାବେକ୍ଷଣ ଅତି ଉତ୍ସାହର ସହିତ ହୋଇ ପାରିଥାଆନ୍ତା ।

ଜାଲହାପଡ଼ାରେ ଥିବା ଏହି ପ୍ରକଳ୍ପଟିର ପରିଚାଳନା ପାଇଁ ପଶ୍ଚିମବଙ୍ଗ ସରକାରଙ୍କ ତରଫରୁ ସରକାରୀ ଓ ବେସରକାରୀ ବ୍ୟକ୍ତିଙ୍କୁ ନେଇ ଏକ ପରିଚାଳନା କମିଟି ଗଠିତ ହୋଇଅଛି । ଉକ୍ତ ପରିଚାଳନା କମିଟି ପକ୍ଷରୁ ପ୍ରକଳ୍ପ ସଂଲଗ୍ନ ଜନବସତି ଗୁଡ଼ିକର ଲୋକଙ୍କ ମଧ୍ୟରେ ଜଙ୍ଗଲ ଓ ଜଙ୍ଗଲ ମଧ୍ୟରେ ଥିବା ଜୀବଜନ୍ତୁ ଗୁଡ଼ିକର ସୁରକ୍ଷା ପାଇଁ ଚେତନା ସୃଷ୍ଟି କରାଯାଇଛି । ଏଠାରେ ଜୀବଜନ୍ତୁ ଗୁଡ଼ିକ ନିକଟସ୍ଥ ଜନବସତି ଗୁଡ଼ିକର ଫସଲ, ଗୃହପାଳିତ ପଶୁ ଏପରିକି ମଣିଷର ମଧ୍ୟ କ୍ଷତି ସାଧନ କଲାମାତ୍ରେ ପରିଚାଳନା କମିଟି ତହିଁର ପ୍ରତିକାର କଲା ସଙ୍ଗେ ସଙ୍ଗେ କ୍ଷତିଗ୍ରସ୍ତ ଲୋକଙ୍କର ଆବଶ୍ୟକୀୟ କ୍ଷତିପୂରଣର ବ୍ୟବସ୍ଥା ମଧ୍ୟ କରାଯାଇଥିବାର ଶୁଣିଲୁ । ଜଙ୍ଗଲ ଓ ଜୀବ ଜନ୍ତୁମାନଙ୍କର ଆବଶ୍ୟକ ସୁରକ୍ଷା ଓ ଉନ୍ନତି ପାଇଁ ରାଜ୍ୟ ସରକାର ଅକୁଣ୍ଠ ଭାବରେ ସବୁବେଳେ ଆର୍ଥିକ ସହାୟତା କରିବାରେ ଅବହେଳା କରୁ ନ ଥିବାର ଜାଣି ଅତ୍ୟନ୍ତ ଆନନ୍ଦିତ ହେଲି । ଏହି ସମସ୍ତ ଆକର୍ଷଣ ପାଇଁ ବହୁ ପରିବ୍ରାଜକ ରାଜ୍ୟ ମଧ୍ୟରୁ ତଥା ରାଜ୍ୟବାହାରୁ ଆସୁଥିବା ଯୋଗୁଁ ସେଥିରୁ ମିଳୁଥିବା ଆୟରେ ପ୍ରକଳ୍ପଟି ସ୍ୱାବଲମ୍ବୀ ହୋଇ ପାରିଛି । ସେଠାରେ ମଧ୍ୟାହ୍ନ ଭୋଜନ ସାରି ଅପରାହ୍ଣରେ ଜଲପାଇଗୁଡ଼ି ପହଞ୍ଚି ସରକାରୀ ଅତିଥିଶାଳାରେ ରାତ୍ରି ଯାପନ କଲୁଁ । ତହିଁ ପରଦିନ ସକାଳେ ସେଠାରୁ ବାଗଡ଼ୋଗରା ବିମାନଘାଟି ପହୁଞ୍ଚି ସେଠାରୁ ଗୁଆହାଟି ଯାତ୍ରା କଲୁଁ ।

## ''ଗୁଆହାଟି (ଦାସପୁର)''

ପ୍ରାୟ ଏକ ଘଣ୍ଟା ବିମାନଯାତ୍ରା ପରେ ଆମେ ଗୁଆହାଟି ବିମାନ ବନ୍ଦରରେ ଅବତରଣ କଲୁଁ । ଉକ୍ତ ଉଡ଼ାଜାହାଜରେ ଅନ୍ୟ କେତେକ ବିଧାନସଭା ଅଧ୍ୟକ୍ଷ ମଧ୍ୟ ଆମ ସହିତ ଅବତରଣ କଲେ । ଆମେ ଅବତରଣ କଲାପରେ ଅଭ୍ୟର୍ଥନା କମିଟିର ସଭ୍ୟଗଣ ଓ ଆସାମ ବିଧାନସଭା ଅଧ୍ୟକ୍ଷ ଆମ ସମସ୍ତଙ୍କୁ ଅଭିନନ୍ଦନ ଜଣାଇ ଆମକୁ ବ୍ରହ୍ମପୁତ୍ର ହୋଟେଲକୁ ନେଇଗଲେ । ଉକ୍ତ ହୋଟେଲର ୩ୟ ତାଲାର ୩୦ ନମ୍ବର କୋଠରୀରେ ମୋ ସ୍ତ୍ରୀ ସହିତ ମୁଁ ରହିଲି । ହୋଟେଲଟି ଅତ୍ୟାଧୁନିକ ଢ଼ଙ୍ଗରେ ତିଆରି । କୋଠରୀ ଗୁଡ଼ିକ ଛୋଟ ହେଲେ ମଧ୍ୟ ପ୍ରତି କୋଠରୀ ଆଧୁନିକ ସାଜ ସରଂଜାମ ଦ୍ୱାରା ସୁସଜ୍ଜିତ । ଭାରତର ୨୫ଟି ବିଧାନସଭାର ଅଧ୍ୟକ୍ଷମାନଙ୍କୁ ଏହି ହୋଟେଲରେ ସ୍ଥାନ ଦିଆଯାଇଥିଲା । ଉପାଧ୍ୟକ୍ଷ ଓ ବିଧାନସଭା ସେକ୍ରେଟାରି ତଥା ଅନ୍ୟମାନଙ୍କୁ ବିଭିନ୍ନ ହୋଟେଲରେ ରହିବାର ବ୍ରହ୍ମପୁତ୍ର ନଦୀ କୂଳରେ ଅବସ୍ଥିତ ହୋଇଥିବାରୁ ବ୍ରହ୍ମପୁତ୍ର ନଦୀ ସଂପୂର୍ଣ୍ଣ ଦୃଶ୍ୟ ଏଠାରେ ବେଶ ଭଲଭାବରେ ଦେଖା ଯାଉଥିଲା । ଗୁଆହାଟି ସହରଟି ଏକ ପ୍ରାଚୀନ୍ ସହର ଓ ଏହା ବ୍ରହ୍ମପୁତ୍ର ନଦୀ କୂଳେ କୂଳେ ଲମ୍ବିଯାଇଛି । ଏବର ନୂତନ ସହରଟିର ନାମ ଦାସପୁର । ଏହା ମଧ୍ୟ ଗୁଆହାଟି ସହରକୁ ଲାଗି ବ୍ରହ୍ମପୁତ୍ର କୂଳରେ ଅବସ୍ଥିତ ଆମ ଓଡ଼ିଶାର ପୁରୁଣା ଭୁବନେଶ୍ୱର ଓ କେପିଟେଲ ଭଳି । ଦୁଇଟିଯାକ ସହର ଲମ୍ବା ହୋଇ ବ୍ରହ୍ମପୁତ୍ର କୂଳରେ ଥିବା ହେତୁ ଯେ କୌଣସି ସ୍ଥାନକୁ ଯିବାପାଇଁ ଦୂରତା ଖୁବ୍ ବେଶି । ଆମେ ଓଡ଼ିଶା ଯାଇଥିବା ସମସ୍ତେ ବିଭିନ୍ନ ୭ଟି ସ୍ଥାପନରେ ବାଣ୍ଟି ହୋଇ ରହିଥିଲୁ ତେଣୁ ଯୋଗାଯୋଗ ପାଇଁ ଏକ ସ୍ଥାନରୁ ଅନ୍ୟ ସ୍ଥାନକୁ ଯିବାପାଇଁ ଦୂରତା ୧୦କି.ମି.ରୁ କମ୍ ନ ଥିଲା ।

## ''କାମାକ୍ଷା ମନ୍ଦିର ପରିଦର୍ଶନ''

ସେହିଦିନ ଅପରାହ୍ନ ୩ଟା ବେଳକୁ ଆସାମର ପ୍ରତ୍ୟକ୍ଷ ଦେବୀ କାମାକ୍ଷା ମନ୍ଦିର ପରିଦର୍ଶନ ପାଇଁ ଗଲୁଁ । ମନ୍ଦିରଟି ସହରଠାରୁ ପ୍ରାୟ ୧୦କି.ମି. ଦୂର ଏକ ପର୍ବତ ଉପରେ ଅବସ୍ଥିତ । ଆମ କାର ଉକ୍ତ ପର୍ବତ ଉପର ମନ୍ଦିର ନିକଟକୁ ଚାଲିଗଲା । ଦେବୀଙ୍କ ଦର୍ଶନ କରୁଥିବା ବେଳେ ଓଡ଼ିଶାର ପଣ୍ଡା ବୋଲାଉଥିବା ଜଣେ ବ୍ରାହ୍ମଣ ଆମକୁ ପରିଚୟ ଦେଇ ପୁରୀ ଭଳି ଆମକୁ ବିଭିନ୍ନ ଦେବଦେବୀ ଦର୍ଶନ କରାଇଲେ । ତାଙ୍କଠାରୁ ଶୁଣିଲି ଢ଼େଙ୍କାନାଳର ପୂର୍ବତନ ରାଜାଙ୍କ ପୁତ୍ର ସନ୍ତାନ ନ ଥିବାରୁ ସେ ଏହି ଦେବୀଙ୍କୁ ଆରାଧନା କରି ପୁତ୍ର ଲାଭ କରିଥିଲେ ତେଣୁଁ ତାଙ୍କ ପୁତ୍ରଙ୍କ ନାମ କାମାକ୍ଷା ପ୍ରସାଦ ରଖାଯାଇଛି । ସେ ଢ଼େଙ୍କାନାଳ ଲୋକସଭା ଆସନରୁ ନିର୍ବାଚିତ ହୋଇ କେନ୍ଦ୍ରରେ କଂଗ୍ରେସ ତରଫରୁ ସ୍ୱର୍ଗୀୟ ରାଜୀବ ଗାନ୍ଧୀଙ୍କ ମନ୍ତ୍ରୀମଣ୍ଡଳରେ ଜଣେ ସଦସ୍ୟ ଥିଲେ ।

## ''କାମାକ୍ଷା ଦେବୀ ଓ ବ୍ରହ୍ମପୁର''

ଆସାମ ହିନ୍ଦୁ ଧର୍ମରେ ତନ୍ତ୍ର ବା ତାନ୍ତ୍ରିକ ଶକ୍ତିର ଉତ୍ପତ୍ତିସ୍ଥଳ ବୋଲି କୁହାଯାଏ, ତେଣୁ କାଉଁରୀ କାମାକ୍ଷା ବହୁ ଆଶ୍ଚର୍ଯ୍ୟ ଓ ଅଲୌକିକ ଘଟଣା ପ୍ରଦର୍ଶନର କ୍ଷେତ୍ର ବୋଲି ସର୍ବଜନ ବିଦିତ । ପୁରାଣ ଯୁଗରେ ଏହିସ୍ଥାନ ଶିବ ଓ ପାର୍ବତୀଙ୍କର ଲୀଳାସ୍ଥଳୀ ଥିଲା ବୋଲି ଏଠାକାର ଲୋକେ କହନ୍ତି । ଏକଦା ବିଷ୍ଣୁ ଅତ୍ୟନ୍ତ କ୍ରୁଦ୍ଧ ହୋଇ ତାଙ୍କର ସୁଦର୍ଶନ ଚକ୍ରରେ ଦେବୀ ପାର୍ବତୀଙ୍କୁ ଖଣ୍ଡ ଖଣ୍ଡ କରି କାଟି ଏହି ପର୍ବତ ଉପରେ ପକାଇ ଦେଇଥିଲେ । ସେହି ଖଣ୍ଡ ମାନଙ୍କରୁ କାମାକ୍ଷା ଦେବୀଙ୍କ ଆବିର୍ଭାବ ହେଲା ବୋଲି ଏଠାରେ ଏକ କିମ୍ବଦନ୍ତୀ ପ୍ରଚଳିତ । ପାର୍ବତୀ ନିଜେ କାମାକ୍ଷାଦେବୀ ନାମରେ ଆବିର୍ଭୁତା ହୋଇଥିବା ବିଷୟ ଏବେବି ଲୋକଙ୍କର ଅତୁଟ ବିଶ୍ୱାସ ରହିଛି । ଏଠାକାର ମୂଳ କାମାକ୍ଷା ମନ୍ଦିର କାଳର କରାଳ କବଳରେ ନଷ୍ଟ ହୋଇଯିବାରୁ ୧୫୬୫ ଖ୍ରୀଷ୍ଟାବ୍ଦରେ ଏଠାକାର ଜଣେ ପରାକ୍ରମୀ ରାଜା ଏହି ମନ୍ଦିର ତିଆରି କରିଥିବାର ଐତିହାସିକ ପ୍ରମାଣ ରହିଛି । ଏହି ବିଶ୍ୱାସକୁ ନେଇ ଏଠାକାର ଅଧିଷ୍ଠାତ୍ରୀ ଦେବୀ ''ମହାଶକ୍ତି କାମାକ୍ଷା'' ତାନ୍ତ୍ରିକ ଶକ୍ତିର ଅଧିକାରିଣୀ ରୂପେ ପୂଜିତ ।

ବ୍ରହ୍ମପୁତ୍ର କେବଳ ଆସାମର ନୁହେଁ ଏହା ଭାରତର ଏକ ଅତି ବୃହତ୍ ଓ ବିଖ୍ୟାତ ନଦୀ । ଏହାକୁ ପୁରାଣ ଯୁଗରୁ ଲୋହିତ ନଦୀ ବୋଲି କୁହାଯାଏ । ଏ ନଦୀର ଉତ୍ପତ୍ତିସ୍ଥଳ ଏ ପର୍ଯ୍ୟନ୍ତ କେହି ଆବିଷ୍କାର କରିପାରି ନାହାନ୍ତି । ଅବଶ୍ୟ ଏହା ଗଙ୍ଗାନଦୀ ଭଳି ହିମାଳୟର ଏକ ଅତି ଅଗମ୍ୟ ସ୍ଥାନରୁ ବାହାରି ଥିବାର ଅନୁମାନ କରାଯାଏ । ବର୍ଷାଦିନେ ବ୍ରହ୍ମପୁତ୍ର ନଦୀର ବନ୍ୟାଜଳ ହିମାଳୟ ପର୍ବତର ମଧ୍ୟଦେଇ ପ୍ରବାହିତ ହେଉଥିବାରୁ ବହୁ ପରିମାଣ ନାଲିମାଟି ଧୋଇ ହୋଇ ଆସୁଥିବାରୁ ନଦୀଜଳ ସଂପୂର୍ଣ୍ଣ ନାଲିରଙ୍ଗ ଧାରଣ କରେ । ତେଣୁଁ ଏହି ନଦୀକୁ ଆବହମାନ କାଳରୁ ଏ ଅଞ୍ଚଳରେ ଲୋହିତ ନଦୀ ବୋଲି କହନ୍ତି । ଆସାମର ପୂର୍ବତନ ଲୋକପ୍ରିୟ ଲୋକସଭା ସଦସ୍ୟ ସ୍ୱର୍ଗୀୟ ହେମ ବରୁଆଙ୍କ "The Red river and Blue hile" ଲିଖିତ ପୁସ୍ତକରେ ଉପରୋକ୍ତ ବିଷୟ ଲେଖାଯାଇଛି ।

## "ବିଧାନସଭା ଅଧ୍ୟକ୍ଷ ଓ ଉପାଧ୍ୟକ୍ଷ ସମ୍ମିଳନୀ"

୧୯୮୯ ମସିହା ଜାନୁୟାରୀ ୧୯ ତାରିଖ ଦିନ ଭାରତର ପ୍ରାୟ ସମସ୍ତ ବିଧାନସଭା ଅଧ୍ୟକ୍ଷ, ଉପାଧ୍ୟକ୍ଷ, କାଉନ୍‌ସିଲ ଚେୟାରମେନ୍ ଡେପୁଟି ଚେୟାରମେନ ତଥା ସଚିବ ମାନଙ୍କ ସମ୍ମିଳନୀ ଭାରତର ଲୋକସଭା ଅଧ୍ୟକ୍ଷଙ୍କ ପୌରହିତ୍ୟରେ ଆରମ୍ଭ ହେଲା । ପ୍ରତିବର୍ଷ ଭଳି ଏବର୍ଷ ମଧ୍ୟ ପ୍ରଥମ ଦିନ ସମସ୍ତ ବିଧାନସଭା ସଚିବ ମାନଙ୍କ ସମ୍ମିଳନୀ ଲୋକସଭା ସଚିବଙ୍କ ଅଧିନାୟକତ୍ୱରେ ହେବାପରେ ସମସ୍ତ ବିଧାନସଭା ଅଧ୍ୟକ୍ଷଙ୍କ ସମ୍ମିଳନୀ ଆରମ୍ଭ ହେଲା । ସାଧାରଣତଃ ବିଧାନସଭା ସଚିବମାନଙ୍କ ସମ୍ମିଳନୀରେ ବିଧାନସଭା ପରିଚାଳନା ବେଳେ ଘଟୁଥିବା ବିଭିନ୍ନ ସମସ୍ୟା ଗୁଡ଼ିକର ସମାଧାନ ତଥା ସେଥିରେ ସେମାନଙ୍କର ଭୂମିକା ସଂପର୍କରେ ଆଲୋଚନା ହୋଇଥାଏ । କାର୍ଯ୍ୟ ପନ୍ଥା ଗ୍ରହଣ ସଂକ୍ରାନ୍ତରେ ସେମାନଙ୍କ ମଧ୍ୟରେ ମତ ବିନିମୟ ମଧ୍ୟ ହୁଏ । ଏହା ସବୁଥର ପ୍ରଥମ ଦିନର କାର୍ଯ୍ୟକ୍ରମରେ ରହିଥାଏ ଏବଂ ଏହାର ପରଦିନ ଅଧ୍ୟକ୍ଷ ମାନଙ୍କର ସମ୍ମିଳନୀ ହୁଏ । ଏଥିରେ ବିଧାନସଭାର ଅଧ୍ୟକ୍ଷ, ଉପାଧ୍ୟକ୍ଷ ଓ କାଉନ୍‌ସିଲ ଥିବା ରାଜ୍ୟର ଚେୟାରମେନ୍ ଓ ଡେପୁଟି ଚେୟାରମେନ ମାନେ ପ୍ରତିନିଧି ଭାବରେ ଯୋଗ ଦେଇ ଆଲୋଚନାରେ ଭାଗ ନିଅନ୍ତି ଓ ସୁଚିନ୍ତିତ ପରାମର୍ଶମାନ ଦିଅନ୍ତି । ସମସ୍ତ ବିଷୟ କେବଳ ଆପୋଷରେ ନିଷ୍ପତ୍ତି ହୁଏ କେଉଁଥିରେ ହେଲେ ଭୋଟ ଗ୍ରହଣ କରାଯାଏ ନାହିଁ । ବିଧାନସଭା ସଚିବମାନେ ଅଧ୍ୟକ୍ଷଙ୍କ ସମ୍ମିଳନୀରେ କିଛି କହନ୍ତି ନାହିଁ । ବିଧାନସଭାର ଅନ୍ୟ କର୍ମଚାରୀମାନେ କେବଳ ଦର୍ଶକ ଭାବରେ ଯୋଗ ଦିଅନ୍ତି ।

ଏଥର ମଧ୍ୟ ସେହି ରୀତିରେ ଜାନୁୟାରୀ ୨୦ ତାରିଖ ଦିନ ସକାଳ ୯ଟା ବେଳେ ଲୋକସଭା ଅଧ୍ୟକ୍ଷ ଡ଼କ୍ଟର ବଳରାମ ଝାକରଙ୍କ ସଭାପତିତ୍ୱରେ ଅଧ୍ୟକ୍ଷମାନଙ୍କର ସମ୍ମିଳନୀ ଆରମ୍ଭ ହେଲା । ପ୍ରଥମେ ବିଧାନସଭାର ଫଟୋଚିତ୍ର ଗୁଡ଼ିକର ଏକ ପ୍ରଦର୍ଶନୀ ଉଦ୍‌ଘାଟନ କରି ପରେ ବିଧିବଦ୍ଧ ଭାବରେ ସମ୍ମିଳନୀ କାର୍ଯ୍ୟ ଆରମ୍ଭ ହେଲା । ଆସାମ ବିଧାନସଭାର ଅଧ୍ୟକ୍ଷ ଶ୍ରୀ ଫୁଲକେଶ ବରୁଆ ସ୍ୱାଗତ ଭାଷଣ ଦେଲାପରେ ଶ୍ରୀଯୁକ୍ତ ଝାକର ଏକ ଦୀର୍ଘ ଲିଖିତ ଭାଷଣ ପଢ଼ିଲେ । ଉକ୍ତ ଭାଷଣରେ ଭାରତର ଗଣତାନ୍ତ୍ରିକ ବ୍ୟବସ୍ଥାକୁ ହିଂସାତ୍ମକ କାର୍ଯ୍ୟଦ୍ୱାରା ଯେପରି ବିପନ୍ନ କରିବାର ଷଡ଼ଯନ୍ତ୍ର ହେଉଛି ସାହସର ସହିତ ତାର ମୁକାବିଲା କରି ତହିଁର ସୁରକ୍ଷା ପାଇଁ ସମସ୍ତଙ୍କୁ ନିବେଦନ କଲେ । ଏହାପରେ ମଧ୍ୟପ୍ରଦେଶ ବିଧାନସଭାର ଅଧ୍ୟକ୍ଷଙ୍କ ଦୁଇଟି ପ୍ରଶ୍ନ ଓ ଦିଲ୍ଲୀ ମେଟ୍ରୋପଲିଟାନ କାଉନସିଲ ସଭାପତିଙ୍କ ତରଫରୁ ଦେଇଥିବା ପ୍ରଶ୍ନଟିର ଆଲୋଚନା ଆରମ୍ଭ ହେଲା । **Codification of Privileges** ବା ବିଧାନସଭାର ସ୍ୱାଧିକାର ଗୁଡ଼ିକର ନିର୍ଦ୍ଧାରଣ ଓ ସେଗୁଡ଼ିକୁ ଆଇନ ସମ୍ମତ କରାଯିବା ସଂପର୍କରେ ମୋର ପ୍ରଶ୍ନଟି ଥିଲା । ତେଣୁ ମୁଁ ପ୍ରଥମେ ଆଲୋଚନା ଆରମ୍ଭ କରି କହିଲି ଯେ, ସମସ୍ତ ସ୍ୱାଧୀକାର ଭଙ୍ଗ ଘଟୁଥିବା ଅଥବା ନ ଘଟୁଥିବା ବିଷୟରେ ସଭ୍ୟମାନେ ନୋଟିସ ଦେଇ ବିଧାନସଭା ମାନଙ୍କରେ ଆଲୋଚନା ଦ୍ୱାରା ଅଯଥା ସମୟ ନଷ୍ଟ କରୁଛନ୍ତି । ସେଗୁଡ଼ିକ ଥରେ ନିର୍ଦ୍ଧାରିତ ହୋଇଗଲେ ଅଯଥାରେ ଆଲୋଚନା ପାଇଁ ଆଉ ନୋଟିସ ଆସିବ ନାହିଁ । ଆମ ଦେଶର ସମ୍ବିଧାନ ପ୍ରଣୟନ କଲାବେଳେ ପାର୍ଲ୍ୟାମେଣ୍ଟ ଓ ବିଧାନସଭା ଗୁଡ଼ିକର ସ୍ୱାଧିକାର ଥିବାର ବ୍ୟବସ୍ଥା ଖଞ୍ଜା ଯାଇଥିଲେ ହେଁ ସେତେବେଳେ ସେଗୁଡ଼ିକ ନିର୍ଦ୍ଧାରଣ କରାଯାଇ ନଥିଲା । ସଂବିଧାନ କାର୍ଯ୍ୟକାରୀ ହେଲାପରେ ପାର୍ଲ୍ୟାମେଣ୍ଟ ବା ବିଧାନସଭା ପରବର୍ତ୍ତୀ ଅବସ୍ଥାରେ ସ୍ୱାଧିକାର ଗୁଡ଼ିକ ନିର୍ଦ୍ଧାରଣ କରିପାରିବା ଆଇନ ସମ୍ମତ ବୋଲି ସମ୍ବିଧାନରେ ବ୍ୟବସ୍ଥା ରହିଛି । କିନ୍ତୁ ଏ ଯାବତ୍ ତାହା କେହି ନିର୍ଦ୍ଧାରଣ କରିନାହାନ୍ତି । ତେଣୁ ସ୍ୱାଧିକାର ପ୍ରଶ୍ନ ଉଠିଲା ବେଳେ ସର୍ବଦା ବ୍ରିଟିସ ପାର୍ଲ୍ୟାମେଣ୍ଟରେ ବିଭିନ୍ନ ସମୟରେ ଯେଉଁ ନିଷ୍ପତ୍ତି ମାନ ଗ୍ରହଣ କରାଯାଇଛି ତାର ନଜିର ଦେଇ ଆମଦେଶର ପାର୍ଲ୍ୟାମେଣ୍ଟ ଓ ବିଧାନସଭା ଗୁଡ଼ିକରେ ନିଷ୍ପତ୍ତି ଗ୍ରହଣ କରାଯାଉଛି । ତେଣୁ ଏହି ଅଧିବେଶନରେ ଏହା ନିର୍ଦ୍ଧାରଣ କରିବାର ନିଷ୍ପତ୍ତି ଗ୍ରହଣ କରି ସ୍ୱାଧିକାର ଗୁଡ଼ିକୁ ଚିହ୍ନଟ କରିବା ପାଇଁ ଏକ ଆଲୋଚନା କରି ସପକ୍ଷ ଓ ବିପକ୍ଷରେ ନିଜ ନିଜର ମତ ଉପସ୍ଥାପନ କଲେ । ଏଭଳି ନିର୍ଦ୍ଧାରଣ କରି ସ୍ୱାଧିକାର ଗୁଡ଼ିକ ଆଇନ ସମ୍ମତ କରିଦେଲେ ସେ ସଂପର୍କରେ ହେବା ନିଷ୍ପତ୍ତି ଗୁଡ଼ିକୁ ବିରୋଧ କରି କେହି ଚାହିଁଲେ ଉଚ୍ଚ ନ୍ୟାୟାଳୟର ଆଶ୍ରୟ ନେଇପାରିବେ ଏବଂ ଏହାଫଳରେ ଲୋକସଭା ଓ ବିଧାନସଭା ଗୁଡ଼ିକର ସମ୍ମାନରେ ଆଘାତ ଲାଗିବା ତଥା ସଙ୍ଗେ ସଙ୍ଗେ ଲୋକସଭା ଓ ବିଧାନସଭାର ଅଧ୍ୟକ୍ଷ ତଥା ସଚିବମାନେ ଅଯଥାରେ ନ୍ୟାୟାଳୟକୁ ଟଣାଯିବେ ଓ ଶେଷରେ ବିଧାନସଭା କାର୍ଯ୍ୟ ପରିଚାଳନା ବାଧାପ୍ରାପ୍ତ ହେବ । ତେଣୁ ଯେଉଁ ପରମ୍ପରା ଆଗରୁ ଗୃହୀତ ହୋଇ ଆସିଛି । ତାହା ଅନୁସରଣ କରିବା ଉଚିତ ହେବ ବୋଲି ସର୍ବସମ୍ମତ ନିଷ୍ପତ୍ତି ଗ୍ରହଣ କରାଗଲା । ଅପରାହ୍ନ ବୈଠକରେ ପ୍ରଥମଦିନ ପାଇଁ ଧାର୍ଯ୍ୟ ହୋଇଥିବା ବିଷୟ ଗୁଡ଼ିକର ଆଲୋଚନା ଶେଷ ହେବାପରେ ସଂଧ୍ୟାବେଳକୁ ସବୁ ପ୍ରତିନିଧି ସେଠାକାର ନେହେରୁ ପାର୍କଠାରେ ଏକ ଚା' ଭୋଜୀରେ ଏକତ୍ରିତ ହୋଇଥିଲେ ସେତେବେଳେ ସେଠାରେ ଆସାମର ଏକ ସାଂସ୍କୃତିକ କାର୍ଯ୍ୟକ୍ରମ ଆସାମୀ ଭାଷାରେ ପରିବେଷଣ କରାଯାଇଥିଲା । ଏହାପରେ ଲୋକସଭା ଅଧ୍ୟକ୍ଷ ଡ଼କ୍ଟର ଝାକର ସମସ୍ତ ପ୍ରତିନିଧିଙ୍କ ଏକ ରାତ୍ରି ଭୋଜନରେ ଆପ୍ୟାୟିତ କରିଥିଲେ ।

ତହିଁ ପରଦିନ ସମ୍ମିଳନୀର କାର୍ଯ୍ୟ ଶେଷ ହେଲା । ସେଦିନ ସକାଳଓଳି ପ୍ରଥମ ଦିନର କେତେକ ଅସମାପ୍ତ ଆଲୋଚନା ଆରମ୍ଭ ହେଲା । ସେଥିରେ ମୋର ମଧ ଏକ ପ୍ରସ୍ତାବ ଥିଲା । ଦିନ ପ୍ରାୟ ୧୨ଟା ବେଳକୁ ସମ୍ମିଳନୀର ଉଦ୍‌ଯାପନ ଉତ୍ସବ ଆରମ୍ଭ ହେଲା । ପରଂପରା ଅନୁଯାୟୀ ଆସାମ ସରକାର ଓ ସେଠାକାର ବିଧାନସଭା ଅଧକ୍ଷ ପ୍ରତିନିଧି ମାନଙ୍କୁ ଧନ୍ୟବାଦ ଜ୍ଞାପନ କଲାପରେ ସମ୍ମିଳନୀ ସମାପ୍ତ ହେଲା । ମଧ୍ୟାହ୍ନ ଭୋଜନ ପରେ ଅପରାହ୍ନ ୪ଟା ବେଳକୁ ଆସାମର ରାଜ୍ୟପାଳ ଶ୍ରୀଯୁକ୍ତ ଲକ୍ଷ୍ମୀନାରାୟଣ ସିଂଙ୍କ ନିମନ୍ତ୍ରଣ କ୍ରମେ ସମସ୍ତ ପ୍ରତିନିଧି ସେଠାକାର ରାଜଭବନ ଠାରେ ଏକ ଚା ଭୋଜିରେ ସମ୍ମିଳିତ ହୋଇଥିଲେ । ସଂଧ୍ୟାବେଳକୁ ସେଠାକାର ରବୀନ୍ଦ୍ର ମଣ୍ଡପଠାରେ ପୂର୍ବଦିନ ପରି ଆସାମୀ ଭାଷାରେ ଏକ ସାଂସ୍କୃତିକ କାର୍ଯ୍ୟକ୍ରମ ପ୍ରଦର୍ଶିତ ହୋଇଥିଲା । ପରେ ଆସାମ ମୁଖ୍ୟମନ୍ତ୍ରୀଙ୍କ ନିମନ୍ତ୍ରଣ କ୍ରମେ ପ୍ରତିନିଧିମାନେ ଏକ ରାତ୍ରି ଭୋଜନରେ ଯୋଗ ଦେଇ ନିଜ ନିଜ ହୋଟେଲକୁ ଫେରି ବିଶ୍ରାମ କଲେ ।

ସମ୍ମିଳନୀର ୩ୟ ଦିନ ସବୁଥର ଦେଶର କୌଣସି ଗୁରୁତ୍ୱପୂର୍ଣ୍ଣ ବିଷୟରେ ଏକ ଆଲୋଚନା ଚକ୍ର ଆୟୋଜିତ ହୁଏ । ସେ ରାଜ୍ୟର ମୁଖ୍ୟମନ୍ତ୍ରୀ ତାହା ଉଦ୍‌ଘାଟନ କରନ୍ତି । ଏଥିରେ ସମ୍ମିଳନୀର ପ୍ରତିନିଧି ମାନଙ୍କ ବ୍ୟତୀତ ବିଧାନସଭା ଓ ଲୋକସଭା ସଭ୍ୟମାନେ ମଧ୍ୟ ଆଲୋଚନାରେ ଯୋଗ ଦେଇଥାନ୍ତି । ଏଥର ଏଥିରେ ଏକ ଗୁରୁତ୍ୱପୂର୍ଣ୍ଣ ବିଷୟ "Legislative committee and Administration" ଆଲୋଚନା ପାଇଁ ରଖା ଯାଇଥିଲା । ସେଠାକାର ମୁଖ୍ୟମନ୍ତ୍ରୀ ଶ୍ରୀ ପ୍ରଫୁଲ୍ଲ ଚନ୍ଦ୍ର ମହାନ୍ତ ଉଦ୍‌ଘାଟନ କଲାପରେ ଝାକରଙ୍କ ସଭାପତିତ୍ୱରେ ଆଲୋଚନା ହେଲା ।

## ''ସିଲଂ ପରିଦର୍ଶନ''

ଅବିଭକ୍ତ ଆସାମ ରାଜ୍ୟ ଦିନେ ପୂର୍ବାଞ୍ଚଳରେ ସବୁଠାରୁ ବଡ଼ ରାଜ୍ୟ ଥିଲା, ଏବଂ ସିଲଂ ଥିଲା ଏହାର ରାଜଧାନୀ, ସ୍ୱାଧୀନତା ପ୍ରାପ୍ତିପରେ ୧୯୫୬ ମସିହା ବେଳକୁ ଭାଷା ଓ ବିଭିନ୍ନ ସଂସ୍କୃତି ଭିତ୍ତିରେ ନୂତନ ରାଜ୍ୟ ଗଠନ କରିବାର ନିଷ୍ପତ୍ତି ଗ୍ରହଣ କରାଗଲା । ଏତିକି ବେଳେ ଆସାମର ପାହାଡ଼ିଆ ଅଞ୍ଚଳରେ ବାସ କରୁଥିବା ଆଦିବାସୀ ତଥା ବିଭିନ୍ନ ସଂସ୍କୃତିର ଲୋକଙ୍କ ମଧରେ ସ୍ୱତନ୍ତ୍ର ରାଜ୍ୟମାନ ଗଠନ କରିବାର ଆନ୍ଦୋଳନ ଚାଲିଲା । କେତେକ କ୍ଷେତ୍ରରେ ହିଂସାତ୍ମକ କାଣ୍ଡ ମଧ ଘଟିଲା । ହିଂସାତ୍ମକ କାର୍ଯ୍ୟକଳାପର ଦମନ ପାଇଁ କେନ୍ଦ୍ର ସରକାରଙ୍କ ପକ୍ଷରୁ ସମସ୍ତ ପ୍ରକାର ଉଦ୍ୟମ ସତ୍ତ୍ୱେ ଏହାକୁ ଦମନ କରିବା ସମ୍ଭବପର ହେଲାନାହିଁ । ଏତଦ୍ ବ୍ୟତୀତ ଏହି ସବୁ ଅଞ୍ଚଳ ଚାଇନା, ବାଙ୍ଗଲାଦେଶ ଓ ବ୍ରହ୍ମଦେଶର ଲୋକମାନଙ୍କ ଗୁପ୍ତ ସାହାଯ୍ୟ ଓ ସହାନୁଭୂତି ମଧ ରହିଥିଲା । ତେଣୁ କେନ୍ଦ୍ର ସରକାର ଉକ୍ତ ଅଧିବାସୀ ମାନଙ୍କୁ ସ୍ୱତନ୍ତ୍ର ରାଜ୍ୟ ପାହ୍ୟାର ଅଧିକାର ଦେବାପାଇଁ ଏକ ଆପୋଷ ସମାଧାନ କରିବାକୁ ବାଧ ହେଲେ । ଏସବୁ ଅଞ୍ଚଳ ପାହାଡ଼ିଆ ଓ ଅତ୍ୟନ୍ତ ଦୁର୍ଗମ ହୋଇଥିବା ଦୃଷ୍ଟିରୁ ଅବିଭକ୍ତ ଆସାମର ସାମାଜିକ ଉନ୍ନତି ପାଇଁ ସମ୍ୟକ୍ ଦୃଷ୍ଟି ମଧ ଦେଇପାରୁ ନଥିଲେ । ତେଣୁ ସେ ସମସ୍ତ ଭିନ୍ନ ଭିନ୍ନ ଅଞ୍ଚଳ ଗୁଡ଼ିକୁ ପ୍ରଥମେ କେନ୍ଦ୍ରଶାସିତ ଅଞ୍ଚଳରେ ପରିଣତ କରାଯାଇ କ୍ରମେ ସେଗୁଡ଼ିକୁ ରାଜ୍ୟ ପାହ୍ୟା ଦିଆଗଲା । ଏହିସବୁ ଅଞ୍ଚଳ ନାଗାଲେଣ୍ଡ, ମିଜୋରାମ, ମେଘାଳୟ ଓ ଅରୁଣାଚଳ ନାମରେ ଅଭିହିତ ହେଲା । ସ୍ୱତନ୍ତ୍ର ରାଜ୍ୟ ଗଠିତ ହେଲାପରେ ଲୋକଙ୍କ ମନରେ ଥିବା ଅସନ୍ତୋଷ କ୍ରମେ ଦୂର ହେବାକୁ ଲାଗିଲା । ମାତ୍ର ନୂତନ ଭାବେ ଗଠିତ ଏହି ୪ଟି ରାଜ୍ୟ ନିଜ ସମ୍ବଳରେ ସ୍ୱାବଲମ୍ବୀ ହେବା କେବେହେଲେ ସମ୍ଭବପର ହୋଇପାରିବ ନାହିଁ, ଏପରିକି କେନ୍ଦ୍ରରୁ ଭାରତର ଅନ୍ୟ ରାଜ୍ୟ ମାନଙ୍କୁ ଯେଉଁ ନୀତିରେ ସାହାଯ୍ୟମାନ ମିଳୁଛି ସେଥିରେ ବି ଏହି ଅନୁନ୍ନତ ରାଜ୍ୟ ଗୁଡ଼ିକର ଉନ୍ନତି ସାଧିତ ହେବା ଏକ କଷ୍ଟକର ବ୍ୟାପାର । ତେଣୁଁ ଏହିସବୁ ରାଜ୍ୟଗୁଡ଼ିକ ପାଇଁ ସ୍ୱତନ୍ତ୍ର ସାହାଯ୍ୟର ବ୍ୟବସ୍ଥା କରାଯାଇଛି ।

ମୁଁ ସେଦିନ ସେହି ରାଜ୍ୟଗୁଡ଼ିକ ମଧରୁ ମେଘାଳୟ ରାଜ୍ୟର ରାଜଧାନୀ ସିଲଂ ଦେଖିବାର ଠିକଣା କଲି । ସେଦିନ ସକାଳ ପ୍ରାୟ ୮ଟା ସମୟରେ ଦୁଇଟି କାର ଯୋଗେ ମୁଁ, ଆମ ବିଧାନସଭା ସେକ୍ରେଟେରୀ ଓ ଅନ୍ୟ ସମସ୍ତେ ସିଲଂ ଅଭିମୁଖେ ଯାତ୍ରା କଲୁଁ । ମେଘାଳୟ ସରକାରଙ୍କୁ ଆମ ସେଠାକାର ପରିଦର୍ଶନ କାର୍ଯ୍ୟକ୍ରମ ସଂପର୍କରେ ଆଗରୁ ଜଣାଇ ଦିଆଗଲା । ଗୌହାଟୀ ସହରର ଉପକଣ୍ଠରୁ ମେଘାଳୟ ରାଜ୍ୟ ଆରମ୍ଭ । ମେଘାଳୟର ତିନିପାଖକୁ ଆସାମ, ନାଗାଲେଣ୍ଡ ଓ ମିଜୋରାମ ଓ ଅନ୍ୟ ପାଖକୁ ବାଙ୍ଗଲାଦେଶ ଲାଗିଛି । ସମଗ୍ର ମେଘାଳୟ ରାଜ୍ୟଟି ଏକ ପାହାଡ଼ିଆ ଅଞ୍ଚଳ । ଗୌହାଟିରୁ ସିଲଂ କାରରେ ପ୍ରାୟ ତିନି ଘଣ୍ଟାର ରାସ୍ତା । ରାସ୍ତାର ଶତକଡ଼ା ୮୦ଭାଗ ଗିରିପଥ, ସିଲଂ ଦିନେ ଅବିଭକ୍ତ ଆସାମର ରାଜଧାନୀ ଥିବାରୁ ଏହା ଗିରିପଥ ହେଲେ ମଧ ରାସ୍ତା ବେଶ ଚଉଡ଼ା ଓ ଖୁବ ଭଲଭାବରେ ନିର୍ମିତ ହୋଇଛି । ସୁତରାଂ ଏଥିରେ ଯାତାୟତ ବେଶ ସୁବିଧା ଜନକ । ରାସ୍ତାରେ ଯିବା ସମୟରେ ଏଠାରେ ସମତଳ ଅଞ୍ଚଳ ଖୁବ କମ୍ ଦୃଷ୍ଟିଗୋଚର ହେଲା ସମୁଦ୍ର ପତ୍ତନଠାରୁ ଏହା ଅତ୍ୟନ୍ତ ଉଚ୍ଚ ଥିବାରୁ ସର୍ବତ୍ର ଅତ୍ୟଧିକ ଥଣ୍ଡା ଅନୁଭୂତ ହୁଏ । ତେଣୁ ଏ ଅଞ୍ଚଳର ଲୋକେ ଅଧିକ ପରିମାଣରେ ଫଳଚାଷ କରନ୍ତି । ସିଲଂ ପହଞ୍ଚିବାର ପ୍ରାୟ ୧୦କି.ମି. ଦୂରରୁ ଏକ ହ୍ରଦ ଆରମ୍ଭ ହୋଇ ସିଲଂ ପର୍ଯ୍ୟନ୍ତ ଲାଗି ରହିଥିବାର ଦେଖାଗଲା । ଆମେ ସିଲଂ ସରକାରୀ ଅତିଥିଶାଳାରେ ପହଞ୍ଚିଲା ବେଳକୁ କାଶ୍ମୀରର ଅଧକ୍ଷ ମଧ ସେଠାରେ ପହଞ୍ଚି ସାରିଥିଲେ । ଭୀଷଣ

ଶୀତ ହେତୁ କୋଠରୀ ମଧ୍ୟରେ ନ ବସି ବାହାରେ ଖରାରେ ବସିଲୁଁ । ତା'ପରେ ସିଲଂ ସହରର ଦୃଶ୍ୟ ଦେଖିବା ପାଇଁ ସହର ନିକଟସ୍ଥ ଏକ ଉଚ୍ଚ ସ୍ଥାନକୁ ଗଲୁଁ । ସେ ପର୍ଯ୍ୟନ୍ତ କାର ଯୋଗେ ଯିବାର ମଧ୍ୟ କିଛି ଅସୁବିଧା ହେଲାନାହିଁ । ଉକ୍ତ ପର୍ବତର ଶିଖରରେ ଏକ ସମତଳ ସ୍ଥାନ କରାଯାଇଛି । ତାର ଏକ ପାଖରେ ଶକ୍ତ ବାଡ଼ ଦିଆଯାଇଛି । ଲୋକେ ସେଠାରେ ରହି ସିଲଂ ସହରର ମନୋହର ଦୃଶ୍ୟ ଦେଖନ୍ତି ।

ସିଲଂ ସହରର ଚାରିପାଖେ ନୀଳବର୍ଣ୍ଣର ଉଚ୍ଚ ପର୍ବତମାଳା ପ୍ରାଚୀର ସଦୃଶ ଦଣ୍ଡାୟମାନ ହୋଇ ରହଛି । ମଧ୍ୟଭାଗର ସମତଳ ଅଞ୍ଚଳରେ ସହରଟି ଅବସ୍ଥିତ । ଇଂରେଜ ସରକାରଙ୍କ ଅମଳରୁ ଏହା ଏକ ସ୍ୱାସ୍ଥ୍ୟକର ଗ୍ରୀଷ୍ମନିବାସ ରୂପେ ପରିଗଣିତ ହୋଇ ଆସୁଛି । ମଧ୍ୟଭାଗର ସମତଳ ଅଞ୍ଚଳରୁ ଆରମ୍ଭ କରି କ୍ରମେ କ୍ରମେ ପାହାଡ଼ ଉପରକୁ ବସତି ବୃଦ୍ଧି ହେବାରେ ଲାଗିଛି । ଚତୁର୍ଦ୍ଦିଗରେ ଶ୍ୟାମଳ ବୃକ୍ଷଲତା ରାଜି ମଧ୍ୟରେ ସ୍ଥାନେ ସ୍ଥାନେ ଶ୍ୱେତ ବର୍ଣ୍ଣର ଦ୍ୱିତଳ ପ୍ରସାଦ ଗୁଡ଼ିକ ନୀଳବର୍ଣ୍ଣର ଜଳରାଶି ମଧ୍ୟରେ ପ୍ରସ୍ଫୁଟିତ ଶ୍ୱେତପଦ୍ମ ସଦୃଶ ଦର୍ଶକ ମାନଙ୍କର ମନ ଆକର୍ଷଣ କରୁଅଛି । ଉଚ୍ଚ ପର୍ବତମାଳା ଓ ତତ୍ ସଂଲଗ୍ନ ବୃକ୍ଷଲତା ପରିପୂର୍ଣ୍ଣ ଘନ ଜଙ୍ଗଲ ପ୍ରକୃତିର ଏକ ମହନୀୟ ଅବଦାନ ରୂପେ ବିରାଜିତ ହୋଇ ମଣିଷ ମନରେ ଅପାର ଆନନ୍ଦ ସୃଷ୍ଟି କରୁଛି । ସହର ମଧ୍ୟରେ ଏକ ଛୋଟ ପର୍ବତରୁ ଅନ୍ୟ ଏକ ପର୍ବତକୁ ଗଲାବେଳେ ଏକ ଗିରିପଥ ଅତିକ୍ରମ କଲାପରି ମନେ ହେଉଥିଲା । ଇଂରେଜ ଶାସନ ଅମଳରୁ ଏହି ସହରଟି ଯୋଜନାବଦ୍ଧ ଭାବରେ ସୁଚିନ୍ତିତ ଉପାୟରେ ନିର୍ମିତ ହୋଇଥିବା ସଙ୍ଗେ ସଙ୍ଗେ ବୃକ୍ଷଲତା ଗୁଡ଼ିକ ସଂରକ୍ଷିତ ହୋଇଥିବାରୁ ସବୁଦିନେ ଥଣ୍ଡା ମାତ୍ର ଗ୍ରୀଷ୍ମଦିନରେ ଅତ୍ୟନ୍ତ ଆରାମଦାୟକ । ତେଣୁ ବହୁକାଳରୁ ଭାରତର ବହୁ ଧନୀ ଜମିଦାର, ରାଜା ମହାରାଜାମାନେ ଖରାଦିନ ଆରାମରେ କଟାଇବା ପାଇଁ ଏଠାରେ ନିଜନିଜର ଘରମାନ ତୋଳାଇଥିଲେ । ଆମ ମୟୂରଭଞ୍ଜ ମହାରାଜାଙ୍କର ମଧ୍ୟ ଏକ କୋଠା ଏଠାରେ ଥିଲା ଓ ରାଜପରିବାରର ଲୋକେ ଆସି ଏଠାରେ ଗ୍ରୀଷ୍ମକାଳରେ ରହୁଥିଲେ । ଗଡ଼ଜାତ ଶାସନ ବିଲୋପ ହେବାପରେ ଏବେ ସେ ସବୁ ଘରବାଡ଼ି ବିକ୍ରୀ ହୋଇଗଲାଣି ।

ଉକ୍ତ ଉଚ୍ଚ ସ୍ଥାନରେ ଛିଡ଼ା ହୋଇ ସିଲଂର ଦୃଶ୍ୟ କିଛିକାଳ ଉପଭୋଗ କଲାପରେ ଶୈତ୍ୟର ପ୍ରକୋପ ମୋ ସ୍ୱାସ୍ଥ୍ୟ ଉପରେ ପ୍ରତିକୂଳ ପ୍ରଭାବ ପକାଇବା ଆଶଙ୍କାରେ କାର ଭିତରକୁ ଚାଲି ଆସିଲି । ତା'ପରେ ଅନ୍ୟ କେତେକ ଅଞ୍ଚଳ ବୁଲାବୁଲି କରି ଅତିଥିଶାଳାକୁ ଫେରି ମଧ୍ୟାହ୍ନ ଭୋଜନ କଲୁ । ଅପରାହ୍ନରେ ସେଠାକାର ବଜାରକୁ ଯାଇ ଅଳ୍ପ କିଛି ଜିନିଷପତ୍ର କିଣିଲୁ ଓ ସଂଧ୍ୟାକୁ ଗୌହାଟୀ ଫେରି ବିଶ୍ରାମ କଲୁ ।

## ''ମନାବ୍ୟାଘ୍ର ଯୋଜନା''

ସବୁଥର ପରି ଏଥର ମଧ୍ୟ ପ୍ରିଜାଇଡ଼ିଂ ଅଫିସର ମାନଙ୍କ ସମ୍ମିଳନୀ ପରେ ଦୁଇଦିନ ସେଠାରେ ଥିବା ବିଭିନ୍ନ ଦର୍ଶନୀୟ ସ୍ଥାନ ପରିଦର୍ଶନ କରିବାର ବ୍ୟବସ୍ଥା ହୋଇଥାଏ, ତଦନୁଯାୟୀ ସମ୍ମିଳନୀ ଶେଷ ହେବାର ପ୍ରଥମ ଦିନ ଆସାମର ବିଖ୍ୟାତ ମନାବ୍ୟାଘ୍ର ଯୋଜନା ପରିଦର୍ଶନର କାର୍ଯ୍ୟକ୍ରମ ରଖାଗଲା । ପରିବେଶ ପ୍ରତି ମୋର ବିଶେଷ ଆଗ୍ରହ ଥିବାରୁ ମୁଁ ପ୍ରଥମେ ଏହି ସ୍ଥାନ ପରିଦର୍ଶନ ପ୍ରସ୍ତାବ ଦେଇଥିଲି । ସେଦିନ ସକାଳ ସାଢ଼େ ଆଠଟା ବେଳକୁ ପ୍ରସ୍ତୁତ ହୋଇ ସମସ୍ତେ ବାହାରି ପଡ଼ିଲେ ଆମ ସମସ୍ତଙ୍କ ଯିବା ପାଇଁ ବଡ଼ ବଡ଼ ସରକାରୀ ବସ ସବୁ ରଖା ଯାଇଥାଏ । ଅଧ୍ୟକ୍ଷମାନଙ୍କ ପାଇଁ ନିର୍ଦ୍ଦିଷ୍ଟ ବସରେ ମୋ ସ୍ତ୍ରୀ ସହିତ ମୁଁ ଯାଇବସିଲି । ଆମ ବିଧାନସଭା ଉପାଧ୍ୟକ୍ଷ ଓ ସଚିବ ସେମାନଙ୍କ ପାଇଁ ନିର୍ଦ୍ଦିଷ୍ଟ ଗାଡ଼ିରେ ଯାଇ ବସିଲେ । ଏହିପରି ବ୍ୟାଘ୍ର ଯୋଜନା ଆମ ମୟୂରଭଞ୍ଜରେ ଶିମିଳିପାଳରେ ଥିବାରୁ ତାହା ସହିତ ତୁଳନା କରିବା ଥିଲା ମୋର ମୁଖ୍ୟ ଉଦ୍ଦେଶ୍ୟ । ଗୋଟିକପରେ ଗୋଟିଏ ବସ ମନା ବ୍ୟାଘ୍ର ଯୋଜନା ଅଭିମୁଖେ ଆଗେଇ ଚାଲିଲା ଏବଂ ପରିଶେଷରେ ତମ୍ବୁ ପକାଇ ବସିବାର ଆୟୋଜନ କରାଯାଇଥିବା ଏକ ସ୍ଥାନରେ ଆମେ ସମସ୍ତେ ଯାଇ ପହୁଞ୍ଚିଲୁ । ସେ ପର୍ଯ୍ୟନ୍ତ କୌଣସି ଜୀବଜନ୍ତୁ ଥିବାର ସୂଚନା ମିଳୁ ନ ଥିଲା ବା ସେପରି ଘନ ଜଙ୍ଗଲ ମଧ୍ୟ ଦେଖାଯାଉ ନଥିଲା ।

ଆମେ ଆସାମର ଏହି ସମତଳ ଅଞ୍ଚଳ ମଧ୍ୟ ଦେଇ ଯାଉଥିବା ବେଳେ ଆସାମର ବହୁ ଗ୍ରାମ ଓ ବିଲବାଡ଼ି ନିକଟରେ ଯାଉଥାଉଁ । ଲୋକଙ୍କ ଆର୍ଥିକ ଅବସ୍ଥା ସେପରି ସ୍ୱଚ୍ଛଳ ଥିବାର ମନେହେଲା ନାହିଁ । କୃଷି କ୍ଷେତ୍ରରେ ସେପରି ଜଳସେଚନର କୌଣସି ବ୍ୟବସ୍ଥା ଥିବାର ଦେଖିବାକୁ ମିଳିଲା ନାହିଁ । ବ୍ୟାଘ୍ର ଯୋଜନା ସାଧାରଣତଃ ଘନ ଜଙ୍ଗଲ ଅଞ୍ଚଳରେ ସ୍ଥାପିତ ହୋଇଥାଏ । ଆସାମ ତଥା ପୂର୍ବାଞ୍ଚଳ ରାଜ୍ୟଗୁଡ଼ିକ ପାହାଡ଼ିଆ ତଥା ଜଙ୍ଗଲ ଅଞ୍ଚଳ ବୋଲି କୁହା ଯାଉଥିଲେ ହେଁ ସେପରି ଘନ ଜଙ୍ଗଲ ଥିବାର ଦେଖିବାକୁ ମିଳିଲା ନାହିଁ । ଘନ ଜଙ୍ଗଲ ଅଞ୍ଚଳରେ ବାଘ ରହିବାକୁ ଭଲ ପାଏ ବୋଲି ଏହିପରି ଯୋଜନା ଘନ ଜଙ୍ଗଲ ଅଞ୍ଚଳରେ ହିଁ କରାଯାଇଥାଏ । ବାଘର ଖାଦ୍ୟ ପାଇଁ ଏହିପରି ଯୋଜନା ସଂଲଗ୍ନ ଜଙ୍ଗଲ ମଧ୍ୟରେ ବହୁ ସଂଖ୍ୟାରେ ହରିଣ, ମିରିଗ, ପ୍ରଭୃତିରୁ ବ୍ୟାଘ୍ର ସଂଖ୍ୟା ଜଣାପଡ଼େ । ବାଘ ବର୍ଷକ ଭିତରେ ଯେତୋଟି ହରିଣ ବା ମିରିଗ ମାରିଖାଏ ସେହିଥିରୁ ହିଁ ଜଙ୍ଗଲ ବିଭାଗ ବାଘର ସଂଖ୍ୟା ଏକ ଆନୁମାନିକ ହିସାବ କରିଥାଏ, ବାଘର ଏହି ଖାଦ୍ୟର ଅଭାବ ହେଲେ ସେ ଗୋରୁ

ଗାଈ ପ୍ରଭୃତି ଗୃହପାଳିତ ପଶୁ ତଥା ମଣିଷକୁ ମଧ୍ୟ ମାରି ଖାଇଯାଏ । ମହାଭାରତରେ ଉଲ୍ଲେଖ କରାଯାଇଛି :-

" ନିର୍ବନଂ ବଧ୍ୟତେ ବ୍ୟାଘ୍ରଃ
ନିର୍ବ୍ୟାଘ୍ରଂ ଛେଦ୍ୟତେ ବନମ୍
ତଥା ଚ ବନଂ ରାକ୍ଷତି ବ୍ୟାଘ୍ରଃ
ବ୍ୟାଘ୍ରୋଽପି ପାଳୟତି ବନମ୍ "

ଜଙ୍ଗଲ ନଷ୍ଟ ହୋଇଗଲେ ବାଘ ରହିପାରିବ ନାହିଁ ଲୋକେ ବାଘକୁ ସହଜରେ ମାରି ଦେଇପାରିବେ । ଠିକ୍ ସେହିପରି ବାଘ ଜଙ୍ଗଲ ମଧ୍ୟରେ ନଥିଲେ ଲୋକେ ନିର୍ଭୟରେ ଜଙ୍ଗଲ ମଧ୍ୟରେ ପ୍ରବେଶ କରି ଜଙ୍ଗଲ ନଷ୍ଟ କରିଦେବେ । ତେଣୁ ବାଘ ଜଙ୍ଗଲ ରକ୍ଷା କରିବ ଓ ଜଙ୍ଗଲ ମଧ୍ୟ ବାଘକୁ ନିର୍ଭୟରେ ବଞ୍ଚି ରହିବାକୁ ସୁବିଧା ଦେବ । ଜଙ୍ଗଲ ସଂପର୍କରେ ଜଙ୍ଗଲ ସଂପଦର ସୁରକ୍ଷାର ଆବଶ୍ୟକତା ଦୃଷ୍ଟିରୁ ଆଜକୁ ହଜାର ହଜାର ବର୍ଷ ପୂର୍ବେ ଏକଥା ମହାଭାରତରେ ଉଲ୍ଲେଖ କରାଯାଇଛି ।

ଏହି ବିଖ୍ୟାତ ମନାବ୍ୟାଘ୍ର ଯୋଜନା ସଂପର୍କରେ ଆଗରୁ ଶୁଣିଥିବାରୁ ଏହା ଦେଖିବା ପାଇଁ ବିଶେଷ ଆଗ୍ରହ ଜନ୍ମିଲା । କିନ୍ତୁ ଏହି ଯୋଜନାର ଆରମ୍ଭରୁ ୫/୬ କି.ମି. ମଧ୍ୟକୁ ପ୍ରବେଶ ପର୍ଯ୍ୟନ୍ତ କୌଣସି ଜୀବଜନ୍ତୁ ଦେଖିବାକୁ ମିଳିଲା ନାହିଁ । ଏପରିକି ୮/୧୦ କି.ମି. ଅଞ୍ଚଳ ମଧ୍ୟରେ କେଉଁଠି କିମିତି କାଁ ଭାଁ ବଡ଼ ଗଣ୍ଡଟାଏ ଦେଖାଯାଉଥାଏ । ଏହି ମନାବ୍ୟାଘ୍ର ଯୋଜନାର ଆୟତନ ୫୦୦ ବର୍ଗ କି.ମି. ଜଙ୍ଗଲ ସହିତ ବୃକ୍ଷଲତା ବିହୀନ ଘାସ ଅଞ୍ଚଳ ମଧ୍ୟ ଏହାର ଅନ୍ତର୍ଭୁକ୍ତ । ଆମ ମଧ୍ୟରୁ କେତେକ ଜଙ୍ଗଲ ମଧ୍ୟକୁ ଆଉ କିଛିଦୂର ଯାଇ ମଧ୍ୟ କୌଣସି ଜୀବଜନ୍ତୁ ଦେଖିବାକୁ ମିଳି ନଥିଲା ବୋଲି କହୁଥିଲେ । ସେଠାରେ ଜଙ୍ଗଲ ବିଭାଗ ତରଫରୁ ପ୍ରାୟ ୩୦୦ ଲୋକଙ୍କର ମଧ୍ୟାହ୍ନ ଭୋଜନର ବ୍ୟବସ୍ଥା କରି ଏବଂ ଚାରିଘଣ୍ଟାରୁ ଅଧିକ କାଳ ବସରେ ଯାତ୍ରା କରି ଶେଷରେ କୌଣସି ଜୀବଜନ୍ତୁ ଦେଖି ନପାରି କେବଳ ଭୋଜିଖାଇ ଫେରିବା ହିଁ ସାର ହେଲା । ରାତି ପ୍ରାୟ ୮ଟା ବେଳକୁ ଗୌହାଟି ଫେରି ହୋଟେଲରେ ବିଶ୍ରାମ ନେଲୁଁ ।

ତହିଁ ପରଦିନ ବ୍ରହ୍ମପୁତ୍ର ନଦୀରେ ପ୍ରତିନିଧି ମାନଙ୍କ ପାଇଁ ନୌକା ବିହାର କାର୍ଯ୍ୟକ୍ରମ ରଖାଯାଇଥିଲା । କିନ୍ତୁ ମୁଁ ସେଥିରେ ଯୋଗ ନ ଦେଇ ସେଦିନ ବିମାନ ଯୋଗେ କଲିକତା ଫେରିଲି । ସେଦିନ ଉତ୍କଳ ଭବନରେ ରାତ୍ରି ଯାପନ କରି ପରଦିନ ସକାଳେ ଟ୍ରେନ୍‌ଯୋଗେ ବାଲେଶ୍ୱର ଆସି ସେଠାରୁ ନିଜଘର ବେତନଟୀ ପହୁଁଞ୍ଚିଲି ।

## "୧୯୮୯ ବର୍ଷର ବିଧାନସଭା ଅଧିବେଶନ"

ଏହି ବର୍ଷଟି ୮ମଥର ପାଇଁ ହୋଇଥିବା ସାଧାରଣ ନିର୍ବାଚନ ତଥା ଓଡ଼ିଶା ବିଧାନସଭାର ୯ମଥର ପାଇଁ ହୋଇଥିବା ନିର୍ବାଚନର ଶେଷବର୍ଷ । ଭାରତର ଲୋକସଭା ନିର୍ବାଚନଠାରୁ ଓଡ଼ିଶା ବିଧାନସଭା ନିର୍ବାଚନ ଥରେ ଅଧିକା ହୋଇଥିଲା । ଚଳିତ ବର୍ଷପରେ ଆସନ୍ତା ବର୍ଷର ପ୍ରାରମ୍ଭରେ ହିଁ ଲୋକସଭା ସହିତ ଓଡ଼ିଶା ବିଧାନସଭାର ନିର୍ବାଚନ ହେବାର ଯଥେଷ୍ଟ ସମ୍ଭାବନା ଥିବାରୁ ରାଜନୈତିକ ଦୃଷ୍ଟିକୋଣରୁ ଚଳିତ ବର୍ଷଟି ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ଥିଲା । ଏଇଥିପାଇଁ ସମସ୍ତ ରାଜନୈତିକ ତତ୍ପରତା ପ୍ରକାଶ ପାଉଥିବାର ଲକ୍ଷ୍ୟ କରାଯାଉଥିଲା । ଗତ ୧୦ ବର୍ଷ ଧରି ଉଭୟ କେନ୍ଦ୍ର ଓ ଆମ ରାଜ୍ୟରେ କଂଗ୍ରେସ ଶାସନ ଥିବାରୁ ପରବର୍ତ୍ତୀ ନିର୍ବାଚନରେ ଉଭୟ କେନ୍ଦ୍ର ଓ ରାଜ୍ୟ ସ୍ତରରେ କ୍ଷମତା ହାସଲ ପାଇଁ ଏବେଠାରୁ ତତ୍ପର ହୋଇ ଉଠୁଥାଆନ୍ତି । ତେଣୁ ନିଜ ନିଜ ଦଳର ସଂଗଠନ ଗୁଡ଼ିକୁ ସୁଦୃଢ଼ କରିବା ସଙ୍ଗେ ସଙ୍ଗେ କଂଗ୍ରେସ ଶାସନର ଦୋଷ ଦୁର୍ବଳତା ଗୁଡ଼ିକୁ ଲୋକଲୋଚନକୁ ଆଣିବା ପାଇଁ ବେଶ ସକ୍ରିୟ ହୋଇ ଉଠୁଥାଆନ୍ତି । ସବୁକ୍ଷେତ୍ରରେ ବିରୁଦ୍ଧଦଳ ଗୁଡ଼ିକ ନିଜନିଜର ବାହାଦୂରୀ ଜନସାଧାରଣଙ୍କ ଦୃଷ୍ଟିଗୋଚର କରିବାକୁ କେବେହେଲେ ପଶ୍ଚାତପଦ ହେଉ ନ ଥାଆନ୍ତି । ତେଣୁ ଏଥରର ବିଧାନସଭା ବୈଠକ କେବଳ ଗୁରୁତ୍ୱପୂର୍ଣ୍ଣ ନ ହୋଇ ବେଳେ ବେଳେ ଅତ୍ୟନ୍ତ ଉତ୍ତେଜନା ପୂର୍ଣ୍ଣ ହୋଇ ଉଠୁଥିଲା । ଏହିସବୁ କାରଣରୁ ବିଧାନସଭାର ଅଧକ୍ଷ ଭାବେ ମୋତେ ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ଅତି ସାବଧାନ ଓ ସତର୍କତାର ସହିତ ବୈଠକ ପରିଚାଳନା କରିବାକୁ ପଡୁଥିଲା । ଅତ୍ୟନ୍ତ ଦୁର୍ଭାଗ୍ୟର ବିଷୟ ଯେ ଭାରତର ଲୋକସଭା ତଥା ରାଜ୍ୟସଭାରେ ସେହି ସମୟରେ ଚାଲିଥିବା ଅଧିବେଶନ ଗୁଡ଼ିକରେ ମଧ୍ୟ ଭାରତର ସବୁଠାରୁ ଅଧିକ ବୁଦ୍ଧିଜୀବୀ ଓ ଦାୟିତ୍ୱପୂର୍ଣ୍ଣ ଲୋକ ପ୍ରତିନିଧିମାନେ ଅତି ନିନ୍ଦନୀୟ ଓ ଅଗଣତାନ୍ତ୍ରିକ ଘଟଣାମାନ ଘଟାଉଥିବାର ଦେଖା ଯାଉଥିଲା । ଏକ ସଂସଦୀୟ ଗଣତନ୍ତ୍ର ଶାସନରେ ଲୋକସଭା ତଥା ବିଧାନସଭା ଗୁଡ଼ିକୁ ମନ୍ଦିର ଭଳି ଏକ ପବିତ୍ର ପୀଠ ମନେ କରି ତାର ମର୍ଯ୍ୟାଦା ରକ୍ଷା କରିବା ସମସ୍ତଙ୍କର କର୍ତ୍ତବ୍ୟ । ମାତ୍ର ଉଭୟ ସେ ମର୍ଯ୍ୟାଦାକୁ କ୍ଷୁର୍ଣ୍ଣ କରିବାକୁ କେହି କୁଣ୍ଠାବୋଧ କରୁ ନ ଥିଲେ ବରଂ ଅଧିକ ଅଶୋଭନୀୟ

କାର୍ଯ୍ୟ ପ୍ରଦର୍ଶନ କରି ତଦ୍ୱାରା ରାଜନୈତିକ ଦଳ ଗୁଡ଼ିକ ଅଧିକ ଲୋକପ୍ରିୟତା ଅର୍ଜନ କରିବାର ପ୍ରୟାସ ଜାରୀ ରଖିଥିଲେ । ସମ୍ବାଦପତ୍ର ଗୁଡ଼ିକ ପ୍ରଚାରର ପ୍ରଧାନ ମାଧ୍ୟମ ହୋଇଥିଲେ ହେଁ ଏ ସବୁ ଆଶୋଭନୀୟ କାର୍ଯ୍ୟକଳାପ ଯୋଗୁଁ ଅନେକ ବିଧାନସଭାର କାର୍ଯ୍ୟ ଏପରିକି ଲୋକସଭା ତଥା ରାଜ୍ୟସଭାର କାର୍ଯ୍ୟ ମଧ୍ୟ ଚାଲି ନ ପାରି ବନ୍ଦ ହୋଇ ଯାଉଥିଲା ବା ନିର୍ଦ୍ଧାରିତ ସମୟ ପୂର୍ବରୁ ବନ୍ଦ ହୋଇଯିବାର ଦେଖା ଯାଉଥିଲା । ଅନେକ ସମୟରେ ଏଭଳି ଅସମ୍ମାନ ଜନକ କାର୍ଯ୍ୟ ଦ୍ୱାରା ଗୃହର ମର୍ଯ୍ୟାଦା ନଷ୍ଟ କରୁଥିବା ସଭ୍ୟମାନଙ୍କୁ ଭର୍ତ୍ସନା କରାଯାଉଥିଲା ବା ବହିଷ୍କାର କରାଯାଉଥିବାର ସଂବାଦମାନ ପ୍ରକାଶ ପାଉଥିଲା । ମାତ୍ର ଓଡ଼ିଶା ବିଧାନସଭାରେ ସେଭଳି ବା ତାଠାରୁ ଅଧିକ ଅଶୋଭନୀୟ କାର୍ଯ୍ୟ ହେଉଥିଲେ ହେଁ ମୁଁ ସେଥିରେ ବିଚଳିତ ନ ହୋଇ କେବେହେଲେ ବିଧାନସଭାର ନିର୍ଦ୍ଧାରିତ କାର୍ଯ୍ୟକ୍ରମ ବନ୍ଦ କରି ଦେଉନଥିଲି । ନିଜେ କେବେହେଲେ ଉତ୍ତେଜିତ ହେଉ ନ ଥିଲି ବା ଗଣ୍ଡଗୋଳ କାରୀଙ୍କ ଦାବୀ ଆଗରେ କେବେହେଲେ ମୁଣ୍ଡ ନୁଆଁଉ ନ ଥିଲି । ସବୁବେଳେ ନିରପେକ୍ଷ ଭାବେ ନିଷ୍ପତ୍ତିମାନ ଗ୍ରହଣ କରି ବିଧାନସଭା ତଥା ଗଣତାନ୍ତ୍ରିକ ପରଂପରାର ମର୍ଯ୍ୟାଦା ରକ୍ଷା କରି ପାରିଥିଲି । ସବୁଠାରୁ ଉଲ୍ଲେଖନୀୟ ଯେ ଅତି ଦୁର୍ଦ୍ଧାନ୍ତ ବ୍ୟକ୍ତିମାନଙ୍କ ବିରୁଦ୍ଧରେ କୌଣସି ଦଣ୍ଡ ବିଧାନ ନକରି ବରଂ ସେମାନଙ୍କୁ ଲଜ୍ଜା ଦେବା ଉଦ୍ଦେଶ୍ୟରେ କ୍ଷମା କରି ଦେଉଥିଲି । ବହୁ ସମୟରେ ସେଭଳି ପରିସ୍ଥିତିରେ ମଧ୍ୟ ସେ ଦିନର ନିର୍ଦ୍ଧାରିତ କାର୍ଯ୍ୟକ୍ରମ ସୁସମ୍ପନ୍ନ କରିପାରୁଥିଲି । ଅନ୍ୟ ରାଜ୍ୟରେ ବିଧାନସଭାର କାର୍ଯ୍ୟକାରୀ ଦିବସ ଗୁଡ଼ିକ ନିର୍ଦ୍ଧାରିତ ତାରିଖ ପର୍ଯ୍ୟନ୍ତ ଚାଲି ନ ପାରି ଅଗତ୍ୟା ବନ୍ଦ କରି ଦିଆଯାଉଥିବା ବେଳେ ଓଡ଼ିଶା ବିଧାନସଭାର ଦୁଇଟିଯାକ ଅଧିବେଶନ ପୂର୍ବବର୍ଷ ତୁଳନାରେ ଅଧିକ ଦିନ ବସି ପାରିଛି । ଆଇନ ପ୍ରଣୟନ କ୍ଷେତ୍ରରେ ସର୍ବାଧିକ ବିଠା ଆଣି ଗୃହୀତ ହୋଇପାରିଛି । ପ୍ରାୟ ଅଧିକାଂଶ ଦିନ ପୂର୍ବାହ୍ନ ୧୦ଟାବେଳେ ବୈଠକ ଆରମ୍ଭ ହୋଇ ରାତି ୯ଟା ଏପରିକି ବେଳେ ବେଳେ ରାତି ୧୧ଟା ପର୍ଯ୍ୟନ୍ତ ଚାଲିଛି । ଗୋଟିଏ ଦିନ ରାତି ୧ଟା ଓ ଆଉ ଦିନେ ରାତି ୪ଟା ପର୍ଯ୍ୟନ୍ତ ବିଧାନସଭା କାର୍ଯ୍ୟ କରାଯାଇ ପାରିଛି ।

## ''ସେ ବର୍ଷର ପ୍ରଥମ ବଜେଟ ଅଧିବେଶନ''

୧୯୮୯-୯୦ ବର୍ଷର ବଜେଟ ଅଧିବେଶନ ଫେବୃୟାରୀ ତା ୨୧ରିଖରେ ଆରମ୍ଭ ହୋଇ ଏପ୍ରିଲ୍ ତା୪ରିଖରେ ଶେଷ ହେବାର ଥିଲେ ହେଁ ତାହା ସେ ମାସର ୧୧ ତାରିଖ ପର୍ଯ୍ୟନ୍ତ ବୃଦ୍ଧି କରାଯାଇଥିଲା । ଏହି ଅଧିବେଶନ ମୋଟ ୫୦ ଦିନ ବସିଥିଲା ବେଳେ ସେ ବର୍ଷର ଅତିରିକ୍ତ ବଜେଟ୍ ଅଧିବେଶନ ସେପ୍ଟେମ୍ବର ୫ତାରିଖରୁ ଆରମ୍ଭ ହୋଇ ୧୫ତାରିଖ ପର୍ଯ୍ୟନ୍ତ ମୋଟ ୧୧ଦିନ ଧରି ଚାଲିଥିଲା । ପରଂପରା ଅନୁଯାୟୀ ବଜେଟ୍ ଅଧିବେଶନ ଆରମ୍ଭରେ ରାଜ୍ୟପାଳ ଭାଷଣ ଦେବାର ବିଧି ରହିଛି । ଆମ ରାଜ୍ୟର ଡ଼ଃ. ବିଶ୍ୱମ୍ଭର ନାଥ ପାଣ୍ଡେ ଏହା ପୂର୍ବରୁ ଅବସର ଗ୍ରହଣ କରି କଂଗ୍ରେସ ଦଳରୁ ଉତ୍ତରପ୍ରଦେଶ ରାଜ୍ୟ ବିଧାନସଭାକୁ ନିର୍ବାଚିତ ହୋଇଥିବାରୁ ସ୍ଥାୟୀଭାବେ କୌଣସି ରାଜ୍ୟପାଳଙ୍କ ନିଯୁକ୍ତି ଦିଆଗଲା ଏବଂ ନିୟମ ଅନୁଯାୟୀ ଫେବୃୟାରୀ ୨୧ରେ ତାଙ୍କର ଅଧିବେଶନ ଉଦ୍‌ଘାଟନ କରିବା ବିଧି । ଗତାନୁଗତିକ ରୀତିରେ ରାଜ୍ୟପାଳ ବିଧାନସଭା ପରିସର ମଧ୍ୟରେ ପୋଲିସ୍ ଅଭିବାଦନ ଗ୍ରହଣ କଲାପରେ ମୁଁ ତାଙ୍କୁ ପାଛୋଟି ଆଣି ତାଙ୍କ ଆସନରେ ଉପବେଶନ କରାଇଲି । ପରେ ରାଜ୍ୟପାଳ ତାଙ୍କ ଭାଷଣ ଆରମ୍ଭ କଲାମାତ୍ରେ ବିରୋଧୀ ଦଳର ନେତା ଶ୍ରୀଯୁକ୍ତ ବିଜୁ ପଟ୍ଟନାୟକ ଛିଡ଼ା ହୋଇ ଏକ ଲେଖା ପଢ଼ିବାକୁ ଆରମ୍ଭ କଲାରୁ ଦୁଇ ପକ୍ଷରୁ ପାଟିତୁଣ୍ଡ ଆରମ୍ଭ ହୋଇଗଲା । ମାତ୍ର ରାଜ୍ୟପାଳ ଏଥିପ୍ରତି ଭ୍ରୂକ୍ଷେପ ନ କରି ତାଙ୍କ ଭାଷଣ ପ୍ରଦାନ କଲେ । ଏହି ସମୟରେ ବିରୋଧୀ ଦଳର ସଭ୍ୟମାନେ କକ୍ଷ ତ୍ୟାଗକରି ଚାଲିଗଲେ । ଅବଶ୍ୟ ସେଦିନ ଅନ୍ୟ କୌଣସି ପ୍ରକାର ଅସୌଜନ୍ୟ ମୂଳକ ଘଟଣା ଘଟି ନଥିଲା ।

ରାଜ୍ୟପାଳଙ୍କୁ ସାମ୍ବିଧାନିକ ମୁଖ୍ୟଭାବେ ଗ୍ରହଣ କରାଯାଇ ଥିବାରୁ ତାଙ୍କପ୍ରତି ଆକ୍ଷେପ ବା ଅସମ୍ମାନ ପ୍ରଦର୍ଶନ ଅସମୀଚୀନ । କିନ୍ତୁ ବର୍ତ୍ତମାନ ମୂଲ୍ୟବୋଧ ରାଜନୀତିର ପତନ ଘଟିଥିବାରୁ ବିଧାନସଭାରେ ରାଜ୍ୟପାଳଙ୍କ ଭାଷଣ ବେଳେ ଏପରି ଠେଲାପେଲା ଓ ଅତ୍ୟନ୍ତ ବିଶୃଙ୍ଖଳ ପରିସ୍ଥିତି ହେଉଛି । ଯେଉଁଠି ଯେଉଁଦଳ ବିରୋଧୀ ଆସନରେ ଅଛି କ୍ଷମତାରେ ଥିବା ଦଳକୁ ଯେ କୌଣସି ଉପାୟରେ ହେଉନା କାହିଁକି ହଟାଇ ଦାଖଲ କରିବାକୁ ଯାଉଥିବାରୁ ଏଭଳି ପରିସ୍ଥିତି ଉପୁଜିବା ଅବଶ୍ୟମ୍ଭାମୀ । ଏଥିପାଇଁ କଂଗ୍ରେସର ବିରୋଦୀଦଳ ଅଣକଂଗ୍ରେସ ଯେପରି ଦାୟୀ ସେହିପରି ଯେଉଁଠି କଂଗ୍ରେସ ବିରୋଧୀ ଆସନରେ ଅଛି ସେଠି ମଧ୍ୟ ଏହିପରି ଅନୈତିକ ଘଟଣା ଘଟାଇବାରେ କୌଣସି ଗୁଣରେ କମ୍ ଦାୟୀ ନୁହେଁ ।

ଏହି ବଜେଟ୍ ଅଧିବେଶନର ସର୍ବମୋଟ ୩୫ଟି କାର୍ଯ୍ୟଦିବସ ମଧ୍ୟରୁ ପ୍ରାୟ ୨୦ଦିନରୁ ଅଧିକ ଦିନ ମାନଙ୍କରେ କିଛିନା କିଛି ଗଣ୍ଡଗୋଳ ହେବାର ଦେଖାଯାଇଥିଲା । ପ୍ରଥମଦିନ ରାଜ୍ୟପାଳଙ୍କ ଭାଷଣ ପରେ ପରଲୋକଗତ ବିଧାନସଭାର ସଭ୍ୟଙ୍କ ସଂପର୍କରେ ଶୋକପ୍ରସ୍ତାବ ଆସେ ଓ ତାପରେ ରାଜ୍ୟପାଳଙ୍କ ଭାଷଣ ଉପରେ ଧନ୍ୟବାଦ ପ୍ରସ୍ତାବ ଦିଆଯାଏ । ଏଥିରେ ସରକାରୀ ଦଳ ପକ୍ଷରୁ ଦୁଇଜଣ ପ୍ରସ୍ତାବକ ଓ ସମର୍ଥକ ଭାବେ କହିସାରିଲା ପରେ ବିଧାନସଭା ସାଧାରଣତଃ

ମୁଲତବୀ ରୁହେ । ବିରୋଧୀ ଦଳର ସଭ୍ୟମାନଙ୍କ ସେଦିନ ଅନ୍ୟ କୌଣସି ମୁଲତବୀ ପ୍ରସ୍ତାବ ପ୍ରଭୃତି ଆଲୋଚନାର ଅନ୍ତର୍ଭୁକ୍ତ ହୁଏନାହିଁ । ଏଥର କିନ୍ତୁ ଏ ପରଂପରାକୁ ଭଙ୍ଗକରି ବଲାଙ୍ଗୀର ଜିଲ୍ଲାର ବିଧାନସଭା ସଭ୍ୟ ଶ୍ରୀଯୁକ୍ତ ବାଳଗୋପାଳ ମିଶ୍ରଙ୍କୁ ସେଠାକାର ଜିଲ୍ଲାପାଳ ଏକ ଉନ୍ନୟନ ବୈଠକରେ ହାତକଡ଼ି ପକାଇ ଗିରଫ କରିବା ଘଟଣା ଉଠାଇ ସ୍ୱାଧିକାର ପ୍ରସ୍ତାବର ନୋଟିସ ଦେଲେ ଏବଂ ଶୋକପ୍ରସ୍ତାବ ପରେ ତାହା ଗ୍ରହଣ କରିବାକୁ ଦାବୀ କଲେ । ଏହି ଘଟଣାଟି ବିଧାନସଭା ବାହାରେ ଘଟିଥିବାରୁ ସ୍ୱାଧୀକାର ବିଚାରର ଅନ୍ତର୍ଭୁକ୍ତ ନ ହେଲେ ମଧ ଗୃହର ଜଣେ ସଭ୍ୟଙ୍କ ପ୍ରତି ଜିଲ୍ଲାପାଳଙ୍କ ବ୍ୟବହାର ଓ ଗିରଫଦାରୀ ଆଦେଶ ଅତ୍ୟନ୍ତ ଗୁରୁତର । ତେଣୁ ବିଧାନସଭା ବାହାରେ ବିଧାନସଭା ସଭ୍ୟମାନଙ୍କର ସ୍ୱାଧିକାର ସୁରକ୍ଷିତ ହେବାପାଇଁ ଗଠିତ କମିଟିକୁ ଏହି ଅଭିଯୋଗର ତଦନ୍ତ କରି ଏକ ରିପୋର୍ଟ ଦେବାପାଇଁ ମୁଁ ଘୋଷଣା କଲାପରେ ବିରୋଧୀ ଦଳର ସଭ୍ୟମାନେ ଗୃହର ମଧଭାଗକୁ ମାଡ଼ିଆସି ପ୍ରବଳ ପାଟିତୁଣ୍ଡ ଆରମ୍ଭ କରିଦେଲେ । ତା'ପରେ ଉକ୍ତ ରିପୋର୍ଟ ଏହି ଅଧିବେଶନର ୧୪ଦିନ ମଧରେ ନିର୍ଦ୍ଦିଷ୍ଟଭାବେ ଉପସ୍ଥାପନ କରିବାକୁ ନିର୍ଦ୍ଦେଶ ଦେଲାପରେ ତାହା ଗୃହରେ ଆଲୋଚନା ହେବାର ଘୋଷଣା କଲାରୁ ସମସ୍ତେ ଶାନ୍ତ ହେଲେ । ବିଧାନସଭାର ଜଣେ ସମ୍ମାନୀୟ ସଭ୍ୟ ଶ୍ରୀ ଶ୍ରଦ୍ଧାକର ସୁପକାରଙ୍କ ସଭାପତିତ୍ୱରେ ଗଠିତ ଏହି କମିଟି ନିର୍ଦ୍ଦିଷ୍ଟ ସମୟ ମଧରେ ତାଙ୍କ ରିପୋର୍ଟ ଦେବାପରେ ଆଲୋଚନା ଆରମ୍ଭ ହେଲା ଏବଂ କମିଟିଙ୍କ ସୁପାରିଶ୍ ଅନୁଯାୟୀ ଜିଲ୍ଲାପାଳ ତଥା ପୋଲିସ ସୁପରିଣ୍ଟେଣ୍ଡେଣ୍ଟଙ୍କ ବିରୁଦ୍ଧରେ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିବାକୁ ସରକାରଙ୍କୁ ନିର୍ଦ୍ଦେଶ ଦିଆଗଲା । ଜିଲ୍ଲାପାଳ ଜଣେ ହରିଜନ ସଂପ୍ରଦାୟର ଲୋକ ହୋଇଥିବାରୁ ବିଧାୟକ ଶ୍ରୀଯୁକ୍ତ ମିଶ୍ର ତାଙ୍କୁ ଆକ୍ଷେପକରି ସେ କେବଳ ଝାଡୁ ଦେବା କାମ ପାଇଁ ଉପଯୁକ୍ତ ବୋଲି ଅସମ୍ମାନ ଜନକ ମନ୍ତବ୍ୟ ଦେବାରୁ ଏପରି ଘଟଣା ଘଟିଥିଲା । ମାତ୍ର ବିଧାନସଭା କମିଟି ତଦନ୍ତ କଲାବେଳେ ଜଣେ ସଭ୍ୟଙ୍କର ଜିଲ୍ଲାପାଳଙ୍କୁ ହରିଜନ ବୋଲି ଏପରି କଟୁ ଓ ତାଚ୍ଛଲ୍ୟପୂର୍ଣ୍ଣ ମନ୍ତବ୍ୟ ଦେବାର ପ୍ରମାଣ ପାଇଥିଲେ ମଧ ସେ ସଂପର୍କରେ ଉକ୍ତ ସଭ୍ୟଙ୍କ ଏତାଦୃଶ ଆଚରଣର ନିନ୍ଦା ନ କରିବା ଅତ୍ୟନ୍ତ ପରିତାପର ବିଷୟ । ଏହାଫଳରେ କମିଟିର ସଭ୍ୟ ତଥା ବିଧାନସଭାର ସମ୍ମାନ ଲୋକଚକ୍ଷୁରେ ନ୍ୟୁନ ହୋଇଯାଉଛି ।

## ''କଳାହାଣ୍ଡି ଜିଲ୍ଲାର ନୂଆପଡ଼ା ମରୁଡ଼ି''

କଳାହାଣ୍ଡି ଜିଲ୍ଲାର ନୂଆପଡ଼ା ଏକ ଚିର ମରୁଡ଼ି ପ୍ରପୀଡ଼ିତ ଅଞ୍ଚଳ । ସାଧାରଣତଃ ବିରୋଧୀ ଦଳରୁ ଆସିଥିବା କୌଣସି ମୁଲତବୀ ପ୍ରସ୍ତାବର ଉତ୍ତରରେ ସରକାର ଯଥାର୍ଥଭାବେ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିବାର ହୃଦୟଙ୍ଗମ କଲେ ଅଧକ୍ଷ ତାହା ନାକଚ କରିଦିଅନ୍ତି । ସେଦିନ ସରକାରଙ୍କ ପ୍ରାଥମିକ ରିପୋର୍ଟପରେ ପ୍ରସ୍ତାବ ଉପରେ ସରକାରୀ ଦଳର ୪ଜଣ ଓ ବିରୋଧୀ ଦଳର ୫ଜଣ ସଭ୍ୟଙ୍କଠାରୁ ଶୁଣିଲାପରେ ବିଭାଗୀୟ ମନ୍ତ୍ରୀ ଉତ୍ତର ଦେବାରୁ ତାହା ନାକଚ କରାଗଲା । ବିରୋଧୀ ଦଳର ସଭ୍ୟମାନେ ଏଥିରେ ଭୀଷଣ ପାଟିତୁଣ୍ଡ କରି ଚାଲିଗଲେ । ଆଉଦିନେ ସେମାନଙ୍କ ଅନୁରୋଧକ୍ରମେ ସରକାରୀ ଦୃଷ୍ଟି ଆକର୍ଷଣକାରୀ ନୋଟିସର ଆଲୋଚନା ପାଇଁ ସୁଯୋଗ ଦେଇଥିଲି । କିନ୍ତୁ ବିରୋଧୀଦଳର ବିଶେଷ କରି ଜନତା ଦଳର ସଭ୍ୟମାନେ ସେଦିନ ଏତେ ଗଣ୍ଡଗୋଳ କଲେ ଯେ ଏହି ମରୁଡ଼ି ବିଷୟରେ ଆଲୋଚନା କରିବାକୁ ଡ଼ାକାଗଲେ ହେଁ କେହି ଆସିଲେ ନାହିଁ । ଏପରିକି କଳାହାଣ୍ଡି ଜିଲ୍ଲାର ଉପସ୍ଥିତ ସଭ୍ୟମାନଙ୍କୁ ମଧ ତାଙ୍କ ନିଜ ଜିଲ୍ଲା ସଂପର୍କରେ କହିବାକୁ ବିରୋଧୀଦଳ ପକ୍ଷରୁ ସୁଯୋଗ ଦିଆଗଲା ନାହିଁ । ଏପରିକି କଳାହାଣ୍ଡି ଜିଲ୍ଲାର ଉପସ୍ଥିତ ସଭ୍ୟମାନଙ୍କୁ ମଧ ତାଙ୍କ ନିଜ ଜିଲ୍ଲା ସଂପର୍କରେ କହିବାକୁ ବିରୋଧୀଦଳ ପକ୍ଷରୁ ସୁଯୋଗ ଦିଆଗଲା ନାହିଁ । କଳାହାଣ୍ଡି ଜିଲ୍ଲାର ବିରୋଧୀଦଳ ସଭ୍ୟମାନେ ମଧ ଏହି ଗଣ୍ଡଗୋଳରେ ମାତିଗଲେ । ଏହାପରେ ଆଉ କେତେଥର ଏହି ମରୁଡ଼ି ଅଞ୍ଚଳ ଆଲୋଚନା ପାଇଁ ଅନୁରୋଧ କଲେ ମଧ ସେଥିପାଇଁ ଅନୁମତି ଦିଆଗଲା ନାହିଁ । ସେହିପରି ଆଉଦିନେ କଟକ ଜିଲ୍ଲାର କାଜୁବାଦାମ ଚାଷ ସଂପର୍କରେ ଆସିଥିବା ଅଭିଯୋଗର ମୁଲତବୀ ପ୍ରସ୍ତାବ ଭୀଷଣ ଗଣ୍ଡଗୋଳ ମଧରେ ଆଲୋଚନା ଶେଷ ହେବା ମାତ୍ରେ ପୁଣି ଗଣ୍ଡଗୋଳ ଆରମ୍ଭ ହୋଇଗଲା । ଏହାର ରହସ୍ୟ ବୁଝିବାରେ ଜଣାଗଲା ଯେ, ଜନତା ଦଳର କେହି ଜଣେ ମୁଖ୍ୟ ବିଧାୟକଙ୍କର ସେଥିରେ କିଛି ଫାଇଦା ଥିବାରୁ ସେଥିପ୍ରତି ଗୁରୁତ୍ୱ ଦିଆଗଲା ନାହିଁ । ଏଥି ପୂର୍ବରୁ କଳାହାଣ୍ଡିରେ ଘଟୁଥିବା ମରୁଡ଼ି ଓ ଖାଦ୍ୟାଭାବ ଜନିତ ମୃତ୍ୟୁକୁ ସରକାରଙ୍କ ଚରମ ଅପାରଗତା ସଂପର୍କରେ ଗୃହରେ ବରାବର ଅଯଥା ଗଣ୍ଡଗୋଳ କରି ରାଜନୈତିକ ଫାଇଦା ଉଠାଇବା ପ୍ରଯତ୍ନ କରୁଥିଲେ । ଲୋକଙ୍କ ଦୁର୍ଦ୍ଦଶା ପ୍ରତି ଆନ୍ତରିକତା ନଥିବାର ଉକ୍ତ ଦିନର ଘଟଣାରୁ ଯଥେଷ୍ଟ ପ୍ରମାଣ ମିଳିଲା ।

## ''ରାଜ୍ୟପାଳଙ୍କ ଶପଥ ଗ୍ରହଣ ଉତ୍ସବରେ କଂଗ୍ରେସର ଉଚ୍ଛୃଙ୍ଖଳତା''

ଏହି ଅଧିବେଶନର ଅନ୍ୟ ଏକ ଘଟଣାରେ କଂଗ୍ରେସଦଳର ସଭ୍ୟ ତଥା ମନ୍ତ୍ରୀଙ୍କ ଏକ ଅତି ଲଜ୍ଜାକର ଘଟଣା ଘଟିଲା । ଅଧ୍ୟାପକ ଶ୍ରୀଯୁକ୍ତ ନୁରୁଲ ହାସାନଙ୍କ ଓଡ଼ିଶା ରାଜ୍ୟପାଳ ପଦରେ ବିଧିବଦ୍ଧ ଭାବେ ନିଯୁକ୍ତି ହେବାପରେ ରବୀନ୍ଦ୍ର ମଣ୍ଡପଠାରେ ଶପଥ ଗ୍ରହଣ ଉତ୍ସବ ଯଥାବିଧି ଅନୁଷ୍ଠିତ ହେଲା । ବିଧିବିଧାନ ଅନୁସାରେ ହାଇକୋର୍ଟର ମୁଖ୍ୟ ବିଚାରପତି

ରାଜ୍ୟପାଳଙ୍କୁ ଶପଥ ଗ୍ରହଣ କରାଇବା କଥା । ସେଦିନର ବିଧାନସଭା ବୈଠକ ପରେ ସଂଧ୍ୟା ବେଳକୁ ଉକ୍ତ ଶପଥ ଗ୍ରହଣ ଉତ୍ସବକୁ ବିଧାନସଭାର ସମସ୍ତ ସଭ୍ୟ ମନ୍ତ୍ରୀମଣ୍ଡଳର ସଭ୍ୟ ଓ ଅନ୍ୟ ସରକାରୀ ପଦସ୍ଥ କର୍ମଚାରୀମାନଙ୍କୁ ମଧ୍ୟ ନିମନ୍ତ୍ରଣ କରାଯାଇଥିଲା । ବିଧାନସଭା ଆରମ୍ଭ ବେଳକୁ ନୂତନ ରାଜ୍ୟପାଳ ରୂପେ ଉଦ୍‌ଘାଟନ କରିଥିଲେ ହେଁ ସେତେବେଳକୁ ପଶ୍ଚିମବଙ୍ଗର ରାଜ୍ୟପାଳ ପଦରୁ ସଂପୂର୍ଣ୍ଣ ଅବ୍ୟାହତି ନେଇ ନ ଥିବାରୁ ଓଡ଼ିଶାର ସ୍ଥାୟୀ ରାଜ୍ୟପାଳ ଭାବରେ ଶପଥ ଗ୍ରହଣ କରି ନ ଥିଲେ । ଶପଥ ଗ୍ରହଣ ଉତ୍ସବର ଅବ୍ୟବହିତ ପୂର୍ବରୁ କେତେକ ବିଧାନସଭା ସଭ୍ୟ ମନ୍ତ୍ରୀ ସେଠାରେ ପହଁଞ୍ଚି ସାମନାରେ ସେମାନଙ୍କ ପାଇଁ ବସିବାର ସ୍ଥାନ ବ୍ୟବସ୍ଥା କରାଯାଇ ନ ଥିବାର ଦେଖି ଅତ୍ୟନ୍ତ ଉତ୍‌କ୍ଷିପ୍ତ ହୋଇ ପଡ଼ିଲେ ଏବଂ ସେମାନଙ୍କ ପାଇଁ ନିର୍ଦ୍ଦିଷ୍ଟ ଭାବେ ରଖାଯାଇଥିବା ଚେୟାର ଗୁଡ଼ିକ ଗୋଇଠା ମାରି ପକାଇଦେଲେ ଓ ଉତ୍ସବ ସ୍ଥାନରୁ ବାହାରକୁ ଚାଲିଗଲେ । ସେତିକି ବେଳକୁ ମୁଁ ସେଠାରେ ପହଞ୍ଚି ଏଭଳି ଅଶୋଭନୀୟ କାର୍ଯ୍ୟ ନ କରି ସମ୍ମାନର ସହିତ ସେଠାରେ ବସିବାକୁ ଅନୁରୋଧ କଲେ ହେଁ କେହି ମୋ କଥା ନ ଶୁଣି ଅସଂଯତ ଭାବେ ଗୃହ ବାହାରେ ପାଟିତୁଣ୍ଡ କଲେ । ତେଣୁ ମୁଁ ସେଠାରୁ ଯାଇ ମୋ ବସିବା ସ୍ଥାନରେ ବସିଲି । ପ୍ରଧାନ ବିଚାରପତି ରାଜ୍ୟପାଳଙ୍କୁ ଶପଥପାଠ କରାଇଲା ପରେ ଉତ୍ସବ ଶେଷ ହେଲା । ସମସ୍ତେ ଚାଲିଗଲାପରେ ମୁଁ ଏ ସଂପର୍କରେ ଅନୁସନ୍ଧାନ କରି ଜାଣିଲି ଯେ ରାଜ୍ୟ ସରକାରଙ୍କ ପ୍ରଟୋକଲ ଅନୁଯାୟୀ ଯେଉଁପରି ଭାବରେ ସ୍ଥାନ ବ୍ୟବସ୍ଥା ହେବା କଥା ସେଥିରେ କୌଣସି ତ୍ରୁଟି ହୋଇନାହିଁ । ରାଜ୍ୟ ସରକାରଙ୍କ ସ୍ୱରାଷ୍ଟ୍ର ସଚିବ ଏହି ଦାୟିତ୍ୱରେ ଥିଲେ । ଏସବୁର ପ୍ରକୃତ ବିଷୟ ବୁଝିବାକୁ ଚେଷ୍ଟା ନ କରି କେତେକ ମନ୍ତ୍ରୀ ଓ ସରକାରୀ ଦଳର ବିଧାନସଭା ସଭ୍ୟ ଏପରି ଲଜ୍ଜାକର ଓ ଅଶୋଭନୀୟ ଘଟଣା ଘଟାଇଲେ । ବୋଧହୁଏ ବହୁଦିନ ଧରି କଂଗ୍ରେସ ସରକାର କ୍ଷମତାରେ ରହିବା ଫଳରେ ଏପରି ଅହଂକାର ମନ୍ତ୍ରୀ ତଥା ସଭ୍ୟମାନଙ୍କ ମଧ୍ୟରେ ଦେଖାଯିବାର ମନେହୁଏ ।

ତହିଁ ପରଦିନ ବିଧାନସଭାରେ ବିରୁଦ୍ଧଦଳ ପକ୍ଷରୁ ସରକାରୀ ଦଳକୁ ଅଧିକ ବଦନାମ କରି ଏଥିରୁ ଫାଇଦା ଉଠାଇବା ଉଦ୍ଦେଶ୍ୟରେ ଏକ ସ୍ୱାଧିକାର ଭଙ୍ଗ ପ୍ରସ୍ତାବ ଆଗତ ହେଲା, ସେଦିନର ଘଟଣା ପରେ ପରେ ମୁଁ ଠିକ ଏହାହିଁ ଆଶଙ୍କା କରୁଥିଲି ଯେ କେହି ଦଳ ବିରୁଦ୍ଧଦଳରେ ଥିଲେ ଏଭଳି ପଦକ୍ଷେପ ନେବା ସ୍ୱାଭାବିକ । ତେଣୁ ସେଦିନ ବିରୁଦ୍ଧଦଳରୁ ଆସିଥିବା ସ୍ୱାଧୀକାର ଓ ମୁଲତବୀ ପ୍ରସ୍ତାବ ଗୁଡ଼ିକ ସଙ୍ଗେ ସଙ୍ଗେ ଗୃହରେ ଆଲୋଚନା ପାଇଁ ବିରୁଦ୍ଧଦଳରୁ ଗଣ୍ଡଗୋଳ ଆରମ୍ଭ ହୋଇଗଲା । ଘଟଣାର ପୁଙ୍ଖାନୁପୁଙ୍ଖ ତଦନ୍ତ ନକରି ଏପରି ଆଲୋଚନା ଦ୍ୱାରା କିଛି ଲାଭ ମିଳିବ ନାହିଁ ଏବଂ ସରକାରୀ ଦଳ ସଂଖ୍ୟାଧିକ ଥିବାରୁ ବିରୁଦ୍ଧ ଦଳର ସମସ୍ତ ପ୍ରସ୍ତାବ ନାକଚ ହୋଇଯିବ ବୋଲି ଯେତେ ସେମାନଙ୍କୁ ବୁଝାଇଲେ ହେଁ କିଛି ନ ବୁଝି ସେହିପରି ପାଟିତୁଣ୍ଡ କରି ଚାଲିଲେ । ଫଳରେ ବିଧାନସଭାର ନିର୍ଦ୍ଧାରିତ ବିଷୟ ଆଲୋଚନା ହୋଇପାରିଲା ନାହିଁ । ତେଣୁଁ ଦୁଇଥର ବୈଠକ ମୁଲତବୀ ରଖିବାକୁ ପଡ଼ିଲା । ଏହାପରେ ଉଭୟ ଦଳର ମୁଖ୍ୟ ସଭ୍ୟମାନଙ୍କୁ ଡାକି ଏହାର ସମାଧାନ ପାଇଁ ଉଦ୍ୟମ କଲି । ଏ ସଂପର୍କରେ ବିଧାନସଭାର ଉଭୟଦଳର ବିଜ୍ଞ ସଭ୍ୟମାନଙ୍କୁ ନେଇ ଏକ କମିଟି ଦ୍ୱାରା ତଦନ୍ତ କରି ରିପୋର୍ଟ ଦାଖଲ କଲାପରେ ବିଧାନସଭାରେ ତାର ଆଲୋଚନା ପାଇଁ ମୁଁ ପରାମର୍ଶ ଦେଲି । ଅବଶ୍ୟ ମୋର ପରାମର୍ଶ ଉଭୟ ଦଳଙ୍କ ଦ୍ୱାରା ଗୃହୀତ ହେଲା । ସରକାରୀ ଦଳର କେତେକ ବିଜ୍ଞ ସଦସ୍ୟ ସେଦିନର ଘଟଣାକୁ ଦୁର୍ଭାଗ୍ୟଜନକ ବୋଲି ନିନ୍ଦା କରିଥିଲେ । ଅପରାହ୍ନ ବୈଠକରେ ଏହି ମର୍ମରେ ଏକ ପ୍ରସ୍ତାବ ଆସି ଏକ କମିଟି ଗଠିତ ହେଲା ଓ ଉକ୍ତ କମିଟି ନିର୍ଦ୍ଧାରିତ ସମୟ ମଧ୍ୟରେ ତାଙ୍କର ରିପୋର୍ଟ ଦେବାର ମଧ୍ୟ ସ୍ଥିରୀକୃତ ହେଲା । ଏହାପରେ ସେଦିନର ନିର୍ଦ୍ଧାରିତ ବିଷୟଗୁଡ଼ିକ ଗୋଟିକ ପରେ ଗୋଟିଏ ଆଲୋଚନା ଚାଲିଲା । ପୂର୍ବାହ୍ନରେ ଅଯଥା ସମୟ ନଷ୍ଟ ହୋଇଥିବାରୁ ସେଦିନ ରାତି ୧୦ଟା ପର୍ଯ୍ୟନ୍ତ ବୈଠକ ଚାଲି ନିର୍ଦ୍ଧାରିତ ବିଷୟ ଗୁଡ଼ିକର ଆଲୋଚନା ହେଲା ।

## "ଦୀର୍ଘ ୧୮ଘଣ୍ଟା ଧରି ବିଧାନସଭା ଅଧିବେଶନ"

ଦୀର୍ଘ ୧୭/୧୮ ଘଣ୍ଟା ଧରି ବିଧାନସଭାର ଅଧିବେଶନ ଚାଲିବା ଏହି ଅଧିବେଶନର ଏକ ବିଶେଷ ଉଲ୍ଲେଖନୀୟ ଘଟଣା । ଖର୍ଚ୍ଚଦାବୀ ଗୁଡ଼ିକର ଆଲୋଚନାର ଶେଷ ଦିବସରେ ସଂଧ୍ୟା ୭ଟା ପରେ ଆଲୋଚନା ହୋଇ ପାରି ନ ଥିବା ବିଭିନ୍ନ ବିଭାଗର ଖର୍ଚ୍ଚ ଗୁଡ଼ିକ ନିୟମ ଅନୁଯାୟୀ ଗିଲଟିନ୍ (ଆଲୋଚନା ନକରି ଗ୍ରହଣ କରିବା) ଦ୍ୱାରା ଗୃହୀତ ହେଲାପରେ ଜାରୀ ହୋଇଥିବା ଏକ ସରକାରୀ ଅଧ୍ୟାଦେଶ (ସଂଶୋଧନ ଆଇନ୍)ର ଆଲୋଚନା କରି ଗ୍ରହଣ କରିବା ସର୍ବସମ୍ମତି କ୍ରମେ ସ୍ଥିର କରାଗଲା । ବିଶ୍ୱବିଦ୍ୟାଳୟର କେତେକ ଆବଶ୍ୟକ ବିଷୟ ସଂଶୋଧନ କରିବା ଜରୁରୀ ହୋଇ ପଡ଼ିବାରୁ ରାଜ୍ୟପାଳଙ୍କୁ ପରାମର୍ଶ ଦେଇ ସରକାର ଏକ ଅଧ୍ୟାଦେଶ ଜାରୀ କରିଥିଲେ । ଏଭଳି ସରକାରୀ ଅଧ୍ୟାଦେଶ ଜାରୀ ହେବାର ଛଅ ସପ୍ତାହ ମଧ୍ୟରେ ପରବର୍ତ୍ତୀ ବିଧାନସଭା ବୈଠକରେ ତାହା ଗୃହୀତ ନ ହେଲେ ଜାରୀ ହୋଇଥିବା ଅଧ୍ୟାଦେଶଟି ବେଆଇନ ବା ଅକାମୀ ହୋଇଯିବାର ସାଧାରଣ ନିୟମ ରହିଛି । ତେଣୁ ସେଦିନଟି ଡେରି ହୋଇଗଲେ ଅଧ୍ୟାଦେଶ ଜାରୀ ହେବାର ଛଅ ସପ୍ତାହ ପୂରଣ ହୋଇଯିବ । ସୁତରାଂ ସରକାରୀ ଓ ବିରୁଦ୍ଧଦଳ ଉଭୟ ବସି ଆଲୋଚନା କରି ଅଧ୍ୟାଦେଶଟିକୁ ଗ୍ରହଣ କରିବାର ସ୍ଥିର

କରାଗଲା । ଉକ୍ତ ଅଧ୍ୟାଦେଶ ସଂପର୍କୀୟ ଚିଠା ଆଇନରେ କେତେକ ବିବାଦୀୟ ବିଷୟ ଥିବାରୁ ବିରୁଦ୍ଧ ଦଳରୁ ବହୁ ସଂଶୋଧନ ଆସିଲା । ତେଣୁ ଅଳ୍ପ ସମୟ ମଧ୍ୟରେ ଆଲୋଚନା ଶେଷ କରିବା ପାଇଁ ମୁଁ ସଭ୍ୟମାନଙ୍କୁ କେତେକ ପରାମର୍ଶ ଦେଲି । ତଦନୁଯାୟୀ ଉଭୟ ଦଳର ମୁଖ୍ୟ ସଭ୍ୟମାନେ ଅଣ ଆନୁଷ୍ଠାନିକ ଭାବେ ବସି ଏକମତ ହେବା ବିଷୟ ଗୁଡ଼ିକ ନିର୍ଦ୍ଧାରଣ କରିବେ ଓ ତାପରେ ଏକମତ ନ ହେବା ବିଷୟ (ଅତି ବିବାଦୀୟ ବିଷୟ) ଗୁଡ଼ିକ କେବଳ ଆଲୋଚନା ହେବ, ଏହା ଫଳରେ ଅଧିକ ସମୟ ବସିବାର ଆବଶ୍ୟକତା ପଡ଼ିବ ନାହିଁ । କିନ୍ତୁ କିଛି ସମୟ ଅଣ ଆନୁଷ୍ଠାନିକ ଭାବେ ବସି ଆଲୋଚନା ଦ୍ୱାରା ଗ୍ରହଣ କରାଯିବାକୁ ଗୃହର ଅଧିକ ସଂଖ୍ୟକ ସଭ୍ୟଙ୍କ ମତାନୁଯାୟୀ ସ୍ଥିର କରାଗଲା । ରାତି ପ୍ରାୟ ୯/୧୦ଟା ପର୍ଯ୍ୟନ୍ତ କାମ କଲାପରେ ମଧ୍ୟ ଗୃହରେ ଚିଠା ଆଇନର ଆଲୋଚନା ଶେଷ ନ ହେବାରୁ ବିଧାନସଭାର ଉପାଧ୍ୟକ୍ଷ ଓ ପେନାଲ ଚେୟାରମେନଙ୍କ ଦାୟିତ୍ୱରେ ଗୃହକାର୍ଯ୍ୟ ପରିଚାଳନା ଛାଡ଼ି ଦେଇ ବସାକୁ ଚାଲି ଆସିଲି । ମାତ୍ର ସେଦିନ ଆଲୋଚନା ଶେଷ ହୋଇ ଚିଠା ଆଇନ୍ ଗ୍ରହଣ କରିବାକୁ ରାତି ସାଢ଼େ ଚାରିଟା ହୋଇଗଲା ।

ଚିଠା ଆଇନର ବିଭିନ୍ନ ବିଷୟରେ ଆସିଥିବା ସଂଶୋଧନ ପ୍ରସ୍ତାବ ଗୁଡ଼ିକର ଅନେକ କ୍ଷେତ୍ରରେ ଭୋଟ ମଧ୍ୟ ଗ୍ରହଣ ହୋଇଥିବାର ଜାଣିଲି । ଆଲୋଚନା ଶେଷ ବେଳକୁ ବିରୁଦ୍ଧଦଳରୁ ମାତ୍ର ୭ଜଣ ଓ ସରକାରୀ ଦଳରୁ ୩୬ଜଣ ସଭ୍ୟ ଗୃହରେ ଉପସ୍ଥିତ ଥିଲେ । ଫଳରେ ସଂଖ୍ୟାଧିକ ଭୋଟରେ ଚିଠା ଆଇନଟି ଗୃହୀତ ହୋଇଥିଲା । ଏହା ଓଡ଼ିଶା ବିଧାନସଭା ଇତିହାସର ଏକ ବିଶେଷ ଘଟଣା ବୋଲି ମୁଁ ତହିଁ ପରଦିନ ଉଲ୍ଲେଖ କରି ସଂପୃକ୍ତ ଉଭୟଦଳର ସଭ୍ୟଙ୍କୁ ତାଙ୍କର ଅସୀମ ଧୈର୍ଯ୍ୟ ପାଇଁ ଧନ୍ୟବାଦ ଦେଲି । ସଂସଦୀୟ ଗଣତନ୍ତ୍ର ଶାସନ ପଦ୍ଧତିର ଏହା ହେଉଛି ବିଶେଷତ୍ୱ ବା ବୈଚିତ୍ର୍ୟ । ଗଣତନ୍ତ୍ର ପଦ୍ଧତିର ନିୟମ ଅନୁଯାୟୀ ବିରୁଦ୍ଧଦଳର ସଂଖ୍ୟା ଯେତେ କମ ହେଲେ ମଧ୍ୟ ଆଲୋଚନା ବେଳେ ସେମାନଙ୍କୁ ସେମାନଙ୍କ ମତଦାନର ଅଧିକାରରୁ କେହି ବଞ୍ଚିତ କରିପାରିବ ନାହିଁ ।

## ''ଅଧିକ ଦିନ ବୈଠକ''

ଏଥର ବିଧାନସଭା ସବୁଠାରୁ ଅଧିକ ଦିନ ବସିଥିଲା । ଏହି ଅଧିବେଶନ ୫୦ ଦିନରୁ ଅଧିକ ଦିନ ନିର୍ଦ୍ଧାରିତ ହୋଇଥିଲେ ହେଁ ସର୍ବମୋଟ କାର୍ଯ୍ୟଦିବସ ଥିଲା ମାତ୍ର ୩୫ଦିନ । ଏହି ବୈଠକର ଅଧିକାଂଶ ଦିନ ପ୍ରାୟ ରାତି ୭/୮ଟା ପର୍ଯ୍ୟନ୍ତ ଚାଲେ ଏବଂ କେତେଦିନ ପ୍ରାୟ ଅର୍ଦ୍ଧରାତ୍ରି ପର୍ଯ୍ୟନ୍ତ ବୈଠକ ବସି ସେଦିନର ନିର୍ଦ୍ଧାରିତ କାର୍ଯ୍ୟକ୍ରମ ଗୁଡ଼ିକ ଶେଷ କରାଯାଏ । ଆଜି ଶେଷଦିନ ହୋଇଥିବାରୁ ମୁଁ ଆରମ୍ଭରେ ପହୁଁଞ୍ଚି ଅଧିବେଶନର ଶେଷ ଦିବସ ଦୃଷ୍ଟିରୁ ଏକ ସୌହାର୍ଦ୍ଦ୍ୟପୂର୍ଣ୍ଣ ବାତାବରଣ ମଧ୍ୟରେ ସମୟ କଟାଇ ଆନନ୍ଦରେ ପରସ୍ପରଙ୍କ ଠାରୁ ବିଦାୟ ନେବାକୁ ସମସ୍ତଙ୍କୁ ଅନୁରୋଧ କରିଥିଲି । ସେ ବର୍ଷ ଭାରତର ଅଧିକାଂଶ ରାଜ୍ୟର ବିଧାନସଭା ଗୁଡ଼ିକ ଏପରିକି ରାଜ୍ୟସଭା ଓ ଲୋକସଭା ମଧ୍ୟ ନିର୍ଦ୍ଧାରିତ ସମୟ ନ ପୂରୁଣୁ ଅତ୍ୟନ୍ତ ଅଶାନ୍ତ ବାତାବରଣ ମଧ୍ୟରେ ପରିସମାପ୍ତି ଘଟିଥିଲା । ଏପରିକି ଅନେକ କ୍ଷେତ୍ରରେ ସଭ୍ୟମାନଙ୍କୁ ଗଣ୍ଡଗୋଳ ଯୋଗୁଁ ଦଣ୍ଡବିଧାନ ସ୍ୱରୂପ ଗୃହରୁ ବହିଷ୍କାର ଓ ନିର୍ଦ୍ଦିଷ୍ଟ ଦିନ ପର୍ଯ୍ୟନ୍ତ କେତେକଙ୍କୁ ଯୋଗଦାନରୁ ରହିତ (suspend) ମଧ୍ୟ କରାଯାଇଥିଲା । ମାତ୍ର ଓଡ଼ିଶା ବିଧାନସଭାରେ ଅନେକ ସମୟରେ ସେହିପରି ବା ତତୋଧିକ ଅଶାନ୍ତ ପରିବେଶ ଉପୁଜି ଥିଲେ ହେଁ କାହାରି ପ୍ରତି କୌଣସି ପ୍ରକାର ଦଣ୍ଡ ବିଧାନ କରା ନ ଯାଇ ଅତି ଧୈର୍ଯ୍ୟର ସହିତ ନିର୍ଦ୍ଧାରିତ କାର୍ଯ୍ୟକ୍ରମ ପରିସମାପ୍ତ ହୋଇ ପାରୁଥିଲା । ସେଦିନ ଶେଷଦିନ ହୋଇଥିବାରୁ ସକାଳ ସାଢ଼େ ଆଠଟାବେଳକୁ ଅଧିବେଶନ ଆରମ୍ଭ ହେଲା ଏବଂ ବୈଠକ ପ୍ରାୟ ୩ଘଣ୍ଟା ଚାଲିଲାପରେ ସାଢ଼େ ଏଗାରଟା ବେଳକୁ ମୁଁ ମୋ ପ୍ରକୋଷ୍ଠକୁ ଆସିଲି । ଆସିଲା ବେଳେ ଅଳ୍ପ ସମୟ ମଧ୍ୟରେ ପୁଣି ଫେରିଆସି ଆପଣମାନଙ୍କ ସହଯୋଗ ପାଇଁ ଧନ୍ୟବାଦ ଜ୍ଞାପନ କରି ଆପଣମାନଙ୍କଠାରୁ ବିଦାୟ ନେବି ବୋଲି କହିଲି । ମୋଠାରୁ ଏହି ବିଦାୟ ନେବା କଥା ଶୁଣି ବିରୁଦ୍ଧଦଳର କେତେଜଣ ସଭ୍ୟ ସଙ୍ଗେ ସଙ୍ଗେ କହିଉଠିଲେ, ''ଆପଣ ସାର୍ ସବୁଦିନେ ଏହିପରି ଆମର ଅଧ୍ୟକ୍ଷ ରହିବେ, ଆପଣଙ୍କୁ ବିଦାୟ ଦେବ କିଏ ?'' ମୁଁ ଅଧ୍ୟକ୍ଷ ଆସନ ଛାଡ଼ିଲାପରେ ଉପାଧ୍ୟକ୍ଷ ଆସନକୁ ଗଲେ । ଅଧିବେଶନ ମଧ୍ୟରେ ସରକାରଙ୍କ ପକ୍ଷରୁ ଆସିଥିବା କେତେକ ଚିଠା ଆଇନର ଆଲୋଚନା ସମାପ୍ତ ହୋଇ ନ ଥିବାରୁ ସେ ଗୁଡ଼ିକର ଆଲୋଚନା ଚାଲିଥିଲା ବେଳେ ବିରୁଦ୍ଧ ଦଳରୁ ସୌହାର୍ଦ୍ଦ୍ୟପୂର୍ଣ୍ଣ ଓ ଶାନ୍ତ ବାତାବରଣ ସଂପୂର୍ଣ୍ଣ ରୂପେ ନଷ୍ଟ ହୋଇଗଲା । ସେମାନେ ହଠାତ୍ ଦାବୀ କଲେ ସରକାରୀ ଦଳର ମନ୍ତ୍ରୀମାନେ ତାଙ୍କ ସଂପତ୍ତି ତାଲିକା ଅଧ୍ୟକ୍ଷଙ୍କ ନିକଟରେ କାହିଁକି ଦାଖଲ କରିନାହାନ୍ତି । ଅବଶ୍ୟ ମୁଁ ପୂର୍ବରୁ ଏଭଳି ସଂପତ୍ତି ତାଲିକା ଗ୍ରହଣ କରିବାକୁ ପ୍ରତ୍ୟାଖାନ କରିଦେଇ ଥିଲି । ମୋ ନିଷ୍ପତ୍ତି ଅନୁସାରେ ମନ୍ତ୍ରୀମାନଙ୍କର ବା ଗୃହର ଅନ୍ୟ କୌଣସି ସଭ୍ୟଙ୍କ ସଂପତ୍ତି ତାଲିକା ବିଧାନସଭା ଗ୍ରହଣ କରିବାର ପରଂପରା ନ ଥିଲା । ତାଙ୍କ ସହିତ ବିରୁଦ୍ଧଦଳର ଅନ୍ୟ କେତେକ ସଭ୍ୟ ମିଶିଯାଇ ଏପରି ଅବସ୍ଥା ସୃଷ୍ଟି କଲେ ଯେ, ସେଦିନ ଆଲୋଚନା ପାଇଁ ରଖାଯାଇ ଥିବା ଚିଠା ଆଇନ ଗୁଡ଼ିକ ଆଲୋଚନା ହୋଇପାରିଲା ନାହିଁ । ଫଳରେ ଉପାଧ୍ୟକ୍ଷ ବାଧ୍ୟହୋଇ ଅଧିବେଶନକୁ ଅନିର୍ଦ୍ଦିଷ୍ଟ କାଳପାଇଁ ବନ୍ଦ କରିଦେବାର ଘୋଷଣା କଲେ । ଅଧିବେଶନ ଶେଷରେ

ଅଧ୍ୟକ୍ଷଙ୍କ ଦ୍ୱାରା ଗୃହର କେତେଗୁଡ଼ିଏ କମିଟିର ନାମ ମଧ୍ୟ ଘୋଷଣା କରାଯାଏ । ସେ ସମସ୍ତ ନାମ ତାଲିକା ପ୍ରସ୍ତୁତ ହୋଇ ମୋ ନିକଟରେ ଥିଲା । ଶେଷ ହେବା ପୂର୍ବରୁ ପୁଣି ଗୃହକୁ ଆସି ସମସ୍ତ କମିଟିର ସଭ୍ୟଙ୍କ ନାମ ଘୋଷଣା କରି ସଭ୍ୟମାନଙ୍କର ମଙ୍ଗଳ କାମନା କରି ବିଦାୟ ନେଇଥାଆନ୍ତି । ସଭ୍ୟମାନେ ମଧ୍ୟ ମୋତେ କୃତଜ୍ଞତା ଜଣାଇ ଆନନ୍ଦ ଓ ଉଲ୍ଲାସ ମଧ୍ୟରେ ଅଧିବେଶନ ସମାପ୍ତ ହୋଇଥାଆନ୍ତା । ମାତ୍ର ଜଣେ ସଭ୍ୟଙ୍କ ଅପଚେଷ୍ଟାରୁ ତାହା ବିଫଳ ହେଲା । ସେ ସଭ୍ୟଜଣକ ହେଉଛନ୍ତି ବିରୁଦ୍ଧଦଳର ଜଣେ ବଳିଷ୍ଠ ସଭ୍ୟ ଶ୍ରୀ ଶ୍ରୀକାନ୍ତ ଜେନା । ତେଣୁ ଗୃହ ଅନିର୍ଦ୍ଦିଷ୍ଟ କାଳପାଇଁ ମୁଲତବୀ ରହିବାର ହଠାତ୍ ଘୋଷଣା ହେବାପରେ ମୁଁ ମୋ ପ୍ରକୋଷ୍ଠର ଦୁଃଖର ସହିତ କାର ନିକଟକୁ ଆସିଲା ବେଳେ ବିରୁଦ୍ଧଦଳର ଜଣେ ମାତ୍ର ସଭ୍ୟ ଶ୍ରୀ ତ୍ରିଲୋଚନ କାନୁନ୍‌ଗୋ ମୋ ନିକଟକୁ ଆସି ଦୁଃଖର ସହିତ ମୋତେ ଧନ୍ୟବାଦ ଜଣାଇଁ ବିଦାୟ ଦେଲେ । ଏଭଳି ପରିସ୍ଥିତି ସୃଷ୍ଟି କରିବା ପଛରେ କେବଳ ରାଜନୈତିକ ଉଦ୍ଦେଶ୍ୟ ଛଡ଼ା ଅନ୍ୟ କିଛି ନଥିଲା ।

## "ବିଧାନସଭାକୁ ପିଲାଖେଳରେ ପରିଣତ କରିବା"

ଆସନ୍ତା ବର୍ଷକୁ ଅର୍ଥାତ୍ ୧୯୯୦ରେ ସାଧାରଣ ନିର୍ବାଚନ ହେବାର ଥାଏ । ତେଣୁ ବିରୁଦ୍ଧଦଳ ପକ୍ଷରୁ ବିଭିନ୍ନ ଆଳରେ ନାନାପ୍ରକାର ଗଣ୍ଡଗୋଳ ସୃଷ୍ଟିକରି ସରକାରୀ ଦଳକୁ ନାନାପ୍ରକାର ବଦ୍‌ନାମ କରାଯିବା ଥିଲା ଏକମାତ୍ର ଉଦ୍ଦେଶ୍ୟ । ବିଧାନସଭା ଭଳି ପବିତ୍ର ଅନୁଷ୍ଠାନକୁ ଏପରି ଅଶୋଭନୀୟ ଓ ମର୍ଯ୍ୟାଦାହାନୀ କାର୍ଯ୍ୟର ମାଧମ କରା ନ ଯାଇ ନିର୍ବାଚନ ସମୟରେ ସରକାରୀ ଦଳର ଟିକିନିଖି ଭୁଲ ତ୍ରୁଟି ଓ କୁଶାସନ ଗୁଡ଼ିକ ସର୍ବସାଧାରଣରେ ସମାଲୋଚନା କରିବାର ସାମ୍ବିଧାନିକ ସୁଯୋଗ ଥିଲେ ହେଁ ଜାତୀୟ ସ୍ତରରେ ଲୋକସଭାଠାରୁ ଆରମ୍ଭ କରି ପ୍ରାଦେଶିକ ସ୍ତରରେ ବିଧାନସଭା ପର୍ଯ୍ୟନ୍ତ ପ୍ରତିକ୍ଷେତ୍ରରେ ଏପରି ଅସୌଜନ୍ୟ କ୍ରିୟା କଳାପ ଦ୍ୱାରା ଯେଉଁମାନେ ରାଜନୈତିକ ଫାଇଦା ଉଠାଇବାକୁ ଉଦ୍ୟମ କରୁଛନ୍ତି ସେମାନେ ଭୁଲି ଯାଉଛନ୍ତି ଯେ ସେମାନଙ୍କ ଏତାଦୃଶ ଆଚରଣ ଦ୍ୱାରା ଗଣତନ୍ତ୍ର ପ୍ରତି ଅଯଥା ଅବିଶ୍ୱାସ ସୃଷ୍ଟି ହେଉଛି । ଏପରି ମନୋଭାବ ଭିବିଷ୍ୟତ ପାଇଁ ଆଦୌ ସ୍ପୃହଣୀୟ ନୁହେଁ । ସ୍ୱାଧୀନତା ପ୍ରାପ୍ତି ପରେ ଆମର ସମ୍ବିଧାନ ଅନୁଯାୟୀ ସଂସଦୀୟ ଗଣତନ୍ତ୍ର ପ୍ରବର୍ତ୍ତିତ ହୋଇ ନବମଥର ପାଇଁ ସାଧାରଣ ନିର୍ବାଚନ ମାଧ୍ୟମରେ ଲୋକଙ୍କ ଦ୍ୱାରା ସରକାର ଗଠନ କରିବା ପରେ ନାଗରିକ ଅଧିକାର ସାବ୍ୟସ୍ତ କରିବାର ସୁଯୋଗ ମିଳିଥିଲେ ହେଁ ଏଥିରୁ ସାଧାରଣ ନାଗରିକ ବା ଲୋକ ପ୍ରତିନିଧି ମାନଙ୍କର କିଛି ଶିକ୍ଷା ଲାଭ କରିଥିବାର ମନେ ହୁଏନାହିଁ । ତହିଁର କେତୋଟି ନିର୍ଦ୍ଦିଷ୍ଟ ଉଦାହରଣ ଦେବାକୁ ବାଧ ହେଉଛି । ଏବର୍ଷର ଅଧିବେଶନ କାଳର କେତୋଟି ଘଟଣାରୁ ଏହା ପ୍ରତ୍ୟକ୍ଷଭାବେ ପ୍ରତୀୟମାନ ହୁଏ ।

ଏହି ଅଧିବେଶନ ଚାଲିଥିବା ସମୟରେ ଏକ ପ୍ରଶ୍ନର ଉତ୍ତରରେ ଭୁବନେଶ୍ୱର ରାଜଧାନୀ ଅଞ୍ଚଳର ଘରଡ଼ିହ ବଣ୍ଟନ ସଂପର୍କରେ ମୁଖ୍ୟମନ୍ତ୍ରୀ ପ୍ରକୃତ ତଥ୍ୟ ପ୍ରକାଶ ନ କରି ତଥା ନିଜ ପରିବାର ଓ ଭାଇବନ୍ଧୁଙ୍କୁ ବେଆଇନ ଭାବେ ବଣ୍ଟା ଯାଇଥିବା ଘରଡ଼ିହ ସଂକ୍ରାନ୍ତୀୟ ପ୍ରକୃତ ଘଟଣା ନ ଜଣାଇବାର ଅଭିଯୋଗ କରି ବିରୁଦ୍ଧଦଳ ତରଫରୁ ଘୋର ଗଣ୍ଡଗୋଳ ସୃଷ୍ଟି ହେଲା । ଉକ୍ତ ସଭ୍ୟମାନେ ନିଜ ନିଜ ଆସନରୁ ଉଠିଆସି ଗୃହ ମଧ୍ୟକୁ ମାନି ଆସିଲେ ଓ ରିପୋର୍ଟରଙ୍କଠାରୁ କାଗଜପତ୍ର ଛଡ଼ାଇ ନେଇ ସେମାନଙ୍କ ଟେବୁଲ ଉପରେ ଶୋଇଲେ ଏବଂ କେତେକ ଟେବୁଲ ଉପରେ ଛିଡ଼ା ହୋଇ ସ୍ଲୋଗାନମାନ ଦେବାକୁ ଲାଗିଲେ । ଘଟଣାର ସତ୍ୟାସତ୍ୟ ଉଦ୍‌ଘାଟନ କରି ତହିଁର ଯଥାର୍ଥ ପ୍ରତିକାର କରିବାର ଉଦ୍ୟମ ନ କରି ରାଜନୈତିକ ଉଦ୍ଦେଶ୍ୟ ସାଧନ ଥିଲା ଏହାର ମୁଖ୍ୟ ଉଦ୍ଦେଶ୍ୟ । ଏପରିକି ବିରୁଦ୍ଧଦଳର ମୁଷ୍ଟିମେୟ ମହିଳା ସଭ୍ୟ ମଧ୍ୟ ଗୃହ ମଧ୍ୟକୁ ଆସି ଏଭଳି ଅସୌଜନ୍ୟ ପରିସ୍ଥିତି ସୃଷ୍ଟି କରିବାରେ ପଶ୍ଚାତପଦ ହୋଇନଥିଲେ । ବିରୁଦ୍ଧଦଳରୁ ଏଭଳି ପରିସ୍ଥିତି ସୃଷ୍ଟି ହେବାପରେ ସରକାରୀ ଦଳର କେତେକ ସଭ୍ୟ ମଧ୍ୟ ଏହାର ପ୍ରତିରୋଧ ପାଇଁ ଗୃହ ମଧ୍ୟକୁ ଆସି ବିରୁଦ୍ଧଦଳର ସଭ୍ୟଙ୍କ ସହ ଧସ୍ତାଧସ୍ତି ଓ ମୁଥ ମରାମରି ଆରମ୍ଭ କରିଦେଲେ । ମୋର ସମସ୍ତ ପ୍ରକାର ନିବେଦନ ଓ ନିୟନ୍ତ୍ରଣ କେହି ମାନିଲେ ନାହିଁ । ଏହି ଘଟଣା ମଧ୍ୟରେ ବିରୁଦ୍ଧଦଳର ଅଧିକ ଗଣ୍ଡଗୋଳରକାରୀ ଜଣେ ସଭ୍ୟ ଶ୍ରୀ ପ୍ରଦୀପ ମହାରଥୀ ଉକ୍ତ ଧସ୍ତାଧସ୍ତି ମଧ୍ୟରେ ତଳେ ପଡ଼ିଯାଇ ସଂଜ୍ଞାହୀନ ହୋଇଯିବାର ଛଳନା କରିବାରୁ ମୁଁ ଅଗତ୍ୟା ସେ ଦିନକ ପାଇଁ ବିଧାନସଭା ମୁଲତବୀ ଘୋଷଣା କରିଦେଲି । ଏହାପରେ ବିରୁଦ୍ଧଦଳର ସଭ୍ୟମାନେ ଶ୍ରୀ ମହାରଥିଙ୍କୁ ସେହିପରି ଚେତନାଶୂନ୍ୟ ଅବସ୍ଥାରେ ହାସପାତାଳକୁ ନେଇଗଲେ । ଏହାପରେ ଅଧ୍ୟକ୍ଷ ଭାବରେ ମୋର ମଧ୍ୟ ସଭ୍ୟଙ୍କ ପ୍ରତି କିଛି କର୍ତ୍ତବ୍ୟ ଅଛି ମନେକରି ମୁଁ ମଧ୍ୟ ହାସପାତାଳକୁ ଗଲି, ସେଠାରେ ମୁଖ୍ୟ ଚିକିତ୍ସକଙ୍କୁ ଡ଼କାଇ ବିଧାନସଭା ସଦସ୍ୟ ଶ୍ରୀ ମହାରଥିଙ୍କ ସ୍ୱାସ୍ଥ୍ୟ ସଂପର୍କରେ ଜାଣିବାକୁ ଚାହିଁଲି । ପରୀକ୍ଷାରୁ ତାଙ୍କ ସ୍ୱାସ୍ଥ୍ୟ ସଂପର୍କରେ କିଛି ଖରାପଥିବା କଥା ସେ ଅସ୍ୱୀକାର କଲେ ଓ ସଭ୍ୟ ମହାଶୟ କେବଳ ଛଳନା କରି ଏପରି ଅବସ୍ଥା ଦେଖାଉଛନ୍ତି ବୋଲି କହିଲେ । ମୁଁ ଦେଖି ଆଶ୍ଚର୍ଯ୍ୟ ହେଲି ଯେ ଶ୍ରୀ ମହାରଥି ସେ ପର୍ଯ୍ୟନ୍ତ ସେହିପରି ନିଶ୍ଚଳ ଭାବରେ ପଡ଼ି ରହିଥିଲେ, ଏହାପରେ ଅନ୍ୟଦିନ ସେ ଏପରି ଛଳନା କରୁଥିବା ବିଷୟ ମୋଠାରେ ପ୍ରକାଶ କରିଥିଲେ । ବିରୁଦ୍ଧଦଳର ମୁଖ୍ୟ ସଭ୍ୟମାନେ ମଧ୍ୟ ମହାରଥିଙ୍କ ଏଭଳି ଛଳନାପୂର୍ଣ୍ଣ ଘଟଣାକୁ ନିଃସଂକୋଚ ସମର୍ଥନ ଜଣାଇଥିଲେ । ଏହିପରି ଭାବରେ ବିଧାନସଭାକୁ ଖେଳଘର ରୂପେ ପ୍ରଦର୍ଶନ କରିବାକୁ ଲୋକ ପ୍ରତିନିଧିମାନେ କୁଣ୍ଠାବୋଧ କରିନଥିଲେ ।

## ''୧୯୮୯ ବର୍ଷର ଅତିରିକ୍ତ ବଜେଟ୍ ଅଧିବେଶନ''

ଏହା ହେଉଛି ଓଡ଼ିଶାର ନବମ ବିଧାନସଭାର ଶେଷ ଅଧିବେଶନ । ଏହା ସେପ୍ଟେମ୍ବର ୫ତାରିଖରୁ ଆରମ୍ଭ ହୋଇ ୧୫ ତାରିଖରେ ଶେଷ ହୋଇଥିଲା । ଉକ୍ତ ଅଧିବେଶନ ମାତ୍ର ଆଠଦିନ ଥିଲା କାର୍ଯ୍ୟଦିବସ । ଏହି ଅଧିବେଶନ ଅଳ୍ପଦିନ ପାଇଁ ଅନୁଷ୍ଠିତ ହୋଇଥିଲେ ହେଁ ଏହାର ଅଳ୍ପ କେତେମାସ ପରେ ଶେଷ ବିଧାନସଭାର ସାଧାରଣ ନିର୍ବାଚନ ଥିବା ଦୃଷ୍ଟିରୁ ଏହା ଥିଲା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ଅବଶ୍ୟ ବିଧାନସଭା ଆରମ୍ଭ ହେବାର ପ୍ରଥମ ତିନିଦିନ ପର୍ଯ୍ୟନ୍ତ କୌଣସି ପ୍ରକାର ଗଣ୍ଡଗୋଳ ସୃଷ୍ଟି ହୋଇ ନଥିଲା ମାତ୍ର ଶେଷ ତିନିଦିନର ଘଟଣା ଥିଲା ବିଧାନସଭା ଇତିହାସରେ ସବୁଠାରୁ ଦୁର୍ଭାଗ୍ୟପୂର୍ଣ୍ଣ ଓ କଳଙ୍କମୟ । ସଂସଦୀୟ ଗଣତନ୍ତ୍ର ବ୍ୟବସ୍ଥାରେ ଏହାଠାରୁ ଅଧିକ ଅଗଣତାନ୍ତ୍ରିକ ଓ ଅସୌଜନ୍ୟପୂର୍ଣ୍ଣ ଘଟଣା ଅନ୍ୟ କେଉଁଠି ଘଟିବାର ଜଣାନାହିଁ । ସେପ୍ଟେମ୍ବର ୧୩ତାରିଖ ଦିନ ଅନ୍ୟଦିନ ପରି ରାତି ପ୍ରାୟ ୧୦ଟା ପର୍ଯ୍ୟନ୍ତ ଅଧିବେଶନ ଚାଲି ସେ ଦିନର ସମସ୍ତ ନିର୍ଦ୍ଧାରିତ କାର୍ଯ୍ୟକ୍ରମ ଶେଷ ନ ହେବାରୁ ଉପାଧକ୍ଷ ଓ ପେନାଲ ଚେୟାରମେନ୍‌ଙ୍କ ଉପରେ ଅବଶିଷ୍ଟ କାର୍ଯ୍ୟକ୍ରମର ସମାପନ ଭାର ନ୍ୟସ୍ତ କରି ମୋ କ୍ୱାଟରକୁ ଚାଲିଗଲି । ହଠାତ୍ ପ୍ରାୟ ରାତି ୧୨ଟା ବେଳକୁ ଖବର ପାଇଲି ଯେ ବିରୁଦ୍ଧଦଳର ସଭ୍ୟମାନେ ବିଧାନସଭା ଗୃହର ମଧ୍ୟଭାଗରେ ଧାରଣା ଦେଇ ବସି ରହିଛନ୍ତି । ମନ୍ତ୍ରୀମାନଙ୍କର ସଂପତ୍ତି ତାଲିକା ସାଧାରଣରେ ପ୍ରକାଶ କରିବା ଦାବୀ ନେଇ ଏହି ଧାରଣା ଦିଆଯାଇଛି । ଅବଶ୍ୟ ରାତି ୧୦ଟା ପର୍ଯ୍ୟନ୍ତ ମୁଁ ଗୃହରେ ଉପସ୍ଥିତ ଥିବା ଯାଏଁ ଏ ଦାବୀର କୌଣସି ପ୍ରଶ୍ନ ନ ଥିଲା ।

ତହିଁ ପରଦିନ ପୂର୍ବାହ୍ନ ସାଢ଼େ ଦଶଟା ବେଳକୁ ବିଧାନସଭାକୁ ଯାଇ ଗୃହର କାର୍ଯ୍ୟ ଆରମ୍ଭ କଲାବେଳକୁ ମଧ ସେହି ଅବସ୍ଥାରେ ଗୃହର ମଧ୍ୟଭାଗରେ କାରପେଟ ଉପରେ ତଳେ ବସି ରହିଥିଲେ । ମୋର ବାରମ୍ବାର ଅନୁରୋଧ ସତ୍ତ୍ୱେ ସେହିପରି ବସି ରହିଲେ କିନ୍ତୁ ନିଜ ସ୍ଥାନକୁ କେହି ହେଲେ ଗଲେନାହିଁ । ତେଣୁ ଉକ୍ତ ଦିନର କାର୍ଯ୍ୟସୂଚୀ ଅନୁଯାୟୀ ଗୋଟିକ ପରେ ଗୋଟିଏ କାର୍ଯ୍ୟ ଆରମ୍ଭ କରି ଚାଲିଲି ମାତ୍ର ଧାରଣା ବସିଥିବା ସଭ୍ୟମାନଙ୍କ ଉପରେ ଆଉ କୌଣସି ଗୁରୁତ୍ୱ ଦେଲିନାହିଁ । ଉକ୍ତ ସଭ୍ୟମାନେ ଗୃହ ପରିଚାଳନାରେ ସେପରି ବିଶେଷ କିଛି ବାଧା ଦେଉ ନଥିବାଲେ ବି ମଝିରେ ମଝିରେ ସ୍ଲୋଗାନ୍ ଦେଉଥାଆନ୍ତି । ବେଳେବେଳେ ସିନେମା ଗୀତ ମଧ ଗାଉଥାଆନ୍ତି ଓ ସମୟ ସମୟରେ ବାହାରକୁ ଯାଇ କେଣ୍ଟିନ୍ ଆଡ଼େ ବୁଲି ଆସୁଥାଆନ୍ତି । ଏହିପରି ଭାବରେ ଦିନରାତି ଧରି ତିନିଦିନ ପର୍ଯ୍ୟନ୍ତ ଏହି କାର୍ଯ୍ୟକଳାପ ଚଳାଇଥାନ୍ତି । ବିଧାନସଭାର ବିରୁଦ୍ଧଦଳର ନେତା ଶ୍ରୀଯୁକ୍ତ ବିଜୁପଟ୍ଟନାୟକ ଭାରତର ଜଣେ ଖ୍ୟାତାନାମା ଓ ଜଣାଶୁଣା ନେତା ହେଲେ ମଧ କେବଳ ରାଜନୈତିକ ଫାଇଦା ଉଠାଇବା ପାଇଁ ବିଧାନସଭା ଭଳି ଏକ ପବିତ୍ର ସ୍ଥାନର ମର୍ଯ୍ୟାଦା ଓ ସୌଜନ୍ୟ ପ୍ରତି ସଂପୂର୍ଣ୍ଣ ବେଖାତିର କରିବାରେ ଟିକିଏ ହେଲେ କୁଣ୍ଠାବୋଧ କରୁ ନଥିଲେ । ବରଂ ମଝିରେ ମଝିରେ ଗୃହ ମଧ୍ୟକୁ ଆସି ନିଜ ସ୍ଥାନରେ ବସି ଗଣ୍ଡଗୋଳକାରୀ ସଭ୍ୟମାନଙ୍କ ସହ କଥାବାର୍ତ୍ତା ହୋଇ କିଛି ପରାମର୍ଶ ଦେଇ ଚାଲି ଯାଉଥାଆନ୍ତି । ଗୃହରୁ ସେମାନଙ୍କୁ ବାହାର କରିବା ବା ରହିତ (suspend) କରିବା ସେମାନେ ଚାହୁଁଥିଲେ । ମାତ୍ର ମୁଁ ସେପରି କୌଣସି ପଦକ୍ଷେପ ନ ନେଇ ସେମାନଙ୍କ କାର୍ଯ୍ୟକୁ କୌଣସି ପ୍ରକାର ଗୁରୁତ୍ୱ ନ ଦେଇ କାର୍ଯ୍ୟ ପରିଚାଳନା କରି ଚାଲିଲି ।

## ''ବିଧାନସଭାର ନୂତନ ପାଠାଗାର ଉଦ୍‌ଘାଟନ''

ବିଧାନସଭାର ପାଠାଗାର ପାଇଁ ଦୁଇବର୍ଷ ପୂର୍ବେ ସରକାରଙ୍କ ତରଫରୁ ୨୫ଲକ୍ଷ ଟଙ୍କା ମଞ୍ଜୁର ହୋଇ ସେଥିରେ ଏକ ନୂତନ ଅତ୍ୟାଧୁନିକ ପ୍ରାସାଦ ନିର୍ମିତ ହୋଇଥାଏ । ବିଧାନସଭାର ସମସ୍ତ ପୁସ୍ତକ ଗୁଡ଼ିକ ମଧ ସେଠାକୁ ସ୍ଥାନାନ୍ତରିତ ହୋଇ ସାରିଥାଏ । କେବଳ ବିଧାନସଭା ଚାଲିଥିଲା ବେଳେ ତାହା ଉଦ୍‌ଘାଟନ କରିବାକୁ ଅପେକ୍ଷା କରାଯାଇଥିଲା । ତେଣୁ ବିଧାନସଭା ଶେଷ ଦିନକୁ ଉକ୍ତ ଉଦ୍‌ଘାଟନ ଉତ୍ସବ ରଖାଯାଇଥିଲା । ସେଥିପାଇଁ ଓଡ଼ିଶାର ନୂତନ ରାଜ୍ୟପାଳ ଶ୍ରୀଯୁକ୍ତ ନୁରୁଲ ହାସାନଙ୍କୁ ଏହି ପାଠାଗାର ଉଦ୍‌ଘାଟନ କରିବାକୁ ନିମନ୍ତ୍ରଣ କରିଥିଲି ଓ ସେ ମଧ ଆଗ୍ରହର ସହିତ ତାଙ୍କର ସମ୍ମତି ପ୍ରଦାନ କରିଥିଲେ । ବିଧାନସଭା ଶେଷକରି ୪ଟା ବେଳକୁ ଉଦ୍‌ଘାଟନ ଉତ୍ସବର ଆୟୋଜନ କରାଯାଇଥିଲା । ଅବଶ୍ୟ ବିରୁଦ୍ଧଦଳର ସଭ୍ୟମାନେ ଶେଷଦିନ ପର୍ଯ୍ୟନ୍ତ ଏଭଳି ଅଶୋଭନୀୟ କାର୍ଯ୍ୟ ଚାଲୁ ରଖିଥିଲେ । ସେଦିନର ଉତ୍ସବରେ ବିରୁଦ୍ଧଦଳ ସମେତ ସମସ୍ତ ସଭ୍ୟଙ୍କୁ ଉତ୍ସବ ଯୋଗଦେବା ପାଇଁ ଅନୁରୋଧ କରିଥିଲି । ବହୁ ସରକାରୀ ଓ ବେସରକାରୀ ବିଶିଷ୍ଟ ବ୍ୟକ୍ତିଙ୍କୁ ମଧ ଏଥିରେ ଯୋଗଦେବା ପାଇଁ ନିମନ୍ତ୍ରଣ କରାଯାଇଥିଲା । ଯଥା ସମୟରେ ରାଜ୍ୟପାଳ ବିଧାନସଭା କକ୍ଷରେ ପ୍ରବେଶ କଲାମାତ୍ରେ ମୁଖ୍ୟମନ୍ତ୍ରୀଙ୍କ ଗହଣରେ ତାଙ୍କୁ ପାଛୋଟି ନେଇ ସିଧା ପାଠାଗାରକୁ ନେଇଗଲୁଁ । ବିଧାନସଭା ସଭ୍ୟ, ମନ୍ତ୍ରୀ ଓ ଭଦ୍ରବ୍ୟକ୍ତିଙ୍କ ସମାବେଶରେ ଆନନ୍ଦ ଓ ହର୍ଷଧ୍ୱନି ମଧରେ ରାଜ୍ୟପାଳ ନାଲିଫିତା କାଟି ପାଠାଗାର ଉଦ୍‌ଘାଟନ କଲେ । ଅଳ୍ପସମୟ ପାଇଁ ପାଠାଗାର ମଧ୍ୟରେ ସଜା ହୋଇ ରଖିଥିବା ପୁସ୍ତକ ଗୁଡ଼ିକ ବୁଲି ଦେଖିଲେ । ପୂର୍ବରୁ ଥିବା ପୁସ୍ତକ ଗୁଡ଼ିକ

ବ୍ୟତୀତ ଗତ ୩/୪ବର୍ଷ ମଧ୍ୟରେ ମୋ କାର୍ଯ୍ୟକାଳ ସମୟରେ ପ୍ରାୟ ଅଧିକ ୩/୪ଲକ୍ଷ ଟଙ୍କା ପୁସ୍ତକ ଅଣାଯାଇ ପାଠାଗାରକୁ ସଂମୃଦ୍ଧ କରାଯାଇଥିଲା । ଯାହାଫଳରେ ଏହା ରାଜ୍ୟ ମଧ୍ୟରେ ସର୍ବବୃହତ ପାଠାଗାରରେ ପରିଣତ ହୋଇପାରିଛି ।

ଏହାପରେ ମୋ ସଭାପତିତ୍ୱରେ ଉଦ୍‌ଘାଟନ ଉତ୍ସବ ଆରମ୍ଭ ହେଲା । ରାଜ୍ୟପାଳ ମୁଖ୍ୟଅତିଥି, ମୁଖ୍ୟମନ୍ତ୍ରୀ ସମ୍ମାନୀୟ ଅତିଥି ଭାବରେ ପାଠାଗାରର ସଭାପତି, ମୁଖ୍ୟ ସଚେତକ, ବିଧାନସଭା ଉପାଧ୍ୟକ୍ଷ ପୂର୍ତ୍ତ ବିଭାଗ ରାଷ୍ଟ୍ରମନ୍ତ୍ରୀ ପ୍ରଭୃତି ମଞ୍ଚ ଉପରେ ଆସୀନ । ସମ୍ମୁଖରେ ବିରୁଦ୍ଧଦଳର ସଭ୍ୟମାନେ ଚେୟାରରେ ନ ବସି ତଳେ ବସିଛନ୍ତି ଓ ସେମାନଙ୍କ ମଧ୍ୟରୁ ଦୁଇଜଣ ମଞ୍ଚଉପରେ ତଳେ ଆସୀନ । ପ୍ରଥମେ ପୂର୍ତ୍ତବିଭାଗ ମନ୍ତ୍ରୀ ସ୍ୱାଗତ ଭାଷଣ ଆରମ୍ଭ କଲାମାତ୍ରେ ବିରୁଦ୍ଧଦଳର ଉପସ୍ଥିତ ସଭ୍ୟ ଠିକ ବିଧାନସଭାରେ ପ୍ରଦର୍ଶନ କରିଥିବା ଅଶୋଭନୀୟ ଆଚରଣ ଏଠାରେ ମଧ୍ୟ ପ୍ରଦର୍ଶନ କରିବାକୁ କୁଣ୍ଠାବୋଧ କଲେ ନାହିଁ । ଏହାପରେ ପାଠାଗାର ସଭାପତି ଓ ମୁଖ୍ୟମନ୍ତ୍ରୀଙ୍କ ଭାଷଣ ବେଳେ ଅନୁରୂପ ଅଶୋଭନୀୟ ଆଚରଣ ଚାଲୁ ରଖିଲେ ମାତ୍ର ରାଜ୍ୟପାଳ ଓ ମୁଁ କହିଲାବେଳେ ତଥା ଉପାଧ୍ୟକ୍ଷ ଧନ୍ୟବାଦ ଦେବାବେଳେ ବିରୁଦ୍ଧଦଳର ସଭ୍ୟମାନେ ନୀରବ ରହିଥିଲେ । ଏହି ସଦ୍‌ବୁଦ୍ଧି ଉଦୟ ହୋଇଥିବାରୁ ତାଙ୍କୁ ସ ଅନ୍ୟ ସମସ୍ତଙ୍କୁ ଧନ୍ୟବାଦ ଜଣାଇ ଉତ୍ସବ ସମାପନ କଲି ।

## ''ଏକ କଠୋର ଓ ଦୁଃଖଦାୟକ ପଦକ୍ଷେପ''

ଏହି ଅଧିବେଶନ କାଳରେ ମୋତେ ଏକ ଦୁଃଖଦାୟକ ପଦକ୍ଷେପ ନେବାକୁ ପଡ଼ିଥିଲା । ସରକାରୀ କଂଗ୍ରେସ ଦଳର ମନ୍ତ୍ରୀ ପରିଷଦର ସଭ୍ୟ ଶ୍ରୀ ଭଜମନ ବେହେରା ମନ୍ତ୍ରୀପଦରୁ ବିତାଡ଼ିତ ହୋଇ ଅସନ୍ତୁଷ୍ଟ ବିଧାୟକ ଭାବେ ରହିଥିବା ବେଳେ ଏକ ଘଟଣାରେ ସରକାର ବିରୁଦ୍ଧରେ ଭୋଟଦେବା ଓ ପରେ ଜନତାଦଳରେ ଯୋଗଦେବା ଫଳରେ ଦଳତ୍ୟାଗ ପାଇଁ (Anti diffection act) ତାଙ୍କୁ ବିଧାୟକ ପଦରୁ ରହିତ ବା ବହିଷ୍କାର କରିବାକୁ ସରକାରୀ ଦଳର ସଭ୍ୟ ଯେଉଁ ଦଳର ଅନ୍ତର୍ଭୁକ୍ତ ସେ ଦଳର ନେତାଙ୍କ ମତାମତ ନେବାପରେ ମୁଁ ଏହି ବହିଷ୍କାର କରିବା ଆବେଦନକୁ ବିଧାନସଭାର ସ୍ୱାଧିକାର କମିଟିକୁ ଅଧିକ ତଦନ୍ତ କରି ସୁପାରିସ କରିବାକୁ ପଠାଇଲି । ଇତି ମଧ୍ୟରେ ଶ୍ରୀ ଭଜମନ ବେହେରା ତାଙ୍କ ବିରୁଦ୍ଧରେ କୌଣସି କାର୍ଯ୍ୟାନୁଷ୍ଠାନ ଯେପରି ଗ୍ରହଣ କରାଯାଇ ନ ପାରିବ ସେଥିପାଇଁ ହାଇକୋର୍ଟରେ ଏକ ରିଟ ଦରଖାସ୍ତ ମଧ୍ୟ କଲେ । ମାତ୍ର ତାହା ଉଚ୍ଚନ୍ୟାୟାଳୟ ଦ୍ୱାରା ନାକଚ ହୋଇଗଲା । ଏହାପରେ ସ୍ୱାଧିକାର କମିଟି ତାଙ୍କର ତଦନ୍ତ ଶେଷକରି ଶ୍ରୀଯୁକ୍ତ ବେହେରା ଜନତା ଦଳରେ ଯୋଗ ଦେଇଥିବା ଦୃଷ୍ଟିରୁ ସେ ଦଳତ୍ୟାଗ କରିଥିବାରୁ ତାଙ୍କୁ ବହିଷ୍କାର କରାଯିବା ପାଇଁ ସୁପାରିସ୍ ମଧ୍ୟ ଆସିଲା । ମୁଁ ଶେଷଥର ପାଇଁ ଶ୍ରୀଯୁକ୍ତ ବେହେରାଙ୍କୁ ବ୍ୟକ୍ତିଗତ ଶୁଣାଣୀର ମଧ୍ୟ ସୁଯୋଗ ଦେଲି । ଏହାପରେ ୧୯୮୯ ମସିହାର ଶେଷ ବିଧାନସଭା ଅଧିବେଶନର ଶେଷଦିନ ଶ୍ରୀ ବେହେରାଙ୍କୁ ବିଧାନସଭାର ସଭ୍ୟପଦରୁ ବହିଷ୍କାର କରିବାର ଘୋଷଣା କଲି । ବିଧାନସଭାର ଅଧ୍ୟକ୍ଷ ଜୀବନରେ ଏହା ଏକ କଠୋର ପଦକ୍ଷେପ ।

## ''ଅଧ୍ୟକ୍ଷ ଓ ଉପାଧ୍ୟକ୍ଷଙ୍କ ସର୍ବଭାରତୀୟ ସମ୍ମିଳନୀ''

ଅନ୍ୟ ବର୍ଷପରି ଏବର୍ଷ ମଧ୍ୟ ଅଧ୍ୟକ୍ଷ ଉପାଧ୍ୟକ୍ଷ ମାନଙ୍କର ସର୍ବଭାରତୀୟ ସମ୍ମିଳନୀ ମଧ୍ୟପ୍ରଦେଶର ରାଜଧାନୀ ଭୋପାଳଠାରେ ତା୨୦-୦୯-୮୯ରୁ ତା୨୨-୦୯-୮୯ ପର୍ଯ୍ୟନ୍ତ ଅନୁଷ୍ଠିତ ହୋଇଥିଲା । ଏଥିପାଇଁ ଦାସପୁରଠାରେ ଅନୁଷ୍ଠିତ ସମ୍ମିଳନୀରେ ମଧ୍ୟପ୍ରଦେଶର ଅଧ୍ୟକ୍ଷଙ୍କ ନିମନ୍ତ୍ରଣ ଥିଲା । ପରବର୍ତ୍ତୀ ବର୍ଷର ଆରମ୍ଭରେ ସାଧାରଣ ନିର୍ବାଚନର ସମୟ ଧାର୍ଯ୍ୟ ହୋଇଥିବାରୁ ଚଳିତ ବର୍ଷଟି ଶେଷବର୍ଷ ଥିଲା । ସେପ୍ଟେମ୍ବର ତା୧୮ରିଖ ଭୁବନେଶ୍ୱରରୁ ଦିଲ୍ଲୀ ଯାଇ ସେଠାରୁ ଭୋପାଳ ଯିବାର କାର୍ଯ୍ୟକ୍ରମ ରଖି ଦିଲ୍ଲୀ ଯାତ୍ରା କଲି । ଏଥର ମଧ୍ୟ ମୋ ସହିତ ମୋର ସ୍ତ୍ରୀ ତଥା ସସ୍ତ୍ରୀକ ବିଧାନସଭା ଉପାଧ୍ୟକ୍ଷ ଓ ସଚିବ ପ୍ରଭୃତି ଯାଇଥିଲେ । ଏତଦ୍ ବ୍ୟତୀତ ବିଧାନସଭାର ଅନ୍ୟ କେତେକ ଅଫିସର ମଧ୍ୟ ଦର୍ଶକ ରୂପେ ଏହି ଅଧିବେଶନରେ ଯୋଗ ଦେଇଥିଲେ । ଦିଲ୍ଲୀରୁ ଆମ ବିମାନ ସକାଳ ସାଢ଼େ ଛ'ଟା ସମୟରେ ଭୋପାଳ ଅଭିମୁଖେ ଯାତ୍ରାକଲା । ସେହି ବିମାନରେ ଅନ୍ୟ କେତେକ ରାଜ୍ୟର ଅଧ୍ୟକ୍ଷ ତଥା ଉପାଧ୍ୟକ୍ଷମାନେ ମଧ୍ୟ ସସ୍ତ୍ରୀକ ଯାଉଥିବାରୁ ସେମାନଙ୍କ ସହ ସାକ୍ଷାତ ହେଲା । ପ୍ରାୟ ଏକଘଣ୍ଟା ଯାତ୍ରା ପରେ ଆମେ ଭୋପାଳ ବିମାନଘାଟୀ ଠାରେ ଅବତରଣ କଲୁଁ । ସେଠାକାର ଅଭ୍ୟର୍ଥନା ସମିତି ପକ୍ଷରୁ ଆମକୁ ସ୍ୱାଗତ କରି ସହରରେ ଥିବା ନିର୍ଦ୍ଧାରିତ ହୋଟେଲ ମାନଙ୍କୁ ନେଇ ଆମର ରହଣୀର ବ୍ୟବସ୍ଥା କରିଦେଲେ ।

## '' ଭୋପାଳ''

ଭୋପାଳ ମଧ୍ୟପ୍ରଦେଶର ରାଜଧାନୀ । ମଧ୍ୟପ୍ରଦେଶ ରାଜ୍ୟ ନୂତନଭାବେ ଗଠିତ ହେବା ପୂର୍ବରୁ ଏହା ଏକ

ପୂର୍ବତନ ଗଡ଼ଜାତ ଥିଲା । ଭୋପାଳରେ ନବାବ (ଜଣେ ମୁସଲମାନ) ଏହାର ରାଜା ଥିଲେ । ତେଣୁଁ ଏଠାକାର ଅଧିବାସୀ ଭାବେ ବହୁ ମୁସଲମାନ ପୂର୍ବରୁ ରହି ଆସିଥିଲେ । ମଧ୍ୟଭାରତର ଭୋପାଳ ଗୋଆଲିଅର ସମେତ କେତେଗୁଡ଼ିଏ ପୂର୍ବତନ ଗଡ଼ଜାତ ତଥା ପୂର୍ବତନ ସେଣ୍ଟ୍ରାଲ ପ୍ରଭିନ୍ସର କେତେକ ଅଞ୍ଚଳ ମିଶି ମଧ୍ୟପ୍ରଦେଶ ନାମରେ ଏକ ହିନ୍ଦୀ ଭାଷାଭାଷୀ ଅଞ୍ଚଳ ଗଠିତ ହୋଇଥିଲା । ଏହି ସହରର ମୋଟ ଜନସଂଖ୍ୟା ପ୍ରାୟ ଚାରିଲକ୍ଷରୁ ଅଧିକ । ପୂର୍ବତନ ସେଣ୍ଟ୍ରାଲ ପ୍ରଭିନ୍ସର ରାଜଧାନୀ ଥିଲା ନାଗପୁର ସହର । ଭାଷା ଭିତ୍ତିକ ରାଜ୍ୟ ଗଠନ ବେଳେ ନାଗପୁର ମହାରାଷ୍ଟ୍ର ରାଜ୍ୟର ଅନ୍ତର୍ଭୁକ୍ତ ହେଲା । ଏହି ରାଜ୍ୟର ଅଧିକାଂଶ ଭାଗ ପୂର୍ବତନ ଗଡ଼ଜାତ ଅଞ୍ଚଳ ହୋଇଥିବାରୁ ଏହା ଆର୍ଥିକ ଦୃଷ୍ଟିରୁ ଏକ ଅବହେଳିତ ଅଞ୍ଚଳ । ଏହି ରାଜ୍ୟର ଛତିଶଗଡ଼, ବସ୍ତର ଓ ରାୟଗଡ଼ା ଅଞ୍ଚଳ ଗୁଡ଼ିକ ଓଡ଼ିଶାର ସୀମା ସଂଲଗ୍ନ । ଭୋପାଳ ପ୍ରଥମରୁ ଏକ ମୁସଲମାନ ରାଜାଙ୍କ ରାଜଧାନୀ ଥିବାରୁ ଏଠାକାର ଲୋକଙ୍କ ଘରଦ୍ୱାର, ରହଣୀ ଓ ଚାଲିଚଳନରୁ ଏହା ସେପରି ଉନ୍ନତ ଥିବାର ମନେ ହେଲାନାହିଁ । ଆମ ଅଧ୍ୟକ୍ଷମାନଙ୍କୁ ଯେଉଁ ହୋଟେଲରେ ରଖା ଯାଇଥିଲା ତାର ନାମ ଥିଲା ''ଜେହାରନାମା ପେଲେସ୍'' । ଆମେ ରହିଥିବା ଏହି ହୋଟେଲଟି ଜେହାରନାମ ନାମକ ଜଣେ ନବାବଙ୍କ ରାଜପ୍ରାସାଦ ଥିବାର ଜାଣିଲୁ । ରାଜ୍ୟଗୁଡ଼ିକର ମିଶ୍ରଣ ଓ ରାଜାମାନଙ୍କର ସରକାରୀ ଭତ୍ତା ଉଠିଗଲାପରେ ଏହି ପ୍ରାସାଦ ଗୁଡ଼ିକ ସରକାର ବା କେତେକ କ୍ଷେତ୍ରରେ ବ୍ୟକ୍ତିଗତ ଲୋକେ କିଣିନେଇ ବିଭିନ୍ନ ବ୍ୟବସାୟ ବାଣିଜ୍ୟରେ ଲଗାଇଛନ୍ତି । ଆମ ଓଡ଼ିଶାର ମୟୂରଭଞ୍ଜ ଜିଲ୍ଲାର ମହାରାଜାଙ୍କ ପ୍ରାସାଦଟି ଠିକ୍ ଏହିପରି ଭାବରେ ସରକାର କିଣି ନେଇ ସେଠାରେ ଏକ ସରକାରୀ ମହାବିଦ୍ୟାଳୟ ସ୍ଥାପନ କରିଛନ୍ତି । ସେଦିନ କେବଳ ବିଧାନସଭା ସଚିବ ମାନଙ୍କର ସମ୍ମିଳନୀ ଥିଲା ଏବଂ ତହିଁ ପରଦିନକୁ ଆମ ଅଧ୍ୟକ୍ଷମାନଙ୍କର ସମ୍ମିଳନୀ ଥିଲା । ଭୋପାଳରେ ସେଭଳି କୌଣସି ଦର୍ଶନୀୟ ସ୍ଥାନ ନ ଥିବାରୁ ସେଦିନ ବୁଲାବୁଲି କରିବାର ମଧ୍ୟ କାର୍ଯ୍ୟକ୍ରମ ନ ଥିଲା ତେଣୁଁ ଦିନଯାକ ଆମେ କେବଳ ହୋଟେଲ ମଧ୍ୟରେ ରହିଲୁଁ । ସଂଧ୍ୟାବେଳକୁ ମଧ୍ୟପ୍ରଦେଶର ବିଧାନସଭାର ଅଧ୍ୟକ୍ଷ ଶ୍ରୀଯୁକ୍ତ ରାଜେନ୍ଦ୍ର କୁମାର ଶୁକ୍ଳ ଆସି ଅଧ୍ୟକ୍ଷମାନେ ରହୁଥିବା ପ୍ରକୋଷ୍ଠ ଗୁଡ଼ିକ ବୁଲି ଆମର ଅସୁବିଧା ବିଷୟ ବୁଝିଥିଲେ ।

## '' ସମ୍ମିଳନୀ''

ଆଜି ତା ୨୦-୧୦-୮୯ ରିଖ ପୂର୍ବାହ୍ନ ୧୦ଟା ବେଳକୁ ବିଧାନସଭା ଅଧ୍ୟକ୍ଷ, ଉପାଧ୍ୟକ୍ଷ, ସଚିବ, କାଉନସିଲ ଚେୟାରମେନ, ଡେ଼ପୁଟି ଚେୟାରମେନ ତଥା ଦର୍ଶକ ପ୍ରଭୃତି ମଧ୍ୟପ୍ରଦେଶର ବିଧାନସଭା କକ୍ଷରେ ପହଁଞ୍ଚି ପ୍ରଥମେ ସମସ୍ତେ ସମସ୍ତଙ୍କୁ ଅଭିବାଦନ ଓ ଶୁଭକାମନା ଜଣାଇଲେ । ଏହା ଥିଲା ଆମ୍ଭମାନଙ୍କ ମଧ୍ୟରେ ଶେଷଦେଖା ଓ ମିଳନ । ଏହାପରେ ଦେଶରେ ସାଧାରଣ ନିର୍ବାଚନ ଥିବା ଦୃଷ୍ଟିରୁ ରାଜନୈତିକ ପରିସ୍ଥିତିର ବହୁ ଚିତ୍ର ବଦଳି ମଧ୍ୟ ଯାଇପାରେ । ତେଣୁଁ ଏଥରର ଅଧିବେଶନରେ ସମସ୍ତ ପ୍ରତିନିଧି ବିଶେଷ ଭାବେ ଅଧ୍ୟକ୍ଷ ଓ ଉପାଧ୍ୟକ୍ଷ ମାନେ ଯୋଗ ଦେଇଥିଲେ । ଲୋକସଭାର ଅଧ୍ୟକ୍ଷ ତଥା ଏହି ସମ୍ମିଳନୀର ସ୍ଥାୟୀ ସଭାପତି ଶ୍ରୀଯୁକ୍ତ ବଳରାମ ଝାକରଙ୍କ ସଭାପତିତ୍ୱରେ ଅଧିବେଶନ ଆରମ୍ଭ ହେଲା । ପ୍ରଥମେ ଯଥାରୀତି ସେଠାକାର ବିଧାନସଭା ଅଧ୍ୟକ୍ଷ ଶ୍ରୀଯୁକ୍ତ ରାଜେନ୍ଦ୍ର ପ୍ରସାଦ ଶୁକ୍ଳ ଉପସ୍ଥିତ ପ୍ରତିନିଧିମାନଙ୍କୁ ସ୍ୱାଗତ ଅଭିନନ୍ଦନ ଜଣାଇଲେ । ଏହାପରେ ସମ୍ମିଳନୀର ସଭାପତି ଶ୍ରୀଯୁକ୍ତ ଝାକର ତାଙ୍କର ଲିଖିତ ଭାଷଣ ପାଠ କରିଥିଲେ । କେବଳ ଲିଖିତ ଭାଷଣ ମଧ୍ୟରେ ନିଜକୁ ଆବଦ୍ଧ ନକରି ଅନ୍ୟାନ୍ୟ ବହୁ ବିଷୟ ମଧ୍ୟ ଉଲ୍ଲେଖ କରିଥିଲେ । ଅବଶ୍ୟ ତାଙ୍କର ଲିଖିତ ଓ ମୌଖିକ ଭାଷଣ ଅନ୍ୟଥର ମାନଙ୍କ ପରି ସେପରି ଆକର୍ଷଣୀୟ ବା ଉତ୍ସାହପ୍ରଦ ହୋଇ ନ ଥିଲା ।

## '' ବିଷୟବସ୍ତୁ ଆଲୋଚନା''

ଆଜିର ପ୍ରଥମ ଆଲୋଚନା ଆରମ୍ଭ ହେଲା ଆନ୍ଧ୍ର ବିଧାନସଭା ଅଧ୍ୟକ୍ଷଙ୍କ ନିକଟରୁ ଆସିଥିବା ପ୍ରସ୍ତାବ ଉପରେ । ତାଙ୍କର ବିଷୟବସ୍ତୁ ଥିଲା Codification of Immunities of State Legislative ଅର୍ଥାତ୍ ବିଧାନସଭାର ବିଶେଷ ଅଧିକାର ଓ ସେଗୁଡ଼ିକର ସ୍ଥାୟୀ ଆଇନ ସମ୍ମତି ବ୍ୟବସ୍ଥା ଏ ସଂପର୍କରେ ପ୍ରଥମେ କେରଳ ବିଧାନସଭା ଅଧ୍ୟକ୍ଷ ଆଲୋଚନା ଆରମ୍ଭକଲେ । ପ୍ରାୟ ୮/୧୦ ଜଣ ପ୍ରତିନିଧି ଏହି ଆଲୋଚନାରେ ଅଂଶ ଗ୍ରହଣ କରିଥିଲେ । ଆନ୍ଧ୍ର ବିଧାନସଭା ଚାଲିଥିବା ବେଳେ ବିରୁଦ୍ଧଦଳର କେତେକ ସଭ୍ୟ ଗଣ୍ଡଗୋଳ ସୃଷ୍ଟିକରି ବିଧାନସଭା ଚଳାଇ ନ ଦେବାରୁ ସେମାନଙ୍କ ବିରୁଦ୍ଧରେ ବିଧାନସଭା ତରଫରୁ କେତେକ ଦଣ୍ଡ ବିଧାନ କରାଯାଇଥିଲା । ଏହି ଦଣ୍ଡାଦେଶ ବିରୁଦ୍ଧରେ କେତେକ ସଭ୍ୟ ସୁପ୍ରିମ କୋର୍ଟରେ ଆବେଦନ କଲେ ଓ ସୁପ୍ରିମ କୋର୍ଟ ମଧ୍ୟ ଆବେଦନକୁ ଗ୍ରହଣ କରି ବିଚାର ଶେଷ ପର୍ଯ୍ୟନ୍ତ ଦଣ୍ଡାଦେଶ ସ୍ଥଗିତ ରଖିବାକୁ ନିର୍ଦ୍ଦେଶ ଦେଇ ବିଧାନସଭା ଅଧ୍ୟକ୍ଷଙ୍କୁ କୋର୍ଟରେ ହାଜର ହେବାକୁ ସମନ ଜାରିକଲେ । ତେଣୁଁ ଏହି ଘଟଣା ସଂପର୍କରେ ଆଲୋଚନା କରି ନିର୍ଦ୍ଦିଷ୍ଟ ପଦକ୍ଷେପ ଗ୍ରହଣ କରିବା ଥିଲା ଏହାର ପ୍ରଧାନ ଲକ୍ଷ୍ୟ । ଭାରତୀୟ ସଂବିଧାନ ଅନୁଯାୟୀ କେନ୍ଦ୍ରର ପାର୍ଲ୍ୟାମେଣ୍ଟ ଓ ରାଜ୍ୟସ୍ତରୀୟ ବିଧାନସଭା ଗୁଡ଼ିକ ସାର୍ବଭୌମ କ୍ଷମତାର ଅଧିକାରୀ ଅଟନ୍ତି । ଉକ୍ତ ଲୋକ ପ୍ରତିନିଧି ଅନୁଷ୍ଠାନ ମାନଙ୍କରେ

ଯେଉଁ ଆଇନମାନ ପ୍ରଣୟନ କରାଯାଏ ସେଗୁଡ଼ିକର ବିଶ୍ଳେଷଣ କରି ଯଦି ସଂବିଧାନର ନିୟମ କାନୁନ ଉଲ୍ଲଘଂନ କରୁଥିବାର ସର୍ବୋଚ୍ଚ ନ୍ୟାୟାଳୟ ଉପଲବ୍ଧି କରନ୍ତି ତେବେ ଉକ୍ତ ଗୃହୀତ ଆଇନକୁ ଅସିଦ୍ଧ ବୋଲି ଘୋଷଣା କରିବାର ଅଧିକାର ଅଛି । ବିଧାନସଭା ବା ପାର୍ଲ୍ୟାମେଣ୍ଟର ଆଭ୍ୟନ୍ତରୀଣ ପରିଚାଳନା ବା ସେ ସବୁର କୌଣସି ନିଷ୍ପତ୍ତି ଉପରେ ବିଚାର କରିବାର ଅଧିକାର ଉଚ୍ଚ ନ୍ୟାୟାଳୟର କ୍ଷମତା ପରିସର ଭୁକ୍ତ ନୁହେଁ । ସେଦିଗରେ ଉକ୍ତ ଦୁଇସ୍ତରର ଲୋକ ପ୍ରତିନିଧି ଅନୁଷ୍ଠାନର ସଂପୂର୍ଣ୍ଣ ଅଧିକାର ରହିଛି । ତାହା ସମ୍ବିଧାନ ସମ୍ମତ ଏଥିରେ କୌଣସି ସନ୍ଦେହ ନାହିଁ । ସେ ସଂପର୍କରେ ଅଦାଲତରେ ଶୁଣାଣୀ କରିବାର ଅଧିକାର ନାହିଁ । ଏପରିକି ପାର୍ଲ୍ୟାମେଣ୍ଟ ଓ ବିଧାନସଭା ଗୁଡ଼ିକ ନିଜର ଅଧିକାରଭୁକ୍ତ ନିୟମ ଗୁଡ଼ିକରେ ମଧ କେହି କାହାରି ଅଧୀନ ନୁହନ୍ତି । ଉଭୟ କ୍ଷେତ୍ରରେ ଉଭୟ ସର୍ବୋଚ୍ଚ ।

ତେଣୁଁ ଆନ୍ଧ୍ରର ବିଧାନସଭାରେ ଦଳତ୍ୟାଗ ଆଇନ ଅନୁଯାୟୀ ଯେଉଁ ନିଷ୍ପତ୍ତି ଗ୍ରହଣ କରାଯାଇଛି । ସେଥିରେ ଉଚ୍ଚନ୍ୟାୟାଳୟର ହସ୍ତକ୍ଷେପ ବେଆଇନ ଓ ଅସଂଗତ ବୋଲି ସମ୍ମିଳନୀରେ ସର୍ବସମ୍ମତ ମତ ପ୍ରକାଶ ପାଇଲା । ତେଣୁଁ ସୁପ୍ରିମ କୋଟ ତରଫରୁ ଆନ୍ଧ୍ର ବିଧାନସଭା ଅଧକ୍ଷଙ୍କୁ କୈଫୟତ ତଲବ କରି କୋର୍ଟରେ ହାଜର ହେବା ପାଇଁ ଯେଉଁ ନିର୍ଦ୍ଦେଶ ଦିଆଯାଇଛି ତାହା ଗ୍ରହଣ ନ କରିବାକୁ ସମସ୍ତେ ପରାମର୍ଶ ଦେଇଥିଲେ । ଉକ୍ତ ବିଷୟଟି କେନ୍ଦ୍ର ସରକାରଙ୍କ ଆଇନ ପରିଚାଳନା ବିଭାଗର ଦୃଷ୍ଟିକୁ ଅଣାଯାଇ ଏ ଦିଗରେ ଆଉ କୌଣସି କାର୍ଯ୍ୟାନୁଷ୍ଠାନ ଗ୍ରହଣ ନ କରିବାକୁ ଅନୁରୋଧ କରାଯାଇଥିଲା । ପୂର୍ବରୁ ମଧ ଏହିପରି କେତେକ ଘଟଣାରେ ଲୋକ ପ୍ରତିନିଧି ଅନୁଷ୍ଠାନ (Legislative) ଓ ନ୍ୟାୟାଳୟ ମଧରେ ବିବାଦ ସୃଷ୍ଟି ହେଲେ ଆଇନ ଶୃଙ୍ଖଳା କ୍ଷେତ୍ରରେ ଅଯଥା ଅସୁସ୍ଥ ବାତାବରଣ ସୃଷ୍ଟି ହେବାର ନଜିର ସଂପର୍କରେ ମଧ ସେ ଦିନର ଆଲୋଚନାରେ ସ୍ଥାନ ପାଇଥିଲା । ଲୋକସଭାର ଅଧକ୍ଷ ତଥା ଆମ ସମ୍ମିଳନୀର ସଭାପତିଙ୍କୁ ଏଦିଗରେ ବିହିତ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିବାକୁ ସମସ୍ତେ ଅନୁରୋଧ କରିଥିଲୁଁ । ଅନ୍ୟମାନଙ୍କ ସହିତ ମୁଁ ମଧ ସେଦିନର ସମ୍ମିଳନୀରେ ଦୃଢ଼ତାର ସହିତ ଉପରୋକ୍ତ ମତ ପ୍ରଦାନ କରିଥିଲି । ଶେଷରେ ପ୍ରତିନିଧି ମାନଙ୍କ ସହିତ ସଭାପତି ମଧ ଏକମତ ହୋଇଥିଲେ ।

ତହିଁ ପରଦିନର ଆଲୋଚ୍ୟ ବିଷୟଟି ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ହୋଇଥିବାରୁ ଆଲୋଚନା ବେଶ ସରଗରମ ହୋଇଥିଲା । ଦେଶର କୌଣସି ରାଜ୍ୟ ସରକାର କୌଣସି କାରଣରୁ ସଂଖ୍ୟାନ୍ୟୁନ ହୋଇଯିବାର ହୃଦୟଙ୍ଗମ କଲେ ସେଠାକାର ରାଜ୍ୟପାଳ ସେ ରାଜ୍ୟର ଶାସନ ବ୍ୟବସ୍ଥା ଭାଙ୍ଗି ଦେବାପାଇଁ ରାଷ୍ଟ୍ରପତିଙ୍କୁ ସୁପାରିଶ କରିବାର ସାମ୍ବିଧାନିକ ନିୟମ ଅଛି । ଏଭଳି ପରାମର୍ଶ କୌଣସି ରାଜ୍ୟପାଳଙ୍କ ଠାରୁ ପାଇବା ପରେ ରାଷ୍ଟ୍ରପତି ଦେଶର ଶାସନ ମୁଖ୍ୟ ଭାବରେ ନିଜ ଦାୟିତ୍ୱରେ ଏ ବିଷୟରେ ତଦନ୍ତ କରି ତାର ସତ୍ୟତା ଉପଲବ୍ଧି କଲେ ସଂପୃକ୍ତ ରାଜ୍ୟ ସରକାରଙ୍କୁ ଭାଙ୍ଗି ଦେଇ ସେଠାରେ ରାଷ୍ଟ୍ରପତି ଶାସନ ଜାରି କରନ୍ତି । ଶାସନ ମୁଖ୍ୟ ଭାବରେ ରାଷ୍ଟ୍ରପତିଙ୍କ ଏଭଳି ପଦକ୍ଷେପ ବା ଅଧିକାରକୁ କୌଣସି ଅଦାଲତର ପ୍ରଶ୍ନ କରିବାର ଅଧିକାର ନାହିଁ । ରାଷ୍ଟ୍ରପତି ଦେଶର ସର୍ବୋଚ୍ଚ ଶାସନ ମୁଖ୍ୟ ହେବା ସଙ୍ଗେ ସଙ୍ଗେ କାର୍ଯ୍ୟକାରୀ ହୋଇଥାଏ, ଏହାର କୌଣସି ଖିଲାପ ଦେଶ ବରଦାସ୍ତ କରେନାହିଁ । ରାଷ୍ଟ୍ରପତିଙ୍କ ଏହି ସାମ୍ବିଧାନିକ ଅଧିକାରର ସଂଶୋଧନ କରି କେବଳ ଏଭଳି ପରିସ୍ଥିତିରେ ସଂପୃକ୍ତ ରାଜ୍ୟର ବିଧାନସଭା ବୈଠକ ଡ଼କାଯାଇ ସଂଖ୍ୟାନ୍ୟୁନତାର ପ୍ରକୃତ ପ୍ରମାଣ ନ ମିଳିବା ପର୍ଯ୍ୟନ୍ତ ପ୍ରତିଷ୍ଠିତ କୌଣସି ଲୋକପ୍ରତିନିଧି ସରକାରଙ୍କୁ ନ ଭାଙ୍ଗିବା ପାଇଁ ଅଣକଂଗ୍ରେସ ଦଳର ଅଧକ୍ଷମାନେ ସମ୍ମିଳନୀରେ ଏକ ପ୍ରସ୍ତାବ ଆଗତ କରି ତା ସପକ୍ଷରେ ଦୃଢ଼ମତ ପ୍ରକାଶ କଲେ । ସେ ସମୟର ଅଣକଂଗ୍ରେସ ସରକାର ଥିବା ବିଧାନସଭାର ଅଧକ୍ଷମାନେ ବେଶ ସୁବକ୍ତା ଥିଲେ ଓ ଭଲ ଇଂରାଜୀ କହି ପାରୁଥିଲେ । ତେଣୁଁ ଉପରୋକ୍ତ ସଂଶୋଧନ ପ୍ରସ୍ତାବ ଆଗତ କରି ଏହା ସପକ୍ଷରେ ସମ୍ମିଳନୀରେ ଏଭଳି ବାତାବରଣ ସୃଷ୍ଟି କଲେ ଯେ, କଂଗ୍ରେସ ଦଳର ବିଧାନସଭା ଅଧକ୍ଷମାନେ ସେମାନଙ୍କ ମୁକାବିଲା କରିବାକୁ ସାହାସ କଲେନାହିଁ । ସେଦିନ ଉପର ଓଳିକୁ ମଧ ଏହି ଆଲୋଚନା ରହିଲା । ଅପରାହ୍ନ ଅଧିବେଶନରେ ଏହି ଅସଂପୂର୍ଣ୍ଣ ଆଲୋଚନାରେ ପ୍ରଥମେ ଭାଗ ନେଇ ସଂବିଧାନର ପ୍ରଚଳିତ ବ୍ୟବସ୍ଥାକୁ ପୂର୍ଣ୍ଣ ସମର୍ଥନ ଜଣାଇ ସେମାନଙ୍କ ଯୁକ୍ତି ଖଣ୍ଡନ କଲି । ମୁଁ ଦୃଢ଼ଭାବେ ଯୁକ୍ତି ବାଢ଼ିଲି ଯେ, ଏବେ ଆମେ ବିଧାନସଭାର ସାମ୍ବିଧାନିକ ଅଧିକାରକୁ ସମର୍ଥନ କରି ସେଥିରେ ବିଚାରାଳୟର ହସ୍ତକ୍ଷେପକୁ ବିରୋଧ କରି ବିଧାନସଭାର ଦଣ୍ଡାଦେଶ ବା ନିଷ୍ପତ୍ତିକୁ କାଏମ ରଖିବାକୁ ମତ ଦେଇଥିଲୁଁ । କିନ୍ତୁ ପର ମୁହୂର୍ତ୍ତରେ ଆମେ ସେହି ସଭ୍ୟମାନେ ଆସନର ମୁଖ୍ୟ ରାଷ୍ଟ୍ରପତିଙ୍କ ସାମ୍ବିଧାନିକ ଅଧିକାରକୁ ବିରୋଧ କରୁଛୁଁ କିପରି ? ଦେଶ ଏକ ଅତି ସମ୍ମାନୀୟ ବ୍ୟକ୍ତିକୁ ହିଁ ରାଷ୍ଟ୍ରନାୟକ ପଦରେ ଆସୀନ କରିଥିଲା ବେଳେ ତାଙ୍କର ସାମ୍ବିଧାନିକ କ୍ଷମତାକୁ କ୍ଷୁର୍ଣ୍ଣ କରିବାର ପ୍ରସ୍ତାବ କରିବା କେଉଁ ଯୁକ୍ତି ଯୁକ୍ତତାର ପରିଚାୟକ ନୁହେଁ । ମୋର ଏହି ଯୁକ୍ତି ଶୁଣି ଉପୁଜିଥିବା ପରିବେଶ କ୍ରମେ ବଦଳିବାକୁ ଲାଗିଲା । ମୋ ପରେ ଅନ୍ୟ ତିନିଜଣ ଅଧକ୍ଷ ମଧ ଉକ୍ତ ସଂଶୋଧନର ବିରୋଧ କରି ଭାଷଣମାନ ଦେଲେ । ଏହାପରେ ସମ୍ମିଳନୀର ଅଧକ୍ଷ ଡ଼କ୍ଟର ଝାକର ତାଙ୍କର ଶେଷ ମନ୍ତବ୍ୟ ଦେଇ କହିଲେ ଯେ, ଏପରି ସଂଶୋଧନ ପାଇଁ କେବଳ ପାର୍ଲ୍ୟାମେଣ୍ଟ ହିଁ ଉପଯୁକ୍ତ ସ୍ଥାନ । ଏ ସମ୍ମିଳନୀ ସଂବିଧାନ ସଂଶୋଧନ କରିବାର କ୍ଷେତ୍ର ନୁହେଁ । ଏ ମନ୍ତବ୍ୟ ଦେଲାପରେ ଅନ୍ୟ ଆଲୋଚ୍ୟ ବିଷୟର ଅବତାରଣା ହେଲା । ସମ୍ମିଳନୀର ସଭାପତି ଅଥବା ରାଜ୍ୟ ସଭାର ଡ଼େପୁଟି ଚେୟାରମେନ୍ ମଧ ଗୃହରେ ଅନୁପସ୍ଥିତ ଥିଲେ ସମ୍ମିଳନୀରେ ଉପସ୍ଥିତ ଥିବା ଅଭିଜ୍ଞ ଓ ପୁରୁଣା ଅଧକ୍ଷମାନଙ୍କ ମଧରୁ ଦୁଇତିନି

ଚଣଙ୍କୁ ଅସ୍ଥାୟୀଭାବେ କିଛି ସମୟ ପାଇଁ ସମ୍ମିଳନୀର ସଭାପତିତ୍ୱ କରିବାର ସୁଯୋଗ ମିଳିଥିଲା । ବିଗତ ଛଅ ବର୍ଷ ମଧ୍ୟରେ ଅନୁଷ୍ଠିତ ବିଭିନ୍ନ ସମ୍ମିଳନୀରେ ବିଧାନସଭାର ଅଧ୍ୟକ୍ଷ ଭାବେ ଯୋଗ ଦେଇଥିଲେ ହେଁ ଏହି ସମ୍ମିଳନୀରେ ମୋତେ ପ୍ରଥମଥର ସଭାପତିତ୍ୱ କରିବାର ସୁଯୋଗ ମିଳିଥିଲା । ଏହି ସମ୍ମିଳନୀ ପାଇଁ ନିର୍ଦ୍ଧାରିତ ସମସ୍ତ ଆଲୋଚ୍ୟ ବିଷୟ ଅଧିବେଶନ ସମାପ୍ତହେଲା । ଗତ ସାଧାରଣ ନିର୍ବାଚନ ପରେ ଗଠିତ ବିଧାନସଭା ଅଧ୍ୟକ୍ଷମାନଙ୍କର ଶେଷ ସମ୍ମିଳନୀ ହୋଇଥିବାରୁ ଉପସ୍ଥିତ ଚେୟାରମେନ୍ ଓ ଡେପୁଟି ଚେୟାରମେନ୍ ମାନଙ୍କର ସ୍ମୃତି ଉଦ୍ଦେଶ୍ୟରେ ଏକ ମିଳିତ ଫଟୋ ମଧ୍ୟ ଉଠାଯାଇଥିଲା ।

## ''ଉଜ୍ଜୟିନୀ ପରିଦର୍ଶନ''

ବହୁ ପ୍ରାଚୀନ କାଳରୁ ଭାରତୀୟ ଶିକ୍ଷା ଓ ସଂସ୍କୃତିର କ୍ରମୋନ୍ନତି କ୍ଷେତ୍ରରେ ଉଜ୍ଜୟିନୀର ଅବଦାନ ଅବିସ୍ମରଣୀୟ ହୋଇ ରହିଛି ଓ ଯୁଗ ଯୁଗ ଧରି ପ୍ରେରଣା ଯୋଗାଉଥିବା ବିଷୟ କେହି ଅସ୍ୱୀକାର କରିପାରିବେ ନାହିଁ । ସେ କାଳର ଉଜ୍ଜୟିନୀର ରାଜା ବିକ୍ରମାଦିତ୍ୟ ଶିକ୍ଷା, ସଂସ୍କୃତି ଓ ବିଜ୍ଞାନର ମହାନ୍ ପୃଷ୍ଠପୋଷକ ଥିଲେ । ତାଙ୍କ ରାଜଦରବାର ସଦାସର୍ବଦା ଗୁଣୀ ତଥା ବିଭିନ୍ନ ବିଦ୍ୟା ବିଶାରଦ ପଣ୍ଡିତଙ୍କ ଦ୍ୱାରା ବିମଣ୍ଡିତ ହୋଇଥିଲା । ଏମାନଙ୍କୁ ନବରତ୍ନ ବୋଲି କୁହାଯାଉଥିଲା । ବିକ୍ରମାଦିତ୍ୟଙ୍କର ନିମ୍ନ ଲିଖିତ ନବରତ୍ନ ଥିଲେ :

''ଧନ୍ୱନ୍ତରୀ କ୍ଷପଣକାମର ସିଂହ ଶଂକୁ ବେତାଳ ଭଟ୍ଟ
ଘଟ କର୍ପର କାଳିଦାସାଃ ଖ୍ୟାତୋ ବରାହ ମିହିରୋ ନୃପତେଃ
ସଭାୟାଂ ରତ୍ନାନି ବୈ ବରରୁଚିର୍ନବ ବିକ୍ରମସ୍ୟ''

ବିକ୍ରମାଦିତ୍ୟ ଏହି ମହାଜ୍ଞାନୀ ଓ ବିଶେଷଜ୍ଞ ପଣ୍ଡିତମାନଙ୍କୁ ନିଜ ରାଜସଭାରେ ସଭାସଦ୍ ଭାବରେ ସ୍ଥାନ ଦେଇ ଭାରତୀୟ ଶିକ୍ଷା ଓ ସଂସ୍କୃତିକୁ ଅତ୍ୟନ୍ତ ସମୃଦ୍ଧ କରି ପାରିଥିଲେ । ସେତେବେଳେ ଭାରତ ବାହାରୁ ଆସୁଥିବା ପରିବ୍ରାଜକ ମାନଙ୍କ ଲିଖିତ ବିବରଣୀରୁ ବିଭିନ୍ନ ତଥ୍ୟର ପ୍ରମାଣ ମିଳେ । ଏତଦ୍ ବ୍ୟତୀତ ରାଜା ବିକ୍ରମାଦିତ୍ୟ ତନ୍ତ୍ର ସାଧନ ଦ୍ୱାରା ବେତାଳମାନଙ୍କୁ ନିୟନ୍ତ୍ରଣ କରି ବହୁ ଅସାଧ୍ୟ ସାଧନ କରି ପାରୁଥିବାର କେତେକ କିମ୍ବଦନ୍ତୀରୁ ଜଣାଯାଏ । ଏହି ସହରଟି ଐତିହାସିକ ଯୁଗର ପ୍ରସିଦ୍ଧ ଉଜ୍ଜୟିନୀ ରାଜ୍ୟର ରାଜଧାନୀ ଥିଲେ ହେଁ ବର୍ତ୍ତମାନ ଭାରତର ମଧ୍ୟପ୍ରଦେଶ ସ୍ଥିତ ଏକ ପ୍ରଧାନ ସହର । ଏହି ଇତିହାସ ପ୍ରସିଦ୍ଧ ସହର ବହୁ ଉତ୍ଥାନ-ପତନ ମଧ୍ୟରେ କେତେକ କିମ୍ବଦନ୍ତୀକୁ ଧାରଣ କରି ପରିଦର୍ଶକ ତଥା ଐତିହାସିକ ମାନଙ୍କର ଏକ ଆକର୍ଷଣୀୟ ସ୍ଥାନ ରୂପେ ପରିଗଣିତ ହେଉଅଛି ।

ଅଧ୍ୟକ୍ଷ ମାନଙ୍କର ସମ୍ମିଳନୀ ଶେଷଦିନ ସବୁଥର ପରି ଏଥର ମଧ୍ୟ ଏକ ଆଲୋଚନା ଚକ୍ରର କାର୍ଯ୍ୟକ୍ରମ ଥିଲା । ଅଧ୍ୟକ୍ଷମାନଙ୍କ ବ୍ୟତୀତ ରାଜ୍ୟ ବିଧାନସଭା ସଭ୍ୟ ତଥା ସ୍ଥାନୀୟ ସଂସଦ ମାନଙ୍କର ମଧ୍ୟ ନିମନ୍ତ୍ରିତ ଭଦ୍ରବ୍ୟକ୍ତି ଭାବରେ ଏଥିରେ ଯୋଗ ଦେବାର ବିଧିବିଧାନ ରହିଛି । ମାତ୍ର ମୁଁ ଏଥର ଏହି ଆଲୋଚନା ଚକ୍ରରେ ଯୋଗ ନ ଦେଇ ଉଜ୍ଜୟିନୀ ପରିଦର୍ଶନ କାର୍ଯ୍ୟକ୍ରମ ରଖିଥିଲି । ତେଣୁ ପୂର୍ବରୁ ଉଜ୍ଜୟିନୀର ସବ୍‌କଲେକ୍ଟରଙ୍କୁ ମୋର କାର୍ଯ୍ୟକ୍ରମ ଜଣାଇ ସେଠାରେ ଦିନକର ରହଣୀ ପ୍ରଭୃତିର ବ୍ୟବସ୍ଥା କରିବାକୁ ଅନୁରୋଧ କରିଥିଲି । ଭୋପାଳରୁ ଉଜ୍ଜୟିନୀ ପ୍ରାୟ ୧୫୦ କି.ମି. ଦୂର । ଏହି ରାସ୍ତା ଅଧିକ ପାହାଡ଼ିଆ ହୋଇଥିବାରୁ କାରରେ ଯିବା ଅପେକ୍ଷା ଟ୍ରେନ୍‌ରେ ଯିବାପାଇଁ ଅନେକ ପସନ୍ଦ କରନ୍ତି । ତେଣୁ ସେଦିନ ସକାଳେ ଟ୍ରେନ୍ ଯୋଗେ ଉଜ୍ଜୟିନୀ ଯାଇ ସେଠାକାର ଦର୍ଶନୀୟ ସ୍ଥାନ ବୁଲାବୁଲି କରି ପୁଣି ସଂଧ୍ୟାବେଳକୁ ଭୋପାଳ ଫେରି ଆସିବାର କାର୍ଯ୍ୟକ୍ରମ ରଖି ଆମେ ସମସ୍ତେ ରେଲଷ୍ଟେସନକୁ ବାହାରି ପଡ଼ିଲୁ । ସକାଳ ପ୍ରାୟ ୭ଟା ବେଳକୁ ଆମର ଉଜ୍ଜୟିନୀ ଯାତ୍ରା ଆରମ୍ଭ ହୋଇଗଲା । ଟ୍ରେନ୍‌ରେ ଗଲାବେଳେ ଦୁଇପାଖରେ ଥିବା କୃଷିକ୍ଷେତ୍ର ଗୁଡ଼ିକ ପରିଦର୍ଶନ କରିବାର ସୁଯୋଗ ମଧ୍ୟ ମିଳିଲା । ଜମି ଗୁଡ଼ିକ ଉଚାବଚ ଓ ଅସମତଳ ହୋଇଥିବାରୁ ତଥା ସେ ଅଞ୍ଚଳରେ ଭଲବର୍ଷା ହେଉ ନ ଥିବାରୁ ଲୋକେ ଧାନ ଚାଷ ନ କରି ମକା, ବାଜରା, ସୋରିଷ ଓ ଚିନା ବାଦାମ ପ୍ରଭୃତି ଅଳ୍ପ ପାଣି ଦରକାର ହେଉଥିବା ଫସଲମାନ କରନ୍ତି । ପ୍ରାୟ ସାଢ଼େ ତିନିଘଣ୍ଟା ରେଲଯାତ୍ରା ପରେ ଦିନ ପ୍ରାୟ ସାଢ଼େ ଦଶଟା ବେଳେ ବହୁ ଆକାଂକ୍ଷିତ ଉଜ୍ଜୟିନୀ ରେଲଷ୍ଟେସନରେ ପହଞ୍ଚିଲୁ । ସେଠାକାର ସବ୍‌କଲେକ୍ଟର ଆମକୁ ସ୍ୱାଗତ ଜଣାଇ ଦୁଇଟି କାର ଯୋଗେ ଆମକୁ ନେଇ ସରକାରୀ ଅତିଥିଶାଳାରେ ରଖାଇଲେ । କିଛି ସମୟପରେ ସେଠାକାର ତହସିଲଦାର ଆସି ଆମକୁ ନେଇ ଉଜ୍ଜୟିନୀର ଦର୍ଶନୀୟ ସ୍ଥାନକୁ ନେଇଗଲେ ।

ପ୍ରଥମେ ସେଠାକାର ପ୍ରସିଦ୍ଧ 'ମହାକାଳେଶ୍ୱର ମହାଦେବ ମନ୍ଦିର' ପରିଦର୍ଶନ ପାଇଁ ଗଲୁଁ । ଏହା କେବଳ ସେଠାକାର ସ୍ଥାନୀୟ ନୁହେଁ ମାତ୍ର ସେ ଅଞ୍ଚଳର ଏକ ପ୍ରସିଦ୍ଧ ମହାଦେବ ମନ୍ଦିର । ଏଠାକାର ବିଶେଷତ୍ୱ ଏହି ଯେ ଏଠା ମନ୍ଦିରର ଶିବଲିଙ୍ଗ ସବୁସ୍ଥାନ ପରି ସ୍ଥାପନା କରାଯାଇ ନାହିଁ । ଶିବଲିଙ୍ଗ ସ୍ୱୟଂ ଆବିର୍ଭୂତ ହୋଇଥିବାର କିମ୍ବଦନ୍ତୀ ଅଛି । ବହୁବର୍ଷ ପୂର୍ବେ ମରହଟ୍ଟା ଶାସନ କାଳରେ ଉଜ୍ଜୟିନୀ ନିଜର ସ୍ୱାତନ୍ତ୍ର୍ୟ ହରାଇ ଗୋଆଲିଅର ରାଜ୍ୟର ଅନ୍ତର୍ଭୁକ୍ତ ହୋଇଥିଲା ବେଳେ ସିନ୍ଧିଆ ରାଜ ପରିବାରର ଜଣେ ମହାରାଜା ପ୍ରାୟ ୪୦୦ ବର୍ଷ ପୂର୍ବେ ଏହି ମନ୍ଦିର ନିର୍ମାଣ କରାଇଥିଲେ ବୋଲି ମନ୍ଦିର ପରିଚାଳନା

ମେନେଜରଙ୍କ ଠାରୁ ଜାଣିଲୁଁ । ମନ୍ଦିରଟି ଖୁବ୍ ବଡ଼ ଓ ତାର ବହୁ ସଂପତ୍ତି ରହିଛି । ଏଠାକାର ସରକାରଙ୍କ ନିୟନ୍ତ୍ରଣରେ ଏକ ଟ୍ରଷ୍ଟ ଗଠିତ ହୋଇ ତାହାରି ପରିଚାଳନା ଦାୟିତ୍ୱରେ ଅଛି । ଆମେ ମହାଦେବଙ୍କ ଠାରେ ପୂଜା କଲୁଁ । ଟ୍ରଷ୍ଟ ଆମର ପରିଚୟ ପାଇ ଆମକୁ ସମସ୍ତ ମନ୍ଦିର ବୁଲାଇ ଦେଖାଇଲେ । ଭାରତର ୮/୧୦ଟି ପ୍ରସିଦ୍ଧ ଶିବମନ୍ଦିର ମଧ୍ୟରୁ ଏହା ଅନ୍ୟତମ ।

ଏହାପରେ ହରସିଦ୍ଧି ଓ ଗଡ଼କାଳିକା ମନ୍ଦିର ଦର୍ଶନ ସାରି ମହାଭୈରବୀ ମନ୍ଦିରରେ ଯାଇ ପହୁଁଞ୍ଚିଲୁ । ସେଠାକାର ପୂଜକ ଖଦଡ଼ ପିନ୍ଧିଥିଲେ । ସେ ଇଂରାଜୀ ଓ ହାନ୍ଦି ଉଭୟ ଭାଷାରେ କଥାବାର୍ତ୍ତା କରୁଥିଲେ । ଆମର ପରିଚୟ ପାଇ ସେଠାକାର ଅଲୌକିକ କିମ୍ବଦନ୍ତୀ ସଂପର୍କରେ ବହୁ ଆଲୋଚନା କଲେ । ତାଙ୍କଠାରୁ ଶୁଣିଲୁଁ ଯେ ଭୈରବୀ ମୂର୍ତ୍ତିର ପାଞ୍ଚଟି ମୁହଁଥିଲା । ସେଥିରୁ ଚାରିଟି ମୁହଁ କଟାଯାଇ ଗୋଟିଏ ମାତ୍ର ମୁହଁ ରହିଥିବାରୁ ଦେବୀଙ୍କ ନିକଟରେ ମଦ ଓ ମାଂସ ଭୋଗ ଲଗାଯାଏ । ଭୋଗ ଲଗାଇଲା ବେଳେ ଭୈରବୀ ମୂର୍ତ୍ତି ନିଜେ ମଦ ପିଇ ଯାଆନ୍ତି ବୋଲି ଏକ ଅଲୌକିକ କଥା ତାଙ୍କଠାରୁ ଶୁଣିଲୁଁ । ସେ ମଧ୍ୟ ଆମକୁ ମଦ ଭୋଗ ଲଗାଇବାକୁ କହି ଏହାର ସତ୍ୟତା ପରୀକ୍ଷା କରିବାକୁ କହିଲେ । ମାତ୍ର ମୁଁ କେବେ ମଦ କିଣେ ନାହିଁ କି ସ୍ପର୍ଶ କରେ ନାହିଁ ବୋଲି କହିଲି । ଆମେ ସେଠାରେ ଥିଲାବେଳେ ଜଣେ ଏକ ବୋତଲ ମଦ ଆଣି ପ୍ରକୃତରେ ଭୋଗ ଲଗାଇବା ଦେଖିଲୁଁ । ତେଣୁ ଭୈରବୀ କିପରି ନିଜେ ମଦ ପିଇଯାନ୍ତି ତାହା ଦେଖିବାକୁ ଅନୁରୋଧ କଲେ । ସେ ମଦକୁ ଗୋଟେ ଚେପଟା ଛୋଟ ପିଆଲାରେ ଢ଼ାଳି ଭୈରବୀଙ୍କ ମୁହଁରେ ଲଗାଇ ଗୋଟେ ପଟ ସାମାନ୍ୟ ଟେକିଦେଲେ । ଫଳରେ ପିଆଲାରେ ଥିବା ସମସ୍ତ ମଦ ପାଟି ଭିତରକୁ ଢ଼ାଳି ହୋଇଗଲା । ଆମକୁ ସେ କହିଲେ ଭୈରବୀ ନିଜେ ପିଇଦେଲେ । ପ୍ରକୃତରେ ଏହା ସତ୍ୟ ନୁହେଁ ବୋଲି ପରେ ଜଣାଗଲା । ଠାକୁରଙ୍କ ମୂର୍ତ୍ତି ମଧ୍ୟରୁ ଏକ ଛୋଟ ନାଳ ବାହାରକୁ ଯାଇଛି । ମୂର୍ତ୍ତିର ମୁହଁରେ ମଦ ଢ଼ଳା ଯାଇ ଭୈରବୀ ନିଜେ ଖାଇ ଯାଉଛନ୍ତି ବୋଲି ଯାହା କୁହାଯାଉଛି ତାହା ସେହି ନାଳ ଦେଇ ବାହାରି ଯାଇ ବାହାରେ ଥିବା କୁଣ୍ଡରେ ଜମା ହେଉଥିବା କଥା ଆମ ଦଳରେ ଯାଇଥିବା ଆମ ବିଧାନସଭାର ଜଣେ କର୍ମଚାରୀ ନିଜେ ଦେଖି ଆସି କହିଲେ ।

ଏହାପରେ ନିକଟରେ ଥିବା ମଙ୍ଗଳନାଥ ମନ୍ଦିରକୁ ଗଲୁଁ । ସେଠାରେ ପ୍ରଥମେ ମଙ୍ଗଳ ଗ୍ରହ ସୃଷ୍ଟି ହୋଇଥିବାର କିମ୍ବଦନ୍ତୀ ରହିଛି । ଏହାପରେ ସନ୍ଦିପନୀ ମୁନିଙ୍କ ଆଶ୍ରମ କୁହାଯାଉଥିବା ଏକ ସ୍ଥାନକୁ ଗଲୁଁ । ସେଠାରେ ଦ୍ୱାପର ଯୁଗର ଶ୍ରୀକୃଷ୍ଣ, ବଳରାମ ଓ ତାଙ୍କର ପ୍ରିୟ ସଖା ସୁଦାମା ଶିକ୍ଷାଲାଭ କରିଥିବାର ଏବେ ମଧ କିମ୍ବଦନ୍ତୀ ଥିବାର ଶୁଣିଲୁଁ । ସେଠାରେ କେତେଗୁଡ଼ିଏ ଛୋଟ ଛୋଟ ମନ୍ଦିରରେ ଅଧ୍ୟୟନ ରତ ଶ୍ରୀକୃଷ୍ଣ, ବଳରାମ ଓ ସୁଦାମାଙ୍କ ମୂର୍ତ୍ତିମାନ ରଖାଯାଇଥିବାର ଦେଖିଲୁଁ ।

ରାଜା ବିକ୍ରମାଦିତ୍ୟ ସେ ଯୁଗର ଜଣେ କେବଳ ମହାନ୍ ରାଜା ଥିଲେ ତା ନୁହେଁ ସେ ସର୍ବଗୁଣ ସଂପନ୍ନ ମହାନ୍ ବ୍ୟକ୍ତି ମଧ ଥିଲେ । ତନ୍ତ୍ର ଶକ୍ତି ଦ୍ୱାରା ବହୁ ଅଦ୍ଭୁତ ଭୌତିକ କାର୍ଯ୍ୟ ସାଧନ କରି ପାରୁଥିବା ବହୁ ଉପାଖ୍ୟାନରୁ ଏବେ ମଧ ଜାଣିବାକୁ ମିଳେ । ସେ ଶାସନ କ୍ଷେତ୍ରରେ ଜଣେ ଆଦର୍ଶ ରାଜା ଥିଲେ ଓ ନିରପେକ୍ଷ ନ୍ୟାୟ ବିଚାର ଦେବାରେ ସେ ଅଗ୍ରଣୀ ଥିଲେ । ତାଙ୍କ ଦରବାରରେ ବିଚାର କରିବାବେଳେ ସେ ଯେଉଁ ସିଂହାସନରେ ବସୁଥିଲେ ତାର ନାମ ଥିଲା ବତ୍ରିଶ ସିଂହାସନ । ଏହି ସିଂହାସନରେ ବସି ଶାସନ ପରିଚାଳନା କରି ସେ ଲୋକଙ୍କୁ ଯଥାର୍ଥ ନ୍ୟାୟ ଦେଇ ପାରୁଥିଲେ । ଏ ସିଂହାସନରେ ବସିଲେ ଅତି ନଗଣ୍ୟ ବ୍ୟକ୍ତି ମଧ ଉପଯୁକ୍ତ ନ୍ୟାୟ ଦେବାକୁ ସମର୍ଥ ହେଉଥିବା ସଂପର୍କରେ ବହୁ ଆଖ୍ୟାୟିକା ରହିଅଛି । ଉଜ୍ଜୟିନୀ ପରିଦର୍ଶନ କାଳରେ ଏ ସିଂହାସନର ସେପରି କୌଣସି ନିଦର୍ଶନ ଥିବାର ଦେଖିଲି ନାହିଁ । କେବଳ ସହର ମଧ୍ୟରେ ଥିବା ମାଟିର ଏକ ଉଚ୍ଚ ସ୍ତୁପକୁ ବତ୍ରିଶ ସିଂହାସନ ଥିବାର ସ୍ଥାନ ବୋଲି ଲୋକେ କହୁଥିବାର ଶୁଣିଲି । ଏହାପରେ ଅତିଥିଶାଳାକୁ ଆସି ମଧ୍ୟାହ୍ନ ଭୋଜନ ସାରି ବିଶ୍ରାମ କଲୁଁ ।

ଚତୁର୍ଦ୍ଦଶ ଶତାବ୍ଦୀ ବେଳକୁ ଉଜ୍ଜୟିନୀ ଏକ ସ୍ୱାଧୀନ ରାଷ୍ଟ୍ରଭାବେ ପରିଗଣିତ ହେଉଥିଲା । ସେତେବେଳେ ଜୟଚନ୍ଦ୍ର ଉଜ୍ଜୟିନୀର ରାଜା ଥିଲେ । ସେତେବେଳେ ଭାରତରେ ଆଜମୀର ନାମକ ଅନ୍ୟ ଏକ ସ୍ୱାଧୀନ ରାଷ୍ଟ୍ରର ରାଜା ଥାଆନ୍ତି ପୃଥ୍ୱୀରାଜ । ଜୟଚନ୍ଦ୍ର ପୃଥ୍ୱୀରାଜଙ୍କ ଯଶ ଓ ଗୌରବ ସହି ନ ପାରି ତାଙ୍କ ପ୍ରତି ଈର୍ଷାନ୍ୱିତ ହୋଇପଡ଼ିଲେ । ମାତ୍ର ଜୟଚନ୍ଦ୍ରଙ୍କ ସୁନ୍ଦରୀ କନ୍ୟା ପୃଥ୍ୱୀରାଜଙ୍କ ଗୁଣରେ ମୁଗ୍ଧ ହୋଇ ତାଙ୍କୁ ବିବାହ କରିବା ବିଷୟ ପ୍ରକାଶ କଲାରୁ ଜୟଚନ୍ଦ୍ର ତହିଁର ବିରୋଧ କଲେ । ଜଣେ ଶତ୍ରୁ ସହ ନିଜର କନ୍ୟାଙ୍କୁ ବିବାହ ନ ଦେଇ ସଙ୍ଗେ ସଙ୍ଗେ ଏକ ସ୍ୱୟଂବରର ଆୟୋଜନ କଲେ । ଏ ସ୍ୱୟଂବରକୁ ପୃଥ୍ୱୀରାଜଙ୍କୁ ଡ଼କାଗଲା ନାହିଁ ବରଂ ତାଙ୍କୁ ଅପମାନିତ କରିବା ଉଦ୍ଦେଶ୍ୟରେ ତାଙ୍କର ଏକ ପ୍ରତିମୂର୍ତ୍ତି କରାଇ ଦ୍ୱାରପାଳ ରୂପେ ଦ୍ୱାରଦେଶରେ ସ୍ଥାପନ କଲେ । ଏଥିରେ ଜୟଚନ୍ଦ୍ରଙ୍କ କନ୍ୟା ଅତ୍ୟନ୍ତ ମର୍ମ୍ମାହତ ହୋଇ ତାଙ୍କୁ ନେଇଯିବା ପାଇଁ ଗୋପନରେ ପୃଥ୍ୱୀରାଜଙ୍କୁ ଖବର ଦେଲେ, ସ୍ୱୟଂବର ଧୁମଧାମ ଚାଲିଥିଲାବେଳେ ପୃଥ୍ୱୀରାଜ ହଠାତ୍ ଉପସ୍ଥିତ ହୋଇ ପ୍ରିୟତମାଙ୍କୁ ଅପହରଣ କରି ନେଇଗଲେ । ଏହି ଅପମାନରେ ଜୟଚନ୍ଦ୍ର ଅତ୍ୟନ୍ତ କ୍ଷୁବ୍ଧ ହୋଇ ମହମ୍ମଦ ଘୋରୀଙ୍କୁ ଆଜମୀର ଆକ୍ରମଣ କରିବାକୁ ନିମନ୍ତ୍ରଣ କଲେ । ମହମ୍ମଦ ଘୋରୀଙ୍କୁ ଏଥିରେ ସାହାଯ୍ୟ କରିବାକୁ ମଧ ପ୍ରତିଶ୍ରୁତି ଦେଲେ । ଏହା ପୂର୍ବରୁ ଥରେ ମହମ୍ମଦ ଘୋରୀ ଆଜମୀର ଆକ୍ରମଣ କରି ପୃଥ୍ୱୀରାଜଙ୍କ ଠାରୁ ପରାସ୍ତ ହୋଇଥିବାରୁ ଏ ନିମନ୍ତ୍ରଣ ତାଙ୍କୁ ଏକ ସୁବର୍ଣ୍ଣ ସୁଯୋଗ ହେଲା । ସେ ଆଜମୀର ଆକ୍ରମଣ କରି ଜୟଚନ୍ଦ୍ରଙ୍କ ସହାୟତାରେ ପୃଥ୍ୱୀରାଜଙ୍କୁ ପରାସ୍ତ କଲେ । ଯୁଦ୍ଧରେ ପୃଥ୍ୱୀରାଜ ନିହତ

ହେଲେ । ଭାରତ ଗଗନରୁ ସ୍ୱାଧୀନତାର ମୁକ୍ତି ମସାଲ ଚିରଦିନ ପାଇଁ ଲିଭିଗଲା । ପରାଧୀନତାର କଳଙ୍କମୟ **ଇତିହାସ** ଆରମ୍ଭ ହେଲା ।

## "ଶାଞ୍ଚି ବୌଦ୍ଧସ୍ତୁପ"

ସମ୍ମିଳନୀ ଶେଷ ହେବାପରେ ରାଜ୍ୟର ନିକଟବର୍ତ୍ତୀ ସ୍ଥାନରେ ଥିବା ଦର୍ଶନୀୟ ସ୍ଥାନ ପରିଦର୍ଶନର ବ୍ୟବସ୍ଥା ଥାଏ । ତେଣୁ ଭୋପାଳରୁ ୬୦ କି.ମି. ଦୂରରେ ଥିବା ଶାଞ୍ଚି ବୌଦ୍ଧସ୍ତୁପ ପରିଦର୍ଶନ କରିବାର ଏ କାର୍ଯ୍ୟକ୍ରମ ରଖାଯାଇଥିଲା । ସମ୍ମିଳନୀକୁ ଆସିଥିବା ସମସ୍ତ ପ୍ରତିନିଧି, ଦର୍ଶକ ଓ ଅନ୍ୟ ସମସ୍ତଙ୍କୁ ବସରେ ନେଇ ସେଠାକୁ ଯିବାର ସ୍ଥିର କରାଗଲା । ତଦନୁଯାୟୀ ସେଦିନ ପୂର୍ବାହ୍ନ ୮ଘଣ୍ଟା ସମୟରେ ବିଭିନ୍ନ ବସ ଯୋଗେ ସମସ୍ତେ ଶାଞ୍ଚି ଅଭିମୁଖେ ଯାତ୍ରା କଲୁଁ । ପ୍ରାୟ ଦୁଇହଜାର ବର୍ଷ ପୂର୍ବେ ଭାରତରେ ବୌଦ୍ଧ ଧର୍ମ ପ୍ରସାରଲାଭ କରିଥିଲା ବେଳେ ଏହି ସ୍ଥାନରେ ତିନିଟି ସ୍ତୁପ ନିର୍ମାଣ କରାଯାଇଥିଲା । ପ୍ରତ୍ୟେକର ଉଚ୍ଚତା ପ୍ରାୟ ୬୦ଫୁଟ ହେବ । ସଂପୂର୍ଣ୍ଣ ପଥରରେ ନିର୍ମିତ । ପଥର ଗୁଡ଼ିକ ସେ କାଳର ଯୋଡ଼େଇ ମସଲାରେ ଏପରି ଭାବରେ ଲଗାଯାଇ ନିର୍ମିତ ହୋଇଥିଲା ଯେ ଦୀର୍ଘ ହଜାର ହଜାର ବର୍ଷ ବିତି ଯାଇଥିଲେ ହେଁ ସେ ଗୁଡ଼ିକ ଅକ୍ଷୁର୍ଣ୍ଣ ଅବସ୍ଥାରେ ରହିଥିଲା ।

## "ଖଜୁରାହୋ"

ଖଜୁରାହୋ ମଧ୍ୟପ୍ରଦେଶର ଏକ ବିଶେଷ ଦର୍ଶନୀୟ ସ୍ଥାନ । ଏଠାକାର ମନ୍ଦିର ଗୁଡ଼ିକର କାରୁକାର୍ଯ୍ୟ କୋଣାର୍କର ଉତ୍କୃଷ୍ଟ କାରୁକାର୍ଯ୍ୟ ସହିତ ତୁଳନୀୟ । ଏଠାକୁ ଆଗରୁ ଆସିବାର ଆଗ୍ରହ ଥିଲେ ହେଁ ସୁଯୋଗ କେବେ ମିଳି ନ ଥିଲା । ଭୋପାଳରୁ ଖଜୁରାହୋକୁ ଯିବାର ସେପରି ସୁବିଧା ନ ଥିବାରୁ ଦିଲ୍ଲୀ ହୋଇ ଉଡ଼ାଜାହାଜ ଯୋଗେ ସେଠାକୁ ଯିବା ସ୍ଥିରକରି ଦିଲ୍ଲୀ ଗଲି ଓ ପୁଣି ସେଠାରୁ ବିମାନ ଯୋଗେ ଖଜୁରାହୋ ଗଲି । ମୋ ସହିତ ମୋ ସ୍ତ୍ରୀ ବିଧାନସଭା ସେକ୍ରେଟେରୀ ଓ ତାଙ୍କ ସ୍ତ୍ରୀ ମଧ ଥାଆନ୍ତି । ଖଜୁରାହୋ ଭାରତର ଏକ ମୁଖ୍ୟ ଦର୍ଶନୀୟ ସ୍ଥାନ ହୋଇଥିବାରୁ ସେଠାକୁ ଉଡ଼ାଜାହାଜରେ ଯୋଗଯୋଗ ବ୍ୟବସ୍ଥା ହୋଇପାରିଛି । ଆମ ଓଡ଼ିଶାର କୋଣାର୍କ ସେହିପରି ଏକ ଦର୍ଶନୀୟ ସ୍ଥାନ ହୋଇଥିଲେ ହେଁ କେବଳ ସଡ଼କପଥ ବ୍ୟତୀତ ଅନ୍ୟକୌଣସି ପ୍ରକାର ଯୋଗଯୋଗ ବ୍ୟବସ୍ଥା ସେଠାକୁ ଏ ଯାବତ୍ ହୋଇପାରିନି । ଫଳରେ ବହୁ ବିଦେଶୀ ପରିବ୍ରାଜକଙ୍କର ପ୍ରବଳ ଇଚ୍ଛା ଥିଲେ ହେଁ ଟ୍ରେନ୍ ବା ବିମାନ ଚଳାଚଳର ବ୍ୟବସ୍ଥା ନ ଥିବାରୁ ଏଠାକୁ ଆସି ପାରୁନାହାନ୍ତି । ସେଦିନ ଖଜୁରାହୋ ଯାଇଥିଲା ବେଳେ ଆମ ଉଡ଼ାଜାହାଜ ଆଗ୍ରାଦେଇ ଯିବାରୁ ବହୁ ବିଦେଶୀ ପରିବ୍ରାଜକ ଉକ୍ତ ବିମାନରେ ସେଠାରୁ ଗଲେ । ମାତ୍ର ଆମେ ଏ ଦେଶର ଲୋକ ହୋଇ ମଧ ଏ ସ୍ଥାନ ପରିଦର୍ଶନ କରିପାରି ନଥିଲୁଁ । ଆମେ ବିମାନଘାଟୀରେ ଅବତରଣ କଲାବେଳକୁ ସେଠାକାର ସବ୍‌କଲେକ୍ଟର ଆମକୁ ଭେଟି ସରକାରୀ ଅତିଥିଶାଳାକୁ ନେଇଗଲେ ଓ ସେଠାରେ ଥିବା ହୋଟେଲରେ ଆମ ଭୋଜନର ବ୍ୟବସ୍ଥା ମଧ କରିଦେଲେ । ଏହି ସହରଟି ଏକ ଛୋଟ ସ୍ଥାନ ହୋଇଥିଲେ ହେଁ କେବଳ ବିଦେଶୀ ପରିବ୍ରାଜକମାନଙ୍କ ପାଇଁ ଏହା ଖ୍ୟାତି ବଢ଼ି ଚାଲିଛି । ଏହା ଇନ୍ଦୋର ଜିଲ୍ଲାର ଏକ ସବ୍‌ଡ଼ିଭିଜନ ଓ ଇନ୍ଦୋର ସହର ଏଠାରୁ ୬୦/୭୦ କି.ମି. ଦୂରରେ ଅବସ୍ଥିତ ।

ଏହାର ପୂର୍ବନାମ ଖଜୁଉଟକା ଥିଲା ଓ ପରେ ତାହା ଖଜୁରାହୋ ନାମରେ ନାମିତ ହୋଇଅଛି । ଏହା ଭାରତର ଏକ ପ୍ରାଚୀନ କାରୁକାର୍ଯ୍ୟ ପୂର୍ଣ୍ଣ ସ୍ଥାନ ଭାବରେ ପରିଚିତ । ସେ କାଳର ଐତିହାସିକ ବୁନ୍ଦେଲଖଣ୍ଡ ରାଜ୍ୟର ଏହା ରାଜଧାନୀ ଥିଲା । ପରେ କ୍ରମଶଃ ଏହାର ରାଜନୈତିକ ତଥା ପ୍ରଶାସନିକ ଗୁରୁତ୍ୱ କମିଯାଇ ଏକମାତ୍ର ଦର୍ଶନୀୟ ସ୍ଥାନରେ ପରିଗଣିତ ହେଉଅଛି । ପରିଦର୍ଶନର ସୁବିଧା ପାଇଁ ଏଠାରେ ଏକ ବିମାନଘାଟି ପ୍ରତିଷ୍ଠିତ ହେବାରୁ ଏହାର ଗୁରୁତ୍ୱ ମଧ ବୃଦ୍ଧି ପାଇବାରେ ଲାଗିଛି । ପୁରାତନ କାଳରେ ମଧଭାରତର ଚନ୍ଦେଲ ବଂଶର ରାଜାମାନେ ରାଜତ୍ୱ କରୁଥିବା ବେଳେ ଖଜୁରାହୋ ବୁନ୍ଦେଲ ଖଣ୍ଡର ରାଜଧାନୀ ଥିଲା । ଚୀନ ପରିବ୍ରାଜକ ହୁଏନ୍‌ସାଂ ଭାରତ ଭ୍ରମଣରେ ଆସିଥିଲା ବେଳେ, ମଧ ଏହି ସ୍ଥାନ ଏକ ଦର୍ଶନୀୟ ସ୍ଥାନରେ ପରିଣତ ହୋଇଥିବାର ପ୍ରମାଣ ମିଳେ । ଉକ୍ତ ଚନ୍ଦେଲ ବଂଶର ରାଜାମାନେ ନିଜକୁ ଚନ୍ଦ୍ରବଂଶର ରାଜା ବୋଲି ପରିଚୟ ଦିଅନ୍ତି । ଏ ସଂପର୍କରେ ନିମ୍ନ ଲିଖିତ କିମ୍ବଦନ୍ତୀ ଥିବାର ଶୁଣିଲି । ଏଠାରେ ରାଜୁତି କରୁଥିବା କୌଣସି ଜଣେ ରାଜାଙ୍କ କନ୍ୟା ଅତିଶୟ ଗରମ ସହି ନ ପାରି ଉଲଗ୍ନ ହୋଇ ନଦୀରେ ଏକ ଜ୍ୟୋସ୍ନା ବିଧୌତ ରଜନୀରେ ସ୍ନାନରତ ଥିବା କାଳରେ ତାଙ୍କ ସୌନ୍ଦର୍ଯ୍ୟରେ ମୁଗ୍ଧ ହୋଇ ଚନ୍ଦ୍ରଦେବତା ଓହ୍ଲାଇ ଆସି ରାଜକନ୍ୟା ସହିତ ରତିକ୍ରୀଡ଼ା କଲେ ଓ ପରେ ତାଙ୍କଠାରୁ ଯେଉଁ ସନ୍ତାନ ଜନ୍ମ ଲାଭକଲା ତାହାହିଁ ଚନ୍ଦ୍ରବଂଶ ନାମରେ ଅଭିହିତ ହେଲା । ଏହି ରାଜବଂଶର ରାଜାମାନେ ଅତ୍ୟନ୍ତ କଳାପ୍ରେମୀ ଥିବାର ଜଣାଯାଏ । ଐତିହାସିକ ମାନଙ୍କ ଗବେଷଣାରୁ ଜଣାଯାଏ ଯେ, ପ୍ରାୟ ୮୦୦ ରୁ ୧୨୦୦ ଶତାବ୍ଦୀ ମଧରେ ଚନ୍ଦେଲ

ବଂଶର ରାଜାମାନେ ଏଠାରେ ବହୁ ସୁନ୍ଦର ସୁନ୍ଦର ମନ୍ଦିରମାନ ନିର୍ମାଣ କରାଇଥିଲେ । ପ୍ରତ୍ନତତ୍ତ୍ୱବିତ୍‌ମାନେ ମଧ୍ୟ ମନ୍ଦିର ଗୁଡ଼ିକ ଉପରୋକ୍ତ ସମୟ ମଧ୍ୟରେ ହୋଇଥିବାର ସ୍ୱୀକାର କରନ୍ତି । ୧୦୧୫ ଖ୍ରୀଷ୍ଟାବ୍ଦରେ ଗଜନୀର ମାମୁଦ ଭାରତ ଅଭିଯାନରେ ଆସିଥିଲା ବେଳେ ତାଙ୍କ ସହିତ 'ଆବୁ ରିହାନ୍ ଏଲ୍‌ବିରୁନୀ' ନାମକ ଜଣେ ଐତିହାସିକ ମଧ୍ୟ ଭାରତ ଆସିଥିଲେ । ତାଙ୍କ ରିପୋର୍ଟରୁ ଜଣାଯାଏ ଯେ ଆଜିର ଖଜୁରାହୋ ସେତେବେଳେ ଖଜୁରାଭଟକା ନାମରେ ପରିଚିତ ଥିଲା । ସେତେବେଳେ ଅତି ସୁନ୍ଦର କାରୁକାର୍ଯ୍ୟ ପୂର୍ଣ୍ଣ ୮୫ଟି ମନ୍ଦିର ଏଠାରେ ଥିଲା ଏବେ ମଧ୍ୟ ୨୦/୨୫ଟି ମନ୍ଦିର ଅକ୍ଷୁର୍ଣ୍ଣ ଅବସ୍ଥାରେ ରହି ସେତେବେଳର ଉତ୍କୃଷ୍ଟ କାରୁକାର୍ଯ୍ୟ ଗୁଡ଼ିକୁ ବହନକରି ଦଣ୍ଡାୟମାନ ହୋଇ ରହଛି । ପ୍ରତ୍ନତାତ୍ତ୍ୱିକ ତଥା ଐତିହାସିକ ଗବେଷଣାରୁ ଓଡ଼ିଶାର ବିଖ୍ୟାତ କୋଣାର୍କର ସୂର୍ଯ୍ୟମନ୍ଦିର ଠିକ୍ ସେହି ସମୟ ମଧ୍ୟରେ ହୋଇଥିବାର ପ୍ରମାଣ ମିଳେ । ଉଭୟ ସ୍ଥାନର ମନ୍ଦିର ଗୁଡ଼ିକରେ ପ୍ରାୟ ଏକ ପ୍ରକାର କାରୁକାର୍ଯ୍ୟ ତଥା ଦେବାଦେବୀ ମୂର୍ତ୍ତିମାନଙ୍କରେ ମଧ୍ୟ ବହୁ ସାମଞ୍ଜସ୍ୟ ଥିବାର ଜଣାଯାଏ । ତେଣୁଁ ଅଷ୍ଟମରୁ ଦ୍ୱାଦଶ ଶତାବ୍ଦୀ ମଧ୍ୟରେ ଭାରତର ସ୍ଥାପତ୍ୟ କଳାର ଚରମ ଉନ୍ନତି ଘଟିଥିଲା ବୋଲି ଅବଶ୍ୟ ସ୍ୱୀକାର କରିବାକୁ ପଡ଼ିବ ।

ଆମକୁ ମନ୍ଦିର ଦେଖାଇବା ପାଇଁ ଏକ ଉଦ୍ୟାନ ମଧ୍ୟକୁ ନେଇଗଲେ । ଉଦ୍ୟାନଟି ଅତି ଭଲଭାବରେ ସୁରକ୍ଷିତ ହୋଇଥିବାର ଦେଖିଲି । ପ୍ରଥମେ ଲକ୍ଷ୍ମଣ ନାମକ ଚନ୍ଦ୍ରବଂଶରେ ଜଣେ ରାଜାଙ୍କ ଦ୍ୱାରା ନିର୍ମିତ ମନ୍ଦିର ଦେଖିବାକୁ ଗଲୁଁ । ମନ୍ଦିର ମଧ୍ୟରେ କୌଣସି ମୂର୍ତ୍ତିଥିବାର ଦେଖିପାରିଲି ନାହିଁ । ମନ୍ଦିରର ତଳ ଦେଶରୁ ଉପରୁ ପର୍ଯ୍ୟନ୍ତ ପ୍ରସ୍ତର ଖୋଦିତ ବିଭିନ୍ନ ଦେବଦେବୀ ମୂର୍ତ୍ତି ବ୍ୟତୀତ କୋଣାର୍କ ମନ୍ଦିର ଗାତ୍ରରେ ଥିବା ବିଭିନ୍ନ ପ୍ରକାର ରତିକ୍ରୀଡ଼ା ପ୍ରଦର୍ଶିତ ହେଉଥିବା ମୂର୍ତ୍ତିମାନ ଖୋଦିତ ହୋଇଥିବାର ଦେଖାଗଲା । ମୂର୍ତ୍ତିଗୁଡ଼ିକ ପଥରରେ ଖୋଦିତ ହୋଇ ଶହଶହ ବର୍ଷ ବିତିଯାଇଥିଲେ ହେଁ ସେଗୁଡ଼ିକ ଏବେ ବି ଅକ୍ଷୁର୍ଣ୍ଣ ଅବସ୍ଥାରେ ରହି ଜୀବନ୍ତ ଭଳି ପ୍ରତୀତ ହେଉଅଛି । ତତ୍‌ପରେ ବିଷ୍ଣୁମନ୍ଦିର ଓ ଶିବମନ୍ଦିର ଓ ଅନ୍ୟ କେତେକ ଛୋଟ ଛୋଟ ମନ୍ଦିର ମଧ୍ୟକୁ ଗଲୁଁ । ସବୁସ୍ଥାନରେ ପଥରରେ ଖୋଦିତ ସୁନ୍ଦର ସୁନ୍ଦର ବିଭିନ୍ନ ଦେବୋଦେବୀ ମୂର୍ତ୍ତି ମଧ୍ୟରେ ଯୌନକ୍ରୀଡ଼ା ପ୍ରଦର୍ଶିତ ହେଉଥିବା ମୂର୍ତ୍ତିମାନ ଥିବାର ଦେଖିଲୁଁ । କେବଳ ଗୋଟିଏ ମାତ୍ର ମନ୍ଦିରରେ ଦେବୀ ପୂଜା ହେଉଥିବାର ଦେଖାଗଲା । କୋଣାର୍କ ଓ ଖଜୁରାହୋର ମୂର୍ତ୍ତିଗୁଡ଼ିକ ପ୍ରାୟ ଏକ ପ୍ରକାରର ହୋଇଥିଲେ ହେଁ କୋଣାର୍କ ମନ୍ଦିରର ମୂର୍ତ୍ତି ଗୁଡ଼ିକରେ ଯେପରି ଅତି ସୂକ୍ଷ୍ମ କାରୁକାର୍ଯ୍ୟ ପ୍ରଦର୍ଶିତ ହୋଇଛି ଏଠାରେ ସେପରି କାରୁକାର୍ଯ୍ୟ ନାହିଁ । ଏହି ଉଦ୍ୟାନ ମଧ୍ୟରେ ପ୍ରାୟ ୧୨ଟି ମନ୍ଦିର ଏକ ପ୍ରକାର ଢଙ୍ଗରେ ତିଆରି ହୋଇଥିବାର ଦେଖିଲୁଁ । କୋଣାର୍କର ସୂର୍ଯ୍ୟ ମନ୍ଦିରରେ କଳା ମୁଗୁନି ପଥରରେ ସୂକ୍ଷ୍ମ କାରୁକାର୍ଯ୍ୟ ବିଶିଷ୍ଟ ମୂର୍ତ୍ତି ଗୁଡ଼ିକ ଥିଲେ ହେଁ ସମୁଦ୍ରର ଲୁଣା ପବନ ଯୋଗୁଁ ମୂର୍ତ୍ତି ଗୁଡ଼ିକ କେତେକାଂଶରେ କ୍ଷୁର୍ଣ୍ଣ ହୋଇଗଲାଣି । ମାତ୍ର ଖଜୁରାହୋରେ ଥିବା ମୂର୍ତ୍ତିଗୁଡ଼ିକ ସମୁଦ୍ର ତୀରବର୍ତ୍ତୀ ହୋଇ ନ ଥିବାରୁ ବେଶ ନିକ୍ଷୁଣ ଅବସ୍ଥାରେ ରହିଛି । ସେଠାକାର ମନ୍ଦିର ମାନଙ୍କ ମଧ୍ୟରୁ ଗୋଟିଏ ଛୋଟ ମନ୍ଦିରରେ କଳା ମୁଗୁନି ପଥରରେ ନିର୍ମିତ ଏକ ବିରାଟ ବରାହ ମୂର୍ତ୍ତି ଥିବାର ଦେଖିବାକୁ ମିଳିଲା । ଏହି ବରାହ ମୂର୍ତ୍ତି ଦେହରେ ଛୋଟ ଛୋଟ ଦେବାଦେବୀ ମୂର୍ତ୍ତିମାନ ମଧ୍ୟ ଖୋଦିତ ହୋଇଅଛି । ଏହି ବରାହ ମୂର୍ତ୍ତିଟି ଗୋଟିଏ ସର୍ପ ଉପରେ ଛିଡ଼ା ହୋଇଛି । ଏହି ବିରାଟ ମୂର୍ତ୍ତିଟି ଗୋଟିଏ ମାତ୍ର ପଥରରେ ନିର୍ମିତ ହୋଇଛି ।

ରାତିରେ ଅତିଥିଶାଳାରେ ଅବସ୍ଥାନ କଲାପରେ ପରଦିନ ସକାଳେ ସେଠାରୁ ୮/୧୦ କି.ମି. ଦୂରରେ ଅବସ୍ଥିତ ଜୈନ ମନ୍ଦିର ଗୁଡ଼ିକ ଦେଖିବାକୁ ଗଲୁଁ । ସେଠାରେ ମଧ୍ୟ ଖଜୁରାହୋ ଭଳି ଓ ସେହି ସମସାମୟିକ କେତୋଟି ମନ୍ଦିର ଥିବାର ଦେଖିବାକୁ ପାଇଲୁଁ । ଏଠାରେ ମଧ୍ୟ ମନ୍ଦିର ଗାତ୍ରରେ ବିଭିନ୍ନ ଦେବାଦେବୀ ମୂର୍ତ୍ତି ବ୍ୟତୀତ ପୁରୁଷ ସ୍ତ୍ରୀର ଉଲଗ୍ନ ରତିକ୍ରୀଡ଼ା ରତ ମୂର୍ତ୍ତିମାନ ଦେଖାଗଲା । ଜୈନମାନେ ମୂର୍ତ୍ତି ଉପାସକ ନ ଥିବାରୁ ମନ୍ଦିର ମାନଙ୍କରେ କୌଣସି ମୂର୍ତ୍ତି ଥିବାର ଦେଖିଲୁଁ ନାହିଁ ।

ଦିନେ ଏହି ଅଞ୍ଚଳରେ ନିଶ୍ଚିତ ଭାବରେ ବହୁ ଶିଳ୍ପୀ ଓ କାରିଗର ଥିବାର ମନେ ହୁଏ । ତା ନ ହୋଇଥିଲେ ଏତେ ସଂଖ୍ୟକ ମନ୍ଦିର ନିର୍ମାଣ କରିବା କେବେହେଲେ ସମ୍ଭବପର ହୋଇ ପାରି ନ ଥାଆନ୍ତା । କୋଣାର୍କର ଗୋଟିଏ ମାତ୍ର ବଡ଼ ମନ୍ଦିର ସହ ମାତ୍ର କେତୋଟି ଛୋଟ ମନ୍ଦିର ଓ ନବଗ୍ରହ ମୂର୍ତ୍ତି ତିଆରି କରିବାକୁ କିମ୍ବଦନ୍ତୀ ଅନୁଯାୟୀ ଯଦି ୧୨୦୦ ବଢ଼େଇଙ୍କୁ ଦୀର୍ଘ ୧୨ ବର୍ଷ ଲାଗିଥିଲା ସେଥିରୁ ହିଁ ଅନୁମାନ କରିହେବ ଏଠାକାର ଏହିସବୁ ବିରାଟକାୟ ମନ୍ଦିର ନିର୍ମାଣ କରିବାକୁ କେତେଲୋକ କେତେ ବର୍ଷଧରି ଲାଗି ନ ଥିବେ ଓ ସେଥିରେ କେତେ ପରିମାଣର ଅର୍ଥ ବ୍ୟୟ ହୋଇ ନ ଥିବ । ଏହାଭାବି ଆଶ୍ଚର୍ଯ୍ୟ ହେଲି । ଦିନେ ଏ ଦେଶ ଶିଳ୍ପ କଳାରେ କିଭଳି ବିଭବଶାଳୀ ଥିଲା । ସେଠାରେ "Khajuraho Guide" ନାମରେ ବିକ୍ରି ହେଉଥିବା ପୁସ୍ତକରେ ସେଠାକାର ମନ୍ଦିର ଗାତ୍ରରେ ଉଲଗ୍ନ ଯୌନକ୍ରିୟା ପ୍ରଦର୍ଶିତ ମୂର୍ତ୍ତିଗୁଡ଼ିକର କାରଣ ସଂପର୍କରେ କେତେକ ତଥ୍ୟ ଥିବାର ଦେଖିଲି । ପୁରାଣ ଯୁଗରେ ଏହି ସ୍ଥାନଟି ସ୍ୱର୍ଗର କାମ ଓ ରତିଙ୍କର ଏକ କ୍ରୀଡ଼ାସ୍ଥଳୀ ଥିଲା । ତେଣୁଁ ଏହାର ନିଦର୍ଶନ ସ୍ୱରୂପ ଏଭଳି ଚିତ୍ରମାନ ଏଠାରେ ପ୍ରଦର୍ଶିତ ହୋଇଛି । ଅନ୍ୟ ଏକ ସ୍ଥାନରେ ଏହି ସ୍ଥାନଟି ଶିବ ଓ ପାର୍ବତୀଙ୍କ କ୍ରୀଡ଼ାସ୍ଥଳୀ ଥିଲା ବୋଲି ଉକ୍ତ ପୁସ୍ତକରେ ବର୍ଣ୍ଣନା କରାଯାଇଛି । କେତେକ କହନ୍ତି ସଂଭୋଗ ଦ୍ୱାରା ନିର୍ବାଣ ପ୍ରାପ୍ତିର ଏହା ଏକ ଦିଗ । ଯାହାହେଉ ଉକ୍ତ ସମୟର ଓଡ଼ିଶା ଓ ମଧ୍ୟପ୍ରଦେଶର ମନ୍ଦିର ଗାତ୍ର ମାନଙ୍କରେ ଅତି ରହସ୍ୟ ପୂର୍ଣ୍ଣଭାବେ ଏଭଳି ଅଶ୍ଳୀଳ ଚିତ୍ରମାନ ପ୍ରଦର୍ଶିତ

ହୋଇଛି । ବିଦେଶୀ ପର୍ଯ୍ୟଟକଙ୍କ ଏଗୁଡ଼ିକୁ ଦେଖିବା ପାଇଁ ଏଠାରେ ଏତେ ଭିଡ଼ ହୁଏ । ଆମ ପୁରୀର ଜଗନ୍ନାଥ ମନ୍ଦିରର ଗାତ୍ରରେ ମଧ୍ୟ ଏଭଳି କିଛି ଅଶ୍ଳୀଳ ଚିତ୍ର ଥିବାର ଦେଖାଯାଏ । ଏହାର କାରଣ ସ୍ୱରୂପ କେତେକ କହନ୍ତି ଯେ, ମନ୍ଦିରକୁ ଦର୍ଶନ ପାଇଁ ଆସୁଥିବା ଭକ୍ତ ମାନଙ୍କର ଚିତ୍ତ ପରୀକ୍ଷା ପାଇଁ ଏଗୁଡ଼ିକର ସୃଷ୍ଟି । ଯେଉଁ କାରୀଗର ମାନେ ବହୁଦିନ ଧରି ଘରଦ୍ୱାର ଛାଡ଼ି ଏଭଳି ଏକ କଠିନ କାମରେ ଲାଗିଥାଆନ୍ତି ସେମାନଙ୍କ ମନରେ ଏକ ପ୍ରକାର ଆନନ୍ଦ ଓ ସୁଖ ଜନ୍ମାଇବା ପାଇଁ ଏହା ଏକ ମାନସିକ ଉଦ୍ଭଟ ଭାବ ପ୍ରକାଶ ବୋଲି କହିଲେ ମଧ୍ୟ ଅତ୍ୟୁକ୍ତି ହେବ ନାହିଁ ।

## "ବନାରସ ପରିଦର୍ଶନ"

ଖଜୁରାହୋରୁ ଦିଲ୍ଲୀ ନ ଯାଇ ବନାରସ ଦେଇ ଓଡ଼ିଶାକୁ ଫେରିବାକୁ ସ୍ଥିର କଲୁଁ । ଏହା ଫଳରେ ବାଟରେ ଅନ୍ୟ ଏକ ସ୍ଥାନ ଦେଖିବା ସଙ୍ଗେ ସଙ୍ଗେ ଆମର ପାଥେୟ ମଧ୍ୟ କମ୍ ପଡ଼ିବ । ତେଣୁଁ ମୁଁ ସେଠାରୁ ବନାରସ ଯାଉଥିବା ଉଡ଼ାଜାହାଜ ଯୋଗେ ଆମେ ବନାରସ ଯାତ୍ରା କଲୁଁ । ଏଥିପାଇଁ ଉତ୍ତର ପ୍ରଦେଶ ସରକାରଙ୍କୁ ଗୋଟିଏ ଦିନର ବ୍ୟବସ୍ଥା କରିବାକୁ ଜଣାଇ ଦିଆଗଲା । ଏଥିପୂର୍ବରୁ ବନାରସ ଯାଇଥିଲେ ହେଁ ଅଫିସର ଆମକୁ ନେଇ ସରକାରୀ ଅତିଥିଶାଳାରେ ରଖାଇଲେ । ପ୍ରଥମେ ବନାରସର ବିଖ୍ୟାତ ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟ ଦେଖିବାକୁ ଗଲୁଁ । ବ୍ରିଟୀସ୍ ଶାସନ ସମୟରେ ଆଲିଗଡ଼ଠାରେ ମୁସଲିମ୍ ବିଶ୍ୱବିଦ୍ୟାଳୟ ସ୍ଥାପିତ ହେଲାପରେ ସ୍ୱର୍ଗୀୟ ମଦନ ମୋହନ ମାଳବ୍ୟ ଏହି ବିଶ୍ୱ ବିଦ୍ୟାଳୟ ପ୍ରତିଷ୍ଠା କରିଥିଲେ । ଏହାର ଆୟତନ ଏତେ ବଡ଼ ଯେ ବିନା ଯାନବାହନ ବ୍ୟତୀତ ସବୁଆଡ଼ ବୁଲି ଦେଖିବା ସମ୍ଭବପର ନୁହେଁ । ବାହାରୁ ଅଳ୍ପ କେତେକ ସ୍ଥାନ ବୁଲି ଦେଖିଲା ପରେ ସେଠାରେ ନିର୍ମିତ ବିରଳା ମନ୍ଦିରକୁ ଗଲୁଁ । ପ୍ରାୟ ୩୫/୩୬ବର୍ଷ ପୂର୍ବେ ମୁଁ ଏଠାକୁ ଆସିଥିଲା ବେଳେ ଏହି ମନ୍ଦିରଟି ନିର୍ମାଣ ହେଉଥବବାର ଦେଖିଥିଲି । ଏହା ଭାରତର ସର୍ବୋଚ୍ଚ ମନ୍ଦିର ବିରଳା କଂପାନୀ ଦ୍ୱାରା ବହୁ ଅର୍ଥ ବ୍ୟୟରେ ନିର୍ମି ହୋଇଛି । ସମସ୍ତ ମନ୍ଦିରଟି ମାର୍ବଲ ପଥରରେ ତିଆରି । ଏହା ଦ୍ୱିତଳ ବିଶିଷ୍ଟ ଶିବମନ୍ଦିର ।

## "ରାମଚରିତ ମାନସ ମନ୍ଦିର"

ବନାରସର ବିଭିନ୍ନ ଦର୍ଶନୀୟ ସ୍ଥାନ ମାନଙ୍କ ମଧ୍ୟରେ ଏହି ମନ୍ଦିରଟି ଅନ୍ୟତମ । ମନ୍ଦିର ମଧ୍ୟରେ ପ୍ରବେଶ କରି ଦେଖିଲୁଁ ମନ୍ଦିରର ଭିତରପଟ କାନ୍ଥରେ ଅତି ଛୋଟ ଛୋଟ ଦେବନାଗରୀ ଅକ୍ଷରରେ ସଂପୂର୍ଣ୍ଣ ତୁଳସୀ ରାମାୟଣଟି ଲେଖାଯାଇଛି । ଏପରି ଭାବରେ ସଂପୂର୍ଣ୍ଣ ରାମାୟଣ ଲେଖାଯିବା ପାଇଁ କେତେ ସମୟ ଯେ ଲାଗିଥିବ ତାହା କଳ୍ପନା କରିବା ଏକ ଅସମ୍ଭବ ବ୍ୟାପାର । ମନ୍ଦିରଟି ଦୁଇମହଲା ବିଶିଷ୍ଟ ଏକ ଅଟ୍ଟାଳିକା । ଉପର ମହଲାକୁ ଉଠିବା ବାଟରେ ସନ୍ଥ ତୁଳସୀ ଦାସଙ୍କ ଏକ ପ୍ରତିମୂର୍ତ୍ତି ରଖାଯାଇଛି । ବିଦ୍ୟୁତ୍ ସଂଯୋଗ ଦ୍ୱାରା ଏପରି ଏକ ବ୍ୟବସ୍ଥା କରାଯାଇଛଇ ଯେ ଏହି ମୂର୍ତ୍ତିଟି ଗୋଟିକ ପରେ ଗୋଟିଏ ପୃଷ୍ଠା ଓଲଟାଇ ଅନବରତ ତୁଳସୀ ରାମାୟଣ ଗାନ କରୁଅଛି । ଏହା ପ୍ରକୃତରେ ଅତ୍ୟନ୍ତ ଆକର୍ଷଣୀୟ ହୋଇଛି । ଦର୍ଶକମାନେ ଏହି ମୂର୍ତ୍ତି ନିକଟରେ ବହୁ ସଂଖ୍ୟାରେ ଦଣ୍ଡାୟମାନ ହୋଇ ରାମାୟଣ ଶୁଣୁଥିବାର ଦେଖିଲୁଁ । ଉପର ମହଲାର ଦୃଶ୍ୟ ଏହାଠାରୁ ଅଧିକ ମନୋହର ଓ ଆକର୍ଷଣୀୟ । ଏହି ମହଲାର କାନ୍ଥ ଗୁଡ଼ିକରେ ରାମାୟଣ ଓ ମହାଭାରତରେ ବହୁ ଘଟଣାବଳୀର ଚିତ୍ର ଓ ମୂର୍ତ୍ତି ଗୁଡ଼ିକ ରହିଅଛି । ଶ୍ରୀକୃଷ୍ଣଙ୍କ ଜନ୍ମକାଳର ତଥା କୃଷ୍ଣଲୀଳାର ବହୁ ଚିତ୍ର ଓ ମୂର୍ତ୍ତିମାନ ରଖାଯାଇଛି ଓ ବିଦ୍ୟୁତ୍ ସଂଯୋଗ ଦ୍ୱାରା ଏହି ପ୍ରତିମୂର୍ତ୍ତି ଗୁଡ଼ିକ ବିଭିନ୍ନ ଅଭିନୟ ମଧ୍ୟ କରୁଥିବାର ଦେଖିଲୁଁ । ମନ୍ଦିର ମଧ୍ୟରେ ଥିବା ସମସ୍ତ ଅଭିନବ ପ୍ରଦର୍ଶନୀ ଗୁଡ଼ିକ ବିରଳା କଂପାନୀ ଦ୍ୱାରା ନିର୍ମିତ ହୋଇଥିବାର ଜାଣିଲି । ଆମ ଦେଶର ପ୍ରାଚୀନ ସଂସ୍କୃତି ଉପରେ ଏହିଭଳି ବହୁ ଘଟଣାବଳୀ ଏଠା ବ୍ୟତୀତ ଦିଲ୍ଲୀ, ହାଇଦ୍ରାବାଦ, ପୋରବନ୍ଦର, ଦ୍ୱାରାକା, ଋଷିକେଶ ଓ ହରଦ୍ୱାର ପ୍ରଭୃତି ବିଭିନ୍ନ ସ୍ଥାନରେ ରହିଥିବାର ଦେଖାଯାଏ ।

ଏହାପରେ ଆମେ ଗଙ୍ଗାନଦୀର ପବିତ୍ର ଘାଟକୁ ଗଲୁଁ । ଏଠାରେ ଅନେକ ଲୋକ ବୁଡ଼ ଦିଅନ୍ତି, ଏହା ତଳକୁ ପବିତ୍ର ପ୍ରୟାଗ ତୀର୍ଥ ଯେଉଁଠି ଗଙ୍ଗା ଯମୁନା ଓ ସରସ୍ୱତୀର ମିଳନ ସ୍ଥଳ । ଏହି ପ୍ରୟାଗ ତୀର୍ଥରେ ପ୍ରତି ୧୨ ବର୍ଷ ଅନ୍ତରରେ ହେଉଥିବା ମେଳାରେ ଭାରତର ବହୁ ସାଧୁସନ୍ଥ ଯୋଗ ଦିଅନ୍ତି । ଗଙ୍ଗାନଦୀର ଜଳ ନେଇ ଆମେ ସମସ୍ତେ ଦେହରେ ଶିଞ୍ଚନ କଲୁଁ ଯଦିଓ ପରୀକ୍ଷା ଦ୍ୱାରା ଏଠାକାର ଜଳ ଅତ୍ୟନ୍ତ ଦୂଷିତ ବୋଲି ଜଣାଯାଇଛି ତଥାପି ଏହା ପବିତ୍ରତା ଉପରେ ଏବେବି ହିନ୍ଦୁମାନଙ୍କର ଅଟଳ ବିଶ୍ୱାସ ରହିଛି ।

## "ରାମନଗର ଗଡ଼"

ରାମନଗର ଗଡ଼ ଗଙ୍ଗାନଦୀର ଅପର ପାର୍ଶ୍ୱରେ ବନାରସ ସହରକୁ ଲାଗି ରହିଅଛି । ରାମନଗର କାଶୀ ରାଜାଙ୍କ ରାଜଧାନୀ ଥିଲା । ଏହି ସ୍ଥାନଟି ଏକ ଗଡ଼ ପରି ହୋଇଥିବାରୁ ଏହାକୁ ରାମନଗର ଗଡ଼ ବୋଲି କହନ୍ତି । ଏହି ରାଜନଅରର କିୟଦଂଶ ଏବେ ଏକ ମିଉଜିୟମରେ ପରିଣତ ହୋଇଛି ଓ ଅନ୍ୟ ଅଂଶରେ ରାଜ ପରିବାରର ଲୋକେ ବସବାସ କରନ୍ତି । ଏଠାକାର ଏହି ମିଉଜିୟମରେ ପ୍ରାଚୀନ କାଳର ଯୋଦ୍ଧା ଓ ରାଜାମାନେ ବ୍ୟବହାର କରୁଥିବା ବିଭିନ୍ନ ଅସ୍ତ୍ରଶସ୍ତ୍ର, ପୋଷାକ ପରିଚ୍ଛଦ, ରାଜପରିବାରର ବ୍ୟବହୃତ ଅହଂକାର ଶାଢ଼ୀ ଓ ବାସନ କୁସନ ଆଦି ଭବିଷ୍ୟତ ବଂଶଧରଙ୍କ ଜାଣିବା ପାଇଁ ସୁରକ୍ଷିତ କରି ରଖାଯାଇଛି ।

## "କାଶି ବିଶ୍ୱନାଥ ମନ୍ଦିର"

ବନାରସର ପ୍ରାଚୀନ ନାମ କାଶୀ । ଏଠାରେ ପ୍ରସିଦ୍ଧ ମହାଦେବ ମନ୍ଦିର କାଶି ବିଶ୍ୱନାଥ ଅବସ୍ଥିତ । ଏହା ଭାରତର ଅତି ପୁରାତନ ମନ୍ଦିର ମାନଙ୍କ ମଧ୍ୟରେ ଅନ୍ୟତମ । ବହୁବର୍ଷ ପୂର୍ବେ ଥରେ ଏହି ମନ୍ଦିରକୁ ଦିନବେଳେ ଦେଖିଥିଲି । ମନ୍ଦିରକୁ ଯିବା ସ୍ଥାନଟି ଅତି ସଂକୀର୍ଣ୍ଣ ଓ ବଙ୍କାଡ଼ଙ୍କା । ରାସ୍ତା ଜାଣି ନ ଥିବା ଲୋକ ସହଜରେ ମନ୍ଦିରକୁ ପହୁଁଞ୍ଚିବା କଷ୍ଟକର ବ୍ୟାପାର । ବୋଧ ହୁଏ ମୁସଲମାନ ମାନଙ୍କ ଆକ୍ରମଣ ଓ ଲୁଣ୍ଠନରୁ ମନ୍ଦିରକୁ ରକ୍ଷା କରିବା ପାଇଁ ପରବର୍ତ୍ତୀ ସମୟରେ ଏହି ପଥକୁ ଏପରି କରାଯାଇଛି । ଇତିହାସରୁ ଜଣାଯାଏ ଯେ ଆଫଗାନ୍ ଓ ଇରାନ୍‌ର ମୁସଲମାନ ମାନେ ବାରମ୍ବାର ଭାରତର ସୋମନାଥ ଓ କାଶି ବିଶ୍ୱନାଥ ମନ୍ଦିର ଆକ୍ରମଣ କରି ବହୁ ଧନ ସଂପତ୍ତି ଲୁଟି ନେଇଥିଲେ । ଏହି ମନ୍ଦିରର ଦ୍ୱାର ଦେଶରେ ସୁନା ଓ ରୂପା ଖଞ୍ଜା ଯାଇଥିବାର ଦେଖାଯାଏ । ତେଣୁ ଏହାର ସୁରକ୍ଷା ପାଇଁ ବିଧିବଦ୍ଧ ବ୍ୟବସ୍ଥା ମଧ୍ୟ କରାଯାଇଛି । ଏଥର ସଂଧ୍ୟାବେଳକୁ ମନ୍ଦିରକୁ ଯାଇ ଏଠାକାର ସଂଧ୍ୟାଆଳତି ଦେଖିବାର ଇଚ୍ଛାକଲୁଁ । ସଂଧ୍ୟା ଆଳତି ଅତ୍ୟନ୍ତ ଆକାର୍ଷଣୀୟ ଓ ଦର୍ଶନୀୟ ବୋଲି ମଧ୍ୟ ଶୁଣିଲୁଁ । ସେଠାକାର ନିରାପତ୍ତା ଦାୟିତ୍ୱରେ ଥିବା ପୋଲିସ୍ ଆମକୁ ମହାଦେବଙ୍କ ଏକ ନିକଟବର୍ତ୍ତୀ ସ୍ଥାନରେ ବସାଇ ଆମେ ଦର୍ଶନ କରିପାରିବାର ସମସ୍ତ ବବସ୍ଥା କରିଦେଲେ । ଆଳତି ସମୟରେ ବ୍ରାହ୍ମଣମାନେ ମହାଦେବଙ୍କ ଚାରିପଟେ ବସି ଅତି ଉଚ୍ଚସ୍ୱରରେ ହର ହର ବୋଲି କହିବା ସଙ୍ଗେ ସଙ୍ଗେ ଜୋରରେ ଘଣ୍ଟା ଓ ଢ଼ୋଲ ବଜାଇବା ଆରମ୍ଭ ହୋଇଗଲା । ହରହର ଧ୍ୱନିରେ ସମସ୍ତ ମନ୍ଦିର ଅଞ୍ଚଳ ପ୍ରକମ୍ପିତ ହୋଇଉଠିଲା । ଏହିପରି ତାହା ଶେଷ ହେଲା । ତାପରେ ସରକାରୀ ଅତିଥିଶାଳାକୁ ଫେରି ରାତ୍ରି ଯାପନ କଲୁଁ । ପରଦିନ ବିମାନ ଯୋଗେ ଭୁବନେଶ୍ୱର ଫେରିଲୁଁ । ଓଡ଼ିଶା ବିଧାନସଭାର ଅଧକ୍ଷ ଭାବରେ ଏହା ଥିଲା ମୋର ଶେଷ ପରିଭ୍ରମଣ । ଏହାର ଅଳ୍ପ ଦିନପରେ ନିର୍ବାଚନ ହୋଇ ଭାରତ ତଥା ଓଡ଼ିଶାର ରାଜନୈତିକ ଚିତ୍ରର ବହୁଳ ପରିବର୍ତ୍ତନ ଘଟିଲା ।

## "ଝାଡ଼ଖଣ୍ଡ ଆନ୍ଦୋଳନ"

ଆଦିବାସୀ ବିଶେଷ କରି ବହାର ରାଜ୍ୟର ଅନ୍ତର୍ଗତ ଛୋଟନାଗପୁର ଅଞ୍ଚଳର ସାନ୍ତାଳ ଓ ମୁଣ୍ଡାମାନଙ୍କ ଦ୍ୱାରା ଏହି ଆନ୍ଦୋଳନର ସୂତ୍ରପାତ ହୋଇଥିଲା । ସ୍ୱାଧୀନତା ପ୍ରାପ୍ତିର ପରବର୍ତ୍ତୀ ସମୟରେ ବିହାର ରାଜ୍ୟର ସଂଲଗ୍ନ ମୟୂରଭଞ୍ଜ ଏକ ଆଦିବାସୀ ବହୁଳ ଜିଲ୍ଲା ହୋଇଥିବାରୁ ଏଠାକୁ ତଥା ପଶ୍ଚିମବଙ୍ଗ ଓ ମଧ୍ୟ ପ୍ରଦେଶର କେତେକ ଅଞ୍ଚଳକୁ ଏହା କ୍ରମେ ପ୍ରସାରିତ ହେଲା । ବିହାରର ଜଣେ ଉଚ୍ଚ ଶିକ୍ଷିତ ଶ୍ରୀ ଜୟପାଳ ସିଂ ଏ ଆନ୍ଦୋଳନର ସ୍ରଷ୍ଟାଥିଲେ । ଏହା ଏକ ସାଂପ୍ରଦାୟିକ ଓ ଜାତିୟାଣ ଭିତ୍ତିରେ ଆରମ୍ଭ ହେଲା । ମୟୂରଭଞ୍ଜ ଏକ ପୂର୍ବତନ ଗଡ଼ଜାତ ରାଜ୍ୟଥିଲା । ଏହାର ଓଡ଼ିଶା ରାଜ୍ୟ ସହିତ ମିଶ୍ରଣ ହେବା ପୂର୍ବରୁ ଜୟପାଳ ସିଂଙ୍କ ଦ୍ୱାରା ପ୍ରଭାବିତ ହୋଇ ମୟୂରଭଞ୍ଜର ଶ୍ରୀ ସୋନାରାମ ସରେନ୍ ନାମକ ଜଣେ ଆଦିବାସୀ ଶିକ୍ଷିତ ଯୁବକ ଏଠାରେ ଏ ଆନ୍ଦୋଳନର ନେତୃତ୍ୱ ନେଲେ । ପ୍ରଥମେ ସ୍ୱାଧୀନତା ପ୍ରାପ୍ତି ପୂର୍ବରୁ ମୟୂରଭଞ୍ଜରେ ଚାଲିଥିବା ପ୍ରଜାମଣ୍ଡଳର ଜାତୀୟ ମୁକ୍ତି ଆନ୍ଦୋଳନକୁ ଭଣ୍ଡୁର କରିବା ଉଦ୍ଦେଶ୍ୟରେ ମୟୂରଭଞ୍ଜ ରାଜ ସରକାର ଏହି ସୋନାରାମ ସରେନ୍‌ଙ୍କୁ ମାଧ୍ୟମ କରି ଆଦିବାସୀ ମାନଙ୍କୁ ଜାତୀୟ ସ୍ରୋତରୁ ଅଲଗା ରଖିବାର ଚେଷ୍ଟା କରିଥିଲେ । କିନ୍ତୁ ସ୍ୱାଧୀନତା ପ୍ରାପ୍ତିପରେ ମୟୂରଭଞ୍ଜ ଓଡ଼ିଶା ସହିତ ମିଶି ଏକ ଜିଲ୍ଲାରେ ପରିଣତ ହେଲାରୁ ଉକ୍ତ ସୋନାରମ ସରେନ୍‌ଙ୍କ ଆଦିବାସୀ ଆନ୍ଦୋଳନ ଏହାକୁ ବିହାର ସହିତ ମିଶାଇବାକୁ ଦାବୀ କରିଥିଲା । ଏହା ପୂର୍ବରୁ ମୟୂରଭଞ୍ଜ କୌଣସି ରାଜ୍ୟ ସହିତ ନ ମିଶି ସ୍ୱତନ୍ତ୍ର ରାଜ୍ୟ ରୂପେ ରହିବାର ଦାବୀ ମଧ୍ୟ ଏମାନଙ୍କ ଦ୍ୱାରା କରାଯାଇଥିଲା । ଏ ସମସ୍ତ ପ୍ରକାର ଦାବୀ ସତ୍ତ୍ୱେ ମୟୂରଭଞ୍ଜର ଓଡ଼ିଶା ସହିତ ମିଶ୍ରଣ ହେବାରୁ ଉକ୍ତ ଆଦିବାସୀ ସଂସ୍ଥା ବିହାରର ଆଦିବାସୀ ମାନଙ୍କ ପ୍ରରୋଚନାରେ ବିହାର ରାଜ୍ୟକୁ ଲାଗିଥିବା ରାଇରଙ୍ଗପୁର ଉପଖଣ୍ଡ ଅଞ୍ଚଳରେ ହିଂସାତ୍ମକ ଘଟଣାମାନ ଘଟାଇ ଅଣ ଆଦିବାସୀଙ୍କ ମଧ୍ୟରେ ଆତଙ୍କ

ସୃଷ୍ଟି କରିବାକୁ ଲାଗିଲେ । ପରିଣାମରେ ପୋଲିସ୍ ଗୁଳିରେ ବହୁ ଆଦିବାସୀଙ୍କ ମୃତ୍ୟୁ ଘଟିଲା ଏବଂ ସୋନାରାମ ସମେତ ବହୁ ଆଦିବାସୀ ନେତାଙ୍କୁ ଗିରଫକରି ଅଟକ ରଖାଗଲା । ତାପରେ ମୟୂରଭଞ୍ଜ ଜିଲ୍ଲାରେ ଆପାତତଃ ଆଦିବାସୀ ଆନ୍ଦୋଳନ ବନ୍ଦ ହୋଇଗଲା । ଏ ସମସ୍ତ ଘଟଣା ୧୯୪୯ ଓ ୧୯୫୦ ମସିହା ବେଳକୁ ଘଟିଥିଲା ।

ଏହାପରେ ୧୯୫୧ ମସିହାର ଶେଷ ବେଳକୁ ଲୋକସଭା ଓ ଓଡ଼ିଶା ବିଧାନସଭା ପାଇଁ ପ୍ରଥମ ସାଧାରଣ ନର୍ବାଚନ ଆରମ୍ଭ ହେଲା । ସେତେବେଳେ ଏହି ଆଦିବାସୀ ଦଳର ଶ୍ରୀ ସୋନାରାମ ସରେନ୍ ସମେତ ଅନ୍ୟ କେତେକ ନେତା ମଧ କଂଗ୍ରେସରେ ଯୋଗ ଦେଇ ନିର୍ବାଚନରେ କଂଗ୍ରେସ ଦଳରୁ ପ୍ରାର୍ଥି ହେଲେ । ଶ୍ରୀ ସୋନାରାମ ଧରେନ୍ ନିର୍ବାଚନରେ ବିଜୟୀ ହୋଇ ସେତେବେଳର ଶ୍ରୀଯୁକ୍ତ ନବକୃଷ୍ଣ ଚୌଧୁରୀଙ୍କ ମନ୍ତ୍ରୀମଣ୍ଡଳରେ ଜଣେ ମନ୍ତ୍ରୀ ମଧ ହୋଇଥିଲେ । ଏହିପରି ଭାବରେ ଆଦିବାସୀମାନଙ୍କର ସ୍ୱତନ୍ତ୍ରୀ ଆନ୍ଦୋଳନ କ୍ରମେ ବିଲୟ ଘଟିଲା । ଆଦିବାସୀ ନେତାମାନେ ମୟୂରଭଞ୍ଜରେ ନିନ୍ଦିତ ହୋଇ ଆଦିବାସୀ ମାନଙ୍କ ସମର୍ଥନ ହରାଇଲେ । ମାତ୍ର ଓଡ଼ିଶା ସରକାରଙ୍କ ଗୁଳିକାଣ୍ଡ ଜନିତ ହତ୍ୟା ପାଇଁ ଆଦିବାସୀଙ୍କ ମଧରେ ଅସନ୍ତୋଷ ରହିଲା । ୧୯୫୭ ଓ ୧୯୬୧ର ସାଧାରଣ ନିର୍ବାଚନରେ କେତେଜଣ ନୂଆ ଆଦିବାସୀ ଯୁବନେତାଙ୍କ ଜାତିଆଣ ନେତୃତ୍ୱର ପ୍ରଭାବରେ ରାଇରଙ୍ଗପୁର ଅଞ୍ଚଳରୁ ଅଳ୍ପ କେତେଜଣ ଓଡ଼ିଶା ବିଧାନସଭାକୁ ନିର୍ବାଚିତ ହୋଇଥିଲେ । ଏହାପରେ ବିହାରରେ ସ୍ୱତନ୍ତ୍ର ଝାଡ଼ଖଣ୍ଡ ରାଜ୍ୟ ଗଠନ ପାଇଁ ଆନ୍ଦୋଳନ ଆରମ୍ଭ ହେଲା । ବିହାରର ବିସ୍ତୃତ ଅଞ୍ଚଳ ସହିତ ଓଡ଼ିଶାର ମୟୂରଭଞ୍ଜ, କେନ୍ଦୁଝର ଓ ସୁନ୍ଦରଗଡ଼ ପ୍ରଭୃତି ଏହି ଝାଡ଼ଖଣ୍ଡ ରାଜ୍ୟର ଅନ୍ତର୍ଭୁକ୍ତ କରାଯାଇ ଦାବୀ ହେବା ଫଳରେ ମୟୂରଭଞ୍ଜର ରାଇରଙ୍ଗପୁର ଉପଖଣ୍ଡକୁ ଏହା ପ୍ରସାରିତ ହେଲା ।

ବିହାରର ଛୋଟ ନାଗପୁର ସମେତ ଓଡ଼ିଶା, ମଧ୍ୟପ୍ରଦେଶର ଓ ପଶ୍ଚିମବଙ୍ଗର ୨୧ଟି ଜିଲ୍ଲାକୁ ମିଶାଇ ଏହି ଝାଡ଼ଖଣ୍ଡ ରାଜ୍ୟ ଗଠନ କରିବା ଥିଲା ଏ ଆନ୍ଦୋଳର ମୁଖ୍ୟ ଏବଂ ଏକ ଅବାସ୍ତବ ପ୍ରସ୍ତାବ । ୧୯୮୫ ମସିହାରୁ ଏହି ଆନ୍ଦୋଳନ ବ୍ୟାପକ ହେଲେ ହେଁ ଏଥିରେ କେବଳ ସାନ୍ତାଳ ଓ ମୁଣ୍ଡା ଜାତିର ଲୋକଙ୍କ ବ୍ୟତୀତ ଅନ୍ୟ ଆଦିବାସୀ ସଂପ୍ରଦାୟର ଲୋକଙ୍କ ସମର୍ଥନ ନ ଥିଲା । ଏଥର ରାଞ୍ଚି ବିଶ୍ୱବିଦ୍ୟାଳୟର କୁଳପତି ଜଣେ ମୁଣ୍ଡ ଜାତିର ଲୋକ ହୋଇଥିବାରୁ ତାଙ୍କ ନେତୃତ୍ୱରେ ଆଦିବାସୀ ଛାତ୍ରମାନେ ବିଶେଷ ଭାବରେ ଭାଗ ନେଇଥିବାର ପରିଲକ୍ଷିତ ହେଲା । ଗ୍ରାମାଞ୍ଚଳର ବୟସ୍କ ଲୋକମାନେ ଏଥିରେ ସକ୍ରିୟ ଭାଗ ନେବାରୁ ଏହି ଆନ୍ଦୋଳନ କେବଳ ଛାତ୍ର ଓ ଯୁବକ ମାନଙ୍କ ମଧରେ ସୀମିତ ରହିଲା । ମାତ୍ର ଏହା ଅଣ ଆଦିବାସୀଙ୍କ ଦନ ଓ ଜୀବନ ପ୍ରତି ନିରାପଦ ନ ହେବାର ଦେଖାଗଲା ।

ମୟୂରଭଞ୍ଜ ଏକ ଆଦିବାସୀ ବହୁଳ ଜିଲ୍ଲା ହୋଇଥିଲେ ହେଁ କେବଳ ସାନ୍ତାଳ ଜାତିର ଲୋକଙ୍କ ଏଥିପ୍ରତି ସମର୍ଥନ ରହିଲା । ଜିଲ୍ଲାର ମୋଟ ଆଦିବାସୀ ଲୋକଙ୍କ ମଧରେ ସାନ୍ତାଳମାନଙ୍କ ସଂଖ୍ୟା ପ୍ରାୟ ଅଧାର କମ ହେବ । ଏପରିକି ସ୍ୱତନ୍ତ୍ର ଭାଷା ନ ଥିବା କୋହ୍ଲ ଓ ଭୂମିଜ ପ୍ରଭୃତି ଲେକଙ୍କର ତଥା ଓଡ଼ିଆ କହୁଥିବା ବାଥୁଡ଼ି, ଭୂୟାଁ, ସାଉଁତି, ଖଡ଼ିଆ, ମାଙ୍କଡ଼ିଆ ଓ ଦେହୁରୀ ପ୍ରଭୃତି ଜାତିର ଲୋକଙ୍କ ସଂଖ୍ୟା ସାନ୍ତାଳମାନଙ୍କ ଠାରୁ ଅଧିକ ହୋଇଥିଲେ ହେଁ ଝାଡ଼ଖଣ୍ଡ ପ୍ରତି ସେମାନଙ୍କ ସମର୍ଥନ ନ ଥିଲା । ଏତଦ୍ ବ୍ୟତୀତ ହରିଜନ ଓ ଅଣ ଆଦିବାସୀଙ୍କ ସଂଖ୍ୟା ମିଶିଲେ ସାନ୍ତାଳ ଜାତିର ଲୋକଙ୍କ ଅପେକ୍ଷା ପ୍ରାୟ ଦୁଇଗୁଣରୁ ଅଧିକ ହୋଇଯିବ । ତେଣୁ ମୟୂରଭଞ୍ଜ ଜିଲ୍ଲାକୁ ଝାଡ଼ଖଣ୍ଡ ରାଜ୍ୟର ଅନ୍ତର୍ଭୁକ୍ତ କରିବା ଯେପରି ଅବାସ୍ତବ ସେହିପରି ଓଡ଼ିଶାର ଅନ୍ୟ ଜିଲ୍ଲା ସମେତ ପଶ୍ଚିମବଙ୍ଗ ଓ ମଧ୍ୟପ୍ରଦେଶର ଅଞ୍ଚଳ ଗୁଡ଼ିକୁ ଏହାର ଅନ୍ତର୍ଭୁକ୍ତ କରିବା ଅବାସ୍ତବ ମଧ । ବିହାରର ଛୋଟାନାଗପୁର ଓ ମୟୂରଭଞ୍ଜର ରାଇରଙ୍ଗପୁର ସବ୍‌ଡ଼ିଭିଜନ୍‌ରେ ସାନ୍ତାଳ ମାନଙ୍କର ସଂଖ୍ୟା ଅଧିକ ଥିବାରୁ ଓ ସରକାରଙ୍କ କାର୍ଯ୍ୟକ୍ରମର ସୁଯୋଗ ପାଇ ସାନ୍ତାଳମାନେ ଅନ୍ୟ ଆଦିବାସୀ ମାନଙ୍କ ତୁଳନାରେ କେତେକ ପରିମାଣରେ ଆଗୁଆ ହୋଇଥିବାରୁ ସେମାନଙ୍କର ଝାଡ଼ଖଣ୍ଡ ଆନ୍ଦୋଳନ ପ୍ରତି ଅଧିକ ଉତ୍ସାହ ଓ ଉଦ୍ଦୀପନା ରହିଛି । ରାଇରଙ୍ଗପୁର ସବ୍‌ଡ଼ିଭିଜନରେ ବିହାରର ଝାଡ଼ଖଣ୍ଡୀ ନେତାମାନେ ଆନ୍ଦୋଳନକୁ ଏପରି ଉତ୍କଟ କଲେ ଯେ ଅଣ ଆଦିବାସୀ ଲୋକଙ୍କ ମଧରେ ଏକ ଆତଙ୍କ ସୃଷ୍ଟି ହେଲା । ସେମାନଙ୍କୁ ନାନା ପ୍ରକାର ଧମକ ଚମକ ଦେଇ ତାଙ୍କଠାରୁ ହଜାର ହଜାର ଟଙ୍କା ଚାନ୍ଦା ଆଦାୟ କରାଗଲା ଓ ନ ଦେଲେ ମାଡ଼ ମଧ ଦିଆଗଲା । ଏହି ଆନ୍ଦୋଳନର କୁପ୍ରଭାବ କ୍ରମେ ବାରିପଦା ସହରକୁ ମଧ ବ୍ୟାପିଗଲା । ୧୯୮୭-୧୯୮୮ ବେଳକୁ ବାରିପଦାକୁ ବହୁ ସଂଖ୍ୟାରେ ଆଦିବାସୀ ମାନେ ବିହାର ନେତାଙ୍କ ନେତୃତ୍ୱରେ ଆସି ସହରରେ ଶୋଭାଯାତ୍ରାମାନ କରି ଜନସାଧାରଣଙ୍କୁ ଏପରି ଭୟଭୀତ କଲେ ଯେ ଏହା ରାଜ୍ୟ ସରକାରଙ୍କ ପାଇଁ ଏକ ଚିନ୍ତାର ବିଷୟ ହୋଇପଡ଼ିଲା । ତେଣୁ ସେ ସମୟର ଓଡ଼ିଶାର ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ଜାନକୀ ବଲ୍ଲଭ ପଟ୍ଟନାୟକଙ୍କ ବହୁ ସାଧାରଣ ସଭାରେ ପ୍ରାୟ ୨୦/୨୫ ହଜାର ଲୋକଙ୍କ ସମାବେଶ ହୋଇ ଉଦ୍‌ବୋଧନ ଦେଇ ସେଠାକାର ଅଣଆଦିବାସୀ ମାନଙ୍କୁ ସାହସ ଓ ଉତ୍ସାହ ଦେବାକୁ ବାଧ ହେଲେ । ଫଳରେ ସେଠାକାର ଲୋକଙ୍କ ମନରେ ସାହସ ଜନ୍ମିଲା ।

କେନ୍ଦ୍ର ସରକାରଙ୍କ ଦୋମୁହାଁ ନୀତି ହିଁ ଝାଡ଼ଖଣ୍ଡ ଆନ୍ଦୋଳନକୁ ଉତ୍ସାହିତ କରିଥିଲା । ବିଶେଷ କରି ପଶ୍ଚିମବଙ୍ଗର ବାମପନ୍ଥୀ ପାହାଡ଼ି ଅଞ୍ଚଳ କାଉନ୍‌ସିଲ ଗଠନ ଦିଗରେ ସହାୟତା କରିବାରୁ ଆଦିବାସୀଙ୍କୁ ଝାଡ଼ଖଣ୍ଡ ପାଇଁ ପ୍ରକାରାନ୍ତରରେ ଉତ୍ସାହିତ କରାଗଲା । ବିହାରର ଝାଡ଼ଖଣ୍ଡ ନେତାମାନଙ୍କୁ କେନ୍ଦ୍ର ସରକାରଙ୍କ ସ୍ୱରାଷ୍ଟ୍ରମନ୍ତ୍ରୀ ବାରମ୍ବାର ଭେଟି ଝାଡ଼ଖଣ୍ଡ ରାଜ୍ୟ ଗଠନ ସଂକ୍ରାନ୍ତରେ ସେମାନଙ୍କ ସହ ଆଲୋଚନା କଲେ । ଏପରି ରାଜ୍ୟ ଗଠନ କରିବାର ଚିନ୍ତା ସଂପୂର୍ଣ୍ଣଭାବେ ଅବାସ୍ତବ

ବୋଲି ସେମାନଙ୍କ ରୋକଠୋକ ଭାବେ ଜଣାଇ ନ ଦେବା ଫଳରେ ସେମାନଙ୍କର କଂଗ୍ରେସ ପ୍ରତି ବିରୋଧଭାବ ବଢ଼ିଲା ଓ ସେମାନେ ହିଂସାତ୍ମକ କାର୍ଯ୍ୟଦ୍ୱାରା ଲୋକଙ୍କୁ ଆତଙ୍କିତ କରିବାର ଚେଷ୍ଟାକଲେ । ଶେଷରେ ଜନ ସାଧାରଣଙ୍କ ଚାପରେ ଓଡ଼ିଶା ସରକାର ମୟୂରଭଞ୍ଜ-ବିହାର ସୀମା ସିଲକରି ପୋଲିସ ମୁତୟନ କଲେ । ବିହାରରୁ ଓଡ଼ିଶା ସୀମା ମଧ୍ୟରେ ପ୍ରବେଶ କରି କେହି ଯେପରି ଉତ୍ତେଜନା ସୃଷ୍ଟି କରି ନ ପାରନ୍ତି ସେଥିପ୍ରତି ସତର୍କ ଦୃଷ୍ଟି ରଖାଗଲା । ବିଭିନ୍ନ ସ୍ଥାନରେ ୧୪୪ଧାରା ଜାରୀ କଲାପରେ ତାହା ଭଙ୍ଗକଲେ ଲାଠି ଚାଳନା ମଧ୍ୟ କରାଗଲା । ଏହି ସବୁ କାରଣରୁ ଝାଡ଼ଖଣ୍ଡୀମାନେ କେନ୍ଦ୍ର ତଥା ରାଜ୍ୟ ସରକାର ଓ ସର୍ବୋପରି କଂଗ୍ରେସର ବିରୋଧୀ ହୋଇ ୧୯୮୯ ନିର୍ବାଚନକୁ ବାସନ୍ଦ କରିବାର ଘୋଷଣା କଲେ । ଫଳରେ ଝାଡ଼ଖଣ୍ଡ ଦଳ ଭାଗ ଭାଗ ହୋଇଗଲା । ବିଶେଷ କରି ଆଦିବାସୀଙ୍କ ଛାତ୍ର ଅନୁଷ୍ଠାନ ଶିଖ ଛାତ୍ରସଂଘ ପରି ବାସନ୍ଦ କାର୍ଯ୍ୟକ୍ରମରେ ଅଧିକ ଅଗ୍ରଣୀ ହେଲେ, ମାତ୍ର ଝାଡ଼ଖଣ୍ଡ ମୁକ୍ତି ମୋର୍ଚ୍ଚା ତଥା ଅନ୍ୟ କେତେକ ସ୍ୱାଧୀନ ସଭ୍ୟ ଭାବେ ନିର୍ବାଚନ ଲଢ଼ିବା ଫଳରେ ଏମାନେ ଓଡ଼ିଶାରେ ନିଶ୍ଚିହ୍ନ ହୋଇଗଲେ ।

ସ୍ୱାଧୀନତା ପ୍ରାପ୍ତିପରେ ଭାରତର ସଂବିଧାନ ପ୍ରଣେତାମାନେ ଶିକ୍ଷା ସଂସ୍କୃତି ଓ ଆର୍ଥିକ ଅନୁନ୍ନତ ମାନଙ୍କୁ ଅନ୍ୟମାନଙ୍କ ସମାନ ସ୍ତରକୁ ଆଣିବା ପାଇଁ ବିଭିନ୍ନ ପ୍ରକାର ସ୍ୱତନ୍ତ୍ର ସୁବିଧା ଓ ସୁଯୋଗର ବ୍ୟବସ୍ଥା ଖଞ୍ଜିଲା ବେଳେ ପ୍ରଥମେ ପର ସମୟ ସୀମା ମାତ୍ର ୧୦ବର୍ଷ ରଖିଥିଲେ । ପରେ ତହିଁର ପୁନର୍ବିଚାର କରି ଯେତେ ଚଞ୍ଚଳ ସେମାନଙ୍କୁ ଅନ୍ୟମାନଙ୍କ ସହିତ ସମାନ ସ୍ତରକୁ ଆଣିବା ଥିଲା ଏହାର ପ୍ରଧାନ ଉଦ୍ଦେଶ୍ୟ । ଏହି ସ୍ୱତନ୍ତ୍ର ସୁବିଧା ସବୁଦିନ ରଖାଯିବାର ଉଦ୍ଦେଶ୍ୟ ନ ଥିଲା । ଶିକ୍ଷା କ୍ଷେତ୍ରରେ ଛାତ୍ରମାନଙ୍କୁ ସାହାଯ୍ୟ ଦେବା, ଆର୍ଥିକ ଉନ୍ନତି ପାଇଁ ବିଭିନ୍ନ ଯୋଜନା କରିବା, ଶିକ୍ଷିତ ହେବାପରେ ସେମାନଙ୍କ ପାଇଁ ଚାକିରୀ କ୍ଷେତ୍ରରେ ସ୍ଥାନ ସଂରକ୍ଷଣ କରିବା ପ୍ରଭୃତି କାର୍ଯ୍ୟକ୍ରମମାନ ସଂବିଧାନ ଅନୁଯାୟୀ ଅନୁସରଣ କରାଗଲା ।

ପ୍ରତି ଦଶବର୍ଷ ପରେ ନିର୍ବିଚାର ଭାବରେ ଏହି ବ୍ୟବସ୍ଥା ପ୍ରଚଳନ ହେବା ଫଳରେ ଉକ୍ତ ସଂପ୍ରଦାୟର ଲୋକେ ଏହି ସମସ୍ତ ସୁଯୋଗ ଯେପରି ତାଙ୍କର ସବୁଦିନର ଅଧିକାର ବୋଲି ମନେକଲେ ଏବଂ ଏମାନଙ୍କୁ ସେଥିପାଇଁ ରାଜନୈତିକ କ୍ଷେତ୍ରରେ ଅସ୍ତ୍ରରୂପେ ବ୍ୟବହାର କରାଗଲା । ଏହି ସୁଯୋଗକୁ କାଏମ ରଖିବା ପାଇଁ ଆଦିବାସୀମାନଙ୍କ ମଧ୍ୟରେ କ୍ରମେ ସାଂପ୍ରଦାୟିକ ଭାବ ସୃଷ୍ଟି ହେବାକୁ ଲାଗିଲା ଓ ସେମାନେ ନିଜକୁ ଅନ୍ୟମାନଙ୍କ ଠାରୁ ଅଲଗା ବା ଭିନ୍ନ ବୋଲି ମନେକଲେ । ପରିଶେଷରେ ସେମାନେ ନିଜପାଇଁ ଏକ ସ୍ୱତନ୍ତ୍ର ରାଜ୍ୟ ଦାବୀକଲେ । ଭାରତ ସରକାରଙ୍କ ଦୁର୍ବଳତାର ସୁଯୋଗ ନେଇ ଏକ ଅବାସ୍ତବ ଝାଡ଼ଖଣ୍ଡ ରାଜ୍ୟ ଗଠନର ପରିକଳ୍ପନା ଜାତହେଲା । ବରଂ ଏହା ଦ୍ୱାରା ସେମାନଙ୍କୁ ଜାତୀୟ ସ୍ରୋତରୁ କ୍ରମେ ଦୂରେଇ ନିଆଗଲା । ପ୍ରକୃତ ଅନୁଧ୍ୟାନ କଲେ ଦେଖାଯାଏ ଯେ ଏହି ଆଦିବାସୀ ଓ ହରିଜନ ମାନଙ୍କ ମଧ୍ୟରୁ ମୁଷ୍ଟିମେୟ ଲୋକ ଚାକିରୀ ଓ ନିର୍ବାଚନ କ୍ଷେତ୍ରରେ ସୁଯୋଗ ପାଇଲେ ମାତ୍ର ଅନ୍ୟମାନଙ୍କ ଅବସ୍ଥା ''ଯଥା ପୂର୍ବଂ ତଥା ପରଂ'' ରହିଲା, ସେଥିସାଙ୍ଗକୁ ପୁଣି ଅନ୍ୟ ଅନୁନ୍ନତର ଶ୍ରେଣୀଙ୍କ ପାଇଁ ମଣ୍ଡଳ କମିଶନ ରିପୋର୍ଟ ଆଉ ଏକ ଅଧ୍ୟାୟ ସୃଷ୍ଟିକଲା ।

୧୯୮୯ ମସିହାର ସାଧାରଣ ନିର୍ବାଚନ ଫଳରେ ଜନତା ଦଳ ଅନ୍ୟ ବିରୋଧୀଦଳ ସାହାଯ୍ୟରେ ୨ୟଥର ପାଇ ଭାରତର ଶାସନ କ୍ଷମତାକୁ ଆସିଲେ । ନିଜର ରାଜନୈତିକ ସ୍ଥିତିକୁ ସବୁଦିନ ପାଇଁ କାଏମ ରଖିବାର ଉଦ୍ୟମ କଲେ ଏବଂ, ଏହି ଉଦ୍ଦେଶ୍ୟ ସାଧନର ଏକ ମାର୍ଗ ଭାବେ ମଣ୍ଡଳ କମିଶନର ରିପୋର୍ଟ ଗ୍ରହଣ କରିନେବାକୁ ଅନ୍ୟ ଉଚ୍ଚ ସଂପ୍ରଦାୟର ଲୋକଙ୍କ ମଧ୍ୟରେ ଘୋର ପ୍ରତିକ୍ରିୟା ସୃଷ୍ଟିହେଲା । ପୂର୍ବର ଆଦିବାସୀ ଓ ହରିଜନ ସାଙ୍ଗକୁ ଅନ୍ୟ ଅନୁନ୍ନତ ଜାତି ବୋଲାଉଥିବା (ମଣ୍ଡଳ କମିଶନ ରିପୋର୍ଟ ଅନୁଯାୟୀ) ଯୁବକ ମାନଙ୍କୁ ଶିକ୍ଷା, ଚାକିରୀ ଓ ରାଜନୈତିକ କ୍ଷେତ୍ରରେ ସୁବିଧା ମିଳିବାର ଜାଣି ଅନ୍ୟ ଯେଉଁମାନେ ଏଥିରୁ ବଂଚିତ ହେଲେ ସେମାନଙ୍କ ପକ୍ଷରୁ ସମଗ୍ର ଦେଶରେ ପ୍ରବଳ ଆନ୍ଦୋଳନ ଆରମ୍ଭ ହୋଇଗଲା । ସବର୍ଣ୍ଣ ଜାତିର ଯୁବକ, ଯୁବତୀ ତଥା ଛାତ୍ରଛାତ୍ରୀ ମାନେ ନିଜର ଭବିଷ୍ୟତ ଅନ୍ଧକାର ମନେକରି ଆତ୍ମାହୁତି ଦେବାକୁ ଆରମ୍ଭ କରିଦେଲେ । ବିଭିନ୍ନ ସ୍ଥାନରେ ଜଳାପୋଡ଼ା ପ୍ରଭୃତି ହିଂସାତ୍ମକ କାର୍ଯ୍ୟ ଆରମ୍ଭ ହୋଇଗଲା । ସେତେବେଳେ କଂଗ୍ରେସ ମଣ୍ଡଳ କମିଶନ ରିପୋର୍ଟକୁ ବିରୋଧକରି କେବଳ ଆର୍ଥିକ ମାନଦଣ୍ଡକୁ ବିଚାରକୁ ନେଇ ଉପରୋକ୍ତ ସଂରକ୍ଷଣ ପାଇଁ ମତ ପ୍ରଦାନ କରିବାରୁ ରାଜନୈତିକ କ୍ଷେତ୍ରରେ ବିଭିନ୍ନ ଦଳ ମଧ୍ୟରେ ସପକ୍ଷ ଓ ବିପକ୍ଷ ବିଚାରଧାରା ସୃଷ୍ଟି ହେଲା । ଫଳରେ ଜାତୀୟ ସଂହତି କ୍ରମେ ନଷ୍ଟ ହେବାକୁ ଲାଗିଲା । ଏତଦ୍‌ବ୍ୟତୀତ ସଂଖ୍ୟା ନ୍ୟୁନ ଓ ସଂଖ୍ୟାଧିକ ସଂପ୍ରଦାୟ ମଧ୍ୟରେ ଶତ୍ରୁତା ସୃଷ୍ଟି ହେବାକୁ ଲାଗିଲା ।

# ସାଧାରଣ ନିର୍ବାଚନ -୧୯୮୯

କେନ୍ଦ୍ରରେ ୧୯୮୦ ପର୍ଯ୍ୟନ୍ତ ଚାଲିଥିବା ଜନତାପାର୍ଟି ସରକାରରେ ଆନ୍ତର୍ବିବାଦ ଲାଗି ପାଞ୍ଚବର୍ଷ ନ ପୂରୁଣୁ ହଠାତ ଭାଙ୍ଗିଯିବା ଫଳରେ ଇନ୍ଦିରା ଗାନ୍ଧୀଙ୍କ ନେତୃତ୍ୱରେ କଂଗ୍ରେସ ମନ୍ତ୍ରୀମଣ୍ଡଳ ଗଠିତ ହେଲା । ମାତ୍ର ୧୯୮୪ ମସିହାର ଶେଷଆଡକୁ ଆତାୟୀର ଗୁଳିରେ ମୃତ୍ୟୁ ଘଟିଲାରୁ ତାଙ୍କ ପୁତ୍ର ଶ୍ରୀଯୁକ୍ତ ରାଜୀବଗାନ୍ଧୀଙ୍କ ନେତୃତ୍ୱରେ ୧୯୮୫ ପର୍ଯ୍ୟନ୍ତ କଂଗ୍ରେସର ଶାସନ ଚାଲି ଦେଶର ବହୁବିଧ ଉନ୍ନତି ସାଧିତ ହେଲା । ଶ୍ରୀମତୀ ଗାନ୍ଧୀଙ୍କ ପରି ଶ୍ରୀଯୁକ୍ତ ରାଜୀବ ଗାନ୍ଧୀମଧ ଅତ୍ୟନ୍ତ ଜନପ୍ରିୟ ହେଲେ । ପ୍ରଥମ ଅବସ୍ଥାରେ ତାଙ୍କର କର୍ମନିଷ୍ଠା ଓ ବିଶେଷ କରି ଦୁର୍ନୀତିଗ୍ରସ୍ତ କୁଚକ୍ରୀ ଲୋକଙ୍କୁ ଦୂରେଇ ରଖି ବୁଝିବିଚାରି ସଦ୍‌କାମ ଓ ଶାସନ କାର୍ଯ୍ୟ ଚଳାଇବାରୁ ଲୋକେ ବେଶ ଖୁସି ହେଲେ । ତାଙ୍କର ନିର୍ମଳ ଚରିତ୍ର ଓ ଉତ୍ତମ ଭାବ ମୂର୍ତ୍ତିପାଇଁ ସାଧାରଣ ଲୋକେ ତାଙ୍କୁ ମିଷ୍ଟରକ୍ଲିନ ଆଖ୍ୟା ଦେଲେ । ଶ୍ରୀମତୀ ଗାନ୍ଧୀଙ୍କ ପରେ କଂଗ୍ରେସ ତରଫରୁ କିଏ ଏହାର ଯଥାର୍ଥତା ପ୍ରତିପାଦନ କରିବାରେଯେଉଁ ସନ୍ଦେହ ଥିଲା ଓ ସେଥିପାଇଁ କଂଗ୍ରେସ ଦଳ ମଧ୍ୟରେ ଯେଉଁକନ୍ଦଳ ସୃଷ୍ଟି ହେବାକୁ ଯାଉଥିଲା ତାର ଏକ ଉପଯୁକ୍ତ ସମାଧାନ କରି ଦେଶବାସୀଙ୍କ ମନରେ ଏକ ଆସ୍ଥା ମଧ୍ୟ ସୃଷ୍ଟି କରିବାରେ ବେଶ ସଫଳକାମ ମଧ୍ୟ ହେଲେ । ଆନ୍ତର୍ଜାତିକ ଓ ଆଭ୍ୟନ୍ତରୀଣ କ୍ଷେତ୍ରରେ ଦୀର୍ଘଦିନର ପଞ୍ଜାବ ସମସ୍ୟାର ସମାଧାନ କରି ଅତି ସାହସୀ ଓ ପୋଖତ ରାଜନୀତିଜ୍ଞ ଭାବେ ସୁନାମ ମଧ୍ୟ ଅର୍ଜନ କଲେ । ଏହି ପରିଭାବରେ ପ୍ରଥମ ଅବସ୍ଥାରେ କିଛିଦିନ ପାଇଁ କେହି ତାଙ୍କୁ ପ୍ରଭାବିତ କରିପାରି ନ ଥିଲେ । ଏହାପରେ କ୍ରମେ ତୋଷାମଦକାରୀଙ୍କ ପ୍ରଭାବରେ ପଡିଲେ । ସମାଜର ତଥା କଂଗ୍ରେସ ମଧ୍ୟରେ ଥିବା ନ୍ୟସ୍ତସ୍ୱାର୍ଥ ଲୋକେ କ୍ରମଶଃ ତାଙ୍କ ନିକଟରୁ ନିକଟତର ହେବାକୁ ସଙ୍ଗେ ସଙ୍ଗେ ଦଳ ମଧ୍ୟରେ ଥିବା ଭଲ ଓ ନିଃସ୍ୱାର୍ଥ ପର ଲୋକେ ଦୂରେଇ ଗଲେ ଅଥବା ନିରବ ରହିଲେ ।

ତେଣୁ ରାଜୀବଗାନ୍ଧୀ ସ୍ୱେଚ୍ଛାଚାରୀ ହେବାକୁ ଲାଗିଲେ । ଜନସାଧାରଣରେ ତାଙ୍କର ପୂର୍ବଭାବମୂର୍ତ୍ତି କ୍ରମେ ହ୍ରାସ ପାଇବାକୁ ଲାଗିଲା ଏବଂ ଲୋକେ ତାଙ୍କୁ ପୂର୍ବପରି ଆଉ କ୍ଲିନ ବୋଲି କହିଲେ ନାହିଁ । ଠିକ୍ ଏତିକି ବେଳେ ସୁଇଡ଼େନରୁ କୋଟି କୋଟି ଟଙ୍କାର ବଫର ତୋପ ଓ ପଶ୍ଚିମ ଜର୍ମାନୀରୁ ବୁଡାଜାହାଜ କିଣାରେ କୋଟିକୋଟି ଟଙ୍କା କମିସନ୍ ନେଇଥିବାର ଗୁରୁତର ଅଭିଯୋଗମାନ ତାଙ୍କ ବିରୁଦ୍ଧରେ ଆରମ୍ଭ ହେଲା । ପୁଣି ଏହି ସମୟରେ ତାଙ୍କ ମନ୍ତ୍ରୀମଣ୍ଡଳରେ ଥିବା ଅତି ସମ୍ମାନ ଜନକ ମନ୍ତ୍ରୀ ଶ୍ରୀଯୁକ୍ତ ବିଶ୍ୱନାଥ ପ୍ରତାପ ସିଂହଙ୍କ ସହିତ ମନୋମାଳିନ୍ୟ ହେତୁ ସେ ଇସ୍ତଫା ଦେଲେ । ଏ ସବୁଘଟଣା କ୍ରମେ ଜଟିଳରୁ ଜଟିଳତର ହେବାକୁ ଲାଗିଲା । ଶ୍ରୀଯୁକ୍ତ ବି.ପି. ସିଂହ ଉତ୍ତର ପ୍ରଦେଶର ଜଣେ ପୂର୍ବତନ ରାଜା ଥିଲେ । ସେ କଂଗ୍ରେସରେ ଯୋଗ ଦେଇ ପ୍ରଥମେ ବହୁଦିନ ଧରି ଅର୍ଥମନ୍ତ୍ରୀ ଥିଲେ । ରାଜୀବ ଗାନ୍ଧୀଙ୍କ ସହିତ ମନୋମାଳିନ୍ୟ ଘଟିଲା ବେଳକୁ ସେ ଦେଶରକ୍ଷା ମନ୍ତ୍ରୀଥିବାର ବୋଫର ତୋପ କିଣା ଜନିତ କମିସନ ଅନ୍ୟ ଜରିଆରେ ନେଇଥିବାର ସନ୍ଦେହ ଅଧିକ ଦୃଢ଼ୀଭୂତ ହେଲା । ଶେଷରେ ଶ୍ରୀଯୁକ୍ତ ବି.ପି.ସିଂହଙ୍କୁ କଂଗ୍ରେସ ଦଳରୁ ବହିଷ୍କାର ମଧ୍ୟ କରାଗଲା । ବିରୁଦ୍ଧ ଦଳମାନେ ତାଙ୍କୁ ସ୍ୱାଗତ ଜଣାଇଲେ । ଏହାର ପ୍ରତିବାଦରେ ଶ୍ରୀଯୁକ୍ତ ଗାନ୍ଧୀଙ୍କ ମନ୍ତ୍ରୀମଣ୍ଡଳରୁ ଆଉ କେତେଜଣ ମନ୍ତ୍ରୀ ମଧ୍ୟ ଇସ୍ତଫା ଦେଇ ବାହାରିଯିବାରୁ ତାଙ୍କ ବିରୁଦ୍ଧରେ ଦୁର୍ନୀତିର ଏକ ଘନ କୁହେଳିକା ଜନମାନସରେ ବୃଦ୍ଧି ପାଇବାକୁ ଲାଗିଲା । ଶ୍ରୀଯୁକ୍ତ ସିଂ ଜଣେ ନିଷ୍ଠାପର ବ୍ୟକ୍ତି ଭାବରେ ଓ ଜଣେ ସମ୍ମାନସ୍ପଦ ମନ୍ତ୍ରୀଭାବେ ସାଧାରଣରେ ଜଣାଶୁଣା ଥିଲେ । ତେଣୁ ବିରୁଦ୍ଧଦଳ ଏହି ବ୍ୟକ୍ତିଙ୍କୁ ମୁଖ୍ୟ ଆୟୁଧ କରି ରାଜୀବଙ୍କ ବିରୁଦ୍ଧରେ ଏକ ଜନ ଆନ୍ଦୋଳନର ସୂତ୍ରପାତ କଲେ । ପୁଣି ଏହି ସମୟରେ ଉତ୍ତର ପ୍ରଦଶର ଏହ୍ଲାବାଦ ଲୋକସଭା ଆସନଟି ଖାଲି ହେବାରୁ ଏକ ଉପନିର୍ବାଚନ ହେବାର ଘୋଷଣା କରାଗଲା ।

ବିରୁଦ୍ଧ ଦଳଗୁଡିକର ମିଳିତ ସମର୍ଥନରେ ଶ୍ରୀ.ବି,ପି, ସିଂହ ସ୍ୱାଧୀନ ପ୍ରାର୍ଥିଭାବେ ଉପନିର୍ବାଚନ ଲଢ଼ିଲେ ଓ ବିପୁଳ ଭୋଟରେ ବିଜୟୀ ମଧ ହେଲେ । ଏହିଠାରୁ ହିଁ ଶ୍ରୀଯୁକ୍ତ ଗାନ୍ଧୀଙ୍କର ପତନ ଆରମ୍ଭ ହେଲା ।

ଭାରତର ସମସ୍ତ ବିରୁଦ୍ଧଦଳଗୁଡିକ ମଧରେ ନେତୃତ୍ୱପାଇଁ ଯେଉଁ ବିବାଦ ଲାଗି ରହିଥିଲା ଓ ପରସ୍ପରଙ୍କ ମଧରେ ଯେଉଁ ମତପାର୍ଥକ୍ୟ ଥିଲା ରାଜୀବଙ୍କୁ ତଥା କଂଗ୍ରେସକୁ କ୍ଷମତାରୁ ହଟାଇବା ପାଇଁ ସମସ୍ତ ପାର୍ଥକ୍ୟ ଭୁଲିଗଲେ । ଜନତାପାର୍ଟି ସହିତ କେତେକ ଦଳ ମିଶିଗଲେ ଓ ସମସ୍ତ ଆଦର୍ଶଗତ ଭେଦଭାବ ଭୁଲି ଜନମୋର୍ଚ୍ଚା ନାମରେ ଏକ ସାମୁଖ୍ୟ ଗଠନ କରି ସରକାର ଗଠନ କରିବା ପାଇଁ ଏକ ମିଳିତ କାର୍ଯ୍ୟକ୍ରମ ମଧ ପ୍ରସ୍ତୁତ କଲେ । ଏମାନେ କଂଗ୍ରେସ ଦଳର ଏକ ବିକଳ୍ପ ହୋଇ ଶାସନ କ୍ଷମତା ହାସଲ କରିବାର ବିଶ୍ୱାସ ମଧ ସାଧାରଣଙ୍କ ମଧରେ ଜନ୍ମାଇବାରେ ସଫଳ ହେଲେ । ଶ୍ରୀଯୁକ୍ତ ରାଜୀବଗାନ୍ଧୀ ଏହି ଉଦ୍ୟମକୁ ପ୍ରତିହତ କରିବା ପାଇଁ ଓ ଜନସାଧାରଣଙ୍କ ଦୃଷ୍ଟି ଅନ୍ୟ ଆଡକୁ ଫେରାଇନେବା ଉଦ୍ଦେଶ୍ୟରେ ଜବାହର ରୋଜଗାର ନାମରେ ଗ୍ରାମାଞ୍ଚଳର ଜନସାଧାରଣଙ୍କ ଆର୍ଥିକ ଉନ୍ନୟନଭାବେ କାର୍ଯ୍ୟକାରୀ କଲେ । ଏହି ନୂତନ ଯୋଜନା ଗୁଡିକ ବାସ୍ତବରେ ମଙ୍ଗଳକର ହେଲେ ମଧ ସେ ଗୁଡିକ ଏତେ ତରବର ଭାବେ କାର୍ଯ୍ୟକାରୀ କରାଗଲା ଯେ ତହିଁର ସୁଫଳ ଲୋକଙ୍କ ପାଖରେ ଠିକ୍ ଭାବେ ପହଞ୍ଚି ପାରିଲା ନାହିଁ । ବିରୁଦ୍ଧ ଦଳଗୁଡିକ ଏହାକୁ ପ୍ରତିହତ କରିବାପାଇଁ ଏ ସମସ୍ତ ଉନ୍ନୟନ କାର୍ଯ୍ୟ ନିର୍ବାଚନ ପାଇଁ କରାଯାଇଥିବାର ଓ ନିର୍ବାଚନ ପରେ କଂଗ୍ରେସ ସରକାର କ୍ଷମତାକୁ ଆସିଲେ ଏ ସମସ୍ତ କାର୍ଯ୍ୟ ବନ୍ଦ ହୋଇଯିବ ବୋଲି ପ୍ରଚାର ମଧ ଚଳାଇଲେ । ଉକ୍ତ ଦୁଇଟି ଯୋଜନା ଦ୍ୱାର କିଛି ଲୋକ ଉପକୃତ ହୋଇଥିଲେ ହେଁ ବିରୁଦ୍ଧ ଦଳ ଏକ ସନ୍ଦେହ ଓ ଅବିଶ୍ୱାସ ସୃଷ୍ଟି କରିବାରେ ସଫଳ ହେଲେ । ଏପରିକି କମ୍ୟୁନିଷ୍ଟ ଦଳଗୁଡିକ ନୀତିଗତ ଭାବେ ଭାରତୀୟ ଜନତାପାର୍ଟି ଏକ ସାଂପ୍ରଦାୟିକ ଦଳବୋଲି ଚିରଦିନ ଅଭିଯୋଗ କରିଆସୁଥିଲେ ହେଁ କେବଳ ଶ୍ରୀଯୁକ୍ତ ଗାନ୍ଧୀ ଓ କଂଗ୍ରେସ ଦଳକୁ ହଟାଇବା ଲକ୍ଷ୍ୟରେ ତାଙ୍କ ସହିତ ମଧ ନିର୍ବାଚନ ମେଣ୍ଟକଲେ ଓ ପରସ୍ପର ମଧରେ ନିର୍ବାଚନ ବୁଝାମଣା କରିବାକୁ ଏକମତ ମଧ ହେଲେ ।

୧୯୮୯ ନଭେମ୍ବର ମାସ ବେଳକୁ ପ୍ରଥମେ ଲୋକସଭା ନିର୍ବାଚନ ଘୋଷଣା ହେଲାମାତ୍ରେ ବିରୁଦ୍ଧ ଦଳଗୁଡିକ ମଧରେ ହୋଇଥିବା ମେଣ୍ଟ ଅଧିକ ଦୃଢୀଭୂତ ହେଲା । ଜାତୀୟ ଜନମୋର୍ଚ୍ଚା ବା ଜାତୀୟ ସାମ୍ମୁଖ୍ୟ ନେତୃତ୍ୱରେ ବିଭିନ୍ନ ଦଳ ମଧରେ ପ୍ରାର୍ଥିମନୋନୟନ ବେଳେ ଯେଉଁ ସବୁ ମତାନ୍ତର ଉପୁଜିଥିଲା ତାହା ସଂପୂର୍ଣ୍ଣ ନ ହେଲେ ମଧ ଅଧିକାଂଶ ସ୍ଥାନରେ ଏକମତ ହୋଇ କଂଗ୍ରେସ ବିରୁଦ୍ଧରେ କେବଳ ଗୋଟିଏ ଲେଖାଏଁ ପ୍ରାର୍ଥି ଛିଡା କରାଇଲେ । ପୁଣି ଲୋକଙ୍କ ମଧରେ ଅଧିକ ଆସ୍ଥା ଓ ବିଶ୍ୱାସ ଜନ୍ମାଇବା ପାଇଁ ଗୋଟିଏ ମଞ୍ଚରୁ ସମସ୍ତ ଦଳର ନେତୃବୃନ୍ଦ ଏକ ସଙ୍ଗେ ପ୍ରଚାର କାର୍ଯ୍ୟ ମଧ ଚଳାଇଲେ । ବିଶେଷ କରି ହିନ୍ଦୀ ଭାଷାଭାଷୀ ଅଞ୍ଚଳର ରାଜ୍ୟଗୁଡିକରେ ଏହି ମେଣ୍ଟର ପ୍ରଭାବ ଯଥେଷ୍ଟ ପରିମାଣରେ ପଡିଲା । ସଂଖ୍ୟାନ୍ୟୁନ ସଂପ୍ରଦାୟ ଗୁଡିକ ବିଶେଷକରି ମୁସଲମାନ ଓ ଦଳିତ ଜାତିର ଲୋକେ ଏଥିରେ ଅଧିକ ପ୍ରଭାବିତ ହେଲେ । ଏହି ସମସ୍ତ ଶ୍ରେଣୀର ଲୋକେ ଭୋଟବେଳେ ସବୁଦିନେ କଂଗ୍ରେସକୁ ଅନ୍ଧଭାବରେ ସମର୍ଥନ କରୁଥିଲେ । ମାତ୍ର ଏବେ ବିରୁଦ୍ଧଦଳର ସମ୍ମିଳିତ ପ୍ରଚାର ଯୋଗୁଁ କଂଗ୍ରେସ ସରକାରଙ୍କ ପୂର୍ବରୁ ବିଭିନ୍ନ ସାହାଯ୍ୟ ଓ ସହନୁଭୂତି ଏକାବେଳକେ ଭୁଲିଗଲେ । ଏତଦ୍‌ବ୍ୟତୀତ ଗ୍ରାମାଞ୍ଚଳର ଚାଷୀ ପରିବାର ଉପରେ ଥିବା ସମସ୍ତ ବକେୟା କୃଷି ଋଣ ଦଶହଜାର ଟଙ୍କା ପର୍ଯ୍ୟନ୍ତ ନିଶ୍ଚିତ ଭାବରେ ଛାଡ କରିଦେବାର ପ୍ରତିଶ୍ରୁତି ମଧ ବିରୁଦ୍ଧ ଦଳ ତରଫରୁ ଦିଆଗଲା । ଆମ ଓଡିଶାରେ କୃଷିଋଣ ଛାଡ ଉପରେ ଗୁରୁତ୍ୱ ଆରୋପ କରି ଋଣଛାଡ ଫର୍ମ୍ମ ଶ୍ରୀବିଜୁ ପଟ୍ଟନାୟକଙ୍କ ନିଜ ନାମରେ ବଣ୍ଟାଗଲା ଓ କିଏ କେତେ ପରିମାଣର ଋଣ ଛାଡ ଚାହୁଁଛନ୍ତି ତାହା ମଧ ପ୍ରତ୍ୟେକଙ୍କଠାରୁ ସଂଗ୍ରହ କରାଗଲା । ଶିକ୍ଷିତ ବେକାର ଯୁବକମାନଙ୍କୁ

ଅଧିକ ଆକୃଷ୍ଟ କରିବା ପାଇଁ ଓଡ଼ିଶାରେ ଜନତା ସରକାର ପ୍ରତିଷ୍ଠିତ ହେଲେ ସମସ୍ତ ଶିକ୍ଷିତ ବେକାର ଯୁବକମାନଙ୍କୁ ନିଯୁକ୍ତି ଦିଆଯିବ ଓ ଯେଉଁମାନେ ନିଯୁକ୍ତି ପାଇବାରୁ ବଞ୍ଚିତ ହେବେ ସେମାନଙ୍କୁ ନିଯୁକ୍ତି ମିଳିବା ପର୍ଯ୍ୟନ୍ତ ବେକାରୀ ଭତ୍ତା ଦେବାର ପ୍ରତିଶ୍ରୁତି ମଧ୍ୟ ଦିଆଗଲା । ଓଡିଶାର କମ୍ୟୁନିଷ୍ଟମାନେ ଶ୍ରୀ ବିଜୁ ପଟ୍ଟନାୟକଙ୍କ ନେତୃତ୍ୱାଧୀନ ହୋଇ ଲୋକସଭାର ପ୍ରାର୍ଥୀ ମନୋନୟନ କଲେ ଓ ଗୋଟିଏ ମଞ୍ଚରୁ ମଧ୍ୟ ପ୍ରଚାର ଚଳାଇଲେ । କେବଳ ଆସାମ ବ୍ୟତୀତ ଭାରତର ଅନ୍ୟ ୨୪ଟି ରାଜ୍ୟ ଓ ସାତଟି କେନ୍ଦ୍ର ଶାସିତ ଅଞ୍ଚଳରେ ଲୋକସଭା ପାଇଁସାଧାରଣ ନିର୍ବାଚନ ହେବାର ସ୍ଥିର କରାଗଲା । ଏପରିକି ପଞ୍ଜାବରେ ଯେଉଁଠି ଆତଙ୍କବାଦୀମାନେ ସ୍ୱାଧୀନ ଖାଲିସ୍ଥାନ ଦାବୀକରି ଦୈନନ୍ଦିନ ହିଂସାକାଣ୍ଡମାନ ଘଟାଉଥିଲେ ସେଠାରେ ମଧ୍ୟ ଲୋକସଭା ପାଇଁ ସାଧାରଣ ନିର୍ବାଚନ ହେବାର ଠିକଣା କରାଗଲା । ଜନଗଣନା ହୋଇ ନ ଥିବା ଅଭିଯୋଗ ହେବାରୁ କେବଳ ଆସାମର ନିର୍ବାଚନ ସ୍ଥଗିତ ରଖାଗଲା । ତେଣୁ ସମଗ୍ର ଦେଶରେ ଲୋକସଭା ପାଇଁ ଧାର୍ଯ୍ୟଥିବା ୫୪୨ଟି ସ୍ଥାନ ମଧ୍ୟରୁ ଆସାମର ୧୨ଟି ସ୍ଥାନ ଛାଡି ଅବଶିଷ୍ଟ ୫୩୦ଟି ସ୍ଥାନରେଭୋଟ ଗ୍ରହଣ କରାଯିବାର ସ୍ଥିର କରାଯାଇ ସରକାରୀ ପ୍ରସ୍ତୁତି ମଧ୍ୟ ଆରମ୍ଭ ହୋଇଗଲା । ୧୯୭୭ ମସିହାରେ ଠିକ୍ ଏହିପରି ବିରୁଦ୍ଧ ଦଳଗୁଡିକର ମିଳିତ ଉଦ୍ୟମରେ ସମସ୍ତ ଗଣତାନ୍ତ୍ରିକ ଦଳ ଏପରିକି ଭାରତୀୟ ଜନସଂଘ ଭଳି ଏକ ସାଂପ୍ରଦାୟିକ ଦଳ ମଧ୍ୟ ନିଜର ସତ୍ତା ହରାଇ ଶ୍ରୀଯୁକ୍ତ ଜୟପ୍ରକାଶଙ୍କ ଡାକରାରେ ଜନତା ପାର୍ଟି ନାମରେ ଏକ ଦଳ ଏକ ପତାକା ଓ ଏକ ନିର୍ବାଚନ ଚିହ୍ନରେ ଲଢିଥିଲେ । ମାତ୍ର ଏଥର ସେପରି ଅବସ୍ଥା ହୋଇ ନ ଥବାରୁ କେତେକଙ୍କ ମନରେପୂର୍ବ ଅବସ୍ଥା ହୋଇ ନ ପାରେ ବୋଲି ଧାରଣା ହୋଇଥିଲା । କିନ୍ତୁ ନିର୍ବାଚନ ଯେତେ ପାଖେଇ ଆସୁଥାଏ ବିରୁଦ୍ଧ ଦଳର ମେଣ୍ଟ ପ୍ରତି ବିଶେଷ କରି ଶ୍ରୀଯୁକ୍ତ ବି,ପି. ସିହଙ୍କ ନେତୃତ୍ୱ ପ୍ରତି ଲୋକଙ୍କ ଆସ୍ଥା ଓ ବିଶ୍ୱାସ ବଢିବାରେ ଲାଗୁଥିବାର ଜଣାଯାଉଥିଲା । ବିଗତ ଦଶ ବର୍ଷ ମଧ୍ୟରେ କେନ୍ଦ୍ରରେ ରାଜୀବ ଗାନ୍ଧୀଙ୍କ ମନମୁଖୀ ଶାସନ ସାଙ୍ଗକୁ ଓଡିଶାରେ ମଧ୍ୟ ସେହି ଦଶବର୍ଷର ଶାସନ ପ୍ରତି ଲୋକେ କ୍ରମେ ଅଧିକ ବିମୁଖ ହେଉଥିବାର ଏକ ହାୱା ବହୁଥିବାର ଅନୁଭୁତ ହେଉଥିଲା । ବୋଫର ତୋପ କିଣା କାରବାରରେ କୋଟି କୋଟି ଟଙ୍କା କମିସନ ନେବା ସତ୍ୟ ହେଉ ବା ନ ହେଉ ବିରୁଦ୍ଧ ଦଳର ପ୍ରବଳ ପ୍ରଚାରରେ କଂଗ୍ରେସ ଲୋକେ ସାଧାରଣ କ୍ଷେତ୍ରରେ ନିଷ୍ଠାର ସହିତ କାମ କରୁଥିଲେ ହେଁ ରାଜୀବଗାନ୍ଧୀଙ୍କ ବ୍ୟକ୍ତିତ୍ୱ ଉପରେ ଏଭଳି ଅଭିଯୋଗର ଯଥାର୍ଥ ଉତ୍ତର ଦେଇ ନ ପାରି ମ୍ରିୟମାଣ ହୋଇ ପଡୁଥିଲେ । କଂଗ୍ରେସ ଭିତରେ ରହିଥିବା ଅନେକ ସଚ୍ଚୋଟ ଲୋକଙ୍କର ବ୍ୟକ୍ତିଗତ ପ୍ରଭାବ ଗ୍ରାମାଞ୍ଚଳର କର୍ମୀରୂପେ ସାଧାରଣ ଭୋଟଦାତାଙ୍କୁ ପ୍ରଭାବିତ କରୁଥାଏ । ଏହି ଲୋକମାନଙ୍କ ମଧ୍ୟରୁ କେତେ କ ସେତେବେଳେକୁ ରାଜବୀ ଗାନ୍ଧୀଙ୍କ ସ୍ୱେଚ୍ଛାଚାର ଶାସନ ଯୋଗୁଁ ସକ୍ରିୟ ରାଜନୀତିରୁ ଅଲଗା ହୋଇ ଯାଇଥିଲେ ଓ ଅନ୍ୟକେତେକ କର୍ମୀ ସକ୍ରାୟ ଭାବରେ କଂଗ୍ରେସରେ ଥିଲେ ମଧ୍ୟ ବିରୁଦ୍ଧ ଦଳର ପ୍ରଚାରକୁ ଖଣ୍ଡନ କରି ପାରୁ ନ ଥିଲେ । ୧୯୭୭ ମସିହାରେ ଶ୍ରୀମତୀ ଇନ୍ଦିରାଗାନ୍ଧୀଙ୍କ ଜରୁରୀ ଅବସ୍ଥା ଜାରି ହେବାପରେ ଯେଉଁ ସାଧାରଣ ନିର୍ବାଚନ ହୋଇଥିଲା ସେଥିରେ ବି ଠିକ୍ ଏହିପରି ଅବସ୍ଥା ଉପୁଜି ଥିଲା । ଏପରିକି କଂଗ୍ରେସ ଲୋକଙ୍କର ମଧ୍ୟ କଂଗ୍ରେସ ସପକ୍ଷରେ କହିବାର ନୈତିକ ସାହସ ନ ଥିଲା ।

ସେଥର ଯେପରି ଏକତରଫା ଭୋଟ ହୋଇଥିଲା, ଏଥର ସେପରି ନ ହେଲେ ହେଁ ବହୁକ୍ଷେତ୍ରରେ ଅବସ୍ଥା ଅତ୍ୟନ୍ତ ଜଟିଳ ମନେ ହେଉଥିଲା । ୧୯୮୦ ମସିହାରେ ଜନତା ପାର୍ଟି ଅନ୍ତର୍ବିବାଦରେ ଯେପରି ଭାବରେ ଛିନ୍ନ ଭିନ୍ନହୋଇ ନିଶ୍ଚିହ୍ନ ହୋଇଯାଇଥିଲା ଏହାର ପରିଣାମରେ ଜନତା ପାର୍ଟି ଭବିଷ୍ୟତରେ ଆଉ କେବେ ହେଲେ କଂଗ୍ରେସର ବିକଳ୍ପ ହୋଇ ପାରିବ ନାହିଁ ବୋଲି ଧାରଣା ସୃଷ୍ଟି ହୋଇଥିଲା । ପରେ ଦେଶରେ ଶ୍ରୀଯୁକ୍ତ ରାଜୀବ ଗାନ୍ଧୀ ଓ ଶ୍ରୀମତୀ ଗାନ୍ଧୀଙ୍କ ସମେତ କଂଗ୍ରେସର ରାଜ୍ୟ ମୁଖ୍ୟମନ୍ତ୍ରୀ ମାନଙ୍କର ଦୀର୍ଘ ଦଶବର୍ଷ ଧରି ଯେଉଁ ପ୍ରକାର

ବେପରବାୟ ଶାସନ ଚାଲିଲା ସେଥିରେ ଲୋକେ ଅତିଷ୍ଠ ହୋଇ ପୁଣି କଂଗ୍ରେସକୁ ଫିଙ୍ଗି ଦେବେ ଏହା କେହିସ୍ୱପ୍ନରେ ବି ଭାବି ନ ଥିଲେ । ନିଜ ଦଳ ମଧ୍ୟରେ ସ୍ୱାଧୀନତା ମନୋଭାବ ସଂପନ୍ନ ବ୍ୟକ୍ତି ତଥା ସଚ୍ଚୋଟ ନୀତି ଅବଲମ୍ବନ କରୁଥିବା ଲୋକଙ୍କୁ ଦୁର୍ବଳ କରିଦେବା ଉଦ୍ଦେଶ୍ୟରେ ଅନ୍ୟ ଲୋକଙ୍କୁ ସେମାନଙ୍କ ବିରୁଦ୍ଧରେ ଲଗାଇ ଦିଆଯାଇଥିଲା ଓ ଅନ୍ୟ ପକ୍ଷରେ ଯେଉଁମାନେ ନିଜର ସ୍ୱାର୍ଥପାଇଁ ନେତୃତ୍ୱର ତୋଷାମଦ କରି ପାରୁଥିଲେ ସେମାନଙ୍କ ବିରୁଦ୍ଧରେ ଯେତେ ଅଭିଯୋଗ ହେଲେ ମଧ୍ୟ ରାଜୀବଗାନ୍ଧୀଙ୍କ ଆଶୀର୍ବାଦ ବଳରେ ସେମାନେ ଯେଉଁ ଦାୟିତ୍ୱରେ ଥିଲେ ସେହିପରି ଅପରିବର୍ତ୍ତିତ ଭାବେ ରହିଚାଲିଥିଲେ । ଏହା ଫଳରେ ଶ୍ରୀଯୁକ୍ତ ରାଜୀବ ଗାନ୍ଧୀ ଜନସାଧାରଣର ଅସନ୍ତୋଷର ଶରବ୍ୟ ହେଉଥିଲେ । ଶ୍ରୀମତୀ ଇନ୍ଦିରାଗାନ୍ଧୀଙ୍କ ଆକସ୍ମିକ ହତ୍ୟାଘଟଣା ପରେ ଦେଶରେ ଯେଉଁ ସହାନୁଭୂତି ମୂଳକ ସମର୍ଥନ ମିଳିଥିଲା ତାହା କଂଗ୍ରେସର ଯଥେଚ୍ଛାର ଶାସନ ଯୋଗୁଁ ବିଲୁପ୍ତ ହେଲା ।

## ''ପୁଣି କଂଗ୍ରେସର ଦ୍ୱିତୀୟ ପରାଜୟ''

ବିରୁଦ୍ଧ ଦଳ ଗୁଡ଼ିକ ଦ୍ୱାରା ଗଠିତ ଜନସାମ୍ମୁଖ୍ୟ ଆନ୍ଦୋଳନର ପ୍ରଭାବ ଜନସାଧାରଣଙ୍କ ଉପରେ କ୍ରମେ ବୃଦ୍ଧି ପାଉଥିବାର ଉପଲବ୍ଧ କରି ପାଞ୍ଚବର୍ଷ ନ ପୂରୁଣୁ ନିର୍ଦ୍ଧାରିତ ସମୟର ଅବ୍ୟବହିତ ପୂର୍ବରୁ କାହାରି ସହିତ ପରାମର୍ଶ ନ କରି ହଠାତ୍ ନଭେମ୍ବର ୧୯୮୯ ବେଳକୁ ନିର୍ବାଚନ କରିବାର ଘୋଷଣା ପ୍ରକାଶ ପାଇଲା । ଏଥିରେ ବିରୁଦ୍ଧଦଳ ସମେତ କଂଗ୍ରେସ ଲୋକ ମଧ୍ୟ ତଟସ୍ଥ ହୋଇଗଲେ । ଶ୍ରୀଯୁକ୍ତ ଗାନ୍ଧୀଙ୍କର ହଠାତ୍ ଏପରି ଘୋଷଣା କରିବାର ଉଦ୍ଦେଶ୍ୟ ଥିଲା ଯେ, ବିରୁଦ୍ଧଦଳମାନେ ନିଜ ଦଳର ଚିହ୍ନରେ ନିର୍ବାଚନ ଲଢ଼ିବାର ସ୍ଥିର କରିଥିବାରୁ ଏତେ ଶୀଘ୍ର ପ୍ରାର୍ଥୀମନୋନୟନରେ ନିଶ୍ଚିତ ଭାବେ ମତଭେଦ ଘଟିବ ଓ ତାହା ମଧ୍ୟ ଏତେ ଶୀଘ୍ର ସମାଧାନ ହୋଇ ପାରିବ ନାହିଁ । ୧୯୭୭ ସମୟର ସାଧାରଣ ନିର୍ବାଚନରେ କମ୍ୟୁନିଷ୍ଟ ପାର୍ଟି ସହିତ ସମସ୍ତ ବିରୁଦ୍ଧ ଦଳ ଗୁଡ଼ିକ ଏକତ୍ରିତ ହୋଇ ଗୋଟିଏ ଦଳ ନାମରେ ଓ ଏକ ପତାକା ତଥା ଏକମାତ୍ର ଚକ୍ରଲାଙ୍ଗଳ ଚିହ୍ନରେ ଲଢୁଥିବାରୁ ଯେଉଁ ସୁବିଧା ଥିଲା ଏଥର ତାହା ନ ଥିଲା । ତେଣୁଁ ଏହାର ସୁଯୋଗ ନେବାପାଇଁ ରାଜୀବ ଏପରି ଭାବରେ ହଠାତ୍ ନିର୍ବାଚନ କରିବାର ଘୋଷଣା କଲେ । ଏହା ସତ୍ତ୍ୱେ ଜନସାମ୍ମୁଖ୍ୟର ନେତୃତ୍ୱରେ ନିଜ ନିଜ ମଧ୍ୟରେ ଥିବା ଭେଦଭାବ ଭୁଲି ବହୁ ସ୍ଥାନରେ କଂଗ୍ରେସ ସହିତ ସିଧାସଳଖ ପ୍ରତିଦ୍ୱନ୍ଦିତା କରିବାକୁ ସମର୍ଥ ହୋଇପାରିଲେ । ମାତ୍ର ଏଥରର ଫଳାଫଳ ୧୯୭୭ ଭଳି ହୋଇ ନ ଥିଲେ ହେଁ ବିରୁଦ୍ଧ ଦଳ ଗୁଡ଼ିକ ଅଧିକ ସଂଖ୍ୟାରେ ନିର୍ବାଚିତ ହେଲେ । କଂଗ୍ରେସ ଦଳ ଏକକ ସଂଖ୍ୟାଗରିଷ୍ଠ ଦଳ ଭାବେ ନିର୍ବାଚିତ ହେଲେ ହେଁ ସରକାର ଗଢ଼ିବା ପାଇ ଯୋଗ୍ୟ ବିବେଚିତ ହୋଇପାରିଲେ ନାହିଁ । ସେତେବେଳେ କଂଗ୍ରେସ ସଂଖ୍ୟାନ୍ୟୁନ ହେବା ସଙ୍ଗେ ସଙ୍ଗେ ଦଳର ନେତ୍ରୀ ଶ୍ରୀମତୀ ଗାନ୍ଧୀ ଶୋଚନୀୟ ପରାଜୟ ଲଭିବାରୁ କଂଗ୍ରେସ ଲୋକେ ଅତିମାତ୍ରାରେ ନୈତିକତା ଓ ଆତ୍ମବିଶ୍ୱାସ ହରାଇଲେ । ଏଥର କିନ୍ତୁ କଂଗ୍ରେସ ସଂଖ୍ୟାଧିକ ଦଳଭାବରେ ନିର୍ବାଚିତ ହେଲା ଓ ଦଳର ନେତା ଶ୍ରୀଯୁକ୍ତ ରାଜୀବ ଗାନ୍ଧୀ ମଧ୍ୟ ବିପୁଳ ଭୋଟରେ ବିଜୟୀ ହେଲେ । ସୁତରାଂ କଂଗ୍ରେସ ଲୋକେ ସେପରି ନିରୁତ୍ସାହିତ ହୋଇ ନ ଥିଲେ । ଶ୍ରୀଯୁକ୍ତ ଗାନ୍ଧୀ ବିରୁଦ୍ଧ ଦଳର ନେତା ହେବାର ଗୌରବ ଅର୍ଜନ କରି ପାରିଲେ । ଦକ୍ଷିଣାଞ୍ଚଳ ରାଜ୍ୟଗୁଡ଼ିକ ଯଥା ଆନ୍ଧ୍ର, କର୍ଣ୍ଣାଟକ, କେରଳ,ମହାରାଷ୍ଟ୍ର ପ୍ରଭୃତି ରାଜ୍ୟରୁ କଂଗ୍ରେସ ଲୋକେ ବିପୁଳ ସଂଖ୍ୟାରେ ନିର୍ବାଚିତ ହୋଇଥିଲା ବେଳେ ଉତ୍ତର ପ୍ରଦେଶ, ମଧ୍ୟପ୍ରଦେଶ , ବିହାର ଓ ପ.ବଙ୍ଗ ପ୍ରଭୃତି ରାଜ୍ୟରେ କଂଗ୍ରେସର ଶୋଚନୀୟ ପରାଜୟ ଘଟିଲା । ୧୯୭୭ରେ କଂଗ୍ରେସ ଲୋକସଭାରେ ମାତ୍ର ୧୫୨ଟି ଆସନ ପାଇଥିଲାବେଳେ ଏଥର ୧୯୪ଟି ଆସନ ଲାଭ କଲା ଓ ଏହାର ସହଯୋଗୀ ବିଭିନ୍ନ ୩ଟି ଦଳ ମିଶି ୧୫ଟି ଆସନ ଦଖଲ କରିଥିଲେ । ଏଥର ନିର୍ବାଚନରେ ବିରୁଦ୍ଧଦଳର ନିର୍ବାଚନ ସାଙ୍ଗକୁ ଭାରତୀୟ ଜନତାପାର୍ଟିର ୮୪ଟି ସ୍ଥାନ ଦଖଲ ଏକ ଆଶ୍ଚର୍ଯ୍ୟଜନକ ଘଟଣା ବୋଲି

ମନେ ହେଲା । ଯେଉଁ ଭାରତୀୟ ଜନତା ପାର୍ଟି ୧୯୮୫ ନିର୍ବାଚନରେ ଲୋକସଭାରେମାତ୍ର ଦୁଇଟି ଆସନ ଲାଭ କରିଥିଲା ସେହି ଦଳ ଏଥର ୮୪ଟି ଆସନରେ ବିଜୟ ଲାଭ କରି ରାଜନୈତିକ ଦଳମାନଙ୍କ ମଧ୍ୟରେ ୩ୟସ୍ଥାନ ଲାଭ କରିବା ଅତି ତାତ୍ପର୍ଯ୍ୟ ପୂର୍ଣ୍ଣ ବିଷୟ ଥିଲା । ମିଳିତ ଜନତାଦଳ ସର୍ବମୋଟ ୧୪୧ଟି ଆସନ ପାଇଁ ଦ୍ୱିତୀୟ ସ୍ଥାନ ଅଧିକାର କରିଥିଲେ ହେଁ ଏହି ନିର୍ବାଚନରେ ପ୍ରତିକ୍ରିୟାଶୀଳ ଓ ସଂପ୍ରଦାୟିକ ଦଳ ଗୁଡିକର ପ୍ରତିପତ୍ତି ବୃଦ୍ଧି ପାଇଲା ଏଥିରେ କୌଣସି ସନ୍ଦେହ ନାହିଁ । କଂଗ୍ରେସ ଏକ ଜାତୀୟ ଦଳ ଭାବରେ ସ୍ୱାଧୀନତା ପୂର୍ବରୁ ଏବଂ ପରେ ମଧ୍ୟ ଗୌରବ ମଣ୍ଡନ କରି ଆସିଛି । ଆଜି ସେହି କଂଗ୍ରେସ ଦଳକୁ ହଟାଇବାକୁ ଯାଇ ଦେଶରେ ସବୁଦିନ ପାଇଁ ଭାରତୀୟ ଜନତା ଦଳ ଭଳି ଏକ ସାଂପ୍ରଦାୟିକ ଶକ୍ତିକୁ ଉଜ୍ଜୀବିତ କରିବା କେତେଦୂର ସମୀଚୀନ ତାହା ଏକ ଚିନ୍ତାର ବିଷୟ । ଏହା ଦେଶର ଭବିଷ୍ୟତ ପାଇଁ ଦିନେ ଏକ ବିପଦଜନକ ପରିସ୍ଥିତି ସୃଷ୍ଟି କରିବ ଏଥିରେ ସନ୍ଦେହର ଅବକାଶ ନାହିଁ । ଭାରତ ଏକ ଧର୍ମନିରପେକ୍ଷ ରାଷ୍ଟ୍ରଭାବେ ବିଶ୍ୱରେ କେବଳ ପରିଚିତ ନୁହେଁ ବରଂ ଏକ ସମ୍ମାନ ଜନକ ସ୍ଥାନ ଲାଭ କରି ଆସିଛି । ସବୁଠାରୁ ଦୁଃଖର ବିଷୟ ଯେ କମ୍ୟୁନିଷ୍ଟଦଳ ଗୁଡିକ ସବୁଦିନ ସାମ୍ପ୍ରଦାୟିକ ଦଳଗୁଡିକର ବିରୋଧୀ ବୋଲି ନିଜକୁ ପରିଚୟ ଦେଇ ଆସୁଥିଲା ବେଳେ କେବଳ କଂଗ୍ରେସକୁ ହରାଇବା ଉଦ୍ଦେଶ୍ୟରେ ଜନସାମ୍ମୁଖ୍ୟ ଦଳ ସହିତ ସହଯୋଗ କରି ଭାରତୀୟ ଜନତା ଦଳ ଭଳି ଏକ ସାଂପ୍ରଦାୟିକ ଦଳକୁ ପ୍ରୋତ୍ସାହନ ଦେବା ଦ୍ୱାରା ଏପରି ଅବସ୍ଥା ଉପୁଜିଲା । ବାମପନ୍ଥୀ ସାମ୍ମୁଖ୍ୟ ମଧ୍ୟ ଭାରତୀୟ ଜନତା ଦଳଠାରୁ କମ୍ ଆସନ ପାଇଲା ।

ନିର୍ବାଚନ ପରେ ବାମପନ୍ଥୀଦଳ ଓ ଭାରତୀୟ ଜନତାପାର୍ଟି ମନ୍ତ୍ରୀମଣ୍ଡଳରେ ଯୋଗ ନ ଦେଇ ବାହାରୁ ଜନତାଦଳ ସରକାରଙ୍କୁ ସମର୍ଥନ କରିବାର ନିଷ୍ପତ୍ତି ନେଲେ । ତେଣୁ ମାତ୍ର ୧୪୧ ଜଣିଆଁ ମିଳିତ ଜନତା ଦଳ ଶ୍ରୀଯୁକ୍ତବି.ପି. ସିଂହଙ୍କ ନେତୃତ୍ୱରେ ସରକାର ଗଠନ କରିବାର ସ୍ଥିର ହେଲା । ଏହି ଦୁଇ ମୂଳ ସଭ୍ୟ ଓ ଜନତା ଦଳକୁ ୧୯୭୬ ମସିହାର ବିପର୍ଯ୍ୟୟରୁ ରକ୍ଷା କରିଥିବା ଶ୍ରୀ ଚନ୍ଦ୍ରଶେଖର ଏଥିରେ ସନ୍ତୁଷ୍ଟ ନ ଥିଲେ । ଦଳର ନେତା ନିର୍ବାଚନ ବେଳେ ଶ୍ରୀଦେବୀଲାଲଙ୍କ ଦ୍ୱାରା ତାଙ୍କୁ ଯେପରି ପ୍ରତାରଣା କରି ଶ୍ରୀ ବି.ପି. ସିଂହଙ୍କୁ ନେତା ନିର୍ବାଚନ କରାଗଲା ତାହା ସେକେବେ ଭୁଲିପାରିଲେ ନାହିଁ । ଏବଂ ଏହି ସରକାରର ପତନକୁ ଅପେକ୍ଷା କରି ରହିଲେ । ଏ ସରକାରର ଆରମ୍ଭ ବିନ୍ଦୁଁ ନିଜ ଦଳ ମଧ୍ୟରେ କ୍ଷଣକ ପାଇଁ ଯେଉଁ ଅସନ୍ତୋଷ ଲାଗି ରହିଲା ତାହା କେବେ ତୁଟିଲା ନାହିଁ । ଶ୍ରୀ ବି,ପି, ସିଂହ ଓ ଦେବୀଲାଲଙ୍କ ମଧ୍ୟରେ ବରାବର ବିବାଦ ଘଟି ଦେବୀଲାଲ କେତେଥର ଇସ୍ତଫା ଦେଲେ ଶେଷର ଉପପ୍ରଧାନ ମନ୍ତ୍ରୀ ପଦରୁ ବିଦାୟ ନେଲେ ଓ ତାଙ୍କୁ ଦଳରୁ ତଡି ଦିଆଗଲା । ଏତିକିବେଳେ ବିଜେପି ତରଫରୁ ରାମଜନ୍ମଭୂମି ଓ ବାବ୍ରୀମସ୍‌ଜିଦ ନେଇ ବିବାଦ ଘନେଇ ଉଠିଲା । ବିଜେପି ଦଳ ତରଫରୁ ଶ୍ରୀଯୁକ୍ତ ଆଡଭାନୀଙ୍କ ନେତୃତ୍ୱରେ ବିଭିନ୍ନ ରାଜ୍ୟ ମଧ୍ୟ ଦେଇ ଏକ ଶୋଭାଯାତ୍ରା ବାହାରି ଅଯୋଧ୍ୟାର ରାମଜନ୍ମଭୂମିଠାରେ ମନ୍ଦିର ନିର୍ମାଣ ଅଭିଯାନ ଆରମ୍ଭ ହେଲା । ଏହି ଶୋଭାଯାତ୍ରାଦ୍ୱାରା ସାଂପ୍ରଦାୟିକ ବିଦ୍ୱେଷ ଭାବ ବଢିବାରୁ ଅନ୍ୟ ଧର୍ମନିରପେକ୍ଷ ଦଳମାନଙ୍କ ମଧ୍ୟରେ ଘୋର ଉଦବେଗ ଜନ୍ମିଲା । ଠିକ୍ ଏହା ପୂର୍ବରୁ ୧୯୮୦-୮୪ ବେଳେ ଶ୍ରୀମତୀ ଇନ୍ଦିରାଗାନ୍ଧୀଙ୍କ ଶାସନକାଳରେ ଯେଉଁ ମଣ୍ଡଳ କମିଶନ ରିପୋର୍ଟ ପ୍ରକାଶ ପାଇଥିଲା ତାହା ଉତ୍ତେଜନା ସୃଷ୍ଟି କରିବାର ଆଶଙ୍କା କରି କଂଗ୍ରେସ ସରକାରଙ୍କ ଅମଳରେ କାର୍ଯ୍ୟକାରୀ କରା ନ ଯାଇ ବିଭିନ୍ନ ଆଳ ଦେଖାଇ ପକାଇ ରଖାଯାଇଥିଲା । ଶ୍ରୀ ବି.ପି. ସିଂଙ୍କ ସରକାର ଏତିକିବେଳେ ତାକୁ କାର୍ଯ୍ୟକାରି କରିବାର ସ୍ଥିର କରି ହରିଜନ ଓ ଆଦିବାସୀଙ୍କ ବ୍ୟତୀତ ଅନ୍ୟ ଅନୁନ୍ନତ ଜାତିର ଲୋକଙ୍କ ପାଇଁଚାକିରୀ କ୍ଷେତ୍ରରେ ଶତକଡା ୩୭ଭାଗ ସ୍ଥାନ ସଂରକ୍ଷଣ କରିବା ଘୋଷଣା କଲେ । ଭାରତର ଛାତ୍ର ଓ ଯୁବସମାଜ ଏପରି ସଂରକ୍ଷଣ

ବ୍ୟବସ୍ଥାରେ ଉତ୍କ୍ଷିପ୍ତ ହୋଇ ଅନେକ ଯୁବକ ଯୁବତୀ ଆତ୍ମାହୁତି ଦେଲେ ଓ ଚାରିଆଡେ ଜଳାପୋଡା ଆରମ୍ଭ ହୋଇଗଲା । ଏହା ସାଙ୍ଗକୁ ଭାରତୀୟ ଜନତା ଦଳର ସାଂପ୍ରଦାୟିକ ପ୍ରଚାର ଜନମାନସନରେ ଘୋର ଉଦବେଗ ସୃଷ୍ଟି କଲା । ଶେଷରେ ଶ୍ରୀଯୁକ୍ତ ଆଡଭାନୀଙ୍କ ରଥଯାତ୍ରା ଅଯୋଧ୍ୟା ପର୍ଯ୍ୟନ୍ତ ପହଞ୍ଚିବାକୁ ନ ଦେଇ ତାଙ୍କୁ ବାଟରେ ଗିରଫ କରାଗଲା । ଏହାପରେ ବି.ଜେ.ପି. ଜାତୀୟ ସାମ୍ମୁଖ୍ୟ ସରକାରରୁ ନିଜର ସମର୍ଥନ ପ୍ରତ୍ୟାହାର କରିନେଲେ ଓ ଫଳରେ ଶ୍ରୀ ବି.ପି. ଙ୍କ ସରକାର ସଂଖ୍ୟାନ୍ୟୂନ ହୋଇଗଲା । ଭାରତୀୟ ଜନତା ଦଳର ସମର୍ଥନ ହରାଇଲା ପରେ ଶ୍ରୀ ବି.ପି.ସିଂ ଇସ୍ତଫା ଦେବା କଥା ମାତ୍ର ସେ ତାହା ନ କରି ଏକ ଆସ୍ଥା ପ୍ରସ୍ତାବ ଆଗତ କରିବାର ସ୍ଥିର କଲେ । ଭାରତୀୟ ଜନତା ପାର୍ଟି ଓ କଂଗ୍ରେସର ବିରୁଦ୍ଧ ଭୋଟରେ ମାତ୍ର ଦଶମାସ ଶାସନ ପରେ ବି.ପି. ସରକାରର ପତନ ଘଟିଲା । ଏହି ଦଳର ଅସନ୍ତୁଷ୍ଟ ଗୋଷ୍ଠୀର ନେତା ଶ୍ରୀ ଚନ୍ଦ୍ରଶେଖରଙ୍କ ବହୁଦିନର ବାସନା ପୂର୍ଣ୍ଣ ହେଲା । ତାଙ୍କ ନେତୃତ୍ୱରେ ପ୍ରାୟ ୬୦ଜଣ ସଭ୍ୟ ସମାଜବାଦୀ ଜନତାପାର୍ଟି ଗଠନ କରି କଂଗ୍ରେସ ଦଳର ସମର୍ଥନରେ ନୂତନ ସରକାର ଗଠିତ ହେଲା । ଜନତା ଦଳ ପକ୍ଷରୁ ସେହି ୧୯୮୯ ନିର୍ବାଚନ ବେଳେ କୃଷିଋଣ ଛାଡ କରିଦେବା, ଦରଦାମ,କମାଇବା ବେକାର ଯୁବକ ଯୁବତୀ ମାନଙ୍କର ସମସ୍ୟା ଦୂର କରିବା ପ୍ରଭୃତି ଯେଉଁ ପ୍ରତିଶ୍ରୁତି ମାନଦେଇଥିଲେ ଓ ବିଶେଷ କରି କ୍ଷମତାକୁ ଯିବାର ୧୫ଦିନ ମଧ୍ୟରେ ବଫର ତୋପ କିଣା ଦୁର୍ନୀତିର ତଦନ୍ତ କରି ସବୁ ତଥ୍ୟ ପ୍ରକାଶ କରିବା ଓ ସଂପକ୍ତ ବ୍ୟକ୍ତିଙ୍କୁ ଦଣ୍ଡ ଦେବାର ଯେଉଁ ପ୍ରତିଶ୍ରୁତିମାନ ଦେଇଥିଲେ ସେଥିରେ ଗୋଟାଏ ହେଲେ ବି ପୂରଣକରି ପାରିଲେ ନାହିଁ ।

ଶ୍ରୀ ଚନ୍ଦ୍ର ଶେଖରଙ୍କ ସରକାର ମଧ ବି.ପି.ସିଂହଙ୍କ ସରକାରଠାରୁ ଅଧିକ ସଂଖ୍ୟାନ୍ୟୂନ ହୋଇଥିବାରୁ କୌଣସି ବିଷୟରେ ଦୃଢ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରି ପାରିଲେ ନାହିଁ । ଏହାଛଡା ସେ କଂଗ୍ରେସ ଦଳର ସମର୍ଥନରେ ଥିବା ହେତୁ ରାଜୀବଗାନ୍ଧୀଙ୍କୁ ସନ୍ତୁଷ୍ଟ କରିବାକୁ ପଡୁଥିଲା । ତେଣୁ ସେପରି ଆଖି ଦୃଷିଆ କୌଣସି କାର୍ଯ୍ୟ ମଧ କରିପାରିଲେ ନାହିଁ । କଂଗ୍ରେସ ଦଳ ସରକାରରେ ଯୋଗ ନ ଦେଇ କେବଳ ବାହାରୁ ସମର୍ଥନ ଜଣାଉଥିବାରୁ ଯେ କୌଣସି ମୂହୂର୍ତ୍ତରେ ସରକାରର ପତନ ଘଟିବାର ଆଶଙ୍କା ଥିଲା ତେଣୁ ଏ ସରକାର ଅତ୍ୟନ୍ତ ଦୁର୍ବଳ ଥିଲା । ଏ ସରକାର ବେଶି ଦିନ ଚାଲି ନ ପାରିବାର ଠିକଣା କରି ସମସ୍ତେ ଅନ୍ୟ ଏକ ନିର୍ବାଚନ ପାଇଁ ପ୍ରସ୍ତୁତ ହେଲେ ସତକୁ ସତ ଏ ସରକାର ମଧ ମାତ୍ର ପାଞ୍ଚଛଅ ମାସ ଚାଲିଭାଙ୍ଗିଗଲା । କଂଗ୍ରେସ ଓ ସମାଜବାଦୀ ଜନତା ଦଳ ମଧ୍ୟରେ ମନୋମାଳିନ୍ୟ ଘଟିବାରୁ ରାଜୀବଙ୍କ ନେତୃତ୍ୱରେ କଂଗ୍ରେସ ଦଳ ସମର୍ଥନ ପ୍ରତ୍ୟାହାର କରି ନେବାରୁ ଶ୍ରୀଚନ୍ଦ୍ର ଶେଖର ବାଧ ହୋଇ ଇସ୍ତଫା ଦେଲେ । ଜନତା ଦଳର ପତନ ପରେ କଂଗ୍ରେସ ତରଫରୁ ଚନ୍ଦ୍ରଶେଖରଙ୍କ ସରକାରଙ୍କୁ ସମର୍ଥନ ଦେବାଦ୍ୱାରା କଂଗ୍ରେସ ପ୍ରତି ଲୋକଙ୍କର ସହାନୁଭୂତି ରହିଲା ନାହିଁ ।

## ''ରାଜ୍ୟମନ୍ତ୍ରୀମଣ୍ଡଳ ଓ ପ୍ରଦେଶ କଂଗ୍ରେସ କମିଟିର ପୁନର୍ଗଠନ''

ଲୋକସଭା ନିର୍ବାଚନରେ ଓଡିଶାର ମୋଟ ୨୧ଟି ଆସନ ମଧ୍ୟରୁ ମାତ୍ର ତିନିଟି ସ୍ଥାନ କଂଗ୍ରେସ ପାଇ ଶୋଚନୀୟ ପରାଜୟ ଘଟିଲା । ବିହାରରେ ମଧ ସେହିପରି ଅତି ଅଳ୍ପ ଆସନ ମିଳିଲା । ଗୁଜୁରାଟ, ରାଜସ୍ଥାନ ଓ ହରିଆନାରେ କଂଗ୍ରେସକୁ ଆଦୌ ସ୍ଥାନ ମିଳିଲା ନାହିଁ । ମଧ ପ୍ରଦେଶରେ ମାତ୍ର ୩ଟି ଆସନ ମିଳିଲା । ଏହାଫଳରେ ଓଡିଶା ସମେତ ଉକ୍ତ ସମସ୍ତରାଜ୍ୟର ମୁଖ୍ୟମନ୍ତ୍ରୀମାନେ ଇସ୍ତଫା ଦେବାରୁ ସଂପୃକ୍ତ ରାଜ୍ୟର ମନ୍ତ୍ରୀମଣ୍ଡଳ ଭାଙ୍ଗିଗଲା । ସେହିପରି ଓଡିଶା ସମେତ ଉପରୋକ୍ତ ସମସ୍ତ ପ୍ରଦେଶ କଂଗ୍ରେସ ସଭାପତିଙ୍କ ଇସ୍ତଫା ମଧ ଏକ ସୁସ୍ଥ ଗଣତାନ୍ତ୍ରିକ ପରଂପରା ରୂପେ ସ୍ୱାଗତ ଯୋଗ୍ୟ । ସେ ସବୁ ରାଜ୍ୟର ବିଧାନସଭାମାନଙ୍କରେ ସଂଖ୍ୟାଧିକ ସଭ୍ୟ ରହିଥିଲେ ହେଁ

ଲୋକସଭା ନିର୍ବାଚନରେ କଂଗ୍ରେସର ଶୋଚନୀୟ ପରାଜୟ ହୋଇଥିବାରୁ ୧୯୭୭ ଓ ୧୯୮୦ ନିର୍ବାଚନପରେ ଏଭଳି ପଦକ୍ଷେପ ଗ୍ରହଣ କରାଯାଇଥିଲା । ଗଣତନ୍ତ୍ର ଶାସନରେ ଉଚ୍ଚନୈତିକମାନ ଓ ପରଂପରା ରକ୍ଷାପାଇଁ ଏଭଳି ପଦକ୍ଷେପ ସମସ୍ତେ ଗ୍ରହଣ କରିବା ଉଚିତ । କିନ୍ତୁ ଜାତୀୟ ସ୍ତରରେ ଶ୍ରୀଯୁକ୍ତ ରାଜୀବ ଗାନ୍ଧୀଙ୍କ ମନ୍ତ୍ରୀମଣ୍ଡଳ ଭାଙ୍ଗିଗଲାପରେ ସେ ବିରୁଦ୍ଧଦଳର ସମ୍ମାନନୀୟ ନେତା ପଦରେ ରହିବାରୁ ନିଖିଳ ଭାରତ କଂଗ୍ରେସର ସଭାପତି ପଦରେ ମଧ୍ୟ ରହିଲେ ।

ସଂପୃକ୍ତ ରାଜ୍ୟ ଗୁଡ଼ିକର ମନ୍ତ୍ରୀ ମଣ୍ଡଳ ଭାଙ୍ଗିଗଲେ ମଧ୍ୟ ବିଧାନସଭା ମାନଙ୍କରେ କଂଗ୍ରେସର ସଂଖ୍ୟାଧିକ ସଭ୍ୟଥିଲେ । ପରବର୍ତ୍ତୀ ବିଧାନସଭା ନିର୍ବାଚନ କେବେ ହେବ ତାହା ଘୋଷଣା ହୋଇ ନ ଥିବାରୁ ସେ ଅବଧି ପର୍ଯ୍ୟନ୍ତ ସଂପୃକ୍ତ ରାଜ୍ୟମାନଙ୍କରେ ନୂତନ ମନ୍ତ୍ରୀମଣ୍ଡଳ ଗଠନ କରାଯିବାର ସ୍ଥିରୀକୃତ ହେଲା ଓ ତହିଁ ସଙ୍ଗେ ସଙ୍ଗେ ପ୍ରଦେଶ କଂଗ୍ରେସ କମିଟିର ସଭାପତି ପଦ ଖାଲି ପଡିଥିବାରୁ ଜଣେ ଉପଯୁକ୍ତ ବ୍ୟକ୍ତିଙ୍କ ଦ୍ୱାରା ଉକ୍ତପଦ ପୂରଣ କରିବାର ସ୍ଥିର କରାଗଲା । ସେତେବେଳେ ଶ୍ରୀଯୁକ୍ତ ରାଜୀବଗାନ୍ଧୀ ଜାତୀୟ କଂଗ୍ରେସର ସଭାପତି ଥିବାରୁ ଏ ସବୁ ପଦ ରାଜ୍ୟ ମଧ୍ୟରେ ସ୍ଥିର କରାନ ଯାଇ ବରାବର ଦୀଲ୍ଲିରୁ ଠିକଣା କରାଯାଉଥିଲା । ତେଣୁ ଉକ୍ତ ଦୁଇ ପଦ ପାଇଁ ଅଶାୟୀ ପ୍ରାର୍ଥୀମାନେ ନିଜ ନିଜ ସମର୍ଥକ ମାନଙ୍କୁ ନେଇ ଦୀଲ୍ଲିରେ ପ୍ରଭାବିତ କରିବାର ଉଦ୍ୟମ ଆରମ୍ଭ ହେଲା । ଏତେ ବଡ଼ ବିପର୍ଯ୍ୟୟ ବା ପରାଜୟ ପରେ ମଧ୍ୟ କେନ୍ଦ୍ର କଂଗ୍ରେସ ନେତୃବର୍ଗ ବା ରାଜନୈତିକନେତୃବର୍ଗଙ୍କ ମଧ୍ୟରୁ କାହାରି ହେଲେ କିଛି ଶିକ୍ଷାଲାଭ ହେଲା ନାହିଁ । ସେହି ପୂର୍ବପରି ଦୀଲ୍ଲିରୁ ଶ୍ରୀ ରାଜୀବ ଗାନ୍ଧୀଙ୍କ ସୁବେଦାର ନିଯୁକ୍ତି ଚାଲିଲା । ମୋତେ ଜାନକୀବାବୁ ଡ଼ାକି ଦୀଲ୍ଲି ଯିବା ପାଇଁ କହିଲାରୁ ମୁଁ ସେଥିରେ ରାଜି ହେଲି ନାହିଁ । ବରଂ ତାଙ୍କୁ କହିଲି ଯେ ଏତେବଡ ଦଳର ବିପର୍ଯୟ ହେଲା ପରେ କିଏ ମୁଖ୍ୟମନ୍ତ୍ରୀ ହେବ ଓ କିଏ ପ୍ରଦେଶ କଂଗ୍ରେସ ସଭାପତି ହେବ ତାହା ଦିଲ୍ଲୀରେ ନ ହୋଇ ରାଜ୍ୟ ବିଧାନ ସଭା ସଭ୍ୟ ଓ ପ୍ରଦେଶ କଂଗ୍ରେସ କମିଟିର ସଭ୍ୟମାନଙ୍କ ମତାମତ ନେଇ ସ୍ଥିର କରାଯିବା ଉଚିତ । ତେଣୁ ସେ ଓଡିଶା ଦାୟିତ୍ୱରେ ଥିବା ଲୋକସଭା ସଭ୍ୟ ଓ ପୂର୍ବତନ କେନ୍ଦ୍ର ମନ୍ତ୍ରୀ ଶ୍ରୀଯୁକ୍ତ ଅଜିତ୍ ପାଞ୍ଜାଙ୍କୁ ମୋର ମତାମତ ଜଣାଇ ଦେବାକୁ କହିଲେ । ମୁଁ ଶ୍ରୀଯୁକ୍ତ ପାଞ୍ଜାଙ୍କ ସହିତ କଥାବାର୍ତ୍ତା କରିବା ପୂର୍ବରୁ ମଣିପୁର ରଜ୍ୟର ନବନିଯୁକ୍ତ ରାଜ୍ୟପାଳ ଶ୍ରୀଯୁକ୍ତ ଚିନ୍ତାମଣି ପାଣିଗ୍ରାହୀଙ୍କୁ ଫୋନ ଯୋଗେ କଥାବାର୍ତ୍ତା କରି ବର୍ତ୍ତମାନ ପରିସ୍ଥିତିରେ ଓଡିଶାରେ କଂଗ୍ରେସକୁ ବଞ୍ଚାଇବା ପାଇଁ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଦାୟିତ୍ୱ ଗ୍ରହଣ କରିବାକୁ ଅନୁରୋଧ କଲାରୁ ସେ ରାଜୀ ହେଲେ । ତତ୍ପରେ ଲୋକସଭା ସଦସ୍ୟ ତଥା ପୂର୍ବତନ ମନ୍ତ୍ରୀ ଶ୍ରୀଯୁକ୍ତ ଗିରିଧାରୀ ଗମାଙ୍ଗୋଙ୍କୁ ପ୍ରଦେଶ କଂଗ୍ରେସ ଦାୟିତ୍ୱ ଗ୍ରହଣ କରିବାକୁ ଅନୁରୋଧ ଜଣାଇବାରୁ ସେ ମଧ୍ୟ ଏକପ୍ରକାର ସମ୍ମତ ହେଲେ । ଉଭୟଙ୍କ ସମ୍ମତି ପାଇଲା ପରେ ମୁଁ ଶ୍ରୀଯୁକ୍ତ ପାଞ୍ଜାଙ୍କୁ ମୋର ଏହି ମତ ଜଣାଇଲି । ମୁଁ ମଧ୍ୟ ଏହାପରେ ଦିଲ୍ଲୀଯାଇ ରାଜୀବଗାନ୍ଧୀଙ୍କୁ ଏକଥା କହି ଥାଆନ୍ତି ତେବେ ଭଲ ହୋଇ ଥାଆନ୍ତା କିନ୍ତୁ ମୁଁ ଦିଲ୍ଲୀ ଗଲିନାହିଁ । ଦୁର୍ଭାଗ୍ୟର ବିଷୟ ଯେ, ପୂର୍ବତନ ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ଜାନକୀବଲ୍ଲଭ ପଟ୍ଟନାୟକ ଓ ପୂର୍ବତନ କଂଗ୍ରେସ ସଭାପତି ଶ୍ରୀଯୁକ୍ତ କାହ୍ନୁଚରଣ ଲେଙ୍କା ଉଭୟେ ନିଜ ନିଜର ଲୋକଙ୍କୁ ଉକ୍ତ ଦୁଇ ଆସନରେ ବସାଇ ନିଜ ନିଜର ପୂର୍ବକର୍ତ୍ତୃତ୍ୱ ବଜାୟ ରଖିବାକୁ ଉଦ୍ୟମ କଲା ଫଳରେ କାହାରି ଉଦ୍ଦେଶ୍ୟ ସାଧିତ ହୋଇ ପାରିଲା ନାହିଁ ।

ଶେଷରେ ଶ୍ରୀ ହେମାନନ୍ଦ ବିଶ୍ୱାଳ ଯାହାଙ୍କୁ ମାତ୍ର କିଛିଦିନ ପୂର୍ବରୁ ଜଣେ ରାଷ୍ଟ୍ରମନ୍ତ୍ରୀର ଦାୟିତ୍ୱ ଦେବାର ସ୍ଥିର ହୋଇଥିଲା ସେ ହେଲେ ମୁଖ୍ୟମନ୍ତ୍ରୀ । ଶ୍ରୀଯୁକ୍ତ ବିଶ୍ୱାଳ ଆଦିବାସୀ ସଂପ୍ରଦାୟର ପ୍ରଥମ କରି ମୁଖ୍ୟମନ୍ତ୍ରୀ ଦାୟିତ୍ୱ ଗ୍ରହଣ କଲାପରେ ନିକଟ ଭବିଷ୍ୟତରେ ହେବାକୁ ଥିବା ବିଧାନସଭା ନିର୍ବାଚନରେ ଶ୍ରୀଯୁକ୍ତ ବିଜୁପଟ୍ଟନାୟକ

ଭଳି ବ୍ୟକ୍ତିଙ୍କର ସମ୍ମୁଖୀନ ହେବାକୁ ସଂପୂର୍ଣ୍ଣ ଅଯୋଗ୍ୟ ଓ ଅସମର୍ଥ ଥିଲେ । ସେହିପରି ଶ୍ରୀମତୀ ନନ୍ଦିନୀ ଶତପଥି ଜଣେ ଯୋଗ୍ୟ ବ୍ୟକ୍ତି ହେଲେ ହେଁ ତହିଁ ପୂର୍ବରୁ କମ୍ୟୁନିଷ୍ଟ ଦଳରେ ଥିବା ହେତୁ ଅତ୍ୟନ୍ତ କୁଚକ୍ରୀ ଓ କଂଗ୍ରେସର ଆଦର୍ଶନୀତିରେ ଜଣେ ସଚ୍ଚା ପୃଷ୍ଟପୋଷକ ନ ଥିଲେ । ତାଙ୍କୁ ପ୍ରକୃତରେ କେହି କଂଗ୍ରେସ ଲୋକ ଚାହୁଁ ନ ଥିଲେ ତଥା ସେ ବହୁ କଂଗ୍ରେସ ଲୋକଙ୍କର ଶତ୍ରୁମଧ ଥିଲେ । ସେ ଯେଉଁ କେତେଦିନ ଓଡିଶାର ମୁଖ୍ୟମନ୍ତ୍ରୀଥିଲେ ସେତେବେଳେ ସେ କଂଗ୍ରେସ ନେତୃତ୍ୱ ବିରୁଦ୍ଧରେ (ଶ୍ରୀମତୀ ଇନ୍ଦିରାଗାନ୍ଧୀଙ୍କ) ଏଭଳି ଅବସ୍ଥା ସୃଷ୍ଟି କଲେ ଯାହା ଫଳରେ ତାଙ୍କୁ ବାଧ ହୋଇ ମୁଖ୍ୟମନ୍ତ୍ରୀ ପଦରୁ ବିଦାୟ ଦିଆଯାଇଥିଲା । କେନ୍ଦ୍ରରେ ଜନତା ସରକାରର ପତନ ପରେ ଏହି ପରି ଜଣେ ସୁବିଧା ବାଦୀ ବ୍ୟକ୍ତି ଶ୍ରୀମତୀ ଶତପଥୀ ଅତ୍ୟନ୍ତ ଚତୁର ୯ ଷଡଯନ୍ତ୍ର କାରୀ ହୋଇଥିବାରୁ ଶ୍ରୀହେମାନନ୍ଦ ବିଶ୍ୱାଳଙ୍କୁ ପୂରା ଅକତିଆର କରି ଶାସନ ଚଳାଇଲେ । ଏମାନେ ଉଭୟେ (ବିଶ୍ୱାଳ ଓ ଶତପଥି) ପୂର୍ବତନ ମୁଖ୍ୟମନ୍ତ୍ରୀ ଶ୍ରୀଜାନକୀ ବଲ୍ଲଭ ପଟ୍ଟନାୟକଙ୍କ ବିରୋଧୀ ହୋଇଥିବାରୁ କଂଗ୍ରେସ ଭିତରେ ଯାହାକୁ ଜାନକୀଙ୍କ ସମର୍ଥକ ବୋଲି ମନେକଲେ ସେମାନଙ୍କୁ ରାଜନୈତିକ ଜୀବନରୁ ପୂରାପୂରି ଶେଷ କରିଦେବାର ଚେଷ୍ଟା କଲେ । ତେଣୁ ହେମାନନ୍ଦ ବିଶ୍ୱାଳଙ୍କ ଅଳ୍ପ କେତେଦିନ ଶାସନ କାଳ ମଧରେ ରାଜ୍ୟର କିଛି ହେଲେ ଉନ୍ନତି ସାଧିତ ହୋଇ ପାରିଲା ନାହିଁ, ବରଂ ବଦନାମ ହେଲା କଂଗ୍ରେସ ସଂଗଠନ ଅଧିକ ଦୁର୍ବଳ ହୋଇ ପଡିଲା ଓ ଦଳ ମଧରେ ଦଳାଦଳୀ ସୃଷ୍ଟି ହେଲା । ମାତ୍ର ମଧ୍ୟପ୍ରଦେଶ, ବିହାର ଓ ଗୁଜରାଟ ପ୍ରଭୃତ ରାଜ୍ୟରେ ଯେଉଁଠି ଉଭୟ ମୁଖ୍ୟମନ୍ତ୍ରୀ ଓ ରାଜ୍ୟ ସଭାପତି ଉଭୟ କଂଗ୍ରେସ ଦଳ ଲୋକଙ୍କଦ୍ୱାରା ପୁନର୍ଗଠିତ ହୋଇଥିଲା, ସେଠାରେ ଲୋକସଭା ନିର୍ବାଚନର ପରାଜୟ ପରେ ନୂତନ ନେତୃତ୍ୱ ବଳରେ କଂଗ୍ରେସ ଦଳ ଅଧିକ ସୁସଂଗଠିତ ହୋଇ ପାରିଥିଲା ।

## ୧୯୯୦ ବିଧାନସଭା ନିର୍ବାଚନ ଓ ମୋର ୨ୟ ପରାଜୟ''

ଏହା ପୂର୍ବରୁ ଦଶମ ଲୋକସଭା ନିର୍ବାଚନରେ ମୟୂରଭଞ୍ଜ ଜିଲ୍ଲାରୁ ଶ୍ରୀମତୀ ସରସ୍ୱତୀ ହେମ୍ବ୍ରମ କଂଗ୍ରେସ ପ୍ରାର୍ଥି ହୋଇ ଜନତାଦଳ ପ୍ରାର୍ଥୀ ଶ୍ରୀ ଭାଗେ ଗୋବର୍ଦ୍ଧନଙ୍କଠାରୁ ପରାଜିତ ହେଲେ । ଶ୍ରୀମତୀ ହେମ୍ବ୍ରମଙ୍କ ଶିକ୍ଷାଗତ ଯୋଗ୍ୟତାର ଅଭାବ ଓ ତାଙ୍କର ରାଜ୍ୟମନ୍ତ୍ରୀତ୍ୱ ସମୟର ଅପାରଗତା ଓ ଦୁର୍ନୀତି ପାଇଁ ଯେଉଁ ବଦନାମ ଥିଲା ସେଥିପାଇଁ ଲୋକେ କଂଗ୍ରେସ ପ୍ରାର୍ଥିଙ୍କୁ ଭୋଟ ଦେଲେ ନାହିଁ । ମୟୂରଭଞ୍ଜ ଜିଲ୍ଲାର ଏକମାତ୍ର ସାଧାରଣ ନିର୍ବାଚନ ମଣ୍ଡଳୀରେ ଏହାର ବିଶେଷ କୁପ୍ରଭାବ ପଡିଥିଲା । ଏଥିପୂର୍ବରୁ ୧୯୭୭, ୧୯୮୦, ଓ ୧୯୮୫ ସାଧାରଣ ନିର୍ବାଚନ ଗୁଡିକ ମଧରୁ ପ୍ରଥମଟିରେ କଂଗ୍ରେସର ପରାଜୟ ହୋଇଥିଲେ ହେଁ ପରବର୍ତ୍ତୀ ଦୁଇଟିଯାକ ନିର୍ବାଚନରେ କଂଗ୍ରେସର ଲୋକସଭା ପ୍ରାର୍ଥୀ ବିଜୟୀ ହୋଇଥିଲେ । ମୁଁ ଉପରୋକ୍ତ ତିନିଟି ଯାକ ସାଧାରଣ ନିର୍ବାଚନରେ ବାରିପଦା ନିର୍ବାଚନ ମଣ୍ଡଳୀର ବିଧାନସଭାର ପ୍ରାର୍ଥୀରୂପେ ଛିଡା ହୋଇ କ୍ରମାନ୍ୱୟରେ ତିନିଥର ଯାକ ନିର୍ବାଚିତ ହୋଇଥଲି । ଏଥର ଲୋକ ସଭା ନିର୍ବାଚନ ପରେ ପରେ ମୁଁ ନିଜେ ନିର୍ବାଚନ ଦାୟିତ୍ୱ ତୁଲାଉଥିଲା ବେଳେ କଂଗ୍ରେସ କମ୍ ଭୋଟ ପାଇବାର କାରଣ ସଂପର୍କରେ ସମୀକ୍ଷା କଲି । ନିର୍ବାଚନ ମଣ୍ଡଳୀରେ ବିଭିନ୍ନ ୧୬ଟି ସ୍ଥାନରେ ସଭାମାନ କରି କର୍ମୀ ଓ ଲୋକମାନଙ୍କର ମତାମତ ଜାଣବାକୁ ଚାହିଲି । ଯେଉଁ ମତାମତ ଆସିଲା ସେଥିରୁ ଜଣାଗଲା ଯେ ପ୍ରାର୍ଥୀ ଶ୍ରୀମତୀ ସରସ୍ୱତୀ ହେମ୍ବ୍ରମ ହିଁ ଏହାର ମୁଖ୍ୟକାରଣ । ଲୋକେ କେତେ ସଭାରେ ମଧ ସ୍ପଷ୍ଟ ମତ ହେଲେ ଯେ ଆପଣଙ୍କ ବିରୁଦ୍ଧରେ ଆମର ସେପରି କୌଣସି ଅଭିଯୋଗ ନାହିଁ ତେଣୁ ଆପଣ ନିଶ୍ଚିତ ଭାବେ ବିଧାନସଭାର ପ୍ରାଥୀ ହୋଇ ସୁବର୍ଣ୍ଣ ରେଖା ପ୍ରକଳ୍ପ ଶେଷ କରିବାର ପ୍ରୟାସ କରନ୍ତୁ । ଏ ପ୍ରକଳ୍ପ ଆପଣଙ୍କ ଦ୍ୱାରା ଆରମ୍ଭ ହୋଇଛି ଏବଂ ଆପଣ ଚେଷ୍ଟା ନ କଲେ ଏହା ସେହିପରି ପଡି ରହିବ । କେବଳ ଅଳ୍ପ କେତେକ ସ୍ଥାନରେ କିଛି କୁଚକ୍ରୀ ଲୋକଙ୍କ ଦ୍ୱାରା ମୋ ବରୁଦ୍ଧରେ ଅସନ୍ତୋଷ ସୃଷ୍ଟି କରିଥିବାର ଜଣାଗଲା ।

ମୁଁ ବିଗତ ୧୯୬୭ ରୁ ୧୯୮୯ପର୍ଯ୍ୟନ୍ତ ଦୀର୍ଘଦିନଧରି ବିଧାନସଭାର ସଭ୍ୟ ହୋଇ ତଥା ଦୁଇଥର ବିଧାନସଭା ଅଧକ୍ଷଭାବେ ଛଅବର୍ଷକାଳ ରହି ମୋର କର୍ତ୍ତବ୍ୟ ସୁଚାରୁ ରୂପେ ଚଳାଇ ଆସିଥିଲି । ଏ ସମସ୍ତ ପଦ ପଦବୀରେ ଥିବା ସମୟରେ କେବେହେଲେ ନିଜର ବା ଦଳର କୌଣସି ପ୍ରକାର ବଦନାମ କରିନାହିଁ । ଏହା ସତ୍ତ୍ୱେବି ରାଜ୍ୟ କଂଗ୍ରେସ କର୍ତ୍ତୃପକ୍ଷ ଓ ମୟୂରଭଞ୍ଜ ତଥା ବାରିପଦାର କେତେକ ଈର୍ଷାପରାୟଣ ପୁରୁଣା କଂଗ୍ରେସ ଲୋକ ରାଜ୍ୟବିଧାନସଭାପାଇଁମୋତେ ପ୍ରାର୍ଥୀ କରାଇ ନ ଦେବାକୁ ଚାହିଁଲେ । ଏ ସମସ୍ତଙ୍କର ମୋ ବିରୁଦ୍ଧରେ ଏକ ମିଳିତ ଉଦ୍ୟମ ଚାଲିଲା । ମାତ୍ର ଏ ସବୁ ପ୍ରଯତ୍ନ ସତ୍ତ୍ୱେ ମୋତେ ବାଦ ଦେଇ ପାରିଲେ ନାହିଁ । ମାତ୍ର ମୋର ସମ୍ମାନ ହାନୀ ପାଇଁ କଂଗ୍ରେସ ଲୋକ ନ ଥିବା ଜଣେ ବ୍ୟକ୍ତିଙ୍କ ନାମ ସହିତ ଯୋଡି କେନ୍ଦ୍ର କଂଗ୍ରେସ କର୍ତ୍ତୃପକ୍ଷଙ୍କ ବିଚାର ପାଇଁ ପଠାଗଲା । ଶେଷରେ କେନ୍ଦ୍ର କର୍ତ୍ତୃପକ୍ଷ ମୋତେ ମନୋନୀତ କଲେ, କିନ୍ତୁ ଜଣେ ଅଯୋଗ୍ୟ ବ୍ୟକ୍ତି ସହିତ ମୋ ନାମ ଯୋଡି ବିଚାର ପାଇଁ ପଠାଇବା ଦ୍ୱାରା ମୋର ସମ୍ମାନ ଓ ପ୍ରତିପତ୍ତି ଉପରେ ଅଯଥା ଏକ ଆଞ୍ଚ ଆଣିବାରେ ସଫଳ ହେଲେ । ଏଥିରେ ପ୍ରଦେଶ କଂଗ୍ରେସ ସଭାପତି ଶ୍ରୀମତୀ ନନ୍ଦିନୀ ଶତପଥୀଙ୍କ ପୂରାପୁରି ହାତ ଥିବା କଥା ଯେ କେହି ସ୍ୱୀକାର କରିବ । ନିର୍ବାଚନ ପ୍ରଚାର ଚାଲିଥିବା ସମୟରେ ନିଖିଳଭାରତ କଂଗ୍ରେସ କମିଟିର ତତ୍ତ୍ୱାବଧାରକ ଭାବରେ ଶ୍ରୀମତୀ ଶତପଥି ଭୋଟ ଗ୍ରହଣରଅବ୍ୟବହିତ ପୂର୍ବରୁ ବାରିପଦା ଆସିଥିଲେ । ସେତେବେଳେ ଜିଲ୍ଲାର ବିଭିନ୍ନପ୍ରାର୍ଥୀମାନଙ୍କୁ ଆର୍ଥିକ ସହାୟତା ମଧ୍ୟ ଦିଆଯାଇଥିଲା ଅନ୍ୟ ପ୍ରାର୍ଥିମାନଙ୍କ ନିକଟରେ ମୋତେ ଆର୍ଥିକ ସାହାଯ୍ୟ ଦେବାକୁ ମନା କରିଥିବା କଥା ଶୁଣି ଦୁଃଖିତ ହେଲି । ଅବଶ୍ୟ ତାଙ୍କର ଯେତିକ ସାହାଯ୍ୟ ଦେବା କଥା ତାହା ସେ ଦେଇଥିଲେ । ମୋ ବିରୋଧି କଂଗ୍ରେସ ଲୋକଙ୍କୁ ବେଛି କିଛି ଅର୍ଥ ଦେଇ ମୋତେ ହରାଇବାର ପରାମର୍ଶ ଦେବା ସଙ୍ଗେ ସଙ୍ଗେ ମୋ ନିର୍ବାଚନ ମଣ୍ଡଳୀରେ ପ୍ରଚାର କାର୍ଯ୍ୟ କରୁଥିବା କେତେକ କର୍ମୀଙ୍କୁ ଅନ୍ୟ ନିର୍ବାଚନ ମଣ୍ଡଳୀରେ ପ୍ରଚାର କରିବା ପାଇଁ ପଠାଇ ଦେଇଥିଲେ । ମୁଁ ନିର୍ବାଚନରେ ପରାଜିତ ହେଲେ ସେ ନିଶ୍ଚିତ ଭାବରେ ବିଧାନ ସଭା ବିରୁଦ୍ଧ ଦଳର ନେତ୍ରୀ ହୋଇପାରିବେ ଏହା ହିଁ ଥିଲା ତାଙ୍କ ଷଡଯନ୍ତ୍ରର ମୂଳ ଉଦ୍ଦେଶ୍ୟ । କଂଗ୍ରେସ ଓଡିଶାରେ ସଂଖ୍ୟାଧିକ ହୋଇ ସରକାର ଗଠନ କରିପାରିବ ନାହିଁ ଏହା ଅଳ୍ପ କେତେଦିନ ତଳେ ହୋଇଯାଇଥିବା ଲୋକସଭା ନିର୍ବାଚନରୁ ପରଷ୍କାର ଜଣାପଡୁଥିଲା । ମୁଁ ବିଧାନ ସଭାର ଅଧକ୍ଷ ଥିବା ହେତୁ ଓ ବହୁପୁରାତନ ସଭ୍ୟ ହୋଇଥିବାରୁ ମୁଁ ବିଜୟ ଲାଭ କଲେ ବିରୁଦ୍ଧ ଦଳର ନେତା ପଦର ଅଧିକାରୀ ହେବି ଏହା ତାଙ୍କୁ ଭଲ ଭାବରେ ଜଣାଥିଲା ।

୧୯୯୦ ଫେବୃୟାରୀ ଶେଷରେ ଓଡିଶା ବିଧାନସଭାର ନିର୍ବାଚନ ହେଲାବେଳକୁ କେନ୍ଦ୍ରରେ ଜନତା ଦଳ ଓ ଜନମୋର୍ଚ୍ଚାର ମିଳିତ ସରକାର ଶ୍ରୀଯୁକ୍ତ ବି.ପି.ସିଂହଙ୍କ ନେତୃତ୍ୱରେ ହୋଇସାରିଲାଣି । ସମଗ୍ର ଦେଶରେ କଂଗ୍ରେସ ବିରୁଦ୍ଧରେ ହାଓ୍ୱା ବେଶ୍ ଜୋରଦାର ହେଲାଣି । ଓଡିଶାରେ ବିଜୁପଟ୍ଟନାୟକଙ୍କ କୃଷିଋଣ ଛାଡ କରିବା ଚାଲର ପ୍ରଚାର ଦ୍ୱାରା ତାର ପ୍ରଭାବ ମଧ୍ୟ ଲୋକଙ୍କ ଉପରେ ପଡିଲାଣି । ବାରିପଦା ମୟୂରଭଞ୍ଜର ଏକମାତ୍ର ସାଧାରଣ ନିର୍ବାଚନ ମଣ୍ଡଳୀ ହୋଇଥିବାରୁ ସମସ୍ତଙ୍କ ଦୃଷ୍ଟି ଏଠାରେ ନିବଦ୍ଧ ହେବା ସଙ୍ଗେ ସଙ୍ଗେ ଈର୍ଷାନ୍ୱିତ ବ୍ୟକ୍ତିଙ୍କର ପ୍ରତିକ୍ରିୟା ମଧ୍ୟ ପ୍ରକାଶ ପାଇଲାଣି । ଜନତା ଦଳର ପ୍ରାର୍ଥୀ ମୋର ମୁଖ୍ୟ ପ୍ରତିଦ୍ୱନ୍ଦୀ ହେବା କଥା । ସେ ମଧ୍ୟରୁ ଦୁଇଜଣ ଆଶାୟୀପ୍ରାର୍ଥୀ ଶ୍ରୀ କିଶୋର ଦାସ ମୁରୁଡା ବ୍ଲକର ଶ୍ରୀ ଛତିଶ ଧଳ ଶୁକିଆପଦା ବ୍ଲକର ବାସିନ୍ଦା । ଦୁହେଁ ଯାକ ଯୁବକ ଓ ଉଚ୍ଚ ଶିକ୍ଷିତ । ଜନତା ଦଳର ଲୋକସଭା ସଦସ୍ୟ ଶ୍ରୀ ଭାଗେ ଗୋବର୍ଦ୍ଧନଙ୍କ ସମର୍ଥନ କ୍ରମେ ଶ୍ରୀ ଛତିଶ ଧଳ ଜନତା ଦଳରୁ ପ୍ରାର୍ଥୀ ହେଲେ । ସେ ମଧ୍ୟ ୧୯୮୫ ନିର୍ବାଚନରେ ଜଣେ ସ୍ୱାଧୀନ ସଭ୍ୟଭାବେ ପ୍ରତିଦ୍ୱନ୍ଦିତା କରିଥିଲେ । ସେ ପୁରାଣ ଜାତିର ଲୋକହୋଇଥିବାରୁ ପୁରାଣ ସଂପ୍ରଦାୟର ଜାତିଆଣ ଭୋଟରେ

ଦ୍ୱିତୀୟ ସ୍ଥାନ ଅଧିକାର କରିଥିଲେ । ଗତ ଲୋକସଭା ନିର୍ବାଚନରେ ସେହି ଜାତିଅଣା ଭୋଟଗୁଡିକୁ ପ୍ରଭାବିତ କରି ଶ୍ରୀ ଧଳଙ୍କ ଜରିଆରେ ଶ୍ରୀ ଭାଗେଗୋବର୍ଦ୍ଧନ ଅଧିକ ଭୋଟ ପାଇଥିଲେ । ଶ୍ରୀ କିଶୋର ଦାସଙ୍କୁ ଜନତା ଦଳରୁ ଟିକଟ ନ ମିଳିବାରୁ ସେ ସ୍ୱାଧୀନପ୍ରାର୍ଥୀ ରୂପେ ଛିଡା ହେଲେ । ଭାରତୀୟ ଜନତା ପାର୍ଟି ଝାଡଖଣ୍ଡ ଓ ଅନ୍ୟ କେତେକ ସ୍ୱାଧୀନ ସଭ୍ୟ ମିଶି ସର୍ବମୋଟ ୬ଜଣ ପ୍ରତିଦ୍ୱନ୍ଦିତାରେ ଅବତୀର୍ଣ୍ଣ ହେଲେ । କିନ୍ତୁ ପ୍ରକୃତ କ୍ଷେତ୍ରରେ କଂଗ୍ରେସ ଜନତା ଓ ସ୍ୱାଧୀନପ୍ରାର୍ଥୀ ଏହି ତିନିଜଣଙ୍କ ମଧ୍ୟରେ ପ୍ରତିଦ୍ୱନ୍ଦିତା ହେଲା । ଶ୍ରୀ ଧଳ ଶୁଳିଆପଦା ଥାନା ଅଞ୍ଚଳର ବାସିନ୍ଦା ହୋଇଥିବାରୁ ସେ ସେଠାରେ ଅଧିକ ଓ କିଶୋର ଦାସ ମୁରୁଡା ଅଞ୍ଚଳର ହୋଇଥିବାରୁ ସେ ସେଠାରେ ଅଧିକ ଭୋଟ ପାଇଲେ । ବାରିପଦା ଅଞ୍ଚଳରୁ ମୁଁ କଂଗ୍ରେସ ପ୍ରାର୍ଥୀ ଭାବେ ଅଧିକ ଭୋଟ ପାଇଲି । କିନ୍ତୁ ଶୁଳିଆପଦାରେ ଜନତା ପ୍ରାର୍ଥୀଙ୍କ ସହ ମୋର ଭୋଟର ଏତେ ତଫାତ ହେଲା ଯେ ଅନ୍ୟ ସମସ୍ତ ଅଞ୍ଚଳରୁ ମୁଁ ଅଧିକ ଭୋଟ ପାଇ ମଧ୍ୟ ସର୍ବମୋଟ ଭୋଟରେ ଜନତା ପ୍ରାର୍ଥୀ ବିଜୟୀ ହେଲେ ।

ସବୁଠାରୁ କ୍ଷୋଭର ବିଷୟ ଯେ ମୁଁ ସବୁଦିନେ ମୁରୁଡା ବ୍ଲକରୁ ହିଁ ଅଧିକ ଭୋଟ ପାଏ । ଗତ ତିନିଥର ଯାକ ନିର୍ବାଚନ ମଣ୍ଡଳୀର ଅନ୍ୟ ଦୁଇଅଂଶ ବାରିପଦା ଓ ଶୁଳିଆ ପଦା ଅଞ୍ଚଳରୁ କମ୍ ଭୋଟ ପାଇ କେବଳ ମୁରୁଡା ବ୍ଲକ ଅଞ୍ଚଳରୁ ସର୍ବାଧିକ ଭୋଟ ପାଇ ବିଜୟ ଲାଭ କରି ଆସିଥିଲି । ଏଥର ସେହିପରି ମୁରୁଡା ବ୍ଲକର ସ୍ୱାଧୀନ ପ୍ରାର୍ଥୀଙ୍କଠାରୁ କମ୍ ଭୋଟ ପାଇଥିଲେ ହେଁ ଜନତା ପ୍ରାର୍ଥୀ ଠାରୁ ଅଧିକ ଭୋଟ ପାଇଥିଲି ମାତ୍ର ତାହା ସେତେ ବେଶି ନ ଥିଲା । ବାରିପଦା ସହର /କାଇପଦା ବ୍ଲକ ଓ ମୁରୁଡାରୁ ମୁଁ ଜନତା ପ୍ରାର୍ଥୀଙ୍କଠାରୁ ୩୫୦୦ (ତିନିହଜାର ପାଞ୍ଚ ଶହ) ଅଧିକ ଭୋଟ ପାଇଥିଲେ ହେଁ କେବଳ ଶୁଳିଆ ପଦା ଅଞ୍ଚଳରୁ ଜନତା ପ୍ରାର୍ଥୀ ବହୁ ଅଧିକ ଭୋଟ ପାଇଲେ । ପ୍ରାର୍ଥୀ ଶ୍ରୀ ଧଳ ପୁରାଣ ସଂପ୍ରଦାୟର ଓ ଏ ଅଞ୍ଚଳରେ ଏହି ଜାତିର ଲୋକେ ବହୁ ପରିମାଣରେ ବାସ କରନ୍ତି । ତେଣୁ ଜାତିଆଣ ମନୋଭାବ ନେଇ ଲୋକେ ଭୋଟ ଦେବା ଫଳରେ ଜନତା ପ୍ରାର୍ଥୀ ବିଜୟୀ ହେଲେ ଓ ମୋତେ ପରାଜୟର ସମ୍ମୁଖୀନ ହେବାକୁ ପଡ଼ିଲା ।

କଂଗ୍ରେସ ପ୍ରାର୍ଥୀ ଭାବେ ମୁଁବାରିପଦା ନିର୍ବାଚନ ମଣ୍ଡଳୀକୁ ଆସିଥିଲି । ୧୯୭୪ ମସିହାରେ । ତା ପୂର୍ବରୁ ୧୯୫୨ ରୁ ୧୯୬୩ ପର୍ଯ୍ୟନ୍ତ କ୍ରମାନ୍ୱୟରେ ମୁରୁଡା, ଖୁଣ୍ଟା, ବୈଶିଙ୍ଗା, ପ୍ରଭୃତି ନିର୍ବାଚନ ମଣ୍ଡଳୀରୁ ପାଞ୍ଚଥର ପ୍ରଜା ସୋସାଲିଷ୍ଟ ପାର୍ଟିରୁ ନିର୍ବାଚିତ ହୋଇ ରେକର୍ଡ ରଖିଥିଲି । ସେସବୁ ଅଞ୍ଚଳ ସଂରକ୍ଷିତ ହୋଇଯିବାରୁ ଏବଂ ସମସ୍ତ ଜିଲ୍ଲାରେ କେବଳ ବାରିପଦା ନିର୍ବାଚନ ମଣ୍ଡଳୀ ସାଧାରଣଙ୍କ ପାଇଁ ରହିବାରୁ ମୋତେ ବାରିପଦା ପାଇଁ ଏଥର କଂଗ୍ରେସ ପ୍ରାର୍ଥୀ କରାଗଲା । ସେତେବେଳକୁ ନିର୍ବାଚନ ମାତ୍ର ଦେଢ ମାସ ଥାଏ । ଏକ ନୂତନ ଅଞ୍ଚଳରେ ମହାରାଜାଙ୍କ ଭାଇଙ୍କ ସଙ୍ଗେ ମୋତେ ନିର୍ବାଚନ ରଣାଙ୍ଗନରେ ମୋତେ ଅବତୀର୍ଣ୍ଣ ହେବାକୁ ପଡିଲା । ସେ ପୁଣି ତା ପୂର୍ବରୁ ସେ ଅଞ୍ଚଳର ବିଧାୟକ ଥିଲେ । ତଥାପି ଖୁବ୍ ଅଳ୍ପ ଭୋଟରେ ହାରିଲି । ତାପରେ ୧୯୭୭ ନିର୍ବାଚନ । ଏଥର ସମଗ୍ର ଭାରତ ବ୍ୟାପୀ କଂଗ୍ରେସର ପରାଜୟ ହୋଇଥିଲା ବେଳେ ମୁଁ ଅତି ଗୌରବର ସହିତ ବାରିପଦା ନିର୍ବାଚନ ମଣ୍ଡଳୀରୁ ଜୟଯୁକ୍ତ ହୋଇଥିଲି । ସେତେବେଳେ କେନ୍ଦ୍ରରେ ତଥା ଆମ ଓଡିଶାରେ ମଧ୍ୟ ଅଣ କଂଗ୍ରେସ ସରକାର ଥିବାରୁ ମୋତେ ବିରୁଦ୍ଧ ଦଳର ସଭ୍ୟ ହେବାକୁ ପଡିଲା । ଏବଂ ସେହି କାରଣରୁ ବାରିପଦା ନିର୍ବାଚନ ମଣ୍ଡଳୀରେ ଆଖିକୁ ଦେଖାଗଲା ଭଳି କିଛି କାମ କରିପାରିଲି ନାହିଁ । ତାପରେ ୧୯୮୦ ଓ ୧୯୮୫ରେ ପୁଣି ଦୁଇଥର (ଆରମ୍ଭରୁ ମୋଟ ଆଠ ଥର) ନିର୍ବାଚିତ ହୋଇ ଉକ୍ତ ଦଶବର୍ଷ ମଧ୍ୟରେ କିଛି ଉନ୍ନୟନ ମୂଳକ କାର୍ଯ୍ୟ ମୟୂରଭଞ୍ଜ ଜିଲ୍ଲାରେ ତଥା ବାରିପଦା ନିର୍ବାଚନ ମଣ୍ଡଳୀରେ କରିବାକୁ ସମର୍ଥ ହେଲି । ସେହି ସମୟ ମଧ୍ୟରେ ୧୯୮୪ରୁ ୧୯୮୯ ଶେଷ ସୁଦ୍ଧା ବିଧାନ ସଭାର ଅଧ୍ୟକ୍ଷ ଥିବା ଦୃଷ୍ଟିରୁ କିଛି ଉନ୍ନୟନ କାର୍ଯ୍ୟକରିବାରେ ବିଶେଷ

ସହାୟକ ହୋଇପାରିଲି ।

ମୁରୁଡା ଓ ଶୁଳିଆପଦା ଦୁଇଟି ଯାକ ବ୍ଲକରେ ଯିବା ଆସିବାର ସ୍ଥାୟୀ ବ୍ୟବସ୍ଥା ନ ଥିବାରୁ ଥାନା ତଥା ବ୍ଲକର ପ୍ରଧାନ କାର୍ଯ୍ୟାଳୟକୁ ବର୍ଷାଦିନେ ପହଞ୍ଚିଥିବା ଅତ୍ୟନ୍ତ କଷ୍ଟକର ହେଉଥିଲା । ଏହି ଅଞ୍ଚଳମାନଙ୍କରେ ଚୋରି ଡକାୟତୀ ମଧ୍ୟ ପ୍ରବଳ ଭାବରେ ଘଟୁଥିଲା ତେଣୁ ପ୍ରଥମେ ଯାତାୟାତର ସୁବିଧା ପାଇଁ ମୁରୁଡା ବ୍ଲକର ଜମ୍ବୀରା ନଦୀ ଓ ମୁରୁଡି ନଦୀରେ ଦୁଇଟି ପୋଲ ନିର୍ମାଣ କରାଇଲି । ତାପରେ ଜମ୍ବୀରା ନଦୀର ଅନ୍ୟ ଏକ ସ୍ଥାନରେ ଓ ଗୁନଫା ନଦୀ ଉପରେ ଦୁଇଟି ପୋଲର ଶୁଭାରମ୍ଭ କରାଇଲି । ଠିକ୍ ସେହିପରି ଶୁଳିଆପଦା ବ୍ଲକର ମାହାନ୍ତି ନଦୀ ଉପରେ ଦୁଇଟି ଭିନ୍ନସ୍ଥାନରେ ଦୁଇଟି ଓ ଗୁନଫା ନଦୀ ଉପରେ ଗୋଟିଏ ପୋଲ କରାଇଲି । ଏହିପୋଲ ଗୁଡିକ ନିର୍ମାଣ ହେଲାପରେ ବର୍ଷାଦିନେ ମୁରୁଡା ଓ ଶୁଳିଆପଦା ବ୍ଲକର ଯେକୌଣସି ସ୍ଥାନକୁ ଯିବା ଆସିବା ସୁଗମ ହେଲା । ଏତଦ୍ ବ୍ୟତୀତ ଉକ୍ତ ଦୁଇ ବ୍ଲକ ସହିତ ବାରିପଦା ବ୍ଲକର ବିଭିନ୍ନ ସ୍ଥାନରେ ପଚାଶ ହଜାରରୁ ଏକଲକ୍ଷ ଟଙ୍କା ବ୍ୟୟରେ ଚୋଟ ଚୋଟ ପୋଲ ମାନ କରାଯାଇ ଦୁର୍ଗମ ଅଞ୍ଚଳକୁ ଯାତାୟତରେ ସୁବିଧା କରାଗଲା । ଏହାଛଡା ଉପରୋକ୍ତ ତିନୋଟି ଯାକ ବ୍ଲକରେ ଅବହମାନ କାଳରୁ ଜଳସେଚନର କୌଣସି ସ୍ଥାୟୀ ବା ସଂପୂର୍ଣ୍ଣ ବ୍ୟବସ୍ଥା ନ ଥିଲା । ତେଣୁ ଏହି ସମୟ ମଧ୍ୟରେ ମୁରୁଡା ବ୍ଲକରେ ୬୫ରୁ ୭୦ ଓ ଶୁଳିଆ ପଦା ବ୍ଲକ ପ୍ରାୟ ୮୦ରୁ ଅଧିକ ଏବଂ ବାରିପଦା ବ୍ଲକରେ ପ୍ରାୟ ୫ଟି ଉଠାଜଳସେଚନ ଯୋଜନା କାର୍ଯ୍ୟକାରୀ କରାଇଥିଲି । ସର୍ବୋପରି ଏହି ସମୟ ମଧ୍ୟରେ ମୟୂରଭଞ୍ଜର ସର୍ବବୃହତ ସୁବର୍ଣ୍ଣରେଖାର ଜଳସେଚନ ଯୋଜନାର କାର୍ଯ୍ୟାରମ୍ଭ କରାଇଥିଲି । ବହୁ ସ୍କୁଲ ଓ କଲେଜ କରାଇଥିଲେ ହେଁ ୧୯୯୦ରୁ ସାଧାରଣ ନିର୍ବାଚନ ବେଳକୁ ସବୁକଥା ଭୁଲିଯାଇ ଅନ୍ୟାନ୍ୟ ସ୍ଥାନପରି ଧୂଆ ମୂଳା ଓ ଅଧୁଆ ମୂଳା ସମାନ କରିଦେଲେ ।

୧୯୫୨ରୁ ୧୯୮୯ ମସିହା ପର୍ଯ୍ୟନ୍ତ ଏହି ଦୀର୍ଘ ୩୪ ବର୍ଷ ବିଧାୟକ ଜୀବନ କାଳ ମଧ୍ୟରେ ହିଁ ମୁଁ ଯେ କେବଳ ସର୍ବସାଧାରଣଙ୍କ ସେବାରେ ନିୟୋଜିତ ଥିଲି ତା ନୁହଁ, ତାର ବହୁ ପୂର୍ବରୁ, ୧୯୩୯ ମସିହା ଠାରୁ ଭାରତର ସ୍ୱାଧୀନତା ଆନ୍ଦୋଳନରେ ଯୋଗଦାନ ଦେବାଦିନଠାରୁ ମୋର ରାଜନୈତିକ ଜୀବନ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ଥିଲା । ୧୯୩୯ ମସିହା ବେଳକୁ ମୟୂରଭଞ୍ଜ ଏକ ଗଡଜାତ ବା ଅନ୍ଧାରୀ ମୂଲକ ବୋଲି ଯାହା କୁହାଯାଉଥିଲା ତାହାହିଁ ଥିଲା । ଓଡିଶାର ଗଡଜାତ ଗୁଡିକ ମଧ୍ୟରୁ ନୀଳଗିରି, ଢେଙ୍କାନାଳ, ଓ ରଣପୁର ଭଳି ମାତ୍ର କେତୋଟି ଅଞ୍ଚଳରେ ପ୍ରଜା ଆନ୍ଦୋଳନ ଆରମ୍ଭ ହୋଇଥିଲା । ସେତିକି ବେଳେ ମୟୂରଭଞ୍ଜରେ ସ୍ୱର୍ଗୀୟ ଶରତ ଚନ୍ଦ୍ର ଦାସଙ୍କ ନେତୃତ୍ୱରେ ପ୍ରଜାମଣ୍ଡଳ ଆନ୍ଦୋଳନ ଆରମ୍ଭ ହେଲା । ସରକାରୀ ତାଡନା, ନିର୍ଯ୍ୟାତନା ଓ ଧନୀ ଓ ବଡଲୋକଙ୍କ ସହ ଶତ୍ରୁତା ଏପରିକି ନିଜ ପରିବାର ଲୋକଙ୍କ ଅସହିଷ୍ଣୁତା ଓ ଅସହଯୋଗ ମଧ୍ୟରେ ମୋତେ ଅନ୍ୟମାନଙ୍କ ସହ କାମ କରିବାକୁ ପଡିଥିଲା । ଏହାକୁ ରାଜନୈତିକ କର୍ମୀର ସାଧନା ବୋଲି ମୁଁ ମନେ କରେ । କେବଳ ଦେଶର ସ୍ୱାଧୀନତା ଆମର ଏକମାତ୍ର ଲକ୍ଷ୍ୟ ଥିବାରୁ ମୁଁ ଅତି ନିଷ୍ଠାର ସହ ଏହିକାର୍ଯ୍ୟରେ ବ୍ରତୀ ହୋଇ ରହିଥିଲି । ଏହି ମହାନ ଆଦର୍ଶର ସାଧକ ହୋଇଥିବାରୁ ପରବର୍ତ୍ତୀ ଜୀବନ କାଳରେ ୩୪ବର୍ଷ ଧରି ବିଧାୟକ ଓ ସେଥିମଧ୍ୟରୁ ୬ବର୍ଷ ବିଧାନ ସଭାର ଅଧ୍ୟକ୍ଷ ହେବା ମଧ୍ୟରେ ମଧ୍ୟ ଏସବୁର ଉପାଦେୟତା ମୋ ଜୀବନରେ ପ୍ରଭାବ ବିସ୍ତାର କରିଥିଲା । ଯାହାଫଳରେ ପ୍ରଥମ ପାଞ୍ଚଥର ବିଧାନ ସଭାର ସଭ୍ୟ ହେବା ସମୟରେ ସରକାରୀ ନ୍ୟାଯ୍ୟପ୍ରାପ୍ୟର ଶତକଡା ୭୦ଭାଗ ନିଜ ସମାଜବାଦୀ ଦଳକୁ ଦାନ କରି ଅତି କଷ୍ଟରେ ସାଧାରଣ ଜୀବନ ଯାପନ କରୁଥିଲି । ପରେ କଂଗ୍ରେସ ଦଳକୁ ଫେରି ଆସିବା ପରେ ମଧ୍ୟ ମୋତେ ମିଳୁଥିବା ମୋର ନ୍ୟାଯ୍ୟଆୟ ବ୍ୟତୀତ କୌଣସି ପ୍ରଲୋଭନ ବା ଅନ୍ୟାୟ ରୋଜଗାର ମୋତେ କେବେହେଲେ ଆକୃଷ୍ଟ କରିପାରି ନ ଥିଲା । ଆଜିକାଲି ଯେପରି କ୍ଷମତାକୁ ଯାଇ

ଅଳ୍ପ ଦିନ ମଧ୍ୟରେ ପ୍ରଭୂତ୍ୱ ସଂପତ୍ତିର ଅଧିକାରୀ ହୋଇପାରୁଛନ୍ତି ତାହା ମୋ ପକ୍ଷରେ ସ୍ୱପ୍ନ ଥିଲା ଓ ମୋ ଆଦର୍ଶର ବହିର୍ଭୂତ ଥିଲା । କ୍ଷମତା ବା ଅର୍ଥକୁ ମୁଁ କେବେହେଲେ ମୋ ମନରେ ଉଚ୍ଚସ୍ଥାନ ଦେଇନ ଥିଲି । ଏ ସମସ୍ତ ସାଧନା, ତ୍ୟାଗ ଓ ନିଷ୍ଠା କେବେ କ'ଣ ମୂଲ୍ୟ ହୀନ ହୋଇପାରେ ? ଜେବେ ନୁହେଁ, ଆଦର୍ଶ ଓ ତ୍ୟାଗର ସାଧନା କଦାପି ବିଫଳ ହୁଏନା ।

## ''ଭୋଟର ମାନଙ୍କ ଅଦ୍ଭୁତ ଖିଆଲ''

୧୯୮୯ମସିହାର ସାଧାରଣ ନିର୍ବାଚନ ଭାରତର ନାଗରିକମାନେ ଆଶ୍ଚର୍ଯ୍ୟଜନକ ଭାବରେ ଏକ ପରିବର୍ତ୍ତନ ଘଟାଇ ୧୯୭୭ ପରି କେନ୍ଦ୍ରରେ ଏକ ଅଣକଂଗ୍ରେସ ସରକାର ଗଠନ କଲେ । ଶ୍ରୀ ଯୁକ୍ତ ବିଶ୍ୱନାଥ ପ୍ରତାପ ସିଂଙ୍କ ନେତୃତ୍ୱରେ ଏହି ସରକାର ପ୍ରତିଷ୍ଠିତ ହୋଇ ମାତ୍ର ଏଗାର ମାସ ଚାଲିଲା ପରେ ଦଳ ମଧ୍ୟରେ ବିବାଦ ସୃଷ୍ଟି ହୋଇ ପତନ ଘଟିଲା । ସେହି ଜନତା ଦଳର ଅନ୍ୟ ଏକ ନେତା ଶ୍ରୀଚନ୍ଦ୍ର ଶେଖର ପ୍ରଧାନମନ୍ତ୍ରୀ ପଦ ଲାଳସାରେ କେତେକ ଦଳତ୍ୟାଗୀଙ୍କୁ ନେଇ ସମାଜ ବାଦୀ ଜନତା ନାମରେ ଏକ ଦଳ ଗଢି କଂଗ୍ରେସ ସହାୟତାରେ ମନ୍ତ୍ରୀ ମଣ୍ଡଳ ଗଠନ କଲେ । ଏ ମନ୍ତ୍ରୀ ମଣ୍ଡଳ, ସେହିପରି ମାତ୍ର ୬/୭ମାସ ଚାଲି ତାର ମଧ ପତନ ହେଲା । ତେଣୁ ପ୍ରାୟ ଦେଢବର୍ଷ ନ ପୁରୁଣୁ ଭାରତରେ ଅନ୍ୟ ଏକ ସାଧାରଣ ନିର୍ବାଚନର ସୂତ୍ରପାତଆରମ୍ଭ ହେଲା । ଭାରତର ନୂତନ ସମ୍ବିଧାନ କାର୍ଯ୍ୟକାରୀ ହେବା ଦିନରୁ ପ୍ରାୟ ଚାଳିଶ ବର୍ଷ ମଧ୍ୟରେ ଏତେ ଅଳ୍ପ ବ୍ୟବଧାନରେ ଏପରି ସାଧାରଣ ନିର୍ବାଚନ କେବେ ହୋଇ ନ ଥିଲା ।

ସେତେବେଳକୁ ଭାରତର ଆର୍ଥିକ ଅବସ୍ଥା ଅତ୍ୟନ୍ତ ଦୁର୍ବଳ ହୋଇପଡିଥିଲା । ଗଚ୍ଛିତ ବିଦେଶୀ ମୁଦ୍ରା ଅତି ମାତ୍ରାରେ କମି ଯାଇଥିବାରୁ ବିଦେଶ ସହିତ ବ୍ୟବସାୟ ବାଣିଜ୍ୟ ଅଚଳ ଅବସ୍ଥାକୁ ଚାଲିଯାଇ ଥିଲା । ଭାରତର ବୈଦେଶିକ ଋଣ ସାଙ୍ଗକୁ ଆଭ୍ୟନ୍ତରିଣ ଋଣ ଭାର ମଧ ଅତି ମାତ୍ରାରେ ବଢିଯାଇଥିଲା । କେନ୍ଦ୍ର ତଥା ରାଜ୍ୟ ମାନଙ୍କରେ ଅତିମାତ୍ରାରେ ନିଅଣ୍ଟିଆ ବଜେଟ ମାନ କରାଯାଇ ନିଅଣ୍ଟିଆ ସରକାର ଚାଲିବା ଫଳରେ ମୁଦ୍ରା ସ୍ଫୀତି ଅତିମାତ୍ରାରେ ବୃଦ୍ଧି ପାଇଥିଲା । ଏପରି ଆର୍ଥିକ ପରିସ୍ଥିତିରେ ମଧ ରାଜନୈତିକ ନେତୃବର୍ଗଙ୍କର ଅସହିଷ୍ଣୁ ମନୋଭାବ ଯୋଗୁଁ ଏପରି ଘନ ଘନ ସରକାର ପରିବର୍ତ୍ତନ ଓ ସେଥିପାଇଁ ନିର୍ବାଚନ ବାବଦ ଅଯଥା ଖର୍ଚ୍ଚବହନ କରିବାକୁ ଥିବାରୁ ଜନସାଧାରଣ ଅତିଷ୍ଠ ହୋଇଉଠିଲେ । ଏହି ନିର୍ବାଚନରେ ଜନତା ଦଳ ଓ ତାର ସହଯୋଗୀ ମିଳିତ ସାମୁଖ୍ୟ ଓ ବାମପନ୍ଥୀ ଦଳଗୁଡିକର ବହୁ ବିପର୍ଯ୍ୟୟ ହେଲେ ମଧ ଜାତୀୟ କଂଗ୍ରେସ ବା ଅନ୍ୟ କୌଣସି ଦଳକୁ ସରକାର ଗଠନ କରିବା ଭଳି ସଂଖ୍ୟାରେ ନିର୍ବାଚିତ କଲେ ନାହିଁ । ଏହି ନିର୍ବାଚନ ସମୟରେ ଭାରତର ପୂର୍ବତନ ପ୍ରଧାନ ମନ୍ତ୍ରୀ ରାଜୀବ ଗାନ୍ଧୀଙ୍କୁ ଅତି ନିର୍ମ୍ମମ ଭାବରେ ହତ୍ୟା କରାଗଲା । ତଥାପି ୧୯୮୪ରେ ଶ୍ରୀମତୀ ଇନ୍ଦିରାଗାନ୍ଧୀଙ୍କ ହତ୍ୟାବେଳେ କଂଗ୍ରେସକୁ ଯେପରି ଆନୁକୂଲ୍ୟା ଭୋଟ ମିଳିଥିଲା ଏଥର ସେପରି ଭାରତର ସର୍ବତ୍ର ହୋଇ ନ ଥିଲା । ବିଶେଷ କରି ହିନ୍ଦୀ ଭାଷାଭାଷୀ ଅଞ୍ଚଳ ଉତ୍ତର ପ୍ରଦେଶ, ବିହାର, ଗୁଜୁରାଟ, ମଧ୍ୟପ୍ରଦେଶ, ଓ ରାଜସ୍ଥାନ ପ୍ରଭୃତିରେ ନିର୍ବାଚନ ଫଳାଫଳରୁ ସେପରି କିଛି ଅନୁଭୂତି ହୋଇପାରିଲା ନାହିଁ । କିନ୍ତୁ ଦକ୍ଷିଣ ଭାରତର ମହାରାଷ୍ଟ୍ର କେରଳ ତାମିଲନାଡୁ, ଆନ୍ଧ୍ର , ଓ ଓଡିଶାର ଫଳାଫଳ କଂଗ୍ରେସ ସପକ୍ଷରେ ଯାଇଥିଲା । ପୂର୍ବଥର ଅପେକ୍ଷା କଂଗ୍ରେସ ଓ ତାର ସଂହଯୋଗୀ ଦଳଗୁଡିକର ଲୋକସଭା ସଭ୍ୟ କିଛି ବୃଦ୍ଧି ପାଇଥିଲେ ହେଁ ଓ ଏକକ ସଂଖ୍ୟାଧିକ ଦଳ ହୋଇଥିଲେ ହେଁ ସରକାର ଗଠନ କରିବା ଭଳି ସଂଖ୍ୟାଠାରୁ କମ୍ ହେଲା । କିନ୍ତୁ ଏହି ନିର୍ବାଚନରେ ଭାରତୀୟ ଜନତା ପାର୍ଟି ବିଶେଷ ଲାଭବାନ ହୋଇପାରଥିଲେ । ସାତବର୍ଷ ପୂର୍ବରୁ ୧୯୮୪ରେ ଏହି ଦଳ ମାତ୍ର ଦୁଇଟି ସ୍ଥାନ ଲୋକସଭାରେ ପାଇଥିଲା ବେଳେ ଏଥର ଦ୍ୱିତୀୟ ବୃହତ୍ତମ ଦଳ ହୋଇପାରିଲା । ଏହା ଏକ

ସାଂପ୍ରଦାୟିକ ଦଳ ବୋଲି ଜନତା ଓ ବାମପନ୍ଥୀ ଦଳମାନେ ଏହାକୁ ବିରୋଧ କରୁଥିଲେ ହେଁ ଏଥର ତା ସହିତ ନିର୍ବାଚନ ମେଣ୍ଟ କରି କଂଗ୍ରେସ ଭଳି ଏକ ଜାତୀୟ ଦଳକୁ ପରାସ୍ତ କରିବାର ଉଦ୍ୟମ ଅତ୍ୟନ୍ତ ଦୁଃଖ ଓ ଚିନ୍ତାର ବିଷୟ । କେବଳ କଂଗ୍ରେସକୁ ହରାଇବାର ଲକ୍ଷ୍ୟରଖି ଏକ ସାଂପ୍ରଦାୟିକ ଦଳକୁ ସମର୍ଥନ ଦିନେ ଦେଶ ପ୍ରତି ବିପଦ ସୃଷ୍ଟିର କାରଣ ହେବ ଏହା ସମସ୍ତେ ଭୁଲିଗଲେ । ଭାରତ ଏକ ଧର୍ମ ନିରପେକ୍ଷ ରାଷ୍ଟ୍ରଭାବେ ସମଗ୍ର ବିଶ୍ୱରେ ସମ୍ମାନିତ । ଭାରତୀୟ ଜନତା ପାର୍ଟି ଭାରତକୁ ଏକ ହିନ୍ଦୁ ରାଷ୍ଟ୍ରରେ ପରିଣତ କରିବାକୁ ଚାହେଁ । ଭାରତରେ ହିନ୍ଦୁ ବ୍ୟତୀତ ଅନ୍ୟ ସମସ୍ତ ଧର୍ମାବଲମ୍ବୀ ଲୋକ ବାସ କରନ୍ତି ଏପରିକି ଭାରତର ମୁସଲମାନ ସଂଖ୍ୟା ବିଶ୍ୱର ଯେ କୌଣସି ଇସଲାମ ରାଷ୍ଟ୍ର ଅପେକ୍ଷା ଅଧିକ । ତେଣୁ ଧର୍ମନିରପେକ୍ଷନୀତି ଅନୁସରଣ ନ କଲେ ଏବଂ ବହୁ ପୁରାକାଳର ଏହି ଧର୍ମନିରପେକ୍ଷତା ନଷ୍ଟହୋଇଗଲେ ଦେଶ ଖଣ୍ଡ ଖଣ୍ଡ ହୋଇଯିବାର ଆଶଙ୍କା ରହିଛି ।

ନେହେରୁ ପରିବାର ପରେ କଂଗ୍ରେସ ମଧ୍ୟରେ ପ୍ରଧାନମନ୍ତ୍ରୀ ହେବା ପାଇଁ କେହି ଯୋଗ୍ୟ ବ୍ୟକ୍ତି ନାହାନ୍ତି ବୋଲି କିଛି କଂଗ୍ରେସ ଲୋକଙ୍କ ମଧ୍ୟରେ ଏକ ଭ୍ରମ ଧାରଣା ସୃଷ୍ଟି ହୋଇଥିଲେ । ପଣ୍ଡିତ ନେହେରୁଙ୍କ ପରେ ତାଙ୍କ ପରିବାର ବ୍ୟତୀତ ଅନ୍ୟ କାହାରିକୁ ସେଭଳି ସୁଯୋଗ ନ ଦେଇ ପ୍ରଧାନମନ୍ତ୍ରୀ ପଦକୁ ଏ ବଂଶ ପରଂପରା ରାଜତ୍ୱ ବୋଲି ଧରାଯାଇଥିଲା । ମାତ୍ର ଶ୍ରୀଯୁକ୍ତ ରାଜୀବଗାନ୍ଧୀଙ୍କ ନିଧନ ପରେ ତାଙ୍କ ସ୍ତ୍ରୀ ଶ୍ରୀମତୀ ସୋନିଆ ଗାନ୍ଧୀ କ୍ଷମତା ରାଜନୀତିରେ ପ୍ରବେଶ କରିବାକୁ ଅସମ୍ମତ ହେବାରୁ କଂଗ୍ରେସ ଦଳର ବୟୋଜ୍ୟେଷ୍ଠ ବ୍ୟକ୍ତି ଭାବେ ପ୍ରଥମେ ଶ୍ରୀଯୁକ୍ତ ପି.ଭି. ନରସିଂହ ରାଓଙ୍କୁ କଂଗ୍ରେସ ଦଳର ସଭାପତି ଓ ପରେ ପ୍ରଧାନମନ୍ତ୍ରୀ ପଦରେ ଅସ୍ଥାୟୀଭାବେ ଅଧିଷ୍ଠିତ କରାଗଲା । ପରେ ତାଙ୍କର ବିଚକ୍ଷଣ ଯୋଗ୍ୟତା, ଧୀର ସ୍ଥିର ବିଚାର ଧାରା ଓ ସଦ୍‌କଥା ପରାମର୍ଶ କରି ସମସ୍ତଙ୍କୁ ନେଇ ଚାଲିବା ପ୍ରଭୃତି ନୀତି ଯୋଗୁଁ ସେ ସବୁଠାରୁ ଯୋଗ୍ୟବ୍ୟକ୍ତି ଭାବେ ଏବେ ପରିଗଣିତ ହେଉଛନ୍ତି । ଗଣତନ୍ତ୍ରର ମୌଳିକ ନୀତି ଅନୁସରଣ କରି ସମସ୍ତଙ୍କର ପ୍ରୀତି ଭାଜନ ହୋଇ ପାରିଛନ୍ତି । ଶ୍ରୀଯୁକ୍ତ ରାଓଙ୍କର ସବୁଠାରୁ ଅଧିକ ଦକ୍ଷତାର ପରିଚୟ ହେଉଛି ଯେ, ଏକ ସରକାର ଭାଙ୍ଗିଯିବାର ଭୟ ତାଙ୍କର ଆଦୌ ନାହିଁ । ଅବଶ୍ୟ ଏଭଳି ପଦକ୍ଷେପ ନେଲାବେଳକୁ ନିଜ ଦଳ ବ୍ୟତୀତ ବିରୁଦ୍ଧ ଦଳର ମୁଖ୍ୟ ବ୍ୟକ୍ତିଙ୍କ ସହ ଆଲୋଚନା କରି ଅଧିକ ମତ ଥିବାର ଅନୁଭବ କଲେ ନିଷ୍ପତ୍ତି ଗ୍ରହଣ କରୁଛନ୍ତି । ଏହା ପୂର୍ବରୁ କେନ୍ଦ୍ରର ବହୁ ସଂଖ୍ୟାଥିବା କଂଗ୍ରେସ ସରକାର ଅତ୍ୟନ୍ତ ଆବଶ୍ୟକ କ୍ଷେତ୍ରରେ ମଧ୍ୟ ଭୟରେ ଏପରି ଦୃଢ଼ ପଦକ୍ଷେପ ନେଇ ପାରୁ ନ ଥିଲେ । ଏହାର କାରଣ ସେତେବେଳର ସରକାର ସେଭଳି ପଦକ୍ଷେପ ଦ୍ୱାରା ସରକାରର ପତନ ଘଟିବାର ଆଶଙ୍କା କରୁଥିଲେ ମାତ୍ର ଶ୍ରୀଯୁକ୍ତ ରାଓ ସରକାରର ପତନକୁ ଆଦୌ ଭୟ କରୁନାହାନ୍ତି । ତେଣୁ ଶ୍ରୀଯୁକ୍ତ ରାଓ ଯେ ଜଣେ ଅତି ଦକ୍ଷ ଓ ଯୋଗ୍ୟ ବ୍ୟକ୍ତି ଏଥିରେ ସମସ୍ତେ ଏକମତ ହେବେ । ଶ୍ରୀଯୁକ୍ତ ରାଓ ଏକ ଦୁର୍ଦ୍ଦିନରେ ପ୍ରଧାନମନ୍ତ୍ରୀ ଦାୟିତ୍ୱ ଗ୍ରହଣ କଲେ । ସେତେବେଳେ ଦେଶର ଆର୍ଥିକ ଦେବାଳିଆ ଅବସ୍ଥା ସାଙ୍ଗକୁ ବୈଦେଶିକ ଓ ଆଭ୍ୟନ୍ତରୀଣ ଶତ୍ରୁତା ଯୋଗୁଁ ଦେଶରେ ଏକ ଜଟିଳ ପରିସ୍ଥିତି ଉପୁଜି ଥିଲା । ଏ ସମସ୍ତ ପରିସ୍ଥିତିର ସମ୍ମୁଖୀନ ହୋଇ ଧୀର ସ୍ଥିର ଭାବେ ଅତି ବିଜ୍ଞତାର ସହିତ ସମାଧାନ କରି ପାରିଥିବାରୁ ଶ୍ରୀଯୁକ୍ତ ରାଓ ଆଜି ସମସ୍ତଙ୍କ ଶ୍ରଦ୍ଧା ଓ ସମ୍ମାନର ପାତ୍ର ହୋଇ ପାରିଛନ୍ତି ।

ଏ ପର୍ଯ୍ୟନ୍ତ କଂଗ୍ରେସ ଦଳ ମଧ୍ୟ ଏକ ବଂଶ ପରଂପରା ନେତୃତ୍ୱରେ ଚାଲି ଆସିଥିଲା । ନିର୍ବାଚନ କରାଯାଇ ସଂଗଠନ ସଂକ୍ରାନ୍ତରେ ତଳ ସ୍ତରରୁ ସଭ୍ୟମାନଙ୍କର କୌଣସି ମତାମତ ନ ନେଇ ନିଷ୍ପତ୍ତି ଗ୍ରହଣ କରାଯାଉଥିବାରୁ ବହୁ ତୋଷାମଦକାରୀ ସୃଷ୍ଟି ହେଉଥିଲେ । ସେହିପରି କେତେକ ଲୋକ ରାଜୀବ ଗାନ୍ଧୀଙ୍କ ନିଧନ ପରେ ଶ୍ରୀମତୀ ସୋନିଆ ଗାନ୍ଧୀଙ୍କୁ ପ୍ରଧାନମନ୍ତ୍ରୀ କରି ନ ପାରିଲେ ବି କଂଗ୍ରେସ ସଭାପତି କରିବା ପାଇଁ ପାଗଳ ଭଳି ଉଦ୍ୟମ

କରିଥିଲେ ଓ ସେଥିରେ ବିଫଳ ହେଲାରୁ ରାଜୀବଙ୍କ କନ୍ୟା କୁମାରୀ ପ୍ରିୟାଙ୍କାଙ୍କୁ ଉତ୍ତର ପ୍ରଦେଶ କଂଗ୍ରେସ କମିଟିର ସଭାପତି ପଦରେ ବସାଇ ବାର ଶେଷ ଚେଷ୍ଟାକରି ସଂପୂର୍ଣ୍ଣ ବିଫଳ ହେଲେ । ତେଣୁଁ ତୋଷାମଦକାରୀଙ୍କ ପୂର୍ବ କର୍ତ୍ତୃତ୍ୱ ସଂପୂର୍ଣ୍ଣ ବିଲୋପ ଘଟିବାରୁ ଦେଶ ରକ୍ଷା ପାଇଛି । ଶ୍ରୀଯୁକ୍ତ ରାଓ ପଞ୍ଜାବରେ ନିର୍ବାଚନ କରାଇ ସେଠାରେ ଲୋକ ପ୍ରତିନିଧି ମୂଳକ ଶାସନ ପ୍ରତିଷ୍ଠା କରିବାରେସଫଳ ହେଲା ପରେ ଏବେ ନିକଟ ଭବିଷ୍ୟତରେ କାଶ୍ମୀରରେ ମଧ ନିର୍ବାଚନ କରାଇବାକୁ ଯାଉଛନ୍ତି । ନିଜର କାର୍ଯ୍ୟକ୍ରମ ଫଳରେ ଲୋକସଭାରେ କଂଗ୍ରେସର ସଂଖ୍ୟାନ୍ୟୁନତା ମଧ କମି ଯାଇଛି ।

## "ଉଲେଖନୀୟ କାର୍ଯ୍ୟ"

୧୯୩୯ ମସିହାରୁ ପାଠପଢ଼ା ଛାଡ଼ି ମୋର ରାଜନୈତିକ ଜୀବନ ଆରମ୍ଭ କରି ଆଜକୁ ଅର୍ଦ୍ଧଶତାବ୍ଦୀରୁ ଅଧିକକାଳ ସକ୍ରିୟ ରାଜନୀତିରେ ଅଂଶଗ୍ରହଣ କରି ଆସିଛି । ଏହି ସମୟ ମଧରେ ଦୀର୍ଘ ୩୪ ବର୍ଷକାଳ ଓଡ଼ିଶା ବିଧାନସଭାର ସଭ୍ୟ ଓ କିଛି ସମୟ ପାଇଁ ବିଧାନସଭାର ଅଧକ୍ଷ ଆସନରେ ମଧ ଅବସ୍ଥାପିତ ହୋଇ ପାରିଛି । ସାଧରଣଙ୍କ ଶୁଭେଚ୍ଛା ଓ ସମର୍ଥନ ଏବଂ ସର୍ବୋପରି ଭଗବାନଙ୍କ ଅସୀମ ଅନୁକମ୍ପା ଓ ଆଶିଷ ଲାଭକରି ଯେଉଁ ସାମାନ୍ୟ ଜନମଙ୍ଗଳ କାର୍ଯ୍ୟମାନ କରିପାରିଛି ବା କରିବାର ପ୍ରୟାସ କରିଛି ସେଥି ମଧରୁ କଛି ସାଧରଣଙ୍କ ଅବଗତି ପାଇଁ ଅବତାରଣା କରୁଅଛି ।

## "ସୁବର୍ଣ୍ଣରେଖା ନଦୀବନ୍ଧ ଜଳସେଚନ ପ୍ରକଳ୍ପ"

ମୟୂରଭଞ୍ଜ ଜିଲ୍ଲା ଏକ ଆଦିବାସୀ ବହୁଳ ଚିର ମରୁଡ଼ି ପ୍ରପୀଡ଼ିତ ଅଞ୍ଚଳ । ସାରା ବର୍ଷରେ କେବଳ ଖରିଫ ଋତୁରେ ଗୋଟିଏ ମାତ୍ର ଧାନ ଚାଷ ବ୍ୟତୀତ କୃଷିକ୍ଷେତ୍ରରେ ସେପରି ଆର୍ଥିକ ରୋଜଗାରର ସୁଯୋଗ ପୂର୍ବତନ ଗଡ଼ଜାତ ଅମଳରୁ ନାହିଁ । କୌଣସି କଳକାରଖାନାର ମଧ ସୃଷ୍ଟି ହୋଇପାରିନାହିଁ, ଯଦିଓ ସ୍ୱାଧୀନତାର ବହୁ ପୂର୍ବରୁ ଇଂରେଜ ଶାସନ କାଳରୁ ମୟୁରଭଞ୍ଜର ଗୋରୁ ମହିଷାଣୀ, ବାଦାମ ପାହାଡ଼ ଓ ସୁଲେଇପାଟରୁ ଲୁହାପଥର ନେଇ ବିହାରର ଯାମସେଦପୁର ଠାରେ ଏସିଆ ମହାଦେଶର ସର୍ବବୃହତ୍ ଲୁହାକାରଖାନା ପ୍ରତିଷ୍ଠିତ ହୋଇପାରିଛି । ଅବଶ୍ୟ ତଦାନୀନ୍ତନ ମୟୂରଭଞ୍ଜର ପ୍ରାତଃ ସ୍ମରଣୀୟ ମହାରାଜା ଶ୍ରୀରାମଚନ୍ଦ୍ର ଭଞ୍ଜ ଦେଓ ବାଲିଡିହା ଓ ହଳଦିଆ ମଧମ ଜଳସେଚନ ପ୍ରକଳ୍ପ ଆରମ୍ଭ କରିଥିଲେ ଏବଂ ସେଗୁଡ଼ିକ ଏବେ ବି କାର୍ଯ୍ୟକାରୀ ହୋଇଆସିଛି । ୧୯୪୯ ବେଳକୁ ମୟୂରଭଞ୍ଜର ଓଡିଶା ସହିତ ମିଶ୍ରଣ ହେଲାବେଳକୁ ଓଡ଼ିଶାର କଟକ, ପୁରୀ, ଗଞ୍ଜାମ ଅଞ୍ଚଳରେ ମଧବ୍ରିଟିଶ ଶାସନ ବେଳର ସେହିପରି ମୁଷ୍ଟିମେୟ କେତୋଟି ଜଳସେଚନ ଯୋଜନା ଥିଲା । ମାତ୍ର ସ୍ୱାଧୀନତା ପରେ ଦେଶର ତଥା ଆମ ଓଡିଶା ରାଜ୍ୟରେ ଯେଉଁ ପଞ୍ଚବାର୍ଷିକ ଯୋଜନାମାନ ଗୋଟିକପରେ ଗୋଟିଏ ଚାଲିଲା ତଦ୍ୱାରା ଶିଳ୍ପ ଓ ଜଳସେଚନ କ୍ଷେତ୍ରରେ ବହୁ ପ୍ରସାର ଲାଭକରି ପ୍ରଭୁତ ଉନ୍ନତି ସାଧିତ ହୋଇପାରିଲା । ମାତ୍ର ମୟୂରଭଞ୍ଜ ସେଥିରୁ ବଞ୍ଚିତ ହୋଇ କ୍ରମେ ଉନ୍ନୟନ ଦୃଷ୍ଟିରୁ ପଛରେ ପଡି ରାଜ୍ୟର ଅନ୍ୟ ସବୁ ଜିଲ୍ଲା ମଧରେ ସର୍ବନିମ୍ନ ତ୍ରୟୋଦଶ ସ୍ଥାନକୁ ଖସି ଆସିଲା । ବର୍ଷପରେ ବର୍ଷର ମରୁଡି ଦାଉ ମୟୂରଭଞ୍ଜ ଚାଷୀର ଆର୍ଥିକ ମାନଦଣ୍ଡ ଦୁର୍ବଳ କରି ପକାଇଲା ।

ତେଣୁ ୧୯୫୨ ମସିହାରେ ଜିଲ୍ଲାରୁ ପ୍ରଥମେ ମରୁଡା ତପୂରେ ବୈଶିଙ୍ଗା, ଖୁଣ୍ଟା ଏବଂ ବାରିପଦା ପ୍ରଭୃତି

ନିର୍ବାଚନ ମଣ୍ଡଳୀରୁ ଆଠଥର ବିଧାୟକ ଭାବେ ନିର୍ବାଚିତ ହୋଇ ଓ ସେଥିମଧ୍ୟରୁ ୬ବର୍ଷକାଳ ବିଧାନସଭାର ଅଧ୍ୟକ୍ଷ ପଦରେ ଅଧିଷ୍ଠିତ ହୋଇ ମୟୂରଭଞ୍ଜର ବ୍ୟାପକ ଜଳସେଚନ ପ୍ରତି ଦୃଷ୍ଟି ଦେଲି । ବିଧାନ ସଭାରେ ପ୍ରଶ୍ନ, ଅତିରିକ୍ତ, ପ୍ରଶ୍ନ, ସ୍ୱଳ୍ପକାଳୀନ ପ୍ରଶ୍ନ ତଥା ପ୍ରସ୍ତାବ ମାଧ୍ୟମରେ ଏବଂ ପ୍ରତିଥର ବଜେଟ୍ ଆଲୋଚନା ବେଳେ ଜଳସେଚନ ବିଭାଗ ବିଷୟରେ ଆଲୋଚନା ଅବ୍ୟାହତ ରଖିଲି । ମୁଁ ଗୋଟିଏ ବିଧାନସଭା ଅଞ୍ଚଳରୁ ନିର୍ବାଚିତ ହୋଇଥିଲେ ହେଁ ଜିଲ୍ଲାର ସର୍ବତ୍ର କିପରି ବ୍ୟାପକ ଭାବେ ଜଳସେଚନ ହୋଇ ପାରିବ ସେଥିପାଇଁ ଉଦ୍ୟମ କରିଆସିଛି । ତେଣୁ ଜିଲ୍ଲାର ୪ଟି ଯାକ ସବ୍‌ଡିଭିଜନରେ ଅନେକ ଗୁଡିଏ କ୍ଷୁଦ୍ର ଜଳସେଚନ ଯୋଜନା ହେଲେ ମଧ ମରୁଡିର ପ୍ରକୋପ କମିଲା ନାହିଁ । ତେଣୁ ମଧମ ଓ ବୃହତ ଜଳସେଚନ ଯୋଜନା କାର୍ଯ୍ୟକାରୀ କରିବା ପାଇଁ ସମସ୍ତ ଉଦ୍ୟମ ଆରମ୍ଭ କରି ଦେଲି । ବାରିପଦା (ସଦର) ସବ୍‌ଡିଭିଜନ ବ୍ୟତୀତ ଅନ୍ୟ ତିନିଟି ଉପଖଣ୍ଡରେ କେତୋଟି ମଧମ ଓ ବୃହତ ଜଳସେଚନ ଯୋଜନା ମଞ୍ଜୁରୀ ପାଇ କାର୍ଯ୍ୟାରମ୍ଭ ମଧ ହୋଇଗଲା । ମାତ୍ର ବରିପଦା ସବ୍‌ଡିଭିଜନରେ ବୁଢାବଳଙ୍ଗ ବା ସୁବର୍ଣ୍ଣରେଖା ଭଳି ଅତିବୃହତ୍ ଯୋଜନା ବ୍ୟତୀତ ଅନ୍ୟ ଜଳସେନ ଯୋଜନାର ସୁଯୋଗ ନ ଥିବା ଦେଖାଗଲା । ତେଣୁ ବାରଂବାର ବିଧାନସଭା ଓ ଅନ୍ୟ ସାଧାରଣ ସଭାମାନଙ୍କରେ ସୁବର୍ଣ୍ଣରେଖା ଓ ବୁଢାବଳଙ୍ଗ ଯୁଗ୍ମ ଜଳସେଚନ ଯୋଜନା ପାଇଁ ଦାବୀ ହେବା ପରେ କେନ୍ଦ୍ର ସୁବର୍ଣ୍ଣରେଖା ନଦୀ ଉପରେ ଏକ ଯୋଜନା ହେଲେ ବିହାର ଓ ଓଡ଼ିଶାର ବ୍ୟାପକ ଅଞ୍ଚଳରେ ଜଳସେଚନ ହେବା ସଙ୍ଗେ ସଙ୍ଗେ ପଶ୍ଚିମବଙ୍ଗ ରାଜ୍ୟର ବ୍ୟାପକ ଅଞ୍ଚଳରେ ବନ୍ୟାନିୟନ୍ତ୍ରଣ ସହ କିଛି ପରିମାଣ ଜଳସେଚନ ହୋଇପାରିବାର ଏକ ଯୋଜନା ପ୍ରସ୍ତୁତ କରାଗଲା । ଓଡିଶା ମଧରେ ମୟୂରଭଞ୍ଜ ଜିଲ୍ଲାର ୧୦ଟି ଓ ବାଲେଶ୍ୱର ଜିଲ୍ଲାର ୪ଟି ବ୍ଲକ ଏହିପରି ପ୍ରାୟ ୧୪ଟି ବ୍ଲକରେ ଏକ ଲକ୍ଷ ହେକ୍ଟର (ପ୍ରାୟ ୪ଲକ୍ଷମାଣ) ଜମିରେ ଜଳସେଚନ ହେବା ସଙ୍ଗେ ସଙ୍ଗେ ବାଲେଶ୍ୱର ଜିଲ୍ଲାର ଉତ୍ତରାଞ୍ଚଳ ସୁବର୍ଣ୍ଣରେଖା ଅବବାହିକାର ଏକ ବିସ୍ତୃତ ଅଞ୍ଚଳରେ ପ୍ରଳୟଙ୍କରୀ ବନ୍ୟା ଦାଉକୁ ରୋକା ଯାଇ ପାରିବା ସମ୍ଭବପର ହୋଇପାରିବ । ତେଣୁ ଏହାର ଅଧିକ ତଦନ୍ତ କରି କେନ୍ଦ୍ର ସରକାରଙ୍କ ଅନୁମତି କ୍ରମେ ଯଥାଶୀଘ୍ର କାର୍ଯ୍ୟାରମ୍ଭ କରିବାକୁ ମୟୂରଭଞ୍ଜ ଜିଲ୍ଲାରେ ମୋଦକ (ପ୍ରଜାସୋସାଲିଷ୍ଟ) ସହିତ ମୁଁ ଆନ୍ଦୋଳନ ଆରମ୍ଭ କଲି । ୧୯୬୮-୬୯ ମସିହାରେ ମୟୂରଭଞ୍ଜର ବ୍ୟାପକ ଅଞ୍ଚଳରେ ଅନ୍ଦୋଳନ କରି ମୋ ସମେତ ବହୁଲୋକ ଜେଲଗଲେ । ବିଶେଷ କରି ବେତନଟୀ ତହସିଲ ଅଫିସ ଦଖଲ କରିନେଇ ୬୭ଦିନଧରି ସମସ୍ତ କାର୍ଯ୍ୟ ଅଚଳ କରିଦେଲୁଁ । ବେତନଟୀ ବ୍ୟତୀତ ବାରିପଦା ସବ୍‌ଡିଭିଜନର ବିଭିନ୍ନ ଅଞ୍ଚଳରୁ ଶହ ଶହ ପ୍ରଜା ସୋସାଲିଷ୍ଟ ପାର୍ଟିର କର୍ମୀମାନେ ଗିରଫ ହୋଇ ଜେଲ ମଧରେ ରହିଲେ । ଏହି ଘଟଣାର ଗୁରୁତର ପ୍ରଭାବ ରାଜ୍ୟର ଶାସନ କଳ ଉପରେ ପଡ଼ିଲା । ଫଳରେ ୧୯୬୯ ମସିହାରେ ବିହାର, ଓଡିଶା, ପଶ୍ଚିମବଙ୍ଗ ଓ କେନ୍ଦ୍ର ସରକାରଙ୍କ ମଧରେ ପ୍ରସ୍ତାବିତ ସୁବର୍ଣ୍ଣରେଖା ନଦୀ ଯୋଜନାର ଚୂଡାନ୍ତ ନିଷ୍ପତ୍ତି ଗ୍ରହଣ କରି ତିନି ରାଜ୍ୟର ସେତେବେଳର ମୁଖ୍ୟମନ୍ତ୍ରୀମାନଙ୍କ ସ୍ୱାକ୍ଷର କ୍ରମେ ଏକ ମିଳିତ କାର୍ଯ୍ୟକ୍ରମ ସ୍ଥିର କରାଗଲା । ଏହି କାର୍ଯ୍ୟକ୍ରମ ଅନୁଯାୟୀ ସୁବର୍ଣ୍ଣରେଖାରେ ପ୍ରବାହିତ ପାଣିରୁ କେଉଁ ରାଜ୍ୟ କେତେଅଂଶ ପାଇବ ଓ ସେଥିପାଇଁ କେଉଁ ରାଜ୍ୟ କେତେଅଂଶ ବହନ କରିବେ ତାହା ମଧ ସର୍ବସମ୍ମତିକ୍ରମେ ସ୍ଥିର କରାଗଲା । ଏହି ପ୍ରସ୍ତାବିତ ଯୋଜନାକୁ ଯଥାର୍ଥରେ କାର୍ଯ୍ୟକାରୀ କରିବା ପାଇଁ ବିହାରର ଚାଣ୍ଡିଲଠାରେ ସୁବର୍ଣ୍ଣରେଖା ନଦୀ ଉପରେ ବନ୍ଧ ବା ଜିଳରଭର ଏବଂ ମୟୂରଭଞ୍ଜରୁ ପ୍ରବାହିତ ହୋଇ ସୁବର୍ଣ୍ଣରେଖାରେ ମିଶିଥିବା ଗଡକେଇ ନଦୀର ଇଛାଠାରେ ଆଉ ଏକ ବନ୍ଧ ବା ଜିଳରଭର ହେବାର ପ୍ରସ୍ତାବ ହେବା ସଙ୍ଗେ ସଙ୍ଗେ ଓଡିଶାର ମୟୂରଭଞ୍ଜ ଓ ବାଲେଶ୍ୱର ଜିଲ୍ଲାକୁ ଜଳ ଯୋଗାଣ ପାଇଁ ଗାଲୁଡିହୀ (ବିହାର)ଠାରେ ଏକ ଆନିକଟ ହେବା ବିଷୟ ଏହି ଯୋଜନାର ଅନ୍ତର୍ଭୁକ୍ତ ହେଲା । ଉକ୍ତ ଆନିକଟରୁ ଏକ

ଜଳଯୋଗାଣ କେନାଲ ବିହାର ରାଜ୍ୟ ମଧ ଦେଇ ମୟୂରଭଞ୍ଜ ଜିଲ୍ଲାରେ ପ୍ରବେଶ କରି ବାଲେଶ୍ୱରର ବସ୍ତା ପର୍ଯ୍ୟନ୍ତ ଯିବାର ମଧ ବ୍ୟବସ୍ଥା ରଖାଗଲା ।

ସୁବର୍ଣ୍ଣରେଖା ଯୋଜନାରୁ ଓଡିଶାର ଅଂଶ ରୂପେ ଯେଉଁ ପାଣି ମିଳିବ ତାହା ଅନାଟନ ବେଳକୁ ଜଳସେଚନ ପାଇଁ ଦେଓଳିଠାରେ ଏକ ରିଜରଭର କରିବା ସଙ୍ଗେ ସଙ୍ଗେ ହଳଦିଆ ବନ୍ଧରେ ଥିବା ରିଜରଭରକୁ ଅଧିକ ଦୃଢ କରିବା ସହ ବାଉରାନାଳ ଉପରେ ଏକ ରିଜରର୍ଭର କରିବା ଏହାର ଅନ୍ତର୍ଗତ ଥିଲା । ଏହି ଯୋଜନା ଯେ ମୟୂରଭଞ୍ଜର ପ୍ରାୟ ୩ଲକ୍ଷ ଲୋକଙ୍କ ଭାଗ୍ୟ ଦିନେ ବଦଳାଇ ପାରିବ ଏଥିରେ କୌଣସି ସନ୍ଦେହ ନାହିଁ । ଆଦିବାସୀ ଅଧୁଷିତ ଅତି ଅନୁନ୍ନତ ମୟୂରଭଞ୍ଜ ଲୋକଙ୍କ ବହୁ ଆକାଙ୍‌କ୍ଷିତ ଏହି ଯୋଜନା ରୂପାୟିତ ହେବାକୁ ଯାଉଥିବାରୁ ଲୋକଙ୍କ ମନରେ ବହୁ ଉତ୍ସାହ ଓ ଉଦ୍ଦୀପନା ଜନ୍ମିଲା । ଏହି ଯୋଜନା କେନ୍ଦ୍ରସରକାରଙ୍କ ମଞ୍ଜୁରୀ ପାଇଲାପରେ ବିଶ୍ୱବେଙ୍କର ଋଣରେ ନିର୍ମିତ ହେବାର ନିଷ୍ପତ୍ତି ନିଆଯାଇଥିଲେ ହେଁ ରାଜ୍ୟସରକାର କିଛିଦିନ ଗଡାଇ ଦେବାର ଚେଷ୍ଟା କଲେ । ଭୁବନେଶ୍ୱରରୁ ବେତନଟୀ ଫେରୁଥିବା ସମୟରେ ବାଟରେ ପୁରୀ ଓ କଟକ ଜିଲ୍ଲାର ତ୍ରିକୋଣଭୂମିର ଜଳସେଚନପାଇଁ ନିର୍ମିତ କେନାଲ ଗୁଡିକରେ ଢେଉମାରୁଥିବା ପାଣି ଦେଖି ମନ ମଧରେ ବିଦ୍ରୋହୀ ହୋଇ ଉଠୁଥିଲି । ସୁବର୍ଣ୍ଣ ରେଖାର କେନାଲ ଦିନେ କ'ଣ ଏହିପରି ଜଳତରଙ୍ଗ ସୃଷ୍ଟି କରିପାରିବ ନାହିଁ, ଏହିପରି ଭାବନା ମୋ ମନକୁ ବେଳେ ବେଳେ ଉଦ୍‌ବେଳିତ କରି ପକାଉଥିଲା । ସେତେବେଳେକୁ ପ୍ରାୟ ଏକ ବର୍ଷ ହେବ ବିହାର ରାଜ୍ୟ ଚାଣ୍ଡିଲଠାରେ ରିଜର୍ଭର ଓ ଓଡିଶାକୁ ଜଳଯୋଗାଣ ପାଇଁ ଗାଲୁଡିହିଠାରେ ଅନିକଟ ନିର୍ମାଣର କାର୍ଯ୍ୟାରମ୍ଭ ହୋଇ ଥିଲେ ହେଁ ଓଡିଶା ସରକାରଙ୍କ ନିଷ୍କ୍ରିୟତା ଯୋଗୁଁ କେନାଲ ଖୋଳା ହୋଇ ପାରି ନଥିଲା । ଯାହା ହେଉ ୧୯୮୭ ବେଳକୁ ମୁଖ୍ୟମନ୍ତ୍ରୀ କେନାଲର ଭୂମିପୂଜା କଲେ ଓ ତହିଁର କିଛି ଦିନପରେ ମୁଁ କେନାଲର ଶୁଭ ଦେଲି । ମୁଁ ସେତେବେଳେକୁ ବିଧାନସଭାର ଅଧକ୍ଷ ଥିବା ଯୋଗୁଁ ସୁବର୍ଣ୍ଣରେଖା ଯୋଜନାର କାର୍ଯ୍ୟ ଆଗେଇ ନେବାରେ ସଫଳ ହୋଇପାରିଲି । ସେତେବେଳକୁ ଏହି ଯୋଜନାର ଅଟକଳ ଏକହଜାର କୋଟିରେ ପହଞ୍ଚିଲାଣି ।

ସୁବର୍ଣ୍ଣରେଖା ଯୋଜନାର କେନାଲ କାର୍ଯ୍ୟ ଆରମ୍ଭ ହେଲାପରେ ମୁଁ ଦୁଇଥର ବିହାରକୁ ଯାଇ ଗାଲୁଡିହିର ଆନିକଟ ନିର୍ମାଣ ଓ ବିହାର ସରକାରଙ୍କ ଦ୍ୱାରା ଖନନ ହୋଇଥିବା ମୟୂରଭଞ୍ଜ ସୀମା ପର୍ଯ୍ୟନ୍ତ କେନାଲ ଗୁଡିକର ପରିଦର୍ଶନ କରିଥିଲି । କେନାଲ ଖନନ କାର୍ଯ୍ୟର ଅଗ୍ରଗତି ପ୍ରତି ସର୍ବଦା ସଜାଗ ଦୃଷ୍ଟି ରଖିଥିବାରୁ ମୟୂରଭଞ୍ଜରେ ଖୋଳା ଯାଇଥିବା କେନାଲ ଗୁଡ଼ିକ ବିହାର ଅଞ୍ଚଳର କେନାଲଠାରୁ ଉତ୍କୃଷ୍ଟତର ହୋଇଥିଲା । ଏହିପରି ବୃହତ ଜଳସେଚନ ଯୋଜନାର କାର୍ଯ୍ୟ ଦେଖିଲା ପରେ ଏହାର କାର୍ଯ୍ୟକ୍ରମରେ କେତେକ ପରିବର୍ତ୍ତନ କରାଇ ପାରିଥିଲି । ୧୯୮୯ରେ ମୁଖ୍ୟମନ୍ତ୍ରୀଙ୍କ ନେତୃତ୍ୱରେ ଏହି ଯୋଜନା ସଂପର୍କରେ ଏକ ଉଚ୍ଚ ସ୍ତରୀୟ କମିଟି ଗଠିତ ହୋଇଥିଲା । ଏହି ଯୋଜନାର ଯେଉଁ ସବୁ ୪ର୍ଥଶ୍ରେଣୀ ପଦ ସୃଷ୍ଟି ହେବ ସେଗୁଡିକ ଏହି ଯୋଜନା ଯୋଗୁଁ ଘରବାଡି ଓ ଜମି ହରାଇଥିବା ଲୋକଙ୍କଦ୍ୱାରା ପୂରଣ କରାଯିବ ଓ ସେହିପରି ଯେଉଁ ସବୁ ୩ୟଶ୍ରେଣୀ ପଦ ସୃଷ୍ଟି ହେବ ସେଗୁଡିକରେ ମଧ ଏହିପରି ପରିବାରର ଲୋକ ବା ମୟୂରଭଞ୍ଜର ଅନ୍ୟ ଅଞ୍ଚଳର ଲୋକଙ୍କୁ ନିଯୁକ୍ତି ଦିଆଯିବା ବିଷୟ ଏହି କମିଟିରେ ସ୍ଥିର କରାଯାଇଥିଲା । ଏହା ପୂର୍ବରୁ ଏଥିପାଇଁ ଶତକଡା ୫୦ଭାଗ ଲୋକଙ୍କୁବାହାରୁ ନିଯୁକ୍ତି ଦିଆଯାଇଥିଲା । କ୍ଷତିପୂରଣ ବାବଦରେ ଧାର୍ଯ୍ୟ ପରିମାଣଠାରୁ ଦୁଇହଜାର ଟଙ୍କା ଅଧିକ କରାଯିବାରୁ ଘରବାଡି ହରାଇଥିବା ଲୋକେ ଅଧିକ ଲାଭବାନ ହୋଇପାରିଲେ । ଅଧିକୃତ ହୋଇଥିବା ଜମିଗୁଡିକ ବୁଡି ନ ଯିବା ପର୍ଯ୍ୟନ୍ତ କ୍ଷତିପୂରଣ ପାଇ ମଧ ଲୋକେ ଚାଷ କରିବାର ସୁବିଧା ମଧ କରାଗଲା । କିନ୍ତୁ ମୁଁ ବିଧାନସଭାର ସଭ୍ୟ ପଦରୁ ଚାଲିଗଲାପରେ ଓ ରାଜ୍ୟରେ ନୂତନ ଜନତା ସରକାର ପ୍ରତିଷ୍ଠିତ ହେଲାପରେ ପୂର୍ବରୁ ପ୍ରଚଳିତ ଶତକଡା ୫୦ଭାଗ

ବାହାରୁ ନିଯୁକ୍ତି ବ୍ୟବସ୍ଥା ଲାଗୁ ହେବା ସହିତ କ୍ଷତିପୂରଣ କ୍ଷେତ୍ରରେ ମଧ ନାନାବିଧ ବିଶୃଙ୍ଖଳା ଉପୁଜିଲା । ତେଣୁ ଝାଡଖଣ୍ଡ ଓ ସ୍ଥାନୀୟ ଲୋକଙ୍କ ସହିତ ସୁବର୍ଣ୍ଣରେଖା ଯୋଜନାରେ ନିଯୁକ୍ତ ଅଫିସର ଓ ପୋଲିସ ସହିତ ସଂଘର୍ଷ ଘଟି ଅନେକ ଦିନଧରି ସମସ୍ତ କାର୍ଯ୍ୟ ବନ୍ଦ ହୋଇଗଲା । ଏହାପରେ ଯେଉଁମାନେ ସୁବର୍ଣ୍ଣରେଖା ଯୋଜନାରେ ଘରବାଡି ବୁଡିଯାଉଥିବା ହେତୁ ମୋତେ ଦୋଷାରୋପ କରି ମୋ ବିରୁଦ୍ଧରେ ଭେଟି ଦେଇଥିଲେ ସେମାନେ ଅନୁତାପ କଲେ ।

ଏହି ଯୋଜନାର ଓଡିଶା ଅଂଶର ନିର୍ମାଣ କାର୍ଯ୍ୟ ପାଇଁ ଜଣେ ମୁଖ୍ୟଯନ୍ତ୍ରୀଙ୍କ ସମେତ ଜଣେ ସୁପରିଣ୍ଟେଣ୍ଡେଟ୍ ଇଞ୍ଜିନିୟର ଓ କାର୍ଯ୍ୟକାରୀ କ୍ଷେତ୍ରରେ ନିର୍ମାଣ କାର୍ଯ୍ୟପାଇଁ ୫୧.୬ ଜଣ ନିର୍ବାହୀ ଯନ୍ତ୍ରୀ ନିଯୁକ୍ତ ହୋଇଛନ୍ତି । ବାରିପଦା ନିକଟସ୍ଥ ଲକ୍ଷ୍ମୀପୋଷିଠାରେଏହା ମୁଖ୍ୟ କାର୍ଯ୍ୟାଳୟ ତଥା ଦେଉଳି ଓ ସଂକଟାଠାରେ ଦୁଇଟି ସବ୍‌ଡିଭିଜନ କାର୍ଯ୍ୟାଳୟ ସ୍ଥାପିତ ହୋଇଅଛି । ଏସବୁ ସତ୍ତ୍ୱେ କେନାଲ ନିର୍ମାଣ କାର୍ଯ୍ୟ ଦେଉଳି ଠାରେ ଜମ୍ବୀର ନଦୀ ଉପରେ ରିଜର୍ଭର ବା ହଳଦିଆ ରିଜର୍ଭରର ବୃଦ୍ଧି ପ୍ରଭୃତି ଯେଉଁ ସମସ୍ତ କାର୍ଯକ୍ରମ ଥିଲା ପ୍ରାୟ ତିନିବର୍ଷରୁ ଅଧିକ ସମୟ ବିତି ଯାଇଥିଲେ ହେଁ ସେ ଗୁଡିକର ଲକ୍ଷ୍ୟ ପୂରଣ ହୋଇପାରିନାହିଁ । ଅର୍ଥଭାବ ହେତୁ ବହୁ ସମୟରେ କାମ ଚାଲିପାରୁନାହିଁ । ଯୋଜନାର ମୂଳ ଲକ୍ଷ୍ୟ ଅନୁସାରେ ୧୯୯୦ ବେଳକୁ ୧୫ ହଜାର ହେକ୍ଟର ଜମିରେ ଜଳ ଯୋଗାଣ ଓ ୧୯୯୫ ବେଳକୁ ୫୦ହଜାର ହେକ୍ଟର ଓ ୨୦୦୦ ଶତାବ୍ଦୀବେଳକୁ ଅବଶିଷ୍ଟ ୩୦ ହଜାର ହେକ୍ଟର ଜମିରେ ଜଳଯୋଗାଣର ସଂଶୋଧିତ ଲକ୍ଷ୍ୟ ଧାର୍ଯ୍ୟ ହୋଇଥିଲେ ହେଁ ତାହା ତ୍ୱରାନ୍ୱିତ କରିବାର ଉଦ୍ୟମ ହେଉ ନ ଥିବା ଅତ୍ୟନ୍ତ ପରିତାପର ବିଷୟ । ଏପରିକି ପ୍ରଥମ ୨୦ କି.ମି ଲମ୍ୱର କେନାଲ ୧୯୮୯ରୁ ହୋଇ ସାରିଥିଲେ ହେଁ ସେ ସବୁର ଶାଖା ଓ ଉପଶାଖା କେନାଲମାନ ଏ ପର୍ଯ୍ୟନ୍ତ ହୋଇପାରିନାହିଁ । ଏପରିକି କେନାଲ ବା ରିଜର୍ଭର ହେବା ଯୋଗୁଁ ଯେଉଁ ମାନଙ୍କର ଜମିବାଡି ଜଳମଗ୍ନ ହେଉଛି ସେମାନଙ୍କୁ କ୍ଷତିପୂରଣ ଦେବା ବା ସେମାନଙ୍କର ଥଇଥାନ କରିବାର ବ୍ୟବସ୍ଥା ମଧ ଏ ଯାବତ୍ ଠିକ୍‌ଭାବରେ କରାଯାଇ ପାରିନାହିଁ । ଓଡିଶାର ତଥା ଅନ୍ୟ ରାଜ୍ୟମାନଙ୍କରେ ଏହିପରି ଯୋଜନା ଯୋଗୁଁ ଘରବାଡି ବୁଡିଯାଇଥିବା ଲୋକଙ୍କ ପ୍ରକୃତ ଥଇଥାନ ହୋଇପାରି ନ ଥିବାରୁ ଲୋକେ ଅତି ଦୁଃଖରେ କାଳ କାଟୁଛନ୍ତି । ତେଣୁ ଏ ଯୋଜନା ନିର୍ମାଣ ବେଳେ ଏହାର ପୁନରାବୃତ୍ତି ନ କରାଇ ଦେବାକୁ ଆମର ଋଣଦାତା ବିଶ୍ୱବେଙ୍କ୍ ରାଜ୍ୟ ସରକାରଙ୍କୁ ନିଜ ବ୍ୟୟରେ ଲୋକଙ୍କ ଥଇଥାନ ବ୍ୟବସ୍ଥା ସଂପୂର୍ଣ୍ଣ ନ ହେବା ଯାଏ ଋଣ ପଇଠ କରିବେ ନାହିଁ ବୋଲି ଜଣାଇ ଦେଇଛନ୍ତି । ରାଜ୍ୟ ସରକାର ଏ ପର୍ଯ୍ୟନ୍ତ ତାହା କରିନଥିବାରୁ ଏକ ସ୍ଥାଣୁ ଅବସ୍ଥା ଘଟିଛି ।

ମହାନଦୀ ଓ କାଠଯୋଡି ପ୍ରଭୃତି କଟକ ଜିଲ୍ଲାରେ କେତୋଟି ଆନିକଟ ଗଞ୍ଜାମ ଜିଲ୍ଲାରେ କୁଶଭଦ୍ରା ଓ ପାରଳାଖେମଣ୍ଡି ଅଞ୍ଚଳରେ ମାତ୍ର କେତୋଟି ଜଳସେଚନ ପ୍ରକଳ୍ପ ଥିଲା । ତେଣୁ ଜଳସେଚନ କ୍ଷେତ୍ରରେ ଓଡିଶାରେ ମୟୂରଭଞ୍ଜର ସ୍ଥାନ ଶୂନ୍ୟ କହିଲେ ଅତ୍ୟୁକ୍ତି ହେବନାହିଁ । ମୟୂରଭଞ୍ଜର ତଦାନୀନ୍ତନ ମହାରାଜା ଶ୍ରୀରାମ ଚନ୍ଦ୍ର ଭଞ୍ଜଙ୍କ ସମୟରେ ବୁଢାବଳଙ୍ଗ ନଦୀ ଉପରେ ଏକ ବୃହତ ଜଳସେଚନ ଯୋଜନାର କଳ୍ପନା କରାଯାଇ ସେଥିପାଇଁ କିଛି ଅର୍ଥ ଗଚ୍ଛିତ ରଖାଯାଇଥିବାର ଜଣାଯାଇଥିଲେ ହେଁ ମୟୂରଭଞ୍ଜ ଭଳି ଏକ ରାଜ୍ୟରେ ଏତେବଡ ପରିକଳ୍ପନା ସମ୍ୱଳ ଅଭାବରୁ ସମ୍ଭବ ହୋଇ ପାରି ନ ଥିବା ଜଣାଯାଏ । ପରବର୍ତ୍ତୀ ରାଜଶାସନ ବା ମୟୂରଭଞ୍ଜର ଓଡିଶାରେ ମିଶ୍ରଣପରେ ମଧ ଏ ଜିଲ୍ଲାର ବାରଂବାର ଦାବୀ ସତ୍ତ୍ୱେ ମଧ ଏପରି ଏକ ଯୋଜନା କାର୍ଯ୍ୟକାରୀ କରିବାର ଉଦ୍ୟମ ହୋଇପାରିନଥିଲା । କଟକ ପୁରୀ ଜିଲ୍ଲାର ବନ୍ୟାନିୟନ୍ତ୍ରଣ ପାଇଁ ପ୍ରଥମ ପଞ୍ଚବାର୍ଷିକ ଯୋଜନା କାଳରେ ସମ୍ୱଲପୁର

ଜିଲ୍ଲାର ହୀରାକୁଦଠାରେ ମହାନଦୀ ଉପରେ ବହୁ ଅର୍ଥ ବିନିଯୋଗ କରି ହୀରାକୁଦ ବନ୍ଧ ନିର୍ମାଣ କରାଗଲା । ତଦ୍ୱାରା ଯେ କେବଳ ମହାନଦୀର ବନ୍ୟା ନିୟନ୍ତ୍ରଣ କରାଗଲା ତା ନୁହେଁ ସମ୍ବଲପୁର ଓ ବଲାଙ୍ଗୀର ଜିଲ୍ଲାର ୨।୩ଲକ୍ଷ ଏକର ଜମିରେ ସ୍ଥାୟୀ ଜଳ ସେଚନର ସୁବିଧା ହୋଇ ପାରିଲା । ଏହାପରେ କଟକ ଓ ପୁରୀ ଜିଲ୍ଲାର ମହାନଦୀ ତ୍ରିକୋଣ ଭୂମି ଉପରେ ଏକ ଜଳସେଚନ ଯୋଜନା ମଧ୍ୟ ଆରମ୍ଭ ହେଲା । ଏହା ପଛକୁ ବାଲେଶ୍ୱର ଓ କେଉଁଝର ଜିଲ୍ଲାରେ ଜଳସେଚନ ପାଇଁ ହଦଗଡ ଜଳ ସେଚନ, ବିଦ୍ୟାଧରପୁର ଆନିକଟ ଏବଂ କୋରାପୁଟର ପଟେରୁ ଜଳସେଚନ ଯୋଜନା ପ୍ରଭୃତି ବୃହତ ଯୋଜନା ମାନ କାର୍ଯ୍ୟକାରୀ କରାଗଲା ମାତ୍ର ମୟୂରଭଞ୍ଜକୁ ଦୃଷ୍ଟି ନ ଦେବାରୁ ତାହା ଜଳସେଚନ ଦୃଷ୍ଟିରୁ ଓଡିଶାର ସର୍ବନିମ୍ନ ଜିଲ୍ଲାରେ ପରିଣତ ହେଲା । ମୟୂରଭଞ୍ଜ ଜିଲ୍ଲାର ୧୦ଟି ବିଧାନସଭା ଆସନ ମଧ୍ୟରୁ ସାଧାରଣ ସ୍ଥାନ କ୍ରମେ କମି କମି ମାତ୍ର ଗୋଟିଏ ସ୍ଥାନରେ ଆସି ପହଞ୍ଚିଲା । ଏହାଫଳରେ ବିଧାନସଭାରେ ମୟୂରଭଞ୍ଜ ପାଇଁଜଳସେଚନ ଓ ଶିଳ୍ପୋନ୍ନତି କ୍ଷେତ୍ରରେ ସ୍ୱର ମଧ୍ୟ କ୍ଷୀଣ ହୋଇଗଲା । ସେହି ମୁଷ୍ଟିମେୟ ଶକ୍ତି ମଧ୍ୟରେ ଜନସାଧାରଣଙ୍କ ଅତୁଟ ସମର୍ଥନରେ ମୁଁ ବିଧାନ ସଭାରେ ମୟୂରଭଞ୍ଜର ଦୃଢ ଓ ନିର୍ଭିକ ଦାବୀ ଉପସ୍ଥାପନ କରିବାର ସୁଯୋଗ ହରାଇଲି ନାହିଁ । ଫଳରେ କିଛି କ୍ଷୁଦ୍ର, ଓ କାଳ ଖଡକେଇ, ନେସା ଓ ସୁନେଇ ଭଳି ମଧ୍ୟମ ଧରଣର ଜଳସେଚନ ଯୋଜନା କାର୍ଯ୍ୟକାରୀ ହେଲା । ଏହି ପରିଣାମରେ ବାମନଘାଟି ଓ କପ୍ତିପଦା ସବଡିଭିଜନରେ କିଛି ଆଖି ଦୃଶିଆ କାର୍ଯ୍ୟ ହୋଇ ପାରିଲା ଓ କିଛି ଲୋକ ଉପକୃତ ହୋଇପାରିଲେ ।

## ଶିମିଳିପାଳ ପର୍ବତମାଳାର ସୁରକ୍ଷା''

ସୁବର୍ଣ୍ଣରେଖା ଯୋଜନା ପରେ ମୋର ମୁଖ୍ୟ ଉନ୍ନୟନ କାର୍ଯ୍ୟ ମଧ୍ୟରେ ଥିଲା ଶିମିଳିପାଳ ପର୍ବତମାଳାର ସଂପୂର୍ଣ୍ଣ ସୁରକ୍ଷା ଓ ତାକୁ ଏକ ଜୀବମଣ୍ଡଳରେ ପରିଣତ କରବା । ଶିମିଳିପାଳ ପର୍ବତମାଳା ମାନବ ଜାତିର ମଙ୍ଗଳ ପାଇଁ ପ୍ରକୃତିର ଏକ ମହାନ ଅବଦାନ ଏହା କେହି ଅସ୍ୱୀକାର କରିପାରିବ ନାହିଁ । ଏହି ପର୍ବତମାଳା ଓଡିଶା ବିହାର ଓ ପଶ୍ଚିମବଙ୍ଗ ଏହି ତିନି ରାଜ୍ୟର ସୀମାର ମିଳନ ସ୍ଥଳରେ ଅବସ୍ଥିତ ହୋଇ ଉକ୍ତ ତିନି ରାଜ୍ୟର ତଥା ମଧ୍ୟ ଭାରତର ଏକ ବିସ୍ତୀର୍ଣ୍ଣ ଅଞ୍ଚଳରେ ପରିବେଶ ସୁରକ୍ଷା କରିବାରେ ସହାୟକ ହୋଇପାରିଛି । ଏହି ମହାନ୍ ସଂପଦ ମୟୂରଭଞ୍ଜ ଜିଲ୍ଲାରେ ଥିବାରୁ ଆମେ ଏଥିପାଇଁ ବିଶେଷ ଗର୍ବିତ । ଏହା ଏହି ଜିଲ୍ଲାର ମଧ୍ୟ ଭାଗରେ ଉତ୍ତରରୁ ଦକ୍ଷିଣକୁ ଲମ୍ବ ଯାଇଥିବାରୁ ସମଗ୍ର ଜିଲ୍ଲାକୁ ଦୁଇଭାଗରେ ବିଭକ୍ତ କରିଛି । ଏହାର ପଶ୍ଚିମ ଭାଗରେ ପାଞ୍ଚପୀଡ ଓ ବାମନଘଟ ଓ ପୂର୍ବ ଭାଗରେ ସଦର ଓ ଉଦ୍‌ଳା ଏହି ପରି ୪ଟି ଉପଖଣ୍ଡମାନ ରହିଅଛି । ଏହି ପର୍ବତମାଳାର ଗୁରୁତ୍ୱପୂର୍ଣ୍ଣ ଅବସ୍ଥିତି ଯୋଗୁଁ ବହୁ ଛୋଟ ବଡ ଜଳ ସ୍ରୋତ ସାଙ୍ଗକୁ ବୁଢାବଳଙ୍ଗ, ସୋନ, ଗଙ୍ଗାହାର, ଖଡକେଇ, ବଙ୍କବଳ,ଦେଓ ଏବଂ ଖଇର ଉଣ୍ଡନ ନାମରେ ପ୍ରବାହିତ ନଦୀଗୁଡିକ ପର୍ବତରେ ଦୁଇପାଖ ଅଞ୍ଚଳକୁ ପ୍ରବାହିତ ହୋଇ କୃଷି ନିମିତ୍ତ ଏକ ପ୍ରାକୃତିକ ଜଳଯୋଗାଣର ସୁବିଧା ଆଣି ଦେଇଛି । ଶିମିଳିପାଳ ପର୍ବତର ମହାନ ପ୍ରାକୃତିକ ବନସଂପଦର ଆୟତନ ପ୍ରାୟ ତିନିହଜାର ବର୍ଗ କିମିରୁ ଅଧିକ । ଏତଦ୍ ବ୍ୟତୀତ ଜିଲ୍ଲାର ବ୍ୟାପକ ସମତଳ ଅଞ୍ଚଳ ମଧ୍ୟ ବନ ଜଙ୍ଗଲରେ ଭରପୂର ହୋଇ ରହିଥିଲା । ସମତଳ ଅଞ୍ଚଳରେ ଥିବା ବନସଂପଦର କ୍ଷୟ ହୋଇଗଲା ପରେ ଏବେ ଶିମିଳିପାଳ ପର୍ବତରେ ଥିବା ବନ ସଂପଦର କ୍ଷୟ ସାଧନ ଚାଲିଛି । ଏତେ କ୍ଷତି ହୋଇଗଲା ପରେ ବି ଯେତିକି ଜଙ୍ଗଲ ଏବେ ରହିଛି ତାହା ଦେଖିଲେ ଆଶ୍ଚର୍ଯ୍ୟ ହେବାକୁ ହୁଏ । ଏଥିରେ ଥିବା ଘଞ୍ଚ ନଭସ୍ପର୍ଶୀଶାଳ, ପିଆଶାଳ, ଚମ୍ପା, ଗମ୍ଭାରୀ ଶିଶୁ ପ୍ରଭୃତି ବୃକ୍ଷ ରାଜି, ଜଳପ୍ରପାତ, ଝରଣା ଗୁଡିକର କୁଳୁନାଦ, ଅସୁମାରୀ ପକ୍ଷୀଙ୍କ କଳରବ ସାଙ୍ଗକୁ ଅସଂଖ୍ୟ ମିରିଗ, ସମ୍ବର, ବାର୍ହା, ବଣ ମହିଷି, ହଲପଲ ହାତୀ, ମହାବଳ ବାଘ ସହ ଅନ୍ୟାନ୍ୟ

ଜାତିର ବାଘ, ଶିଆଳ ବଳିଆ କୁକୁର ବଣ କୁକୁଡା, ମୟୂର ମୟୂରୀର ନୃତ୍ୟ ଦର୍ଶକଙ୍କୁ ମୁଗ୍ଧ କରେ । ଶୁଆ, ଶାରୀ, କୋଚିଲାଖାଇ ପ୍ରଭୃତି ମୂଲ୍ୟବାନ ଓ ଦୁର୍ଲଭ ପକ୍ଷୀ ଏଠାରେ ଦେଖିବାକୁ ମିଳେ । ଭାରତର ବିଖ୍ୟାତ ପକ୍ଷୀବିଶେଷଜ୍ଞ ସ୍ୱର୍ଗତ ଡକ୍ଟର ସାଲିମ୍ଅାଲିର ବହୁଦିନ ପୂର୍ବେ ଶିମିଳିପାଳ ପରିଭ୍ରମଣରେ ଆସି ବିଶ୍ୱରେ ଲୋପ ପାଇଁ ଯାଇଥିବା କେତେକ ଜାତିର ପକ୍ଷୀ ମେଗାସନି ପର୍ବତର ଶୃଙ୍ଗରେ ଦେଖିବାକୁ ପାଇଥିଲେ ବୋଲି ଶୁଣାଯାଏ । ଓଡିଶାର ପକ୍ଷୀ ବିଶେଷଜ୍ଞ ଓ ପୂର୍ବତନ ବିଧାନ ସଭାସଭ୍ୟ ଶ୍ରୀଯୁକ୍ତ ଉଦୟନାରାୟଣ ଦେବ ବହୁବାର ଶିମିଳିପାଳ ପରିଦର୍ଶନରେ ଆସି ସେଠାରେ ପଶୁପକ୍ଷୀଙ୍କ ଗତିବିଧି ଲକ୍ଷ୍ୟ କରି କହନ୍ତି ଯେ, ବହୁ ପ୍ରକାର ବାହାର ପକ୍ଷୀ ମଧ ଶିମିଳିପାଳ ଆସନ୍ତି । ଭୁବନେଶ୍ୱର କୃଷି ମହାବିଦ୍ୟାଳୟର ପୂର୍ବତନ ଡିନ ଡକ୍ଟର ବି.ଏନ. ସାହୁ ଶିମିଳିପାଳ ସଂକ୍ରାନ୍ତରେ ଅନୁଧ୍ୟାନ କରି କହନ୍ତି ଯେ, ଏଠାରେ ହିମାଳୟଠାରୁ କମ୍ ଥଣ୍ଡା ହେଉଥିବାରୁ ହିମାଳୟ ଅଞ୍ଚଳର କେତେକ ପକ୍ଷୀ ଅଣ୍ଡା ଦେବା ପାଇଁ ଏଠାକୁ ଆସିଥାନ୍ତି ।

ଏହି ପର୍ବତମାଳାରେ ବଡ ବଡ ଅଜଗରଠାରୁ ଆରମ୍ଭ କରି ଅହିରାଜ ଓ ଅନ୍ୟଜାତିର ସର୍ପ ଓ ସରିସୃପ ଦେଖାଯାଆନ୍ତି । ଶିମିଳିପାଳର ଶ୍ରେଷ୍ଠ ଆକର୍ଷଣୀୟ ପ୍ରକୃତିର ଅବଦାନ ମଧ୍ୟରେ ବରେଇପାଣି ଓ ଜୋରନ୍ଦାର ଦୁଇଟି ଜଳ ପ୍ରପାତ ଓ ସୌନ୍ଦର୍ଯ୍ୟ ଭରା ପ୍ରାୟ ଚାରିହଜାର ଫୁଟ ଉଚ୍ଚଶୃଙ୍ଗ ବିଶେଷ ଉଲ୍ଲେଖ ଯୋଗ୍ୟ । ବୁଢାବଳଙ୍ଗ ନଦୀରେ ପ୍ରାୟ ୯୦୦ ଫୁଟ ଉଚ୍ଚରୁ ବରେଇପାଣି ଜଳପ୍ରପାତ ଗଡାଣିଆଁ ଭାବରେ ପଡୁଥିବାବେଳେ ଜୋରନ୍ଦାରେ ୫୦୦ ଫୁଟ ଉଚ୍ଚରୁ ସିଧାସଳଖ ଭାବରେ ଜଳ ପଡୁଅଛି । ଜୋରନ୍ଦାରୁ ଜଳପ୍ରପାତ ଦୂରରୁ ପରିଷ୍କାର ଭାବରେ ଦେଖାଯାଇଥିଲେ ମଧ ବରେଇପାଣି ଜଳପ୍ରପାତ ସ୍ଥଳ ବିଶେଷରେ ଦେଖାଯାଏ ନାହିଁ ବା ନିକଟକୁ ଯିବାର ମଧ ସୁବିଧା ନାହିଁ । ବିଦ୍ୟୁତ ଚାଳିତ ରଜ୍ଜୁପଥର ବ୍ୟବସ୍ଥା ହୋଇ ପାରିଲେ ଏ ଦୁଇସ୍ଥାନ ପରିଦର୍ଶନର ବିଶେଷ ସୁବିଧା ହୋଇପାରନ୍ତା । ସର୍ବଶ୍ରେଷ୍ଠ ପ୍ରାକୃତିକ ସ୍ଥାନ ମେଘାସିନିର ମନୋରମ ପ୍ରାକୃତିକ ପରିବେଶ ବର୍ଣ୍ଣନାତୀତ ନ ଦେଖିଲେ ଅନୁଭବ ଅସମ୍ଭବ । ଶିମିଳିପାଳ ପର୍ବତମାଳା ଯେ କେବଳ ପରିବେଶ ସୁରକ୍ଷା କରିପାରୁଛି ତା ନୁହେଁ । ଏହା ମାନବ ସମାଜ ପାଇଁ ପ୍ରକୃତିର ଏକ ବହୁମୁଖୀ ଅବଦାନ । ଶିମିଳିପାଳ ପର୍ବତରୁ ପ୍ରବାହିତ ଜଳସ୍ରୋତ କେବଳ ଯେ ମୟୂରଭଞ୍ଜ ମଧ୍ୟରେ ପ୍ରବାହିତ ହୋଇ ଏହି ଅଞ୍ଚଳରେ ଜଳ ଯୋଗାଉଛି ତା ନୁହେଁ ଏହା ବିହାର ଓ ମଧ ପ୍ରଦେଶରୁ ପ୍ରବାହିତ ନଦୀଗୁଡିକୁ ମଧ ଜଳ ଯୋଗାଇ ପାରୁଛି । ସୁବର୍ଣ୍ଣରେଖା ମୟୂରଭଞ୍ଜ ଓ ବାଲେଶ୍ୱର ସୀମାରେ ପ୍ରବାହିତ ହେଉଥିବାରୁ ଖଡକେଇ ସୁବର୍ଣ୍ଣ ରେଖାକୁ ଶାଳନ୍ଦୀ ଓ ଦେଓ ନଦୀ ବୈତରଣୀକୁ ଜଳଯୋଗାଉଛନ୍ତି । ଶିମିଳିପାଳର ଜଙ୍ଗଲ ସଂପଦ ନଷ୍ଟ ହୋଇଗଲେ ଏ ସମସ୍ତ ନଦୀ ଓ ନାଳରୁ ପ୍ରବାହିତ ଜଳସଂପଦ ମଧ ଭୀଷଣ ଭାବେ କ୍ଷତିଗ୍ରସ୍ତ ହେବ । ସର୍ବୋପରି ପ୍ରତିବର୍ଷ ଯେଉଁ ମୌସୁମୀବାୟୁ ବଙ୍ଗୋପ ସାଗରରୁ ପ୍ରବାହିତ ହୋଇ ଦେଶରେ ବୃଷ୍ଟି କରାଉଛି ତାହା ପ୍ରଥମ ଶିମିଳିପାଳ ପର୍ବତମାଳାରେ ବାଧାପାଇ ବିହାର ଓଡିଶା ଓ ପଶ୍ଚିମ ବଙ୍ଗ ସମେତ ମଧ ଭାରତର ବ୍ୟାପକ ଅଞ୍ଚଳକୁ ବର୍ଷା ଯୋଗାଇ ଶସ୍ୟଶ୍ୟାମଳା କରୁଛି ଓ ମରୁଡି ଦାଉରୁ ରକ୍ଷା କରିପାରୁଛି । ଶିମିଳିପାଳର ଚିରଦିନେ ଦକ୍ଷିଣପୂର୍ବ ରେଳପଥର ସମସ୍ତ ଆବଶ୍ୟକତା ପୂରଣ କରିବା ସହ ସନ୍ନିହିତ ପଶ୍ଚିମବଙ୍ଗ ରାଜ୍ୟକୁ ମଧ ବହୁ କାଠ ଯୋଗାଇ ପାରୁଥିଲା । ଏତଦ୍ ବ୍ୟତୀତ ଶିମିଳିପାଳ ବହୁ ଜଙ୍ଗଲଜାତ ଦ୍ରବ୍ୟର ଗନ୍ତାଘର କହିଲେ ଅତ୍ୟୁକ୍ତି ହେବନାହିଁ । ଏହି ପର୍ବତରେ ଜଙ୍ଗଲରୁ ମହୁ, ଝୁଣା, ଅଠା, ପାଳୁଅ, ଔଷଧି ଗଛ ଓ ଛାଲି, ଅଁଳା, ହରିଡା, ବାହାଡା, ମହୁଆ, ଶାଳମଞ୍ଜି, ଶାଳପତ୍ର ଓ ତହିଁରୁ ପ୍ରସ୍ତୁତ ଖଲିପତ୍ର, ଚଉତି ଓ ମୂଲ୍ୟବାନ ହାତୀଦାନ୍ତ ପ୍ରଭୃତି ମିଳିଥାଏ । କାଗଜ କଳପାଇଁ ହାଲୁକାକାଠ, କରତକଳ ଗୁଡିକ ପାଇଁ ମୂଲ୍ୟବାନ କାଠ ଟସର କୋଷ ସହିତ ଟସରଚାଷପାଇଁ ବିହନ, ହରିଣ, ଚମଡା ଓ ଶିଙ୍ଗ ପ୍ରଭୃତି ଏହି ଜଙ୍ଗଲରୁ ମିଳିଥାଏ । ଶିମିଳିପାଳର ଆଭ୍ୟନ୍ତରୀଣ

ଅଞ୍ଚଳରେ ଥିବା ନଦୀ ଓ ନାଳ ମାନଙ୍କରୁ ଖଜୁରିଆ ନାମକ ଏକ ପ୍ରକାର ସୁସ୍ୱାଦୁ ମାଛ ମଧ ମିଳିଥାଏ । ଏଠାରୁ ମିଳୁଥିବା ଶାଳମଞ୍ଜିରେ ଏକ କାରଖାନା ମଧ ଚାଲିଛି । ଶିମିଳିପାଳ ମଧ ଏକ ଆକର୍ଷଣୀୟ ପରିଦର୍ଶନ କେନ୍ଦ୍ରଭାବେ ପରିଗଣିତ । ସେଥିପାଇଁ ଏଠାକାର ବ୍ୟାଘ୍ରସଂରକ୍ଷଣ ଯୋଜନା ଓ ଶିମିଳିପଲ୍ଲ ଉନ୍ନୟନ ସଂସ୍ଥା ଅଧୀନରେ କେତେ ଗୁଡିଏ ସ୍ଥାୟୀ ଡାକବଙ୍ଗଳାମାନ ରହିଅଛି । ମେଘାସନି ଶୃଙ୍ଗର ଆକର୍ଷଣୀୟ ଦୃଶ୍ୟ ସାଙ୍ଗକୁ ସେଠାରେ ଏକ ଡାକ ବଙ୍ଗଳା ଓ ପୋଲିସ ବିଭାଗର ବେତାର କେନ୍ଦ୍ର ମଧ ରହିଅଛି ।

ଏକ ଗବେଷଣାରୁ ଜଣାଯାଏ ଯେ ଶିମିଳିପାଳ ପର୍ବତମାଳାର ସ୍ଥିତି ସମଗ୍ର ଓଡିଶାକୁ ମରୁଭୂମିରେ ପରିଣତ ହେବାରୁ ରକ୍ଷାକରି ପାରିଛି । ଓଡିଶା ରାଜ୍ୟ ବିଶ୍ୱର ଯେଉଁ ଅକ୍ଷାଂଶରେ ଅବସ୍ଥିତି ଆଫ୍ରିକା ମହାଦେଶର ସାହାରା ଓ ଭାରତର ରାଜସ୍ଥାନ ମରୁଭୂମି ମଧ ସେହି ଅକ୍ଷାଂଶରେ ଅବସ୍ଥିତି । ତେଣୁଁ କେବଳ ଶିମିଳିପାଳ ପର୍ବତମାଳା ଯୋଗୁଁ ମୌସୁମୀବାୟୁର ପ୍ରଭାବରେ ଓଡିଶା ସାହାରା ବା ରାଜସ୍ଥାନ ଭଳି ମରୁଭୂମିରେ ପରିଣତ ହେବାରୁ ରକ୍ଷା ପାଇ ପାରିଛି । ଓଡିଶାର ବଲାଙ୍ଗୀର ଓ କଳାହାଣ୍ଡି ଜିଲ୍ଲାର ଜଙ୍ଗଲ ନଷ୍ଟ ହୋଇଯିବା ଯୋଗୁଁ ବରାବର ମରୁଡି ଘଟି ଏକ ମରୁଭୂମିରେ ପରିଣତ ହେବାର ଆଶଙ୍କା ପ୍ରକାଶ ପାଇଲାଣି । ସୁତରାଂ ଏହି ପର୍ବତମାଳାକୁ ସବୁ ନିମନ୍ତେ ରକ୍ଷା କରିବା ସର୍ବପ୍ରଥମ କର୍ତ୍ତବ୍ୟ ଏଥିରେ କୌଣସି ସନ୍ଦେହ ନାହିଁ । ସେଥିପାଇଁ ଏହି ପର୍ବତରୁ ଗଛ ନ କାଟିବା ନିଷ୍ପତ୍ତି ସରକାର ଗ୍ରହଣ କରିଛନ୍ତି । ଏହା ପୂର୍ବରୁ ଏଠାରେ ଜଙ୍ଗଲ ବିଭାଗ ତରଫରୁ ବୈଜ୍ଞାନିକ ଉନ୍ନତି ନାମରେ ଯେଉଁ ଗଛକଟା ଚାଲିଥିଲା ତଥା ଅନ୍ୟ ବାବଦରେ ବର୍ଷକୁ ପ୍ରାୟ ସର୍ବମୋଟ ଚାରିହଜାର କୋଟି ଟଙ୍କା ଆୟ ହେଉଥିଲା । ୧୦ବର୍ଷ ପୂର୍ବରୁ ପ୍ରାୟ ଏକବର୍ଗ କିଲୋମିଟର ଜଙ୍ଗଲରୁ ୧୨ ହଜାର ଟଙ୍କା ମିଳୁଥିବା ବିଷୟ ଏକ ସମୀକ୍ଷାରୁ ଜଣାଯାଇଥିଲା । ଭାରତବର୍ଷରେ କେବଳ କେରଳକୁ ଛାଡି ଦେଲେ ଅନ୍ୟାନ୍ୟ ରାଜ୍ୟରେ ଏକବର୍ଗ କି.ମି. ପରିମିତ ଜଙ୍ଗଲର ଆୟ ଅପେକ୍ଷା ଶିମିଳିପାଳର ଆୟ ସର୍ବୋଚ୍ଚ ଥିଲା । ଏହି ପ୍ରଲୋଭନ ପାଇଁ ଜଙ୍ଗଲ ବିଭାଗର ଲୋଲୁପ ଦୃଷ୍ଟି ଏହା ଉପରେ ପଡ଼ିଲା ଏବଂ ୧୯୭୮-୭୯ ମସହାରେ ଏହି ପର୍ବତମାଳାର ୨୭୦୦ ବର୍ଗକି.ମି. ଅଞ୍ଚଳ ଶିମିଳିପାଳ ବନ ଉନ୍ନୟନ ଯୋଜନାର ଅନ୍ତର୍ଭୁକ୍ତ କରାଯାଇ ଏଥିରୁ କେବଳ ଟିମ୍ବର ସଂଗ୍ରହ କରିବାର ବ୍ୟବସ୍ଥା କରାଗଲା । ପ୍ରଥମେ ଏଥିରେ ଜଣେ କଞ୍ଜରଭେଟର ଓ ପରେ ସେହି ପଦକୁ ଉନ୍ନିତ କରି ଜଣେ ମୁଖ୍ୟ କଞ୍ଜରଭେଟରଙ୍କୁ ଏହାର ଦାୟିତ୍ୱରେ ରଖାଗଲା । ଏହା କାର୍ଯ୍ୟକାରୀ ହେବାପ ଆରମ୍ଭ କରାଯାଇ ବହୁ ଅର୍ଥ ରଣ କରାଯାଇ ଏକ ବ୍ୟବସାୟିକ ସଂସ୍ଥାରେ ପରିଣତ କରାଗଲା । ଯେଉଁ ଢଙ୍ଗରେ ଗଛକଟା ଆରମ୍ଭ ହୋଇଥିଲା ତାହା ଏ ପର୍ଯ୍ୟନ୍ତ ଚାଲୁ ରହିଥିଲେ ଶିମିଳିପାଳ ଉନ୍ନୟନ ନାମରେ ଏହା ସଂପୂର୍ଣ୍ଣ ନଷ୍ଟ ହୋଇ ଯାଇଥାଆନ୍ତା ଏବଂ ମାନବ ଜାତିପ୍ରତି ଏହି ପ୍ରାକୃତିକ ଜନହିତୈଷୀ ଅବଦାନଟିର ସଂପୂର୍ଣ୍ଣ ବିଲୟ ଘଟି ଥାଆନ୍ତା । ଏହି ଯୋଜନାର ଉନ୍ନୟନ ନାମ ରଖା ଯାଇଥିଲେହେଁ ଯେଉଁ କେତେବର୍ଷ ଶିମିଳିପାଳ ଜଙ୍ଗଲ କର୍ପୋରେସନ ସକ୍ରିୟ ଭାବେ କାର୍ଯ୍ୟକଲା ସେଥିରେ କେବଳ ଗଛକଟା ବ୍ୟତୀତ ଉନ୍ନୟନ କାର୍ଯ୍ୟଭାବରେ ଅନ୍ତତଃ କଟାଯାଇଥିବା ଗଛ କ୍ଷତି ପୂରଣ ପାଇଁ ସେତିକି ଗଛ ରୋପଣ କରିବାର ବ୍ୟବସ୍ଥା ମଧ କରାଯାଇପାରିନଥିଲା । ତେଣୁ ଉକ୍ତ ଯୋଜନାରୁ ଗଛକଟା ସଂପୂର୍ଣ୍ଣ ବନ୍ଦ କରିବା ପାଇଁ ମୟୂରଭଞ୍ଜରୁ ଯେତେବେଳେ ଆନ୍ଦୋଳନ ଆରମ୍ଭ କରାଗଲା ସେତେବେଳେ ଜଙ୍ଗଲ ବିଭାଗର ପଦସ୍ଥ କର୍ମଚାରୀ ତଥା ନ୍ୟସ୍ତ ସ୍ୱାର୍ଥ ଲୋକେ ଏହାର ପ୍ରବଳ ବିରୋଧ କଲେ । ଓଡିଶାରେ ଉକ୍ତ ଉନ୍ନୟନ କର୍ପୋରେସନ୍ ୧୯୭୭ରୁ ୧୯୮୦ ମଧରେ ଥିବା ଅଣକଂଗ୍ରେସ ସରକାରଙ୍କ ଦ୍ୱାରା ଆରମ୍ଭ କରାଯାଇଥିଲା । ଏହି ପ୍ରକଳ୍ପ ପାଇଁ ସେତେବେଳର ଓଡିଶାର ମୁଖ୍ୟ ଶାସନ ସଚିବ ଯେଉଁ ପ୍ରଜେକ୍ଟ ରିପୋର୍ଟ ପ୍ରସ୍ତୁତ କରିଥିଲେ ସେ ନିଜେ ଶିମିଳିପାଳ ନ ଯାଇ ସେତେବେଳର ଜଙ୍ଗଲ ବିଭାଗର ତଥାକଥିତ ବିଶେଷଜ୍ଞଙ୍କ

(ଯେଉଁମାନେ କେବଳ ଗଛକଟା ବ୍ୟତୀତ ଅନ୍ୟକିଛି ଜାଣନ୍ତି ନାହିଁ) ଅଭିସନ୍ଧି ପୂରଣ ପାଇଁ ଉକ୍ତ ରିପୋର୍ଟରେ ଉଲ୍ଲେଖ କରିଥିଲେ ଯେ ଶିମିଳିପାଳରେ ଭଲଶାଳ ବା ଅନ୍ୟ କୌଣସି ଜାତିର ଉନ୍ନତ ଗଛ ନାହିଁ। କେବଳ ଅକର୍ମଣ୍ୟ ପଂପା ଓ ରୁଗ୍ଣ ଗଛ ଗୁଡ଼ାଏ ରହିଛି। ତେଣୁଁ ସେ ସବୁ ଗଛ ଗୁଡ଼ିକ କାଟି ସଫାକରି ଆକାଶିଆ ଗଛ ଲଗାଇବାକୁ ପ୍ରସ୍ତାବ ଦେଇଥିଲେ। ରାଜ୍ୟର ଜଣେ ଅତି ଦାୟିତ୍ୱ ସଂପନ୍ନ ତଥା ରାଜ୍ୟର ମୁଖ୍ୟ ଶାସନ ସଚିବ ହୋଇ ଏପରି ଦାୟିତ୍ୱହୀନ ଭାବରେ ପ୍ରସ୍ତାବ ଦେବା ଅତି ଲଜ୍ଜାର ବିଷୟ ଛଡ଼ା ଆଉ କ'ଣ ହୋଇପାରେ। ଏ ଘଟଣାର ୧୦।୧୨ବର୍ଷପରେ ମଧ ଶିମିଳିପାଳର ଘଞ୍ଚ ଜଙ୍ଗଲ ଓ ମେଘାସନି ଅଞ୍ଚଳ ଦେଖିଲେ ଯେ କେହି ଦର୍ଶକ ସ୍ତମ୍ଭୀଭୂତ ହେବ ଯେ ଏତେ କ୍ଷୟକ୍ଷତି ପରେ ବି ଏଭଳି ପ୍ରଭୂତ ସଂପଦ କିପରି ରହିପାରିଛି। ବହୁଦିନ ଧରି ଶିମିଳିପାଳରେ ଏପରି ଅତ୍ୟାଚାର ଚାଲିଥିଲେ ହେଁ ସେ ତାର୍ ଐଶ୍ୱରିକ ଦାନ, ପ୍ରାକୃତିକ ସଂପଦକୁ, ପ୍ରକୃତି ଧ୍ୱଂସକାରୀ ରାକ୍ଷସମାନଙ୍କ କବଳରୁ ରକ୍ଷାକରି ମାନବ ଜାତିର କଲ୍ୟାଣ ପାଇଁ ସାଇତି ରଖିଛି। ଭାରତର ପୂର୍ବତନ ଉଦ୍ଭିଦ ବିଶେଷଜ୍ଞ ଡକ୍ଟର ଗୋପୀନାଥ ପାଣିଗ୍ରାହୀଙ୍କ ବୈଜ୍ଞାନିକ ଅନୁସନ୍ଧାନରୁ ଜଣାଗଲେ ଯେ ଓଡ଼ିଶାରେ ଥିବା ମୋଟ ପ୍ରାୟ ୩୦୦୦ ବୃକ୍ଷ ମଧ୍ୟରୁ କେବଳ ଶିମିଳିପାଳରେ ବାରଶହ ସଂଖ୍ୟକ ବିଭିନ୍ନ ପ୍ରକାର ବୃକ୍ଷ ରହିଅଛି। ଆଉଜଣେ ବିଶେଷଜ୍ଞ ଶ୍ରୀଯୁକ୍ତ ଶରତ ଚନ୍ଦ୍ର ମିଶ୍ରଙ୍କ ଅନୁସନ୍ଧାନରୁ ଜଣାଯାଏ ଯେ ଏପର୍ଯ୍ୟନ୍ତ ଆବିଷ୍କାର କରାଯାଇଥିବା ୧୨୦ ପ୍ରକାର ମଦାଙ୍ଗ ମଧ୍ୟରୁ କେବଳ ଶିମିଳିପାଳ ପର୍ବତରେ ୮୦ ପ୍ରକାର ମଦାଙ୍ଗ ରହିଅଛି। ଏଗୁଡ଼ିକ ବିଦେଶକୁ ରପ୍ତାନୀ କରାଯାଇ ବୈଦେଶିକ ମୁଦ୍ରା ଉପାର୍ଜନ କରାଯାଇଥାଏ। ଓଡ଼ିଶାର ବୃକ୍ଷ ଲତା ସଂପର୍କରେ ଡକ୍ଟର ଗୋପୀନାଥ ପାଣିଗ୍ରାହୀଙ୍କ ପ୍ରକାଶିତ ସନ୍ଦର୍ଭ ଆନ୍ତର୍ଜାତିକ କ୍ଷେତ୍ରରେ ଉଚ୍ଚ ପ୍ରସଂଶିତ ହୋଇଛି। ୧୯୮୯ ବେଳକୁ ସେ ପଶ୍ଚିମ ଜାର୍ମାନୀର ଏକ ଆନ୍ତର୍ଜାତିକ ସମ୍ମିଳନୀରେ ଓଡ଼ିଶାର ବୃକ୍ଷଲତା ସଂପର୍କୀୟ ସନ୍ଦର୍ଭ ଉପସ୍ଥାପନ କରି ସମ୍ମାନ ଅର୍ଜନ କରିପାରିଥିଲେ। ପୂର୍ବରୁ ଶିମିଳିପାଳରେ ସବୁଠାରୁ ବଡ ଗଛର ମୋଟ ପ୍ରାୟ ୨୦ଫୁଟ ଥିଲା ଏବେ ମଧ ଏଠାରେ ୧୨।୧୪ଫୁଟ ମୋଟେଇ ବିଶିଷ୍ଟ ବହୁ ଚମ୍ପାଗଛ ଥିବାର ଦେଖାଯାଏ। ସେ ଅଞ୍ଚଳରେ ଏକ ଡାକ ବଙ୍ଗଳାରେ ୧୪ଫୁଟ ଗୋଲେଇ ଗଛର ପଟା ସଂରକ୍ଷଣ କରାଯାଇଛି। ସେହିପରି ବିରାଟ ହାତୀଦାନ୍ତ ଦୁଇଟି ଶିମିଳିପାଳ ଅନ୍ତର୍ଗତ ନଅଅଣା ଡାକବଙ୍ଗଳାରେ ଜଙ୍ଗଲ ବିଭାଗ ତରଫରୁ ନମୁନା ସ୍ୱରୂପ ରଖାଯାଇଛି। ଶିମିଳିପାଳ ପର୍ବତମାଳା ମଧ୍ୟରେ ପ୍ରାୟ ୨୦୦ରୁ ଅଧିକ କି.ମି. ଲମ୍ବର ରାସ୍ତା ରହିଛି। ବାଙ୍ଗିରୀପୋଷୀ ବା ଯଶିପୁରରୁ ଜିପ୍ ଯୋଗେ ବାହାରି ଶିମିଳିପାଳର ଶେଷମୁଣ୍ଡ ପୋଡ଼ାଡିହାଠାରେ ଗୋଟିଏ ଦିନରେ ପହୁଞ୍ଚି ହେବ ନାହିଁ। ଏହା ବ୍ୟତୀତ ବାଙ୍ଗିରୀପୋଷୀଠାରୁ ବିଶେଇ ରାଇରଙ୍ଗପୁର ସଡ଼କର ଉତ୍ତର ପାଖ ଅଞ୍ଚଳ ମାନଗଡ ଦେଇ ବିହାର ସୀମାକୁ ଲାଗିଥିବା ପ୍ରାୟ ୩।୪ଶହ ବର୍ଗ କିଲୋମିଟର ଜଙ୍ଗଲ ମଧ ଶିମିଳିପାଳ ପର୍ବତମାଳାର ଅନ୍ତର୍ଭୁକ୍ତ ହୋଇଥିଲେ ହେଁ ଏହା ଶିମିଳିପାଳ ଉନ୍ନୟନ କର୍ପୋରେସନର ଅନ୍ତର୍ଭୁକ୍ତ ହୋଇନାହିଁ। ତେଣୁ ଏ ଅଞ୍ଚଳର ସୁରକ୍ଷାର ବ୍ୟବସ୍ଥା ନ ଥିବାରୁ ଏହା ଅତି ମାତ୍ରାରେ କ୍ଷୟଘଟି ଏବେ ମୃତ୍ତିକା ସଂରକ୍ଷଣ ସମସ୍ୟା ରୂପେ ଦେଖାଦେବାର ଆଶଙ୍କା କରାଗଲାଣି।

## ''ବିଧାନସଭାରେ ଶିମିଳିପାଳ ଗୃହ କମିଟି''

୧୯୮୦ ମସିହାରେ ମୁଁ ବିଧାନ ସଭାକୁ ୭ମ ଥର ନିର୍ବାଚିତ ହେବାପରେ ଶିମିଳିପାଳର ସୁରକ୍ଷା ପାଇଁ ବିଭିନ୍ନ ପଦକ୍ଷେପମାନ ଗ୍ରହଣ କଲି। ସେତେବେଳକୁ ଶିମିଳିପାଳର ସୁରକ୍ଷା ପାଇଁ ପରିବେଶ ସୁରକ୍ଷା ନାମରେ ବିଭିନ୍ନ ଖବର କାଗଜ (ଓଡ଼ିଆ ଓ ଇଂରେଜୀ) ମାନଙ୍କରେ ଲେଖାମାନ ପ୍ରକାଶ ପାଇବା ଯୋଗୁଁ ଶିମିଳିପାଳର

ସୁରକ୍ଷା ପାଇଁ ମୟୂରଭଞ୍ଜର କିଛି ଚେତନଶୀଳ ଲୋକଙ୍କ ମନରେ ଚେତନା ଆରମ୍ଭ ହେଲାଣି । ତେଣୁଁ ମୁଁ ତାଙ୍କର ପ୍ରତିନିଧି ଭାବେ ବିଧାନସଭାରେ ଲୋକଙ୍କ ଏହି ଇଚ୍ଛାକୁ ଫଳବତୀ କରିବା ପାଇଁ ୧୯୮୦ ବର୍ଷର କାର୍ଯ୍ୟକ୍ରମରେ ଆଲୋଚନା କରି ଶିମିଳିପାଳ ସୁରକ୍ଷା ବାବଦରେ ଏକ ବେସରକାରୀ ପ୍ରକଳ୍ପ ଆଗତ କଲି । ଏହା ମଧ୍ୟ ସୌଭାଗ୍ୟ କ୍ରମେ ବିଧାନସଭା ଆଲୋଚନାକୁ ଆସିବାରୁ ଶିମିଳିପାଳର ପରିବେଶ ସୁରକ୍ଷା ପାଇଁ ମୟୂରଭଞ୍ଜ ତଥା ତାର ଆଖପାଖ ଅଞ୍ଚଳକୁ କ'ଣ ଅବଦାନ ତାହା ବୁଝାଇ ମୋ ପ୍ରସ୍ତାବକୁ ଗ୍ରହଣ କରିବା ପାଇଁ ସମଗ୍ର ଗୃହକୁ ନିବେଦନ କଲି । ସୌଭାଗ୍ୟ କ୍ରମେ ସରକାରୀ ଓ ବିରୁଦ୍ଧଦଳର ମୁଖ୍ୟ ବ୍ୟକ୍ତିମାନେ ମୋ ପ୍ରସ୍ତାବକୁ ସମର୍ଥନ କରି ଗଛକଟା ସଂପୂର୍ଣ୍ଣ ରୂପେ ବନ୍ଦ କରିବାକୁ ସରକାରଙ୍କୁ ପରାମର୍ଶ ଦେଲେ । ତେଣୁଁ ମୁଁ ଏ ସୁଯୋଗର ସୁବିଧା ନେବାକୁ ପଛାଇଲି ନାହିଁ । ସେ ବର୍ଷର ଶେଷ ଅଧିବେଶନରେ ଆଗତ ହୋଇ ଆଲୋଚନା ଅସମାପ୍ତ ରହିଥିବାରୁ ୧୯୮୧ ବର୍ଷକୁ ଆଲୋଚନା ରହିଗଲା । ସେହି ୧୯୮୧ ବର୍ଷର ପ୍ରାରମ୍ଭରେ ଫୁଲବାଣୀ ଠାରେ ପରିବେଶ ସୁରକ୍ଷା ସଂପର୍କରେ ଏକ ଜାତୀୟ ସମ୍ମିଳନୀର ଆୟୋଜନ କରାଗଲା । ଉକ୍ତ ସମ୍ମିଳନୀକୁ ବିଧାନସଭାର ସେତେବେଳର ଅଧ୍ୟକ୍ଷ ଶ୍ରୀଯୁକ୍ତ ସୋମନାଥ ରଥ ଓ ମୁଁ ନିମନ୍ତ୍ରିତ ହୋଇଗଲୁଁ । ଏହି ଅବକାଶରେ ଶିମିଳିପାଳର ସଂପୂର୍ଣ୍ଣ ସୁରକ୍ଷା ତଥା ଗଛକଟା ପୂରାପୂରି ବନ୍ଦ କରିବା ପାଇଁ ସେମାନଙ୍କର ମତାମତ ନେବା ଏହି ସମ୍ମିଳନୀକୁ ଯିବାର ମୋର ମୁଖ୍ୟ ଉଦ୍ଦେଶ୍ୟ ଥିଲା । ସେଠାରେ ଓଡିଶାର ତଥା ବାହାରର କିଛି ଲୋକଙ୍କ ସହିତ ସାକ୍ଷାତ ହେଲା । ସେମାନେ ସମସ୍ତେ ଉକ୍ତ ସମ୍ମିଳନୀରେ ଜଣଜଣକରି ଶିମିଳିପାଳର ସଂପୂର୍ଣ୍ଣ ସୁରକ୍ଷା ସଂପର୍କରେ ମତାମତ ଦେବାରୁ ମୋ ମନରେ ଅଧିକ ଆଗ୍ରହ ବଢ଼ିଲା । ସେଠାରେ ମୁଁ ଯୋଗ ଦେଇଥିବା ସମୟରେ ହଠାତ୍ ଓଡ଼ିଶାର ରାଜ୍ୟ ପରିବେଶ ସୁରକ୍ଷା ନାମରେ ଏକ କମିଟି ଗଠିତ ହେଲା । ଏବଂ ସମସ୍ତେ ମୋତେ ଉକ୍ତ କମିଟିର ସଭାପତି ରୂପେ ମଧ୍ୟ ନିର୍ବାଚିତ କଲେ । ଏହି କମିଟିରେ ଅନ୍ୟ ସମସ୍ତେ ପ୍ରାୟ ସରକାରୀ ଉଚ୍ଚ ପଦବୀରେ କର୍ମଚାରୀ ଓ ମୁଁ କେବଳ ଏକମାତ୍ର ବେସରକାରୀ ଓ ଜଣେ ସାଧାରଣ ବିଧାନସଭା ସଭ୍ୟ ।

୧୯୮୧-୮୨ ବିଧାନସଭା ଅଧିବେଶନ ବେଳକୁ ଶିମିଳିପାଳ ସୁରକ୍ଷା ବାବଦରେ ପୂର୍ବ ବୈଠକରେ ମୋର ଅସମାପ୍ତ ଆଲୋଚନା ପୁଣି ଆରମ୍ଭ ହେଲା । ଏତେବେଳକୁ ଏହି ପ୍ରସ୍ତାବ ଏକ ବାସ୍ତବ ରୂପ ନେଲାଏବଂ ସରକାରଙ୍କ ଉତ୍ତର ପରେ ଶିମିଳିପାଳ ପର୍ବତ ମାଳାର ସୁରକ୍ଷା ଏବଂ ତାର ଉନ୍ନୟନ ସଂପର୍କରେ ସରକାରଙ୍କୁ ପରାମର୍ଶ ଦେବାପାଇଁ ଏକ ଗୃହ କମିଟି ବିଧାନସଭାର ଅଧ୍ୟକ୍ଷଙ୍କ ସଭାପତିତ୍ୱରେ ଗଠନ କରାଯିବାର ସ୍ଥିରୀକୃତ ହେଲା । ସରକାରୀ ଓ ବିରୁଦ୍ଧ ଦଳର ମୋଟ ଚାରିଜଣ ସଭ୍ୟ ସର୍ବସମ୍ମତ କ୍ରମେ ସେଥିରେ ମନୋନୀତ ହେଲେ ଓ ମୋତେ ତହିଁର ଅନ୍ତର୍ଭୁକ୍ତ କରାଗଲା । ଉକ୍ତ ସଭ୍ୟ ମନୋନୟନରେ କିଏ କିଏ ରହିବା ଉଚିତ ମୁଁ ତାହା ସ୍ଥିର କଲି । ଓଡିଶା ବିଧାନସଭା ଇତିହାସରେ ଏହା ପ୍ରଥମ ଗୃହକମିଟି ଗଠିତ ହେଲା । ଅବଶ୍ୟ ଏହା ପରେ ୧୯୮୪ରୁ ୧୯୮୯ମଧ୍ୟରେ ମୁଁ ବିଧାନ ସଭାର ଅଧ୍ୟକ୍ଷ ଥିଲା ବେଳେ ଉକ୍ତ ଶିମିଳିପାଳ ଉନ୍ନୟନ କମିଟିର ନାମ ପରିବର୍ତ୍ତନ କରି ଏହାର କାର୍ଯ୍ୟପରିସର ଅଧିକ ବ୍ୟାପକ କରିବା ଉଦ୍ଦେଶ୍ୟରେ ଓଡିଶା ରାଜ୍ୟ ପରିବେଶ ସୁରକ୍ଷା କମିଟି ନାମକରଣ କରାଗଲା । ଏହା ବ୍ୟତୀତ ଓଡିଶା ବିଧାନ ସଭାର ଅଧ୍ୟକ୍ଷଥିଲାବେଳେ ପରିବେଶ ସମେତ ଆଉ ଚାରିଗୋଟି ଗୃହକମିଟି ଗଠନ କରାଯାଇଥିଲା । ଉକ୍ତ ଶିମିଳିପାଳ ଗୃହ କମିଟି ଗଠିତ ହେଲାପରେ ପ୍ରଥମେ ମୟୂରଭଞ୍ଜ ଜିଲ୍ଲା ଗସ୍ତ କରି ଶିମିଳି-ପାଳ ପରିଦର୍ଶନ କଲେ ଓ ବାରିପଦାଠାରେ ଜିଲ୍ଲାର ବିଶିଷ୍ଟ ବ୍ୟକ୍ତି ବିଶେଷଜ୍ଞ ଓ ସାମ୍ବାଦିକ ପ୍ରଭୃତିଙ୍କୁ ଭେଟି ଶିମିଳିପାଳ ସୁରକ୍ଷା ସଂପର୍କରେ ମତାମତ ନିଆଗଲା । ଏହାପରେ କମିଟି ଦେଶର ବିଭିନ୍ନ ସ୍ଥାନ ମାନ ପରିଦର୍ଶନ କରି ସେଠାରେ ଥିବା ସଂରକ୍ଷିତ ଜଙ୍ଗଲ ତଥା ଜୀବଜନ୍ତୁଙ୍କ ସଂପର୍କରେ ବିଶେଷଜ୍ଞାନ

ବା ଧାରଣା ସୃଷ୍ଟି କରିବା ପାଇଁ ପରିଦର୍ଶନ କାର୍ଯ୍ୟ ମଧ୍ୟ ଆରମ୍ଭ କରାଗଲା । ଏହି କାର୍ଯ୍ୟକ୍ରମରେ ତାମିଲନାଡୁର ବିଖ୍ୟାତ ଚାନ୍ଦିପୁର, କର୍ଣ୍ଣାଟକର ମଧୁମଲାଇ, କେରଳର ସବୁଠାରୁ ପୁରୁଣା ସେଙ୍କଚୁଏରୀ ଆକେଡି ପ୍ରଭୃତି ସ୍ଥାନ ପରିଦର୍ଶନ କଲୁଁ । ଏହାପରେ ଉକ୍ତ କମିଟିର ସୁପାରିସ ଅନୁଯାୟୀ ରାଜ୍ୟ ସରକାର ଶିମିଳିପାଳ ବନ ଉନ୍ନୟନ ନିଗମକୁ ପଟା ଦିଆଯାଇଥିବା ଅଞ୍ଚଳରୁ ଗଛକଟା ସଂପୂର୍ଣ୍ଣ ଭାବେ ନିଷେଧ ଆଦେଶ ଦେଇଥିଲେ ଏବଂ ଏହା ପରବର୍ଷମାନଙ୍କରେ ବିଚାର କରିବାର କଥା ଥିଲା । ରାଜ୍ୟ ସରକାରଙ୍କ ଏହି ନିଷ୍ପତ୍ତି ଫଳରେ ବାର୍ଷିକ ରାଜସ୍ୱ ବାବଦରେ ଚାରିକୋଟିରୁ ଅଧିକ କ୍ଷତି ବହନ କରିବାକୁ ପଡୁଥିଲେ ହେଁ ସରକାର ତାହା ଗ୍ରହଣ କରିଥିଲେ । ଏଭଳି ନିଷ୍ପତ୍ତି ହେଲାପରେ ସରକାରଙ୍କ ତରଫରୁ ଗଛକଟାବନ୍ଦ ହୋଇଗଲେ ହେଁ ଚୋରାରେ ସ୍ଥାନୀୟ ଲୋକଙ୍କ ସହାୟତାରେ ବାରିପଦା ଓ ତାର ପାଖାପାଖି ଅଞ୍ଚଳରେ କେତେକ ବ୍ୟବସାୟୀ ବହୁ ପରିମାଣର କାଠ ଏବେ ମଧ୍ୟ ବାହାରକୁ ରପ୍ତାନୀ କରୁଛନ୍ତି । ପ୍ରତିଦିନ ବହୁଲୋକ ଅସ୍ତ୍ରଶସ୍ତ୍ରରେ ସଜ୍ଜିତ ହୋଇ ଶିମିଳିପାଳ ଭିତରକୁ ଯାଇ ବହୁମୂଲ୍ୟବାନ କାଠ କାଟି ବାରିପଦା ଓ ତା ନିକଟରେ ଥିବା ଚୋରା ବ୍ୟବସାୟ କେନ୍ଦ୍ର ଗୁଡିକରେ ବିକ୍ରୟ କରି ଦେଉଛନ୍ତି । ଜଙ୍ଗଲ ବିଭାଗର ସହାୟତା ଓ ଜ୍ଞାତସସାରରେ ଏହି ଚୋରା ବେପାର ଚାଲୁଛି । ବାରିପଦା ବା କରଞ୍ଜିଆଠାରେ ଅବସ୍ଥାପିତ ଡ଼ି.ଏଫ.ଓ ମାନେ ବା ନିଗମର ନିଯୁକ୍ତ କର୍ମଚାରୀମାନେ ଏହାର କୌଣସି ପ୍ରତିକାର କରନ୍ତି ନାହିଁ । ମଝିରେ ବାରିପଦାର ଜଣେ ଡି.ଏଫ.ଓ ଉକ୍ତ ଗୋଦାମ ଗୁଡିକ ଚଢାଉକରି ଚୋରା କାଠଗୁଡିକ ଜବତ କରିବାରୁ ସରକାରରେ ଥିବା ରାଜନୈତିକ ଦଳର ପ୍ରଭାବରେ ସେ ସଙ୍ଗେ ସଙ୍ଗେ ବାରିପଦାରୁ ବଦଳୀ ହୋଇଗଲେ । ଉକ୍ତ ଶିମିଳିପାଳ ଅଞ୍ଚଳ ଜଙ୍ଗଲବିଭାଗ, ବ୍ୟାଘ୍ରସଂରକ୍ଷଣ ଯୋଜନା ଓ ନିଗମ ଏହିପରି ତିନିପ୍ରକାର ଶାସନାଧୀନରେ ଥିବାରୁ ଉକ୍ତ ତିନି ବିଭାଗର କର୍ମଚାରୀମାନେ ଜଙ୍ଗଲକ୍ଷୟ ଓ ଚୋରା ବେପାର ପାଇଁ ଜଣେ ଅନ୍ୟ ଜଣକୁ ଦାୟୀ କରିବାରେ ଯେତେ ତତ୍ପର ତାହା ବନ୍ଦ କରିବାକୁ ଆଦୌ ସଚେଷ୍ଟ ନୁହନ୍ତି ।

ତେଣୁ ଏହିପରି ଅବସ୍ଥା ଦେଖି ଶିମିଳିପାଳ ପର୍ବତମାଳାକୁ ଆନ୍ତର୍ଜାତିକ କ୍ଷେତ୍ରରେ ପରିଚିତ କରାଇବା ଉଦ୍ଦେଶ୍ୟରେ ଏହାକୁ ଏକ ଜୀବମଣ୍ଡଳ ବା Biosphere reserveରେ ପରିଣତ କରିବାକୁ ଉଦ୍ୟମ କଲି । ଏଥିପାଇଁ U.N.O. ବା ବିଶ୍ୱରେ ସର୍ବଶ୍ରେଷ୍ଠ ସଂସ୍ଥାଙ୍କ ସହିତ ଯୋଗାଯୋଗ କଲି ଏବଂ ଏହାକୁ ଜୀବମଣ୍ଡଳର ଅନ୍ତର୍ଭୁକ୍ତ କରବାକୁ ପ୍ରସ୍ତାବ ମଧ୍ୟ ଦେଲି । ସେତେବେଳକୁ ବିଶ୍ୱରେ ୨୪୨ଗୋଟି ଯୋଜନା ଜୀବମଣ୍ଡଳରେ ପରିଣତ କରିବାପାଇଁ ୟୁ.ଏନ.ଓର ବିଚାରାଧୀନ ଥିଲା ଏବଂ ସେଥିମଧ୍ୟରୁ ଭାରତବର୍ଷର ମଧ୍ୟ ୧୪ଟି ପ୍ରକଳ୍ପ ଏହାର ଅନ୍ତର୍ଭୁକ୍ତ ଥିଲା ଅବଶ୍ୟ ଭାରତବର୍ଷର ଉକ୍ତ ଯୋଜନା ଗୁଡିକ ମଧ୍ୟରୁ ଜୀବମଣ୍ଡଳର କାର୍ଯ୍ୟକ୍ରମ ସେତେବେଳକୁ କୌଣସିଠାରେ ଆରମ୍ଭ ହୋଇନଥିଲା । ଶିମିଳିପାଳ ପର୍ବତମାଳାକୁ ତହିଁର ଅନ୍ତର୍ଭୁକ୍ତ କରିବା ପାଇଁ ଓଡିଶାର ପରିବେଶ ସମିତିର ପ୍ରସ୍ତାବ ଅନୁସାରେ ଚିଠି ଲେଖିବାରୁ ଅତ୍ୟନ୍ତ ସନ୍ତୋଷ ପ୍ରକାଶ କରି ମୋ ପାଖକୁ ତହିଁର ଉତ୍ତର ମଧ୍ୟ ଆସିଲା । ଜୀବମଣ୍ଡଳର କାର୍ଯ୍ୟକ୍ରମ ସଂକ୍ରାନ୍ତୀୟ ଏକ ପୁସ୍ତକ ମଧ୍ୟ ମୋ ନିକଟକୁ ପଠାଇଲେ । ୧୯୮୯ ବର୍ଷ ଏହାର ଶେଷ ବର୍ଷ ହୋଇଥିବା ବିଷୟ ଜଣାଇ ତହିଁ ପୂର୍ବରୁ ଦରଖାସ୍ତ କରିବାକୁ ପରାମର୍ଶ ଦେଇ ତତ୍ ସଂପର୍କୀୟ ଦରଖାସ୍ତ ଫର୍ମ ମଧ୍ୟ ପଠାଇଲେ । ଦରଖାସ୍ତ ଫର୍ମରେ ସମସ୍ତ ବିଷୟ ଉଲ୍ଲେଖ କରି ଭାରତସରକାରଙ୍କ ସୁପାରିଶ ସହ ଗଲେ ତାହା ବିଚାରକୁ ନିଆଯିବା କଥା ମଧ୍ୟ ସେଥିରେ ଜଣାଇ ଦିଆଯାଇଥିଲା । ତେଣୁ ଉକ୍ତ ଫର୍ମ ପୂରଣକରି ରାଜ୍ୟସରକାରଙ୍କୁ ସୁପାରିଶ କରିବାକୁ ଆବେଦନ କଲି । କିନ୍ତୁ ଜଙ୍ଗଲ ବିଭାଗ ଏ ପ୍ରସ୍ତାବରେ ବିରୋଧ କରୁଥିବାରୁ ନିର୍ଦ୍ଧାରିତ ସମୟକୁ ବିଳମ୍ବ କରିବାର ଉଦ୍ୟମ କରାଗଲା । ଦୁଃଖର ବିଷୟ ଯେ, ଜଙ୍ଗଲ ବିଭାଗର ମନ୍ତ୍ରୀ ମଧ୍ୟ ଅଫିସରଙ୍କ କଥାରେ ଅନେକ ଭାବରେ ପରିଚାଳିତ ହେଲେ । ପରିବେଶ ସଂପର୍କରେ ଜ୍ଞାନ ନ ଥିବାରୁ ଏ ପ୍ରକାର ଘଟଣାମାନ

ଘଟିଲା । ଯାହାହେଉ ସେହି ୧୯୮୯ରେ ହିଁ ବହୁ ଉଦ୍ୟମ ପଳରେ ରାଜ୍ୟସରକାରଙ୍କ ସୁପାରିଶ ସହ ତାହା କେନ୍ଦ୍ର ସରକାରଙ୍କୁ ପଠାଗଲା, ମାତ୍ର ତାହା କେନ୍ଦ୍ର ସରକାରଙ୍କ ସୁପାରିଶ ସହ ପଠାଇଲେ କି ନା ତାହା ଜଣାଗଲା ନାହିଁ। ଏହା ପରେ ପରେ ନିର୍ବାଚନରେ ପରାସ୍ତ ହେଲାରୁ ସବୁକାର୍ଯ୍ୟ ସେହିଠାରେ ହିଁ ଅଟକି ଗଲା ।

ଶିମିଳିପାଳ ପର୍ବତମାଳାକୁ ଏକ ଜୀବମଣ୍ଡଳରେ ପରିଣତ କରିବା ଉଦ୍ଦେଶ୍ୟରେ ୧୯୮୫ ମସିହାରେ ପ୍ରଥମେ ବାରିପଦାଠାରେ ଏକ ଜାତୀୟ ସ୍ତରରେ ପରିବେଶ ସମ୍ମିଳନୀ କରାଇବାର ଉଦ୍ୟମ କଲି । ସେତେବେଳେ ମୁଁ ବିଧାନ ସଭାର ଅଧକ୍ଷ ଥିବାରୁ ଓଡିଶା ପରିବେଶ ସମ୍ମିଳନୀର ଆନୁକୂଲ୍ୟରେ ଏହି ଜାତୀୟ ସ୍ତରର ସମ୍ମିଳନୀ ଅନୁଷ୍ଠିତ ହୋଇଥିଲା । ଜିଲ୍ଲାପାଳ ଜିଲ୍ଲାପରିବେଶ ସମ୍ମିଳନୀରେ ସଭାପତି ହୋଇଥିବାରୁ ଜିଲ୍ଲା ଶାସନ ମଧ ଏଥିରେ ସହାୟତା କରିଥିଲା । ଓଡିଶାର ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ଜାନକୀବଲ୍ଲଭ ପଟନାୟକ ଏହାକୁ ଆନୁଷ୍ଠାନିକ ଭାବେ ଉଦଘାଟନ କରି ପରିବେଶ କ୍ଷେତ୍ରରେ ଶିମିଳିପାଳ ଏକ ମାଇଲ ଖୁଣ୍ଟ ହୋଇ ରହିବ ବୋଲି ଏକ ଐତିହାସିକ ଘୋଷଣା କରିଥିଲେ । ମାନବ ଜାତିର କଲ୍ୟାଣ ପାଇଁ ରାଜ୍ୟ ସରକାର ଏଥିରୁ ମିଳୁଥିବା ବାର୍ଷିକ ପ୍ରାୟ ଚାରିକୋଟି ଟଙ୍କାର ରାଜସ୍ୱ ପରିତ୍ୟାଗ କରି ଗଛକଟା ସଂପୂର୍ଣ୍ଣ ରୂପେ ବନ୍ଦ କଲେ । ଏହି ସମ୍ମିଳନୀରେ କେନ୍ଦ୍ର ସରକାରଙ୍କ ଜଙ୍ଗଲ ଓ ପରିବେଶ ବିଭାଗ ମନ୍ତ୍ରୀ ଶ୍ରୀଯୁକ୍ତ ସେନ ମୁଖ୍ୟ ଅତିଥି ଭାବରେ ଯୋଗ ଦେଇ ଶିମିଳିପାଳକୁ ଏକ ଜୀବମଣ୍ଡଳରେ ପରିଣତ କରିବାକୁ ଆନ୍ତରିକ ଉଦ୍ୟମ କରିବାର ପ୍ରତିଶ୍ରୁତି ମଧ ଦେଇଥିଲେ । କେନ୍ଦ୍ରମନ୍ତ୍ରୀ ଶ୍ରୀଯୁକ୍ତ କେ.ପି. ସିଂହଦେଓ ମଧ ସମ୍ମାନନୀୟ ଅତିଥି ଭାବରେ ଯୋଗ ଦେଇଥିଲେ ଓ ମୁଁ ଏଥିରେ ସଭାପତିତ୍ୱ କରିଥିଲି । ଶେଷଦିନର ଉଦ୍ଯାପନ ଦିବସରେ ସର୍ବସମ୍ମତିକ୍ରମେ ଏହାକୁ ଜୀବମଣ୍ଡଳରେ ପରିଣତ କରିବାର ପ୍ରସ୍ତାବ ମଧ ଗୃହୀତ ହୋଇଥିଲା, ଏହାପରେ ଓଡିଶା ପରିବେଶ ସମିତ ଚରିଆରେ ବାଙ୍ଗିରୀପେଷୀ, ପିଠାବଟା, ବିଶୋଇ ପ୍ରଭୃତି ଏହି ପର୍ବତମାଳର ପାଖାପାଖି ଅଂଚଳରେ ଜନସଚେତନତା ସୃଷ୍ଟି ପାଇଁ ସମ୍ମିଳନୀମାନ କରାଯାଇଥିଲା । ଏଥିରେ ଯୁବକସଂଘ, ମହିଳାସଂଘ, ଗ୍ରାମପରିବେଶ ଓ ଜଙ୍ଗଲ ସୁରକ୍ଷା କମିଟିର ସଭ୍ୟମାନେ ଯୋଗ ଦେଇଥିଲେ । ମୟୂରଭଞ୍ଜ ଜିଲ୍ଲାର ପ୍ରାୟ ୧୫୦ ରୁ ୨୦୦ ଗ୍ରାମରେ ପରିବେଶ ସୁରକ୍ଷା କମିଟି ମାନ ଗଠନ କରାଗଲା ଓ ପ୍ରତିବ୍ଲକରେ ମଧ ଜଙ୍ଗଲ ସୁରକ୍ଷା କମିଟି ମାନ ମଧ ଗଠିତ ହେଲା । ମୟୂରଭଞ୍ଜର ଏହି କାର୍ଯ୍ୟକ୍ରମର ପ୍ରଭାବ ଓଡିଶାର ବିଭିନ୍ନ ଅଞ୍ଚଳରେ ପଡିଲା ଏବଂ ଗ୍ରାମ ବ୍ଲକ ଓ ଜିଲ୍ଲା ପରିବେଶ କମିଟିମାନ ସରକାରୀ ଓ ବେସରକାରୀ ଉଦ୍ୟମରେ ଗଠିତ ହୋଇ ଏକ ନବଜାଗରଣ ସୃଷ୍ଟି କଲା । ମାତ୍ର ଏହା ବେଶି ଦିନ କାର୍ଯ୍ୟକାରୀ ହୋଇପାରିଲା ନାହିଁ । ଶାସନକ୍ଷେତ୍ରରେ ପରିବର୍ତ୍ତନ ଘଟି ଜନତା ସରକାର ପ୍ରତିଷ୍ଠିତ ହେବାକୁ ଏ କାର୍ଯ୍ୟକ୍ରମର ବିଲୋପ ସାଧନ ଘଟିଲା ।

୧୯୮୦ରେ ବିଧାନସଭାରେ ଓଡିଶା ସରକାରଙ୍କ ତାଙ୍କ ଶାସନ ବ୍ୟବସ୍ଥାରେ ପରିବେଶ ନିୟନ୍ତ୍ରଣ ନାମରେ ଏକ ସରକାରୀ ବିଭାଗ ଓ ନିର୍ଦ୍ଦେଶାଳୟ ଖୋଲିବାକୁ ବେସରକାରୀ ଦିବସରେ ଏକ ପ୍ରସ୍ତାବ ଆଗତ କରାଗଲାରୁ ସରକାର ସେ ଦିଗରେ ତୁରନ୍ତ ପଦକ୍ଷେପ ନେବାର ପ୍ରତିଶ୍ରୁତି ଦେଇଥିଲେ । ତାପରେ ଜଙ୍ଗଲ ଓ ପରିବେଶ ଏହି ଦୁଇଟି ବିଭାଗ ଜଣେ ମନ୍ତ୍ରୀଙ୍କ ଦାୟିତ୍ୱରେ ରଖାଗଲା । ଏହାପରେ ଶିଳ୍ପକ୍ଷେତ୍ରରେ ବାୟୁ ଓ ଜଳ ପ୍ରଦୂଷଣ ନିୟନ୍ତ୍ରଣ କରିବା ପାଇଁ ରାଜ୍ୟ ପ୍ରଦୂଷଣ ବୋର୍ଡ଼ ମଧ ପ୍ରତିଷ୍ଠା କରାଗଲା । ମୁଁ ମଧ ସେହି ବୋର୍ଡର ମନୋନୀତ ସଭ୍ୟ ରହିଲି । ମୁଁ ବିଧାନସଭାର ଅଧକ୍ଷ ହେଲାପରେ ମଧ ତାର ସଭ୍ୟ ପଦରେ ଶେଷ ପର୍ଯ୍ୟନ୍ତ ରହିଥିଲି । ସେତେବେଳେ ପ୍ରଦୂଷଣ ସଂପର୍କରେ ସରକାରୀ ବା ବେସରକାରୀ ସ୍ତରରେ ଲୋକଙ୍କର ବିଶେଷ ଧାରଣା ନ ଥିଲା । କେନ୍ଦ୍ର ସରକାରଙ୍କ ନିର୍ଦ୍ଦେଶରେ ରାଜ୍ୟପାଳଙ୍କ ଅଧକ୍ଷତାରେ ବିଭାଗୀୟ ଉଚ୍ଚକର୍ମକର୍ତ୍ତା ଓ ପରିବେଶ

ବିଶେଷଜ୍ଞମାନଙ୍କୁ ନେଇ ଏକ ରାଜ୍ୟ ପରିବେଶ ସୁରକ୍ଷା କାଉନସିଲ ମଧ ଗଠିତ ହେଲା । ମୁଁ ମଧ ଏହି କାଉନସିଲର ସଭ୍ୟଥିଲି । ସେତେବେଳେ ୧୯୮୫-୮୯ ମଧରେ ଓଡିଶାର ପରିବେଶ ସୁରକ୍ଷା ତଥା ଜଙ୍ଗଲ ସଂପଦର ବୃଦ୍ଧି ଓ ସୁରକ୍ଷା ସଂପର୍କରେ ଯେ ପ୍ରକାର ବାୟୁମଣ୍ଡଳ ସୃଷ୍ଟି ହୋଇଥିଲା ତାହା ସମଗ୍ର ଦେଶକୁ ଆଲୋକ ଦେଖାଇ ପାରିଥାଆନ୍ତା । କଂଗ୍ରେସ ଶାସନର ପତନ ପରେ ଓ ମୁଁ ବିଧାନ ସଭାର ସଭ୍ୟପଦରୁ ପରାଜିତ ହେଲାପରେ ଏଦିଗରେ ସମସ୍ତ କାର୍ଯ୍ୟ ପ୍ରାୟବନ୍ଦ ହୋଇଗଲା । ଏବେ ବ୍ରାଜିଲର ରିଓ ସହରରେ ସମଗ୍ର ପୃଥିବୀର ଐତିହାସିକ ପରିବେଶ ସମ୍ମିଳନୀ ବସି ବାକୁ ଆସନ୍ନ ଧ୍ୱଂସ ମୁଖରୁ ରକ୍ଷା କରିବା ପାଇଁ ରାଷ୍ଟ୍ରମୁଖ୍ୟମାନଙ୍କୁ ଯେଉଁ ସବୁ ପରାମର୍ଶ ଦେଇଛନ୍ତି ସେଗୁଡିକ ଆମେ ପ୍ରାୟ ଗ୍ରହଣ କରିସାରିଥିଲୁ । ସେତେବେଳେ ଭାରତର ସାଇଲେଣ୍ଟ ଭେଲି, ଉତ୍ତର ପ୍ରଦେଶ ଏବଂ ଗୁଜରାଟର ନର୍ମ୍ମଦା ନଦୀବନ୍ଧ ଭଳି ଓଡିଶାର ଗନ୍ଧମାର୍ଦ୍ଦନ ପର୍ବତରୁ ଗ୍ରାଫାଇଟ୍ ଓ ବକ୍ସସାଇଟ ସଂଗ୍ରହ ସଂପର୍କରେ ଏକ ସମସ୍ୟା ଉପୁଜିଥିଲା । ରାଜ୍ୟ ପରିବେଶ ସମିତି ତଥା ବିଧାନସଭା ପରିବେଶ ସୁରକ୍ଷା କମିଟିର ନିଷ୍ପତ୍ତି ଅନୁଯାୟୀ ପ୍ରାୟ ୪୦ କୋଟି ଟଙ୍କା ସରକାରୀ ନିଗମର ଖର୍ଚ୍ଚକରି ମଧ ଖଣିକାମ ବନ୍ଦ ହେଲା ।

## ''ଉଠାଜଳସେଚନ ଓ କ୍ଷୁଦ୍ରଜଳସେଚନ''

୧୯୪୯ ମସିହାରୁ ମୟୂରଭଞ୍ଜର ଓଡିଶା ସହିତ ମିଶ୍ରଣ ହୋଇ ଥିଲେ ହେଁ ପ୍ରାୟ ୩୦ ବର୍ଷ ପର୍ଯ୍ୟନ୍ତ ଅର୍ଥାତ୍ ୧୯୯୦ ମସିହା ଯାଏଁ ଏ ଜିଲ୍ଲାରେ ଜଳସେଚନ ବ୍ୟବସ୍ଥାରେ ଅଗ୍ରଗତି ହୋଇପାରି ନ ଥିଲା । ଏ ଜିଲ୍ଲାରେ ଏହିସମୟ ମଧରେ କିଛି କ୍ଷୁଦ୍ର ଜଳସେଚନ ଯୋଜନା କାର୍ଯ୍ୟକାରୀ ହୋଇଥିଲେ ମଧ ସେଗୁଡିକ ମରୁଡି ସମୟରେ ବା ଖରାଦିନେ ଆବଶ୍ୟକ ପରିମାଣର ଜଳ ଯୋଗାଇପାରୁ ନ ଥିବାରୁ କ୍ରମେ ଚାଷୀକୁଳର ଆର୍ଥିକ ମାନଦଣ୍ଡ ଦୁର୍ବଳ ହୋଇଯାଉଥିଲା । ସୁବର୍ଣ୍ଣରେଖା ବୁଡାବଳଙ୍ଗ ଯୋଜନା କାର୍ଯ୍ୟକାରୀ ହେବାପାଇଁ ଯଥେଷ୍ଟ ଚାପ ଦିଆଯାଉଥିଲେ ହେଁ ଏହାର ସଫଳତା ଉପରେ ଲୋକେ ଆସ୍ଥା ସ୍ଥାପନ କରି ପାରୁ ନ ଥିଲେ । ୧୯୭୧-୭୨ ବେଳକୁ ଦୁଇଟି ମଧମ ଜଳସେଚନ ଯୋଜନା କାର୍ଯ୍ୟକାରୀ ହେବାର ଦେଖାଗଲା ମାତ୍ର ଏହାର କାର୍ଯ୍ୟ ଏତେ ମନ୍ଥର ଗତିରେ ଚାଲିଲା ଯେ ଲୋକେ ଏହା ଉପରେ ବିଶ୍ୱାସ କରି ପାରୁନଥିଲେ । ଓଡ଼ିଶାରେ ଭୂତଳ ଜଳ ସଂପଦର ଯଥେଷ୍ଟ ସୁଯୋଗ ଥିଲେ ହେଁ ସେଥିରେ କେବଳ କଟକ, ପୁରୀ, ଗଞ୍ଜାମ, ଓ ବାଲେଶ୍ୱର ଜିଲ୍ଲା ବିଶେଷ ଉପକୃତ ହେଉଥିଲେ । ମୟୂରଭଞ୍ଜ ଜିଲ୍ଲା ପ୍ରତି ବିଶେଷ ଧ୍ୟାନ ଦିଆଯାଉ ନ ଥିଲା ।

## ''ଉଠାଜଳସେଚନ ଯୋଜନା''

ମୁଁ ବୈଶିଙ୍ଗା ନିର୍ବାଚନ ମଣ୍ଡଳୀରୁ ୧୯୬୨ରୁ ୧୯୭୨ମଧରେ ଦୁଇଥର ବିଧାନସଭାକୁ ସମାଜବାଦୀ ଦଳରୁ ନିର୍ବାଚିତ ହୋଇଥିବା ସମୟରେ ଏହି ଯୋଜନା ଅତି ସହଜରେ ଓ ଅଳ୍ପ ଖର୍ଚ୍ଚରେ ହୋଇପାରୁଥିବାରୁ ଦେଖି ଏଥିପ୍ରତି ଅଧିକ ଧ୍ୟାନ ଦେଲି । ସେ ପର୍ଯ୍ୟନ୍ତ ମୟୂରଭଞ୍ଜ ଜିଲ୍ଲାରେ ଭୂତଳ ଜଳ ସଂପଦର ବ୍ୟାପକ ତଦନ୍ତ ହୋଇ ନ ଥିଲା, ମାତ୍ର କେତୋଟି ସ୍ଥାନରେ କାଁ ଭାଁ ତଦନ୍ତ ହୋଇ ବିଫଳତାର ରିପୋର୍ଟ ମିଳିଥିଲା । ସେଥିପାଇଁ ଜିଲ୍ଲା ମଧରେ ପ୍ରବାହିତ ନଦୀଗୁଡିକରୁ ସିଧା ସଳଖ ଉଠାଜଳସେଚନ ଯୋଜନା ପାଇଁ ଉଦ୍ୟମ ଆରମ୍ଭ କଲି । ମାତ୍ର ଏଥିପାଇଁ ସବୁସ୍ଥାନରେ ସେପରି ବିଦ୍ୟୁତ ସରବରାହର ସୁବିଧା ନ ଥିଲା ତେଣୁ ଯେଉଁ କେତୋଟି ସ୍ଥାନରେ ବିଦ୍ୟୁତ ସୁବିଧା ଥିଲା ସେଠାରେ ଉଠାଜଳସେଚନ ବ୍ୟବସ୍ଥା କରାଇଲି । ମୟୂରଭଞ୍ଜ ଜିଲ୍ଲାକୁ ସେତେବେଳେ ବିଶେଷ ଗୁରୁତ୍ୱ ଦିଆଯାଉ ନ ଥିବାରୁ ଏଠାରେ ଜଣେ ମାତ୍ର ସହକାରୀ ଯନ୍ତ୍ରୀ ଥିଲେ ଏବଂ ସେ ମଧ ବାଲେଶ୍ୱର ନିର୍ବାହୀ ଯନ୍ତ୍ରୀଙ୍କ ଅଧୀନରେ କାମ କରୁଥିଲେ । ସେତେବେଳକୁ ବାଲେଶ୍ୱର ଜିଲ୍ଲାରେ ଦୁଇଟି ଉଠାଜଳସେଚନ ଯୋଜନାର

ଡିଭିଜନ ଥାଇ ଭୂତଳରୁ ନଳକୂପ ଓ ପ୍ରବାହିତ ନଦୀଗୁଡିକରୁ ସିଧା ସଳଖ ଉଠାଜଳସେଚନ ଯୋଜନା କାର୍ଯ୍ୟକାରୀ ହେଉଥିଲା । ଏହାପରେ ଭୂତଳ ଅନୁସନ୍ଧାନ ହୋଇ ଦେଖାଗଲା ଯେ, ବୁଢାବଳଙ୍ଗ, ଗଙ୍ଗାହାର, ସୋନ ଓ ଦମ୍ଭୀରା ପ୍ରଭୃତି ନଦୀ ତୀରବର୍ତ୍ତୀ ଅଞ୍ଚଳର ଉଭୟ ପାର୍ଶ୍ୱରେ ଏକ କିଲୋମିଟର ଦୈର୍ଘ୍ୟ ଅଞ୍ଚଳର ମାଟିତଳେ ପ୍ରଚୁରପାଣି ରହିଛି । ସେତେବେଳେକୁ ମୁଁ ବୈଶିଙ୍ଗାରୁ ବିଧାନ ସଭା ସଭ୍ୟ ଥିବା ବେଳେ ବୁଢାବଳଙ୍ଗ, ଗଙ୍ଗାହାର ଜମ୍ଭୀରା ଓ ସୁବର୍ଣ୍ଣରେଖା ନଦୀକୂଳରେ ପ୍ରାୟ ଶହେରୁ କିଛି ଅଧିକ ଯୋଜନା କାର୍ଯ୍ୟକାରୀ ହୋଇ ସାରିଥିଲା । ଏହାପରେ ୧୯୭୭ରୁ କଂଗ୍ରେସ ଦଳରୁ ବିଧାନ ସଭାକୁ ନିର୍ବାଚିତ ହେଲାବେଳକୁ ସେ ତିନିବର୍ଷରେ ମୁରୁଡା ଓ ଶୂଳିଆ ପଦା ବ୍ଲକରେ ସିଧାସଳଖ ଉଠାଜଳସେଚନ ଯୋଜନା ବାବଦରେ ସାତିଆଠଟି ଯୋଜନା ଜମ୍ଭୀରା କୂଳରେ କରାଇଲି । ଏଠାରେ ଏକ ଡିଭିଜନ ନ ଥିବାରୁ ଯୋଜନା ମଞ୍ଜୁରୀ ପାଇବାରେ ଡେରି ହେଉଥିଲା, ତେଣୁ ମୟୂରଭଞ୍ଜ ଜିଲ୍ଲାପାଇଁ ଏକଡିଭିଜନ ଖୋଲିବାକୁ ଉଦ୍ୟମ କଲି । ସେତେବେଳକୁ ଏ ଜିଲ୍ଲାରେ ପ୍ରାୟ ଦୁଇଶହରୁ କିଛି ଅଧିକ ପଏଣ୍ଟ ହେବାକୁ ଯାଉଥିଲା । ଉଠାଜଳସେଚନ ବିଭାଗ ଏକ ନିଗମ ଦ୍ୱାରା ପରିଚାଳିତ ହେଉଥିବାରୁ କେନ୍ଦ୍ରସରକାରଙ୍କ ମଞ୍ଜୁରୀରେ ଅର୍ଥ ମଧ ମିଳୁଥିଲା ଏବଂ ପୂର୍ଣ୍ଣ କାର୍ଯ୍ୟକାରିତା ପାଇଁ ଅବଶିଷ୍ଟ ଅଂଶ ରାଜ୍ୟସରକାର ତିଆରି ବେଳେ ଦେଉଥିଲେ । ଏକ ନୂତନ ଡିଭିଜନ ମୟୂରଭଞ୍ଜରେ କରିବାକୁ ଅର୍ଥ ବିଭାଗ କୁଣ୍ଠାପ୍ରକାଶ କରିବାରୁ ମୁଁଗୋଟିଏ ସୁଚିନ୍ତିତ ପ୍ରସ୍ତାବ ଦେଲି ଯେଉଁଥିରେ ଖର୍ଚ୍ଚ କିଛି ବଢିବ ନାହିଁ କିନ୍ତୁ ସାମାନ୍ୟ ଅଦଳ ବଦଳରେ ଏହି ଜିଲ୍ଲାରେ ଏକ ଡିଭିଜନ ଖୋଲାଯାଇ ଉଠାଜଳସେଚନ ଓ ଭୂତଳ ଜଳ ସଂପଦର ଅନୁସନ୍ଧାନ କାର୍ଯ୍ୟ ସୁଚାରୁ ରୂପେ ଏକ ସଙ୍ଗେ ଚାଲିପାରିବ । ସେତେବେଳେ ମୟୂରଭଞ୍ଜରେ ଥିବା ଭୂତଳ ଅନୁସନ୍ଧାନ ଡିଭିଜନର ଅନେକକାମ ଶେଷ ହୋଇ ଯାଇଥିବାରୁ ମାତ୍ର ଗୋଟିଏ ସବ୍‌ଡିଭିଜନ ବା ଉପଖଣ୍ଡ ରହିଲେ ମଧ ଅବଶିଷ୍ଟ ଆବଶ୍ୟକୀୟ କାର୍ଯ୍ୟ ତୁଲାଯାଇପାରିବ । ତେଣୁ ତାକୁ ଏକ ସବ୍‌ଡିଭିଜନ୍ ଭାବେ ରଖି ସେଠାକାର କାର୍ଯ୍ୟ ନିର୍ବାହୀ ଯନ୍ତ୍ରୀଙ୍କୁ ଉଠାଜଳସେଚନ ଯନ୍ତ୍ରୀ ରୂପେ ନିଯୁକ୍ତି ଦେଲେ ଏ ଜିଲ୍ଲାର ଏକ ବଡ ଆବଶ୍ୟକତା ପୂରଣ ହୋଇପାରିବ । ମୋର ଏହି ପ୍ରସ୍ତାବଟିକୁ ସରକାରଙ୍କୁ ଗ୍ରହଣ କରାଇପାରିବାରୁ ଏଠାରେ ଏକ ଡିଭିଜନ ଖୋଲାଗଲା ଏବଂ ବିଭିନ୍ନ ଉଠାଜଳସେଚନର ନୂତନ ଯୋଜନା ମାନ ମଞ୍ଜୁରୀ ପାଇବାରେ ସଫଳ ହେଲା ।

୧୯୮୩ ବର୍ଷରେ ମୟୂରଭଞ୍ଜର ଶୂଳିଆପଦା, ମରୁଡା ଓ କୂଳଅଣା ଏବଂ ବେତନଟୀ ବ୍ଲକ ଅଞ୍ଚଳରେ ଖରିଫ ଋତୁରେ ପ୍ରବଳ ମରୁଡି ଅବସ୍ଥା ଦେଖାଗଲା । ସେଥିମଧ୍ୟରୁ ଶୂଳିଆପଦାର ମୋଟ ୧୦ଟି ପଞ୍ଚାୟତ ଅଞ୍ଚଳକୁ ମରୁଡି ଆକ୍ରାନ୍ତ ବୋଲି ସରକାରୀ ତଦନ୍ତରେ ପ୍ରକାଶ ପାଇଲା । ସେ ବର୍ଷକୁ ଅର୍ଥ ବିଭାଗ କଟକଣାରୁ ଆଉ କେଉଁଠି ହେଲେ ଉଠାଜଳସେଚନ ଯୋଜନା ନୂଆ କରି କାର୍ଯ୍ୟକାରୀ କରିବାକୁ ବାରଣ କରାଯାଇଥିଲା ଓ ଏପରିକି ପୁରୁଣା ଯୋଜନା ଗୁଡିକ ଅଚଳ ହେଲେ ବା କେନାଲ ନଷ୍ଟ ହେଲେ ସାମାନ୍ୟ ମରାମତି ପାଇଁ ମଧ ନିଗମ ଅର୍ଥାଭାବ ଦେଖାଦେଇଥିଲା । ଅପର ପକ୍ଷରେ ନଦୀକୂଳ ପ୍ରବାହିତ ଯୋଜନାରେ ପ୍ରତିବର୍ଷ କେନାଲ ଓ ବନ୍ଧ ମରାମତି ବାବଦରେ ହଜାର ହଜାର କୋଟି ଟଙ୍କା ରଖାଯାଉଛି । ଜଳସେଚନ ବାବଦରେ ଧାର୍ଯ୍ୟକର ଏତେ କମ ରଖାଯାଇଛି, ଯେ ସେଗୁଡିକର ରକ୍ଷଣା ବେକ୍ଷଣପାଇଁ ନିଯୁକ୍ତ କର୍ମଚାରୀଙ୍କ ଦରମା ମଧ ପଇଠ କରାଯାଇ ପାରୁନାହିଁ । ଏହି ନଦୀବନ୍ଧ ଜଳସେଚନ ଯୋଜନା ଗୁଡିକ ଖୋଦ ସରକାରଙ୍କ ଏକ ବିଭାଗ ହେତୁ ସେଥିରେ ଲାଭକ୍ଷତି ବିଚାର ନ କରି ଦେଶର ଉତ୍ପାଦନ ଓ କୃଷିର ଉନ୍ନତି ଦୃଷ୍ଟିରୁ ସମସ୍ତ ଖର୍ଚ୍ଚ ସଂପୃକ୍ତ ବିଭାଗ ତୁଲାଇଥାଏ । କିନ୍ତୁ ଅପର ପକ୍ଷରେ ଉଠାଜଳସେଚନ ଯୋଜନାକୁ ଏକ ନିଗମର ଅନ୍ତର୍ଭୁକ୍ତ କରି ଜଳକର ବାବଦରେ ବହୁତ ବେଶି ଆଦାୟ କରୁଥିଲେ ହେଁ ଅଯଥା ବଡ ବଡ ଅଫିସର ନିଯୁକ୍ତ ଦେବା ଫଳରେ ଅଧିକ ଖର୍ଚ୍ଚ ବଢୁଛି ଏବଂ ନାବାର୍ଡ ବା

ଅନ୍ୟ ସଂସ୍ଥାରୁ ଋଣ ଆଣି ତାହା ପରିଶୋଧ କରି ନ ପାରି ଉକ୍ତ ସଂସ୍ଥା ଏକଦେବାଳିଆ ଅବସ୍ଥାରେ ପରିଣତ ହେଲାଣି । ସେଥିପାଇଁ ଏହା ଏକ ବ୍ୟବସାୟୀକ ସଂସ୍ଥା ହୋଇଥିବାରୁ ଏହାକୁ ବନ୍ଦ କରିଦେବାର ଯୋଜନା କରାଯାଉଥିଲା । ଏତିକି ବେଳେ ମୁଁ ସରକାରଙ୍କୁ ଜଣାଇ ଦେଲି ଯେ ମୟୂରଭଞ୍ଜର ଶୂଳିଆପଦା ଓ ଅନ୍ୟ ମରୁଡ଼ି ଅଞ୍ଚଳରେ ଯଦି ଉଠାଜଳସେଚନ ଯୋଜନା ନୂତନ ଭାବେ ତୁରନ୍ତ କାର୍ଯ୍ୟକାରୀ କରାନଯାଏ ତେବେ ମୁଁ ସରକାରୀ ଦଳର ବିଧାନସଭା ସଭ୍ୟ ହୋଇଥିଲେ ହେଁ ବାଧ ହୋଇ ଅମରଣ ଅନସନ ଆରମ୍ଭ କରିବି । ସେଥିପାଇଁ ଏକ ନିର୍ଦ୍ଦିଷ୍ଟ ସମୟ ସୀମା ମଧ ଦେଲି । ସେହି ସମୟ ମଧରେ ସରକାରୀ ପଦକ୍ଷେପ ହେବାର ନ ଦେଖିଲେ ମୁଁ ଅନଶନରେ ବସିବି । ମୋର ଏହି ନିଷ୍ପତ୍ତି ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ଜାନକୀବଲ୍ଲଭ ପଟ୍ଟନାୟକଙ୍କୁ ମଧ ଜଣାଇଦେଲି । ଠିକ୍ ସେତିକି ବେଳେ ମୁଖ୍ୟମନ୍ତ୍ରୀଙ୍କ ସଭାପତିତ୍ୱରେ ଏକ ଉଚ୍ଚ କ୍ଷମତା ସଂପନ୍ନ କମିଟି ବସିଲା, ମୋ ସମେତ ମୟୂରଭଞ୍ଜର ସମସ୍ତ ବିଧାନ ସଭା ସଭ୍ୟ ଓ ମନ୍ତ୍ରୀ ମଧ ଯୋଗଦେଲେ । ଉଠାଜଳସେଚନ ଯୋଜନାର ଉପକାରିତା ସଂପର୍କରେ ମୋର ଦୃଢ଼ ଯୁକ୍ତି ଉପସ୍ଥାପନ କଲି ଯାହା ଫଳରେ ସରକାରୀ ନିଷ୍ପତ୍ତିରେ ପରିବର୍ତ୍ତନ କରାଗଲା ଓ ସେହି ଦିନର ବୈଠକରେ ମୟୂରଭଞ୍ଜ ଜିଲ୍ଲାର ମରୁଡ଼ି ଅଞ୍ଚଳ ପାଇଁ ୩୪ଟି ନୂତନ ଯୋଜନା ମଞ୍ଜୁରୀ ପାଇଲା ଓ ସେଥିମଧରୁ ୨୪ଟି ମୁରୁଡ଼ା ଓ ଶୂଳିଆପଦା ବ୍ଲକର ଅନ୍ତର୍ଭୁକ୍ତ ଥିଲା । ଉଠାଜଳସେଚନ ଯୋଜନା ଅଳ୍ପଖର୍ଚ୍ଚ ଓ ଅଳ୍ପ ସମୟ ମଧରେ କାର୍ଯ୍ୟକାରୀ ହୋଇ ପାରୁଥିବାରୁ ଏହାର ଉପକାରିତା ଓ ପ୍ରୟୋଜନୀୟତା ସମସ୍ତେ ଉପଲବ୍ଧି କଲେ । ପରବର୍ତ୍ତୀ ବିଧାନ ସଭା ବୈଠକରେ ସବିଶେଷ ଆଲୋଚନା କରାଯାଇ ୧୯୮୫ ନିର୍ବାଚନ ପୂର୍ବରୁ ପ୍ରତି ବ୍ଲକରେ ଅନ୍ତତଃ ୫୦ଏକର ଜମିରେ ଉଠାଜଳସେନ ବ୍ୟବସ୍ଥା କାର୍ଯ୍ୟକାରୀ କରାଯିବାର ସ୍ଥିର କରାଗଲା । ମୋର ଏହି ଦୃଢ଼ ପଦକ୍ଷେପ ଯୋଗୁଁ ବିଧାନସଭା ସଭ୍ୟ ତଥା ସାଧାରଣ ଉପକୃତ ହେଲେ ।

ଉଠାଜଳସେଚନ ଯୋଜନା କିପରି ଆହୁରି ଅଧିକ ତ୍ୱରାନ୍ୱିତ ହୋଇ ପାରିବ ଓ ସେଥିପାଇଁ ଅର୍ଥର ଆବଶ୍ୟକତା ବେଳେ ନାବାର୍ଡର ଋଣ ଉପରେ ନିର୍ଭର କରିବାକୁ ପଡ଼ିବ ନାହିଁ ତହିଁର ଏକ ନୂତନ ବାଟ ବାହାର କଲି । ସେତେବେଳେ କେନ୍ଦ୍ର ସରକାରଙ୍କ ଠାରୁ (ଗ୍ରାମ୍ୟ ଉନ୍ନୟନ) ଓ (ଆଦିବାସୀ ଉନ୍ନୟନ)ପାଇଁ ବହୁ ଅର୍ଥ ଆସି ଖର୍ଚ୍ଚ ହୋଇ ପାରୁନ ଥିଲା । ସେଥିରେ ପୁଣି କ୍ଷୁଦ୍ରଚାଷୀ, ନାମମାତ୍ର ଚାଷୀ ଏବଂ ଆଦିବାସୀ ଓ ହରିଜନମାନଙ୍କ ଆର୍ଥିକ ଉନ୍ନତି ପାଇଁ ଛେଳି, ମେଣ୍ଢା, ଘୁସୁରି ପ୍ରଭୃତି ଯୋଗାଇବା ବାବଦ ଯୋଜନା ଅନ୍ତର୍ଭୁକ୍ତ ହୋଇଥିବାରୁ ବହୁ ଅର୍ଥ ଅପବ୍ୟୟ ହେଉଥିଲା ଓ ଯୋଗାଇ ଦିଆଯାଇଥିବା ପଶୁଗୁଡ଼ିକ ମଧ ମରିଯାଉଥିଲେ । ତେଣୁ ସେତେବେଳେର ମୟୂରଭଞ୍ଜର ଜିଲ୍ଲାପାଳଙ୍କ ସହ ଆଲୋଚନା କରି ସେ ବାବଦ ଅର୍ଥରେ ଗରିବ, ନାମମାତ୍ର ଚାଷୀ ଓ କ୍ଷୁଦ୍ର ଚାଷୀଙ୍କ ଜମିରେ ଉଠା ଜଳସେଚନ ମାଧମରେ ଜଳ ସେଚନର ସୁବିଧା ଯୋଗାଇ ଦେଲେ ତାହା ସବୁଦିନ ପାଇଁ ତାଙ୍କର ଆର୍ଥିକ ଉନ୍ନତିର ସହାୟକ ହେବ ବୋଲି ଏକ ପ୍ରସ୍ତାବ ଦେଲି । ଏହା ଏକ ଉପାଦେୟ ପ୍ରସ୍ତାବ ଦେଖି ଜିଲ୍ଲାପାଳ ଓ ଅନ୍ୟ ବିଧାୟକମାନେ ମଧ ଏକମତ ହୋଇଗଲେ । ଫଳରେ ସମଗ୍ର ଜିଲ୍ଲାରେ ଭୂତଳ ଜଳପାଇଁ ଜଳକୂପ ଓ ସ୍ଥାୟୀ ଜଳ ସ୍ରୋତ ମାନଙ୍କରୁ ସିଧାସଳଖ ଭାବେ ଉଠାଜଳସେଚନ ଯୋଜନାମାନ କାର୍ଯ୍ୟକାରୀ କରାଗଲା ଓ ତାହା ବେଶ ଫଳପ୍ରଦ ହେଲା । ମୟୂରଭଞ୍ଜ ଜିଲ୍ଲାର ଏହି କାର୍ଯ୍ୟକ୍ରମ ଦେଖି ଓଡ଼ିଶାର ସବୁ ଜିଲ୍ଲାରେ ମଧ ଏହାକୁ ଗ୍ରହଣ କରାଗଲା । କିନ୍ତୁ ଏହି ଯୋଜନା ଦ୍ୱାରା ସେଠାକାର ଶତକଡ଼ା ୭୦ଭାଗ ଗରିବ ଚାଷୀ ଜଳପାଇ ପାରିବେ କେବଳ ସେହିଠାରେ ହିଁ ଉକ୍ତ ଯୋଜନା କାର୍ଯ୍ୟକାରୀ ହୋଇପାରିବ । ଯେହେତୁ ସେହି ଅର୍ଥ କେବଳ ସେହି ଶ୍ରେଣୀର ଲୋକଙ୍କ ଆର୍ଥିକ ଉନ୍ନତି ପାଇଁ ଉଦ୍ଦିଷ୍ଟ ଥିଲା । ଆମର ଏହି ପ୍ରସ୍ତାବଦେଖି ସମସ୍ତ ବିଧାନ ସଭାର ସଭ୍ୟ ସେମାନଙ୍କ ନିର୍ବାଚନ ମଣ୍ଡଳୀରେ ମଧ ଏହିଭଳି କାର୍ଯ୍ୟକ୍ରମ ଗ୍ରହଣ କଲେ । ଏତଦ୍ ବ୍ୟତୀତ ସ୍ୱତନ୍ତ୍ର ଭାବେ ନାବାର୍ଡଠାରୁ ମଧ

ମୋ ନିର୍ବାଚନ ମଣ୍ଡଳୀରେ ଆହୁରି ଅଧିକ ଯୋଜନା ମଞ୍ଜୁର କରାଇଲି । ୧୯୮୯ ବେଳକୁ ମୟୂରଭଞ୍ଜର ପ୍ରାୟ ୬୫୦ପର୍ଯ୍ୟନ୍ତ ନିଗମଦ୍ୱାରା ଓ ତହିଁପରେ ଘରୋଇ ବ୍ୟକ୍ତିଙ୍କ ନିଜ ଦାୟିତ୍ୱରେ ଏଗ୍ରୋଇଣ୍ଡଷ୍ଟ୍ରି ଜରିଆରେ ୨୦୦ ପର୍ଯ୍ୟନ୍ତ ଯୋଜନା କାର୍ଯ୍ୟକାରୀ ହୋଇପାରିଲା । ଏକ ଡିଭିଜନ ସାଙ୍ଗକୁ ଚାରିଟି ଉପଖଣ୍ଡ (ସବ୍‌ଡିଭିଜନ) ମଧ୍ୟ ପ୍ରତିଷ୍ଠିତ ହୋଇପାରିଲା ।

## "କ୍ଷୁଦ୍ରଜଳସେଚନ ଯୋଜନା"

ମୟୂରଭଞ୍ଜ ପୂର୍ବରୁ ଗଡଜାତ ଥିବା ସମୟରେ ସ୍ୱର୍ଗୀୟ ମହାରାଜ ଶ୍ରୀରାମଚନ୍ଦ୍ର ଭଞ୍ଜ ଦେଓଙ୍କ ସମୟରେ ବାଲିଡିହା ଓ ହଳଦିଆ ଦୁଇଟି ମଧ୍ୟମ ଧରଣର ଜଳସେଚନ ଯୋଜନା କାର୍ଯ୍ୟକାରୀ ହେବା ସଙ୍ଗେ ସଙ୍ଗେ ବିଭିନ୍ନ ଅଞ୍ଚଳରେ କିଛି କ୍ଷୁଦ୍ର ଜଳସେଚନ ଯୋଜନା ମଧ କାର୍ଯ୍ୟକାରୀ ହୋଇଥିଲା । ଏଗୁଡିକ ମଧରୁ ଅନେକ କାଳକ୍ରମେ ପୋତି ହୋଇ ଯାଉଥିଲେ ହେଁ ତହିଁର ଆଉ ଉନ୍ନତି ସାଧନ ହେଉ ନ ଥିଲା କିମ୍ବା କେନାଲ ଗୁଡିକର ମଧ ନିର୍ଦ୍ଧାରିତ ସମୟ ମଧରେ ମରାମତି ହେଉନଥିବାରୁ ସେ ଗୁଡିକ ଅକାମୀ ହୋଇଯାଉଥିଲା । ମୟୂରଭଞ୍ଜର ୧୯୪୯ରୁ ଓଡିଶା ସହିତ ମିଶ୍ରଣ ହୋଇଥିଲେ ମଧ ଏଠାକାର ଜଳସେଚନ ପ୍ରତି ଧାନ ଦିଆ ଯାଉ ନ ଥିଲା ଯଦିଓ ଏ ଜିଲ୍ଲାରେ ବହୁ ସ୍ଥାୟୀ କ୍ଷୁଦ୍ର, ମଧମ ଓ ବୃହତ ଜଳସ୍ରୋତ ମାନ ପ୍ରବାହିତ ହେଉଅଛି ମୟୂରଭଞ୍ଜ ଜିଲ୍ଲାର ଠିକ ମଧ ସ୍ଥଳରେ ଶିମିଳିପାଳ ପର୍ବତମାଳା ଅବସ୍ଥିତ ହୋଇଥିବାରୁ ଉକ୍ତ ପର୍ବତମାଳାରୁ ଦୁଇଦିଗକୁ ବହୁ ଜଳସ୍ରୋତ ତଥା ନଦୀନାଳ ପ୍ରବାହିତ ହୋଇ ସ୍ଥାୟୀଭାବେ କ୍ଷୁଦ୍ର, ମଧମ ଓ ବୃହତ ଧରଣର ଜଳ ପ୍ରକଳ୍ପ ପାଇଁ ପ୍ରକୃତିର ଅପୂର୍ବ ଅବଦାନ ରହିଛି । ଏ ସୁଯୋଗର ଅଳ୍ପକିଛି ମୟୂରଭଞ୍ଜ ଦରବାର ଶାସନ କାଳରେ କାର୍ଯ୍ୟକାରୀ କରାଯାଇଥିଲେ ହେଁ ରାଜନୈତିକ କାରଣରୁ ଏହି ଆଦିବାସୀ ଅଧୁଷିତ ଅଞ୍ଚଳ ଅବହେଳିତ ଅବସ୍ଥାରେ ରହିଥିଲା । ତେଣୁ ବର୍ଷକୁ ବର୍ଷ ମରୁଡି ଘଟି ଚାଷୀଙ୍କ ଆର୍ଥିକ ଅବସ୍ଥା ଦୁର୍ବଳ ହୋଇ ଯାଉଥିଲା । ୧୯୫୨ରେ ମୁଁ ବିଧାନ ସଭାର ସଭ୍ୟ ହେବାପରେ ମରୁଡିର ପ୍ରଳୟଙ୍କର ପ୍ରକୋପ ୧୯୫୩-୫୪ବର୍ଷଠାରୁ ଅନୁଭବ କଲି । ଓଡିଶାର ବିଭିନ୍ନ ଅଞ୍ଚଳର ୧ମ, ୨ୟ ଓ ୩ୟ ପଞ୍ଚବାର୍ଷିକ ଯୋଜନା ସମୟରେ ଜଳସେଚନ ପ୍ରତି ବିଶେଷ ଗୁରୁତ୍ୱ ଦିଆଯାଇଥିଲେ ହେଁ ମୟୂରଭଞ୍ଜରେ ମଧମ ଓ ବୃହତ ଜଳ ସେଚନର ସମ୍ଭାବନା ନାହିଁ ବୋଲି କୁହାଯାଇ କ୍ଷୁଦ୍ର ଜଳପ୍ରକଳ୍ପ କରାଯିବାର ବିଚାର କରାଯାଇଥିଲା ଓ ସେଥିରେ ମଧ ଆମ ଭାଗ ଖୁବ୍ କମ୍ ଥିଲା ।

ମୁଁ ପ୍ରଥମେ ସଦର ସବ୍‌ଡିଭିଜନ ଅନ୍ତର୍ଗତ ବଡଯୋଡ କ୍ଷୁଦ୍ର ଜଳସେଚନ ଯୋଜନା କାର୍ଯ୍ୟକାରୀ କରିବାରେ ବିଶେଷ ଚେଷ୍ଟା କଲି । ତତ୍ପରେ ପୁରୁଣା କ୍ଷୁଦ୍ର ଜଳ ସେଚନ ଯୋଜନା ଗୁଡିକ କ୍ରମେ ପୋତି ହୋଇ ଯାଇ ଅକାମୀ ହୋଇ ଯାଉଥିବାରୁ ଅଳ୍ପ ଖର୍ଚ୍ଚରେ ସେଗୁଡିକ ପୁଣି କାର୍ଯ୍ୟକାରୀ ହେବାର ସମ୍ଭାବନା ଥିବା ଦୃଷ୍ଟିରୁ ସେଗୁଡିକ ଉପରେ ବିଶେଷ ଧାନ ଦେଲି । ଏ ଜିଲ୍ଲାରେ ଆଦିବାସୀ ବିଧାୟକଙ୍କ ସଂଖ୍ୟା ଅଧିକ ଥିବାରୁ ବିଧାନ ସଭାରେ ଏଠାକାର ଆର୍ଥିକ ଅବସ୍ଥାର ପ୍ରତିଫଳନ ବିଶେଷ ଭାବରେ ହୋଇପାରୁ ନ ଥିଲା । ମୁଁ ମଧ ପ୍ରଥମ ପାଞ୍ଚଥର ବିଧାନସଭାକୁ ବିରୁଦ୍ଧ ଦଳରୁ ନିର୍ବାଚିତ ହୋଇଥିବାରୁ ନୂତନ ଯୋଜନା ପାଇଁ ବହୁ ଉଦ୍ୟମ ସତ୍ତ୍ୱେ ସଫଳକାମ ହୋଇ ପାରୁ ନ ଥିଲି । ମୟୂରଭଞ୍ଜରୁ ସରକାରୀ ଦଳରୁ କେହି କେହି ମନ୍ତ୍ରୀ ହୋଇଥିଲେ ହେଁ ଏହି ଗୁରୁତର ସମସ୍ୟା ପ୍ରତି କାହାରି ଆନ୍ତରିକ ଉଦ୍ୟମ ପ୍ରାୟ ନ ଥିଲା । କିନ୍ତୁ ବୁଢାବଳଙ୍ଗ, ସୁବର୍ଣ୍ଣରେଖା, ଗଙ୍ଗାହାର, ସୋନ, ଖଡକେଇ ନଦୀବନ୍ଧଯୋଜନା ପାଇଁ ମୋ ଉଦ୍ୟମ ଅବ୍ୟାହତ ରହିଥିଲା । ଏହାପରେ ଏ ଜିଲ୍ଲାର ଉନ୍ନତି ପାଇଁଲୋକଙ୍କ ଅନୁରୋଧ ତଥା ରାଜନୈତିକ ପରିବର୍ତ୍ତନ ପାଇଁ ମୋତେ ପୁଣି ବହୁବର୍ଷ ପରେ ମୂଳ ଜାତୀୟ କଂଗ୍ରେସ ଅନୁଷ୍ଠାନକୁ ଫେରି ଆସିବାକୁ ପଡିଲା । ମୁଁ କଂଗ୍ରେସ କୁ ଫେରି ଆସିବାପରେ ମୋର ପୂର୍ବ ଉଦ୍ୟମଗୁଡିକ

କ୍ରମେ ସଫଳ ହେବାକୁ ଆରମ୍ଭ କଲା । ମୁଁ ସବୁଦିନେ ଏ ଜିଲ୍ଲାର ଜଳସେଚନ ସୁଯୋଗ ସହିତ ଓଡିଶାର ପୁରୀ, କଟକ, ବାଲେଶ୍ୱର ଗଞ୍ଜାମ ଓ ସମ୍ବଲପୁର ଜିଲ୍ଲାର ଜଳସେଚନ ସୁବିଧାର ଏକ ତୁଳନାତ୍ମକ ବିବରଣୀ ବିଧାନ ସଭାରେ ଉପସ୍ଥାପନ କରି ମୟୂରଭଞ୍ଜକୁ ଅବହେଳା କରାଯାଉଥିବାର ଅଭିଯୋଗ କରି ଆସୁଥିଲି । ତେଣୁ କରି ଅଳ୍ପ କେତେକ ମଧ୍ୟମ ଜଳସେଚନ ଯଥା:- ଖଡକେଇ (ସୁଲେଇପାଟ ନିକଟରେ) ବଙ୍କବଳ, କାଳ ଓ ସୁନେଇ ଭଳି ଯୋଜନା ଗୁଡିକ ମଞ୍ଜୁରୀପାଇ କାର୍ଯ୍ୟକାରୀ ହେବାକୁ ଲାଗିଲା । କିନ୍ତୁ ବାରିପଦା ସବ୍‌ଡିଭିଜନରେ ସୁବର୍ଣ୍ଣରେଖା ବୁଢାବଳଙ୍ଗ ବୃହତ ଯୋଜନା ବ୍ୟତୀତ ମଧ୍ୟମଧରଣର ଯୋଜନାର ସୁଯୋଗ ନ ଥିବାରୁ କ୍ଷୁଦ୍ର ଜଳସେଚନ ଯୋଜନାମାନ କାର୍ଯ୍ୟକାରୀ କରାଇବାର ଚେଷ୍ଟା କଲି । ମୁରୁଡା ବ୍ଲକର ମୁରୁଡା ଗଡିଗାଁ , କାନ୍ଦଶା, ଗିରିଶାପାଳ, ଝିଙ୍କରିଆ, ଘଘରା, ଘୋଳମୁହାଁ ଭଳି କ୍ଷୁଦ୍ରଜଳସେନ ଯୋଜନା ଓ ଶୁଳିଆ ପଦା ବ୍ଲକର କାଣୀ ମହୁଲୀ, ଘଡିଆଶୋଳ, ଯାମଶୋଳ, ଶିଙ୍ଗଡା, ଏବଂ ବାରିପଦା ବ୍ଲକର ସାନଡାକୋଇ ପ୍ରଭୃତି କ୍ଷୁଦ୍ର ଜଳସେଚନ ଯୋଜନା ତଥା ପୁରୁଣା କ୍ଷୁଦ୍ର ଜଳସେଚନ ଯୋଜନାଗୁଡିକର ଉନ୍ନତି ଓ ମରାମତି କରାଇପାରିଲି ।

## ''ରାସ୍ତାଘାଟ ଓ ଗମନା ଗମନର ଉନ୍ନତି ସାଧନ''

ମୟୂରଭଞ୍ଜ ଏକ ପୂର୍ବତନ ଗଡଜାତ ରାଜ୍ୟ ହୋଇଥିଲେ ହେଁ ଜିଲ୍ଲା ଓ ସବ୍‌ଡିଭିଜନ ମହକୁମାକୁ ଯୋଗାଯୋଗ କରିବାକୁ ରାସ୍ତାଘାଟର ସୁବିଧା ଥିଲା ଓ ନିର୍ଦ୍ଧାରିତ ସମୟରେ ସେ ଗୁଡିକର ମରାମତି ମଧ୍ୟ ହେଉଥିଲା । ଏ ସମସ୍ତ ସତ୍ୱେ ପ୍ରଧାନ ଅନ୍ତରାୟଥିଲା ରାସ୍ତା ମଧ୍ୟରେ ପ୍ରବାହିତ ନଦୀ ଓ ନାଳ ଗୁଡିକ ଉପରେ ପୋଲର ଅଭାବ । ତେଣୁଁ ବର୍ଷାଦିନେ ଗମନାଗମନରେ ଲୋକେ ବିଶେଷ ଅସୁବିଧାଭୋଗୁଥିଲେ ଏପରିକି ବର୍ଷାଦିନେ ସବ୍‌ଡିଭିଜନର ମୁଖ୍ୟ କାର୍ଯ୍ୟାଳୟ ତଥା ଥାନାକୁ ମଧ୍ୟ ଲୋକେ ଦରକାର ବେଳେ ପହୁଞ୍ଚପାରୁ ନ ଥିଲେ । ଥାନା ଓ ସବ୍‌ଡିଭିଜନର ମୁଖ୍ୟ କାର୍ଯ୍ୟାଳୟଠାରୁ ବିଚ୍ଛିନ୍ନ ହୋଇ ରହିବା ଦ୍ୱାରା ସେ ଅଞ୍ଚଳର ଆଇନ ଶୃଙ୍ଖଳା ତଥା ଚିକିତ୍ସା ଆଦି କାର୍ଯ୍ୟରେ ଗୁରୁତର ସମସ୍ୟା ଦେଖା ଦେଉଥିଲା । ଆଭ୍ୟନ୍ତରୀଣ କ୍ଷେତ୍ରରେ ଗ୍ରାମଗୁଡିକରେ ସଂପୃକ୍ତ ଥାନା ଓ ବ୍ଲକ କାର୍ଯ୍ୟାଳୟକୁ ଯାତାୟତ ପାଇଁ ଭଲ ରାସ୍ତା ବା ଛୋଟ ନାଳ ଓ ନଦୀ ଗୁଡିକ ଉପରେ ପୋଲ ନଥିଲା । ଏପରିକି ଜିଲ୍ଲାରେ ଥିବା ବିଭିନ୍ନ ଉପଖଣ୍ଡର ସଦର ମହକୁମାରେ ପହଞ୍ଚିବା ମଧ୍ୟ ଦୁଃସାଧ୍ୟ ହୋଇ ପଡୁଥିଲା । ଉଦଳା ସବ୍‌ଡିଭିଜନର ମହକୁମା ଉଦଳାରେ ପହଞ୍ଚିବା ପାଇଁ ବୁଢାବଳଙ୍ଗ, ଦେଓ,ଜମ୍ବୀର ଓ ନାଲୁଆ ପ୍ରଭୃତି ନଦୀରେ ପୋଲ ନ ଥିଲା । ସେହିପରି କରଞ୍ଜିଆ ଓ ରାଇରଙ୍ଗପୁରକୁ ଯିବା ପାଇଁ ମଧ୍ୟ ଅନେକ ନଦୀରେ ପୋଲ ନ ଥିଲା ବା କେତେକ କାଠ ପୋଲ ବର୍ଷାଦିନ ଭାଙ୍ଗି ଯାଉଥିବାରୁ ବିଶେଷ ଅସୁବିଧା ହେଉଥିଲା । ସର୍ବୋପରି ବାରିପଦା ବାଲେଶ୍ୱର ରାସ୍ତାରେ ବଳମାଠାରେ ଓ ମୟୂରଭଞ୍ଜ ଶେଷ ସୀମା ନୁଣିଆ ଯୋଡିଠାରେ ପୋଲ ନ ଥାଇ କେବଳ ଚଟାଣ ଥିବା ଯୋଗୁଁ ବର୍ଷାଦିନେ ବଳଙ୍ଗାରେ ସାମାନ୍ୟ ବନ୍ୟା ହେଲେ ମୟୂରଭଞ୍ଜ ଓଡିଶାରୁ ବିଚ୍ଛିନ୍ନ ହୋଇ ରହୁଥିବାରୁ ଦେଖାଯାଉଥିଲା । ଠିକ୍ ସେହିପରି କରଞ୍ଜିଆର ଅନତିଦୂରରେ ଥିବା ଦେଓ ନଦୀରେ ଉଦଳାର କାଳ, କଣ୍ଡାଳ ଓ ସୋନ ନଦୀ ଗୁଡିକ ଉପରେ ପୋଲ ନ ଥିବାରୁ ବର୍ଷାଦିନେ ସବୁ ଆଡୁ ଏହା ଓଡିଶାରୁ ବିଚ୍ଛିନ୍ନ ହୋଇ ରହୁଥିଲା ତେଣୁଁ ଶାସନ କ୍ଷେତ୍ରରେ ଅନେକ ସମୟରେ ସମସ୍ୟା ଉପୁଜୁଥିଲା । ମୟୂରଭଞ୍ଜ ଏକ ଆଦିବାସୀ ଅଧ୍ୟୁଷିତ ଅଞ୍ଚଳ ହୋଇଥିବାରୁ ଏହା ଏହିପରି ଭାବରେ ଅବହେଳିତ ହୋଇ ରହିଥିଲା ଯଦିଓ ମୟୂରଭଞ୍ଜର ଓଡିଶା ସହିତ ମିଶ୍ରଣ ବେଳକୁ ରାଜଦରବାର ସମୟର ସମସ୍ତ ଗଚ୍ଛିତ ଅର୍ଥ ସହିତ ମିଶ୍ରଣ ସଂଘଟିତ ହୋଇଥିଲା । ଓଡିଶାର ଅନ୍ୟ ଗଡଜାତ ଗୁଡିକର ମିଶ୍ରଣ ବେଳକୁ ସେ ସବୁର ଟ୍ରେଜେରୀ ଶୂନ୍ୟ ପଡିଥିଲା । ସଡକ ଯୋଗାଯୋଗ ବ୍ୟତୀତ ବହୁ ପୂର୍ବରୁ ରହିଥିବା ରେଳ ଯୋଗାଯୋଗର ଉନ୍ନତି ହୋଇ ନ ଥିବାରୁ ଜନ ସାଧାରଣଙ୍କ

ଆର୍ଥିକ ଉନ୍ନତିର ବିଶେଷ ସହାୟକ ହେଉ ନ ଥିଲା । ପ୍ରାୟ ୭୦ ବର୍ଷ ପୂର୍ବେ ସେତେବେଳର ମହାରାଜାଙ୍କ ଉଦ୍ୟମରେ ରୂପ୍‌ସା ଠାରୁ ବାରିପଦା ଦେଇ ଗଡବନ୍ଧ ପର୍ଯ୍ୟନ୍ତ ଏକ ଛୋଟ ରେଳ ଲାଇନର ବ୍ୟବସ୍ଥା କରାଯାଇଥିଲା । ଉକ୍ତ ରେଳ ପଥକୁ ବ୍ରଡ଼ଗେଜରେ ପରିଣତ କରି ରାଇରଙ୍ଗପୁର ସହିତ ସଂଯୋଗ କରିବାର ପ୍ରସ୍ତାବ କେବଳ କଳ୍ପନାରେ ହିଁ ଏ ପର୍ଯ୍ୟନ୍ତ ଆବଦ୍ଧ ହୋଇ ରହିଛି । ଅବଶ୍ୟ ଅନ୍ୟ ଏକ ରେଳ ଲାଇନ ଟାଟାଠାରୁ ବାଦାମପାହାଡ ପର୍ଯ୍ୟନ୍ତ ରହିଥିଲେ ହେଁ ତାର ସୁଯୋଗ ଅତି ସୀମିତ । ଏହା ଯେହିପରି ୬୦।୭୦ ବର୍ଷ ପୂର୍ବେ ମୟୂରଭଞ୍ଜର ବାଦାମପାହାଡଗୋରୁ ମହିଷାଣୀ ଓ ସୁଲେଇ ପାଟରୁ ଲୁହା ପଥର ନେବାର ଯୋଜନାର ନିର୍ମିତ ହୋଇଥିଲା । ତାହା ଏବେ ଅନ୍ୟ ବ୍ୟବସାୟ ବାଣିଜ୍ୟ ବୃଦ୍ଧି କରିବାରେ କେତେକ ପରିମାଣରେ ସାହାଯ୍ୟ କରୁଛି । ରୁପ୍‌ସା ବାଙ୍ଗିରୀପୋଷୀ କ୍ଷୁଦ୍ର ରେଳ ଲାଇନଟି ବ୍ରଡଗେଜରେ ପରିଣତ କରି ଯାମସେଦପୁର ବାଦାମ ପାହାଡ ଲାଇନର ରାଇରଙ୍ଗପୁରଠାରେ ସଂଯୋଗ ହୋଇପାରିଲେ ଲୋକେ ଉପକୃତ ହୁଅନ୍ତେ ତଥା ସମଗ୍ର ମୟୂରଭଞ୍ଜ ଜିଲ୍ଲାର ଖଣିଜ ଓ ବନ୍ୟ ସଂପଦ ସାଙ୍ଗକୁ ଅନ୍ୟାନ୍ୟ ବାଣିଜ୍ୟ ବ୍ୟବସାୟରେ ଉନ୍ନତି ଘଟି ସାଧାରଣଙ୍କ ଆର୍ଥିକ ସ୍ୱଚ୍ଛଳତା ବୃଦ୍ଧି ପାଇ ପାରନ୍ତା । ଏ ପ୍ରସ୍ତାବ ବିଧାନ ସଭାରେ ବରାବର ଉଠାଯିବା ଫଳରେ ପଞ୍ଚବାର୍ଷିକ ଯୋଜନାରେ ରାଜ୍ୟର ଅନ୍ୟ ରେଳପଥ ସଂପର୍କୀୟ ପ୍ରସ୍ତାବ ମଧ୍ୟରେ ୪ର୍ଥ ସ୍ଥାନ ପାଇବାରୁ ଏହା କେବେହେଲେ ରାଜ୍ୟ ସରକାରଙ୍କ ଦୃଷ୍ଟି ଆକର୍ଷଣ କରିପାରୁ ନ ଥିଲା । ଆମ ରାଜ୍ୟର ଲୋକସଭା ଓ ବିଧାନସଭା ସଭ୍ୟମାନଙ୍କ ମଧ୍ୟରେ ଆମ ଜିଲ୍ଲାର ଅଧିକ ପ୍ରତିନିଧି ଥିଲେ ହେଁ ଏ ଦୁଇ ରେଳ ପଥର ଉନ୍ନତି ଓ ସଂଯୋଗ ହୋଇ ନ ପାରିବା ଅତ୍ୟନ୍ତ ପରିତାପର ବିଷୟ । ମୁଁ ବିଧାନସଭାର ଅଧକ୍ଷ ଥିଲାବେଳେ କେନ୍ଦ୍ର ରେଳବାଇ ମନ୍ତ୍ରୀଙ୍କୁ ସାକ୍ଷାତ କରି ଏ ବିଷୟ ତାଙ୍କ ଦୃଷ୍ଟିକୁ ଆଣିଲି । ମୁଁ ଏକ ପୂର୍ବତନ ଗଡଜାତର ବ୍ୟକ୍ତି ଏବଂ ସେ ମଧ୍ୟ ଜଣେ ପୂର୍ବତନ ଗଡ ଜାତର ରାଜା ହୋଇଥିବାରୁ ଉଭୟଙ୍କ ମଧ୍ୟରେ ବେଶ ସୌହାର୍ଦ୍ଧ୍ୟ ଜନ୍ମିଥିଲା । ସେ ମଧ୍ୟ ସହାନୁଭୂତିର ସହ ଏ ଦିଗରେ ସାହାଯ୍ୟ କରିବାର ପ୍ରତିଶ୍ରୁତି ଦେଇଥିଲେ । କିନ୍ତୁ ତହିଁ ପର ନିର୍ବାଚନରେ ମୋର ପରାଜୟ ଓ ସେ ମଧ୍ୟ ଅନ୍ୟ ବିଭାଗର ଦାୟିତ୍ୱ ନେବାରୁ ସେ ଦିଗରେ ଅଗ୍ରଗତି ହୋଇପାରିଲା ନାହିଁ ।

ଗତ ୩୦ବର୍ଷ ମୟୂରଭଞ୍ଜର ଓଡିଶା ସହିତ ମିଶ୍ରଣ କାଳରେ ଅଳ୍ପ କେତେକ ବଡ ଓ ଛୋଟ ନଦୀରେ ପୋଲ ହୋଇ ବାରିପଦାରୁ ଉଦ୍‌ଲାକୁ ଉଦ୍‌ଲାରୁ ବାଲେଶ୍ୱର ଏବଂ କରଞ୍ଜିଆରୁ କେନ୍ଦୁଝର ଓ ଆନନ୍ଦପୁରକୁ ଯୋଗାଯୋଗ ହୋଇପାରୁଛି । ମାତ୍ର ବହୁ ବ୍ଲକ ଓ ଥାନା ଗୁଡିକର ସବ୍‌ଡିଭିଜନ ମହକୁମା ସହିତ ଯୋଗାଯୋଗ ସ୍ଥାପିତ ହୋଇପାରୁନାହିଁ । ଜଳସେଚନ ଗମନାଗମନ ତଥା ଅନ୍ୟାନ୍ୟ ଦିଗରେ ଉନ୍ନତିଘଟୁ ନ ଥିବାରୁ ଲୋକଙ୍କ ଅନୁରୋଧକ୍ରମେ ଏ ସବୁର ପ୍ରତିକାର ପାଇଁ ମୁଁ ୧୯୭୨ ମସିହାରେ ପ୍ରାୟ ୨୩ବର୍ଷର ବ୍ୟବଧାନ ପରେ ପୁଣି କଂଗ୍ରେସ ସଂଗଠନକୁ ଫେରିଗଲି । କିନ୍ତୁ ୧୯୭୪ର ନିର୍ବାଚନରେ ମୋର ପରାଜୟ ହେଲା ଓ ୧୯୭୭ ବର୍ଷର ନିର୍ବାଚନରେ ଜୟଲାଭ କଲେ ହେଁ ଓଡିଶାରେ ତଥା ଭାରତରେ କଂଗ୍ରେସ ବିରୁଦ୍ଧ ଦଳର ସ୍ଥାନ ଲାଭ କଲା । ତେଣୁ ଜିଲ୍ଲାର ପ୍ରଗତିକୁ ଆଗେଇ ନେବାରେ ସେପରି ସଫଳ ହୋଇ ପାରିଲି ନାହିଁ । ୧୯୮୦ରେ ୭ମ ଥର ପାଇଁବିଧାନସଭାକୁ ନିର୍ବାଚିତ ହେଲା ବେଳକୁ ଓଡିଶା ତଥା କେନ୍ଦ୍ରରେ ଓ ଅନ୍ୟାନ୍ୟ ବହୁ ରାଜ୍ୟରେ କଂଗ୍ରେସ ସଂଖ୍ୟା ଗରିଷ୍ଠ ଦଳଭାବେ ନିର୍ବାଚିତ ହୋଇଥିଲା । କଂଗ୍ରେସ ତରଫରୁ ଓଡିଶାରେ ଶ୍ରୀଯୁକ୍ତ ଜାନକୀବଲ୍ଲଭ ପଟ୍ଟନାୟକଙ୍କ ନେତୃତ୍ୱରେ ସରକାର ଗଠିତ ହୋଇଥିଲେ ହେଁ ମୋତେ କୌଣସି ପଦପଦବୀରେ ନିଆଯାଇ ନ ଥିବାରୁ ମୁଁ କେବଳ ସଭ୍ୟ ହୋଇ କିଛି ଦିନ ରହିବା ପରେ ବିଧାନସଭାର ପବ୍ଲିକ ଅଣ୍ଡରଟେକିଂ କମିଟିରେ ଚେୟାରମ୍ୟାନ ଭାବେ ମାତ୍ର ୬ମାସ ପର୍ଯ୍ୟନ୍ତ କାମ କରିବାର ସୁଯୋଗ ପାଇଥିଲି । ସରକାରୀ ଅର୍ଥ ବିନିଯୋଗ

ଗୁଡିକର ତନଖି କାର୍ଯ୍ୟ ଏପରି ଭାବରେ ପରିଚାଳନା କଲି ଯେ ସେଥିରେ କର୍ମଚାରୀମାନେ ଆତଙ୍କ ଗଣିଲେ । ଯାହାହେଉ ୧୯୮୪ର ଶେଷବେଳକୁ ପ୍ରଥମଥର ଓ ୧୯୮୫ରେ ୨ୟଥର ପାଇଁ ଓଡିଶା ବିଧାନସଭାର ଅଧ୍ୟକ୍ଷ ପଦବୀକୁ ନିର୍ଦ୍ୱନ୍ଦଭାବରେ ନିର୍ବାଚିତ ହୋଇ ୧୯୮୯ ପର୍ଯ୍ୟନ୍ତ ଉକ୍ତ ପଦବୀରେ ରହିଲି । ସେହି ସମୟ ମଧ୍ୟରେ ଜିଲ୍ଲାର ଅନ୍ୟାନ୍ୟ ଉନ୍ନତି ମୂଳକ କାର୍ଯ୍ୟ ମଧ୍ୟରେ ରାସ୍ତାଘାଟର ଉନ୍ନତି ପାଇଁ ବିଶେଷ ଦୃଷ୍ଟି ଦେଲି ।

ମୟୂରଭଞ୍ଜର ମୋଟ ଦଶଗୋଟି ବିଧାନସଭା ଆସନ ମଧ୍ୟରୁ କେବଳ ବାରିପଦା ନିର୍ବାଚନ ମଣ୍ଡଳୀ ଏକମାତ୍ର ଆସନ ସାଧାରଣ ପ୍ରାର୍ଥୀଙ୍କ ପାଇଁ ଉଦ୍ଦିଷ୍ଟ ହୋଇଥିଲେ ହେଁ ଏବଂ ବିଗତ ୩୦ବର୍ଷ ପୂର୍ବରୁ ପଞ୍ଚବାର୍ଷିକ ଯୋଜନାର କାର୍ଯ୍ୟ ଆରମ୍ଭ ହୋଇଥିଲେ ହେଁ ବାରିପଦା ନିର୍ବାଚନ ମଣ୍ଡଳୀର ଅବସ୍ଥା ଦୀପତଳ ଅନ୍ଧାର ନ୍ୟାୟରେ ପଡିରହିଥିଲା । ଏଠାରୁ ପୂର୍ବରୁ ନିର୍ବାଚିତ ସଭ୍ୟମାନେ ଏ ଅଞ୍ଚଳର ପ୍ରଧାନ ଓ ପ୍ରଥମ ଉନ୍ନତି ରାସ୍ତାଘାଟ ଓ ଗମନାଗମନର ବ୍ୟବସ୍ଥା ପ୍ରତି କେହି ଦୃଷ୍ଟି ଦେଇ ନ ଥିଲେ । ବାରିପଦା ସହର ଶୁଳିଆପଦା ବ୍ଲକରେ ବହୁ ଅଞ୍ଚଳ ପଶ୍ଚିମବଙ୍ଗର ମେଦିନୀପୁର ଜିଲ୍ଲାକୁ ଲାଗିଥିବାରୁ ଯାତାୟତ ଓ ଆଇନ ଶୃଙ୍ଖଳାରକ୍ଷା ମଧ୍ୟ ବିଶେଷ ଗୁରୁତ୍ୱପୂର୍ଣ୍ଣ ଶୁଳିଆପଦା ବ୍ଲକ ମଧ୍ୟରେ ତିନିଟି ନଦୀ ପ୍ରବାହିତ ହେଉଥିବାରୁ ବର୍ଷରଅଧିକାଂଶ ସମୟ ବ୍ଲକ ଓ ଥାନର ମହକୁମା ବିଚ୍ଛିନ୍ନ ହୋଇ ରହୁଥିଲା । କୌଣସି ନଦୀରେ ପୋଲ ନ ଥିବାରୁ ବ୍ୟବସାୟ ବାଣିଜ୍ୟ ଓ ଚୋରୀ ଡକାୟତି ପାଇଁ ଆଇନ ଶୃଙ୍ଖଳା ରକ୍ଷା ବାଧାପ୍ରାପ୍ତ ହେଉଥିଲା । ତେଣୁ ସରକାରଙ୍କ ଉପରେ ପ୍ରଭାବ ପକାଇ ମାହାନ୍ତି ନଦୀ ଉପରେ ପାକଟିଆ ଓ ମହାବିଲାଠାରେ ଦୁଇଟି ପୋଲ ଓ ଗୁନଫା ନଦୀ ଉପରେ ମଧ୍ୟ ଗୁହାଳଡିହାଠାରେ ଆଉ ଗୋଟିଏ ପୋଲ କରାଇଲି । ପୁଣି ମାହାନ୍ତି ନଦୀ ଉପରେ କୋଷ୍ଠା ଠାରେ ଆଉ ଗୋଟିଏ ପୋଲ ହେଲା । ଏହା ଫଳରେ ଶୁଳିଆପଦା ମଧ୍ୟରେ କେବଳ କେତେକ ଛୋଟ ନାଳ ଥିବା ଅଞ୍ଚଳ ଗୁଡିକୁ ଛାଡି ସବୁଆଡେ ଯାତାୟତରେ ବେଶ ସୁବିଧା ହୋଇ ପାରିଲା । ସେହିପରି ମୁରୁଡା ବ୍ଲକରେ ମଧ୍ୟ ଥାନା ଓ ବ୍ଲକ କାର୍ଯ୍ୟାଳୟକୁ ଯିବା ଆସିବା ପାଇଁ ଜମ୍ବୀରା ଓ ମୁରୁଡି ଦୁଇଟି ନଦୀ ପ୍ରତିବନ୍ଧକ ସୃଷ୍ଟି କରୁଥିଲା । ପ୍ରଥମେ ମୁରୁଡି ନାଳରେ ପୋଲକଲାପରେ ଜମ୍ବୀରା ନଦୀରେ ଚିତ୍ରଡା ମରୁଡା ରାସ୍ତାରେ ସିଳନ୍ଦା ପାଖରେ ପ୍ରାୟ ୬୦ଲକ୍ଷ ଟଙ୍କା ବ୍ୟୟରେ ଏକ ବଡପୋଲ ନିର୍ମାଣ କରାଗଲା । ଏହି ପୋଲ ନିର୍ମାଣ ପୂର୍ବରୁ ମୁରୁଡାବ୍ଲକ ଦୁଇଭାଗରେ ବିଭକ୍ତ ହୋଇ ଥିବାରୁ ଜନସାଧାରଣ କାଳ କାଳଧରି ବହୁ ଅସୁବିଧା ଭୋଗକରୁଥିଲେ । ଚିତ୍ରଡା ମୁରୁଡା ବ୍ଲକ ଓ ସମଗ୍ର ମୁରୁଡା ଥାନାର ଏକ ପ୍ରଧାନ ହାଟ ଓ ବ୍ୟବସାୟ କେନ୍ଦ୍ର । ଏହି ଦୁଇଟି ପୋଲ ନିର୍ମାଣ ହେବା ଫଳରେ ଲୋକ ଅତି ସହଜରେ ହାଟକୁ ଆସି ପାରିଲେ ଓ ଚିତ୍ରଡାର ବ୍ୟବସାୟ ବାଣିଜ୍ୟରେ ମଧ୍ୟ ଉନ୍ନତି ଘଟିଲା । ମୁରୁଡା ଓ ଶୁଳିଆ-ପଦା ବ୍ଲକ ମଧ୍ୟରେ ସଂଯୋଗ ସ୍ଥାପନ ପାଇଁଗୁନଫା ନଦୀ ଉପରେ ଚଡେଇ ଗାଁ ଠାରେ ଆଉ ଏକ ପୋଲର ବିଶେଷ ଆବଶ୍ୟକତା ଉପଲବ୍ଧି କରି ୧୯୮୯ ମସିହାରେ ନିର୍ମାଣ କରିବାର ଆରମ୍ଭ କରାଇଲି । ମାତ୍ର ତାହା ନିର୍ମାଣ ଅବସ୍ଥାରେ ମୋର ପରାଜୟ ଘଟିଲା । କୋଷ୍ଠଠାରୁ ଚଡେଇଗାଁ ନୂହାଝାଳିଆ ଦେଇ ବ୍ରାହ୍ମଣମରାଠାରେ ମୁରୁଡା ବାଘଡା ତରାଡକୁ ସଂଯୋଗ କରୁଥିବା ରାସ୍ତା ଉପରେ କୋଷ୍ଠା ନିକଟରେ ମହାନ୍ତି ନଦୀ ଉପରେ ପୋଲର ନିର୍ମାଣ କାର୍ଯ୍ୟ ଶେଷ ହୋଇ ଯାଇଥିବାରୁ ଏହି ଦୁଇପୋଲ ପାଇଁ ଉକ୍ତ ରାସ୍ତର ଗୁରୁତ୍ୱ ବଢିଯିବା ସହିତ ମୁରୁଡା ଓ ଶୁଳିଆପଦା ଦୁଇ ବ୍ଲକ ଓ ଥାନା ମଧ୍ୟରେ ଏକ ସ୍ଥାୟୀ ସଂଯୋଗ ହୋଇପାରିଲା । ପୁଣି ବାରିପଦା ଅମର୍ଦା ସଡକର ୧୨ ମାଇଲ ଛକଠାରୁ କୋହି ଓ ଗଡିଆ ଦେଇ କୁଚିଡିହି ପର୍ଯ୍ୟନ୍ତ ଯାଇଥିବା ସଡକରେ ମୋହନପୁର ଡାହିସାହି ଠାରେ ଦୁଇଟି ଛୋଟ ପୋଲହେବାରୁ ଏହି ରାସ୍ତାଟି ଉକ୍ତ ଦୁଇ ବ୍ଲକର ୨ୟ ସଂଯୋଗକାରୀ ରାସ୍ତାରେ ପରିଣତ ହେଲା । ଏହା ବ୍ୟତୀତ ବଡ ଦେଉଳି ଠାରେ ଜମ୍ବୀର ନଦୀ ଉପରେ ଆଉ ଏକ ପୋଲ ମଞ୍ଜୁର କରାଇ ତାର ଶୁଭାରମ୍ଭ ମଧ୍ୟ କରାଇଥିଲି ।

ମୋ ସମୟ ପୂରିଗଲାପରେ ଆରମ୍ଭ ହୋଇ ଏବେ କାମ ଚାଲିଛି ।

ମୁରୁଡା ଶୁଳିଆପଦା ଓ ବାରିପଦା ବ୍ଲକର ଆଭ୍ୟନ୍ତରୀଣ ଅଞ୍ଚଳ ଗୁଡିକରେ ପ୍ରାୟ ୨୦ଟି ବିଭିନ୍ନ ସ୍ଥାନରେ ପ୍ରାୟ ୭୫ହଜାର ଟଙ୍କା ବ୍ୟୟରେ ପୋଲ ଗୁଡିକ ନିର୍ମାଣ ହେବା ଫଳରେ ଏହିତିନି ବ୍ଲକର ମହକୁମା ମାନଙ୍କୁ ସହଜରେ ଗମନାଗମନର ସୁବିଧା ହେବା ସଙ୍ଗେ ସଙ୍ଗେ ଜିଲ୍ଲାର ସଦର ମହକୁମା ବାରିପଦା ସହିତ ମଧ ଯୋଗାଯୋଗ ସ୍ଥାପିତ ହୋଇ ପାରିଲା । ମୁଁ ବାରିପଦା ନିର୍ବାଚନ ମଣ୍ଡଳୀରୁ ବିଧାନ ସଭାର ସଭ୍ୟ ନିର୍ବାଚିତ ହେଲାବେଳକୁ ଏହି ଅଞ୍ଚଳର ବ୍ଲକ ମହକୁମା ମାନଙ୍କୁ ସବୁଦିନ ପାଇଁ ବସ୍ ଚଳାଚଳ କରିପାରୁ ନ ଥିଲା ମାତ୍ର ଏବେ ଏହି ସବୁ ଅଞ୍ଚଳର ନଦୀ ଓ ନାଳ ଗୁଡିକର ପୋଲ ନିର୍ମାଣ କରାଗଲାରୁ ବର୍ଷର ସବୁଦିନ ଏ ସବୁ ଅଞ୍ଚଳକୁ ଏକାଧିକ ବସ୍ ବିଭିନ୍ନ ସମୟରେ ଯାତାୟତ କରୁଛି ଓ ଲୋକେ ଅତି ସହଜରେ ଓ ଅଳ୍ପ ସମୟ ମଧରେ ନିଜ ନିଜ କାର୍ଯ୍ୟ ସଂପାଦନ କରିପାରୁଛନ୍ତି ।

ବାରିପଦା ସହର ଜିଲ୍ଲାର ସଦର ମହକୁମା ହୋଇ ଥିଲେ ହେଁ ଏଠାରେ ମଧ କେତୋଟି ପୋଲର ବିଶେଷ ଆବଶ୍ୟକତା ଥିଲା । ସହରର ୧୪ନଂ ୱାର୍ଡରୁ ଟି.ବି. ହସପାତାଳ ଦେଇ ସହରଭିତରକୁ ଆସିଥିବା ରାସ୍ତାର ସରାଳୀ ନଦୀରେ ଥିବା ପୁରୁଣା ପୋଲଟି ବନ୍ୟାରେ ଧୋଇଯାଇ ବହୁଦିନ ସେହି ଅବସ୍ଥାରେ ପଡିରହିଥିଲା । ସେଥିପାଇଁ ଟଙ୍କା ମଞ୍ଜୁର ହୋଇ କାର୍ଯ୍ୟାରମ୍ଭ ହୋଇଥିଲେ ହେଁ ପୌର ପରିଷଦର ଅବହେଳା ଯୋଗୁଁ ପୋଲର ନିର୍ମାଣ କାର୍ଯ୍ୟ ସଂପୂର୍ଣ୍ଣ ହୋଇ ପାରି ନ ଥିଲା । ଆଉ ଗୋଟିଏ ପୋଲ ତକତପୁରଠାରୁ କବରଖାନା ଦେଇ ଶ୍ରୀରାମଚନ୍ଦ୍ର ଲାଇବ୍ରେରୀ ପର୍ଯ୍ୟନ୍ତ ଆସିଥିବା ରାସ୍ତାରେ ସରାଳୀନଦୀ ଉପରେ ମଞ୍ଜୁର ହୋଇ କାର୍ଯ୍ୟ ଆରମ୍ଭ କରାଯାଇଥିଲା । ଏହି ରାସ୍ତାଟି ଅଧିକ ପ୍ରସସ୍ତ କରିବାପାଇଁ ମଧ ମଞ୍ଜୁରି ମିଳି ଏକ ସଙ୍ଗେ ଉଭୟ କାର୍ଯ୍ୟ ଆରମ୍ଭ କରାଯାଇଥିଲା । ଏହା ଫଳରେ ତକତପୁର ଠାରେ ନିର୍ମାଣାଧୀନ ଥିବା ପୂର୍ଣ୍ଣଚନ୍ଦ୍ର ମହାବିଦ୍ୟାଳୟକୁ ସହର ମଧରୁ ଯିବାଆସିବା ରାସ୍ତାର ଦୂରତା ବହୁତ କମିଯିବ । ସହରର ୧୫ନମ୍ବର ୱାର୍ଡ ଦାରୋଗାଡାହୀକୁ ଷ୍ଟେସନ୍ ବଜାରକୁ ଯାଇଥିବା ସଡକର ମଝିରେ ସରାଳୀନଦୀ ପ୍ରବାହିତ ହେଉଥିବାରୁ ତା ଉପରେ ମଧ ଗୋଟିଏ ପୋଲ ନିର୍ମିତ ହୋଇପାରିଥିଲା । ଏତଦ୍ ବ୍ୟତୀତ ମୋ ସମୟରେ ସହର ସହିତ ବହୁଦିନୁ ମିଶିଥିବା ଅଞ୍ଚଳରେ ନୂଆ ରାସ୍ତାମାନ ହୋଇପାରିଥିଲା ।

ମୁଁ ବିରୁଦ୍ଧଦଳରେ ଥାଇ ବିଧାନ ସଭାର ସଭ୍ୟ ଥିଲାବେଳେ ମୁରୁଡା ଥାନାର ଝିଙ୍କରିଆଠାରୁ ବଡାମପୁର ଅଁଳା, ଠାକୁରତୋଟା ଓ ପଣସିଆ ଦେଇ ବାଳିଆ ପିଟା ପର୍ଯ୍ୟନ୍ତ ପ୍ରାୟ ୨୮କି.ମି. ଦୈର୍ଘ୍ୟ ବିଶିଷ୍ଟ ଏକ ସଡକ ନିର୍ମାଣ କରାଇଥିଲି । ଏହା ମୁରୁଡା ଓ ବୈଶିଙ୍ଗାଥାନାର ୭ଟି ପଞ୍ଚାୟତକୁ ସଂଯୋଗ କରିବା ସଙ୍ଗେ ସଙ୍ଗେ ଉକ୍ତ ଦୁଇ ଥାନାର ଏକମାତ୍ର ସଂଯୋଗ କାରୀ ସଡକ ହୋଇ ପାରିଛି । ୧୯୫୨ରୁ ୧୯୫୭ପର୍ଯ୍ୟନ୍ତ ମୁରୁଡା ଓ ବୈଶିଙ୍ଗାରୁ ବିଧାନସଭା ସଭ୍ୟ ଥିବା ବେଳେ ଏହି ୨୮ କି.ମି, ଦୀର୍ଘ ଅଞ୍ଚଳରେ କୌଣସି ସ୍କୁଲ ବା ଡାକ୍ତରଖାନା ନ ଥିଲା । ବର୍ତ୍ତମାନ ସେ ଅଞ୍ଚଳରେ ବହୁ ମି. ସ୍କୁଲ ଓ ହାଇସ୍କୁଲ ପ୍ରତିଷ୍ଠିତ ହେବା ସାଙ୍ଗକୁ ଏକ ମହାବିଦ୍ୟାଳୟ ମଧ ଆରମ୍ଭ କରାଯାଇଛି । ଅନ୍ୟ ଏକ ସଡକ ଠିକ୍ ସେହିପରି ବେତନଟିରୁ ଦହିକୋଟି, ମେର୍ଦ୍ଦା, ଅଁଳା ଓ ପାଇକ ସାହି ଦେଇ ବାଲେଶ୍ୱର ଜିଲ୍ଲାର ନୂଆଗାଁ ରେଳଷ୍ଟେସନ୍ ପର୍ଯ୍ୟନ୍ତ କରାଇଥିଲି । ଦହିକୋଟି ପାଖ ବାଉଁସ ନଦୀରେ ଓ ଅନ୍ୟ କେତୋଟି ଛୋଟ ନାଳରେ ପୋଲ ହେଲାପରେ ଏହି ପ୍ରାୟ ୩୦କି.ମି. ଦୈର୍ଘ୍ୟ ସଡକ ଅଞ୍ଚଳର ପ୍ରାୟ ୬ଟି ଗ୍ରାମ ପଞ୍ଚାୟତ ଓ ବେତନଟି ଏବଂ ରାସଗୋବିନ୍ଦପୁର ଅଞ୍ଚଳକୁ ଯୋଗାଯୋଗ କରିପାରୁଛି । ଠିକ୍ ସହିପରି ଉକ୍ତ

ବେତନଟି ଅଁଳା ସଡକରୁ ଗଡିଗାଁ ପର୍ଯ୍ୟନ୍ତ ଏକ ସଡକ ନିର୍ମାଣ ହୋଇପାରିଛି । ବୈଶିଙ୍ଗା ଥାନାର ଆଗ୍ରିଆଠାରୁ ନତପୁରଦେଇ ପାଟକିପୁର ଠାରେ ଉଦଳାରୁପ୍‌ସା ସଡ଼କ ସହିତ ବନ୍ୟାଞ୍ଚଳପାଇଁ ଅତ୍ୟନ୍ତ ଆବଶ୍ୟକୀୟ ଏକ ରାସ୍ତା କରାଇ ପାରିଥିଲି । ଏହା ଫଳରେ ବୁଢ଼ାବଳଙ୍ଗ ନଦୀର ବନ୍ୟା ଦାଉରୁ ପାଟକିପୁରା ଗ୍ରାମପଞ୍ଚାୟତର ଲୋକେ ରକ୍ଷା ପାଇ ପାରୁଛନ୍ତି । ସେହିପରି ବାଖରାଠାରୁ ବଡସାହି ବ୍ଲକର ସୋରିଷ କୋଠା ପର୍ଯ୍ୟନ୍ତ ଏକ ରାସ୍ତା ନିର୍ମାଣ କରାଯାଇଥିଲା । ବଡସାହି ବ୍ଲକର କୋଟିଲାଖୁଣ୍ଟାଠାରୁ ପାଉଶିଆଁ ଦେଇ ଶିଳଘାଟି ପଞ୍ଚାୟତର ବାଥୁଡିବନ୍ଧ ପର୍ଯ୍ୟନ୍ତ ଅନ୍ୟ ଏକ ରାସ୍ତା ମଧ୍ୟ ମୋ ଉଦ୍ୟମରେ ହୋଇ ପାରିଥିଲା । ଖୁଣ୍ଟା ନିର୍ବାଚନମଣ୍ଡଳୀରୁ ସଭ୍ୟଥିବା ବେଳେ ବଡସାହିରୁ ତୁକୁରା ଖଣ୍ଟାରୁ ତେଙ୍ଗାମ, ବାସିପୀଠାରୁ ସପନୁରୁଆ ଏବଂ କୁଆମରାରୁ ଆରପଟା ପର୍ଯ୍ୟନ୍ତ ନୂତନ ରାସ୍ତାମାନ କରାଇବାରେ ସମର୍ଥ ହୋଇପାରିଥିଲି ।

## "ଆଡି ବନ୍ଧ"

ମୁରୁଡା ବୈଶିଙ୍ଗା , ଖୁଣ୍ଟା ଓ ବାରିପଦା ପ୍ରଭୃତି ବିଭିନ୍ନ ନିର୍ବାଚନ ମଣ୍ଡଳୀରୁ ନିର୍ବାଚିତ ହୋଇ ବିଧାନସଭାରେଦୀର୍ଘ ୩୪ବର୍ଷ କାଳ ସଭ୍ୟଥିବା ସମୟରେ ଅନ୍ୟାନ୍ୟ ଜନ ହିତକର କାର୍ଯ୍ୟ ସହିତ ବନ୍ୟା ଦାଉରୁ ଫସଲ ଓ ଘରଦ୍ୱାର ରକ୍ଷା କରିବା ପାଇଁ ବିଭିନ୍ନ ନଦୀ ମାନଙ୍କରେ ବନ୍ଧମାନ ନିର୍ମାଣ କରିବାରେ ସଫଳ ହୋଇଥିଲି । ଏହି ଆଡିବନ୍ଧ ଗୁଡିକ ମଧ୍ୟରୁ କେତେକ ପ୍ରଥମେ ବନ୍ୟାରିଲିଫ ବାବଦରେ ମିଳିଥିବା ଅର୍ଥରୁ ଲୋକଙ୍କ ସହଯୋଗରେ କରାଇଥିଲା ଏବଂ ପରେ ଏହି ଆଡିବନ୍ଧ ଗୁଡିକ ଜଳସେଚନ ବିଭାଗକୁ ହସ୍ତାନ୍ତରିତ ହୋଇ ଉକ୍ତ ବିଭାଗଦ୍ୱାରା ଏଗୁଡିକର ରକ୍ଷଣାବେକ୍ଷଣ କରାଯାଉଅଛି । ସ୍ୱାଧୀନତା ପ୍ରାପ୍ତିପୂର୍ବରୁ ମୟୂରଭଞ୍ଜର ପ୍ରଜାମଣ୍ଡଳ ଆନ୍ଦୋଳନ ଚାଲିଥିଲା ବେଳେ ବିଭିନ୍ନ ନଦୀମାନଙ୍କରେ ଆଡିବନ୍ଧ ନିର୍ମାଣ କାର୍ଯ୍ୟକୁ ଏକ ପ୍ରଧାନ ଗଠନ ମୂଳକ କାର୍ଯ୍ୟରୂପେ ଗ୍ରହଣ କରାଯାଇଥିଲା । ୧୯୪୨ ମସିହାରେ ଭାରତର ନେତୃବର୍ଗ ଗିରଫ ହୋଇ ଜେଲ ଭୋଗୁଥିଲାବେଳେ ରାଜନୈତିକ କାର୍ଯ୍ୟକ୍ରମ ହୋଇପାରୁ ନ ଥିଲା ତେଣୁ ଗଠନ ମୂଳକ କାର୍ଯ୍ୟ ମାଧ୍ୟମରେ ସେତେବେଳେ ଆମେ ମୟୂରଭଞ୍ଜରେ ନରଣଗାଁ ନଦୀବନ୍ଧ ଯୋଜନା ଲୋକଙ୍କ ସହଯୋଗରେ କରିଥିଲୁଁ । ଗଙ୍ଗାହାର ନଦୀର ଅନତିଦୂରରେ ଥିବା ବୁଢୀନଦୀ ନାମରେ ଏକ ଜଳସ୍ରୋତ ବର୍ଷାଦିନେ ସେ ଅଞ୍ଚଳରେ ତଥା ବାଲେଶ୍ୱର ଜିଲ୍ଲାର କେତେକ ଅଞ୍ଚଳରେ ପ୍ରଭୂତ କ୍ଷତି ସାଧନ କରୁଥିଲା । ଜନସାଧାରଣଙ୍କ ସହଯୋଗରେ ତାହାକୁ ଏକ କେନାଲ ଦ୍ୱାରା ଗଙ୍ଗାହାର ନଦୀରେ ପକାଗଲା ଏବଂ ବୁଢୀନଦୀ ଉପରେ ଏକ ବନ୍ଦ କରାଯାଇ ଗଙ୍ଗାହାର ନଦୀ ପର୍ଯ୍ୟନ୍ତ ଆଡିବନ୍ଧ ମଧ୍ୟ କରାଗଲା । ଏଥିରେ ମୟୂରଭଞ୍ଜ ଓ ସୀମା ସଂଲଗ୍ନ ବାଲେଶ୍ୱର ଜିଲ୍ଲାର ଲୋକଙ୍କର ମଧ୍ୟ ସାହାର୍ଯ୍ୟ ଓ ସହଯୋଗ ମିଳିଥିଲା । ଏପରି ଆଡିବନ୍ଧ କରାଇବାରେ ପ୍ରଜାମଣ୍ଡଳ ଆନ୍ଦୋଳନ ସମୟରୁ ମୋତେ ଯେଉଁ ପ୍ରେରଣା ମିଳିଥିଲା ସେଥିରେ ପ୍ରଭାବିତ ହୋଇ ମୁଁମୋର ବିଧାୟକ ଜୀବନ କାଳରେ ସରକାରୀ ସାହାଯ୍ୟ ଓ ଅର୍ଥରେ କେତେକ ଆବଶ୍ୟକୀୟ ଆଡିବନ୍ଧ ଗୁଡିକର ନିର୍ମାଣ କରାଇଥିଲି ଏବଂ ସେ ସମସ୍ତ ଆଡିବନ୍ଧ ଏବେ ମଧ୍ୟ ସେହିପରି ଅବସ୍ଥାରେ ରହିଛି ।

ଖୁଣ୍ଟା (୨) ବ୍ଲକ:- ସାଙ୍ଗକୋଳାଠାରେ ସୋନନଦୀକୂଳରେ ଦୁଇତିନିଟି ଗ୍ରାମକୁ ସଂଯୋଗ କରୁଥିବା ଆଡିବନ୍ଧ ।

ବଡସାହି ବ୍ଲକ:- ଗଙ୍ଗାହାର ନଦୀ ପଶ୍ଚିମ ପାର୍ଶ୍ୱ ବାସୀପୁର ଲଗାଏ ତ ଦୁଇଟି ଗ୍ରାମ ଓ ପୂର୍ବପାର୍ଶ୍ୱରେ କୁଞ୍ଜବରିଆଁଠାରୁ ନରଣଗାଁ ଦେଇ ପାଳପାଟଣା ପର୍ଯନ୍ତ ବାଲେଶ୍ୱର ସୀମାର ପ୍ରାୟ ୬୭ଟି ଗାଁ ଓ ବହୁ ଚାଷଜମି ବନ୍ୟାଦାଉରୁ ରକ୍ଷା ପାଉଛି । ନରଣଗାଁଠାରୁ ପାଳ ପାଟଣା ପର୍ଯ୍ୟନ୍ତ ଏହି ଆଡିବନ୍ଧଟି ସଡକକାମକରିବା ସହ

ବନ୍ୟା ବେଳେ ଲୋକଙ୍କ ଆଶ୍ରୟସ୍ଥଳ ହୋଇପାରିଲି ।

ବୁଢ଼ାବଳଙ୍ଗ ନଦୀ:- ଖଣ୍ଡଦେଉଳାଠାରୁ ଶାଳାଗାଁ ପର୍ଯ୍ୟନ୍ତ ଆଡ଼ିବନ୍ଧ କାମ ସହ କାଠପାଳ ପର୍ଯ୍ୟନ୍ତ ପ୍ରତାପପୁର, ବାଥୁଡ଼ିବନ୍ଧ ଆରପଟା, ବଳଭଦ୍ରପୁର, ସିଂହଟିଆ, ଝେଲପାଳ, ପ୍ରଭୃତି ଅଞ୍ଚଳର ବନ୍ୟା ଦାଉରୁ ରକ୍ଷା ସହ ରାସ୍ତା ମଧ୍ୟ ହୋଇପାରିଛି ।

ବେତନଟୀ ବ୍ଲକ:- ବୁଢ଼ାବଳଙ୍ଗ ନଦୀକୂଳ-ଉତ୍ତରପାଳଠାରୁ ନାଖରା ଦେଇ ଖଣ୍ଡଦେଉଳା ପର୍ଯ୍ୟନ୍ତ ନଦୀ କୂଳେ କୂଳରେ ବନ୍ଧ କରାଯାଇଅଛି ।

ମୁରୁଡା ବ୍ଲକ ରାସଗୋବିନ୍ଦପୁର ବ୍ଲକ:- ଜମ୍ବୀରା ନଦୀକୂଳ:-ମାରିଆ କୁଲି, ରୁକୁଣୀ, ପାଞ୍ଚଗୁଛିଆ, ଶିଳଦା ପ୍ରଭୃତି ଜମ୍ବୀରା ନଦୀର ପୂର୍ବ ପଟ ଗ୍ରାମ ତଥା ପଶ୍ଚିମ ପଟର ଗହ୍ଲାଝିଆ, ଖୁଣ୍ଟାପାଳ ଗୋହିରିପୁରା ପିଙ୍ଗୁଡି ବରାମପୁର ହାଣ୍ଡିଭଙ୍ଗା ଓ ପାଇକସାହି ପ୍ରଭୃତି ବିରାଟ ଅଞ୍ଚଳ ବନ୍ୟାଦାଉଁ ଏହି ବନ୍ଧ ଦ୍ୱାରା ସୁରକ୍ଷିତ ହୋଇପାରିଛି ।

ବାରିପଦା ସହର:- ବୁଢ଼ାବଳଙ୍ଗ ନଦୀକୂଳ- ବାରିପଦା ସହରର ବାବୁସାହି ନିକଟରେ ନଦୀରୁ ଅତଡ଼ା ଖାଇ ନିକଟସ୍ଥ ଘରଦ୍ୱାର ଧସି ଯାଇ ବାରିପଦା ସହରକୁ ଏକ ବଡ ବିପଦ ଦେଖାଦେଇଥିଲା । ୧୬ଟି ପରିବାରକୁ ସ୍ଥାନାନ୍ତରିତ କରି ଜଳସେଚନ ବିଭାଗ ତରଫରୁ ଦଶଲକ୍ଷରୁ ଉଟଙ୍କା ବ୍ୟୟରେ ବନ୍ଧ ନିର୍ମାଣ ହେଲାଫଳରେ ଅତଡା ଖାଇବା ରକ୍ଷା କରାଯାଇ ପାରିଛି ।

## ଶିକ୍ଷା

ମୟୂରଭଞ୍ଜ ଏକ ପୂର୍ବତନ ଗଡଜାତ ଓ ଆଦିବାସୀ ଅଧ୍ୟୁତ ଅଞ୍ଚଳ ହୋଇଥିବାରୁ କେବଳ ଶିକ୍ଷା କ୍ଷେତ୍ରରେ ନୁହେଁ ପ୍ରାୟ ସମସ୍ତ ପ୍ରକାର ଉନ୍ନୟନ ଦିଗରେ ଏହା ଏକ ପଛୁଆ ଜିଲ୍ଲାରେ ପଡିରହିଛି । ବର୍ତ୍ତମାନ ସୁଦ୍ଧା ରାଜ୍ୟର ଅନ୍ୟାନ୍ୟ ଅଞ୍ଚଳର ଶିକ୍ଷିତ ଲୋକଙ୍କ ସଂଖ୍ୟା ଅପେକ୍ଷା ଏଠାର ଶିକ୍ଷିତ ସଂଖ୍ୟା କମ୍ । ଏବେ ଏ ଜିଲ୍ଲାରେ ଶତକଡ଼ା ୫୦% ଶିକ୍ଷିତ ଥିବାର ଜଣାଯାଏ । ସ୍ୱର୍ଗୀୟ ମହାରାଜ୍ଞୀରାମ ଚନ୍ଦ୍ରଭଞ୍ଜଦେଓଙ୍କର ୧୮୯୨ରୁ ୧୯୧୬ ପର୍ଯ୍ୟନ୍ତ ରାଜତ୍ୱକାଳରେ ମୟୂରଭଞ୍ଜର ଶିକ୍ଷା, ସଂସ୍କୃତି, ପ୍ରଶାସ ତଥା ଆର୍ଥିକ କ୍ଷେତ୍ରରେ ବହୁ ଉନ୍ନତି ସାଧିତ ହୋଇଥିବାର ଜଣାଯାଏ । ତାଙ୍କ ରାଜତ୍ୱ କାଳରେ ଶିକ୍ଷାର ପ୍ରସାର ଓ ଉନ୍ନତି ପାଇଁ ବହଳଦା, ଶୀର୍ଷା, ଅମର୍ଦ୍ଦା, କୁଆମରା ଓ କରଞ୍ଜିଆ ପ୍ରଭୃତି ସୀମାନ୍ତ ଅଞ୍ଚଳ ମାନଙ୍କରେ ମାତ୍ର ପାଞ୍ଚଟି ମଧ୍ୟ ଇଂରାଜୀ ବିଦ୍ୟାଳୟ ସ୍ଥାପନ କରିଥିଲେ । ଉପରୋକ୍ତ ସ୍ଥାନ ଗୁଡିକ ବିହାର, ପଶ୍ଚିମବଙ୍ଗ ଓ ବାଲେଶ୍ୱର ପ୍ରଭୃତି ଅଞ୍ଚଳକୁ ଲାଗିଥିବା ମୟୂରଭଞ୍ଜ ମଧ୍ୟସ୍ଥ ଗ୍ରାମ । ମହାରାଜା ଅତ୍ୟନ୍ତ ଓଡିଆ ପ୍ରେମୀ ଥିବାରୁ ସ୍ୱତନ୍ତ୍ର ଓଡିଶା ପ୍ରଦେଶ ଗଠନ ତାଙ୍କର ପ୍ରଧାନ ଉଦ୍ଦେଶ୍ୟ ଥିଲା । ସୀମାନ୍ତ ଅଞ୍ଚଳର ଲୋକେ ଓଡିଆ ପଢିବାର ସୁଯୋଗ ପାଇଲେ ଭାଷା ସୂତ୍ରରେ ଓଡିଶା ପ୍ରଦେଶ ଗଠନ ହେବା ବେଳେ ସେମାନେ ଓଡିଶା ସହିତ ମିଶି ଓଡ଼ି ରାଜ୍ୟ ଗଠନରେ ସହାୟକ ହେବେ । ତାଙ୍କରି ସମୟରେ ବାରିପଦାଠାରେ ତାଙ୍କର ସ୍ୱର୍ଗୀୟ ପିତା ମହାରାଜକୃଷ୍ଣଚନ୍ଦ୍ର ଭଞ୍ଜଦେଓଙ୍କ ନାମରେ ଏକ ଉଚ୍ଚଇଂରାଜୀ ବିଦ୍ୟାଳୟ ପ୍ରତିଷ୍ଠା କରି ଏକ ଅନ୍ଧାରୀମୁଳକରେ ଉଜ୍ଜଳ ଆଲୋକ ବର୍ତ୍ତିକା ଜଳାଇ ଥିଲେ । ଶାସନ କ୍ଷେତ୍ରରେ ମଧ୍ୟ ଜଣେ ଅତି ଆଦର୍ଶ ରାଜା ଭାବେ ମାନବିକ ମୂଲ୍ୟବୋଧରେ ମହାନ ଆଦର୍ଶ ପ୍ରତିଷ୍ଠା କରିଥିଲେ । ବାରିପଦାର ଏହି ହାଇସ୍କୁଲଟି ବର୍ତ୍ତମାନ ଏମ.କେ.ସି. ହାଇସ୍କୁଲ ନାମ ନାମିତ ହୋଇଆସୁଅଛି । ସେତେବେଳେ ସମଗ୍ର ମୟୂରଭଞ୍ଜ ରାଜ୍ୟରେ ପ୍ରାଥମିକ ଶିକ୍ଷା ପାଇଁ ମାତ୍ର ୧୮ଟି ଉଚ୍ଚ ପ୍ରାଥମିକ ବିଦ୍ୟାଳୟ ପ୍ରତିଷ୍ଠିତ

ହୋଇଥିଲା । ତାଙ୍କ ମୃତ୍ୟୁପରଠାରୁ ସ୍ୱାଧୀନତା ପ୍ରାପ୍ତିର ଅବ୍ୟାହିତ ପୂର୍ବ ପର୍ଯ୍ୟନ୍ତ ଅର୍ଥାତ ୧୯୧୨ରୁ ୧୯୪୬ ପର୍ଯ୍ୟନ୍ତ ଦୀର୍ଘ ୩୫ବର୍ଷ ମଧ୍ୟରେ ମୟୂରଭଞ୍ଜର ପରବର୍ତ୍ତୀ ରାଜାମାନେ ଆଉ ୩/୪ଟି ମ.ଇ.ସ୍କୁଲ ଓ ରାଇରଙ୍ଗପୁରଠାରେ ଗୋଟିଏ ମାତ୍ର ଉଚ୍ଚ ଇଂରାଜୀ ବିଦ୍ୟାଳୟ ପ୍ରତିଷ୍ଠା କରିଥିଲେ । ଭାରତର ସ୍ୱାଧୀନତା ପ୍ରାପ୍ତିପରେ ୧୯୪୮ ମସିହାରେ ଆରମ୍ଭରୁ ମାତ୍ର ଦଶମାସ ପର୍ଯ୍ୟନ୍ତ ଶ୍ରୀଯୁକ୍ତ ଶରତଚନ୍ଦ୍ର ଦାସଙ୍କ ନେତୃତ୍ୱରେ ପ୍ରତିଷ୍ଠିତ ଲୋକପ୍ରିୟ ଶାସନକାଳରେ ମୟୂରଭଞ୍ଜରେ ଅଉ ୩।୪ଟି ନୂତନ ହାଇସ୍କୁଲ ଓ ବାରିପଦାଠାରେ ସ୍ୱର୍ଗୀୟ ମହାରାଜା ପୂର୍ଣ୍ଣଚନ୍ଦ୍ର ଭଞ୍ଜଦେଓଙ୍କ ନାମରେ ଏକ ମହାବିଦ୍ୟାଳୟ ପ୍ରତିଷ୍ଠିତ ହୋଇପାରିଥିଲା । ୧୯୪୯ରେ ଓଡିଶା ସହିତ ମୟୂରଭଞ୍ଜର ମିଶ୍ରଣ ହେଲାପରେ ୧୯୯୦ ସୁଦ୍ଧା ପ୍ରାୟ ବିଗତ ୪୧ବର୍ଷ ମଧ୍ୟରେ ସରକାରୀ ଓ ବେସରକାରୀ ସ୍ୱୀକୃତିପ୍ରାପ୍ତ ତଥା ସ୍ୱୀକୃତି ପାଇ ନଥିବା ମହାବିଦ୍ୟାଳୟର ସଂଖ୍ୟା ପ୍ରାୟ ୩୦ରେ ପହଞ୍ଚିଥିବାର ଜଣାଯାଏ । କେବଳ ବାରିପଦା ସହରରେ ସବୁ ପ୍ରକାର ସାଧାରଣ ବିଜ୍ଞାନ, ବୈଷୟିକ, ତଥା ପ୍ରଶିକ୍ଷଣ ମହାବିଦ୍ୟାଳୟମାନ ପ୍ରତିଷ୍ଠିତ ହେଲାଣି । ଉକ୍ତ ୩୦ଟି ମହାବିଦ୍ୟାଳୟ ମଧ୍ୟରୁ କେବଳ ବାରିପଦା ନିର୍ବାଚନ ମଣ୍ଡଳୀରେ ୧୩ଟି ମହାବିଦ୍ୟାଳୟ ପ୍ରତିଷ୍ଠା କରିପାରିଥିବାର ଗୌରବ ଅର୍ଜନ କରିପାରିଛି । ମୁଁ ବାରିପଦା ବିଧାନ ସଭାର ନିର୍ବାଚିତ ସଭ୍ୟଭାବରେ ମୋର ୧୩ବର୍ଷ କାର୍ଯ୍ୟକାଳ ମଧ୍ୟରେ ମୋରସାହାଯ୍ୟ ଓ ସହାନୁଭୂତି ବଳରେ ୧୨ଟି ବିଭିନ୍ନ ମହାବିଦ୍ୟାଳୟ ଉଭୟ ସରକାରୀ ଓ ବେସରକାରୀ ସ୍ତରରେ ହୋଇପାରିଛି । ଏହାଛଡା ମୋ ନିର୍ବାଚନ ମଣ୍ଡଳୀ ବାହାରେ ମୋ ନିଜ ଗାଁରେଥିବା ଅନ୍ୟ ଦୁଇଟିନିଟି ମହାବିଦ୍ୟାଳୟ ମୋର ପ୍ରତ୍ୟକ୍ଷ ଦାୟିତ୍ୱରେ ଥାଇ ଏବେ ତାହା ପୂର୍ଣ୍ଣାଙ୍ଗ ମହାବିଦ୍ୟାଳୟରେ ପରିଣତହୋଇଛି । ସେଠାରେ କଳା, ବିଜ୍ଞାନ ଓ ବାଣିଜ୍ୟ ପ୍ରଭୃତି ବିଭିନ୍ନ ବିଭାଗର ଅଧ୍ୟୟନ ପାଇଁ ସୁବିଧା ହୋଇଛି । ବାରିପଦା ପଛକୁ ପରୀକ୍ଷା ଫଳାଫଳ, ପରିଚାଳନା ଓ ଛାତ୍ର ସଂଖ୍ୟା ଦୃଷ୍ଟିରୁ ଏହି ମହାବିଦ୍ୟାଳୟ ଜିଲ୍ଲାରେ ୨ୟ ସ୍ଥାନ ଅଧିକାର କରିବାର ସମ୍ଭାବନା ରହିଛି । ଏଣିକି ବାରିପଦାରେ ଉତ୍ତର ଓଡିଶା ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା ପାଇଁ ଦାବୀ ହେଉଛି । ଅବଶ୍ୟ ବାଲେଶ୍ୱର ମଧ୍ୟ ଉକ୍ତ ବିଶ୍ୱବିଦ୍ୟାଳୟ ପାଇବାକୁ ଦାବୀ କରୁଥିବା ବେଳେ ମୟୂରଭଞ୍ଜ ସହିତ କେଉଁଝର ଜିଲ୍ଲା ମଧ୍ୟ ବାରିପଦାଠାରେ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା ପାଇଁ ସମ୍ମତ ଥିବାର ଜଣାଯାଏ । ଉଭୟ ଜିଲ୍ଲା ଆଦିବାସୀ ବହୁଳ ହୋଇଥିବାରୁ ଏ ଦଗରେ ସଫଳତା ଲାଭ ପାଇଁ ଅନୁକୂଳ ହୋଇଥିଲେ ହେଁ ଏ ଦୁଇ ଜିଲ୍ଲାରୁ ପ୍ରତିନିଧିତ୍ୱ କରିବାର ସେପରି ଦୃଢ ନେତୃତ୍ୱ ବିଗତ ୧୯୮୯ ବିଧାନସଭା ନିର୍ବାଚନରେ ହୋଇପାରିନାହିଁ । ଦୁର୍ଭାଗ୍ୟ ବଶତଃ ଏଦୁଇ ଜିଲ୍ଲାରୁ କେହି ହେଲେ କଂଗ୍ରେସ ଲୋକ ଜୟଲାଭ କରିପାରିଲେ ନାହିଁ । କଂଗ୍ରେସ ବିରୁଦ୍ଧରେ ଭାରତ ବ୍ୟାପୀ ପରିବର୍ତ୍ତନ ହାୱାରେ ସମସ୍ତ ନେତୃ ସ୍ଥାନୀୟ ବ୍ୟକ୍ତି ପରାସ୍ତ ହେଲେ । ଏ ଦୁଇ ଜିଲ୍ଲାରୁ ମୋଟ ନିର୍ଦ୍ଧାରିତ ୧୬ଟି ବିଧାନ ସଭା ସ୍ଥାନ (୧୦+୬) ମଧ୍ୟରୁ ପ୍ରତିଜିଲ୍ଲାରେଗୋଟିଏ ଲେଖାଏଁ ମାତ୍ର ଦୁଇଟି ସ୍ଥାନ ବ୍ୟତୀତ ଅବଶିଷ୍ଟ ଆସନ ସଂରକ୍ଷିତ ହୋଇଥିବାରୁ ବାଲେଶ୍ୱରର ତିନି ସଭା ସଭ୍ୟଙ୍କୁ ସାମନା କରିବାର ଯୋଗ୍ୟତା ଏହି ଦୁଇ ଜିଲ୍ଲାରୁ ସେପରି କୌଣସି ବ୍ୟକ୍ତି ନାହାନ୍ତି ।

ବାରିପଦା ନିର୍ବାଚନମଣ୍ଡଳୀର ବାରିପଦା ବ୍ୟତୀତ ଶୁଳିଆପଦା ଓ ମୁରୁଡା ଯେଉଁ ଦୁଇଟି ବ୍ଲକ ରହିଛି ସେଥିମଧ୍ୟରୁ ମୁରୁଡା ବ୍ଲକଅନ୍ତର୍ଗତ ଓ ଗଡିଆଠାରେ ଦୁଇଟି କଲେଜ ପ୍ରତିଷ୍ଠିତ ହୋଇ ପାରିଛି । ପ୍ରତି ବ୍ଲକରେ ଗୋଟିଏ ଲେଖାଏଁ ଡିଗ୍ରୀକଲେଜ ହେବାର ସରକାରୀ ନିଷ୍ପତ୍ତି ଥିଲେ ହେଁ ମୋର ବ୍ୟକ୍ତିଗତ ପ୍ରଚେଷ୍ଟା ଫଳରେ ଏହି ବ୍ଲକରେ ଦୁଇଟି ଡିଗ୍ରୀକଲେଜ ପ୍ରତିଷ୍ଠିତ ହୋଇପାରିଛି । ଠିକ୍ ସେହିପରି ଗୋଟିଏ ବ୍ଲକରେ ଦୁଇଟି ମାତ୍ର +୨ କଲେଜ ହେବାର ବିଧିଥିବା ସତ୍ତ୍ୱେ ଶୁଳିପଦା ବ୍ଲକରେ ତିନିଟି +୨ ମହାବିଦ୍ୟାଳୟ ଆରମ୍ଭ ହୋଇଗଲା । ସେଠାରେ ମଧ୍ୟ ତିନିଟିଯାକ +୨ ମହାବିଦ୍ୟାଳୟର ସ୍ୱୀକୃତି ପାଇବାରେ ସଫଳ ହେଲି । ମୋ ପ୍ରଚେଷ୍ଟା ବଳରେ

ବେତନଟି ମହାବିଦ୍ୟାଳୟରେ ଦୁଇଟି ବିଷୟରେ ଅନର୍ସ ଓ ବାରିପଦା ମହାରାଜା ପୂର୍ଣ୍ଣଚନ୍ଦ୍ର ମହାବିଦ୍ୟାଳୟରେ ଦୁଇଟି ବିଭିନ୍ନ ବିଷୟରେ ସ୍ନାତକୋତ୍ତର ଶ୍ରେଣୀମାନ ଖୋଲିବାରେ ସଫଳକାମ ହୋଇପାରିଲି ।

୧୯୫୨ ମସିହାରୁ ପ୍ରଥମକରି ବିଧାନସଭା ସଭ୍ୟ ହେବା ଦିନୁଁ ମୟୂରଭଞ୍ଜରେ କିପରି ଶିକ୍ଷା ପ୍ରସାର ଅଧିକହୋଇପାରିବ ସେ ଦିଗରେ ସର୍ବଦା ଆନ୍ତରିକ ଉଦ୍ୟମ କରି ଆସିଛି । ଯେଥିପାଇଁ ମୁରୁଡା, ଶୁଳିଆପଦା ପ୍ରଭୃତି ବ୍ୟତୀତ ରାସଗୋବିନ୍ଦପୁର, ବେତନଟୀ , ବଡସାହି, ଖୁଣ୍ଟା ଓ ବାରିପଦା ପ୍ରଭୃତି ବ୍ଲକମାନଙ୍କରେ ବହୁ ମଧ ଇଂରାଜୀ ଓ ଉଚ୍ଚଇଂରାଜୀ ବିଦ୍ୟାଳୟ ପ୍ରତିଷ୍ଠା ଦିଗରେ ପ୍ରେରଣା ଯୋଗାଇ ଥିଲି ଓ ବହୁ କ୍ଷେତ୍ରରେ ସହାୟକ ମଧ ହୋଇଥିଲି । ଏପରିକି ବଡସାହି ଶିଆଳଘାଟି , ହେମପୁର, ଖୁଣ୍ଟାପୁର, ଅଁଳା ପାଇକସାହି ଦହିକୋଟି, ଧନପୁର, ଯୋଗିଷକୋଠା, ପୂର୍ଣ୍ଣଚନ୍ଦ୍ରପୁର, ଝିଙ୍କିରିଆ, ବରକନ୍ଦ ପ୍ରଭୃତି ସ୍କୁଲ ଗୁଡ଼ିକରେ ପରିଚାଳନା କମିଟିର ସଭାପତି ଥାଇ ବିଦ୍ୟାଳୟ ପ୍ରତିଷ୍ଠିତ କରିବାରେ ସହାୟକ ହୋଇପାରିଥିଲି । ବାରିପଦା ପୂର୍ଣ୍ଣଚନ୍ଦ୍ର ମହାବିଦ୍ୟାଳୟ ତଖତପୁରକୁ ସ୍ଥାନାନ୍ତରିତ କରିବାର ନିଷ୍ପତ୍ତି ଗ୍ରହଣ କରି ସେଠାରେ ମହାବିଦ୍ୟାଳୟ ତଖତପୁରକୁ ସ୍ଥାନାନ୍ତରିତ କରିବାର ନିଷ୍ପତ୍ତି ଗ୍ରହଣ କରି ସେଠାରେ ମହାବିଦ୍ୟାଳୟର ନୂତନ ଗୃହର ବହୁଭାଗ ନିର୍ମ୍ମାଣ ସରିଛି କିନ୍ତୁ ଛାତ୍ର ଓ ଶିକ୍ଷକଙ୍କ ବ୍ୟକ୍ତିଗତ ସ୍ୱାର୍ଥପାଇଁ ସ୍ଥାନାନ୍ତରିତ ହୋଇପାରୁନାହିଁ । ବାରିପଦା ସହରର ସରକାରୀ ମହିଳା ମହାବିଦ୍ୟାଳୟଟି ବର୍ତ୍ତମାନ ସୁଦ୍ଧା ଅତି ଅସୁବିଧା ସତ୍ତ୍ୱେସେହି ଉଚ୍ଚ ବିଦ୍ୟାଳୟ ପରିସର ମଧରେ ହେଉଛି । ମହାରାଜା ପୂର୍ଣ୍ଣଚନ୍ଦ୍ର ମହାବିଦ୍ୟାଳୟ ତଖତପୁରକୁ ଉଠିଗଲେ ମହିଳାମହାବିଦ୍ୟାଳୟଟି ବର୍ତ୍ତମାନର ପୂର୍ଣ୍ଣଚନ୍ଦ୍ର ମହାବିଦ୍ୟାଳୟକୁ ସ୍ଥାନାନ୍ତରିତ ହେଲେ ଛାତ୍ରୀ ଅଧ୍ୟାପିକା ଓ. ଅଭିଭାବକମାନଙ୍କ ପକ୍ଷରେ ଅତ୍ୟନ୍ତ ଆଶ୍ୱସ୍ତିକର ହୁଅନ୍ତା ।

ବାରିପଦା ସବ୍‌ଡିଭିଜନ ବ୍ୟତୀତ କପ୍ତିପଦା ସବ୍‌ଡିଭିଜନରେ କୁଆମରା ହାଇସ୍କୁଲ କୁଆମରା +୨ ମହାବିଦ୍ୟାଳୟ କପ୍ତିପଦା +୨ ମହାବିଦ୍ୟାଳୟ ସହିତ ମୁଁ ସଂପୃକ୍ତ ଓ ସ୍ୱୀକୃତି ପାଇବାରେ ସାହାଯ୍ୟ କରିଛି । ଶିକ୍ଷା କ୍ଷେତ୍ରରେ ରାଜନୀତି କରିବାକୁ ମୁଁ କେବେ ହେଲେ ଚାହେଁ ନାହିଁ । ଯେଉଁଠି ପରିଚାଳନା ଦାୟିତ୍ୱରେ ରହିଛି ସେଠାରେ ସବୁଦଳର ଲୋକଙ୍କୁ ସଂପୃକ୍ତ କରିବାରେ ଚେଷ୍ଟା କରିଛି । ଏବେ ବିଧାନ ସଭାର ସଭ୍ୟ ନ ଥିବା ବେଳେ ମଧ ମୁଁ ପୂର୍ବରୁ ସଂପୃକ୍ତ ଥିବା ବିଦ୍ୟାଳୟ ଓ ମହାବିଦ୍ୟାଳୟର ପରିଚାଳନା କର୍ତ୍ତୃପକ୍ଷ ଆବଶ୍ୟକ ସ୍ଥଳେ ମୋର ପରାମର୍ଶ ମଧ ନେଉଛନ୍ତି ।

## ''ସାଂସ୍କୃତିକ''

ମୟୂରଭଞ୍ଜର ଛଉନୃତ୍ୟ କେବଳ ଓଡିଶା କାହିଁକି ଜାତୀୟସ୍ତରରେ ସାଂସ୍କୃତିକ କ୍ଷେତ୍ରରେ ଏକ ମହାନ ଅବଦାନ କହିଲେ ଅତ୍ୟୁକ୍ତି ହେବ ନାହିଁ । ମୟରଭଞ୍ଜ ଜିଲ୍ଲାର ଶହ ଶହ ଗ୍ରାମରେ ଏହି ନୃତ୍ୟକୁ ଏକ ଜାତୀୟ ନୃତ୍ୟ ବା କଳାଭାବେ ଲୋକେଗ୍ରହଣ କରି ନେଇଥିବାର ଦେଖାଯାଏ । ଭାରତ ବର୍ଷରେଏହି ଛଉନୃତ୍ୟ ପ୍ରଥମେ ଷଢ଼େଇକଳାରୁ ଜନ୍ମ ଲାଭ କରିଥିବାର ଜଣାଯାଏ ଅବଶ୍ୟ ପରେ ଖରସୁଆ ଓ ପାଶ୍ଚିମବଙ୍ଗର ପୁରୁଲିଆଠାରେ ଏହି ନୃତ୍ୟ ପ୍ରଚଳନ ଥିବାର ଜଣାପଡିଲା । ମୋର ପିତାମହ ସ୍ୱର୍ଗୀୟ ବନମାଳୀ ଦାଶ । ତାଙ୍କର ଜଣେ ନୃତ୍ୟ ସହଚରଙ୍କ ସହିତ ଅଳ୍ପ ବୟସରେ ମୟୂରଭଞ୍ଜକୁ ଆସିଥିଲେ । ସେତେବେଳେର ନୃତ୍ୟାନୁରାଗୀ ମହାରାଜା କୃଷ୍ଣଚନ୍ଦ୍ର ଭଞ୍ଜ ଦେଓ ଷଢ଼େଇକଳା ରାଜାଙ୍କୁ ଅନୁରୋଧ ଜଣାଇ ତାଙ୍କ ଅନୁମୋଦ କ୍ରମେ ଏମାନଙ୍କୁ ଷଢ଼େଇକଳାରୁ ଆଣି ଛଉନୃତ୍ୟ ଗୁରୁଭାବେ ନିଯୁକ୍ତି ଦେଇ ବହୁ ଜମିବାଡି ନିସ୍କର ଜାଗିରି ଭାବରେଦାନ କରି ଥଇଥାନ କରାଇଥିଲେ । ଏବେ ବାରିପଦାରେ ଉତ୍ତରସାହି ଓ ଦକ୍ଷିଣସାହି ନାମରେ ଯେଉଁଦୁଇଟି ଛଉନୃତ୍ୟ ଦଳ ରହିଛି ତାର ସୃଷ୍ଟି କର୍ତ୍ତା

ହେଉଛନ୍ତ ଏହି ଦୁଇ ନୃତ୍ୟଗୁରୁ ପ୍ରତିଯୋଗିତା ମନୋବୃତ୍ତି ବିନା କୌଣସି ବିଦ୍ୟାରେ ସମ୍ୟକ ଜ୍ଞାନ ଲାଭ ସମ୍ଭବ ପରନୁହେଁ । ଦର୍ଶକମଣ୍ଡଳଙ୍କ ମଧ୍ୟରେ ପ୍ରତିଯୋଗିତାମନୋଭାବ ସୃଷ୍ଟି ଉଦ୍ଦେଶ୍ୟରେ ଉତ୍ତରସାହି ଓ ଦକ୍ଷିଣସାହି ନାମକ ଦୁଇଟି ଛଉନୃତ୍ୟ ଦଳର ଆରମ୍ଭ । ଏହି ଦୁଇନୃତ୍ୟଗୁରୁଙ୍କ ଦାୟିତ୍ୱରେ ଦୁଇ ଦଳର ନୃତ୍ୟ ଶିକ୍ଷା ନ୍ୟସ୍ତ କରାଗଲା । ମୋରପୂର୍ବ ପୁରୁଷମାନେ ଏହି ଗୌରବ ମୟ ଛଉନୃତ୍ୟର କଳାକାର ହୋଇଥିବାରୁ ଏହାକୁ ମୋ ବଂଶର ଗୌରବ ବୋଲି ମନେ କରେ । ତେଣୁ ଏହାର ଉନ୍ନତି ପାଇଁ ମୁଁ କିଛି ପଦକ୍ଷେପ ନେଇଥିଲି ।

ଓଡିଶା ସହିତ ମୟୂରଭଞ୍ଜର ମିଶ୍ରଣ ହେଲାପରେ ମୟୂରଭଞ୍ଜର ଛଉନୃତ୍ୟ ଭଳି ଏକ କଳା ପ୍ରାୟ ମୃତ ଅବସ୍ଥାକୁ ଆସିଯାଇଥିଲା । ପୂର୍ବରୁ ମହାରାଜାଙ୍କର ଛଉନୃତ୍ୟ ପ୍ରତି ଅକୁଣ୍ଠ ଦାନ ଥିଲା ଓ ଛଉକଳାକାରଙ୍କର ରାଜ୍ୟରେ ଏକ ସ୍ୱତନ୍ତ୍ର ସମ୍ମାନ ଥିଲା । ମିଶ୍ରଣ ପରେ ଉଭୟ କେନ୍ଦ୍ର ଓ ରାଜ୍ୟ ସରକାର ପ୍ରତିବର୍ଷ ଚୈତ୍ର ପର୍ବ ବେଳକୁ ଯତ୍ କିଂଚିତ ଆର୍ଥିକ ସସାହାଯ୍ୟ ଦିଅନ୍ତି ଯାହାକି ଚୈତ୍ରପର୍ବ ଯାତ୍ରା ସମୟର ଖର୍ଚ୍ଚ ତୁଲାଇବା ପର୍ଯ୍ୟାପ୍ତ ହୁଏ ନାହିଁ । ତେଣୁଁ ଦୁଇସାହିର କଳାପ୍ରେମୀ ଲୋକେ କିଛି କିଛି ଅର୍ଥ ସାହାଯ୍ୟଦେଇ ଯାତ୍ରା ବେଳର ଅଭାବ ପୂରଣ କରିଥାଆନ୍ତି । ପୃଷ୍ଠପୋଷକତା ଅଭାବରୁ ଅନେକ ଛଉକଳାକାର ଦିଲ୍ଲୀ, ବମ୍ବେ, ମଧ୍ୟ ପ୍ରଦେଶକୁ ଯାଇ ସେଠାକର ବିଭିନ୍ନ ସାଂସ୍କୃତିକ ସଙ୍ଗଠନରେ କାର୍ଯ୍ୟକଲେ । କେତେକ କଳାକାରଙ୍କୁ ଭୁବନେଶ୍ୱରସ୍ଥ ସଙ୍ଗୀତନାଟକ ଏକାଡେମୀର ବିଭିନ୍ନ ପଦରେ ନିଯୁକ୍ତି ମଧ୍ୟ ଦିଆଗଲା । ଯେଉଁଠି ଏହି କଳା ଆରମ୍ଭ ହୋଇଥିଲା ସେଠାରେ ତହିଁର କୌଣସି ଗବେଷଣା ବା ଉନ୍ନତି ଦିଗରେ ପଦକ୍ଷେପ ନନେବାର ଦେଖି କଳାକାରମାନେ ଅତ୍ୟନ୍ତ ହତୋତ୍ସାହିତ ହୋଇ ପଡିଥିଲେ । କ୍ରମେ ସେମାନଙ୍କର ଆଗ୍ରହ ମଧ୍ୟ କମିଗଲା ମୟୂରଭଞ୍ଜରୁ ଏ କଳା ଏକ ପ୍ରକାର ବିଲୋପ ଘଟିଲା ବୋଲି ଲୋକଙ୍କର ଧାରଣା ଜନ୍ମିବାକୁ ଲାଗିଲା । ଏପରି ପରିସ୍ଥିତିରେ ନୂତନ କଳାକାର ସୃଷ୍ଟି ହେବା ଏକ ବିଡମ୍ବନାରେ ପରିଣତ ହେଲା । କିଛି ହରିଜନ ଓ ରିକ୍ସା ଟାଣିବା ବାଲା ଗରିବ ଲୋକ କିଛି ଅର୍ଥ ଲାଭ ଆଶାରେ ପଡିରହିଥାଆନ୍ତି । ଭଲ ପରିବାରର ଲୋକ ବା ଶିକ୍ଷିତ ଯୁବକ ଏଥିପ୍ରତି ଆଦୌ ଆକୃଷ୍ଟ ହେଉ ନ ଥାଆନ୍ତି । ଏପରି ପରିସ୍ଥିତିରେ ଛଉନୃତ୍ୟର ଯେତେ ମହତ୍ୱ ଥିଲେ ହେଁ ଏହାର ଉତ୍କର୍ଷ ସାଧିତ ହୁଅନ୍ତା ବା କିପରି ।

ମୋର ପୂର୍ବ ପୁରୁଷ ଛଉନୃତ୍ୟ ସହିତ ଜଡିତ ଥିଲେ ହେଁ ମୟୂରଭଞ୍ଜରେ ଛଉନୃତ୍ୟ ପରିଚାଳନାରେ ମୋତେ କେବେ ହେଲେ ସଂପୃକ୍ତ କରାଯାଇନ ଥିଲା । ମୁଁ ମଧ୍ୟ ବିଧାୟକ ହେବାପରେ ବହୁଦିନ ଧରି ସରକାରୀ ଦଳ ବା କଂଗ୍ରେସ ଦଳକୁ ଆସି ନ ଥିଲି । ମୋତେ ଏଥିସହିତ ସଂପୃକ୍ତ ନ କରିବା ଏହାମଧ୍ୟ ଏକ କାରଣ ହୋଇପାରେ । ଯାହାହେଉ ଶେଷରେ ମୁଁ ଛଉନୃତ୍ୟ ପ୍ରତି ଆକୃଷ୍ଟ ହୋଇ ଏଥିରେ ମୁଁ ସଭ୍ୟ ନ ଥାଇ ମଧ୍ୟ ସରକାରଙ୍କ ଦୃଷ୍ଟିକୁ ସମସ୍ତ ସମସ୍ୟା ଆଣି ବାରିପଦା ଛଉନୃତ୍ୟକୁ ଅବହେଳା କରି ନୃତ୍ୟ ସଂଗୀତ ଏକାଡେମୀକୁ ଆଣିବାର ବିରୋଧ କଲି । ଏହାପରେ ଏଠାରେ ଏକ ଟ୍ରେଡିଂ ସ୍କୁଲ ଖୋଲିବାର ପ୍ରଚେଷ୍ଟା କଲି । ଯେଉଁ ପୁରଣା କଳାକାରମାନେ ଦାରିଦ୍ର୍ୟର କଷାଘାତରେ ମ୍ରିୟମାଣ ହୋଇ ଯାଉଥିଲେ ସେମାନେ ଉକ୍ତ ଟ୍ରେନିଂ ସ୍କୁଲରେ ନିଯୁକ୍ତି ମଧ୍ୟ ପାଇଲେ । କେତେକ କଳାକାର ବୃଦ୍ଧ ଓ ଅକର୍ମଣ୍ୟ ହୋଇ ଯାଇଥିବାରୁ ସେମାନଙ୍କୁ ପେନସନ୍ ଦେବାର ବ୍ୟବସ୍ଥା ମଧ୍ୟ କରାଇଲି । ଚାକିରି ବାକିରୀରେ କଳାକାର ମାନଙ୍କୁ ନିଯୁକ୍ତି କ୍ଷେତ୍ରରେ ପ୍ରାଧାନ୍ୟ ଦେବାର ସରକାରୀ ସୂଚନା ମଧ୍ୟ ମିଳିଲା । ଫଳରେ ଅନେକ ଶିକ୍ଷିତ ଯୁବକ ଏଥିପ୍ରତି ଆକୃଷ୍ଟ ହେଲେ । ଶ୍ରୀଯୁକ୍ତ ଜାନକୀବଲ୍ଲଭ ପଟ୍ଟନାୟକ ମୁଖ୍ୟମନ୍ତ୍ରୀ ଥିବା ସମୟରେ ଚୈତ୍ରପର୍ବ ଉପଲକ୍ଷେ ବାରିପଦା ଆସି ଉଦ୍‌ଘାଟନ ଉତ୍ସବରେ ଏକ ଲକ୍ଷଟଙ୍କା ଦାନର ଘୋଷଣା କଲେ । ଛଉ ନୃତ୍ୟର ଉନ୍ନତି ପାଇଁ ଏହି ଟଙ୍କା ସୀମିତ ଜମା ଭାବେ ରଖାଗଲା । ଉତ୍ତର ସାହି ଓ ଦକ୍ଷିଣସାହିର ଦୁଇ ଆଖଡା ଦଳକୁ ପ୍ରତିବର୍ଷ ଆଖଡା ଅରମ୍ଭ ହେଲେ ମାସକୁ ପ୍ରତ୍ୟେକ ଦଳକୁ

୨୧/୨ ହଜାର ଟଙ୍କା ଆର୍ଥିକ ସାହାଯ୍ୟ ଦେବାର ବ୍ୟବସ୍ଥା ମଧ୍ୟ ହେଲା । ଟ୍ରେନିଂ ସ୍କୁଲକୁ ଛାତ୍ର ଗ୍ରହଣ ପାଇଁ ଏକ କମିଟି ଗଠିତ ହେଲା ଏବଂ ମୋ-ଫସଲ ଓ ସହରାଞ୍ଚଳରୁ ବଛା ଯୁବକ ଗ୍ରହଣ କରାଯାଇ ସେମାନଙ୍କୁ ଷ୍ଟାଇପେଣ୍ଡ ଦେବାର ବ୍ୟବସ୍ଥା ମଧ୍ୟ କରାଗଲା । ପ୍ରତିବର୍ଷ ଛଉପର୍ବ ପୂର୍ବରୁ ଗ୍ରାମାଞ୍ଚଳ ଦଳଗୁଡ଼ିକରୁ ବଛା ଯିବା ପାଇଁ ଯେଉଁ ସ୍ଥାନ ମାନଙ୍କରେ ପ୍ରତି ଯୋଗିତାହେଲା ସେଠାରେ ମଧ୍ୟ ଆର୍ଥିକ ସାହାର୍ଯ୍ୟ ଦିଆଗଲା । ଶ୍ରୀଯୁକ୍ତ ବିବେକାନନ୍ଦ ପଟ୍ଟନାୟକ ମୟୂରଭଞ୍ଜର ଜିଲ୍ଲାପାଳ ଥିବା ସମୟରେ ଛଉନୃତ୍ୟର ଉନ୍ନତି ପାଇଁ ଯେଉଁ ଉଦ୍ୟମ କରିଥିଲେ ସେଥିପାଇଁ ସେ ପ୍ରଶଂସାର୍ହ । ତାପରେ ସେଠାରୁ ବଦଳୀ ହୋଇଆସି ସାଂସ୍କୃତିକ ବିଭାଗର ସଚିବ ହେବା ଫଳରେ ତାଙ୍କ ସହଯୋଗରେ ଛଉନୃତ୍ୟରେ ବିଶେଷ ଉନ୍ନତି ସାଧିତ ହୋଇ ପାରିଥିଲା ।

## "ଶିଳ୍ପ ଓ ବାଣିଜ୍ୟ କ୍ଷେତ୍ରରେ ଏକ ପଦକ୍ଷେପ"

କୃଷି ଓ ଶିଳ୍ପ ଉଭୟ କ୍ଷେତ୍ରରେ ମୟୂରଭଞ୍ଜ ବିଶେଷଭାବେ ଅବହେଳିତ ହୋଇଥିଲେ ହେଁ ଅତି ଗରିବ ଲୋକଙ୍କ ଜୀବନ ଧାରଣ ପାଇଁ ପ୍ରକୃତିର ଯେ ଏକ ମହାନ ଅବଦାନ ଥିଲା ତାହା କାହାକୁ ଜଣା ନ ଥିଲା । କାଳକ୍ରମେ ସମୟର ଗତି ତଥା ଅବସ୍ଥା ଚକ୍ରରେ ଏକ ନୂତନ ଗ୍ରାମ୍ୟଶିଳ୍ପ ଦାରିଦ୍ର୍ୟର ସୀମା ରେଖାତଳେ ରହିଥିବା ଲୋକଙ୍କ ଆର୍ଥିକ ଉନ୍ନତି କ୍ଷେତ୍ରରେ ସହାୟକ ହୋଇ ଉଠିଲା । ତାହା ହେଉଛି ବୋବେଇ ଘାସରେ ପ୍ରସ୍ତୁତ ଦଉଡି ଓ ଶାଳ ପତ୍ରରେ ତିଆରି ଖଳି ଓ ଚଉଡି । ଏ ଅଞ୍ଚଳରେ ଲୋକେ ଆବହମାନ କାଳରୁ ନିଜର ଅତି ଅନୁର୍ବର ଜମିରେ ଘରୋଇ ଆବଶ୍ୟକତା ପୂରଣ ପାଇଁ ବୋବେଇ ଘାସରେ ଚାଷକରି ଓ ସେଥିରୁ ଦଉଡ଼ି ତିଆରି କରି ନିଜର ବିଭିନ୍ନ କାମରେ ଲଗାଉଥିଲେ । ସେହିପରି ଗ୍ରାମାଞ୍ଚଳର ଗରିବ ଲୋକେ ପର୍ବପର୍ବାଣି ବାହାଘର ବ୍ରତ ପ୍ରଭୃତିରେ ବହୁ ଲୋକଙ୍କ ଖାଇବା ପାଇଁ ଶାଳପତ୍ରରେ ତିଆରି ଖଲି ଓ ଚଉଡି ଯୋଗାଇ ଥିଲେ । ଏହି ଦୁଇ ପ୍ରକାର ହସ୍ତଶିଳ୍ପ ଯଥା ବୋବେଇ ଦଉଡି ଓ ଶାଳପତ୍ରରେ ତିଆରି ଖଲି ଚଉଡି ଦିନେ ଯେ ଏକ ବଡ ବ୍ୟବସାୟରେ ପରିଣତ ହୋଇ ବହୁ ଲୋକଙ୍କର ଏକ ପ୍ରଧାନ ଆର୍ଥିକ ସମ୍ବଳ ରୂପେ ଛିଡା ହେବ ତାହା କାହାରିକୁ ଜଣା ନ ଥିଲା । କ୍ରମେ ସହର ବଜାର ଓ ଏପରିକି ଗ୍ରାମାଞ୍ଚଳରେ ନୂତନ ପକ୍କାଗୃହ ନିର୍ମାଣ ଯେପରି ବୃଦ୍ଧି ପାଇବାକୁ ଲାଗିଲା । ଗୃହ ନିର୍ମାଣରେ ଉପରକୁ ଉଠିବାକୁ କାଠ ବା ବାଉଁଶରେ ଯେଉଁ ସିଡି ତିଆରି ହୁଏ ତାହାସବୁ ବୋବେଇ ଦଉଡିରେ ବନ୍ଧା ଯାଏ । ଏହାଛଡା କାଗଜ କଳ ଗୁଡିକୁ ଯେଉଁ ସବୁ ବାଉଁସ ଖଣ୍ଡମାନ ବାଣ୍ଡିଲ ବାନ୍ଧି ପଠାଯାଏ ସେଥିରେ ମଧ୍ୟ ବୋବେଇ ଦଉଡି ଲାଗେ । ଜାତୀୟ ରାଜପଥ ପାର୍ଶ୍ୱରେ ଯେଉଁସବୁ ହୋଟେଲ ଓ ଢାବାମାନ ରହିଛି ସେଥିରେ ବହୁ ସଂଖ୍ୟାରେ ବୋବେଇ ଦଉଡିରେ ପ୍ରସ୍ତୁତ ଖଟିଆମାନ ଆବଶ୍ୟକ ହେଲା । ଏ ସବୁ ମୋଟା ଦଉଡିର ଆବଶ୍ୟକତା ରହିଛି । ସେହିପରି ସରୁ ଓ ଅତିସୁନ୍ଦର ବୋବେଇ ଦଉଡିରେ ତିଅରି ସେ ସୋଫା ଚେୟାର ଗାଲିଚା ଓ ପା ପୋଛ ପ୍ରଭୃତି ବହୁ ପ୍ରକାର ହସ୍ତ ଶିଳ୍ପରେ ଲାଗିବାରୁ ବୋବେଇ ଦଉଡିର ଆବଶ୍ୟକତା ସାରାଦେଶରେ ବହୁ ପରିମାଣରେ ବଢିବାକୁ ଲାଗିଲା । ପ୍ରାୟ ୨୦ବର୍ଷ ତଳେ ବୋବେଇ ଗାସ କେବଳ ମୟୂରଭଞ୍ଜରେ ପ୍ରଚୁର ଭାବେ ହେଉଥିଲା ଓ ସେଥିରୁ ପ୍ରଚୁର ପରିମାଣରେ ଦଉଡି ମଧ୍ୟ ପ୍ରସ୍ତୁତ ହେଉଥିଲା । ସ୍ୱାଧୀନତା ପ୍ରାପ୍ତି ପୂର୍ବରୁ ମୟୂରଭଞ୍ଜ ରାଜସରକାରଙ୍କ ସମୟରେ ଜାମଶୋଳାଠାରେ ଏକ ବିରାଟ ସରକାରୀ ଫାର୍ମରେ ବ୍ୟାପକ ବୋବେଇ ଘାସ ଚାଷକରି କାଗଜ ତିଆରି ହେବାର ବ୍ୟବସ୍ଥା ହେଲାରୁ ଆଉ ଯାମଶୋଳାର ବୋବେଇ ଘାସ ଦରକାର ହେଲା ନାହିଁ । ତେଣୁ ଏ ସମସ୍ତ ଘାସ ଲୋକେ ନେଇ ଦଉଡି ତିଆରିରେ ଲଗାଇଲେ । ଲୋକେ ନିଜ ଚାଷ ବୋବେଇ ମଧ୍ୟ ବଢାଇଦେଲେ । ତେଣୁ ଅତି ଗରିବ ଲୋକେ ଘରେ ବସି ବହୁ ପରିମାଣରେ ଦଉଡି ତିଆରି କରି ହାଟ ମାନଙ୍କରେ ବିକ୍ରି କଲେ । ଦିଲ୍ଲୀ ପାଟନା, ଲକ୍ଷ୍ନୌ ବମ୍ବେ ପ୍ରଭୃତି ବିଭିନ୍ନସ୍ଥାନରୁ ଶହ ଶହବ୍ୟବସାୟୀ ବୋବେଇ ଦଉଡି କିଣିବାକୁ

ଆସିଲେ । ଏ ସମସ୍ତ ବ୍ୟବସାୟର ପ୍ରଥମ ଓ ପ୍ରଧାନ କେନ୍ଦ୍ର ରୂପେ ଗଡି ଉଠିଲା ବାରିପଦା ସବ୍‌ଡିଭିଜନରେ ବେତନଟି ପରେ ବାରିପଦା ମଧ ଏ ବ୍ୟବସାୟ ପାଇଁ ମୁଖ୍ୟ କେନ୍ଦ୍ରରେ ପରିଣତ ହେଲାଣି । ବିଭିନ୍ନ ହାଟ ଗୁଡିକ ଏ ବ୍ୟବସାୟର ଅସଲି ବିକାକିଣା କେନ୍ଦ୍ର । ସଦର ସବ୍‌ଡିଭିଜନ୍‌ର ଦାନ୍ତିଆ ମୁହାଁ ସବୁଠାରୁ ବଡ ବିକାକିଣା କେନ୍ଦ୍ର । ଏତଦ୍ ବ୍ୟତୀତ ବାଘଡା, ଶୁଳିଆ ପଦା, ସାନମୁଣ୍ଡା ବଣୀ, ଚିତ୍ରଡା କେଷ ପ୍ରଭୃତି ସଦର ସବ୍‌ଡିଭିଜନର ସବୁ ହାଟ ଗୁଡିକ ବର୍ତ୍ତମାନ ଏହି ଦଉଡି ବ୍ୟବସାୟରେ କେନ୍ଦ୍ର ହୋଇପାରିଛି । ବେତନଟି, ମୁରୁଡା ଶୁଳିଆପଦା ଓ ବାରିପଦା ବ୍ଲକ ଅଞ୍ଚଳରେ ଏହି ଘାସର ପ୍ରଚୁର ଉତ୍ପାଦନ ହେଉଥିବାରୁ ଏହି ସମସ୍ତ ଅଞ୍ଚଳର ହାଟ ଗୁଡିକୁ ବେକାଳୀମାନେ ଶହ ଶହ ସଂଖ୍ୟାରେ ଆସି ତାଙ୍କର ବୋଳା ଦଉଡି ବିକ୍ରି କରି ଥାଆନ୍ତି । ଅନେକ ଚାଷୀ ମଧ ନିଜଜମିରେ ଉତ୍ପାଦିତ ବୋବେଇ ଘାସ ମଧ ଉକ୍ତ ହାଟମାନଙ୍କରେ ବିକ୍ରି କରନ୍ତି । ଯେଉଁ ବେକାଳୀମାନଙ୍କର ନିଜ ଜମିର ଉତ୍ପାଦନ ନ ଥାଏ ସେମାନେ ଦଉଡି ବିକ୍ରିକରି ସେହି ପଇସାରେ ଘାସ କିଣିନିଅନ୍ତି । ଏବେ ଉକ୍ତ ହାଟମାନଙ୍କରୁ ଘାସ କିଣି ବ୍ୟବସାୟୀମାନେ ଜିଲ୍ଲାର ଅନ୍ୟ ଅଞ୍ଚଳର ହାଟକୁ ନେଇ ବିକ୍ରି ଜଲେଣି । ଏବେ ମୟୂରଭଞ୍ଜର ଅନ୍ୟ ତିନିଟି ସବ୍‌ଡିଭିଜନରେ ମଧ ଏହି ବ୍ୟବସାୟ ପ୍ରସାର ଲାଭ କଲାଣି । ସମଗ୍ର ଜିଲ୍ଲାରେ ବୋବେଇ ଦଉଡିରେ ହାରାହାରି ବ୍ୟବସାୟ ୧୫ରୁ ୨୦ କୋଟି ଟଙ୍କାରେ ପହୁଞ୍ଚିଲାଣି ବୋଲି ଅନୁମାନ କରାଯାଏ । ଏହି ଦଉଡି ବୋଳାକାର୍ଯ୍ୟ ପ୍ରଥମେ ଗ୍ରାମାଞ୍ଚଳରେ ଅତି ଗରିବ ଲୋକେ କରୁଥିଲେ ମାତ୍ର ଏହା ଲାଭଜନକ ହେବାରୁ ନିମ୍ନ ମଧବିତ୍ତ ଶ୍ରେଣୀ, ଛୋଟ ଚାଷୀ ଏବଂ ସବର୍ଣ୍ଣ ଶ୍ରେଣୀର ପୁରୁଷ ଓ ସ୍ତ୍ରୀମାନେ ମଧ ଏହି ଦଉଡି ବୋଳା କାମ ଏବେ କଲେଣି । ସେହିପରି ଯେଉଁମାନଙ୍କର ଡିପା ଜମି ଅଛି ଓ ସେଥିରେ ଧାନ ଚାଷ ହୋଇପାରୁନାହିଁ । ସେପରି ଜମିରେ ବୋବେଇ ଘାସ ଚାଷ କରି ଜମି ମାଲିକମାନେ ବହୁ ଲାଭବାନ ହେଉଛନ୍ତି । ଗହୀର ଖାଲ ଜମିରେ ଧାନ ଚାଷ କରି ଯେତେ ଲାଭ ହେଉଛି ଏହି ଡିପ ଜମିରେ ବୋବେଇ ଚାଷ ଦ୍ୱାରା ବହୁ ଅଧିକ ଲାଭ ମିଳୁଛି । ବାଲିଆ ପାଣି ନିଗଡା ଜମି ବୋବେଇଘାସ ଚାଷ ପାଇ ଅତ୍ୟନ୍ତ ଉପଯୁକ୍ତ ।

ବୋବେଇ ଦଉଡି ତଳକୁ ଖଲି ଚଉଡି ତିଆରି ଅନ୍ୟ ଏକ ବ୍ୟବସାୟ ଭାବରେ ଗତ କିଛି ବର୍ଷ ହେଲା ଗଡି ଉଠିଲାଣି । ଏହ ଅତି ଗରିବ ଓ ନିଃସହାୟ ଲୋକେ ତିଆରି କରୁଥିଲେ । ଏହା ଶାଳଗଛର ପତ୍ରରୁ ପ୍ରସ୍ତୁତ ହୁଏ । ବୋବେଇଘାସ ବୋଳାଳୀମାନଙ୍କୁ କିଣିବାକୁ ପଡେ ଓ ସେଥିପାଇଁ ସେମାନଙ୍କୁ କିଛି ମୂଳଧନ ଖଟାଇବାକୁ ପଡେ । କିନ୍ତୁ ଶାଳପତ୍ର ଲୋକେ ଜଙ୍ଗଲରୁ ସଂଗ୍ରହ କରି ଆଣନ୍ତି ଏଥିପାଇଁ ତାଙ୍କୁ କିଛି ମୂଳଧନ ଖଟାଇବାକୁ ପଡେନାହିଁ । ଏହି ବ୍ୟବସାୟ ପ୍ରଥମେ ବେତନଟି ବ୍ଲକରେ ଆରମ୍ଭ ହୋଇଥିଲା । ପରେ ଏହା ବୈଶିଙ୍ଗା, ମୁରୁଡା ଓ ଶୁଳିଆ ପଦା ପ୍ରଭୃତି ଅଧିକ ଜଙ୍ଗଲଥିବା ଅଞ୍ଚଳକୁ ବ୍ୟାପୀ ଗଲାଣି । ବିଶେଷ କରି ଗରିବ ଲୋକଙ୍କୁ ଋଣ ଦେଇ ଯେଉଁ ସବୁ ସାଇକେଲ ଯୋଗାଇ ଦିଆଗଲା ତହା ସେମାନଙ୍କୁ ଦୈନନ୍ଦିନ ଜଙ୍ଗଲରୁ ଶାଳ ପତ୍ର ସଂଗ୍ରହ କରିବାରେ ମଧ ସହାୟକ ହୋଇପାରିଛି । ଯେଉଁମାନେ ଦଉଡି ବୋଳି ପାରନ୍ତି ନାହିଁ ସେମାନେ ଖଲିପତ୍ର ଓ ଚଉଡି ତିଆରି କରି ଥାଆନ୍ତି । ଏବେକେତେକ ପରିବାରରେ ଉଭୟ କାମ କରିବାର ଦେଖାଯାଉଛି । ତେଣୁ ଲୋକେ ବିଶେଷ ଲାଭବାନ ହୋଇପାରୁଛନ୍ତି । କିନ୍ତୁ ଲୋକେ ଏହାର ମହତ୍ୱ ବୁଝି ନ ପାରି ଜଙ୍ଗଲ ନଷ୍ଟ କରି ଚାଲିଛନ୍ତି । ଏହା ଫଳରେ ଦିନେ ଏହି ହସ୍ତଶିଳ୍ପ ଲୋକ ପାଇଯିବାର ସମ୍ଭାବନା ରହିଛି । ଯାହାର ପରିଣାମରେ ଗରିବ ଲୋକେ ବେକାରହୋଇଯିବେ । ଏବେ ଏହି ଖଲିପତ୍ର ବ୍ୟବସାୟ ଆଉ ଏକ ମୋଡ ନେଇଛି । ଉକ୍ତ ବ୍ୟବସାୟକୁ ଆଖିରେ ରଖି ଭାରତର ଏ କ୍ଷୁଦ୍ର ଶିଳ୍ପ ସଂସ୍ଥା ଏକ ପ୍ରକାର ମେସିନ ଉଦ୍ଭାବନ କରି ସେଥିରେ ଟିକେ ଉନ୍ନତ ଧରଣର ପ୍ଲେଟ ଓ କପ୍ ତିଆରି କରୁଛନ୍ତି । ମଧବିତ୍ତ ଓ ନିମ୍ନ ମଧବିତ୍ତ ଶ୍ରେଣୀର ଲୋକେ ଏହି ମେସିନ କଣି ସେଥିରେ ପ୍ଲେଟ ପ୍ରଭୃତି

ଉତ୍ପାଦନ କରୁଛନ୍ତି । ଶାଳ ପତ୍ର ସଂଗ୍ରହ କାରୀଗଣ ଦୁଇଟି ଶାଳପତ୍ରକୁ ଗୋଟିଏ ମାତ୍ର ସିଆଁରେ ଯୋଡିଦେଇ ମେସିନଥିବା ଲୋକଙ୍କୁ ବିକ୍ରି କରି ଦେଉଛନ୍ତି ଓ ତାହା ମେସିନ ସାହାଯ୍ୟରେ ସୁନ୍ଦର ପ୍ଲେଟ ଓ କପ୍ ତିଆରି କରାଯାଇପାରୁଛି । ଏଗୁଡିକ ଅନ୍ୟ କାଗଜ ତିଆରି ପ୍ଲେଟ ଓ କପ୍ ଠାରୁ ଶସ୍ତା ମଧ ହେଉଛି । ତେଣୁ ଏଥିରେ ପତ୍ର ତୋଳାଳୀ, ମେସିନରେ କାମ କରିବା ଲୋକ ମେସିନ ଢରିଆରେ ଉତ୍ପାଦନ କାରୀ ଓ ତାଙ୍କଠାରୁ ଛୋଟ ଛୋଟ ବ୍ୟବସାୟୀମାନେ କରି ନେଇ ବଡ ବଡ ବ୍ୟବସାୟୀଙ୍କୁ ବିକ୍ରି କରିବା ଦ୍ୱାରା ସମସ୍ତେ ଲାଭବାନ ହେଉଛନ୍ତି । ବୋବେଇ ବୋଳାଳୀଙ୍କ ଅପେକ୍ଷା ଶାଳପତ୍ର କାରବାର କରୁଥିବା ଲୋକେ ଅଧିକ ଲାଭବାନ ହେଉଛନ୍ତି ।

ଉକ୍ତ ଉଭୟ ପ୍ରକାରର ହସ୍ତଶିଳ୍ପରେ ମୟୂରଭଞ୍ଜର ଗରିବ ଲୋକେ ଦାରିଦ୍ର୍ୟ ସୀମାରେଖା ତଳେ ଥିବା ପ୍ରାୟ ଦୁଇଲକ୍ଷରୁ ଅଧିକ ଲୋକ ନିଯୋଜିତ ହୋଇପାରିଛନ୍ତି । ଓଡିଶାର ସମସ୍ତ କ୍ଷୁଦ୍ର ଓ ବୃହତ ଶିଳ୍ପରେ ନିଯୁକ୍ତ ଶ୍ରମିକ ମାନଙ୍କଠାରୁ ଏ ସଂଖ୍ୟା ଯେ ଅଧିକ ଏହା ଅତି ସହଜରେ କୁହାଯାଇପାରେ । ଏ ଜିଲ୍ଲାର ମୁଷ୍ଟିମେୟ ବଡ ବ୍ୟବସାୟୀ ଯେଉଁମାନେ ଏହି ଦୁଇ ଶିଳ୍ପଜାତ ପଦାର୍ଥର ନିୟନ୍ତ୍ରଣ କରୁଛନ୍ତି ସେମାନଙ୍କ ସଂଖ୍ୟା ମଧ କମ୍ ନୁହେଁ । ଏମାନେ ପ୍ରଥମେ ଅଳ୍ପମଲ୍ୟ ଦେଇ ଉତ୍ପାଦିତ ଦ୍ରବ୍ୟ କିଣନ୍ତି ଓ ବଡ ବ୍ୟବସାୟୀଙ୍କୁ ବିକ୍ରି କରି ମଝିରେ କିଛି ଲାଭ ପାଆନ୍ତି । ଏ ସମସ୍ତଙ୍କୁ ଶୋଷଣ କରିବାକୁ ଆଉ ଏକ ଗୋଷ୍ଠୀ ଥିଲେ । ଯାହାଙ୍କ କ୍ଷମତାରେ କଳ୍ପନା କରାଯାଇପାରେନା । ସେମାନେ ହେଲେ ସରକାରଙ୍କ ଅର୍ଥ ବିଭାଗର କମରସିଏଲ ଟେକ୍ସ ସଂଗ୍ରହକାରୀ ବିଭାଗର ତଳଠାରୁ ଆରମ୍ଭ କରି ମନ୍ତ୍ରୀ ପର୍ଯ୍ୟନ୍ତ । ଏହି ବିଭାଗ ତରଫରୁ ପାର୍ଚେସ୍ ଟେକ୍ସ ବସାଯାଇଥିବାରୁ ଯେଉଁ ବ୍ୟବସାୟୀ ମାନେ ସେଲଟେକ୍ସ ବିଭାଗର କର୍ମଚାରୀଙ୍କ ସହାୟତାରେ ଶୋଷଣ କରୁଥିଲେ ସେମାନେ ଲାଭବାନ ହେଉଥିଲେ । ବଡ ବ୍ୟବସାୟୀଙ୍କ ବ୍ୟତୀତ କେହି ବାହାର ବ୍ୟବସାୟୀଙ୍କୁ ବିକ୍ରି କରିପାରୁ ନ ଥିଲେ କାରଣ ପରଚେସ୍‌ଟେକ୍ସ ଲାଇସେନ୍ସ କେବଳ ସେହି ବଡ ବ୍ୟବସାୟୀଙ୍କର ହିଁ ଥିଲା । ଅନ୍ୟ ମଧମ ଶ୍ରେଣୀର ବ୍ୟବସାୟୀମାନେ ତାଙ୍କର ଏଜେଣ୍ଟ ହୋଇ ଥିବାରୁ ତାଙ୍କର ବାହାର ବ୍ୟବସାୟୀଙ୍କୁ ବିକ୍ରି କରିବାର ଅଧିକାର ନ ଥିଲା । ତେଣୁ ବଡ ବ୍ୟବସାୟୀମାନେ ମାସକୁ ହଜାର ହଜାର ଟଙ୍କା ଚାନ୍ଦା ଦେଇ ସେଲଟେକ୍ସ କର୍ମଚାରୀଙ୍କୁ ସନ୍ତୁଷ୍ଟ କରି କୋଟି କୋଟି ଟଙ୍କାର ଟେକ୍ସ ଫାଙ୍କି ଦେଉଥିଲ । ଖୁବ୍ ବେଶିରେ ମାତ୍ର ୧୫ରୁ ୨୦ଲକ୍ଷ ଟଙ୍କା ଟେକ୍ସ ଆଦାୟ ହେଉଥିଲା । ଠିକ୍ ସେହିପରି ଖଲିପତ୍ର ବ୍ୟବସାୟରେ ମଧ ଜଙ୍ଗଲ ବିଭାଗ ପରମିଟ କାଟି ରପ୍ତାନୀର ଅନୁମତି ଦେଉଥିଲେ । ଏବିଭାଗ ମଧ କମୀରସିଏଲ ବିଭାଗ ପରି ଲାଭ ପାଉଥିଲେ । ପଶ୍ଚିମାଞ୍ଚଳର ବିଡିପତ୍ର ବ୍ୟବସାୟର ଦୁର୍ନୀତି ରାଜନୈତିକ ଦଳକୁ ଗ୍ରାସକରୁଥିବାରୁ ସରକାର ତାହା ଉଠାଇ ଦେଇ ନିଜେ ବ୍ୟବସାୟ ଦାୟିତ୍ୱ ନେବାରୁ ସରକାରୀ ଆୟ ବଢି ଚାଲିଛି । ଅବଶ୍ୟ ଏ କ୍ଷେତ୍ରରେ ସରକାର ବ୍ୟବସାୟ କରିବାର ଦାୟିତ୍ୱ ନେଇ ନ ଥିଲେ । ଏଥିରେ ଯେଉଁ ଶ୍ରମିକମାନେ ରୋଜଗାର କରି ଚଳୁଛନ୍ତି ତାଙ୍କୁ ସଂପୂର୍ଣ୍ଣ ଶୋଷଣମକ୍ତ କରିବା ପାଇଁ ଉଭୟ କ୍ଷେତ୍ରରେଟେକ୍ସ ଛାଡ କରାଯିବାରୁ ଯେ କୌଣସି ବ୍ୟକ୍ତି ରପ୍ତାନୀ କରିବାର ଅଧିକାର ପାଇଲା । ଏହା ଫଳରେ ରପ୍ତାନୀକାରୀଙ୍କ ସଂଖ୍ୟା କଟକଣା ଅଭାବରୁ ଉଠିଗଲା ଓ ବ୍ୟବସାୟୀଙ୍କ ମଧରେ ପ୍ରତିଯୋଗିତା ବଢିବା ସଙ୍ଗେ ସଙ୍ଗେ ଆର୍ଟିସନମାନେ ଅଧିକ ପଇସା ପାଇଲେ ବୋବେଇ ଘାସବ୍ୟବସାୟରେ ଘାସକିଣି ତାକୁ ଦଉଡି କରି ବିକ୍ରି କଲେ ଏକ କିଲେ ଦଉଡି ପ୍ରତି ମାତ୍ର ୫୦ପଇସା ନିଟ୍ ଲାଭ ମିଳୁଥିଲା । ବର୍ତ୍ତମାନ ତାହା ଦୁଇଟଙ୍କାରୁ ତିନି ଟଙ୍କା ଓ ସରୁ ଦଉଡିରେ ଚାରିଟଙ୍କା ପର୍ଯ୍ୟନ୍ତ ଲାଭ ପାଇଲେ । ଗୋଟିଏ ଗରିବ ପରିବାର ମାସକୁ ଟ୫୦୦ରୁ ଟ୮୦୦ ପର୍ଯ୍ୟନ୍ତ ରୋଜଗାର କରିପାରିଲା । ଶାଳପତ୍ରରେ ମୂଳଧନ କିଛି ଖଟା ଯାଏ ନାହିଁ । ତେଣୁ ତୋଳାଳିମାନଙ୍କର ପୂରାଲାଭ ହେଲା । ଏହା ଫଳରେ ମୟୂରଭଞ୍ଜ ଜିଲ୍ଲାର ଏ ଅଞ୍ଚଳରେ ଖାଦ୍ୟାଭାବ ଜନିତ ଅନାହାର ମୃତ୍ୟୁ ନାହିଁ । ଦାରିଦ୍ର୍ୟର ସୀମାରେଖାତଳେ ସଂଖ୍ୟା ମଧ କମ୍ ।

# ଶିମିଳିପାଳର ସୁରକ୍ଷା

ଶିମିଳିପାଳ ପର୍ବତମାଳା ମୟୁରଭଞ୍ଜ ଜିଲ୍ଲାର ମଧ୍ୟଭାଗରେ ଅବସ୍ଥିତ ହୋଇ ଏହି ଜିଲ୍ଲାକୁ ଗୋଟିଏ ପ୍ରାସାଦର ତଳ ଓ ଉପର ମହଲା ପରି ଦୁଇଭାଗରେ ବିଭକ୍ତ କରୁଅଛି । ଏହି ପର୍ବତମାଳା, ଏହାର ଚତୁଃପାର୍ଶ୍ୱସ୍ଥ ନିଘଞ୍ଚ ବନାନୀର ସ୍ଥିତି ପଶ୍ଚିମବଙ୍ଗ, ବିହାର ଓ ଓଡ଼ିଶାର ଏକ ବିସ୍ତୃତ ଅଞ୍ଚଳର ପରି ବେଶ ସୁରକ୍ଷା କରିବା ସଙ୍ଗେ ସଙ୍ଗେ ଦକ୍ଷିଣ ପଶ୍ଚିମ ମୌସୁମୀ ବାୟୁଦ୍ୱାରା ଏ ଅଞ୍ଚଳରେ ପ୍ରଥମ ବୃଷ୍ଟିପାତ କରାଇବାରେ ସହାୟକ ହୋଇ ପାରିଛି । ଏହି ଜଙ୍ଗଲ ମାନଙ୍କରେ ଶାଳ, ପିଆଶାଳ, ଶିଶୁ, ଗମ୍ଭାରୀ ପ୍ରଭୃତି ବହୁମୂଲ୍ୟବାନ ବୃକ୍ଷରାଜି ଭରପୂର ହୋଇ ରହିଅଛି ଓ ଏହି ଜଙ୍ଗଲମାନଙ୍କ ମଧ୍ୟରୁ ବହୁବିଧ ଜଙ୍ଗଲ ଜାତ ଦ୍ରବ୍ୟ ସହ ଔଷଧି ବୃକ୍ଷମାନ ମଧ୍ୟ ଉପଲବ୍ଧ ହେଉଅଛି । ଏହି ପର୍ବତମାଳା ଘନ ଜଙ୍ଗଲ ଆଚ୍ଛାଦିତ ହୋଇଥିବାରୁ ବୁଢ଼ାବଲଙ୍ଗ, ଖଡ଼୍‌ଖେଇ, ଭଣ୍ଡନ ଶାଳନ୍ଦୀ ଓ ଦେଓ ପ୍ରଭୃତି ଚିରସ୍ରୋତା ନଦୀମାନଙ୍କର ଉତ୍ପତ୍ତିସ୍ଥଳ ହୋଇପାରିଛି । ଏହା ସୁରକ୍ଷିତ ନ ହେଲେ ଏକ ବିସ୍ତୃତ ଅଞ୍ଚଳ ମରୁଭୂମିରେ ପରିଣତ ହେବାର ଆଶଙ୍କା କରାଯାଉଛି । ଏ ସମସ୍ତ ଦୃଷ୍ଟିରୁ ଏହି ପର୍ବତମାଳାର ସୁରକ୍ଷା ସର୍ବାଦୌ ବିଧେୟ ।

ଏହି ପର୍ବତମାଳାକୁ ସୁରକ୍ଷିତ କରି ଏହାକୁ ଏକ ଜୈବମଣ୍ଡଳରେ ପରିଣତ କରିବା ପାଇଁ ମୁଁ ଯଥାସାଧ୍ୟ ପଦକ୍ଷେପ ଗ୍ରହଣ କରିଛି । ଓଡ଼ିଶା ପରିବେଶ ସୁରକ୍ଷା ସମିତିର ସଭାପତି ଥିବା ସମୟରେ ଏ ସଂପର୍କରେ ଯେଉଁ କାର୍ଯ୍ୟାନୁଷ୍ଠାନ କରିଛି ଏବଂ ଏଥିପାଇଁ ବିଭିନ୍ନ ସ୍ତରରେ ଯେଉଁ ସମସ୍ତ ଚିଠି ପତ୍ରର ଆଦାନ ପ୍ରଦାନ କରାଯାଇଥିଲା ସେଗୁଡ଼ିକ ନିମ୍ନରେ ପ୍ରକାଶ କରାଗଲା । ମୋର ଏହି ସମସ୍ତ ପ୍ରଚେଷ୍ଟାର ଫଳ ସ୍ୱରୂପ ୧୯୯୪ ମସିହା ଜୁନ୍ ତା୨୨ରିଖ ଠାରୁ ଏହି ପର୍ବତମାଳାକୁ ମିଳିତଜାତିସଂଘର ପରିବେଶ ସୁରକ୍ଷା ବିଭାଗ ଦ୍ୱାରା ଏକ ଜୈବ ମଣ୍ଡଳ ରୂପେ ଘୋଷଣା କରାଗଲା । ଏହା ଓଡ଼ିଶାର ସର୍ବପ୍ରଥମ ଓ ସମଗ୍ର ଦେଶର ପଞ୍ଚଦଶ ଜୈବମଣ୍ଡଳ ରୂପେ ଏବେ ପରିଗଣିତ । ଏ ସଂପର୍କରେ ଓଡ଼ିଶା ପରିବେଶ ସଂସ୍ଥାର ଯଥେଷ୍ଟ ଅବଦାନ ରହିଛି, ରାଜ୍ୟ ଏବଂ କେନ୍ଦ୍ର ସରକାରଙ୍କ ସହାୟତା ମଧ୍ୟ ଏଥିପାଇଁ ମିଳିଛି ।

ଏ ସଂପର୍କରେ ଯେଉଁସବୁ ଚିଠି ପତ୍ର ଆଦାନ କରାଯାଇଥିଲା ସେ ଗୁଡ଼ିକ ନିମ୍ନରେ ଦିଆଗଲା :-

MINISTER
ENVIRONMENT & FORESTS, INDIA

D.O. No. J - 25013/21/93-BR-

Dear Sri Dash,

Thank you very much for your letter No. 60/DES/94 dated 24th February,1994. As informed earlier the proposal for declaring Similipal area as a Biosphere Reserve is already under consideration.

I regret I was not able to participate in the proposed workshop and public meeting in Baispali Satkosia area for creating Public awareness due to pressure of work. However, I look forward to visiting the area at a future date.

With regards.

Yours sincerely,
Sd/
**(KAMALA NATH)**

Shri Prassanna Kumar Dash,
President
Orissa Environmental Society,
N-6 / 530, Nayapalli,
Bhubaneswar - 751 015

*Kamal Nath*
MINISTER
ENVIRONMENT & FORESTS INDIA

D.O. No. 16/9/85 - MAB/CSC

***Dear Sri Dash,***

Please refer to your letter dated 27.1.1993 regarding designating Similipal forest as a Biosphere Reserve. I thank you very much for your good wishes conveyed to me for being elected as President of the 4th Meeting of the Parties to the Montreal Protcol on the OZone Layer.

A substantial area of Similipal forest is already under legal protection as a National Park Wild Life Sanctuary and also a part of the forst is a Tiger Reserve under project Tiger. As such, declaration of the same area as a Biosphere Reserve may not serve any useful purpose. However, we have requested the Government of Orissa to examine if proposals for Satkosia Gorge and Bisipali Sanctuary could be considered for designation as Biosphere Reserves. The reply from the State Government in this regard is awaited. The matter has been taken up with the State Government.

With kind regards.

Yours sinceerly

Sd/-
**(KAMAL NATH)**

Shri Prassanna Kumar Dash
President,
Orissa Environmental society,
N-6/530, Jayadeb vihar
Nayapally,
Bhubaneswar - 751 015

*Shri Prassanna Kumar Dash*
President,
Orissa Environmental society,
N-6/530, Jayadeb vihar
Nayapally,
Bhubaneswar - 751 015

No. 8/OES/93 Dt.15.1. 93

***Dear, Mr. Kamalnath,***

I am extermely happy to learn and congratulate you for being elected as the President of the Fourth meeting of the parties to the Montreal Protocol on the Ozone layer.

Your kind letter No. 19-17/92 Dated 1.10.92 complimenting the Orissa Environmental Society on its efforts at focussing the attention of the conscious citizens towards the priority areas of conservation in Orissa has been received and we are grateful that the Government of India in the Ministry of Environment and Forest is giving due importance to the resolutions adopted at the Orissa Environmental Congress held in Bhubaneswar during 23-24th May, 1992.

I draw your kind attention to the following.

(1) A biosphere reserve may be declared in Similipal forest Similipal in Orissa in one of the rare mixed tropical forest heritages in the country. This forest is spreading over an area of 2,700 sq. kms, which can be called a "Mirable Visu" for its unduladinq hills with varies topography, soil climate, cascading water falls, a place in the biosphere reserve map of the country. Similipal forest has all the features deserving to be considered as a biosphere reserve. The state Government in response to a letter from UNESCO have recommended to Government of India to set up a biosphere reserve Similipal Forest (Letter No FL(i) - 3/89/9592/FFAH dated 27/4/1989 and D.O. Letter No.13668/FFAH dated 13.6.90. It appears that the Government of India which acts as a nodal agency of UNESCO have not taken any steps in this regard. I had earlier written many times to Govt. of India to declare a biosphere reserve here. Shri S.K. Sahu M.P. ( Rajy Sabha) also wrote to you to set up a biospgere reserve in this forest. Shri Gopinath Gajapati, M.P. ( Lok Sabha), Berhampur constituency, who took

part in the Lok Sabha debate on 16.9.1991 on Preservation of the wild life ( Ammendment) Act also impressed to conserve the flora and founa of similipal Forest.

(2) A biosphere reserve / National Park / eco-tourist centre be established in Mahendragiri. The Mahendragiri hill system is one of the oldest ecosystern in the country. The terrain is the unique epitome of genetic species, aboriginal tribes, archaeological and historical monuments. In its aura of wild life, the system represents the transitional zone between the northen Himalayan and southern peninsular system providing and ideal ninch for diverse genetic species. shri Gopinath Gajapti a sitting member of Parliament, Berhampur constituency in his letter dated 27.12.1991 addressed to you had focussed to the problems that are being faced in the Mahedragiri hill system. He had requested for protection and conservation of the biological diversities in Mahendragiri's unique ecosystem by declaring a sanctuary/national park/ elephant reserve/ biosphere reserve. I hope your personal attention is being given on this aspect also.

In order to appreciate the ecological and environmental problems of Similipal Forest and to protect the biodiversities and along with its habitant from further degradation I would also request you to visit Mahendragiri which is a place of historical, archaeological and ecological importance of Eastern Ghats. On hearing from you about the date of your convenience I will organise citizens meet in the respective areal for interaction. Should you desire I am willing to send you detailed note on similipal and Mahedragiri.

A line in reply will be highly appreciated.

With kindest regards

Yours sincerely
Sd/-
**(Prassanna Kumar Dash)**
President, O.E.S. & Ex-Speaker O.L.A.

(Prassanna Kumar Dash)
President, O.E.S. &
Ex-Speaker O.L.A.

Letter No - 268 / OES / 94
Date - 28th Sept, 1994

To

Shri Kamal Nath,
Hon'ble Minister Minstry of
Environment and forest,
Govt. of India, New Delhi,

Sub : Similipal forest designated as BIOSPHERE RESERVE.

Ref : Govt of India, Ministry of Environment and Forest Notification No : 16/2/ MAB- CSC dated 22nd June, 1994 addressed to Chief Secretary, Govt. of Orissa.

Dear Mr. Kamal Nath

I may kindly be permitted to draw your kind personal attention to your above cited letter and my letter to you dated 11th Sept. 1994. We are very happy that the proposal of Govt. of Orissa has been accepted by the Govt of India, Ministry of Environment and Forests, though late and the Similipal Forest in Orissa has been notified as a BIOSPHERE RESERVE with effect from 22nd June 1994.

You may be aware that it was the Orissa Environmental Society which first initiated this proposal as early as 1982 and continued its untiring efforts for the last 12 years by moving UNESCO,UNEP, Govt, of India and Govt of Orissa to designate Similipal Forest as a BIOSPHERE RESERVE.

While referring to the above notification of Govt. of India, I am to state that the following 3 committees have been constitued.

(i) Expert team for preparing the project document

(ii) Maanagement Council.

(iii) Research Committee.

In view of the fact that Dr. S.N. Patra the Honorary Secretary, Orissa Environmental Society. Now working as Reader in Botany, Revenshaw College, Cuttack has done commendable work and research or similipal eco- system, he deserves to be nominated to the Expert team

for preparting the project document. In my honest opinion, he is well acquainted with Similipal Ecosystem.

The Orissa Environmental society which isa pioneering State level nongovernment organisation having membership strength of 277 drawn from different disciplines (list enclosed) and at whose initiative and sincere efforts the afforesaid notification could be possible may be nominated to the Research Committee.

I have ventured to make these suggestions in the interest of the State and conservation of the Unique Similipal Forest Ecosystem with varied biodiversity tribes and natural resources and humbly request you to do the needful in the matter.

We propose to organise a general public meeting and exhibition on Similipal to highlight its importance after it is notified as a BIOSPHERE the RESERVE at Baripada, the district head quarters of the Mayurbhanj in which the unique forest is present I have the honour of inviting you to be our Chief Guest on the occasion and visit similipal forest. Kindly fix up a date convenient to you. I would appreciate confirmation of the same.

With kind regards.

Yours sincerely

Sd/-
( **Shri Prasanna Kumar Dash)**
PRESIDENT

United Nations Eduational, Scientific and Culture Organisation
Organisation des nations unless pour Reduction, la science el la culture.

Dear Dr. Dash,

The Director-General has requested me to thank you for your letter regarding the possibility of establishing a biosphere reserve at the Similipal Forest in the State of Orissa within the framework of Unesco's Programme on MAB and the Biosphere (MAB).

This site appears to be very interesting from the point of view of the conservation of biological diversity and we congratulate you on your efforts to promote the protection and wise management of this site.

I recall that the Man and the Biosphere (MAB) Programme is an inter Governmental programme of Unesco. Biosphere reserve proposal must be submitted officially by the MAB National commitee for the country concerned; this procedure is outlined on pages 24,25 of the Practical Guide to MAB which is being sent to you under separate cover. I am also sending you a copy of the revised biosphere reserve nomination form for your information.

We therefore encourage you to contact the MAB National Committee for India who should be able to advise you on the appropriate follow-up to your proposal.

Contact

The MAB National Committee of India
ATTn. Mr. T.N. Seshan
Secretary to the Minister of Environment & Forest
Ministery of Environment & Forest
Bikoner House, New Delhi - 110 011

We thank you for your interest in biosphere reserve and MAB programme and hope that India will be nominating sites very soon for inclusion in the internation biosphere reserve network.

Your sincerely

Sd/-

**Bernd vn Droste**

Director

Division of Ecological Science

ବିଭିନ୍ନ ସମୟରେ ଲେଖାଯାଇଥିବା ପ୍ରବନ୍ଧଗୁଡିକ ମଧ୍ୟରୁ ଅଳ୍ପ କେତୋଟି ପାଠକମାନଙ୍କର ଅବଗତି ନିମନ୍ତେ ନିମ୍ନରେ ପ୍ରଦାନ କରାଗଲା ।

# ପରିବେଶ ଓ ଆମେ

ପରିବେଶ କହିଲେ ପାରିପାର୍ଶ୍ୱିକ ଅବସ୍ଥାକୁ ହିଁ ବୁଝୁ । ଆଜି ପୃଥିବୀର ତଥା ସମସ୍ତ ଜୀବଜଗତର ପରିବେଶ ଏକ ଅତି ଗୁରୁତ୍ୱର ସଂକଟଜନକ ପରିସ୍ଥିତିରେ ପହଂଚି ଯାଇଛି । ତେଣୁ ପରିବେଶ ସୁରକ୍ଷା କେବଳ ଆମଦେଶର ସମସ୍ୟା ନ ହୋଇ ସମଗ୍ର ପୃଥିବୀର ପ୍ରଧାନ ସମସ୍ୟା ହୋଇଛି । ପୃଥିବୀ ପରିବେଶର ଭାରସାମ୍ୟ ଭଳି କ୍ରମେ ଦ୍ରୁତଗତିରେ ହ୍ରାସହେବାକୁ ଲାଗିଛି ମାତ୍ର ଆଉ କେତେ ବର୍ଷ ପରେ ସମଗ୍ର ପୃଥିବୀ ଏକ ଗୁରୁତ୍ୱର ସଂକଟର ସମ୍ମୁଖୀନ ହେବ ବୋଲି ପୃଥିବୀର ଦିନେ ପ୍ରଳୟ ଘଟି ସମସ୍ତ ସୃଷ୍ଟି ଧ୍ୱଂସ ହେବାର ଯେଉଁ ଭବିଷ୍ୟତବାଣୀ ପ୍ରକାଶ ପାଇଥିଲା ଆଜି ବୈଜ୍ଞାନିକମାନେ ତାହା ସତ୍ୟ ହେବାକୁ ଯାଉଛି ବୋଲି ମତ ଦେଲେଣି । ଜାତିସଂଘ(U.N.O.) ତରଫରୁ ପ୍ରକାଶିତ ୧୯୮୬ ମସିହାରେ ପୃଥିବୀ ପରିବେଶ ରିପୋର୍ଟରେ ସମଗ୍ର ପରିବେଶ ଦୂଷିତକରଣର ପରିଣତି ସ୍ୱରୂପ ଏକବିଂଶ ଶତାବ୍ଦୀର ମଧ୍ୟଭାଗ ବେଳକୁ ଏକ ଭୟାବହ ପରିସ୍ଥିତି ଋତୁପରିବର୍ତ୍ତନ (Climate change ) ଯୋଗୁ ଉପୁଜିବାର ଆଶଙ୍କା ପ୍ରକାଶ ପାଉଛି । ଏଥିପାଇଁ ଦାୟୀ କିଏ ଓ ତହିଁର ପ୍ରତିକାର କେଉଁଠି ?

ପରିବେଶ ବୋଇଲେ ଆମେ ଓ ଆମ ଚାରିପାଖେ ଆମକୁ ବଞ୍ଚିବାରେ ଯେଉଁମାନେ ସବୁ ସାହାଯ୍ୟ କରନ୍ତି, ସେ ସମସ୍ତ ମିଶି ପରିବେଶ, ଅର୍ଥାତ ମାଟି, ପାଣି, ପବନ, ଆଲୋକ ଓ ତହିଁ ସହିତ ମଣିଷ, ପଶୁପକ୍ଷୀ, ସରିସୃପ, ନଦୀ, ସମୁଦ୍ର, ଜଙ୍ଗଲ ପର୍ବତ, ସୂର୍ଯ୍ୟ, ଚନ୍ଦ୍ର ତାରା, ଏ ସମସ୍ତ ପରିବେଶର ଅନ୍ତର୍ଭୁକ୍ତ । ସୃଷ୍ଟିକର୍ତ୍ତା, ସମସ୍ତଙ୍କ ମଧ୍ୟରେ ଯେଉଁ ଭାରସାମ୍ୟ ରଖିଛନ୍ତି ତାହାଫଳରେ ପ୍ରତ୍ୟେକ ପ୍ରତ୍ୟେକଙ୍କର କାର୍ଯ୍ୟ ଆପେ ଆପେ ଠିକ୍ ସମୟରେ କରୁଥିବା ଫଳରେ ପୃଥିବୀ ଓ ସୃଷ୍ଟି ଠିକ୍ ରହିଛି । ଏହି ଭାରସାମ୍ୟରେ ବ୍ୟତିକ୍ରମ ଘଟିଲେ ପରିବେଶ କ୍ଷେତ୍ରରେ ବିଭ୍ରାଟ ଘଟିବ । ଯାହାକୁ ଇଂରାଜିରେ Ecological Imbalance ବୋଲି କୁହାଯାଏ । ଏହି ବ୍ୟତିକ୍ରମ ଯେତେବେଳେ ଚରମସୀମାରେ ପହଞ୍ଚିବ ସେତେବେଳେ ସୃଷ୍ଟିର ପ୍ରଳୟ ଘଟି ପୁଣି ନୂତନ ସୃଷ୍ଟି ମୁଣ୍ଡ ଟେକିବ । ଏହି ପ୍ରଳୟ ଯୋଗୁ ପୃଥିବୀର ଭୂଭାଗ ଓ ଜଳଭାଗ କ୍ଷେତ୍ରରେ ଅନେକ ପ୍ରାକୃତିକ ପରିବର୍ତ୍ତନ ମଧ୍ୟ ଘଟେ । ଯାହା ଏକ ପର୍ବତ ବା ଜନବସତି ଥିଲା ତାହା ଜଳଭିତରେ ବୁଡ଼ିଯାଏ ଓ ଅନ୍ୟ କୌଣସି ସମୁଦ୍ର ଭିତରେ ଥିବା ଅଞ୍ଚଳ କ୍ରମେ ସ୍ଥଳ ଓ ବନଭୂମିରେ ପରିଣତ ହୋଇଥାଏ, ଏହା ସୃଷ୍ଟିର ପ୍ରକ୍ରିୟା । ସୃଷ୍ଟିରେ ବୃକ୍ଷଲତା, ନଦୀସମୁଦ୍ର, ଅନ୍ୟସମସ୍ତ ଜୀବଜନ୍ତୁ ଓ ସରୀସୃପ ଜନ୍ମଲାଭ କଲାପରେ ମଣିଷର ଜନ୍ମ ବା ସୃଷ୍ଟି । କିନ୍ତୁ ମଣିଷ ବୁଦ୍ଧି, ବିବେକ ଓ ଜ୍ଞାନ ଲାଭ କରିଥିବାରୁ ପ୍ରକୃତି ଓ ସମସ୍ତ ଜୀବଜନ୍ତୁଙ୍କୁ ନିଜ ନିୟନ୍ତ୍ରଣରେ ରଖି ସର୍ବଶ୍ରେଷ୍ଠ ବୋଲାଇ ପାରିଛି । ମଣିଷ ପ୍ରଥମେ ଜଙ୍ଗଲ ସଭ୍ୟତାରେ ବଢ଼ି ବୁଦ୍ଧିବଳରେ ଜଙ୍ଗଲ ସଭ୍ୟତାକୁ ଅତିକ୍ରମ କରି ଗ୍ରାମ, ସହର, ରାଜ୍ୟ ଦେଶ ସ୍ଥାପନା କଲା । ବିଜ୍ଞାନ ଓ କାରିଗରୀ କୌଶଳ ଲାଭକଲା । ସେଥିରେ ଆଧୁନିକ କଳକାରଖାନା ପ୍ରତିଷ୍ଠା କରିବା ସଙ୍ଗେ ସଙ୍ଗେ ବୈଜ୍ଞାନିକ କୌଶଳ ଆକାଶ, () ଓ ଚନ୍ଦ୍ର, ମଙ୍ଗଳ ପ୍ରଭୃତିଗ୍ରହକୁ ଯିବାର ଉଦ୍ୟମ କରି ସଫଳ ହୋଇପାରିଲା । ଅନ୍ୟ ଦେଶ ତଥା ମଣିଷଜାତିକୁ ଭୟଭୀତ କରି ରଖିବା ପାଇଁ ନାନା ପ୍ରକାର ଅତି ଭୟାନକ ମାରଣାସ୍ତ୍ର ଉଦ୍ଭାବନ କରିପାରିଛି ସେ ଦେଶ ପୃଥିବୀର ଉନ୍ନତ ବୋଲି ପରିଗଣିତ ହୋଇଛି ଓ ଯେଉଁ ଦେଶ ବର୍ତ୍ତମାନ ମଧ୍ୟ ଖାଦ୍ୟ, ବସ୍ତ୍ର ଓ ବାସଗୃହ ଯୋଗାଣରେ ସ୍ୱାବଲମ୍ବୀ ହୋଇ ପାରିନାହିଁ, ଅସ୍ତ୍ର ଉଦ୍ଭାବନ କରିବା ତ ଦୂରର କଥା ସେ ଦେଶକୁ ଅନୁନ୍ନତ ବା ବିକାଶଶୀଳ ଦେଶ ବୋଲି କୁହାଯାଉଛି । ସେ ଦେଶ ଅନ୍ୟ ଦେଶର ଦୟା ଓ ଶୋଷଣର ପାତ୍ର ହୋଇଛି ।

ମଣିଷ ତଥା ପୃଥିବୀର ଅନ୍ୟ ସମସ୍ତ ଜୀବଜନ୍ତୁଙ୍କୁ ବଞ୍ଚିରହିବାକୁ ହେଲେ ଖାଦ୍ୟପେୟ ଅପେକ୍ଷା ଅମ୍ଳଜାନ ବିଶେଷ ଦରକାର । ଅମ୍ଳଜାନ ବାୟୁମଣ୍ଡଳରେ ଥାଏ ଓ ଆମେ ପ୍ରଶ୍ୱାସ ନେଲାବେଳେ ବାୟୁମଧ୍ୟରୁ ଅମ୍ଳଜାନ ଗ୍ରହଣ କରୁ ଓ ତହିଁ ସଙ୍ଗେ ସଙ୍ଗେ ଯେଉଁ ନିଶ୍ୱାସ ଛାଡୁ ସେଥିରେ ଯେଉଁ ଦୂଷିତ ଅଂଶ ଥାଏ ତାହା ଅଙ୍ଗାରକାମ୍ଳ ହୋଇ ବାୟୁରେ ମିଶିଯାଇଥାଏ । ଆମେ କିଛି ନ ଖାଇ ନ ପିଇ କିଛିଦିନ ବଞ୍ଚିରହିପାରିବା କିନ୍ତୁ ନିଶ୍ୱାସ ନ ନେଇ ମୁହୂର୍ତ୍ତେ ମଧ୍ୟ ବଞ୍ଚିପାରିବା ନାହିଁ । ବାୟୁମଣ୍ଡଳରୁ ଗ୍ରହଣ କରୁଥିବା ଅମ୍ଳଜାନ ହିଁ ଅମକୁ ବଞ୍ଚାଇରଖେ । ମଣିଷ ଛାଡୁଥିବା ଅଙ୍ଗାରକାମ୍ଳ ବା ଦୂଷିତ ବାଷ୍ପ ବାୟୁରେ ମିଶିବା ବ୍ୟତୀତ କଳକାରଖାନାରୁ ନିର୍ଗତ ଦୂଷିତ ବାଷ୍ପ ଓ ଜଳ ମଧ୍ୟ ଅଙ୍ଗାରକାମ୍ଳ ସୃଷ୍ଟିଠାରୁ ଆରମ୍ଭ କରି ସମସ୍ତ ପ୍ରକାର ମାରଣାସ୍ତ୍ରର ଆକାଶ,ଜଳ ଓ ସ୍ଥଳରେ ପରୀକ୍ଷା ଓ ପ୍ରୟୋଗରେ ପେଟ୍ରୋଲ ଓ ଡିଜେଲ ଚାଳିତ ଯାନବାହାନରୁ ନିର୍ଗତ ବାଷ୍ପ ମଧ୍ୟ ଅଙ୍ଗାରକାମ୍ଳ ସୃଷ୍ଟିକରେ । ଏ ସମସ୍ତ ବାୟୁମଣ୍ଡଳକୁ ଅତ୍ୟଧିକ ପରିମାଣରେ ଦୂଷିତ କରିବାରେ ଅଧିକ ସାହାଯ୍ୟ କରେ । ତାହା ସତ୍ତ୍ୱେ ଆମେ ବଞ୍ଚି ରହିପରିବାର କାରଣ ଆମଚାରିପଟେ ଥିବା ବୃକ୍ଷଲତା । ବୃକ୍ଷଲତା ଅଙ୍ଗାରକାମ୍ଳ ବାଷ୍ପକୁ ଗ୍ରହଣ କରି ତାହା ଅମ୍ଳଜାନରେ ପରିଣତ କରି ସମସ୍ତ ପ୍ରାଣୀଜଗତକୁ ବଞ୍ଚାଇ ରଖିବାରେ ସାହାଯ୍ୟ କରିଥାଏ । ବୈଜ୍ଞାନିକଙ୍କ ମତରେ ଦୁଇଟି ପରିବାରର ଲୋକେ ନିଶ୍ୱାସ ଛାଡିବାରେ ବୟୁମଣ୍ଡଳକୁ ଯେତିକି ଅଙ୍ଗାରକାମ୍ଳ ଛାଡନ୍ତି ଗୋଟିଏ ଗଛ ତାହା ଗ୍ରହଣ କରି ହଜମ କରିଦେଇପାରେ ଏବଂ ଏକ ଏକର ଜମିରେ ଥିବା ଜଙ୍ଗଲର ବୃକ୍ଷ ସମୂହ ଚାରିକୁଇଣ୍ଟାଲ ଅଙ୍ଗାରକାମ୍ଳ ଗ୍ରହଣକରି ତାହା ଆଠକୁଇଣ୍ଟାଲ ଅମ୍ଳଜାନରେ ପରିଣତ କରି ପ୍ରାଣୀଜଗତକୁ ଦାନ କରିଥାଏ । ତେଣୁ ପ୍ରକୃତିର ସୃଷ୍ଟିରେ ସବୁଠାରୁ ମଙ୍ଗଳକରୀ ଉଦ୍ଭିଦ । କିନ୍ତୁ ଆମେ ଅନାୟାସରେ ବୃକ୍ଷଲତାକୁ କାଟି ପକାଇବାରେ କୁଣ୍ଠା ବୋଧ କରୁନାହୁଁ । କଲିକତା ବିଶ୍ୱବିଦ୍ୟାଳୟର ବୈଜ୍ଞାନିକ ଗବେଷଣାରୁ ପ୍ରକାଶ ଯେ ଗୋଟିଏ ଗଛ ତାର ସମସ୍ତ ଜୀବନ କାଳରେ ସୃଷ୍ଟିର ସୁରକ୍ଷା ଓ ମଙ୍ଗଳପାଇଁ ଯେଉଁ ଅମ୍ଳଜାନ ଦେଇଥାଏ ତାହା ମୂଲ୍ୟାୟନ କଲେ ମୋଟରେ ପ୍ରାୟ ୧୫ ଲକ୍ଷ ଟଙ୍କା ଦାମ୍ ହେବ । ସେଥିରୁ କେବଳ ବାୟୁଶୁଦ୍ଧ ଜନିତ ମୂଲ୍ୟ ୫ ଲକ୍ଷ ଟଙ୍କା, ମୋଟ ଅମ୍ଳଜାନ ଉତ୍ପାଦନର ଅଢ଼େଇଲକ୍ଷ ଟଙ୍କା. ବୃଷ୍ଟିପାନ୍ତ କରାଇବାର ମୂଲ୍ୟ ୩ ଲକ୍ଷ ଟଙ୍କା ଓ ଏତଦ୍ ବ୍ୟତୀତ ମୃତ୍ତିକା ସଂରକ୍ଷଣ ଓ ପଶୁପକ୍ଷୀ ପ୍ରଭୃତିକୁ ଆଶ୍ରୟଦାନ, ମାଟିତଳ ପାଣିର ନିୟନ୍ତ୍ରଣ ବାବଦ୍ ଅନ୍ୟ ପ୍ରାୟ ଦୁଇଲକ୍ଷଟଙ୍କାର ଅବଦାନ ରହିଛି । ବୃକ୍ଷଲତା ନ ଥିବା ଅଞ୍ଚଳ କ୍ରମେ ମରୁଭୂମିରେ ପରିଣତ ହେଉଛି ଓ ମାଟିତଳ ପାଣି କ୍ରମେ ତଳକୁ ତଳକୁ ଚାଲିଯାଉଛି । ପୃଥିବୀ ଚାରିପଟେ ଯେଉଁ ବାୟୁମଣ୍ଡଳ ଅଛି ସେଥିରେ ଭୂପୃଷ୍ଠରୁ ଉପରକୁ ପ୍ରାୟ ଦଶହଜାରଫୁଟ ମଧ୍ୟରେ ଓ ଜଳମଧ୍ୟରେ ପ୍ରାୟ ୫୦୦ ଫୁଟ ଗଭୀର ପର୍ଯ୍ୟନ୍ତ ଅମ୍ଳଜାନ ଥିବାରୁ ସମସ୍ତ ଜୀବଜଗତ ବଞ୍ଚି ରହିପାରିଛି ଓ ସୃଷ୍ଟିର ସୁରକ୍ଷା ହୋଇଛି । ବାୟୁମଣ୍ଡଳରେ କ୍ରମେ ଅମ୍ଳଜାନ କମିଯାଉଥିବା ଓ ଅନ୍ୟ ପକ୍ଷରେ ଅଙ୍ଗାରକାମ୍ଳ ବୃଦ୍ଧିପାଉଥିବା ସଂପର୍କରେ ପୃଥିବୀର ବହୁ ବୈଜ୍ଞାନିକଙ୍କ ମତ ପ୍ରଣିଧାନ ଯୋଗ୍ୟ । ବର୍ତ୍ତମାନ ବାୟୁମଣ୍ଡଳରେ ପ୍ରତି ନିୟୁତଟନ ବାୟୁରେ ୩୫୦ ଟନ୍‌କୁ ଅଙ୍ଗାରକାମ୍ଳ ବୃଦ୍ଧିପାଇଲାଣି । ୨୦୫୦ ମସିହାବେଳକୁ ଉକ୍ତ ଅଙ୍ଗାରକାମ୍ଳ ଅଂଶ ପ୍ରତି ନିୟୁତରେ ୬୦୦ ଟନ୍‌କୁ ବୃଦ୍ଧିପାଇବାର ଯଥେଷ୍ଟ ସମ୍ଭାବନା ରହିଛି । ଯଦି ଏବେଠୁ ତହିଁର ବ୍ୟାପକ ପ୍ରତିକାର ନ ହୁଏ, ଯୁକ୍ତରାଷ୍ଟ୍ର ଆମେରିକାର World watch Indtitute ତରଫରୁ 'The state of world Environment Repos' ୧୯୮୯ ପ୍ରକାଶ ପାଇଛି ଯେ ପୃଥିବୀର ଚାରିପଟରେ ଯେଉଁ ବହଳିଆ ବାୟୁମଣ୍ଡଳ (Ozone layer ) ରହିଛି ତାହା ପୃଥିବୀକୁ ସୂର୍ଯ୍ୟଙ୍କ ପ୍ରଖର କିରଣରୁ ରକ୍ଷାକରୁଛି । ପୃଥଦବୀ ଉପରେ ଅମ୍ଳଜାନ ସଂଯୁକ୍ତ ବାୟୁମଣ୍ଡଳରେ ଅମ୍ଳଜାନ କ୍ରମେ କମି ଅଙ୍ଗାରକାମ୍ଳ ଅଧିକ ବୃଦ୍ଧି ପାଉଥିବା ଯୋଗୁଁ ଦୂଷିତ ବାୟୁରେ ଉକ୍ତ ଓଜନ ଲେୟାର (Ozone layer) କ୍ରମେ ନଷ୍ଟ ହୋଇ ବଡ ବଡ ଛିଦ୍ର ସୃଷ୍ଟି କରୁଛି । ଯାହାଫଳରେ ପୃଥିବୀ ଅଧିକ ଉତ୍ତାପ ଅନୁଭବ କରୁଛି । ଏହା ଅଧିକ ବୃଦ୍ଧିପାଇଲେ ଆଫ୍ରିକା, ଚାଇନା, ଉତ୍ତର ଆମେରିକା, ଭାରତ, ଜାପାନ ଓ ବାଂଲାଦେଶ ପ୍ରଭୃତି ବ୍ୟାପକଅଞ୍ଚଳରେ ବନ୍ୟା, ବାତ୍ୟା, ମରୁଡି ଓ ଭୂକମ୍ପନ ସୃଷ୍ଟି ହୋଇ ପ୍ରଭୂତ କ୍ଷତିସାଧିତ ହେବ । ପୃଥିବୀର ବିଭିନ୍ନ ଅଞ୍ଚଳରେ ବର୍ଷାଭାବ

ଘଟୁଥିବାରୁ ସେ ସବୁ ଅଞ୍ଚଳ କ୍ରମେ ମରୁଭୂମି ଆଡକୁ ଗତିକରୁଥିବାର ଜଣାଯାଏ । ଉକ୍ତ ବୈଜ୍ଞାନିକ ରିପୋର୍ଟରେ ପୃଥିବୀରେ ପ୍ରତିବର୍ଷ ୬ ନିୟୁତ ହେକ୍ଟର ଜମି ମରୁଭୂମିରେ ପରିଣତ ହେଉଛି ଓ ପ୍ରାୟ ୨୦ ନିୟୁତ ହେକ୍ଟର ଜମିରେ ଚାଷ ହୋଇପାରୁନାହିଁ କି ଘାସ ଜନ୍ମୁନାହିଁ । ହୋଲକର ବୈଜ୍ଞାନିକ ମହାବିଦ୍ୟାଳୟର ଅଧ୍ୟାପକ ଡ଼କ୍ଟର ଶ୍ରୀବାସ୍ତବ କହିଛନ୍ତି, ପୃଥିବୀର ବର୍ତ୍ତମାନ ୬ ଶହ ଆଗ୍ନେୟଗିରି ରହିଛି ଓ ଅତ୍ୟଧିକ ଗରମ ଯୋଗୁଁ ପ୍ରତିବର୍ଷ ପ୍ରାୟ ୫୦ ଟି ଆଗ୍ନେୟଗିରି ସୃଷ୍ଟି ହେଉଛି । ଓ ନିରବ ଥିବା ଆଗ୍ନେୟଗିରିଗୁଡ଼ିକ ସକ୍ରିୟ ହେଉଛି । ସେ ପୁଣି କହିଛନ୍ତି, ଏହାଫଳରେ ଦୁଇହଜାର ନିୟୁତ ଉତ୍ତପ୍ତ ବାଷ୍ପ ବାୟୁମଣ୍ଡଳରେ ପ୍ରବେଶ କରୁଛି । ଏଥି ପାଇଁ ପ୍ରଶାନ୍ତ ମହାସାଗରର ଅଗ୍ନିବଳୟ ସ୍ଥଳରେ ଅସ୍ୱାଭାବିକ ପରିବେଶ ସୃଷ୍ଟି ହେଲେ ଭୂକମ୍ପନ ବୃଦ୍ଧିପାଇବ ଓ ପ୍ରବଳ ବୃଷ୍ଟିପାତ ହେବ । ଆମେରିକାର ବିଖ୍ୟାତ ବୈଜ୍ଞାନିକ ଡ଼କ୍ଟର ଆଲେଓଡ଼େରାମୂରାଙ୍କ ଚେତାବନି ପ୍ରକାଶ ପଇଛି ଯେ ବଶ୍ୱର ତାପମାତ୍ରା ୪ ଡ଼ିଗ୍ରୀ ସେଲସିଅସ୍ ବୃଦ୍ଧିପାଇଲେ ଭାରତ ସମେତ ପୃଥିବୀର ୨୭୦ କୋଟି ଲୋକ ସଂଖ୍ୟା ବିଶିଷ୍ଟ ଧାନ ଉତ୍ପାଦନ କରୁଥିବା ଦେଶର କୃଷି ଉତ୍ପାଦନ ବିଶେଷଭାବେ ବାଧା ପ୍ରାପ୍ତ ହେବ ଓ ବାଂଲାଦେଶ ସମେତ ପୃଥିବୀର ଏକ ତୃତୀୟାଂଶ ଅଞ୍ଚଳ ଜଳମଗ୍ନହେବାର ଯଥେଷ୍ଟ ସମ୍ଭାବନା ରହିଛି । ପୃଥିବୀରେ ସର୍ବଶ୍ରେଷ୍ଠ ପରିବେଶ ବୈଜ୍ଞାନିକ ଡ଼କ୍ଟର ବ୍ରାଉଦ କହିଛନ୍ତି ଯେ ଏହାର ଏକମାତ୍ର ପ୍ରତିକାର ଜଙ୍ଗଲ ସୁରକ୍ଷା ଓ ବନୀକରଣ ଏବଂ ମୃତ୍ତିକା ସଂରକ୍ଷଣ । ଏହାହିଁ କେବଳ ପୃଥିବୀକୁ ଏହି ଧ୍ୱଂସ ମୁଖରୁ ରକ୍ଷା କରିପାରିବ । ସେ ପୁଣି କହିଛନ୍ତି ଯେ ଏହି ପ୍ରକ୍ରିୟା (ଜଙ୍ଗଲ ସୁରକ୍ଷା ଓ ବନୀକରଣ) ବ୍ୟାପକ ଭାବେ ସମଗ୍ର ପୃଥିବୀରେ ୧୯୯୦ଠାରୁ ଆରମ୍ଭ ହେବା ଉଚିତ୍ । ଆଉ ଡେରିହେଲେ ଅଧିକ କ୍ଷତି ବଢ଼ିବ ଓ ପ୍ରତିକାର ବିଫଳ ହେବ ।

ଜଙ୍ଗଲ ମଣିଷ ତଥା ସୃଷ୍ଟିର ଏଭଳି ମଙ୍ଗଳକାରୀ ହୋଇଥିବାରୁ ଭାରତୀୟ ସଂସ୍କୃତିରେ ବୃକ୍ଷକୁ ଦେବତା ବୋଲି ପୂଜା କରାଯାଏ । ଭାରତର ସମସ୍ତ ଦେବା ଦେବୀ ପ୍ରସ୍ତର ଖୋଦିତ ହୋଇଥିଲେ ହେଁ ଜଗତରନାଥ ଶ୍ରୀଜଗନ୍ନାଥ କିନ୍ତୁ ନିମ୍ବ କାଠରେ ତିଆରି । ଭାରତର ମୁନିଋଷିମାନେ ଜଙ୍ଗଲ ଓ ପର୍ବତର ଗୁହାମାାନଙ୍କରେ ଆଶ୍ରମକରି ରହୁଥିଲାବେଳେ ପ୍ରକୃତିର ବିଶେଷ ଉପାସକ ଥିଲେ । ଦୈନନ୍ଦିନ ସେମାନେ ପ୍ରାର୍ଥନା କରୁଥିଲେ "ହେ ପୃଥିବୀମାତା ତୋଠାରୁ (ପୃଥିବୀଠାରୁ)ଆମେ ଆଜି ଯେତିକି ନେଲୁ ସେତିକି ଯେପରି ପୂରଣ ହୋଇଯାଉ, ତୋଦେହକୁ ଆମେ ଖନନ କଲାପରେ ତୋତେ କଷ୍ଟ ନ ହେଉ" । ଏହାର ମୂଳତତ୍ତ୍ୱ ହେଉଛି ପରିବେଶ ସୁରକ୍ଷା ବୈଦିକ ଯୁଗରେ ଯେତେବେଳେ ଜଙ୍ଗଲ ବୃକ୍ଷଲତାରେ ଭରପୂର ଥିଲା ସେତେବେଳେ ଲେଖାଯାଉଥିବା ମହାପୁରାଣ ମହାଭାରତର ବନ ପର୍ବରେ ଜଙ୍ଗଲ ସୁରକ୍ଷାର ଯେଉଁ ପ୍ରମାଣ ତାହା ପରିବେଶ ସୁଯକ୍ଷା ପ୍ରତି କେତେ ଗୁରୁତ୍ୱପୂର୍ଣ୍ଣ ଅଟେ, ସେଥିରେ ଲେକାଅଛି :-

"ନିର୍ବନଂ ବଧତେ ବ୍ୟାଘ୍ରୋ, ନିର୍ବ୍ୟାଘ୍ରଂ ଛେଦ୍ୟତେ ବନଂ,

ତସ୍ମାତ୍ ବ୍ୟାଘ୍ରୋ ବନଂ ରକ୍ଷତି, ବନଂ ବ୍ୟାଘ୍ରୋଽପିଚ ପାଳୟତେ ।"

ଅର୍ଥାତ୍ ବ୍ୟାଘ୍ର ଜଙ୍ଗଲରେ ଥିଲେ ଲୋକେ ଜଙ୍ଗଲକୁ ପ୍ରବେଶ କରି ନଷ୍ଟ କରିବେ ନାହିଁ । ସେହିପରି ଜଙ୍ଗଲ ବ୍ୟାଘ୍ରକୁ ବାସ ଦେଇ ଥିବାରୁ ସେ ମଧ ତାକୁ ରକ୍ଷା କରିବ । କିନ୍ତୁ ଆଜି ଜଙ୍ଗଲ ସମଗ୍ର ପୃଥିବୀ ଭାରତ ବର୍ଷ ତଥା ଓଡ଼ିଶାରେ କେଉଁ ପରିସୀମାକୁ ଆସିଛି ତାହା ନିମ୍ନ ପରିସଂଖ୍ୟାନ ରିପୋର୍ଟରୁ ଜଣାପଡ଼େ ।

| | | |
|---|---|---|
| ପୃଥିବୀର ମୋଟ ଜଙ୍ଗଲ ପରିମାଣ | - | ୨୯୭୦ ନିୟୁତ ହେକ୍ଟର |
| ପୃଥିବୀରେ ମୋଟ ଜଙ୍ଗଲ ନଷ୍ଟ | - | ୨୨୫ ନିୟୁତ ହେକ୍ଟର |

ପୃଥିବୀର ବର୍ଷକୁ ଜଙ୍ଗଲ ନଷ୍ଟ - ୭.୫ ନିୟୁତ ହେକ୍ଟର

ପୃଥିବୀର ୨ଟି ଦେଶରେ ବଡ଼ ପତ୍ରଥିବା ଗଛ ଆସନ୍ତା ୨୫ ବର୍ଷ ମଧ୍ୟରେ ନଷ୍ଟ ହୋଇଯିବ ଓ ଆଉ ୩ଟି ଦେଶରେ ୫୦ ବର୍ଷ ମଧ୍ୟରେ ଶେଷ ହେବ ।

## ଭାରତରେ ଜଙ୍ଗଲ ପରିମାଣ

୧୮୮୪ ରେ ମୋଟ ଭୂଭାଗର ଶତକଡ଼ା ୪୦ ଭାଗ ଥିଲା

୧୯୫୨ ରେ ମୋଟ ଭୂଭାଗର ଶତକଡ଼ା ୨୦ ଭାଗ ଥିଲା

୧୯୮୨ ରେ ମୋଟ ଭୂଭାଗର ଶତକଡ଼ା ୧୧ ଭାଗ ଥିଲା

ଉପରୋକ୍ତ ହିସାବରୁ ଦେଖିବାକୁ ମିଳେ କିପରି ଦ୍ରୁତ ଗତିରେ ଜଙ୍ଗଳ ଭାରତ ଓ ସମସ୍ତ ପୃଥିବୀରେ କ୍ଷୟ ଘଟୁଛି । ଅଳ୍ପଦିନ ତଳେ ଆମେରିକାର ଏକ ସେଟେଲାଇଟ୍‌ର ଆକାଶ ସର୍ଭେରୁ ଭାରତରେ ଭଲ ଜଙ୍ଗଲ କେବଳ ପୂର୍ବାଞ୍ଚଳରେ ତଥା ଓଡ଼ିଶାରେ ଥିବା ପ୍ରକାଶ ପାଇଛି । ଓଡ଼ିଶାରେ ଯଦି କେଉଁଠି ଥାଏ ତେବେ ତାହା ବିଶେଷକରି ମୟୁରଭଞ୍ଜର ଶିମିଳିପାଳ ପର୍ବତମାଳାରେ । ଭାରତର ଜଣେ ବିଖ୍ୟାତ ପରିବେଶ ବିଜ୍ଞାନୀ B.Bhora ଆମ ଦେଶର ମାଟିର ଉପର ଅଂଶ, ଯାହାକୁ Top-Soil କୁହାଯାଏ ତାହା ବୃକ୍ଷଲତା ଦ୍ୱାରା ମାଟି ଆବୃତ ନ ଥିବାରୁ ବର୍ଷାପାଣିର ସିଧାମାଡ଼ରେ ପ୍ରତିବର୍ଷ ଯେତେ ଧୋଇଯାଉଛି ତହିଁର ମୋଟ ଉର୍ବରଶକ୍ତି ଆମଦେଶରେ ପ୍ରତିବର୍ଷ ଉତ୍ପାଦନ ହେଉଥିବା ମୋଟ ରାସାୟନିକ ସାରର ଉର୍ବର ଶକ୍ତିର ଦୁଇଗୁଣ ହେବ ।

ମଣିଷ ଅଧିକ ଚତୁର ଓ ଅହଂକାରୀ ହୋଇ ନିଜଂକୁ ଅଧିକ ସୁଖ ସ୍ୱାଚ୍ଛନ୍ଦ୍ୟରେ ରଖିବା ପାଇଁ ବିଜ୍ଞାନର ଉନ୍ନତି ନାମରେ ପ୍ରକୃତି ତଥା ପରିବେଶ ଉପରେ ଘୋର ଅତ୍ୟାଚାର କରି ନିଜର ସର୍ବନାଶ ଘଟାଇବାକୁ ଯାଉଛି, ଉପର କଥିତ ବୈଜ୍ଞାନିକମାନଙ୍କ ମତରେ । ତେଣୁ ମହାତ୍ମା ଗାନ୍ଧୀ ଏହି ପ୍ରକୃତି ଲକ୍ଷ୍ୟ କରି କହିଛନ୍ତି, " The earth has enough for every one's need, but not for every one's greed " ଅର୍ଥାତ୍ ପ୍ରତ୍ୟେକ ଜୀବଜନ୍ତୁ ତଥା ମଣିଷର ଆବଶ୍ୟକତା ପାଇଁ ପୃଥିବୀ ଯଥେଷ୍ଟ ସମ୍ପଦ ସାଇତି ରଖିଛି । କିନ୍ତୁ କାହାରି ସମସ୍ତ ଲୋଭ ପୂରଣ ପାଇଁ ନୁହେଁ ।

ମଣିଷ ନିଜ ଅହଂକାର, ଗର୍ବ ଓ ସ୍ୱାର୍ଥପୂରଣରେ ଅନ୍ଧ ହୋଇ ଆଧୁନିକ ସଭ୍ୟତା ଓ ବିଜ୍ଞାନର ଉନ୍ନତି ନାମରେ ନିଜର ଧ୍ୱଂସ ଆଡ଼କୁ ଅଚେତନ ଅବସ୍ଥାରେ ଆଗଇ ଚାଲିଥିଲାବୋଳ ବିଂଶ ଶତାବ୍ଦୀର ଶେଷ ଆଡ଼କୁ ୧୯୭୨ ରେ ଷ୍ଟକ୍‌ହୋମ୍‌ଠାରେ ପୃଥିବୀର ସମସ୍ତ ନେତୃବର୍ଗ ସମବେତ ହୋଇ ଆନ୍ତର୍ଜାତିକ ସ୍ତରରେ ପରିବେଶ ସୁରକ୍ଷାପାଇଁ ପ୍ରଥମ ପଦକ୍ଷେପ ନିଅନ୍ତି । ଉକ୍ତ ସମ୍ମିଳନୀରେ ଭାରତର ପ୍ରଧାନମନ୍ତ୍ରୀ ଇନ୍ଦିରା ଗାନ୍ଧୀ ଯୋଗଦେଇ ନିମ୍ନଲିଖିତ ଅତି ଉପାଦେୟ ବିଷୟ କହିଥିଲେ :-

"One cannot be truely human, Civilised, unless One looks upon not only all his fellow-men, but also all the creation with the eyes of a friend."

ଅର୍ଥାତ୍ ଯେଉଁ ପ୍ରକୃତି କୋଳରେ ଜନ୍ମ ହୋଇକରି ଆମେ ବଞ୍ଚୁଛୁ ଓ ବଢ଼ିଛୁ ତାର ସୁରକ୍ଷା ନ କରି ତାକୁ ନଷ୍ଟ କରୁଛୁ । ତେଣୁ ପ୍ରକୃତ ମାନବ ଜୀବନର ସାର୍ଥକତା ପାଇଁ ଆମେ ଆମ ନିଜ ଭାଇବନ୍ଧୁଙ୍କୁ ଯେଉଁ ଭାବେ ଦେଖୁଛୁ, ପ୍ରକୃତି ତଥା ସମସ୍ତ ସୃଷ୍ଟିକୁ ସେହି ବନ୍ଧୁ ବା ମିତ୍ର ଆଖିରେ ଦେଖିବା ଉଚିତ୍ । ପ୍ରକୃତିର ଯଦି ଆମେ ପ୍ରକୃତରେ ମିତ୍ର ହୋଇପାରିବୁ ତେବେ ସେହି ପ୍ରକୃତି ସୃଷ୍ଟ ବୃକ୍ଷଲତା ହିଁ ଅମକୁ ତଥା ସମସ୍ତ ସୃଷ୍ଟିକୁ ରକ୍ଷା କରିପାରିବେ ।

# ସତରେ କ'ଣ ଶିମିଳିପାଳ ରକ୍ଷା ହେବ ?

ବିଶ୍ୱର ଅତି ଅନାମଧେୟ ମୟୂରଭଞ୍ଜ ଭଳି ଏକ ଅତି ଅନୁନ୍ନତ ଜିଲ୍ଲାରେ ପ୍ରକୃତିର ଯେଉଁ ଏକ ଅମୂଲ୍ୟ ଅବଦାନ ରୂପେ ଶିମିଳିପାଳ ଭଳି ପ୍ରାକୃତିକ ସୌନ୍ଦର୍ଯ୍ୟ ଭରା ପର୍ବତମାଳା ଅମକୁ ସୃଷ୍ଟିର ବହୁ ଯୁଗରୁ ହଜାର ହଜାର ବର୍ଷ ତଳେ ମିଳିଥିଲା, ତାହା କ'ଣ ସତରେ ରକ୍ଷା ହୋଇ ନ ପାରି ବିଲୀନ ହୋଇଯିବ ? କୌଣସି ପ୍ରକୃତିର ପୂଜାରୀ କେବେହେଲେ ଏହା ବିଶ୍ୱାସ କରି ପାରିବନି । ଐତିହାସିକ ଓ ଭୂତତ୍ତ୍ୱବିଦ୍‌ମାନେ ପ୍ରମାଣର ସହ କହନ୍ତି ଏହା ପୁରାଣ ଯୁଗର ପ୍ରସିଦ୍ଧ ଗୋଣ୍ଡୁଆନା ଲ୍ୟାଣ୍ଡର ଏକ ଅଂଶ ବିଶେଷ ଏପର୍ଯ୍ୟନ୍ତ ରହିଛି ଇତିହାସର ମୁକସାକ୍ଷୀ ରୂପେ । ସ୍ୱାଧୀନତା ପ୍ରାପ୍ତିପରେ ତହିଁର ଅବକ୍ଷୟ କ୍ରମେ ବଢ଼ିଚାଲିଛି, ଶାସନ ଓ ମଣିଷର ଅବିବେକ ବିଚାର ଫଳରେ । ଏହା ଏବେ ସଚେତନ ଓ ପରିବେଶବିଦ୍‌ମାନଙ୍କର ଚେତାବନୀ ପରେ ମଧ୍ୟ ଧ୍ୱଂସ ମୁଖରୁ ରକ୍ଷାକରି ନ ପାରୁଁ ତେବେ ଆମର ପରବର୍ତ୍ତୀ ବଂଶଧରମାନେ କେବେହେଲେ କ୍ଷମା ଦେବେ ନାହିଁ । ଆମେ ସବୁଦିନ ନିନ୍ଦିତ ହେଉଥିବୁ । ଆଉ କିଛି ବର୍ଷ ପରେ ଯେତେବେଳେ ବିଶ୍ୱରକ୍ଷାର ଅତି ଆବଶ୍ୟକତା ସମ୍ପୂର୍ଣ୍ଣ କ୍ଷତି ସାଧନ ଘଟିସାରିଥିବ । କାରଣ ଏକବିଂଶ ଶତାବ୍ଦୀର ଶେଷଭାଗକୁ ବିଶ୍ୱର ସମସ୍ତ ଜୈବମଣ୍ଡଳର ଏକ ଅସ୍ୱାଭାବିକ ପରିବର୍ତ୍ତନ ଘଟିବାର ପରିବେଶବଦ୍‌ମାନେ ବହୁ ଆଗରୁ ସତର୍କବାଣୀ ଶୁଣାଇ ଦେଲେଣି । ବୃକ୍ଷଲତାର ସମ୍ପୂର୍ଣ୍ଣ ବିଲୋପ ଓ କଳକାରଖାନା ଜନିତ ଅତ୍ୟଧିକ ମନୁଷ୍ୟକୃତ କାର୍ଯ୍ୟ ଫଳରେ ଅଙ୍ଗାରକାମ୍ଳ ଅତିମାତ୍ରାରେ ବୃଦ୍ଧି ପାଇବା ଯୋଗୁଁ ମଣିଷ ତଥା ସମସ୍ତ ଜୀବଜଗତକୁ ଅମ୍ଳଜାନର ଭୀଷଣ ଅଭାବ ହେବାର ସମ୍ଭାବନା ଅଛି । ବିଶ୍ୱର ପରିବେଶବିଦ୍‌ଙ୍କ ମତରେ ଏକବିଂଶ ଶତାବ୍ଦୀର ମଧ୍ୟଭଗରେ ଜୀବଜଗଦ ପାଇଁ ଏକ ଅତି ଭୟଙ୍କର ବିପଦ ଦେଖାଦେବାର ସମ୍ଭାବନା ରହିଛି । ବୃକ୍ଷଲତା ଶୂନ୍ୟ ହୋଇଗଲେ କେବଳ ଯେ ଅମ୍ଳଜାନ ମିଳିବ ନାହିଁ ତ'ନୁହେଁ, ମାଟିତଳେ ଥିବା ଜଳସମ୍ପଦ ଆହୁରି ତଳକୁ ତଳକୁ ଚାଲିଯିବ । ଏହାଫଳରେ ପାଣି ଟିକିଏ ପିଇ ବଞ୍ଚିବାର ଉପାୟ ନଥିବ । ଗଛ ଅଭାବରେ ଆଉ ବର୍ଷା ମଧ୍ୟ ହେବ ନାହିଁ । ଏପରି ଆସନ୍ନ ବିପଦରୁ ରକ୍ଷାପାଇବାର ଏକମାତ୍ର କବଚ ହେବ ବୃକ୍ଷଲତା । ଭାରତ ବର୍ଷର ହିମାଳୟ ଶିମିଳିପାଳ ପର୍ବତମାଳା ଓ ପୂର୍ବାଞ୍ଚଳ ରାଜ୍ୟଗୁଡ଼ିକରେ ବର୍ତ୍ତମାନ ଥିବା ବିରାଟ ଜଳ ସମ୍ପଦ ହିଁ କେବଳ ସେତେବେଳେ ଅମ୍ଳଜାନ ହେଇ ଅନ୍ତତଃ ଭାରତର ବା ପୂର୍ବାଞ୍ଚଳର ମଣିଷ ତଥା ସମସ୍ତ - ଜୀବ ଜଗତକୁ ଧ୍ୱଂସ ଲୀଳାରୁ ରକ୍ଷା କରିପାରିବ ।

୧୯୭୨ ମସିହାରେ ବିଶ୍ୱର ବିଭିନ୍ନ ଦେଶର ରାଷ୍ଟ୍ରନାୟକମାନେ ପ୍ରଥମେ ଇଉରୋପର 'ଷ୍ଟକ୍‌ହଲମ୍' ଠାରେ ସମ୍ମିଳିତ ହୋଇ ବିଶ୍ୱର ପରିବେଶ ସୁରକ୍ଷାପାଇଁ ସଚେତନତା ସୃଷ୍ଟି ଆରମ୍ଭ କରିଥିଲେ, ତା'ପରେ ଭାରତବର୍ଷରେ ପରିବେଶ ସୁରକ୍ଷାର ଅୟମାରମ୍ଭ ହେଲା । ଓଡ଼ିଶାରେ ୧୯୮୦ରୁ ଓଡ଼ିଶା ବିଧାନସଭା ମଧ୍ୟରେ ଆରମ୍ଭ ହୋଇଛି ମୟୂରଭଞ୍ଜର ଶିମିଳିପାଳ ପର୍ବତମାଳାର ପ୍ରଥମ ସୁରକ୍ଷା ଆନ୍ଦୋଳନ ଏବଂ ରାଜ୍ୟରେ ମଧ୍ୟ ଜଙ୍ଗଲ ସୁରକ୍ଷା ସଚେତନତାର ସୃଷ୍ଟି ପାଇଁ 'ଓଡ଼ିଶା ପରିବେଶ ସୁରକ୍ଷା ସମିତି'ର ଗଠନ ଏକ ବେସରକାରୀ ଅନୁଷ୍ଠାନଦ୍ୱାରା । ୧୯୮୫ରେ ଶିମିଳିପାଳ ପର୍ବତମାଳାକୁ ଏକ ଜୈବମଣ୍ଡଳ ସୁରକ୍ଷାର ( Biosphere Protection) ପ୍ରଥମ ଦାବୀ । ଏଠା ବାରିପଦାରେ ଅନୁଷ୍ଠିତ ଏକ ଜାତୀୟ ସ୍ତରର ପରିବେଶ ସମ୍ମିଳନୀରେ । ଏହି ସମ୍ମିଳନୀରେ ସେତେବେଳର ଓଡ଼ିଶାର ମୁଖ୍ୟମନ୍ତ୍ରୀ କେନ୍ଦ୍ର ସରକାରଙ୍କର ଜଙ୍ଗଲ ଓ ପରିବେଶ ମନ୍ତ୍ରୀ ଓ ଅନ୍ୟ କେନ୍ଦ୍ରମନ୍ତ୍ରୀ ଏବଂ ଭାରତର ଅନ୍ୟ ବହୁ ଖ୍ୟାତନାମା ପରିବେଶବିତ୍‌ମାନଙ୍କର ଯୋଗଦାନ ଓ ଉଦ୍‌ବୋଧନ ଏହି ସମ୍ମିଳନୀରେ ସେତେବେଳର ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ଜାନକୀ ବଲ୍ଲଭ ପଟ୍ଟନାୟକ ଶିମିଳିପାଳରୁ ଟିମ୍ବର ବାବଦ ମିଳୁଥିବା ବାର୍ଷିକ ଆୟ ସେ ସମୟର ପ୍ରାୟ ୪-୫ କୋଟି ଟଙ୍କାର ଆୟ ସବୁଦିନ ପାଇଁ ଛାଡ଼ କରି ଏକ ଐତିହାସିକ ଘୋଷଣା ପରେ ଏହି ପର୍ବତମାଳାକୁ ଜୈବମଣ୍ଡଳର ସମ୍ପୂର୍ଣ୍ଣ ସଂରକ୍ଷଣ ଦାବୀକୁ ସମର୍ଥନ କରିଥିଲେ । ସେତେବେଳେ ଭାରତରେ ମାତ୍ର ୧୪ ଗୋଟି ଜଙ୍ଗଲ ଓ ପାର୍ବତ୍ୟାଞ୍ଚଳ ଜୈବମଣ୍ଡଳ ରୂପେ ଘୋଷିତ ହେଲା ।

୧୯୭୮ରେ ଭାରତ ସରକାର ଓଡ଼ିଶାର କୌଣସି ଅଞ୍ଚଳରୁ ଜୈବମଣ୍ଡଳର ଅନ୍ତର୍ଭୁକ୍ତ ହେବା ସମ୍ପର୍କରେ ପ୍ରସ୍ତାବ ମାଗିଥିଲେ ହେଁ ଓଡ଼ିଶାର ଜଙ୍ଗଲ ବିଭାଗ ମନା କରିଦେଇ ଅବିବେକପଣିଆର ପରିଚୟ ଦେଇଥିଲେ । ବରଂ ଅନ୍ୟ ପକ୍ଷରେ ନିଜ ସ୍ୱାର୍ଥପାଇଁ ଶିମିଳିପାଳ ଉନ୍ନୟନ ନାମରେ (S.F.D.C.) ଏକ ନିଗମ ଗଠନ କରି ଶିମିଳିପାଳ ଜଙ୍ଗଲର କୌଣସି ଉନ୍ନତିମୂଳକ କାର୍ଯ୍ୟକ୍ରମ ନ କରି ବ୍ୟାପକ ଭାବେ ଜଙ୍ଗଲ କଟା ଓ ଟମ୍ବର ବିକ୍ରିର ଆୟୋଜନ କଲେ । ୧୯୭୯ରେ ଜଙ୍ଗଲ କଟା ମଧ୍ୟ ଅରମ୍ଭ ହୋଇଯିବାରୁ ଶିମିଳିପାଳ ସୁରକ୍ଷାର ଆନ୍ଦୋଳନ ଆରମ୍ଭ ହେଲା । ସେତେବେଳର ବିଧାନସଭାର ଅଧ୍ୟକ୍ଷଙ୍କର ସଭାପତିତ୍ୱରେ ଏକ ଗୃହ କମିଟି ଗଠିତ ହୋଇ ଶିମିଳିପାଳ ସମ୍ପଦର ଯେଉଁ ନିଷ୍ପତ୍ତି ଗ୍ରହଣ କଲେ ତାହା ରାଜ୍ୟ ସରକାର ମାନି ନେଇ ଶିମିଳିପାଳ ଉନ୍ନୟନ ନିଗମର ଜଙ୍ଗଲକଟା ସମ୍ପୂର୍ଣ୍ଣ ରୂପେ ବନ୍ଦ କରିଦେଲେ । କିନ୍ତୁ ତହିଁର କୌଣସି ଉନ୍ନୟନ କାର୍ଯ୍ୟକ୍ରମ ନରହିବାରୁ ଜଙ୍ଗଲ ବିଭାଗର ସରକାରୀ କର୍ମଚାରୀମାନଙ୍କର ଗୁରୁତର ଅବହେଳା ଯୋଗୁଁ ଶିମିଳିପାଳର ସେହି ସୁରକ୍ଷିତ ଅଞ୍ଚଳରୁ ପ୍ରବଳ ଭାବେ କାଠର ଚୋରା ଚାଲାଣ ଆରମ୍ଭ ହୋଇଗଲା ଓ ଶିମିଳିପାଳର ଅବକ୍ଷୟ କ୍ରମେ ଦ୍ରୁତଗତିରେ ବଢ଼ିଚାଲିଲା ।

ଶିମିଳିପାଳକୁ ଜୈବମଣ୍ଡଳର ଅନ୍ତର୍ଭୁକ୍ତ ପ୍ରସ୍ତାବ ଓଡ଼ିଶାର ପରିବେଶ ସମିତିଠାରୁ ଜାଣି ବିଶ୍ୱ ରାଷ୍ଟ୍ରମଣ୍ଡଳର ଶାଖା ଅନୁଷ୍ଠାନ (U.N.D.P.) ବିଶେଷ ଆନନ୍ଦ ପ୍ରକାଶକରି ଭାରତ ସରକାରଙ୍କ ଜରିଆରେ ଆବେଦନ କରିବାକୁ ଜଣାଇଥିଲେ ଓ ସେଠାକାର ଆବେଦନ ଫର୍ମ ମଧ୍ୟ ଓଡ଼ିଶାର ପରିବେଶ ସମିତିର ଅଫିସକୁ ପଠାଇଥିଲେ । ପରିବେଶ ସମିତି ରାଜ୍ୟ ସରକାରଙ୍କ ଦୃଷ୍ଟିକୁ ଆଣି ସୁପାରିଶ ଫର୍ମଗୁଡ଼ିକ ବହୁ କଷ୍ଟରେ ପୂରଣ କରାଇ କେନ୍ଦ୍ର ସରକାରକୁ ସୁପାରିଶ ସହ ତାହା ପଠାଇବାକୁ ରାଜ୍ୟ ସରକାରଙ୍କୁ ଅନୁରୋଧ କରାଯାଇଥିଲା । ଉକ୍ତ ସୁପାରିଶ ପତ୍ର ବହୁ ଅନୁରୋଧ କ୍ରମେ ଡ଼େରିରେ ହେଲେ ମଧ୍ୟ ରାଜ୍ୟ ସରକାର ପଠାଇଥିଲେ । କେନ୍ଦ୍ର ସରକାର ତାହା ଯେପରି ଗ୍ରହଣ ନକରନ୍ତି କେତେକ ଜଙ୍ଗଲ ବିଭାଗ କର୍ମଚାରୀ ପ୍ରତିରୋଧ କାର୍ଯ୍ୟ ଅବ୍ୟାହତ ରଖିଥିଲେ । ତାହାରି ଫଳରେ ଶିମିଳିପାଳ ଉକ୍ତ ଜୈବମଣ୍ଡଳର ସଂରକ୍ଷଣର ଅନ୍ତର୍ଭୁକ୍ତ ହୋଇପାରିବ ନାହିଁ ବୋଲି ଏକ ଅତି ଦୁର୍ବଳ ଯୁକ୍ତି ଦର୍ଶାଇ ଏକ ଚିଠି ଦେଇଥିଲେ । କେନ୍ଦ୍ର ସରକାରଙ୍କ ଯୁକ୍ତି ଥିଲା ଯେ ଯେହେତୁ ଶିମିଳିପାଳ ଠାରେ ଏକ ବ୍ୟାଘ୍ର ଯୋଜନା କାର୍ଯ୍ୟକାରୀ ହେଉଛି ତେଣୁ ଶିମିଳିପାଳକୁ ଏକ ଜୈବମଣ୍ଡଳ ସଂରକ୍ଷଣର ଅନ୍ତର୍ଭୁକ୍ତ ନ କରାଯାଇପାରେ । ଏହା ଯେପରି ଏକ ଛଳନା ଓ ଷଡ଼ଯନ୍ତ୍ର ଭଳି ଓଡ଼ିଶାର ପରିବେଶ ସମିତି ଅନୁଭବ କରି ଉତ୍ତରରେ କେନ୍ଦ୍ର ସରକାରଙ୍କୁ ଜଣାଇଲା ଯେ ପଶ୍ଚିମ ବଙ୍ଗର ସୁନ୍ଦରବନରେ ଏକ ବ୍ୟାଘ୍ର ଯୋଜନା ଥିଲେ ମଧ୍ୟ ତାହା ଜୈବମଣ୍ଡଳ ଭାବେ ଯେହେତୁ କେନ୍ଦ୍ର ସରକାର ଗ୍ରହଣ କରିଛନ୍ତି ତେଣୁ ଶିମିଳିପାଳ ପକ୍ଷରେ ଏହା ଅନ୍ତରାୟ ହେବ କିପରି ? ଏହି ଉତ୍ତର ପାଇଲାପରେ ଶିମିଳିପାଳକୁ ଏକ ଜୈବମଣ୍ଡଳ ରୂପେ ଗ୍ରହଣ କରିବାର ବହୁତ ଡେରିରେ ହେଲେ ମଧ୍ୟ ନିଷ୍ପତ୍ତି କଲେ ଓ ଗତ ୨୨ ତାରିଖ (ଚଳିତବର୍ଷ) ଜୁନ୍ ମାସରେ ଭାରତ ସରକାର ଏକ ଐତିହାସିକ ନିଷ୍ପତ୍ତି କରି ଶିମିଳିପାଳକୁ ଭାରତର ପଞ୍ଚ ଦଶ ଓ ଓଡ଼ିଶାର ପ୍ରଥମ ଜୈବମଣ୍ଡଳ ରୂପେ ଘୋଷଣା କଲେ । ଏହି ଘୋଷଣାପତ୍ର ସହିତ ଜୈବମଣ୍ଡଳ ଯୋଜନାକୁ କାର୍ଯ୍ୟକାରୀ କରିବାପାଇଁ ଦିଲ୍ଲୀଠରେ ଯୋଉଁ ତିନୋଟି ମୁଖ୍ୟ କମିଟି ଗଠନ କଲେ ସେଥିରେ ମୁଖ୍ୟତଃ କେନ୍ଦ୍ର ଓ ରାଜ୍ୟ ସରକାରଙ୍କ ଉଚ୍ଚପଦସ୍ଥ କର୍ମଚାରୀମାନଙ୍କୁ କେବଳ ରଖା ଯାଇଥିଲା । ଦୁର୍ଭାଗ୍ୟର କଥା ଯେ ଯେଉଁ ଓଡ଼ିଶା ପରିବେଶ ସୁରକ୍ଷା କମିଟି ୧୨ ବର୍ଷ ଧରି ଶିମିଳିପାଳ ପର୍ବତମାଳାର ସଂରକ୍ଷଣ ପାଇଁ ଦୃଢ଼ ଆନ୍ଦୋଳନ କରିଥିଲେ ଓ ରାଜ୍ୟରେ ପରିବେଶ ସଚେତନତା ସମ୍ପର୍କରେ ପ୍ରଥମ କାର୍ଯ୍ୟ ଆରମ୍ଭ କରିଥିଲେ, ସେହି କମିଟିର ଜଣେ ହେଲେ ସଭ୍ୟଙ୍କୁ ପୂର୍ବୋକ୍ତ ତିନୋଟି କମିଟିରେ ନିଆ ନ ଯାଇ ରହସ୍ୟ ଜନକ ଭବେ ପରିବେଶ ସମିତିକୁ ବାଦ୍ ଦେଇଥିଲେ ।

ଠିକ୍ ଏଥି ପୂର୍ବରୁ ପ୍ରାୟ ଏକ ବର୍ଷ ହେଲା ଉକ୍ତ ପର୍ବତମାଳା ମଧ୍ୟରେ ଓ ତହିଁ ପାଖ ଚାରିପଟ ସୀମା ନିକଟରେ ଘର କରି ରହିଥିବା ଆଦିବାସୀ ଓ ଅନ୍ୟାନ୍ୟ ଗରିବ ସାଧାରଣ ଲୋକଙ୍କର ଅଉଥାନ ଓ ଆର୍ଥିକ ଉନ୍ନତି ଦିଗରେ ଏକ ଯୋଜନା ପ୍ରସ୍ତୁତ କରି ତାହା କାର୍ଯ୍ୟକାରୀ କରିବାକୁ ବିଶ୍ୱ ବ୍ୟାଙ୍କ ଜରିଆରେ ଉକ୍ତ U.N.D.P. ତରଫରୁ ଏକ ପ୍ରସ୍ତାବରେ ଜଣାଯାଇଥିଲା । ଏହିଭଳି ଭାରତର ପ୍ରାୟ ନଅଟି ଯୋଜନା କାର୍ଯ୍ୟକାରୀ କରିବାପାଇଁ

ଏବଂ ପ୍ରତ୍ୟେକଟିରେ ମୋଟ ଦଶ କୋଟି ଲେକାଏଁ ଟଙ୍କା ଖର୍ଚ୍ଚ ହେବାର ନିର୍ଦ୍ଦେଶ, ଶିମିଳିପାଳ ବ୍ୟାଘ୍ର ଯୋଜନାର ନିର୍ଦ୍ଦେଶକ (Field Director) ନିକଟକୁ ଆସିଥିଲେ । ଏବେ ଶିମିଳିପାଳର ଉକ୍ତ ବ୍ୟାଘ୍ର ଯୋଜନାର ନିର୍ଦ୍ଦେଶକଙ୍କୁ ପଚାରିବାରେ କହନ୍ତି ଯେ ସେ ବାବଦରେ କୌଣସି ଅର୍ଥ ଆସିନାହିଁ କି ଥଇଥାନ କାର୍ଯ୍ୟ ମଧ୍ୟ ହୋଇନାହିଁ । କିନ୍ତୁ ଏବେ ଅଳ୍ପଦିନ ତଳେ ବିଶ୍ୱବ୍ୟାଙ୍କର ଓ U.N.D.P. ର କେତେଜଣ ପ୍ରତିନିଧି ଶିମିଳିପାଳ ଆସି ବ୍ୟାଘ୍ର ଯୋଜନା ଅଞ୍ଚଳ ମଧ୍ୟରେ ରହିଥିବା କେତୋଟି ଆଦିବାସୀ ଗ୍ରାମ ପରିଦର୍ଶନ କରି ଯାଇଛନ୍ତି । ତେଣୁ ଏହାପରେ ଏବେ ଯେଉଁ ଶିମିଳିପାଳକୁ ଜୈବମଣ୍ଡଳ ରୂପେ ସଂରକ୍ଷଣ କରାଯିବାର କ'ଣ ସତରେ କାର୍ଯ୍ୟକାରୀ ହେବ ବୋଲି ଲୋକଙ୍କର ବିଶ୍ୱାସ ଆସୁନାହିଁ । ଏହିଭଳି ଯୋଜନାର ଆଲୋଚନା ଓ ଯୋଜନା ପ୍ରସ୍ତୁତି ବାବଦରେ ଯଦି ଆହୁରି କିଛି ବର୍ଷ କଟିଯାଏ ସେତେବେଳକୁ ଶିମିଳିପାଳର ବହୁ କ୍ଷତି ସାଧିତ ହୋଇସାରିଥିବ । ଅନ୍ୟ ପକ୍ଷରେ ପ୍ରାୟ ୧୪-୧୫ ବର୍ଷ ପୂର୍ବେ ଉକ୍ତ ଶିମିଳିପାଳ ପର୍ବତମାଳାର ପ୍ରାୟ ୨୨୦୦ ବର୍ଗ କିଲୋମିଟର ଜଙ୍ଗଲ ଅଞ୍ଚଳକୁ ଜଙ୍ଗଲ ଉନ୍ନୟନ ନାଁରେ (s.f.d.c.) ଯେଉଁ ଜଙ୍ଗଲ ନିଗମ କରାଯାଇଥିଲା ତାହା ଏବେ ଭାଙ୍ଗି ଦିଆଯାଇ ଓଡ଼ିଶାରେ କାର୍ଯ୍ୟ କରୁଥିବା ଓଡ଼ିଶା ଜଙ୍ଗଲ ଉନ୍ନୟନ ନିଗମ ସହିତ ମିଶାଇ ଦିଆଗଲାଣି ଏବଂ ଶିମିଳିପାଳ ପୁଣି ପୂର୍ବଭଳି ତିନି ବିଭାଗ ଅନ୍ତର୍ଭୁକ୍ତରେ ରହିଛି । ସେଗୁଡ଼ିକ ହେଲା-ବ୍ୟାଘ୍ର ଯୋଜନା, କରଞ୍ଜିଆ ଓ ବାରିପଦା ଜଙ୍ଗଲ ଉପଖଣ୍ଡ ଏବଂ ଓଡ଼ିଶା ଜଙ୍ଗଲ ଉନ୍ନୟନ ନିଗମ । ଶିମିଳିପାଳ ଅଞ୍ଚଳ ମୁଖ୍ୟତଃ ରାଜ୍ୟଜଙ୍ଗଲ ମିଭାଗ ଅଧୀନର ନିୟନ୍ତ୍ରଣରୁ ଯାଇ ପରିବେଶ ବିଭାନର ନିୟନ୍ତ୍ରଣଭୁକ୍ତର ଆଶଙ୍କା କରି ସମସ୍ତ ଜଙ୍ଗଲ ବିଭାଗର କର୍ମଚାରୀମାନଙ୍କ ସୁରକ୍ଷା ଦିଗରେ ଘୋର ଅବହେଳା ଦେଖାଯାଇଛି । ଏହାର ପ୍ରତିକ୍ରିୟାରେ ଶିମିଳିପାଳର ଅବକ୍ଷୟ ଯେ ଅଧିକ ଦ୍ରୁତଗତିରେ ଚାଲିବ ଏଥିରେ କୌଣସି ସନ୍ଦେହ ନାହିଁ । ଯାହା କଥାରେ କହନ୍ତି- ବର୍ତ୍ତମାନ ଶିମିଳିପାଳର ରକ୍ଷଣାବେକ୍ଷଣ ଦିଗରେ କେହି ମା-ବାପ ନାହିଁ କହିଲେ ଚଳେ ।

ପଶ୍ଚାତ୍ୟଦେଶ ଯେଉଁମାନେ ବହୁ ଶିଳ୍ପ ପ୍ରତିଷ୍ଠାକରି ଅଧିକ ଉନ୍ନତି ଲାଭ କରିଛନ୍ତି, ତାହାଫଳରେ ପୃଥିବୀର ଅନ୍ୟ ଅନୁନ୍ନତ ଗରିବ ଦେଶଗୁଡ଼ିକ ଶୋଷିତ ହେଉଛନ୍ତି । ସେମାନେ ସବୁଠାରୁ ଦାରିଦ୍ର୍ୟର କଷାଘାତରେ ଅଧିକ ବିପନ୍ନ ହୋଇ ଉଠୁଛନ୍ତି । ବିଜ୍ଞାନର ପ୍ରଭୂତ ଉନ୍ନତି ସାଧନ କରି, ଗର୍ବ ଅହଂକାର ବଳରେ ଧନୀଦେଶମାନେ ନାନାପ୍ରକାର ମାରଣାସ୍ତ୍ର ତିଆରି ଓ ତହିଁର ପ୍ରୟୋଗ ତଥା ପରୀକ୍ଷା ଫଳରେ ସେ ଅଞ୍ଚଳର ବାୟୁମଣ୍ଡଳକୁ ଏତେ ବେଶୀ ପ୍ରଦୂଷିତ କରିଛନ୍ତି ଯେ ଯାହାଫଳରେ ପୃଥିବୀପୃଷ୍ଠର ବହୁ ଉପରେ ସମଗ୍ର ପୃଥିବୀକୁ ଘେରି ରହିଥିବା ଓଜନ ଗ୍ୟାସ୍ ଅତି ଦୁର୍ବଳ ହୋଇଯାଇଥିବାର ପରିବେଶବିଦ୍‌ମାନେ ଘୋଷଣା କଲେଣି । ଉକ୍ତ ଗ୍ୟାସ ସମଗ୍ର ବାୟୁମଣ୍ଡଳ ଉପରେ ଘେର ବାନ୍ଧି ରହିଥିବା ଯୋଗୁଁ ସୂର୍ଯ୍ୟଙ୍କର ପ୍ରଖର ରଶ୍ମୀ (Ultraviolate rays) ପୃଥିବୀ ପୃଷ୍ଠରେ ପଡୁଥିବାର ଅନୁଭବ କରାଗଲାଣି । ଏଥିପାଇଁ ବହୁ ଅଜଣା ରୋଗ ମଧ୍ୟ ଲୋକଙ୍କୁ ଆକ୍ରାନ୍ତ କରୁଥିବାର ଦେଖାଯାଉଛି । ଯେଉଁ ଜଙ୍ଗଲ ବୃକ୍ଷଲତା ପୃଥିବୀ ପୃଷ୍ଠରେ ରହି ବାୟୁମଣ୍ଡଳକୁ ଶୁଦ୍ଧ କରୁଥିଲେ ଏବଂ ଉକ୍ତ ଓଜନ ଗ୍ୟାସକୁ ଗ୍ରୀନ୍ ହାଉସ ଭଳି ରକ୍ଷା କରୁଥିଲେ ସେହି ଓଜନ ଗ୍ୟାସ୍ ବା green house ଯେଉଁ ଅଞ୍ଚଳରେ ଦୁର୍ବଳ ହୋଇଯାଉଛି ସେହି ଅଞ୍ଚଳର ଲୋକେ ବିପଦରୁ ରକ୍ଷାପାଇବା ପାଇଁ ସ୍ୱତନ୍ତ୍ର ତିଆରି କେମିକାଲ ପୋଷାକ ଓ କଳା ଚଷମା ସୁରକ୍ଷା ପାଇଁ ପିନ୍ଧିବାର ଦେଖାଯାଉଛି । ଏହା କେବଳ ଧନୀ ଦେଶମାନଙ୍କ ମଧ୍ୟରେ ସମ୍ଭବପର ହୋଇଛି । ଆମ ପରି ଗରିବ ଦେଶର ଲେକଙ୍କ ପକ୍ଷରେ ତାହା କେବେ ସମ୍ଭବପର ନୁହେଁ । ଏହି ଭବିଷ୍ୟତର ଆସନ୍ନ ବିପଦରୁ ଭାରତବର୍ଷକୁ ରାକ୍ଷାକରିବାରେ କେବଳ ହିମାଳୟ ପର୍ବତ ଓଡ଼ିଶାର ଶିମିଳିପାଳ ପର୍ବତମାଳା ଏବଂ ଭାରତର ପୂର୍ବାଞ୍ଚଳରେ ଥିବା ଜଙ୍ଗଲ ଅଞ୍ଚଳର ବୃକ୍ଷଲତା ସମୂହ ହିଁ ସହାୟକ ହୋଇପାରିବ । ଶିମିଳିପାଳ ଓଡ଼ିଶାର ହିମାଳୟ ଭାବେ ଯଥାର୍ଥରେ ସୁରକ୍ଷା କରିଆସିଛି । ବର୍ଷା ହେଉଛି ଓ ମରୁଭୂମିରୁ ରକ୍ଷା ପାଉଛୁ ।

# ଧରିତ୍ରୀର ଆହ୍ୱାନ

ସମଗ୍ର ବିଶ୍ୱକୁ ପରିବେଶ ପ୍ରଦୂଷଣ ଫଳରେ ଯେଉଁ ଭୟାବହ ଧ୍ୱଂସଲୀଳାର ଆଶଙ୍କା ସମଗ୍ର ମାନବ ଜାତିକୁ ଆତଙ୍କିତ କରିଛି, ତହିଁର ପ୍ରତିକାର ତଥା ସୁରକ୍ଷା ପାଇଁ ଦକ୍ଷିଣ ଆମେରିକା ବ୍ରାଜିଲ ଦେଶରେ ରିଓଡ଼ି-ଜେନେରିଓ ସହରରେ ଯେଉଁ ଧରିତ୍ରୀ ସମ୍ମିଳନୀ ଆୟୋଜିତ ହୋଇଥିଲା, ତାହା ବିଶ୍ୱ ଇତିହାସରେ ସବୁ ଦିନ ପାଇଁ ଏକ ସ୍ମରଣୀୟ ପଦକ୍ଷେପ ରୂପେ ଚିରଦିନ ମାନବ ଜାତିକୁ ପ୍ରେରଣା ଯୋଗାଉଥିବ । ଏହା କହିବା ବାହୁଲ୍ୟ ମାତ୍ର । ଏହି ସମ୍ମିଳନୀ ଗତ ଜୁନ ୩ ତାରିଖରୁ ୧୪ ତାରିଖ ପର୍ଯ୍ୟନ୍ତ ପ୍ରାୟ ୧୧ ଦିନ ଅନୁଷ୍ଠିତ ହୋଇଥିଲା । ଏହି ସମ୍ମିଳନୀରେ ବିଶ୍ୱର ୧୬୫ ଦେଶର ପରିବେଶ ପ୍ରେମୀ, ବିଶେଷଜ୍ଞ, ବିଭିନ୍ନ ବେସରକାରୀ ଅନୁଷ୍ଠାନ ତରଫରୁ ପ୍ରାୟ ଚାଳିଶ-ପଚାଶ (୪୦-୫୦) ହଜାର ପ୍ରତିନିଧି ଯୋଗ ଦେଇଥିଲେ ଏବଂ ସେଥିମଧ୍ୟରୁ ପ୍ରାୟ ୪୬ଟି ଦେଶର ରାଷ୍ଟ୍ରମୁଖ୍ୟ ଓ ଅନ୍ୟ ବହୁ ଦେଶର ଉଚ୍ଚପଦସ୍ଥ ଲୋକେ ଏହି ସମ୍ମିଳନୀରେ ଯୋଗ ଦେଇ ତହିଁର ଗୁରୁତ୍ୱ ଅଧିକ ମାତ୍ରାରେ ବଢ଼ାଇ ଦେଇଥିଲେ । ବାୟୁମଣ୍ଡଳର ଅଧିକ ପ୍ରଦୂଷଣ ଫଳରେ ଧରିତ୍ରୀର ଭୂପୃଷ୍ଠର ଉପର ଭାଗ ବାୟୁ ମଣ୍ଡଳରେ ଯେଉଁ ozone layer ଧରିତ୍ରୀକୁ ସୂର୍ଯ୍ୟର ଭୟାନକ ରଶ୍ମିରୁ ରକ୍ଷା କରି ଆସିଛି ତାହା ବିଶେଷ ଭାବରେ କ୍ଷତିଗ୍ରସ୍ତ ହୋଇଥିବା ଯୋଗୁଁ ଆଜିର ଧ୍ୱଂସଲୀଳାର ଆଶଙ୍କା ସୃଷ୍ଟି କରିଛି ।ତହିଁର ପ୍ରତିହତ ପାଇଁ ଏହି ସମ୍ମିଳନୀରେ ବିଶ୍ୱର ନେତୃବର୍ଗ ଯେଉଁ ଦୁଇଟି ମୁଖ୍ୟ ଆଲୋଚ୍ୟ ବିଷୟରେ ନିଷ୍ପତ୍ତି ଗ୍ରହଣ କରିଛନ୍ତି ସେଗୁଡ଼ିକ ହେଉଛି ଏଜେଣ୍ଡା-୨୧ ନମ୍ବର ଓ ଋତୁ ପରିବର୍ତ୍ତନ ବା ଜଳବାୟୁ ପରିବର୍ତ୍ତନ (Climate change)

ଉକ୍ତ ଏଜେଣ୍ଡା ୨୧ରେ ଧରିତ୍ରୀର ସମସ୍ତ ବନସମ୍ପଦ ଓ ସେଥିରେ ବାସ କରୁଥିବା ସମସ୍ତ ଜୀବଜନ୍ତୁ ଓ ପ୍ରବାହିତ ହେଉଥିବା ନଦୀନାଳ ଏବଂ ହ୍ରଦ ଓ ସମୁଦ୍ର ଯେପରି ସମ୍ପୂର୍ଣ୍ଣ ଭାବରେ ସୁରକ୍ଷିତ ହେବ ଅର୍ଥାତ୍ ପରିବେଶ ବିଶେଷଜ୍ଞଙ୍କ ଭାଷାରେ ଏଇ ବନ-ସମ୍ପଦ ଯାହାକୁ green house ବୋଲି କୁହାଯାଏ, ତାହା ଯେତେ ଅଧିକ ଭାବରେ ସୁରକ୍ଷିତ ହେବ, ସେତେ ପରିବେଶ ଶୁଦ୍ଧ ଓ ନିର୍ମଳ ହୋଇ ସମସ୍ତ ଧ୍ୱଂସଲୀଳାରୁ ରକ୍ଷା କରିପାରିବ ।' ଏଥିପାଇଁ ବିଶ୍ୱରେ ଏକ ସ୍ୱତନ୍ତ୍ର ପାଣ୍ଠି ଗଠନ କରାଯାଇ ବିକାଶଶୀଳ ଦେଶ (ଗରିବଦେଶ) ସେଥିରୁ ଜଙ୍ଗଲ ସୁରକ୍ଷା ଆର୍ଥିକ ସାହାଯ୍ୟ ଦେବା ସଙ୍ଗେ ସଙ୍ଗେ ଏ ଦିଗରେ ଯେଉଁ ବୈଜ୍ଞାନିକ ଓ କାରିଗରୀ ଜ୍ଞାନର ଯନ୍ତ୍ରପାତି ମଧ୍ୟ ଉକ୍ତ ବିକାଶଶୀଳ ଦେଶକୁ ସାହାଯ୍ୟ ଆକାରରେ ଦିଆଯିବା କଥା ଉଲ୍ଲେଖ କରାଯାଇଛି । ଏହି ବିଷୟରେ ଗବେଷଣା କ୍ଷେତ୍ରରେ ନୂତନ ଉଦ୍‌ଭାବନ ପାଇଁ ମଧ୍ୟ ବିଶ୍ୱର ଧନୀ-ଦରିଦ୍ର ଦେଶ ତଥା ଜନସାଧାରଣଙ୍କ ସମ୍ମିଳିତ ଉଦ୍ୟମ ଫଳରେ ଉକ୍ତ ୨୧ଦଫା ଏଜେଣ୍ଡାର ଉପରୋକ୍ତ କାର୍ଯ୍ୟକ୍ରମର ସଫଳ ରୂପାୟନ ପାଇଁ ଏହା ହେଉଛି ମାନବଜାତିର ଶେଷ ଚେଷ୍ଟା କହିଲେ ଅତ୍ୟୁକ୍ତି ହେବ ନାହିଁ ।

ଏହି ପ୍ରସ୍ତାବରେ ସମ୍ମିଳନୀରେ ଯୋଗ ଦେଇଥିବା ଭାରତ, ଜାପାନ, ଚାଇନା, ବ୍ରିଟେନ, ଜର୍ମାନ ଓ ଫ୍ରାନ୍ସ ଭଳିଆ ବୃହତ ଦେଶଗୁଡ଼ିକର ଶିଖର ନେତୃବର୍ଗ ଏକମତ ହୋଇ ସେଥିରେ ସ୍ୱାକ୍ଷର କରିଥିଲେ ହେଁ ବିଶ୍ୱର ସବୁଠାରୁ ଧନୀ ଓ ଶକ୍ତିଶାଳୀ ବୋଲାଉଥିବା ଆମେରିକା ଦେଶର ସଭାପତି ତହିଁରେ ସ୍ୱାକ୍ଷର କରିବାକୁ ରାଜି ନ ହେବା ସବୁଠାରୁ ଦୁଃଖ ଓ କ୍ଷୋଭର ବିଷୟ । କାରଣ ଆମେରିକା ମାନବଜାତିର ଏ ଦୁର୍ଗତି ବେଳରେ ମଧ୍ୟ ନିଜର ବ୍ୟବସାୟିକ ଲାଭ-ମନୋବୃତ୍ତି ପାଇଁ ଏଥିରେ ଯେଉଁ କେତୋଟି ସର୍ତ୍ତ ଯୋଡ଼ିବାକୁ ଷଡ଼ଯନ୍ତ୍ର କରିଥିଲା ସେଥିରେ କୌଣସି ଦେଶ ରାଜି ନ ହୋଇଥିବା ଆନନ୍ଦର ବିଷୟ । ସ୍ୱାର୍ଥପରତା  ପାଇଁ ଏଇ ବିଶ୍ୱ ଦରବାରରେ ଏକଘରକିଆ ହୋଇଯିବାକୁ

ପଡ଼ିଥିଲା । ଏହି ସୁଯୋଗରେ ପୃଥିବୀର ଅନ୍ୟ ଦେଶମାନଙ୍କ ଉପରେ ନିଜର ଅଧିକ ନିୟନ୍ତ୍ରଣ ଜାରି କରିବା ଉଦ୍ଦେଶ୍ୟ ରଖି ବିଶ୍ୱର ସମସ୍ତ ଜଙ୍ଗଲ ସମ୍ପଦ ବିଶ୍ୱର ବୋଲି ଆଖ୍ୟା ଦେଇ UNOର ନିୟନ୍ତ୍ରଣ କରିବାକୁ ଚେଷ୍ଟା କରିଥିଲା । UNOର ନିୟନ୍ତ୍ରଣ ବୋଇଲେ ସମ୍ପୂର୍ଣ୍ଣ ରୂପେ ଆମେରିକାର ନିୟନ୍ତ୍ରଣ ବୋଲି ଉପଲବ୍ଧି କରି ଯୋଗ ଦେଇଥିବା ସମସ୍ତ ରାଷ୍ଟ୍ର ମୁଖ୍ୟ ଏହି କାର୍ଯ୍ୟକ୍ରମ ଦ୍ୱାରା ସେମାନଙ୍କ ଘରୋଇ ସମସ୍ୟା ଉପରେ ଏହାଦ୍ୱାରା ହସ୍ତକ୍ଷେପ କରିବାର ଚେଷ୍ଟା ଜାଣି ସମସ୍ତେ ତହିଁର ବିରୋଧ କଲେ । ଯଦିଓ ଆମେରିକା ଏଥି ପୂର୍ବରୁ ଏହି ବନ୍ୟସମ୍ପଦ ସୁରକ୍ଷା ଓ ଅଭିବୃଦ୍ଧି ପାଇଁ ନିଜ ଦେଶେର ଆୟରୁ ୧୧୫ ନିୟୁତ ଡ଼ଲାର ଆର୍ଥିକ ସାହାଯ୍ୟ ଦେବାର ଘୋଷଣା କରିଥିଲା ତଥାପି ତା'ର ଉକ୍ତ ପ୍ରସ୍ତାବ ସମସ୍ତେ ପରିତ୍ୟାଗ କରିଥିଲେ । ତେଣୁ ଆମେରିକା ୨୧ ନମ୍ବର ଏଜେଣ୍ଡାରେ ପ୍ରସ୍ତାବିତ ନିଷ୍ପତ୍ତିରେ ସ୍ୱାକ୍ଷର କରି ନ ଥିଲେ ହେଁ ଏ ଦିଗରେ ବିଭିନ୍ନ କାର୍ଯ୍ୟକ୍ରମ ଗ୍ରହଣ କରିବାର ପ୍ରତିଶ୍ରୁତି ଦେଇଥିଲା ।

ଏହି ସମ୍ମିଳନୀର ଦ୍ୱିତୀୟ ଗୁରୁତ୍ୱପୂର୍ଣ୍ଣ ବିଷୟ ହେଉଛି ଜଳବାୟୁ ପରିବର୍ତ୍ତନ (climate change)ର ଆଲୋଚନା ଓ ତହିର ଆବଶ୍ୟକୀୟ ନିୟନ୍ତ୍ରଣ । ବିଶ୍ୱର ସର୍ବଶ୍ରେଷ୍ଠ ପରିବେଶ ବିଜ୍ଞାନୀ ଆମେରିକୀୟ ଡ଼ଃ ବ୍ରାଉନ ଯିଏ କି UNOର ଏକ ଶାଖା ଅନୁଷ୍ଠାନ World Warର ସୃଷ୍ଟି କର୍ତ୍ତା ଓ ଭାରତର ହୋଲଡାର ବିଶ୍ୱବିଦ୍ୟାଳୟର (Indore) ଗବେଷକ ଡ଼ଃ ଶ୍ରୀବାସ୍ତବଙ୍କ ମତରେ ଆସନ୍ତା ୨୧ଶ ଶତାବ୍ଦୀର ମଧ୍ୟଭାଗ ବେଳକୁ ଏକ ବିଶ୍ୱବ୍ୟାପୀ ଜଳବାୟୁର ଅଦ୍ଭୁତ ପରିବର୍ତ୍ତନ ଘଟି ଭୂତଳର ବହୁ ଅଞ୍ଚଳ ତଥା ଜନବସତି ଜଳମଗ୍ନ ଘଟିବାର ଓ ପ୍ରବଳ ଭୂମିକମ୍ପ ଘଟି ବିଶ୍ୱର ବହୁ କ୍ଷତି ସାଧନ ହେବାର ବହୁ ବୈଜ୍ଞାନିକମାନଙ୍କ ଚେତାବନୀରୁ ଜଣାଯାଇଛି । ଏହି ଜଳବାୟୁ ପରିବର୍ତ୍ତନର କାରଣ ପ୍ରକାଶ ପାଇଛି ଯେ ସୂର୍ଯ୍ୟଙ୍କ ପ୍ରଖର ରଶ୍ମି ଫଳରେ ବାୟୁମଣ୍ଡଳ ଅଧିକ ଗରମ ଓ ପ୍ରଦୂଷଣ ଘଟି ଏହି ପରିବର୍ତ୍ତନ ହେବାର ସମ୍ଭାବନା ଅଛି । ଏହି ପ୍ରବଳ ଉତ୍ତାପ ବୃଦ୍ଧି ଫଳରେ ଉତ୍ତର ଓ ଦକ୍ଷିଣ ମେରୁରେ ଥିବା ଓ ଅତି ଉଚ୍ଚ ପର୍ବତମାଳାର ଶିଖର ଦେଶରେ ଥିବା ସମସ୍ତ ବରଫ ତରଳି ଯିବା ଫଳରେ ସମୁଦ୍ରର ଜଳପତ୍ତନର ଉଚ୍ଚତା ବୃଦ୍ଧି ପାଇବା ଯୋଗୁଁ ସମୁଦ୍ର ଜଳପତ୍ତନଠାରୁ ପ୍ରାୟ ୨ (ଦୁଇ) ମିଟର ଉଚ୍ଚତା ମଧ୍ୟରେ ଥିବା ଦେଶ ଗୁଡ଼ିକ ଏହା ଯୋଗୁଁ ଜଳମଗ୍ନ ହେବାର ଯେଉଁ ଆଶଙ୍କା ପ୍ରକାଶ ପାଇଛି, ତାହା ଏବେ ପ୍ରଶାନ୍ତ ମହାସାଗରରେ ଥିବା ଟଭାଲୁ ନାମକ ୩୦,୦୦୦ ଲୋକସଂଖ୍ୟା ଓ ୨୪ ବର୍ଗ କିଲୋମିଟର ଆୟତନ ଅଞ୍ଚଳ ଏକ ଛୋଟ ଦ୍ୱୀପରେ ଏହା ଘଟିବାର ଆରମ୍ଭ ହୋଲାଣି । ଏହି କ୍ଷୁଦ୍ର ଦ୍ୱୀପରେ ବାସ କରୁଥିବା ୩୦,୦୦୦ ଲୋକଙ୍କ ମଧ୍ୟରୁ ୧୦,୦୦୦ ଲୋକ ବସବାସ କରୁଥିବା ଅଞ୍ଚଳ ବୁଡ଼ି ଗଲାଣି ବୋଲି ଉକ୍ତ ଟାଭାଲୁ ଦ୍ୱୀପର ରାଷ୍ଟ୍ରପତି ସମ୍ମିଳନୀରେ ପ୍ରକାଶ କରିଛନ୍ତି । ପୃଥିବୀ ବାୟୁମଣ୍ଡଳ ଏବଂ ବିଶେଷ କରି ପ୍ରଶାନ୍ତ ମହାସାଗର ଅଞ୍ଚଳ ଉତ୍ତାପ ଅତିମାତ୍ରାରେ ବୃଦ୍ଧିର କାରଣ ଜଣାପଡ଼ିଛି ଯେ ବିଶ୍ୱରେ ଥିବା ୬୦୦ ଆଗ୍ନେୟଗିରି ମଧ୍ୟରେ ଅନେକ ଗୁଡ଼ିକରୁ ବନ୍ଦ ଥିବା ଅଗ୍ନିଉଦ୍‌ଗୀରଣ ଏବେ ପୁଣି ନୂଆକରି ଦେଖା ଗଲାଣି । କେବଳ ଏହି ଉଦ୍‌ଗୀରଣ ଫଳରେ ୨ ନିୟୁତ ଟନ୍ ଗରମ ବାଷ୍ପ ଆକାଶମଣ୍ଡଳରେ ମିଶିଥିବା ବୈଜ୍ଞାନିକମାନେ ପ୍ରକାଶ କରିଛନ୍ତି ଓ ଏତଦ୍ ବ୍ୟତୀତ ୧ ନିୟୁତ ଟନ୍ ବାୟୁମଣ୍ଡଳରେ ମିଶି ରହିଥିବା ୩୫୦ ଟନ୍ ପ୍ରଦୂଷଣ ବାଷ୍ପ ଯଦି ୬୦୦ ଟନ୍‌ରେ ପରିଣତ ହେବ, ତେବେ ତାହା ଫଳରେ ଏହି ଧ୍ୱଂସ କାରୀ ଭୟାବହ ଜଳବାୟୁ ଏହି ଭଳି ପରିବର୍ତ୍ତନ ହେବାର ପ୍ରକାଶ ପାଇଛି । ଏଥିପାଇଁ ଏହି ଦ୍ୱିତୀୟ ବିଷୟର ଆଲୋଚନାରେ ଜଳବାୟୁର ପରିବର୍ତ୍ତନପାଇଁ ଯେଉଁ କାର୍ଯ୍ୟକ୍ରମ ଧରିତ୍ରୀ ସମ୍ମିଳନୀରେ ଗ୍ରହଣ କରାଯାଇଛି ସେଥିରେ ଆମେରିକା ସମେତ ସମସ୍ତ ଉପସ୍ଥିତ ରାଷ୍ଟ୍ରମୁଖ୍ୟମାନେ ସମ୍ମିଳିତ ଭାବରେ ସେମାନଙ୍କ ରାଷ୍ଟ୍ରର ନୂତନ ଶିଳ୍ପାୟନ ଓ ଯାନବାହନପାଇଁ ଯେଉଁ ପ୍ରଦୂଷଣ ଘଟୁଛି, ତହିଁରେ

ପ୍ରତିରୋଧ କରିବାର ସମ୍ମତି ପ୍ରକାଶ କରି ସମସ୍ତେ ଏଥିରେ ସ୍ୱାକ୍ଷର କରିଛନ୍ତି । ଏହା ଫଳରେ ଧରିତ୍ରୀର ଏହି ଐତିହାସିକ ପଦକ୍ଷେପ ରୂପେ ମାନବ ଇତିହାସର ଅଗ୍ରଗତି ଓ ସୁରକ୍ଷା ପଥରେ ଏହା ଏକ ମାଇଲ ଷ୍ଟୋନ ହିସାବରେ ପ୍ରେରଣା ଯୋଗାଇବ । ସବୁଦିନପାଇଁ ଏହି ପଦକ୍ଷେପ ଫଳରେ ବିଶ୍ୱର ପରିବେଶ ଓ ବାୟୁମଣ୍ଡଳକୁ ୧୯୯୦ ମସିହା ଅବସ୍ଥାକୁ ଫେରି ଯିବାର ଯୋଜନା ରଖାଯାଇଛି ।

ଏହି ଧରିତ୍ରୀ ଶିଖର ସମ୍ମିଳନୀରେ ଭାରତର ପ୍ରଧାନମନ୍ତ୍ରୀ ଶ୍ରୀଯୁକ୍ତ ପି.ଭି.ନରସିଂହ ରାଓ ଯୋଗଦେଇ ଯେଉଁ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥିଲେ ତାହା ସମସ୍ତଙ୍କ ଦୃଷ୍ଟି ଆକର୍ଷଣ କରିଥିଲା । ପରିବେଶ ନିୟନ୍ତ୍ରଣର ବିଶ୍ୱବ୍ୟାପୀ କାର୍ଯ୍ୟପାଇଁ ସମସ୍ତଙ୍କ ମିଳିତ ଉଦ୍ୟମହିଁ ସର୍ବଶ୍ରେଷ୍ଠ ଶକ୍ତି ବୋଲି ବର୍ଣ୍ଣନା କରି ଏଥିରେ ଅର୍ଥାଭାବ କେବେ ଅନ୍ତରାୟ ହୋଇନପାରେ ବୋଲି ଦୃଢ଼ ଭାବେ ଘୋଷଣା କରିଥିଲେ । ସେ ଏହି ଧରିତ୍ରୀ ସମ୍ମିଳନୀରେ ପୃଥିବୀର ସମସ୍ତ ଦେଶର ନେତୃବର୍ଗ ଆମେରିକା ସମେତ ଏକାଠି ଗୋଟିଏ ଛାତତଳେ ବସି ସମଭାବାପନ୍ନ ଭାବେ ଆନ୍ତରିକତାର ସହିତ ଯେଉଁ ଧରିତ୍ରୀ ମା' କୋଳରେ ପରିବେଶ ଭିତରେ ଆମେ ଜନ୍ମ ଗ୍ରହଣ କରିଛେ ଆମ ନିଜ ତଥା ଧରିତ୍ରୀର ଅନ୍ୟ ସମସ୍ତ ଜୀବଜଗତକୁ ଆସନ୍ନ ଧ୍ୱଂସଲୀଳାରୁ ରକ୍ଷା କରିବା ପାଇଁ ସମସ୍ତ ପରିବେଷ୍ଟନିକୁ ସୁରକ୍ଷିତ ରଖିବାକୁ ଯେଉଁ ନିଷ୍ପତ୍ତି ଗ୍ରହଣ କରାଯାଇଛି ତାହାହିଁ ଏହି ଧରିତ୍ରୀ ସମ୍ମିଳନୀର ସଫଳ ରୂପାୟନ ଭାବେ ମାନବ ଇତିହାସରେ ଚିନ୍ତନର ଅଧ୍ୟାୟ ରୂପେ ଯାଚୁଲ୍ୟମାନ ହୋଇ ଭବିଷ୍ୟତ ଦିଗଦର୍ଶନ ଭାବେ ଅନୁପ୍ରାଣିତ କରିବ । ଭାରତ ଏ ଦିଗରେ ସବିଶେଷ କାର୍ଯ୍ୟକ୍ରମ ଗ୍ରହଣ କରିଛି, ଏହା ସେଠାରେ ଉପସ୍ଥିତ ଜନସମାବେଶ ପ୍ରତିନିଧିମାନଙ୍କ ମନରେ ପ୍ରତୀୟମାନ ହେବା ଅତ୍ୟନ୍ତ ଆନନ୍ଦ ଓ ଗର୍ବ ହେବାର ବିଷୟ ।

ତେଣୁ ମଣିଷ ଜାତି ପୁଣି ଆଉ ଥରେ ସେହି ଭାରତର ବୈଦିକ ଯୁଗର ଋଷି ମୁନି ଓ ମଣିଷ ସମାଜ ଯେଉଁଭଳି ପରିବେଶ ସୁରକ୍ଷାକୁ ତା'ର ଜାତୀୟ ସଂସ୍କୃତି ଓ ପରମ୍ପରା ରୂପେ ଗ୍ରହଣ କରିଥିଲା, ଆମକୁ ପୁଣି ତଥା ବିଶ୍ୱକୁ ଆଉ ଥରେ ସେହି ଅବସ୍ଥାକୁ ଫେରିଯିବାକୁ ହେବ । ସେତେବେଳର ଭାରତର ଋଷିମୁନିମାନେ ଧରିତ୍ରୀକୁ ପ୍ରାର୍ଥନା କରୁଥିଲେ । ପୃଥିବୀମାତା ଆମେ ତୁମଠାରୁ ଯେତିକି ଆଜି ନେଲୁ, ସେତିକି ସେପରି ପୂରଣ ହେଉ, ଆପଣଙ୍କ ଦେହକୁ ଖନନ କରିବା ଯୋଗୁଁ ଯେପରି ଆପଣଙ୍କ ଜୀବନୀ ଶକ୍ତିକୁ ଆଘାତ ନ କରୁ ।

# ଶିମିଳିପାଳ ପର୍ବତମାଳାର ବିଶ୍ୱ ପରିବେଶକୁ ଅବଦାନ

ପାରିପାର୍ଶ୍ୱିକ ଅବସ୍ଥା ତଥା ପରିବେଶର ସଂରକ୍ଷଣ ଆଜି ବିଶ୍ୱର ଯେକୌଣସି ସମସ୍ୟାଠାରୁ ଅଧିକ ଗୁରୁତ୍ୱପୂର୍ଣ୍ଣ ତଥା ଗୁରୁତର ଏଥିରେ କୌଣସି ସନ୍ଦେହ ନାହିଁ । ପରିବେଶର ଦୂଷିତୀକରଣ ଯେପରି ଦ୍ରୁତ ଗତିରେ ବଢ଼ି ଚାଲିଛି, ତାହା ସମସ୍ତ ମାନବଜାତି ତଥା ସମଗ୍ର ଜୀବଜଗତ ଏବଂ ଏପରିକି ସମସ୍ତ ସୃଷ୍ଟିକୁ ଏକ ପ୍ରଳୟଙ୍କରୀ ଧ୍ୱଂସମୁଖକୁ କ୍ରମେ ଟାଣି ନେଇ ଯାଉଛି । ଏହା ସମସ୍ତ ପରିବେଶ ବିଜ୍ଞାନୀଙ୍କର ନୁହେଁ ବରଂ ସମସ୍ତ ମାନବ ଜାତିକୁ ଏକ ଚେତାବନୀ ତଥା ସାବଧାନ ବାଣୀ । ତଥାକଥିତ ଶିକ୍ଷା ଓ ବିଜ୍ଞାନ ବଳରେ ବଳୀୟାନ ମନେ କରି ଏବଂ ଅହଂକାର ଓ ଗର୍ବରେ ଉନ୍ମତ୍ତ ହୋଇ ନିଜର ଅଧିକ ସୁଖ ସ୍ୱାଚ୍ଛନ୍ଦ୍ୟ ସାଧନ ପାଇଁ ମଣିଷ ଯେଉଁ ନୂଆ ନୂଆ ଉଦ୍ଭାବନ କଲା ଏବଂ ବିଶେଷ କରି ଅତି ଶକ୍ତିଶାଳୀ ମାରଣାସ୍ତ୍ର ମାନଙ୍କର ପରୀକ୍ଷା ଓ ବ୍ୟବହାର କରି ଈଶ୍ୱର ପ୍ରଦତ୍ତ ପ୍ରକୃତିର ଯେପରି ଚରମ ଅପବ୍ୟବହାର (Molestation)କଲା, ତାହା ଫଳରେ ବିଶ୍ୱର ସର୍ବବ୍ୟାପୀ ବାୟୁମଣ୍ଡଳ ତଥା ପାରିପାର୍ଶ୍ୱିକ ଅବସ୍ଥାର ଗୁରୁତର ପ୍ରଦୂଷଣ ଘଟିଲା ତାହା ସମସ୍ତ ସୃଷ୍ଟିକୁ ଏକ ପ୍ରଳୟଙ୍କରୀ ଧ୍ୱଂସର ଆହ୍ୱାନ କହିଲେ ଅତ୍ୟୁକ୍ତି ହେବ ନାହିଁ । ମଣିଷର ବହୁଦିନ ଧରି ଚାଲି ଆସିଥିବା ଅପକର୍ମ ହିଁ ଏହି ଚରମ ଅବସ୍ଥା ଭିଆଣ ପାଇଁ ଯେ ସଂପୂର୍ଣ୍ଣ ଦାୟୀ ଏହା କହିବା ବାହୁଲ୍ୟମାତ୍ର । ବିଶ୍ୱର ସର୍ବଶ୍ରେଷ୍ଠ ଶାନ୍ତି ଓ ସୁରକ୍ଷାର ସଂସ୍ଥା ଜାତିସଂଘର ପରିବେଶ ସତର୍କବାଣୀ ସହଯୋଗୀ ସଂସ୍ଥା (World watch)ର ପ୍ରତିଷ୍ଠାତା ତଥା ବିଶ୍ୱ ବିଖ୍ୟାତ ସର୍ବଶ୍ରେଷ୍ଠ ପରିବେଶ ବିଜ୍ଞାନୀ ଡ଼ଃ ଲାଷ୍ଟର ବ୍ରାଉନ୍ ଆଜିକୁ ପ୍ରାୟ ୪ ବର୍ଷ ପୂର୍ବେ ସମଗ୍ର ମାନବ ଜାତିକୁ ସାବଧାନବାଣୀ ଶୁଣାଇଥିଲେ ଯେ, ''ବିଶ୍ୱର ସମସ୍ତ ରାଷ୍ଟ୍ର ତଥା ସରକାର ଏବଂ ସମସ୍ତ ମାନବଜାତି ମିଳିତ ଭାବେ ପରିବେଶ ନିରାକରଣ ବର୍ତ୍ତମାନ ଅର୍ଥାତ ୧୯୮୯ରୁ ଡେରି ହେଲେ ମଧ ଆଉ ଅବହେଳା ନ କରି ପରିବେଶ ସୁରକ୍ଷା କାର୍ଯ୍ୟ ତୁରନ୍ତ ଆରମ୍ଭ କରିବା ଉଚିତ୍ ।'' ସେ ପୁଣି କହିଛନ୍ତି, ''ଏହି ଧ୍ୱଂସଲୀଳାରୁ ରକ୍ଷା ପାଇବାପାଇଁ ଆମ ହାତରେ ଏତେ କମ୍ ସମୟ ଅଛି ଯେ ସମସ୍ତ ଚେଷ୍ଟା ସତ୍ତ୍ୱେ ନିଶ୍ଚିତ ଭାବେ ରକ୍ଷା ପାଇବାର ଗ୍ୟାରେଣ୍ଟି କେହି ଦେଇ ପାରିବ ନାହିଁ ।'' ତେଣୁ ଆମେ ପ୍ରକୃତରେ କିଭଳି ଅବଶ୍ୟମ୍ଭାବୀ ବିପଦ ଭିତରକୁ ଯାଉଛୁ ଉକ୍ତ ପରିବେଶ ବିଜ୍ଞାନୀଙ୍କର ଉକ୍ତିରୁ ସ୍ପଷ୍ଟ ଅନୁମେୟ ।

ଅନ୍ୟ ଜଣେ ସେହିପରି ଏକ ବିଶ୍ୱ ବିଖ୍ୟାତ ପରିବେଶ ବିଜ୍ଞନୀ ଆମେରିକାର ମେରିଲ୍ୟାଣ୍ଡ ବିଶ୍ୱବିଦ୍ୟାଳୟର ଉଦ୍ଭିଦ ବିଜ୍ଞାନୀ ଡ଼ଃ ତେରାମୁରାଙ୍କ ଉକ୍ତିରୁ ଜଣାଯାଏ ଯେ, ବାୟୁ ମଣ୍ଡଳରେ ଥିବା ଏକ ନିୟୁତ ଟନ୍ ବାୟୁରେ ଏବେ ୩୫୦ ଟନ୍ ଅଙ୍ଗାରକାମ୍ଳ ବା କାର୍ବନ ମିଶୁଛି ଏବଂ ତାହା ୬୦୦ ଟନ୍‌ରେ ପରିଣତ ହେବ, ସେତେବେଳେ ସମଗ୍ର ବିଶ୍ୱର ଜଳବାୟୁର ବ୍ୟାପକ ପରିବର୍ତ୍ତନ ବା (climatic change) ଘଟିବ ଯାହା ଫଳରେ ପ୍ରବଳ ବର୍ଷା ଭୂମିକମ୍ପ ଘଟି ଏବଂ ସମସ୍ତ ଜମାଟ ଥିବା ବରଫ ତରଳି ଯିବା ଫଳରେ ସମୁଦ୍ରରେ ଜଳପତ୍ତନ ବଢ଼ିଯିବ ଏବଂ ଅଧିକ ଉତ୍ତପ ବଢ଼ି ଏଭଳି ଅବସ୍ଥା ସୃଷ୍ଟି ହେବାର ଆଶଙ୍କା ରହିଛି । ଏହା ଫଳରେ ମାଳଦ୍ୱୀପ ଭଳି ପ୍ରାୟ ୧୦୦ କ୍ଷୁଦ୍ର ଦ୍ୱୀପ ଏପରିକି ବାଲାଂଦେଶର ଏକ ତୃତୀୟାଂଶ ଜଳରେ ବୁଡିଯିବ । ସମୁଦ୍ର ପତ୍ତ ଠାରୁ ୨ ମିଟର ଉଚ୍ଚରେ ରହିଥିବା ସ୍ଥାନଗୁଡ଼ିକ ଏଭଳି ସମସ୍ୟାର ସମ୍ମୁଖୀନ ହେବ ଏବଂ ଏତଦ୍ ବ୍ୟତୀତ ୨୭୦ କୋଟି ଜନ ସଂଖ୍ୟା ବିଶିଷ୍ଟ ବିଶ୍ୱର ଏକ ବିରାଟ ଅଞ୍ଚଳ ଭାରତ, ଚୀନ୍, ଜାପାନ, ଅଫ୍ରିକା, ଦକ୍ଷିଣ ଆମେରିକା ଭଳି ଦେଶରେ ଧାନ ଫସଲ ଉତ୍ପାଦନରେ ଭୀଷଣ ବାଧା ଉପୁଜିବ । ଯେଉଁ ଉତ୍ତାପ ବଢ଼ୁଛି ତାହା ୪ ସେ.ଗ୍ରେଡ୍ ଡିଗ୍ରୀରେ ପରିଣତ ହେଲେ ଏଭଳି ବ୍ୟାପକ ଦେଖାଦେବ । ଏବେ ଠାରୁ ତା'ର ଆଂଶିକ ଲକ୍ଷଣ ଆରମ୍ଭ ହେଲାଣି । ପ୍ରଶାନ୍ତ ମହାସାଗରର ଟାଭାଲୁ ନାମକ ଏକ କ୍ଷୁଦ୍ର ୩୦,୦୦୦ ହଜାର ଲୋକ ବିଶିଷ୍ଟ ଦ୍ୱୀପର ପ୍ରାୟ ଏକ-ତୃତୀୟାଂଶ ଅଞ୍ଚଳର ୧୦,୦୦ ଲୋକେ ଦୁଇ ବର୍ଷ ହେଲା ଜଳ ପ୍ଳବନ ଫଳରେ ଗୃହ ଶୂନ୍ୟ ହୋଇଛନ୍ତି । ପରିବେଶ ବିଜ୍ଞାନୀଙ୍କର ସେହିଭଳି ସତର୍କବାଣୀରୁ ଭାରତ, ବାଂଲାଦେଶ ଜାପାନ, ନେପାଳ ଏପରିକି ଆମେରିକା ଭଳି ବହୁ ଦେଶ ଘନ ଘନ ଭୂମିକମ୍ପର ସମ୍ମୁଖୀନ ହେଉଛନ୍ତି । ଭାରତର ହୋଲକାର

ବିଶ୍ୱବିଦ୍ୟାଳୟର ବୈଜ୍ଞାନିକ ଡ଼ଃ ଶ୍ରୀବାସ୍ତବ କହିଛନ୍ତି ଯେ, ବିଶ୍ୱର ୬୬ ଆଗ୍ନେୟଗିରି କ୍ରମେ କ୍ରମେ ପୁନର୍ଜୀବିତ ହୋଇ ଅଗ୍ନି ଉଦ୍‌ଗୀରଣ ଆରମ୍ଭ କରିଥିବାର ହେଖାଯାଉଛି,ତାହା ପରିବେଶକୁ କ୍ରମେ କ୍ରମେ ଉତ୍ତପ୍ତ କରୁଛି । ପୃଥିବୀ ଭୂତଳରେ ଯେଉଁ ମାରଣାସ୍ତ୍ର ପରୀକ୍ଷା ଚାଲିଛି ବା ଅନ୍ୟ କାରଣରୁ ଆଗ୍ନେୟଗିରିର ଉଦ୍‌ଗୀରଣ ଫଳରେ ବାୟୁମଣ୍ଡଳରେ ଅଧିକ ଅଙ୍ଗାରକାମ୍ଳ ବା କାର୍ବନ ପ୍ରବେଶ କରିବାର ସମ୍ଭାବନା ରହିଛି ।

ବିଭିନ୍ନ ବୈଜ୍ଞାନିକଙ୍କର ଗବେଷଣାରୁ ସ୍ପଷ୍ଟ ଜଣାଯାଏ ଯେ, ଅନ୍ତରୀକ୍ଷର ବାୟୁମଣ୍ଡଳ ପ୍ରବଳ ଭାବରେ ଦୂଷିତ ହେବା ଫଳରେ ହିଁ ସମସ୍ତ ପ୍ରକାର ଦୁର୍ବିପାକର କାରଣ ହୋଇଛି । ପୃଥିବୀର ଭୂପୃଷ୍ଠର ବହୁ ଉପରେ ବୈଜ୍ଞନିକଙ୍କର ମତରେ ପ୍ରାୟ ୧୦,୦୦୦ ଫୁଟ୍ ଉପରେ ଥିବା ବହଳିଆ ବାୟୁମଣ୍ଡଳର ଯେଉଁ ଆବରଣ ବା thick layer ରହିଛି, ତାହାହିଁ ବିଶ୍ୱର ସମସ୍ତ ଜୀବଜଗତକୁ ସୂର୍ଯ୍ୟଙ୍କର ପ୍ରଖର ରଶ୍ମିରୁ ରକ୍ଷାକରିଥାଏ । ତହିଁର ତଳ ବାୟୁମଣ୍ଡଳ ଯେଉଁଠି ଅମ୍ଳଜାନ ପ୍ରଚୁର ମାତ୍ରାରେ ରହିଛି, ତାହା ମଣିଷ ସମେତ ସମସ୍ତ ଜୀବଜଗତକୁ ବଞ୍ଚାଇ ରଖିଛି । ସେହି ବାୟୁମଣ୍ଡଳ ଯେ କି ସମସ୍ତଙ୍କର ଜୀବନରକ୍ଷା କରିଛି ତାହା ମଣିଷକୃତ କାର୍ଯ୍ୟ ଯୋଗୁଁ କ୍ରମେ କ୍ରମେ ଅଧିକରୁ ଅଧିକ ଦୂଷିତ ହେବା ଫଳରେ ତହିଁର ପ୍ରଭାବରେ ସର୍ବୋପରି ଉପରେ ଥବବା ଉପର ମୋଟା ବା ବହଳିଆ ବାୟୁମଣ୍ଡଳ ଯାହାକୁ ଓଜେନ Ozene ବୋଲି କହୁଛନ୍ତି ତାହା କ୍ରମେ କ୍ଷତିଗ୍ରସ୍ତ ହୋଇ ଚାଲିଛି । ଯେତେବେଳେ ତହିଁର ସୀମାଲଂଘନ ହେବ ସେତେବେଳେ ଅସମ୍ଭାଳ ଅବସ୍ଥା ଉପୁଜିବ । ପରିବେଶ ବିଜ୍ଞାନୀମାନେ ଉକ୍ତ ସୃଷ୍ଟି ରକ୍ଷାକାରୀ ଓଜେନ ଏପର୍ଯ୍ୟନ୍ତ କ୍ଷତିଗ୍ରସ୍ତ ଘଟିଥିବା ଫଳରେ ୟୁରୋପର ବେଲିଜିୟମ୍ ଦେଶର ଆୟତନ ଭଳି ଉକ୍ତ ଓଜେନରେ ଏକ ବିରାଟ ଛିଦ୍ର ହୋଇଥିବାର କହନ୍ତି । ତେଣୁ ସେହି (Ozene layer)କୁ କେଉଁ ଉପାୟରେ ରକ୍ଷା କରି ପାରିଲେ ସମସ୍ତ ପୃଥିବୀର କେବଳ ରକ୍ଷା ହୋଇପାରିବ, ତେଣୁ ଏହାହିଁ ଆଜି ମଣିଷ ଜାତି ତଥା ସମସ୍ତ ବିଜ୍ଞାନ ଅନୁସନ୍ଧାନର ପ୍ରଚେଷ୍ଟା । ଏଥିରୁ ରକ୍ଷା ପାଇବାକୁ ହେଲେ ଏକମାତ୍ର ବାଟ ଅମ୍ଳଜାନ ଅଧିକ ବୃଦ୍ଧି କରିବା ଛଡ଼ା ଅନ୍ୟ ବାଟ ନାହିଁ । ଅମ୍ଳଜାନ ବୃଦ୍ଧି କରିବାର କ୍ଷମତା ବୃକ୍ଷଲାତା ଛଡ଼ା ଆଉ କାହାରି ନାହିଁ । କିନ୍ତୁ ମଣିଷର ସଂଖ୍ୟା କ୍ରମେ ବୃଦ୍ଧି ପାଉଥିବା ବେଳେ ଜୀବଜଗତର ସବୁଠାରୁ ମଙ୍ଗଳକରରୀ ବୃକ୍ଷଲତାର କ୍ରମେ ଅଧିକ ଅବକ୍ଷୟ ସୃଷ୍ଟିର ବହୁ ବର୍ଷ ପରେ ପ୍ରାୟ ୧୦,୦୦ ବର୍ଷ ହେଲା ଯେଉଁ ଅବନତି ହୋଇ ଆସିଛି ତଥା ୨୦୦ ବର୍ଷ ମଧରେ ସଭ୍ୟତାର ଉନ୍ନତି ପାଇଁ ଯେଉଁ ଶିଳ୍ପ ସଭ୍ୟତା ସୃଷ୍ଟି ହୋଇଛି ତାହାହିଁ ବୃକ୍ଷଲତା ଓ ପ୍ରକୃତିକୁ ବିଶେଷ ଭାବରେ ନଷ୍ଟ କରି ଆସିଛି । ପରିବେଶ ଓ ପ୍ରକୃତିକୁ ରକ୍ଷାକରି ଉନ୍ନୟନ ଓ ଶିଳ୍ପାୟନ ମଧରେ ସମନ୍ୱୟ ରାକ୍ଷା କରି କାର୍ଯ୍ୟ ହୋଇ ଥିଲେ ଏଭଳି ଅବସ୍ତା ଉପୁଜି ନଥାନ୍ତା । ତେଣୁ କରି ବହୁତ ଡେରିରେ ହେଲେ ମଧ ପ୍ରଥମେ ୧୯୭୨ ମସିହାରେ ୟୁରୋପର ଷ୍ଟକ୍‌ହମଠାରେ ଏବଂ ପରେ ଦକ୍ଷିଣ ଆମେରିକାରେ ବ୍ରାଜିଲ ଦେଶର ରିଓ ଠାରେ ଦୁଇଟି ବିଶ୍ୱ ସମ୍ମିଳନୀ ହୋଇ ପରିବେଶ ସୁରକ୍ଷାର ସଚେତନତା ସୃଷ୍ଟି କରିବାରଉଦ୍ୟମ ହୋଇଛି ।

ବିଶ୍ୱର ଜଙ୍ଗଲ ସମ୍ପଦ ବିପଜ୍ଜନକ ଭାବେ ଯେପରି ଅବକ୍ଷୟ ଘଟୁଛି ପୃଥିବୀର ସମସ୍ତ ରାଷ୍ଟ୍ର ଓ ଲୋକେ ମିଳିତ ଭାବେ ସୁରକ୍ଷିତହୋଇ ପାରିବ ନାହିଁ । ବିଶେଷ କରି ଉତ୍ତରାଞ୍ଚଳ ବା ଧନୀଦେଶ ମୁଖ୍ୟତଃ ୟୁରୋପ ଓ ଆମେରିକାର ଦେଶ ଗୁଡ଼ିକରେ ଅଧିକ ସହରାଞ୍ଚଳ ଓ ଶିଳ୍ପାଞ୍ଚଳ ଗଢ଼ି ଉଠିଥବାରୁ ବାୟୁ ମଣ୍ଡଳ ଦୂଷିତ ହୋଇଛି ଏବଂ ବିଶେଷ ଭାବେ ଜଙ୍ଗଲ କ୍ଷୟ ଘଟିଛି । ଯାହା ଫଳରେ କି ବାୟୁମଣ୍ଡଳର ଏହି ସାଂଘାତିକ ଦୂଷିତୀକରଣ ଘଟିଛି । ପୃଥିବୀର ଦକ୍ଷିଣାଞ୍ଚଳ ଭାରତ ସମେତ ମାଳୟ, ବ୍ରହ୍ମଦେଶ ଓ ଆଫ୍ରିକୀୟ ଦେଶରେ କିଛି ଜଙ୍ଗଲ ଅଛି । କିନ୍ତୁ ଆଫ୍ରିକୀୟ ଦେଶରେ ଆଗରୁ ଥିବା ପ୍ରଚୁର ଜଙ୍ଗଲ ପ୍ରବଳ ଲୋକସଂଖ୍ୟା ବୃଦ୍ଧି ଫଳରେ ବହୁ ଜଙ୍ଗଲ ଅବକ୍ଷୟ ଘଟିଛି । କେଣୁ ଭାରତ ସମେତ ଏସିଆ ମହାଦେଶର ବିଭିନ୍ନ ରାଷ୍ଟମାନଙ୍କରେ ରହିଥିବା ଜଙ୍ଗଲ ଯେ ଏକମାତ୍ର ତ୍ରାଣକର୍ତ୍ତା ଏଥବରେ କୌଣସି ସନ୍ଦେହ ନାହିଁ । ଭାରତର ସ୍ୱାଧୀନତା ପ୍ରାପ୍ତି ବେଳକୁ ଯେତେ ଜଙ୍ଗଲ ଥିଲା ଆଜି ତାହା ନାହିଁ । ବିଶ୍ୱ

ବିଖ୍ୟାତ ହିମାଳୟ ପର୍ବତମାଳା ଯିଏ କି ସମଗ୍ର ଭାରତବର୍ଷକୁ ରାକ୍ଷା କରିଛି ତହିଁର ଅସ୍ୱାଭାବିକ ଅବକ୍ଷୟ ଘଟି ମୃତ୍ତିକା କ୍ଷୟ ଘଟିବାର ଦେଖା ଯାଉଛି । ଢ଼ାକା ବିଶ୍ୱବିଦ୍ୟାଳୟର ଜଣେ ବିଶେଷଜ୍ଞ ଶ୍ରୀ ମହମ୍ମଦ୍ କୁହନ୍ତି ଯେ, ବର୍ଷକୁ ଗଙ୍ଗା ଓ ବ୍ରହ୍ମପୁତ୍ର ହିମାଳୟ ପର୍ବତରୁ ସାଢ଼େ ୪ କୋଟି ଟନ୍ ପଟୁମାଟି ବୋହି ଆଣି ଦୁଇ ନଦୀର ସମୁଦ୍ର ମୁହାଣରେ ଜମା କରି ଦେଉଥିବାରୁ ଗଙ୍ଗା ଓ ବ୍ରହ୍ମପୁତ୍ରରେ ବାରମ୍ବାର ପ୍ରବଳ ବନ୍ୟା ଦେଉଥିବାର ଦେଖାଯାଉଛି । ୧୯୮୨ରେ ଭାରତର ଜାତୀୟ ଜଙ୍ଗଲ ନୀତି ସ୍ଥିର ହୋଲାବେଳେ ଦେଶର ମୋଟ ଭୂଭାଗର ଶତକଡ଼ା ୩୩ ଭାଗ ବୃକ୍ଷଲତାରେ ଆବୃତ ହେବା ଉଚିତ୍ ବୋଲି ସ୍ଥିର ହୋଇଥିଲା । କାରଣ ବୃକ୍ଷଲତା ବା ବନ ସମ୍ପଦ ହେଉଛି ପରିବେଶ ସୁରକ୍ଷାର ପ୍ରଧାନ କବଚ । ଏବେ ବୈଜ୍ଞାନିକ ଗବେଷଣାରୁ ଦେଖାଯାଉଛି ଯେ ଭାରତରେ ଭୂଭାଗର ହାରାହାରି ମାତ୍ର ୧୦ ଭାଗ ଜଙ୍ଗଲ ରହିଛି । ତାହା ମଧ୍ୟ ବିଶେଷ ଭାବରେ ଭାରତର ପୂର୍ବାଞ୍ଚଳ ରାଜ୍ୟ ଗୁଡ଼ିକରେ ଏବଂ ଓଡ଼ିଶା ସମେତ ଅନ୍ୟ ପାଖାପାଖି ଅଞ୍ଚଳରେ ରହିଛି । ଓଡ଼ିଶା କଥା ଯଦି ବିଚାର କରିବା ତେବେ ମୟୁରଭଞ୍ଜ ସମେତ କେତେଗୁଡ଼ିଏ ପୂର୍ବ ଗଡ଼ଜାତ ଅଞ୍ଚଳରେ ଏହି ବନ ସମ୍ପଦ ରହିଥିବାର ଦେଖାଯାଏ । ଅର୍ଥାତ୍ ମୟୁରଭଞ୍ଜ ଜିଲ୍ଲାର ଶିମିଳିପାଳ ପର୍ବତମାଳା ଭରତବର୍ଷରେ ଏକ ସର୍ବବୃହତ ବନ ଅଞ୍ଚଳ ଯାହାକି ପ୍ରାୟ ସାଢ଼େ ଚାରି ହଜାର ବର୍ଗ କିଲୋମିଟର ଅଞ୍ଚଳରେ ଲଗାଲଗି ଭାବେ ଏକ ଘନ ଜଙ୍ଗଲ ହିଁ ଦେଖିବାକୁ ମିଳେ । ଯଦି ଓଡ଼ିଶାରେ ଥିବା ସମସ୍ତ ଜଙ୍ଗଲ ସମ୍ପଦ ଶିମିଳିପାଳ ସମେତ ସମ୍ପୂର୍ଣ୍ଣ ସଂରକ୍ଷଣ ହୋଇ ପାରିବ ତାହାହେଲେ କେବଳ ଓଡ଼ିଶା ନୁହେଁ, ଭାରତବର୍ଷର ବ୍ୟାପକ ଅଞ୍ଚଳରେ ପରିବେଶ ସଂରକ୍ଷଣ ହୋଇପାରନ୍ତା । ପରିବେଶ ଗୋଟିଏ ସ୍ଥାନରେ ସୁରକ୍ଷିତ ହେଲେ ଯେ କେବଳ ସେହି ଅଞ୍ଚଳର ମଙ୍ଗଳ ସାଧିତ ହେବ ତାହା ନୁହେଁ, କାରଣ ବାୟୁମଣ୍ଡଳ ବ୍ୟାପକ ଓ ବିଶ୍ୱବ୍ୟାପୀ ହୋଇଥିବା ଯୋଗୁଁ ତହିଁର ସୁଫଳ ମଧ୍ୟ ସର୍ବବ୍ୟାପୀ । ତେଣୁ ଗତ ୧୯୯୨ ମସିହାରେ ଦକ୍ଷିଣ ଆମେରିକାର ବ୍ରାଜିଲ ଦେଶର ରିଓଠାରେ ଯେଉଁ (United Nations Organisation) ତରଫରୁ ଆନ୍ତର୍ଜାତିକ ଦ୍ୱିତୀୟ ଶିଖର ସମ୍ମିଳନୀ ଅନୁଷ୍ଠିତ ହୋଇଥିଲା ସେଥିରେ ଆମେରିକାର ପୂର୍ବତନ ସଭାପତି ଶ୍ରୀଯୁକ୍ତ ବୁଶ୍ ଏବଂ ଭାରତର ପ୍ରଧାନମନ୍ତ୍ରୀ ଶ୍ରୀଯୁକ୍ତ ନରସିଂହ ରାଓ ସମେତ ବିଶ୍ୱର ବହୁ ଦେଶର ରାଷ୍ଟ୍ରମୁଖ୍ୟମାମନେ ଯୋଗ ଦେଇ ଯେଉଁ ସର୍ବସମ୍ମତ ନିଷ୍ପତ୍ତି ଗ୍ରହଣ କରିଥିଲେ, ତାହାହିଁ ବନ ସମ୍ପଦର ସମ୍ପୂର୍ଣ୍ଣ ସୁରକ୍ଷା । ତେଣୁ ଧନୀ ଦେଶମାନେ ବିକାଶଶୀଳ ଦେଶ ମାନଙ୍କରେ ଥିବା ଜଙ୍ଗଲ ସମ୍ପଦକୁ ସୁରକ୍ଷା କରିବା ସଙ୍ଗେ ସଙ୍ଗେ କଳକାରଖାନା ଥିବା ଅଞ୍ଚଳ ମାନଙ୍କରେ ଏପରି ବାୟୁ ପ୍ରଦୂଷଣ ନିରୋଧ କରାଯିବ, ତା' ପାଇଁ ଆବଶ୍ୟକ ଯନ୍ତ୍ରପାତି ମଧ୍ୟ ସାହାଯ୍ୟ ଦେବାରେ ସମ୍ମିଳନୀ ଠିକ୍ କରିଥିଲା । ସେଥି ପାଇଁ ଏବେ ଭାରତ ଭଳି ବିକାଶଶୀଳ ଦେଶମାନଙ୍କୁ U.N.O ଜରିଆରେ ଏହି ସାହାଯ୍ୟ କିଛି କିଛି ମିଳୁଛି ।

ତେଣୁ ଏହି ଗୁରୁତ୍ୱପୂର୍ଣ୍ଣ ପରିସ୍ଥିତି ଦୃଷ୍ଟିରୁ ସମଗ୍ର ବିଶ୍ୱର ଜଙ୍ଗଲ ସମ୍ପଦକୁ ବଞ୍ଚାଇବାକୁ ହେଲେ ଶିମିଳିପାଳ ପର୍ବତମାଳା ଏବେ ରହିଥିବା ବ୍ୟାପକ ଜଙ୍ଗଲ ସମ୍ପଦ ସହିତ ଜିଲ୍ଲାର ଅନ୍ୟାନ୍ୟ ସମତଳ ଜଙ୍ଗଲ ମିଶି ପ୍ରାୟ ୫ ହଜାର ବର୍ଗ କି.ମି. ହେଉଥିବାରୁ ଏହାର ଗୁରୁତ୍ୱ ବିଶେଷ ଭାବରେ ଉପଲବ୍ଧି ହେଉଛି । ଶିମିଳିପାଳ ବିଶ୍ୱ ଜଙ୍ଗଲ ସମ୍ପଦ ଦୃଷ୍ଟିରୁ ଏକ କ୍ଷୁଦ୍ର ବିନ୍ଦୁ ସହିତ ସମାନ କହିଲେ ଅତ୍ୟୁକ୍ତି ହେବ ନାହିଁ । କିନ୍ତୁ ଏହି କ୍ଷୁଦ୍ର ବିନ୍ଦୁ ସହିତ ଓଡ଼ିଶାର ଅନ୍ୟାନ୍ୟ ସମସ୍ତ ବନ ସମ୍ପଦ ତଥା ଭାରତରେ ପୂର୍ବାଞ୍ଚଳକୁ ମିଶାଇଲେ ଆକାଶ ତଥା ବାୟୁମଣ୍ଡଳକୁ ନିର୍ମଳ କରିବାରେ ମାନବ ଜାତିର କେତେ ଯେ ମଙ୍ଗଳକାରୀ ଅବଦାନ ହୋଇ ପାରିବ ତାହା ଗୁରୁତ୍ୱ ସହ ବିଚାର କରିବା ଉଚିତ୍ । ବିଶ୍ୱ ପରିବେଶର ଏଭଳି ବିପଜ୍ଜନକ ପ୍ରଦୂଷଣ ଘଟି ଜୀବ ଜଗତର ବିଲୟ ଘଟିବାର ଯେଉଁ ଆଶଙ୍କା ପ୍ରକାଶ ପାଉଛି ଏହି ଏକ କ୍ଷୁଦ୍ର ବିନ୍ଦୁ ସହିତ ସମାନ ଶିମିଳିପାଳ ପର୍ବତମାଳା କେତେ ଯେ ଗୁରୁତ୍ୱପୂର୍ଣ୍ଣ ଏବଂ ତା'ର ବିଶ୍ୱ ପରିବେଶକୁ କେତେ ଯେ ଅବଦାନ ତାହା ମୂଲ୍ୟାୟନ କରାଯାଇ ନପାରେ । ଗୋଟିଏ ଗଛ ଗୋଟିଏ ପରିବାରର ସମସ୍ତ ଲୋକଙ୍କୁ ବଞ୍ଚାଇବାରେ ଆବଶ୍ୟକ ପରିମାଣ ଅମ୍ଳଜାନ ଯୋଗାଇଥାଏ ବୋଲି ଗବେଷଣାରୁ ଜଣାଯାଏ । ସେହି ଗବେଷଣାରୁ ଜଣାଯାଇଛି

ଯେ ଏକ ଏକର ଜମିରେ ରହିଥିବା ବଡ଼ ପତ୍ର ଥିବା ଗଛ ବାୟୁମଣ୍ଡଳରୁ ୪ କ୍ୱିଣ୍ଟାଲ ଅଙ୍ଗାରକାମ୍ଳ ଗ୍ରହଣ କରି ଜୀବ ଜଗତକୁ ବଞ୍ଚିବାରେ ସାହାଯ୍ୟ କରିଥାଏ । କଲିକତା ବିଶ୍ୱବିଦ୍ୟାଳୟର ବୈଜ୍ଞାନିକ ଗବେଷଣାରୁ ଜଣାଯାଏ ଯେ, ବଡ଼ ପତ୍ର ଥିବା ଗୋଟିଏ ଗଛ ତା'ର ଜୀବଦ୍ଦଶା ଅର୍ଥାତ ପ୍ରାୟ ୧୦୦ ବର୍ଷରୁ ଊର୍ଦ୍ଧ୍ୱ ବୟସ ଭିତରେ ଯେତିକି ଅମ୍ଳଜାନ ଦିଏ ଓ ଆକାଶକୁ ଶୁଦ୍ଧ କରିଥାଏ, ବର୍ଷା ସୃଷ୍ଟି କରିଥାଏ ଜୀବଜନ୍ତୁ ଓ ପକ୍ଷୀମାନଙ୍କୁ ଆଶ୍ରୟ ହେଉଥାଏ, ମୃତ୍ତିକା ସଂରକ୍ଷଣ କରିଥାଏ । କେବଳ ଏ ସମସ୍ତ ଅବଦାନର ମୂଲ୍ୟାୟନ କରିବାରେ ଏହାର ମୋଟ ମୂଲ୍ୟ ହାରାହାରି ୧୫ ଲକ୍ଷ ଟଙ୍କା ହେବାର ବିଶ୍ୱ ବିଦ୍ୟାଳୟ ତରଫରୁ ଘୋଷିତ ହୋଇଛି । ତେଣୁ ଶିମିଳିପାଳ ଏକ ଘଞ୍ଚ ଜଙ୍ଗଲ ହୋଇଥିବାରୁ ଏବଂ ଏକ ବିସ୍ତୀର୍ଣ୍ଣ ଅଞ୍ଚଳ ହୋଇଥିବାରୁ ଏବଂ ବହୁ ଜୀବଜନ୍ତୁ ସେଥିରେ ସ୍ଥାନ ପାଇ ପରିବେଶକୁ ନିର୍ମଳ କରିବାରୁ ଏହାର ଅବଦାନ ବିଶ୍ୱର ମାନବ ଜାତିକୁ ଏକ ଅତୁଳନୀୟ ସମ୍ପଦ କହିଲେ ଅତ୍ୟୁକ୍ତି ହେବ ନାହିଁ । ଜଙ୍ଗଲର ବୃକ୍ଷଲତା କେବଳ ଜୀବଜଗତକୁ ସବୁ ଦେଇ ଆସିଛି ନିଜ ପାଇଁ କିଛି ଦେଇନାହିଁ । କିନ୍ତୁ ମଣିଷ ବୃକ୍ଷର ଏହି ମଙ୍ଗଳକାମୀ ଧର୍ମର ବିଚାର ନ କରି ଅବିଚାରିତ ଭାବେ ବରାବର ଜଙ୍ଗଲ ନଷ୍ଟ କରି ଆସୁଥିବାରୁ ଆଜି ସମଗ୍ର ବିଶ୍ୱର ଏଭଳି ଏକ ଦୟନୀୟ ଅବସ୍ଥା । ଏବେ ନୂତନ ଜଙ୍ଗଲ ସୃଷ୍ଟି ପାଇଁ ଯେଉଁ ଯୋଜନା ହେଉଛି ସେ କେବେ ହେଲେ ପ୍ରକୃତି ତିଆରି ଜଙ୍ଗଲ ସହିତ ସମାନ ହୋଇପାରିବ ନାହିଁ ।

ଶିମିଳିପାଳର ଏହି ମହାନ୍ ଅବଦାନକୁ ବିଚାର ନକରି ଦୂର ଦୃଷ୍ଟିହୀନ ଭାବେ ୧୯୭୮ ମସିହାରେ ଶିମିଳିପାଳ ଅଞ୍ଚଳର ୨,୭୦୦ ବର୍ଗ କି. ମି. ଜଙ୍ଗଲର ସମ୍ପୂର୍ଣ୍ଣ (exploitation) ପାଇଁ ଶିମିଳିପାଳ ଉନ୍ନୟନ ବାହାନାରେ ଏକ ନିଗମ ଗଠନ କରି (SFDC) ଜରିଆରେ ଏହି ସମ୍ପଦର ନଷ୍ଟଭ୍ରଷ୍ଟ କରିବାରେ ସେତେବେଳେର ସରକାର କରିଥିଲେ । ତାହା ୧୯୮୨ ବେଳକୁ ଜନସାଧାରଣଙ୍କର ଚାପରେ ଗଛକଟା ସମ୍ପୂର୍ଣ୍ଣରୂପେ ବନ୍ଦ କରିବାକୁ ବାଧ୍ୟ ହୋଇଥିଲେ ! ଉକ୍ତ ଜଙ୍ଗଲରୁ ମାତ୍ର ୮୪୦ ବର୍ଗ କି.ମି. ଜଙ୍ଗଲକୁ ଅଭୟାରଣ୍ୟ (Tiger project) ଭାବେ ଘୋଷଣା କରି ଅବଶିଷ୍ଟ ୧୯୦୦ ବର୍ଗ କିଲୋମିଟର ଜଙ୍ଗଲକୁ ସଙ୍କଟୁଆରୀ ରୂପେ ଘୋଷଣା କରି ତହିଁର କୌଣସି ଉନ୍ନୟନ ଏ ପର୍ଯ୍ୟନ୍ତ କରାଯାଇନାହିଁ । ତେଣୁ ସମତଳ ଅଞ୍ଚଳ ଥିବା ପ୍ରାୟ ୮୦୦ ବର୍ଗ .ମି. ସମେତ ଶିମିଳିପାଳ ସହ ମୋଟ ପ୍ରାୟ୪୦୦୦ ବର୍ଗ କି.ମି. ଜଙ୍ଗଲକୁ ଏବେ ଅଭୟାରଣ୍ୟ ଘୋଷଣା କରିବା ଉଚିତ୍ । ସରକାର ଏହି ସମସ୍ତ ଜଙ୍ଗଲକୁ ବାଇଓସ୍ପିଅର ବା ଭୂମଣ୍ଡଳ ସଂରକ୍ଷଣ ଘୋଷଣା କରିବାକୁ ପ୍ରଣ୍ଡଦପଦ ହେଉଥିଲେ ହେଁ ଏହାକୁ ଏକ ଶାସନ ପରିଚାଳନାଧୀନ (one authority) ଘୋଷଣା କରିବା ଦିଗରେ ଦ୍ରୁତ ପଦକ୍ଷେପ ନେବା ଉଚିତ୍ । ତା' ନହେଲେ ଯେଉଁଳି ଭାବରେ ସମସ୍ତ ଶିମିଳିପାଳ ମା-ବାପ ଦାନ ଭାବେ ଅରକ୍ଷିତ ହୋଇଛି ତହିଁର ସୁଯୋଗ ନେଇ ଜଙ୍ଗଲ କର୍ମଚାରୀ ସମେତ ସମସ୍ତ କର୍ମଚାରୀ ଏବଂ ମୁନାଫାଖୋର ଚୋରା ବ୍ୟବସାୟଙ୍କର ସଙ୍ଗମ ଘଟି ଯେଉଁ ହାରରେ ଜଙ୍ଗଲ ନଷ୍ଟ ହେଉଛି ତା'ର ପରିଣାମ ଆଉ କେତେକ ବର୍ଷ ଭିତରେ ଭୟାବହ ହେବ । ଯଦି ଶିମିଳିପାଳ ଅଭୟାରଣ୍ୟ ଘୋଷିତ ହୋଇଥାନ୍ତା ତେବେ ଜାତିସଂଘର ସମର୍ଥନ ଓ ସାହାଯ୍ୟ ସମ୍ପୂର୍ଣ୍ଣ ରୂପେ ମିଳିଥାନ୍ତା ଏବଂ ପୃଥିବୀର ମାନଚିତ୍ରରେ ମାତ୍ର ମୋଟ ୨୪୨ ବାୟୋସ୍ପିୟର ଯୋଜନା ଭିତରେ ଶିମିଳିପାଳ ଅନ୍ୟ ଏକ ନୂତନ ଭୂମଣ୍ଡଳ ସଂରକ୍ଷଣ ଯୋଜନା ଯୋଗ ହୋଇଥାନ୍ତା । ଓଡ଼ିଶା ଯେଉଁଳି ଜଗନ୍ନାଥଦେଶ ବୋଲି ଭାରତ ବର୍ଷ କାହିଁକି ଆନ୍ତର୍ଜାତିକ କ୍ଷେତ୍ରରେ ମଧ୍ୟ ପିରିଚିତ ହେଉଛି ଶିମିଳିପାଳ ମଧ୍ୟ ଠିକ୍ ସେହିଭଳି ଆନ୍ତର୍ଜାତିକ କ୍ଷେତ୍ରରେ ଅର୍ଥାତ ଜାତିସଂଘର ସହାୟତାରେ ଓଡ଼ିଶାକୁ ପରିଚିତ କରିଥାନ୍ତା । ଦୁର୍ଭାଗ୍ୟ ଯେ ରାଜ୍ୟ ସରକାରଙ୍କ ଅଯୋଗ୍ୟତାରୁ ବିଶ୍ୱର ଏଡ଼େ ବଡ଼ ସଂପଦ ସଂରକ୍ଷିତ ହୋଇ ପାରିଲା ନାହିଁ । ଯାହାହେଉ ରାଜ୍ୟ ସରକାର ଶିମିଳିପାଳ ଭଳି ପ୍ରତି ଜିଲ୍ଲାରେ କିଛି କିଛି ଜଙ୍ଗଲକୁ ସମ୍ପୂର୍ଣ୍ଣ ସଂରକ୍ଷଣ ପାଇଁ ଅଭୟାରଣ୍ୟ ଭାବେ ଘୋଷଣା କରିବା ଉଚିତ । କେନ୍ଦ୍ର ଜଙ୍ଗଲମନ୍ତ୍ରୀ ଶିମିଳିପାଳରେ ବ୍ୟାଘ୍ର ନ ଥିବାରୁ ସଂରକ୍ଷଣ ହୋଇ ପାରିବ ନାହିଁ ବୋଲି କହିଛନ୍ତି କିନ୍ତୁ ପଶ୍ଚିମବଙ୍ଗର ସୁନ୍ଦରବନ ଜଙ୍ଗଲ କିପରି Biosphere regionହେବ ।

ଭାରତୀୟ ସଂସ୍କୃତିରେ ବୃକ୍ଷଲତା ତଥା ଜଙ୍ଗଲର ସ୍ଥାନ ଅତ୍ୟନ୍ତ ପବିତ୍ର ଓ ମହୀୟାନ । ୫୦୦୦ ବା ତହିଁରୁ ଉର୍ଦ୍ଧ୍ୱ ବର୍ଷ ପୂର୍ବେ ଭାରତର ଶିକ୍ଷା ଓ ସଂସ୍କୃତିର ପୂର୍ଣ୍ଣାଙ୍ଗ ପ୍ରାପ୍ତି ଘଟିଥିଲା ବେଦେ ବେଦାନ୍ତ ଓ ଉପନିଷଦ ଓ ରାମାୟଣ ତଥା ମହାଭାରତରେ ଲେଖା ଅଛି ଯେ,

''ନିର୍ବନଂ ବଧତେ ବ୍ୟାଘ୍ରୋ ନିର୍ବ୍ୟାଘ୍ରୋ ଛିଦଦ୍ୟତେ ବନଂ

ତସ୍ମାଦ୍ ବ୍ୟାଘ୍ରୋ ବନଂ ରକ୍ଷେତ୍ ବନଂ ବ୍ୟାଘ୍ରଂ ଚ ପଳାୟତେ ।।''

ଏଥିରୁ ଜଣାଯାଏ ସେତେବେଳୁ କେତେ ଦୂରଦୃଷ୍ଟିର ସହିତ ପରିବେଶ ପ୍ରଦୂଷଣ ଘଟିଲେ ତହିଁରେ କୁପରିଣତି କ'ଣ ହେବ, ତାହା ଉକ୍ତ ପୁରାଣ ଲେଖକମାନେ ବିଚାର କରିଛନ୍ତି । ଏପରିକି ଭାରତୀୟ ସଂସ୍କୃତିରେ ବୃକ୍ଷଲତା, ନଦୀ, ସମୁଦ୍ର, ପର୍ବତ, ଜୀବଜନ୍ତୁ, ଏପରିକି ସରୀସୃପ ପର୍ଯ୍ୟନ୍ତ ଯେଉଁ ସମସ୍ତେ ପରିବେଶ ଅନ୍ତର୍ଭୁକ୍ତ ସେମାନଙ୍କୁ ତଥା ଏହି ପରିବେଶର ସବୁଠୁ ସହାୟକ ସୂର୍ଯ୍ୟ, ଚନ୍ଦ୍ର, ନକ୍ଷତ୍ର ଓ ପୃଥିବୀ ଏବଂ ବାୟୁକୁ ମଧ୍ୟ ଦେବତାରୂପେ ଗ୍ରହଣ କରି ପୂଜା କରାଯାଇଛି । ତା'ର ମଧ୍ୟ ସେହି କାରଣ ଯେ ପରିବେଶ ପ୍ରତି ସଚେତନତା ଛଡ଼ା ଆଉ କ'ଣ ହୋଇପାରେ । ଆମର ସବୁଠାରୁ ବଡ଼ ଦେବତା ବୋଲି ପୂଜା ପାଉଥିବା ଶ୍ରୀଜଗନ୍ନାଥ ମଧ୍ୟ କାଠରେ ତିଆରି । ଏପରିକି ଭାରତର ଋଷି ମୁନିମାନେ ଯେଉଁମାନେ କି ସବୁଦିନ ଜନ୍ତୁ ଏବଂ ପ୍ରକୃତି ଭିତରେ ଅବସ୍ଥାନ କରି ଏହି ମହାନ୍ ବେଦ ବେଦାନ୍ତ ଗ୍ରନ୍ଥ ଗୁଡ଼ିକ ରଚନା କରି ମାନବଜାତିକୁ ଶିକ୍ଷାର ଆଲୋକ ଦେଖାଇଛନ୍ତି, ସେମାନେ ମଧ୍ୟ ସକାଳେ ଓ ସନ୍ଧ୍ୟାରେ ପୃଥିବୀମାତାକୁ ପ୍ରାର୍ଥନା କରୁଥିଲାବେଳେ କହୁଥିଲେ- 'ହେ ପୃଥିବୀମତା ମୁଁ ଆଜି ତୁମ ପାଖରୁ ଯେତିକି ନେଲି ତାହା ପୂରଣ ହୋଇଯାଉ । ତୁମ ଦେହକୁ ମୁଁ ଖନନ କଲାବେଳେ ତୁମ ଜୀବଶକ୍ତିକୁ ଯେପରି ବାଧା ନ ଲାଗୁ ।' ଏହାଠାରୁ ପରିବେଶ ସଚେତନତା ଆଉ କ'ଣ ହୋଇପାରେ । ପୂର୍ବତନ ପ୍ରଧାନମନ୍ତ୍ରୀ ସ୍ୱର୍ଗୀୟା ଇନ୍ଦିରା ଗାନ୍ଧୀ ଆନ୍ତର୍ଜାତିକ ଷ୍ଟକହୋମ ସମ୍ମିଳନୀରେ କହିଥିଲେ, ''ମଣିଷ ଯଦି ପ୍ରକୃତ ମଣିଷ ହେବାକୁ ଚାହେଁ, ତେବେ ସେ ନିଜର ଭାଇ, ବନ୍ଧୁ ତଥା ମିତ୍ରଙ୍କୁ ଯେଉଁ ଆଖିରେ ଦେଖେ ସମସ୍ତ ପ୍ରକୃତିକୁ ତଥା ବୃକ୍ଷଲତା ଓ ପରିବେଶକୁ ସେହିଭଳି ମଣିଷର ବନ୍ଧୁ ମିତ୍ର ଭାବେ ଦେଖିବା ଉଚିତ୍ ।'' ମଣିଷ ବା ଆମେ ଯେଉଁ ପରିବେଶ ତଥା ପ୍ରକୃତି ଭିତରେ ଜନ୍ମଲାଭ କରି ବଞ୍ଚି ରହିଛୁ ସେହି ପରିବେଶ ହିଁ ଆମର ସବୁଠୁ ବଡ଼ ମିତ୍ର । ସୃଷ୍ଟି ଭଗବାନଙ୍କର । ତେଣୁ ପରିବେଶ ସୁରକ୍ଷିତ ହେଲେ ସୃଷ୍ଟି ମଧ୍ୟ ସୁରକ୍ଷିତ ହେବ । ଏହାହିଁ ଭଗବାନଙ୍କର ଇଚ୍ଛା ଓ ମଣିଷ ଯଦି ପ୍ରକୃତିକୁ ମିତ୍ର ରୂପେ ଗ୍ରହଣ କରି ପାରିବ ତେବେ ଅନ୍ୟ ଜୀବ ଜନ୍ତୁଙ୍କୁ ମଧ୍ୟ ମିତ୍ର ଭାବେ ଗ୍ରହଣ କରିବ । ଏହି ସଚେତନତା ମଣିଷ ସୃଷ୍ଟି କରି ପାରିଲେ ମଣିଷ ଭଗବାନଙ୍କର ଆଶୀର୍ବାଦ ଲାଭ କରିବ ଏବଂ ସୃଷ୍ଟି ମଧ୍ୟ ସୁରକ୍ଷିତ ହେବ ।

# ପରିବେଶ ସୁରକ୍ଷା ଓ ଉନ୍ନୟନ ମଧ୍ୟରେ ବିବାଦ କେଉଁଠି ?

''ଦେଶର ଆର୍ଥିକ ସମୃଦ୍ଧି ପାଇଁ ଆମ ଭାରତବର୍ଷ ଭଳି ବିକାଶ ମୁଖୀ ଦେଶ ପକ୍ଷରେ ବିଭିନ୍ନ ଉନ୍ନୟନ ମୂଳକ କାର୍ଯ୍ୟାବଳୀର ଯେପରି ଅତି ଗୁରୁତ୍ୱପୂର୍ଣ୍ଣ ଆବଶ୍ୟକତା ରହିଛି ଠିକ୍ ସେହିଭଳି ଆମ ଦେଶ ସମେତ ବିଶ୍ୱର ତଥା ସମଗ୍ର ସୃଷ୍ଟିର ସମ୍ପୂର୍ଣ୍ଣ ସୁରକ୍ଷା ପାଇଁ ପରିବେଶ ବା ପାରିପାର୍ଶ୍ୱିକ ଅବସ୍ଥା ସଂରକ୍ଷଣ ଓ ଉନ୍ନତି ଯେ ତତୋଽଧିକ ଗୁରୁତ୍ୱପୂର୍ଣ୍ଣ ଏହା କହିବା ବାହୁଲ୍ୟ ମାତ୍ର । ଅତ୍ୟନ୍ତ ଦୁର୍ଭାଗ୍ୟପୂର୍ଣ୍ଣ ବିଷୟ ଯେ ଗତ ୫ ତାରିଖ ବିଶ୍ୱ ପରିବେଶ ଦିବସ ଉପଲକ୍ଷେ ଆୟୋଜିତ ଏକ ସାଧାରଣ ସଭାରେ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ବିଜୁ ପଟ୍ଟନାୟକ ତାଙ୍କର ପାରମ୍ପରିକ ଯୁକ୍ତି ଦୋହରାଇ ଦେଶର ପରିବେଶ ସୁରକ୍ଷା ନୀତିକୁ ସମାଲୋଚନା କରି କହିଛନ୍ତି ଯେ ଗତ ୨୦ ବା ୩୦ ବର୍ଷ ପୂର୍ବେ ପରିବେଶ ସୁରକ୍ଷାର ନାମଗନ୍ଧ ନ ଥିଲେ ହେଁ ଏବେ ତହିଁର କଡ଼ାକଡ଼ି ନିୟନ୍ତ୍ରଣ କରାଯିବା ଫଳରେ ଦେଶର ଉନ୍ନୟନ ଗୁରୁତର ବାଧାପ୍ରାପ୍ତ ହେଉଛି । ଅବଶ୍ୟ ଉକ୍ତ ସମାବେଶରେ ଉପସ୍ଥିତ ଅନ୍ୟମାନଙ୍କ ମଧ୍ୟରେ ଓଡ଼ିଶାର ଜଙ୍ଗଲ ରାଷ୍ଟ୍ରମନ୍ତ୍ରୀ ଶ୍ରୀଯୁକ୍ତ ମଙ୍ଗଳା କିସାନ ଅତ୍ୟନ୍ତ ଦୃଢ଼ତାର ସହିତ ପରିବେଶ ସୁରକ୍ଷା କେବେ ହେଲେ ଦେଶର ଉନ୍ନୟନ କାର୍ଯ୍ୟର ଅନ୍ତରାୟ ନୁହେଁ ବୋଲି କହି ସ୍ୱାଗତ ଯୋଗ୍ୟ ହୋଇଛନ୍ତି ।

ବିଶ୍ୱର ପାଶ୍ଚାତ୍ୟ ଦେଶଗୁଡ଼ିକରେ ଆଜିକୁ ପ୍ରାୟ ୨୦୦ ବର୍ଷ ଧରି ବିଜ୍ଞାନ ଓ ଶିଳ୍ପକୁ ଉନ୍ନତି ଓ ପ୍ରଗତିର ଏକମାତ୍ର ମାପକାଠି ରୂପେ ବିଚାର କରି ଏଥିପ୍ରତି ଅତିମାତ୍ରାରେ ଗୁରୁତ୍ୱ ଦେଇ ପରିବେଶ ସୁରକ୍ଷାର ଅତି ଗୁରୁତର ଅବହେଳା କଲାପରେ ତହିଁର କୁଫଳ ପ୍ରତି ସଚେତନ ହୋଇ ୧୯୭୨ ମସିହାରେ ୟୁରୋପ ମହାଦେଶର ଷ୍ଟକ୍‌ହଲମ ଠାରେ ଅନୁଷ୍ଠିତ ପ୍ରଥମ ବିଶ୍ୱ ରାଷ୍ଟ୍ର ନାୟକର ସମାବେଶରେ ବିଶ୍ୱ ପ୍ରଦୂଷଣରୁ ରକ୍ଷା ପାଇବାପାଇଁ ଏକ ମିଳିତ ଉଦ୍ୟମ ଆରମ୍ଭ କରି ବିଭିନ୍ନ ଦେଶରେ ପଦକ୍ଷେପମାନ ଗ୍ରହଣ କରିବା ଆରମ୍ଭ ହୋଇଛି । ଏହି ପଦକ୍ଷେପ ଯୋଗେ ପାଶ୍ଚାତ୍ୟ ଦେଶମାନଙ୍କରେ ପରିବେଶ ସୁରକ୍ଷା ତଥା ପ୍ରଦୂଷଣ ନିୟନ୍ତ୍ରଣର ଯଥେଷ୍ଟ ଅଗ୍ରଗତି ଘଟିଲାଣି । ଉଦାହରଣସ୍ୱରୂପ ପଶ୍ଚିମ ଜର୍ମାନୀ ଯହାକି ବର୍ତ୍ତମାନ ମିଳିତ ଜର୍ମାନୀର ଏକ ପ୍ରଧାନ ଅଂଶ ସେଠାକାର ବିଖ୍ୟାତ ବୃହତ ଶିଳ୍ପାଞ୍ଚଳ 'ରୂର' ସହରର ସଫଳ ପରିବେଶ ସୁରକ୍ଷା କାର୍ଯ୍ୟକ୍ରମ ସମଗ୍ର ବିଶ୍ୱର ଦୃଷ୍ଟି ଆକର୍ଷଣ କରି ପାରିଛି । ଏହି ସହରର ଲମ୍ବ ୧୦୦ କି.ମି. ଓ ଦୀର୍ଘ ପ୍ରାୟ ୫୦ କି.ମି. ଅଞ୍ଚଳରେ ଅନ୍ତତଃ ସେ ଦେଶେର ସମସ୍ତ ଅତ୍ୟାଧୁନିକ ଇସ୍ପାତ ଶିଳ୍ପ ଗୁଡ଼ିକ ପ୍ରତିଷ୍ଠା କରାଯାଇଥିବାରୁ ତହିଁର ଗୁରୁତର ପ୍ରଦୂଷଣ ଘଟି ସ୍ଥାନୀୟ ଲୋକେ ଦିନେ ଅମ୍ଳଜାନ ଅଭାବରୁ ଅଣନିଶ୍ୱାସୀ ହୋଇଯାଉଥିଲେ । କିନ୍ତୁ ଏବେ ସରକାର ଓ ବେସରକାରୀ ଅନୁଷ୍ଠାନ ଗୁଡ଼ିକର ମିଳିତ ଉଦ୍ୟମରେ ପ୍ରଦୂଷଣ ନିୟନ୍ତ୍ରଣ ଏଭଳି ସାଫଲ୍ୟ ଲାଭ କରିଛି ଯେ ଲୋକେ ଅତି ସୁନ୍ଦର ଓ ସୁସ୍ଥ ପରିବେଶ ଉପଭୋଗ କରି ସମଗ୍ର ବିଶ୍ୱର ଦୃଷ୍ଟି ଆକର୍ଷଣ କରିପାରିଛନ୍ତି । ସେହିପରି ବ୍ରିଟେନ୍‌ର ଲଣ୍ଡନ ସହର ମଧ୍ୟରେ ପ୍ରବାହିତ ଟେମ୍‌ସ ନଦୀର ଜଳ ଅତ୍ୟଧିକ ପ୍ରଦୂଷିତ ହେବା ଫଳରେ କହିଁର ମାଛ ମରି ଯାଉଥିଲେ । ସେଠରେ ମଧ ଜଳ ପ୍ରଦୂଷଣକୁ ସଫଳତାର ସହିତ ରୋକି ପରିଥିବାରୁ ନଦୀ ପାଣିରେ ମାଛ ମରୁନାହାନ୍ତି । ଆମେରିକା ଭଳି ଅଧିକ ବିଜ୍ଞାନ ଓ ଶିଳ୍ପ କ୍ଷେତ୍ରରେ ଉନ୍ନତି ଘଟିଥିବା ଦେଶର ଆରମ୍ଭ କରି ସେହିଭଳି ଅନ୍ୟ ଦେଶମାନଙ୍କରେ ମଧ ପ୍ରଦୂଷଣକୁ ନିୟନ୍ତ୍ରଣ କରିବା ପାଇଁ ବିଭିନ୍ନ ସଫଳ ପଦକ୍ଷେପମାନ ଗ୍ରହଣ କରାଗଲାଣି । ଏହି ସଫଳତା ଅର୍ଜନରେ କେବଳ ଯେ ବୈଜ୍ଞାନିକ ଯନ୍ତ୍ରପାତିର ଆବଶ୍ୟକତା ରହିଛି ତା ନୁହେଁ ଜଙ୍ଗଲ ସୁରକ୍ଷା ଅଧିକ ମାତ୍ରାରେ କରାଯାଇ ବୃକ୍ଷଲତା ଦ୍ୱାରା ଆଚ୍ଛାଦିତ କରିବାରେ ପ୍ରଦୂଷଣ ସୁରକ୍ଷା ଯେ ଅଧିକ ମାତ୍ରାରେ ସଫଳ ହୋଇ ପାରିବ ଏଥିରେ କୌଣସି ସନ୍ଦେହ ନାହିଁ । ବିଶ୍ୱର ବିଖ୍ୟାତ ପରିବେଶ ବିଜ୍ଞାନୀମାନେ ମଧ ଏହି ମତ ପୋଷଣ କରିଥନ୍ତି ।

ଆମ ଭାରତବର୍ଷରେ ଶିଳ୍ପାୟନ ମାତ୍ର କେତେକ ମୁଷ୍ଟିମେୟ ସହର ତଥା ଶିଳ୍ପାଞ୍ଚଳମାନଙ୍କରେ ପ୍ରଦୂଷଣ ଏକ ସମସ୍ୟା ହୋଇ ଦେଖା ଦେଇଥିଲେ ହେଁ ଦେଶର ବିସ୍ତୃତ ଅଞ୍ଚଳରେ ବାୟୁ ପ୍ରଦୂଷଣ ଏକ ସମସ୍ୟା ରୂପେ ଦେଖା

ଦେଇନାହିଁ । ଆମ ଦେଶ ଆଧୁନିକ ପ୍ରଗତିର ସଫଳ ରୂପାୟନରେ ପାଶ୍ଚାତ୍ୟ ଉନ୍ନତ ଦେଶମାନଙ୍କଠାରୁ ବହୁ ପଛରେ ପଡ଼ିଥିବାରୁ ତାହା ଯେ ପ୍ରକାରାନ୍ତରେ ଏକ ଆଶୀର୍ବାଦ ହୋଇଛି ଏଥିବରେ ସନ୍ଦେହ ନାହିଁ । ଏହି କାରଣରୁ ଆମ ଦେଶରେ ନୂତନ ଶିଳ୍ପାନୁଷ୍ଠାନମାନ ପ୍ରତିଷ୍ଠା କରି ଆର୍ଥିକ ଉନ୍ନତି ନ କରିବା ପାଇଁ ମୁଁ କହୁନାହିଁ । ତେବେ ସେଭଳି ଉନ୍ନତ ଶିଳ୍ପ ପ୍ରତିଷ୍ଠା କରିବା ସଙ୍ଗେ ସଙ୍ଗେ ଆବଶ୍ୟକୀୟ ପ୍ରଦୂଷଣ ନିୟନ୍ତ୍ରଣ କାର୍ଯ୍ୟକ୍ରମମାନ ମଧ୍ୟ ଗ୍ରହଣ କରାଯିବା ସଙ୍ଗେ ସଙ୍ଗେ ଜଙ୍ଗଲ ତଥା ବୃକ୍ଷଲତା ସଂରକ୍ଷଣ କଲେ ପ୍ରଦୂଷଣକୁ ନିୟନ୍ତ୍ରଣ କରିବା ପାଇଁ ଅବଶ୍ୟକ ଯନ୍ତ୍ରପାତି ଲଗାଇବା ପାଇଁ ଏବେ ସରକାର ଆଗରୁ ପ୍ରତିଷ୍ଠିତ ହୋଇଥିବା କଳକାରଖାନା ସବୁକୁ ଆଇନ ବଳରେ ବାଧ୍ୟ କରାଯାଉଛି ଏବଂ ନୂତନ କରି ପ୍ରତିଷ୍ଠା କରାଯାଇଥିବା ଶିଳ୍ପ କାରଖାନା ଗୁଡ଼ିକର ତିଆରି କଲାବେଳେ ପ୍ରଦୂଷଣ ନିୟନ୍ତ୍ରଣକାରୀ ଯନ୍ତ୍ରପାତି ଖଞ୍ଜା ନ ଗଲେ ଉକ୍ତ ଶିଳ୍ପମାନଙ୍କୁ ଉତ୍ପାଦନ କରିବାକୁ ବା ପ୍ରତିଷ୍ଠା କରିବାକୁ ଅନୁମତି ଦିଆଯାଉ ନାହିଁ । କିନ୍ତୁ ତା ସତ୍ତ୍ୱେ ସରକାରୀ କ୍ଷେତ୍ରରେ ଏବଂ ଘରୋଇ ଶିଳ୍ପମାନଙ୍କରେ ତଥା ସରକାରୀ ନିୟନ୍ତ୍ରିତ କଳକାରଖାନା ମାନଙ୍କରେ ପ୍ରଦୂଷଣ ନିୟନ୍ତ୍ରଣ ଦିଗରେ ପ୍ରକୃତ ଆନ୍ତରିକତା ପ୍ରକାଶ ପାଉ ନଥିବାରୁ ପ୍ରଦୂଷଣ ନିୟନ୍ତ୍ରଣ ଯଥାର୍ଥ ହୋଇପାରୁ ନାହିଁ ଏହା ସମସ୍ତେ ସ୍ୱୀକାର କରିବେ । ଏପରିକି ସମ୍ପୂର୍ଣ୍ଣ ପ୍ରଦୂଷଣ ନିୟନ୍ତ୍ରଣ କରିବାକୁ ୧୯୮୬ ମସିହାରେ କେନ୍ଦ୍ର ସରକାର ପ୍ରଦୂଷଣ ନିୟନ୍ତ୍ରଣ ଆଇନ୍ (ବାୟୁ ଓ ଜଳ) କରିଛନ୍ତି ତହିଁରେ ବହୁ ତ୍ରୁଟି ଥିବାର ମଧ୍ୟ ଦେଖା ଯାଉଛି । ଯାହା ଫଳରେ ପ୍ରଦୂଷଣ ଆଇନ୍ ଭଙ୍ଗ କରୁଥିବା ବ୍ୟକ୍ତିମାନଙ୍କୁ ଅନେକ କ୍ଷେତ୍ରରେ ଦଣ୍ଡ ଦିଆଯିବା ସମ୍ଭବ ହୋଇ ପାରୁନାହିଁ । ଆଇନ୍ ଜନିତ ତ୍ରୁଟିର ସୁବିଧା ନେଇ ପ୍ରଦୂଷଣକରୀମାନେ ଦଣ୍ଡ ବିଧାନରୁ ଖସି ଯାଉଛନ୍ତି । ଏହି ଆଇନ୍‌ର ଆବଶ୍ୟକ ସଂଶୋଧନ କରାଯାଇ ତହିଁର କଡ଼ାକଡ଼ି ନିୟନ୍ତ୍ରଣ ପାଇଁ ଆବଶ୍ୟକ ପଦକ୍ଷେପ ନେବାରେ ସରକାରଙ୍କର ଉଚ୍ଚପଦସ୍ଥ କର୍ମଚାରୀ (ବ୍ୟୁରୋକ୍ରେଟ୍ସ)ମାନଙ୍କର ଧନୀ ଶିଳ୍ପପତିମାନଙ୍କ ସହ ଏକ ସମ୍ମିଳିତ ଷଡ଼ଯନ୍ତ୍ର ଯେ ଚାଲିଛି ଏହା କହିବା ଅତ୍ୟୁକ୍ତି ହେବ ନାହିଁ । ତେଣୁ ଏହି ଅବସ୍ଥାରେ ଜନସାଧାରଣ ଯେଉଁମାନେ ଦେଶର ମେରୁଦଣ୍ଡ ସେମାନଙ୍କ ଭିତରେ ପରିବେଶ ବା ପାରିପାର୍ଶ୍ୱିକ ପରିସ୍ଥିତି ସୁରକ୍ଷା ସମ୍ବନ୍ଧରେ ଯଦି ଜନଚେତନା କରି ପାରିବା ତେବେ ସେମାନଙ୍କ (ସଚେତନ ନାଗରିକ) ଓ ତାଙ୍କ ପ୍ରତିନିଧିମାନେ ସରକାରଙ୍କୁ ପ୍ରଭାବିତ କରି ଏ ଦାଗରେ ଅନେକ ପ୍ରଗତି ସାଧନ କରି ପାରିବେ ।

ପ୍ରାୟ ଏକବର୍ଷ ତଳେ ଦକ୍ଷିଣ ଆମେରିକାର ବ୍ରାଜିଲ ଦେଶରେ ବିଖ୍ୟାତ 'ରାଇଓ' ସହରରେ ଯେଉଁ ଦ୍ୱିତୀୟ ବିଶ୍ୱ ବିଖ୍ୟାତ ତଥା ଅତି ବୃହତ ପରିବେଶ ସଂକ୍ରାନ୍ତିୟ ଧରିତ୍ରୀ ସମ୍ମିଳନୀ ଏକ ସପ୍ତାହ ଧରି ଅନୁଷ୍ଠିତ ହୋଇଥିଲା, ସେଥିରେ ଆମେରିକାଠାରୁ ଆରମ୍ଭ କରି ସମସ୍ତ ଉନ୍ନତ ଦେଶେ ଓ ଭାରତ ତଥା ଆଫ୍ରିକୀୟ ଦେଶ ଭଳି ବିକାଶମୁଖୀ ଦେଶ ଗୁଡ଼ିକର ରାଷ୍ଟ୍ର ନାୟକମାନେ ମଧ୍ୟ ଏହି ଅଧିବେଶନରେ ଯୋଗ ଦେଇ ଆଲୋଚନାରେ ଭାଗ ନେଇଥିଲେ । ଏହି ଐତିହାସିକ ବିଶ୍ୱ ପରିବେଶ ସମ୍ମିଳନୀରେ ପ୍ରତିନିଧିମାନେ ବିଶ୍ୱର ପରିବେଶ ସୁରକ୍ଷା ପାଇଁ ସମୂହ ଉଦ୍ୟମ କରିବା ଲାଗି ଯେଉଁ ନିଷ୍ପତ୍ତିମାନ ଗ୍ରହଣ କରିଛନ୍ତି ଗରିବ ଅନୁନ୍ନତ ଦେଶ ଗୁଡ଼ିକୁ ପରିବେଶ ସୁରକ୍ଷା ଦିଗରେ ଅର୍ଥ ଓ ଯାନ୍ତ୍ରିକ ସାହାଯ୍ୟ ଦେବାର ମଧ୍ୟ ନିଷ୍ପତ୍ତି ଗ୍ରହଣ କରିଛନ୍ତି ଓ ସେଥି ପାଇଁ ଏକ ପାଣ୍ଠି ଗଠନ ମଧ୍ୟ କରାଯାଇଛି । ବିଶ୍ୱର ବିଭିନ୍ନ ଦେଶ ତାଙ୍କ ଦେଶର ବାର୍ଷିକ ବଜେଟ୍‌ରୁ .୦୭ (ଶତାଂଶ) ଅର୍ଥ ପ୍ରତିବର୍ଷ ମିଳିତ ଜାତି ସଂଘର ଏକ ଶାଖା ଅନୁଷ୍ଠାନକୁ ଦେବେ । ଯେଉଁ ଅନୁଷ୍ଠାନ କି ଏହି ଅଧିବେଶନ ବସିବାର ଆୟୋଜନ କରିଥିଲେ । ଶ୍ରୀଯୁକ୍ତ ଷ୍ଟୋଙ୍ଗ ଯିଏକି ଜାତିସଂଘ ତରଫରୁ ଏହି ଅଧବବେଶନ ପରିଚାଳନାର ସମସ୍ତ ଦାୟିତ୍ୱ ବହନ କରିଥିଲେ । ଏହି ଅଧିବେଶନରେ ଅନ୍ୟାନ୍ୟ ନିଷ୍ପତ୍ତି ମଧ୍ୟରେ ଜଙ୍ଗଲ ସମ୍ପୂର୍ଣ୍ଣ ରୂପେ ସୁରକ୍ଷା କରିବା ସଙ୍ଗେ ସଙ୍ଗେ ତହିଁର ଉନ୍ନତି କରିବା ଦିଗରେ ଯଥାର୍ଥ କାର୍ଯ୍ୟକ୍ରମ ଗ୍ରହଣ କରିବା ସ୍ଥିର ହେଲା । ଏହି ସମ୍ମିଳନୀରେ ଭାରତର ପ୍ରଧାନମନ୍ତ୍ରୀ ଶ୍ରୀଯୁକ୍ତ ନରସିଂହ ରାଓ ଯୋଗ ଦେଇ ଆମ ଦେଶରେ ପରିବେଶ ଓ ଜଙ୍ଗଲ ସଂରକ୍ଷଣ ଦିଗରେ ଆବଶ୍ୟକ ପଦକ୍ଷେପ ନେଇ ଥିବାର ପ୍ରକାଶ କରିବାରୁ ପୃଥିବୀର ଅନ୍ୟ ଜଙ୍ଗଲ ନଥିବା ଦେଶମାନଙ୍କର ବିଶେଷ ଦୃଷ୍ଟି ଆକର୍ଷଣ କରିଥିଲେ । ଜନସଂଖ୍ୟା ଗତ ୩୦

ବର୍ଷ ଭିତରେ ଯେଉଁଳି ଭାବରେ ବୃଦ୍ଧି ପାଉଛି ବିଶେଷ କରି ଭାରତବର୍ଷ ଓ ଆଫ୍ରିକୀୟ ଭଳି ବିକାଶମୁଖୀ ଦେଶମାନଙ୍କ ଭିତରେ ଏହା କେବଳ ତାଙ୍କ ପାଇଁ ନୁହେଁ ସମଗ୍ର ବିଶ୍ୱରେ ବିପଦ ସୃଷ୍ଟି କରୁଛି । ଏତଦ୍ ବ୍ୟତୀତ ବିଭିନ୍ନ ପ୍ରକାର କଳକାରଖାନା, ଆକାଶ ଓ ସ୍ଥଳ ଭାଗରେ ପ୍ରଚଳନ କରିବା ପାଇଁ ବିଭିନ୍ନ ପ୍ରକାର ଯାନବାହନର ପ୍ରବଳ ସଂଖ୍ୟାରେ ବୃଦ୍ଧି ଏବଂ ସର୍ବୋପରି ସମୁଦ୍ର, ଆକାଶ ଓ ଭୂଭାଗରେ ଯେଉଁ ପରିମାଣରେ କ୍ଷେପଣାସ୍ତ୍ର ଓ ପରମାଣୁ ବୋମାମାନଙ୍କର ପରୀକ୍ଷା ଚାଲିଛି ତାହା ଯେ ସମଗ୍ର ମାନବ ଜାତି ତଥା ସମସ୍ତ ସୃଷ୍ଟିକୁ ଆଜି ଧ୍ୱଂସ ମୁଖୀ କରିଛି । ଧନ ଓ ଶକ୍ତି ତଥା ବିଜ୍ଞାନ କ୍ଷେତ୍ରରେ ପ୍ରଗତି କରୁଥିବା ଯେଉଁ ଦେଶମାନେ ଗର୍ବ ଓ ଅହଂକାର ପୋଷଣ କରୁଛନ୍ତି ତଥା ଅନ୍ୟ ଗରିବ ଦେଶମାନଙ୍କୁ ଭୟଭୀତ କରି ସେମାନେ ହିଁ ଏହି ଧ୍ୱଂସାଭିମୁଖୀ କାର୍ଯ୍ୟକ୍ରମର ଅଗ୍ରଣୀ ହୋଇଥିବା ନିଃସନ୍ଦେହରେ କୁହାଯାଇପାରେ । ଉପରୋକ୍ତ କାର୍ଯ୍ୟକ୍ରମ ଗୁଡ଼ିକ ଫଳରେ ଯେଉଁ ପରିମାଣରେ ଅଙ୍ଗାରକାମ୍ଳର ପରିମାଣ ବୃଦ୍ଧି ପାଇ ପୃଥିବୀର ବାୟୁମଣ୍ଡଳକୁ ଗ୍ରାସ କରି ଚାଲିଛି ଏବଂ ଅନ୍ୟ ପକ୍ଷରେ ମଣିଷ ତଥା ଅନ୍ୟ ଜୀବଜନ୍ତୁଙ୍କ ଜୀବନ ରକ୍ଷାକରୀ ଅମ୍ଳଜାନ କ୍ରମେ ବାୟୁମଣ୍ଡଳରୁ ଧ୍ୱଂସ ଆଡ଼କୁ ଟାଣି ନେଇ ଯାଉଛି । ଗତ ୩୦ ବର୍ଷ ତଳେ ବିଶ୍ୱର ବହୁ ବିଶିଷ୍ଟ ପରିବେଶ ବିଜ୍ଞାନୀ ପରିବେଶ ନିୟନ୍ତ୍ରଣ କରି ଏହି ଅବଶ୍ୟମ୍ଭାବୀ ଧ୍ୱଂସ ମୁଖରୁ ପୃଥିବୀକୁ ରକ୍ଷା କରିବା ପାଇଁ ଚେତାବନୀ ଦେବା ଫଳରେ ରାଷ୍ଟ୍ରନାୟକ ମାନଙ୍କର ପ୍ରଥମ ସମ୍ମିଳନୀ ଆରମ୍ଭ ହୋଇଥିଲା ୧୯୭୨ ମସିହାରେ । ତେଣୁ ସେତେବେଳେ ରାଷ୍ଟ୍ରନାୟକମାନେ ପରିବେଶ ସୁରକ୍ଷା ପାଇଁ ଯେଉଁ ପଦକ୍ଷେପ ଗ୍ରହଣ କରିବାର ନିଷ୍ପତ୍ତି ଗ୍ରହଣ କରିଥିଲେ ତହିଁର ଯଥାର୍ଥ ସମୀକ୍ଷା କରିବା ସମ୍ପର୍କରେ ରାଷ୍ଟ୍ରନାୟକମାନଙ୍କର ଦ୍ୱିତୀୟ ଅଧିବେଶନ ଅନୁଷ୍ଠିତ ହୋଇଥିଲା ଦକ୍ଷିଣ ଆମେରିକାର ବ୍ରାଜିଲ ଠାରେ । କିନ୍ତୁ ଏତେ ଚେତାବନୀ ସତ୍ତ୍ୱେ ପରିବେଶ ସୁରକ୍ଷାର ଫଳାଫଳ ସେଭଳି ଆଶାଜନକ ଭାବେ ଆମ ଭଳି ଗରିବଦେଶ ମାନଙ୍କରେ ହୋଇ ପରିନଥିବାର ଜଣାଯାଉଛି । ୨୧ଶହ ଶତାବ୍ଦୀର ମଧ୍ୟ ଭାଗ ବେଳକୁ ଏକ ପ୍ରଳୟଙ୍କରୀ ଧ୍ୱଂସଲୀଳା ଘଟାଇବାର ଉକ୍ତ ପରିବେଶ ବିଜ୍ଞାନୀଙ୍କର ପ୍ରକାଶିତ ମତାମତରେ ଜଣା ପଡ଼ିଛି । ଏହି ସମୟବେଳକୁ ବାୟୁମଣ୍ଡଳରେ ଅଧିକ ପରିମାଣର ଅଙ୍ଗାରକାମ୍ଳ ବୃଦ୍ଧିପାଇ ସମଗ୍ର ବିଶ୍ୱର ଉପର ବାୟୁମଣ୍ଡଳକୁ ଦୂଷିତ କରିବା ସଙ୍ଗେ ସଙ୍ଗେ ପୃଥିବୀ ପୃଷ୍ଠର ବହୁ ଉଚ୍ଚରେ ସୂର୍ଯ୍ୟଙ୍କର ପ୍ରଖର ରଶ୍ମିର ପ୍ରକୋପରୁ ସୃଷ୍ଟିକୁ ରକ୍ଷା କରୁଥିବା ଏକ ବାୟୁମଣ୍ଡଳ [Ozon] ବହୁ ପରିମାଣରେ ନଷ୍ଟ ହୋଇଯିବାର ଆଶଙ୍କା ରହିଛି । ଏହାହିଁ ପୃଥିବୀର ଜଳବାୟୁ କ୍ଷେତ୍ରରେ ଏକ ବିରାଟ ପରିବର୍ତ୍ତନ ଆଣିବାର ଆଶଙ୍କା କରାଯାଉଛି । ଏଥିରୁ ସମଗ୍ର ସୃଷ୍ଟିକୁ ଅଧିକ ପରିମାଣରେ ରକ୍ଷା କରି ପାରିବାର ଶକ୍ତି ହେଉଛି ଅମ୍ଳଜାନ ବୃଦ୍ଧି । ବୃକ୍ଷଲତା ହିଁ ଯେପରି ବହୁଳ ଭାବେ ଯଦି ପୃଥିବୀ ପୃଷ୍ଠରେ ବୃଦ୍ଧି ପାଏ ତେବେ ସେହି କେବଳ ପୃଥିବୀକୁ ତଥା ସମଗ୍ର ଜୀବଜଗତକୁ ରକ୍ଷା କରିପାରିବ ।

ଓଡ଼ିଶାର ମୁଖ୍ୟମନ୍ତ୍ରୀ ଭାରତବର୍ଷର ଜଣେ ରାଷ୍ଟ୍ରନାୟକ ହୋଇଥିଲେ ମଧ୍ୟ ଏଭଳି ଏକ ଧ୍ୱଂସ.ଲୀଳା ପୃଥିବୀରେ ଘଟିବାକୁ ଯାଉଥିବାର ଉପଲବ୍ଧ କରି ନ ପାରିବା ଅତ୍ୟନ୍ତ ଦୁର୍ଭାଗ୍ୟର କଥା । ଓଡ଼ିଶା ଭଳି ଏକ ଦାରିଦ୍ର ରାଜ୍ୟରେ ଜନସାଧାରଣଙ୍କ ଆର୍ଥିକ ଉନ୍ନତିର ପରିକଳ୍ପନା କରି ବିଭିନ୍ନ ଉନ୍ନୟନମୂଳକ କାର୍ଯ୍ୟର ଯେଉଁ ଯୋଜନା କରୁଛନ୍ତି ସେଥିପାଇଁ ସେ ଯଥାର୍ଥରେ ଧନ୍ୟବାଦର ଅଧିକାରୀ କିନ୍ତୁ ଏହି ଯୋଜନାଗୁଡ଼ିକର ସଫଳ ରୂପାୟନ କ୍ଷେତ୍ରରେ ପରିବେଶ ତଥା ଜଙ୍ଗଲ ସୁରକ୍ଷାର ଯେଉଁ ଗୁରୁତ୍ୱପୂର୍ଣ୍ଣ ଆବଶ୍ୟକତା ରହିଛି ତାହା ସେ ଭୁଲି ଯାଉଛନ୍ତି କିପରି ? ଯୋଜନା ପ୍ରକଳ୍ପ ଗୁଡ଼ିକର କେତେକ କାର୍ଯ୍ୟ ସାଧନ ହେବା ଫଳରେ ଯଦି ଜଙ୍ଗଲ ସମ୍ପଦର ପ୍ରବଳ ଭାବରେ କ୍ଷତି ସାଧନ ହୁଏ ତେବେ ବର୍ଷା ଅଭାବରୁ ପରିକଳ୍ପିତ ଜଳ ସେଚନ ଯୋଜନା ଗୁଡ଼ିକ ବିଫଳ ହୋଇଯିବ ଏବଂ ଚାଲୁ ରହିଥିବା ଜଳ ବିଦ୍ୟୁତ ଶକ୍ତି କ୍ରମେ ହ୍ରାସ ଓ ଶେଷରେ ବିଲୋପ ଘଟିବା ଫଳରେ ବିଦ୍ୟୁତଶକ୍ତି ଉପରେ ନିର୍ଭର କରୁଥିବା ସମସ୍ତ ଯୋଜନା ଅଚଳ ହୋଇ ଯିବାର ବିପଦ ସେ ଭୁଲି ଯାଉଛନ୍ତି କିପରି ? ଅନ୍ୟ ଏକ ବିଶେଷ କାରଣ ପ୍ରବଳ ଭାବରେ ଜନସଂଖ୍ୟା ବୃଦ୍ଧି ମଧ୍ୟ ପରିବେଶକୁ ପ୍ରଦୂଷିତ କରିବାରେ ଅନ୍ୟ ଏକ ମୁଖ୍ୟ କାରଣ । ଯଦି ମୁଖ୍ୟମନ୍ତ୍ରୀ ଓଡ଼ିଶାକୁ ସମୃଦ୍ଧ କରିବାର ଆନ୍ତରିକ ଉଦ୍ୟମ କରିବାକୁ ଚାହାନ୍ତି ତାହାହେଲେ ଜଙ୍ଗଲ ସମ୍ପଦର ସମ୍ପୂର୍ଣ୍ଣ ସୁରକ୍ଷା ଓ ତହିଁର ଆବଶ୍ୟକ ପରିମାଣରେ

ବୃଦ୍ଧି କରିବା ସଙ୍ଗେ ସଙ୍ଗେ ଜନସଂଖ୍ୟାକୁ ବିଶେଷ ଭାବରେ କମାଇବାର ସଫଳତା ଲଭ କଲେ ସମଗ୍ର ଭାରତ ବର୍ଷରେ ସମସ୍ତଙ୍କର ଆଦର୍ଶ ହୋଇ ପାରିବେ । ତା ନହେଲେ ପ୍ରଦୂଷଣ ଯେଉଁ ପରିମାଣରେ ବଢ଼ି ଚାଲିଛି ତା ଫଳରେ ଆମେ ସମସ୍ତେ ଧ୍ୱଂସ ହୋଇଯିବା । ତାଙ୍କର ଉନ୍ନୟନ ପରିକଳ୍ପନା କାହାର ହିତ ସାଧନ କରିବ ? ଏହି ମୌଳିକ ପ୍ରଶ୍ନ ଦୁଇଟି ତାଙ୍କର ସକ୍ରିୟ ଦୃଷ୍ଟି ଆକର୍ଷଣ କରୁଛି । ବିଶେଷକରି ଓଡ଼ିଶାର କଳାହାଣ୍ଡି ଓ ବଲାଙ୍ଗୀର ଜିଲ୍ଲା ସମେତ ସମଗ୍ର ପଶ୍ଚିମାଞ୍ଚଳର ବନ ସମ୍ପଦ ବହୁ ଭାଗରେ ଧ୍ୱଂସ କରାଯିବାର ପରିଣାମରେ କ୍ରମାନ୍ୱୟରେ ଯେଉଁଭଳି ବର୍ଷାଭାବ ଓ ମରୁଡ଼ି ପରିସ୍ଥିତି ଉପୁଜୁଛି ଅବଶେଷରେ ସେସବୁ ଅଞ୍ଚଳ ଯେ ଏକ ମରୁଭୂମିରେ ପରିଣତ ହେବାକୁ ଯାଉଛି ସେଥିପାଇଁ ରାଜ୍ୟ ସରକାର ସଚେତନ ହେବା ଉଚିତ୍ । କେବଳ କେତୋଟି ଜଳସେଚନ ଯୋଜନା କାର୍ଯ୍ୟକାରୀ ହେଲେ ତାହା କେବଳ ସ୍ଥାୟୀ ପ୍ରତିକାର ହୋଇ ନ ପାରେ । ବହୁ ପରିମାଣରେ ସେ ଅଞ୍ଚଳରେ ତଥା ଓଡ଼ିଶାର ଅନ୍ୟାନ୍ୟ ଅଞ୍ଚଳରେ ଜଙ୍ଗଲ ସମ୍ପଦର ସଂରକ୍ଷଣ ଓ ବୃଦ୍ଧି ଏକାନ୍ତ ଆବଶ୍ୟକ । ଭାରତ ବର୍ଷର ହାରାହାରି ଜଙ୍ଗଲ ପରିମାଣ ସମଗ୍ର ଭୂଭାଗର ମାତ୍ର ଦଶ ଶତାଂଶରେ ପହଞ୍ଚିଲାଣି । ସମଗ୍ର ଭାରତ ବର୍ଷରେ କିଛି ପରିମାଣରେ ଜଙ୍ଗଲ ସମ୍ପଦ ଦେଖିବାକୁ ମିଳୁଛି କେବଳ ମୟୁରଭଞ୍ଜ ସମେତ ଭାରତବର୍ଷର ପୂର୍ବାଞ୍ଚଳ ରାଜ୍ୟମାନଙ୍କରେ । ମୟୁରଭଞ୍ଜ ଶିମିଳିପାଳ ପର୍ବତମାଳାର ଏ ଦିଗରେ ଅବଦାନ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ତାହା ଓଡ଼ିଶାର ବିସ୍ତୃତ ଅଞ୍ଚଳ ସମେତ ପଶ୍ଚିମବଙ୍ଗଳା ବିହାର ତଥା ମଧ୍ୟ ପ୍ରଦେଶର ବହୁ ଅଞ୍ଚଳର ପରିବେଶ ନିୟନ୍ତ୍ରଣ କରୁଛି । ପରିବେଶ ବୈଜ୍ଞାନିକଙ୍କ ମତରେ ଏହାର ସୁରକ୍ଷାର ଉତ୍ତରୋତ୍ତର ଉନ୍ନତି ପ୍ରତି ମୁଖ୍ୟମନ୍ତ୍ରୀ ଦୃଷ୍ଟି ଦେବେକି ?

ଏଥିରୁ ଜଣାଯାଉଛି ପରିବେଶ ସୁରକ୍ଷା ଓ ଉନ୍ନୟନ କାର୍ଯ୍ୟକ୍ରମ ଉଭୟଙ୍କର ପରସ୍ପର ପରିପୂରକ ଓ ଅନୁପୂରକ । ଉଭୟଙ୍କର ସହଯୋଗ ଓ ସହାବସ୍ଥାନରେ ହିଁ ଦେଶ ଅଗ୍ରଗତି କରି ପାରିବ, ତେବେ ବିବାଦ ରହିଲା କେଉଁଠି ?

## ଓଡ଼ିଶାର ହିମାଳୟ : ଶିମିଳିପାଳ : ବିପଜ୍ଜନକ ଅବକ୍ଷୟ

ମୟୁରଭଞ୍ଜ ଶିମିଳିପାଳ ପର୍ବତମାଳାକୁ ଯଥାର୍ଥରେ ଓଡ଼ିଶାର ହିମାଳୟ କହିଲେ କିଛି ଅତ୍ୟୁକ୍ତି ହେବ ନାହିଁ । ଦକ୍ଷିଣ-ପଶ୍ଚିମ ତଥା ବଙ୍ଗୋପସାଗରର ମୌସୁମୀ ପ୍ରବାହ ହିମାଳୟରେ ବାଧାପ୍ରାପ୍ତ ହୋଇ ଭାରତବର୍ଷରେ ବ୍ୟାପକ ବର୍ଷା କରିବା ପୂର୍ବରୁ ତାହା ପ୍ରଥମେ ମୟୁରଭଞ୍ଜର ଶିମିଳିପାଳ ମେଘାସନୀ ପର୍ବତମାଳରେ ବାଧା ପାଇବା ପରେ ମୟୁରଭଞ୍ଜ ତଥା ଓଡ଼ିଶାର ଅନ୍ୟାନ୍ୟ ଜିଲ୍ଲା ଏବଂ ବିହାର ଓ ପଶ୍ଚିମବଙ୍ଗର ସମଗ୍ର ଅଞ୍ଚଳରେ ଆଗ ବର୍ଷା ଦେଖାଦେଇଥାଏ । ଉକ୍ତ ଶିମିଳିପାଳ ପର୍ବତମାଳା ବଙ୍ଗୋପସାଗରରୁ ବାଲେଶ୍ୱର ଦେଇ ମାତ୍ର ପ୍ରାୟ ଶହ କିଲୋମିଟର ଦୂରରେ ରହିଥିବାରୁ ଓଡ଼ିଶାକୁ ଏହି ସୁବିଧା ଭୋଗ କରିବାର ସୁଯୋଗ ମିଳିପାରିଛି । ଶିମିଳିପାଳ ମେଘାସନୀ ପର୍ବତମାଳା କ୍ରାନ୍ତୀୟ ଅଞ୍ଚଳର ନିକଟବର୍ତ୍ତୀ ଅଞ୍ଚଳ ହୋଇଥିବାରୁ ଏଠାକାର ଘଞ୍ଚ ଓ ସବୁଜ ଜଙ୍ଗଲକୁ ଟ୍ରପିକାଲ ଅଞ୍ଚଳ ଜଙ୍ଗଲ ବୋଲି କୁହାଯାଏ । ତେଣୁ ଏଠାରେ ବର୍ଷର ଅଧିକାଂଶ ସମୟରେ ବର୍ଷା ଓ ସର୍ବୋଚ୍ଚ ପରିମାଣ ୧୬୦୦ ମିଲିମିଟର ହାରାହାରି ବର୍ଷା ହେଉଥିବାରୁ ଏହାକୁ ମଧ୍ୟ ଓଡ଼ିଶାର ଚେରାପୁଞ୍ଜି କହିଲେ ଅତ୍ୟୁକ୍ତି ହେବ ନାହିଁ । ଏଠାକାର ନାଲି ମାଟି ଓ ଲେଟାରାଇଟ୍, ସମତଳ ତଥା ପାର୍ବତ୍ୟ ଅଞ୍ଚଳରେ ଘନ ଜଙ୍ଗଲ ସୃଷ୍ଟି କରିବାରେ ସହାୟକ ହୋଇଥାଏ । ଶିମିଳିପାଳ ପର୍ବତମାଳା ପରି ଏତେ ବୃହତ୍ ଓ ବ୍ୟାପକ ଅଞ୍ଚଳରେ ପ୍ରାୟ ତିନି ହଜାରରୁ ଊର୍ଦ୍ଧ୍ୱ ବର୍ଗ କିଲୋମିଟର ପରିମିତ ଏକ ଲଗାଲଗି ବିଶେଷ କରି ଉତ୍କୃଷ୍ଟ ଶାଳଗଛ ଜଙ୍ଗଲ ଦେଖିବା ଭାରତରେ ବିରଳ । ଶାଳ ବ୍ୟତୀତ ଅତି ମୂଲ୍ୟବାନ ପିଆଶାଳ ଓ ଚମ୍ପା ଭଳି ପ୍ରାୟ ୧୫ ପ୍ରକାର ଉତ୍କୃଷ୍ଟ ଟିମ୍ବର ହେବାର ଗଛ ମିଳେ । ସର୍ବ ଭାରତୀୟ

କ୍ଷେତ୍ରରେ ଯେଉଁ ମୋଟ ଭୂଖଣ୍ଡର ଶତକଡ଼ା ହାରାହାରି ୧୦ ଭାଗ ମାତ୍ର ଜଙ୍ଗଲ ଥିବାର ସେଟେଲାଇଟର ବୈଜ୍ଞାନିକ ଗଣନାରୁ ଜଣାଯାଏ, ତାହା ବିଶେଷଭାବେ ଭାରତର ପୂର୍ବାଞ୍ଚଳ ତଥା ଓଡ଼ିଶା ଓ ମୟୁରଭଞ୍ଜରେ ଅଧିକ ଥିବାର ଜଣାଯାଏ । ଡ଼ଃ ଗୋପୀନାଥ ପାଣିଗ୍ରାହୀଙ୍କ ଭଳି ଆନ୍ତର୍ଜାତିକ ଖ୍ୟାତିସମ୍ପନ୍ନ ଉଦ୍ଭିଦ ବୈଜ୍ଞାନିକଙ୍କ ସର୍ଭେ ରାପୋର୍ଟରୁ ମଧ୍ୟ ଜଣାଯାଏ । ଓଡ଼ିଶାରେ ପ୍ରାୟ ମୋଟ ତିନି ହଜାର ଶ୍ରେଣୀର ବୃକ୍ଷଲତା ମଧ୍ୟରୁ ଶିମିଳିପାଳରେ କେବଳ ସେଥିମଧ୍ୟରୁ ୧୨୦୦ ପ୍ରକାର ଥିବାର ଜଣାଯାଏ । ଓଡ଼ିଶାରେ ଏ ପର୍ଯ୍ୟନ୍ତ ପ୍ରକାଶ ପାଇଥିବା ୧୨୩ ପ୍ରକାର ଅରକିଡ଼ (ମଦାଙ୍ଗ ବା ଚିତ୍ରା) ମଧ୍ୟରୁ କେବଳ ୯୩ ପ୍ରକାର ଅରକିଡ଼ ଏଠାରେ ଥିବାର ଶ୍ରୀ ଶରତ ଚନ୍ଦ୍ର ମିଶ୍ରଙ୍କ ଭଳି ବିଶେଷଜ୍ଞଙ୍କ ରାପୋର୍ଟରୁ ଜଣାଯାଇଛି । ଏଠାରେ ୧୫୦ ପ୍ରକାର ବନ ମହୌଷଧୀ ଗଛ ଦେଖିବାକୁ ମିଳିଥିବାର ଜଣାଯାଏ, ସର୍ଭେ ପୂର୍ଣ୍ଣ ହେଲେ ଆହୁରି ଅଧିକ ତଥ୍ୟ ମିଳିପାରେ । ଐତିହାସିକ ଓ ପ୍ରତ୍ନତତ୍ୱ ବିଶାରଦଙ୍କ ମତରୁ ଜଣାଯାଏ ଯେ ଦକ୍ଷିଣ ଭାରତର ପୁରାଣ ପ୍ରସିଦ୍ଧ ଓ ଐତିହାସିକ ଗଣ୍ଡୱାନା ଉପତ୍ୟକାର ଅନ୍ତର୍ଭୁକ୍ତ ଶିମିଳିପାଳ । ତେଣୁ ଏହାର ବୟସ ୧୨୦୦ ନିୟୁତ ବର୍ଷ ହେବ । ଐତିହାସିକମାନଙ୍କ ମତରେ ଗଣ୍ଡୱାନା ତଥା ଭାରତ-ଆଫ୍ରିକା ସହ ଦିନେ ସଂଯୋଗ ଥିବାରୁ ପ୍ରାୟ ୨୧ ପ୍ରକାର ବୃକ୍ଷଲତା ସହିତ ସାମଞ୍ଜସ୍ୟ ରହିଛି ବୋଲି କହନ୍ତି । ଭାରତବର୍ଷର ହିମାଳୟଠାରୁ କୁମାରୀକା ପର୍ଯ୍ୟନ୍ତ ବିଭିନ୍ନ ଜଳବାୟୁ ଜଡ଼ିତ ସମସ୍ତ ପ୍ରକାର ଜଙ୍ଗଲ ଓ ବୃକ୍ଷଲତା କେବଳ ଶିମିଳିପାଳରେ ଦେଖିବାକୁ ମିଳେ । ଅର୍ଥାତ ଏଠାରେ ଚିରହରିତ ଅର୍ଦ୍ଧ ଚିରହରିତ, ଆର୍ଦ୍ରପତ୍ର ଝଡ଼ା, ଶୁଷ୍କ ପତ୍ର ଝଡ଼ା, ତୃଣ ଜଙ୍ଗଲ, ବରଫ ସହନଶୀଳ ଇତ୍ୟାଦି ୭ ପ୍ରକାର ଜଙ୍ଗଲ ଦେଖିବାକୁ ମିଳେ । ହିମାଳୟର ପାଇନ ଗଛ ମଧ୍ୟ ଏଠାରେ ଭଲ ହୋଇଥିଲା ଏବଂ ବଡ଼ ବଡ଼ ଗଛ ହୋଇ ପାରିଥିଲା । ଶିମିଳିପାଳର ଧୁଡୁରୁ ଚମ୍ପାରେ ପାଇନ ବୃକ୍ଷ ଜନ୍ମି ବଡ଼ ହୋଇପାରିବାର ଜଳବାୟୁ ଥିବାର ଜଣାଯାଏ । ଦକ୍ଷିଣ ପଶ୍ଚିମ ଜଳବାୟୁ ନିୟନ୍ତ୍ରଣ କରି ପ୍ରଥମେ ଓଡ଼ିଶାର ମୟୁରଭଞ୍ଜ, ବାଲେଶ୍ୱର, କେଉଁଝର ଓ ବିହାରର ସିଂହଭୂମି ଏବଂ ପଶ୍ଚିମବଙ୍ଗର ମେଦିନୀପୁର ଜିଲ୍ଲାକୁ ଶିମିଳିପାଳ ଯେ ଶସ୍ୟ ଶ୍ୟାମଳା କରୁଛି ତାହା ନୁହେଁ, ଏହି ତିନି ରାଜ୍ୟରେ ଏହା ଅବସ୍ଥିତ ହୋଇଥିବାରୁ ଉକ୍ତ ତିନି ରାଜ୍ୟ ସମେତ ଭାରତର ଏକ ବିସ୍ତୀର୍ଣ୍ଣ ଅଞ୍ଚଳରେ ଦେଶର ସବୁଠାରୁ ମୂଲ୍ୟବାନ ସମ୍ପଦ ପରିବେଶ ସୁରକ୍ଷା କରି ମାନବ ଜାତି ତଥା ବିଶ୍ୱର ସମସ୍ତ ଜୀବ ଜଗତର ମଙ୍ଗଳ ସାଧନରେ ବ୍ରତୀ ହୋଇଛି । ସର୍ବୋପରି ଶିମିଳିପାଳର ପରିବେଶ ନିୟନ୍ତ୍ରଣ ଓଡ଼ିଶାକୁ ଏକ ଅବଶ୍ୟମ୍ଭାବୀ ମରୁଭୂମି ପରିଣତିରୁ ରକ୍ଷା କରି ପାରିଛି । ଭୌଗୋଳିକ ଗବେଷଣାରୁ ପ୍ରମାଣ ମିଳେ ଯେ ଆଫ୍ରିକା ମହାଦେଶର ସାହାରା ମରୁଭୂମି ଓ ଭାରତର ରାଜସ୍ଥାନସ୍ଥ ଥର ମରୁଭୂମି ବିଶ୍ୱ ମାନଚିତ୍ରରେ ଯେଉଁ ଅକ୍ଷାଂଶ ଉପରେ ଅବସ୍ଥିତ, ଠିକ ସେହି ଅକ୍ଷାଂଶ ଉପରେ ଓଡ଼ିଶା ଓ ଶିମିଳିପାଳ ପ୍ରାୟ ଅବସ୍ଥିତ । ତେଣୁ ଶିମିଳିପାଳ ମେଘାସନୀର ବିସ୍ତୀର୍ଣ୍ଣ ଓ ଘଞ୍ଚ ଜଙ୍ଗଲ ଓଡ଼ିଶାକୁ ଏକ ଅମଶ୍ୟମ୍ଭାବୀ ମରୁଭୂମିରୁ କାଳ କାଳ ଧରି ରକ୍ଷା କରି ଆସି ଥିବାର ଜ୍ୱଳନ୍ତ ପ୍ରମାଣ ଥିଲେହେଁ କ୍ଷୋଭ ଓ ପରିତାପର ବିଷୟ ଯେ, ଓଡ଼ିଶାର କ୍ରମାଗତ ସମସ୍ତ ସରକାର ଦିନେ ହେଲେ ଏହି ଐତିହାସିକ ପର୍ବତମାଳାର ଗୁରୁତ୍ୱ ଅନୁଭବ କରିନାହାନ୍ତି । ବରଂ ତହିଁର ବିପଜ୍ଜନକ ଦ୍ରୁତ କ୍ଷୟ ସାଧନରେ ପ୍ରକାରାନ୍ତର ସହାୟକ ହୋଇଛନ୍ତି । ଠିକ୍ ସେହି ଭଳି ଗନ୍ଧମାର୍ଦ୍ଦନ, ଭିତରକନିକା ଓ ସାତକୋଶିଆ ଭଳି ଅତି ମୂଲ୍ୟବାନ ଓ ଅତି ବିରଳ ଜଙ୍ଗଲଗୁଡ଼ିକୁ ରାଜ୍ୟ ସରକାର ସାଧାରଣ ଭାବେ ରକ୍ଷା କରିବାରେ ଯତ୍ନବାନ ହେଉନାହାନ୍ତି, ଉନ୍ନତି ସାଧନ ତ ବହୁତ ବଡ଼ କଥା । ଭିତରକନିକା ହେନ୍ତାଳ ଜଙ୍ଗଲ ପୃଥିବୀରେ ସୁନ୍ଦରବନ ବ୍ୟତୀତ ଆଉ କେଉଁଠି ଦେଖିବାକୁ ମିଳେ ନାହିଁ । ସୌଭାଗ୍ୟ ଯେ ଓଡ଼ିଶା ଶିମିଳିପାଳ-ମେଘାସନୀ ପର୍ବତମାଳା, ଗନ୍ଧମାର୍ଦ୍ଦନ ଭଳି ବନ-ମହୌଷଧୀପୂର୍ଣ୍ଣ ପର୍ବତ ଓ ଭିତରକନିକା ଭଳି ବିରଳ ଜଙ୍ଗଲ ଧାରଣ କରି ଗୌରବାନ୍ୱିତ ହୋଇପାରିଛି ।

ଆଗରୁ କୁହାଯାଇଛି, ଆକାଶ ମାର୍ଗର ଅନ୍ତରୀଣ ସାଟେଲାଇଟ୍‌ରେ ବୈଜ୍ଞାନିକ ଗବେଷଣାରୁ ଜଣାଯାଏ ଭାରତର ପୂର୍ବାଞ୍ଚଳରେ ଯେଉଁମାତ୍ରାର ଜଙ୍ଗଲ ରହିପାରିଥିବାର ଦେଖାଯାଇଛି, ସେଥିମଧ୍ୟରେ ଓଡ଼ିଶାର ତଥା ଶିମିଳିପାଳ ବନସମ୍ପଦ ମୁଖ୍ୟ । ପ୍ରକୃତିର ଏହି ଅମୂଲ୍ୟ ସମ୍ପଦ ଯାହା ବିଶ୍ୱ ତଥା ତହିଁର ସମସ୍ତ ପ୍ରକାର ଜୀବଜଗତର କଲ୍ୟାଣ

ପାଇଁ ଉଦ୍ଦିଷ୍ଟ, ତହିଁର ଏଭଳି ଅବକ୍ଷୟ ଆରମ୍ଭ ହୋଇଛି ଯେ, ତହିଁର ଯଥାର୍ଥ ପ୍ରତିକାର ନ ହେଲେ ଆଉ ମାତ୍ର କେତେ ବର୍ଷ ମଧ୍ୟରେ ଓଡ଼ିଶା ତଥା ଶିମିଳିପାଳ ମଧ୍ୟ ଜଙ୍ଗଲ ଶୂନ୍ୟ ହୋଇ ଯିବ ଏବଂ ଶେଷରେ ଏକ ମରୁଭୂମିରେ ପରିଣତ ହେବାକୁ ଯିବ । ତହିଁର ପଦଧ୍ୱନି ଏବେ ଓଡ଼ିଶାର କଳାହାଣ୍ଡି ଓ ବଲାଙ୍ଗିର ଜିଲ୍ଲାର ଘନଘନ ଉତ୍କଟ ମରୁଡ଼ି ପରିସ୍ଥିତିରୁ ସୂଚନା ମିଳେ । କଳାହାଣ୍ଡି ଓ ବଲାଙ୍ଗୀର ଦୁଇଟି ପୂର୍ବତନ ଗଡ଼ଜାତ ଅଞ୍ଚଳ । ଏହା ଜଙ୍ଗଲ ସଂପଦ ଓ ବିଶେଷକରି ଅତି ମୂଲ୍ୟବାନ ଶାଗୁଆନ ଓ ଚନ୍ଦନ ଜଙ୍ଗଲ ଏବଂ ସାଧାରଣ ବନସଂପଦରେ ଦିନେ ଭରପୂର ଥିଲା । ମୟୁରଭଞ୍ଜ ରାଜ୍ୟର ମିଶ୍ରଣର ଅବ୍ୟବହିତ ପୂର୍ବ ଓ ପରବର୍ତ୍ତୀ ଓଡ଼ିଶା ସରକାରଙ୍କ ଅବହେଳା ଓ ଜନସାଧାରଣଙ୍କ ଅଜ୍ଞାତରେ ହିଁ ତହିଁର ବିଲୋପ ଘଟିଥିବା ଯୋଗୁଁ ଆଜିର ଏହି ଦୁର୍ଦ୍ଦିନ । ଏକ ବିଶେଷଜ୍ଞଙ୍କ ଗବେଷଣାରୁ ଜଣାଯାଏ (ଡ଼ଃ ଗୋପୀନାଥ ପାଣିଗ୍ରାହୀ ଆନ୍ତର୍ଜାତିକ ଖ୍ୟାତି ସଂପନ୍ନ ଉଦ୍ଭିଦ ବିଶେଷଜ୍ଞଙ୍କ ରାପୋର୍ଟ) ଯେଓଡ଼ିଶାରେ ପ୍ରାୟ ଗତ ଦୁଇ ଦଶନ୍ଧି ହେଲା ଦୈନିକ ସର୍ବମୋଟ ୨.୫ ବର୍ଗ କି.ମି.ର ଜଙ୍ଗଲ ବିଭିନ୍ନ ଭାବେ ସଫା କରାଯାଉଛି । ଶିମିଳିପାଳ ମଧ୍ୟ ଏକ ପୂର୍ବ ଗଡ଼ଜାତ ଅଞ୍ଚଳ ହୋଇଥିଲେ ହେଁ ସେଠାକାର ଦରବାର ଶାସନ କେବେହେଲେ ଜଙ୍ଗଲ ଧ୍ୱଂସ କରିବାକୁ ଦେଇ ନ ଥିଲା । ଯଦିଓ ଶେଷ ବେଳେକୁ ବୈଜ୍ଞାନିକପ୍ରଣାଳୀର working plan ମୟୂରଭଞ୍ଜରେ ଆରମ୍ଭ ହୋଇ ସାରିଥିଲା । ଓଡ଼ିଶା ସହିତ ମିଶ୍ରଣ ବେଳକୁ କିନ୍ତୁ ତହିଁ ପୂର୍ବରୁ ରେଳବାଇକୁ ଯେଉଁ ଟିମ୍ବର (ସ୍ଲିପର) ଯୋଗା ଯାଉଥିଲା, ଶିମିଳିପାଳ ଜଙ୍ଗଲରୁ ତାହା ବୈଜ୍ଞାନିକ ପ୍ରଣାଳୀର ହୋଇ ନ ଥିଲେ ହେଁ କୌଣସି ଟିମ୍ବର ହେବା ଗଛ ୫ଫୁଟ୍ ଗୋଲେଇରୁ କମ୍‌ଗୁଡ଼ିକୁ କାଟିବାକୁ ସରକାରୀ ନିର୍ଦ୍ଦେଶ ନ ଥିଲା, ତହିଁର ବ୍ୟତିକ୍ରମ ହେଲେ ଗୁରୁତର ଦଣ୍ଡ ଦିଆଯାଉଥିଲା । ତେଣୁ ମୟୂରଭଞ୍ଜର ଶିମିଳିପାଳ ମେଘାସନି ପର୍ବତମାଳାର ସେପରି ନୌଶର୍ଯ୍ୟ ଜଙ୍ଗଲ ନଷ୍ଟ ହୋଇ ନ ଥିଲା, ପାଖ କେଉଁଝର ଓ ଅନ୍ୟ ଅଞ୍ଚଳ ପରି । ମିଶ୍ରଣ ପରେ ପ୍ରଥମେ ସରକାରୀ ପରିଚାଳନା ବାବଦ କର୍ମଚାରୀ କମାଇ ଦେବାରୁ ସମତଳ ଜଙ୍ଗଲ ବିଶେଷ ଭାବେ ନଷ୍ଟ ହେବାକୁ ଲାଗିଲା ଏବଂ ପ୍ରାୟ ପ୍ରଥମ ୩୦ ବର୍ଷ ମଧ୍ୟରେ ତହିଁର ଶତକଡ଼ା ୭୦ ଭାଗ ନଷ୍ଟ ହୋଇଗଲା ଏବଂ ଏବେ ପ୍ରାୟ ୧୦/୧୫ ବର୍ଷ ହେଲା ଶିମିଳିପାଳ ଉପରେ ଆକ୍ରମଣ ଆରମ୍ଭ ହୋଇଛି, ବିଶେ କରି ସରକାରଙ୍କ S.F.D.C. (ଶିମିଳିପାଳ ଉନ୍ନୟନ ନିଗମ) ଅରମ୍ଭ ହେଲା ଦିନୁ । ଉକ୍ତ ନିଗମର ଗଛକଟା ଜନ ଆନ୍ଦୋଳନ ଫଳରେ ସରକାର ନିଗମର ଗଛକଟା କାର୍ଯ୍ୟକ୍ରମ ଗତ ୧୯୮୩ରୁ ବନ୍ଦ କରିଥିବଲେ ହେଁ ପ୍ରଶାସନିକ ଅବହେଳାରୁ ଚୋରା ଚାଲାଣ ଏ ପର୍ଯ୍ୟନ୍ତ ବ୍ୟାପକ ଭାବେ ଚାଲିଥିବାର ଦେଖାଯାଉଛି । ସମତଳ ଜଙ୍ଗଲ ବ୍ୟତୀତ ଶିମିଳିପାଳ ସୁରକ୍ଷିତ ମୋଟ ପ୍ରାୟ ୨୭୦୦ ବର୍ଗ କିଲୋମିଟର ଜଙ୍ଗଲରୁ ଅଧାଅଧି ନଷ୍ଟ ହେଲାଣି । ପ୍ରାୟ ଏକ ହଜାର ମିଟର ଉଚ୍ଚ (୪ ହଜାର ଫୁଟ) ଉଚ୍ଚରେ ଥିବା ମେଘାସନି ପର୍ବତର ନିମ୍ନ ଅଞ୍ଚଳରେ ଦୁଇଟି ସ୍ଥାନରେ ପ୍ରାୟ ଦୁଇ କିମି. ଲମ୍ବର ଫାଟ ପ୍ରାୟ ଦୁଇବର୍ଷ ହେଲା ଦେଖାଦେଲେ ମଧ୍ୟ ଜଙ୍ଗଲ ବିଭାଗ ତଥା ନିଗମ ନିଷ୍କ୍ରିୟ । ଏହିଭଳି ଗଛ କମିଯିବା ଯୋଗେ ମୃତ୍ତିକା କ୍ଷୟ ପ୍ରବଳ ଭାବେ ଘଟିଥିବା ଯୋଗୁଁ ଉକ୍ତ ଫାଟ ହୋଇଥିବାର ଜଣାଯାଇଛି ।

୧୯୮୨ ମସିହାରୁ ଓଡ଼ିଶାର ପାରିପାର୍ଶ୍ୱିକ ସମିତି (Orissa Environmental Society)ଗଠନ ହୋଲା ଦିନୁ ଉକ୍ତ ବେସରକାରୀ ଅନୁଷ୍ଠାନ ତରଫରୁ ରାଜ୍ୟର ପରିପେଶ ସୁରକ୍ଷା ସଙ୍ଗେ ସଙ୍ଗେ ଗ୍ରାମାଞ୍ଚଳରେ ଜଙ୍ଗଲ ରକ୍ଷା ଓ ଶିମିଳିପାଳ ପର୍ବତମାଳାର ସମସ୍ତ ପାରିପାର୍ଶ୍ୱିକ ଭୂମଣ୍ଡଳ ସଂରକ୍ଷଣ ବା Biosphere Reserve ପାଇଁ ରାଜ୍ୟ ଓ କେନ୍ଦ୍ର ସରକାର ଏବଂ ଜାତିସଘ ସଂଗଠନ (UNESCO) ର ପରିବେଶ ଶାଖାର ମଧ୍ୟ ଦୃଷ୍ଟି ଆକର୍ଷଣ କରିଆସିଛି । ରାଜ୍ୟ ସରକାରଙ୍କ ଅଜ୍ଞତା ଓ କେନ୍ଦ୍ର ସରକାରଙ୍କ ଦୂରଦୃଷ୍ଟିହୀନତା ପାଇଁ ଗତ ୧୯୭୮ ମସିହାରେ UNESCO ର MAB ଶାଖା ତରଫରୁ ଶିମିଳିପାଳ ଜୀବମଣ୍ଡଳର ଉନ୍ନୟନ ପାଇଁ ଆସିଥିବା ପ୍ରସ୍ତାବ ପ୍ରତ୍ୟାଖ୍ୟାନ କରାଯାଇଥିବାରୁ ସବୁଦିନ ପାଇଁ ଶିମିଳିପାଳ ସେଥିରୁ ବଞ୍ଚିତ ହୋଇଛି । ଯାହାଉ, ଏବେ ଶୁଣିବାକୁ ପାଇଲି ଗତ ୧୭/୭/୯୩ ତାରିଖ ସମାଜରେ ପ୍ରକାଶିତ ସମ୍ବାଦରୁ ଜଣାଯାଏ ଯେ ନିକଟରେ ପୁଣି ଜାତିସଂଘ ଉନ୍ନୟନ କାର୍ଯ୍ୟକ୍ରମ (UNDP)ର ପରାମର୍ଶରେ ବିଶ୍ୱବ୍ୟାଙ୍କ ଉକ୍ତ ଶିମିଳିପାଳ ପର୍ବତମାଳା ସମେତ ତହିଁର ଚରିପାଖ ୧୦ କି.ମି.

ବ୍ୟାସାଞ୍ଚଳରେ ଥିବା ଜଙ୍ଗଲ ଓ ଜନବସତି ସମୂହର ପରିବେଶ ଉନ୍ନୟନ ପାଇଁ ମୋଟ ଦଶକୋଟି ଟଙ୍କାର ଏକ ଯୋଜନାର ପ୍ରସ୍ତାବ ଭାରତ ସରକାରଙ୍କ ଜରିଆରେ ଓଡ଼ିଶା ରାଜ୍ୟ ସରକାରଙ୍କୁ ଜଣାଯାଇଛି ।

ଗତ ୬/୭/୯୩ରେ ବିଶ୍ୱବ୍ୟାଙ୍କର ପ୍ରତିନିଧିମାନେ ଦିଲ୍ଲୀ ଆସି କେନ୍ଦ୍ର ସରକାରଙ୍କ ସଙ୍ଗେ ଆଲୋଚନା କରି ଚଳିତ ଅଗଷ୍ଟମାସ ଶେଷସୁଦ୍ଧା ୧୦ କୋଟି ଟଙ୍କାର ପରିବେଶ ଯୋଜନା ଶିମିଳିପାଳ ପାଇଁ ପ୍ରସ୍ତୁତ କରି କେନ୍ଦ୍ର ସରକାରଙ୍କଠାରେ ଦେଇଯାଇଛନ୍ତି । କିନ୍ତୁ କ୍ଷୋଭର ବିଷୟ ଯେ ରାଜ୍ୟସରକାରଙ୍କ ଜଙ୍ଗଲ ବିଭାଗକୁ ପଚାରିବାରେ କିଛି କହିପାରିଲେ ନାହିଁ । ଏହା ଯଦି ସତ୍ୟ ହୋଇଥାଏ, ତେବେ ତାହା ରାଜ୍ୟ ସରକାର ପକ୍ଷରେ ଏକ ଅକ୍ଷମଣୀୟ ଅପରାଧ ଛଡ଼ା ଆଉ କ'ଣ ହୋଇପାରେ ?

ଏଭଳି ସଂଯୁକ୍ତ ରାଷ୍ଟ୍ର ସମୂହ (UNDP)ରୁ ଭାରତକୁ ଆସିଥିବା ମୋଟ ୮ଟି ପ୍ରସ୍ତାବ ମଧ୍ୟରୁ ଓଡ଼ିଶାର ଶିମିଳିପାଳ ଅନ୍ୟତମ । ଉକ୍ତ ସମ୍ବାଦ ପରିବେଷଣରୁ ଜଣାଯାଏ, ସେ ଏହି ପ୍ରସ୍ତାବ ସେଠା ଶିମିଳିପାଳ ଅନ୍ତର୍ଗତ ବ୍ୟାଘ୍ରଯୋଜନାର କ୍ଷେତ୍ର ପରିଚାଳକ (Field Diretor) ସେଠା ଶିମିଳିପାଳ ପ୍ରଶାସନର ଅନ୍ୟ ଦୁଇ ଡ଼ି.ଏଫ.ଓ.ଙ୍କ ସହିତ ମିଳିତ ହୋଇ ଶିମିଳିପାଳର ବ୍ୟାଘ୍ର ଯୋଜନା (୮୪୦ ବର୍ଗ କି.ମି.), ଶିମିଳିପାଳ ଜାତୀୟ ଉଦ୍ୟାନ (୧୯୦୦ ବର୍ଗ କି.ମି.) ଓ ଦୁଇଟି (କରଞ୍ଜିଆ ଓ ବାରିପଦା) ଡ଼ିଭିଜନ ଶିମିଳିପାଳ ଅଞ୍ଚଳର ପ୍ରାୟ ମୋଟ ୮ ଶହ ବର୍ଗ କି.ମି. ଜଙ୍ଗଲ ଅଞ୍ଚଳ ଗୋଟିଏ ବା ଏକ ପରିଚାଳନା ଅଧୀନ କରାଯାଇ ଉକ୍ତ ବ୍ୟାଘ୍ର ଯୋଜନାର ପରିଚାଳନା ଅଧକ୍ଷ (Field Director)ଙ୍କ ଦାୟିତ୍ୱରେ ରଖାଗଲେ U.N.D.P.ର ପ୍ରସ୍ତବିତ ଶିମିଳିପାଳର ପରିବେଶ ଉନ୍ନୟନ ଯଥାର୍ଥ ଭାବେ ହୋଇପାରିବ ବୋଲି ମଧ୍ୟ କେନ୍ଦ୍ର ଓ ରାଜ୍ୟ ସରକାରଙ୍କୁ ଜଣାଇ ଦିଆଯାଇ ଥିବାର ପ୍ରକାଶ ଅତ୍ୟନ୍ତ କ୍ଷୋଭ ଓ ଦୁର୍ଭାଗ୍ୟଜନକ ଘଟଣା ।

## ଧର୍ମ ନିରପେକ୍ଷତାର ଜନ୍ମ ଭାରତରୁ

ଗଣତନ୍ତ୍ର ଓ ଧର୍ମନିରପେକ୍ଷତା ପାଇଁ ଭାରତ ସମଗ୍ର ବିଶ୍ୱରେ ସମ୍ମାନିତ ଓ ଆଦୃତ । ଏହି ଦୁଇ ଆଦର୍ଶର ମୌଳିକ ନୀତି ହଜାର ହଜାର ବର୍ଷ ଧରି ଭାରତୀୟ ସଂସ୍କୃତି ଓ ଜନଜୀବନକୁ ଯେ, ପ୍ରଭାବିତ କରି ଆସିଛି ଏହା କହିବା ବାହୁଲ୍ୟମାତ୍ର । ପୌରାଣିକ ଯୁଗର ଋଷିମୁନିମାନଙ୍କର ଆଶ୍ରମରୁ ମାନବ କଲ୍ୟାଣ ପାଇଁ ଦିନେ ଯେଉଁ ମହାନ ଅମୃତବାଣୀ (ବସୁଧୈବ କୁଟୁମ୍ବକମ୍) ଝଙ୍କାରିତ ହୋଇଥିଲା, ତାହା ଯେ, କେବଳ ଭାରତବାସୀଙ୍କ ପାଇଁ ମହା ଅବଦାନ ଥିଲା ତାହା ନୁହେ:, ସମସ୍ତ ବିଶ୍ୱର ମାନବ ସଭ୍ୟତା ପାଇଁ କାଳ କାଳ ଲାଗି ଥିଲା ଏକ ଦିଗ୍‌ଦର୍ଶନ । ମଣିଷ ମଣିଷ ଓ ଜାତି ଜାତି ଏବଂ ଧର୍ମ ଧର୍ମ ଓ ଦେଶ ଦେଶ ମଧ୍ୟରେ ସମସ୍ତ ବିଭେଦ ଭୁଲିଯାଇ ଭ୍ରାତୃତ୍ୱର ଗୋଟିଏ ବନ୍ଧନରେ ଆବଦ୍ଧ ହେବା ପାଇଁ ଏଉ ଝଙ୍କାର ଥିଲା ସମସ୍ତ ମାଦବ ଜାତିକୁ ଏକ ଆହ୍ୱାନ । ଆଜି ଦେଶ ଦେଶ ମଧ୍ୟରେ ବିବାଦ, ଯୁଦ୍ଧ ବିଗ୍ରହ, ପରମାଣୁ ଅସ୍ତ୍ରର ଧ୍ୱଂସଲୀଳା, ଶୋଷଣ ଓ ଅତ୍ୟାଚାର ଏବଂ ସର୍ବୋପରି ଏବର ଘଟୁଥିବା ସାଂପ୍ରଦାୟିକ ଧର୍ମ ଓ ଜାତିଆଣ ଭାବ ଜନିତ ନିଷ୍ଠୁର ଗଣହତ୍ୟାର ଏକମାତ୍ର ପ୍ରତିକାର ସମାଧାନର ବାଟ । ଯେତେବେଳେ ଶିକ୍ଷା ଓ ସଭ୍ୟତାର ଆଲୋକରୁ ବିଶ୍ୱର ବହୁ ଦେଶ ଦୂରରେ ରହି ଏକ ଘୋର ଅନ୍ଧକାର ମଧ୍ୟରେ ଜାତିକୁ ଏକ ନୂତନ ଦିଗ୍‌ଦର୍ଶନ ଓ ଅହ୍ୱାନ ଦେଇଥିଲା, ଭାରତର ଘଞ୍ଚ ଜଙ୍ଗଲ ପର୍ବତର ଗୁହା ମଧ୍ୟରେ ଅତି ପବିତ୍ର ଜୀବନଯାପନ କରୁଥିବା ମହାନ ସାଧକ ଓ ଜ୍ଞାନୀ ମୁନିଋଷିଙ୍କର ଏଇ ଅମୃତବାଣୀ । ସେହି ଜଙ୍ଗଲ ପର୍ବତର ପବିତ୍ର ପରିବେଶ ମଧ୍ୟରେ ଉକ୍ତ ମୁନିଋଷିଗଣ ବେଦ ବେଦାନ୍ତ, ଉପନିଷଦ ଓ ମହାପୁରାଣ ରାମାୟଣ ମହାଭାରତ ଭଳି ଅତି ମୂଲ୍ୟବାନ ଓ ଜ୍ଞାନସମ୍ପନ୍ନ ଯେଉଁ ପୁସ୍ତକାବଳୀ ରଚନାକରି ଯାଇଛନ୍ତି ତାହା ଅଜି ମଧ୍ୟ କେବଳ ଭାରତବାସୀ ନୁହନ୍ତି ବରଂ ପୃଥିବୀର ଅନେକ ଅନ୍ୟ ଦେଶମାନଙ୍କୁ ମଧ୍ୟ ନୂତନ ଶିକ୍ଷା ଓ ଜ୍ଞାନାଲୋକ ପ୍ରଦାନ କରୁଛି । ତେଣୁ ଏହି

ସାଧନାର ପୀଠ ପବିତ୍ର ଭାରତ ଭୂମିକୁ ଏକ ଦେବଭୂମି ବୋଲି କହି ଏହାର ଧୂଳିମାଟିକୁ ନେଇ ଲୋକେ ମୁଣ୍ଡରେ ଲଗାନ୍ତି ଓ ସମ୍ମାନ ଦିଅନ୍ତି । ଆଜି ସେହି ମହାନ ଦେଶ ଭାରତ ବର୍ଷରେ ଧର୍ମ ଜାତି ଓ ସଂପ୍ରଦାୟ ମଧ୍ୟରେ ହତ୍ୟା, ଲୁଟତରାଜ ଭଳି ଅତି ଅମାନୁଷିକ ଘଟଣା ଘଟି ନିରପରାଧ ରକ୍ତରେ ମା'ର ମାଟି ରଞ୍ଜିତ ହେଉଛି ।

ଏହାଠାରୁ ଆଉ ଦୁଃଖ ଓ ଦୁର୍ଭାଗ୍ୟର ବିଷୟ ଆଉ କ'ଣ ହୋଇପାରେ । ପୁରୁଷ ଶ୍ରେଷ୍ଠ ଶ୍ରୀ ପୁରୁଷୋତ୍ତମ ବା ଶ୍ରୀରାମଙ୍କ ନାମରେ ଯେଉଁମାନେ ଅନ୍ୟର ଏକ ଧର୍ମପୀଠକୁ ଅଯୋଧ୍ୟା ଭଳି ଏକ ପବିତ୍ର ସ୍ଥାନରେ ସମ୍ମିଳିତ ଭାବେ ଅକୁଣ୍ଠିତ ଚିତ୍ତରେ ଧୂଳିସାତ୍ କରି ଦେଇଛନ୍ତି, ସେମାନେ ଯେ ଭାରତବର୍ଷର ଚିରଦିନ ଗ୍ରହଣ କରି ଆସିଥିବା ଧର୍ମନିରପେକ୍ଷତାର ସୌଧକୁ ବିଲୋପ କରିଛନ୍ତି ଏହାଠାରୁ ଆଉ ଜଘନ୍ୟ ଓ କଳଙ୍କିତ ଅଧ୍ୟାୟ କ'ଣ ହୋଇପାରେ । ସେମାନେ ଏଭଳି ଏକ ଅମାନୁଷିକ ଓ ଜଘନ୍ୟ ଧର୍ମଦ୍ରୋହୀ କର୍ମ କରିଥିଲେହେଁ ତାହା ସେମାନେ ଏବେ ବି ବୁଝିବାକୁ ଅକ୍ଷମ । ତାହା ହୋଇନ ଥିଲେ ସେମାନଙ୍କ ମଧ୍ୟରୁ କେତେକ ଆଜି ମଧ୍ୟ ନିର୍ଲଜ୍ଜ ଭାବେ କହିପାରୁନଥାନ୍ତେ ଅନ୍ୟର ଏଇ ଧର୍ମପୀଠ ଭାଙ୍ଗିବା ଆମର ଏକ ଗର୍ବ । ଚଳିତ ଡ଼ିସେମ୍ବର ୬ ତାରିଖ ଦିନ ଉକ୍ତ ଅଯୋଧ୍ୟରେ ଏଭଳି ଦୁଷ୍କର୍ମରେ ଯୋଗ ଦେଇଥିବା କେତେକ ଧାର୍ମିକ ବୋଲାଉଥିବା ମହନ୍ତ ଓ ସାଧୁସନ୍ଥ ଏବଂ ସେମାନଙ୍କ ଆଦର୍ଶରେ ବିଶ୍ୱାସ କରୁଥିବା କେତେକ ରାଜନୈତିକ ଓ ଅଣରାଜନୈତିକ ଲୋକ ସେମାନେ ସେମାନଙ୍କର ଯଦି ଟିକିଏ ହେଲେ ମହାପୁରୁଷ ଶ୍ରୀରାମଙ୍କର ଆଦର୍ଶ ଉପରେ ବିଶ୍ୱାସ ଥାଆନ୍ତା ତେବେ ସେମାନେ ଯେବେହେଲେ ରାବଣ ପରି ଏଭଳି ହୀନ କାମ କରି ପାରିନଥାନ୍ତେ । ମୁଁ ସେହି ତଥାକଥିତ ମାନ୍ୟବର ରାମଭକ୍ତମାନଙ୍କୁ ଅତି ନମ୍ରତାର ସହିତ ପଚାରିବାକୁ ଚାହେଁ ଯେ ସେମାନେ କ'ଣ ଭରତର ମହାନ ଯୋଗୀ ସ୍ୱାମୀ ବିବେକାନନ୍ଦଙ୍କ ଠାରୁ ସନାତନ ଧର୍ମ ସଂକ୍ରାନ୍ତରେ ଅଧିକ ଜ୍ଞାନୀ ? ଯେଉଁ ସ୍ୱାମୀ ବିବେକାନନ୍ଦ ଆମେରିକାର ସିକାଗୋ ସହରରେ ଅନୁଷ୍ଠିତ ହୋଇଥିବା ବିଶ୍ୱର ଏକ ମହାନ ଧର୍ମସଭାରେ ଭାରତବର୍ଷର ସନାତନ (ହିନ୍ଦୁ) ଧର୍ମର ପ୍ରତିନିଧିତ୍ୱ କରି ଭାରତର ସନାତନ ଧର୍ମ ଓ ସଂସ୍କୃତି ଏବଂ ମାନବିକ ମୂଲ୍ୟବୋଧର ଶ୍ରେଷ୍ଠତ୍ୱ ପ୍ରତିପାଦନ କରିଥିଲେ ତାଙ୍କଠାରୁ ଏହି ପଣ୍ଡିତ ଓ ସନ୍ଥମାମନେ କ'ଣ ସନାତନ ସଂସ୍କୃତିକୁ ଅଧିକ ବିଶ୍ଳେଷଣ କରି ପରିଛନ୍ତି ? ଏଥିପୂର୍ବରୁ ଏହି ବିଶ୍ୱର ସର୍ବଶ୍ରେଷ୍ଠ ଧର୍ମସଭାରେ ସନାତନ ଧର୍ମର କୌଣସି ପ୍ରତିନିଧିତ୍ୱ ନ ଥିବାରୁ ଯୋଗ ଦେଇଥିବା ଅନ୍ୟ ଧର୍ମାବଲମ୍ବୀମାନେ ବହୁ କୁସଂସ୍କାର ଓ ନିନ୍ଦନୀୟ କଥାମାନ କହିଥିଲେ । ଏଣୁ ବିବେକାନନ୍ଦ ଏହି ଧର୍ମସଭାରେ ଭାଷଣ ଦେବାକୁ ଯାଇ ଉପସ୍ଥିତ ଧର୍ମାବଲମ୍ବୀମାନଙ୍କୁ ସମ୍ବୋଧନ କରି ଥିଲେ "ଭଉଣୀ ଓ ଭାଇମାନେ", ଯେଉଁଠାରେ ଏଥିପୂର୍ବରୁ ଅନ୍ୟମାନେ ସମ୍ବୋଧନ କରୁଥିଲେ Ladies & gentlemen । ସ୍ୱାମୀ ବିବେକାନନ୍ଦଙ୍କର ଏଇ ଭାଇଭଉଣୀ ସମ୍ବୋଧନ ପ୍ରଥମେ ସମସ୍ତଙ୍କୁ ଚମତ୍କୃତ କରିଥିଲା । ତେଣୁ ଏହାକୁ ବିଶ୍ଳେଷଣ କରି କହିଥିଲେ ଏହା ହେଉଛି ଭାରତର ମହାନ ସଂସ୍କୃତି "ବସୁଧୈବ କୁଟୁମ୍ବକମ୍" ଅର୍ଥାତ ଭାରତ ବିଶ୍ୱର ସମସ୍ତ ମାନବଜାତିକୁ ଏକ ପରିବାରଭୁକ୍ତ ବୋଲି ବିଚାର କରେ । ପୃଥିବୀର କୌଣସି ଦେଶ ତଥା ସଂସ୍କୃତିର ଏଭଳି ନିଦର୍ଶନ ବିରଳ । ସେ ତାଙ୍କ ଭାଷଣରେ କହିଥିବା ଭାଷାର ସମ୍ୟକ ଅଂଶ ନିମ୍ନରେ ବ୍ୟକ୍ତ କଲି-

I am proud to belong to a religion which has taught the world tolerance and universal acceptance.......I am proud to belong to a nation which has sheltered the persecuted and refugees of all religions and all nations of the earth.

ଭାରତୀୟ ସଂସ୍କୃତିର ଏଇ ମୌଳିକ ପରମ୍ପରା ହେଉଛି ସହାଶୀଳତା । ଅନ୍ୟ ଧର୍ମ ଓ ମତ ବା ବିଶ୍ୱାସକୁ ସମ୍ମାନ ଦେବା । ଏହାହିଁ ମାନବ ସଭ୍ୟତାର ସର୍ବଶ୍ରେଷ୍ଠ ମୂଲ୍ୟବୋଧ ବିଚାରଧାର ଓ ଏହାହିଁ ଗଣତନ୍ତ୍ର ଓ ଧର୍ମ

ନିରପେକ୍ଷତାର ମହାନ କଲ୍ୟାଣକାରୀ ଆଦର୍ଶ । ଏହା ଭାରତର ବିଶ୍ୱକୁ ଏକ ମହାନ ଅବଦାନ ହୋଇଥିବାରୁ ଭାରତବାସୀ ପ୍ରତ୍ୟେକ ଜାତି ଧର୍ମ ନିର୍ବିଶେଷରେ ଗର୍ବ ଅନୁଭବ କରିବା ଉଚିତ ।

ଗତ ଅଷ୍ଟମ ଓ ନବମ ଶତାବ୍ଦୀ ସମୟରେ ପ୍ରାୟ ଏକ ହଜାର ବର୍ଷ ପୂର୍ବେ ଆଫଗାନମାନେ ପ୍ରଥମେ ଭାରତ ଆକ୍ରମଣ କରି ସିନ୍ଧୁ ପ୍ରଦେଶକୁ ଦଖଲ କରି ନେଲାପରେ ଭାରତର ଅତୁଳ ଧନ ସମ୍ପଦ ଲୁଟ୍ କରିବାର ଯେଉଁ କୁପ୍ରୟାସ କରିଥିଲେ କାହା କିପରି ଧନ ସମ୍ପତ୍ତିର ଆହରଣ ପରିବର୍ତ୍ତେ ଭାରତର ଜ୍ଞାନ ଆହରଣରେ ପରିଣତ ହେଲା ଏବଂ ଶେଷରେ ଇସ୍‌ଲାମ ଓ ଭାରତୀୟ ସଂସ୍କୃତି ମଧ୍ୟରେ ଏକ ଅପୂର୍ବ ସମନ୍ୱୟ ଘଟି ପ୍ରକୃତ ରାମରାଜ୍ୟ ପ୍ରତିଷ୍ଠାର ବାତାବରଣ ସୃଷ୍ଟି କରିଥିଲା ତାହା ଓଡ଼ିଶାର ପୂର୍ବତନ ରାଜ୍ୟପାଳ ଡ଼ଃ ବିଶ୍ୱମ୍ଭର ନାଥ ପାଣ୍ଡେଙ୍କ ଦ୍ୱରା ଲିଖିତ 'Islam and Indian culture' ନାମକ ଏକ ପୁସ୍ତକରେ ଦେଖିବାକୁ ମିଳେ । ସେହି ପୁସ୍ତକରେ ବ୍ରିଟେନ୍‌ର କେମ୍ବ୍ରିଜ ବିଶ୍ୱବିଦ୍ୟାଳୟରେ ସଂରକ୍ଷିତ ଇତିହାତ 'Histoty of India' Volume-3ରୁ ଉଦ୍ଧାର କରିଥିବାର କିୟଦଂଶ ଶ୍ରୀ ପାଣ୍ଡେଙ୍କର ପୁସ୍ତକରୁ ଉଲେନଲଖ କଲି ।

"When the Arabs came to India they were astonished at the superioty of the civilization which they found here. The submity of Indian philosophical ideas and the richness of the Indian intellect were a strange revelation to them."

Arab scholars sat at the feet of Buddhists Monks and Brahmins Pandit to learn philosophy astronomy mathematics, Medicine, Chemistry and other subjects of study. The Court of Bagdad extended its petronage to Indian scholarship.

ଅର୍ଥାତ୍ ଇସଲାମ ଧର୍ମାବଲମ୍ୱୀମାନେ ଭାରତୀୟ ଶିକ୍ଷା ସଂସ୍କୃତି ତଥା ବେଦ ବେଦାନ୍ତ ଓ ଉପନିଷଦର ଲିଖିତ ଉଚ୍ଚ କୋଟୀର ଜ୍ଞାନ ଦେଖି ଏପରି ମୁଗ୍ଧ ହୋଇଗଲେ ଯେ ସେମାନଙ୍କ ମଧ୍ୟରୁ ଅନେକ ମୁନି ଋଷି ଓ ବ୍ରାହ୍ମଣ ପଣ୍ଡିତଙ୍କର ପାଦ ତଳେ ବସି ଭାରତୀୟ ବେଦ ବେଦାନ୍ତ ଉପନିଷଦ ବିଜ୍ଞାନ ଓ ଚିକିତ୍ସା ତଥା ରାମାୟଣ, ମହାଭାରତ ଏବଂ ଯୋଗଜ୍ଞାନ ଇତ୍ୟାଦି ଯେ କେବଳ ଶିକ୍ଷା କଲେ ତା ନୁହେଁ ତାକୁ ନିଜ ଆରବ ଭାଷାରେ ଅନୁବାଦ କରି ନିଜ ଦେଶକୁ ନେଇଗଲେ ଏବଂ ତାହା ପରସ୍ୟ ଆରବର ୟୁରୋପର ଗ୍ରୀସ୍ ଦେଶ ତଥା ଇଉରୋପର ଅନ୍ୟ ଦେଶ ବିଦେଶଗୁଡ଼ିକୁ ସଂପ୍ରସାରିତ ହୋଇଥିଲା । ଭରତର ଜ୍ଞାନାଲୋକରେ ସେମାନେ ଏଭଳି ବିହ୍ୱଳ ହୋଇଥିଲେ ଯେ ହିନ୍ଦୁ ଏକ ଅନ୍ୟ ଧର୍ମ ଓ ସଂସ୍କୃତି ବୋଲି ସେମାନେ ଭୁଲି ଯାଇଥିଲେ ।

ଏହାପରେ ଉଭୟ ସଂସ୍କୃତିର ଜ୍ଞାନର ଅଧିକ ଆଦାନ ପ୍ରଦାନ ପାଇଁ ସେଠାକାର ମେସୋପୋଟାମିୟା, ଜୁଣ୍ଡା, ସାପୁର, ଡାମସ୍କାସ୍ ଓ ବାଗଦାଦ୍‌ଠାରେ ନୂତନ ପ୍ରଶିକ୍ଷଣ କେନ୍ଦ୍ରମାନ ଖୋଲାଯାଇ ଭାରତରୁ ହିନ୍ଦୁ ମେଧାବୀଛାତ୍ର, ପଣ୍ଡିତମାନଙ୍କୁ ଉକ୍ତ କେନ୍ଦ୍ରମାନଙ୍କୁ ନିମନ୍ତ୍ରଣ କରି ନେଇ ସେଠାରେ ମୁସଲମାନ ଛାତ୍ରମାନଙ୍କୁ ବିଜ୍ଞାନ ଓ ଯୋଗ ସମ୍ପର୍କରେ ଶିକ୍ଷା ଦେବାର ବ୍ୟବସ୍ଥା କରାଯାଇଥିଲା । ଏତଦ୍ ବ୍ୟତୀତ ଭାରତର ଚିକିତ୍ସକ ଜ୍ୟୋତିଷ ପଣ୍ଡିତ ଓ ବୈଜ୍ଞାନିକମାନଙ୍କୁ ବାଗଦାଦକୁ ନିମନ୍ତ୍ରଣ କରି ଭାରତୀୟ ବେଦ ବେଦାନ୍ତ ଚିକିତ୍ସା ବିଜ୍ଞାନ ତଥା ଅନ୍ୟାନ୍ୟ ବିଜ୍ଞାନ ଓ ଯୋଗ ଏବଂ ଧର୍ମ ଶାସ୍ତ୍ରଗୁଡ଼ିକ ଆରବ ଭାଷାରେ ଅନୁବାଦ କରାଯାଇ ବହୁ ସମୟରେ ବାଗଦାଦ ଓ ଅନ୍ୟ ଶିକ୍ଷା କେନ୍ଦ୍ରମାନଙ୍କରେ ଡ଼କାଇ ସେଠାରେ ଆଲୋଚନା କେନ୍ଦ୍ରମାନଙ୍କରେ ମୁସଲମାନ ଯୁବକମାନଙ୍କୁ ଶିକ୍ଷା ଦେବାର ବ୍ୟବସ୍ଥା

ମଧ୍ୟ କରାଯାଇଥିଲା । ଏଭଳି ପରସ୍ପର ମଧ୍ୟରେ ଜ୍ଞାନର ଆଦାନ ପ୍ରଦାନ ଓ ମିଳାମିଶା ଫଳରେ ଉଭୟ ସମ୍ପ୍ରଦାୟ ମଧ୍ୟରେ ଅତି ସୁସମ୍ପର୍କ ପ୍ରତିଷ୍ଠା ହେବା ଫଳରେ ଏକ ଅତି ସୌହାର୍ଦ୍ଧ୍ୟପୂର୍ଣ୍ଣ ବାତାବରଣ ସୃଷ୍ଟି ହୋଇଥିଲା ।

ଏଭଳି ଶିକ୍ଷା ଓ ଜ୍ଞାନର ଆଦାନ ପ୍ରଦାନ ପାଇଁ ଆରବ ଲୋକଙ୍କ ଭିତରେ ଯେଉଁ ଆଗ୍ରହ ଓ ଉତ୍ସାହ ସୃଷ୍ଟି ହୋଇଥିଲା ତାହା କେବଳ ଭାରତୀୟଙ୍କର ସହନଶୀଳତା, ଉଦାର ପରମ୍ପରାର ମନୋଭାବ ପାଇଁ ଏହିଠାରୁ ହିଁ ଭାରତୀୟ ଓ ମୁସଲମାନଙ୍କ ମଧ୍ୟରେ ଧର୍ମବିରୋଧ ଲୋପ ହୋଇଗଲା ଓ କ୍ରମେ ଉଭୟ ସଂପ୍ରଦାୟର ରକ୍ଷଣଶୀଳ ବ୍ୟକ୍ତିମାନେ ମଧ୍ୟ ପ୍ରଭାବିତ ହେବାକୁ ଲାଗିଲେ । ଭାରତରେ ଧର୍ମ ନିରପେକ୍ଷତାର ଜନ୍ମ ଏହି ସମସ୍ତଘଟଣବଳୀରୁ ପ୍ରାୟ ହଜାର ହଜାର ବର୍ଷ ପୂର୍ବରୁ କ୍ରମେ ଏହି ସୌହାର୍ଦ୍ଧ୍ୟ ବାତାବରଣ ହିନ୍ଦୁ ମୁସଲମାନମାନଙ୍କ ମଧ୍ୟରେ ଏଭଳି ନିଗୁଢ଼ ହେବାକୁ ଲାଗିଲା ଯାହା ଫଳରେ ହିନ୍ଦୁ ମୁସଲମାନମାନଙ୍କ ମଧ୍ୟରେ କେତେକ କ୍ଷେତ୍ରରେ ବୈବାହିକ ସମ୍ପର୍କମାନ ମଧ୍ୟ ପ୍ରତିଷ୍ଠା ହେଲା । ସେତେବେଳର ଭାରତର ସମ୍ରାଟ ଆକବରଙ୍କ ସମୟରେ ହିଁ ଏହି ସୁସମ୍ପର୍କ ଅଧିକ ବୃଦ୍ଧି ପାଇଲା । ସେ ନିଜେ ରାଜପୁତନାର ଜଣେ ରାଜା ମାନସିଂଙ୍କର ଭଉଣୀକୁ ବିବାହ କରିଥିଲେ ଏବଂ ମୁସଲମାନ ସମ୍ରାଟଙ୍କର ରାଜପ୍ରାସାଦ ମଧ୍ୟରେ ହିନ୍ଦୁ ରାଣୀଙ୍କ ଦ୍ୱାରା ପୂଜା ପାର୍ବଣ ଅନୁଷ୍ଠିତ ହେଉଥିଲା । ହିନ୍ଦୁ ମୁସଲମାନଙ୍କ ଅଧିକ ମିଳନ ପାଇଁ ସେ ସମୟରେ ସତ୍ୟପୀର ପୂଜା ଆରମ୍ଭ ହୋଇଥିଲା । ଓଡ଼ିଶାର ଖୋର୍ଦ୍ଧାଠାରେ ଏବେ ମଧ୍ୟ ପୀର ଦେବତା ହିନ୍ଦୁ ମୁସଲମାନ ଉଭୟଙ୍କ ଦ୍ୱରା ପୂଜିତ । ବିଭିନ୍ନ ମୁସଲମାନ ହିନ୍ଦୁ ମନ୍ଦିର ଭାଙ୍ଗି ଥିବାର ପ୍ରମାଣ ମିଳେ । କିନ୍ତୁ ସାଧାରଣ ଭାବେ ଉଭୟ ସଂପ୍ରଦାୟ ମଧ୍ୟରେ ଏକ ସୌହାର୍ଦ୍ଧ୍ୟପୂର୍ଣ୍ଣ ବାତାବରଣ ପ୍ରତିଷ୍ଠିତ ହୋଇଥିଲା ତାହା ଏବେ ବି ପ୍ରମାଣ ମିଳେ । ସେତେବେଳର ଭାରତର ଜ୍ଞାନ ଗାରିମାରେ ମୁଗ୍ଧହୋଇ ଯେଉଁ ପରିଦର୍ଶକମାନେ ଆସୁଥିଲେ ଏବଂ ଏପରିକି ଅନେକ ମୁସଲମାନ ଓ ଐତିହାସିକ ଆରବ ଭାଷାରେ ଲେଖାଯାଇଥିବା ବିବରଣୀରୁ ପ୍ରମାଣ ମିଳେ । ଚୀନର ପରିବ୍ରାଜକ ହେନସାଂଙ୍କର ବିବରଣୀରୁ ମଧ୍ୟ ଭାରତୀୟ ସଂସ୍କୃତି ସହନଶୀଳତା ଉଦାରତା ଓ ଜ୍ଞାନ ଗାରିମାରେ ପରିପୂର୍ଣ୍ଣତା ସମ୍ପର୍କରେ ଏବେ ବି ଜଣାଯାଏ । ଉକ୍ତ କେମ୍ବ୍ରିଜ ବିଦ୍ୟାଳୟର History of India ପୁସ୍ତକରୁ ପ୍ରମାଣ ମିଳେ ମୋଗଲ ସମ୍ରାଟ ଆଉରଙ୍ଗଦେବଙ୍କର ସାମ୍ରାଜ୍ୟ ସମୟର ଦେଖା ଯାଉଥିବା ବହୁ ହିନ୍ଦୁ ବିରୋଧୀ ଘଟଣାର ସତ୍ୟତା ନାହିଁ । ଉକ୍ତ ପୁସ୍ତକରେ କେତେକ ଘଟଣାରୁ ଦେଖାଯାଏ ଯେ ହିନ୍ଦୁମାନେ ମଧ୍ୟ ମୁସଲମାନ ସମ୍ରାଟଙ୍କ ଠାରୁ ନ୍ୟାୟ ବିଚାର ପାଉଥିଲେ ମୁସଲମାନଙ୍କ ବିରୁଦ୍ଧରେ କିନ୍ତୁ ବହୁ ଅସତ୍ୟ ଘଟଣା ଏବେ ମଧ୍ୟ ବ୍ରିଟିଶ ସରକାରଙ୍କ କୁଚକ୍ରରେ ହିନ୍ଦୁ ମୁସଲମାନଙ୍କ ମଧ୍ୟରେ ବିଭେଦ ସୃଷ୍ଟି କରିବାକୁ ମୁସଲମାନ ମାନେ ହିନ୍ଦୁଙ୍କ ଉପରେ ବହୁ ଅତ୍ୟାଚାର କରିଥିବାର ଯାହା କିଛି ପ୍ରଚାର କରାଯାଇଛି ତାହା ଉଦ୍ଦେଶ୍ୟ ମୂଳକ ବୋଲି ଜଣାଯାଏ । ସେହି ସମୟର ଜଣେ ମୁସଲମାନ ଐତିହାସିକଙ୍କ ବିବରଣୀରୁ (କେମ୍ବ୍ରିଜ ବିଶ୍ୱବିଦ୍ୟାଳୟର History of India) ଜଣାଯାଏ ଯଦି ଭାରତୀୟ ହିନ୍ଦୁ ସଂସ୍କୃତି ଓ ଇସଲାମ ସଂସ୍କୃତି ମଧ୍ୟରେ ଏଭ ସମନ୍ୱୟ ପ୍ରତିଷ୍ଠା ହୋଇନଥାନ୍ତା ତା' ନହେଲେ ସିନ୍ଧୁ ପ୍ରଦେଶର ଆକ୍ରମଣ ଓ ସାମ୍ରାଜ୍ୟ ପ୍ରତିଷ୍ଠା ଇତିହାସ ଦୃଷ୍ଟି କୋଣରୁ କେବଳ ଏକ ଘଟଣା ମାତ୍ର ହୋଇଥାନ୍ତା । କିନ୍ତୁ ଭାରତୀୟ ଶିକ୍ଷା ସଂସ୍କୃତିର ଇସଲାମ ଧର୍ମ ସଂସ୍କୃତି ମଧ୍ୟରେ ହୋଇଥିବା ସମନ୍ୱୟତାର ପ୍ରଭାବ ଇତିହାସର ଏକ ସୁଦୂର ପ୍ରସାରି ପରିଣତି ହୋଇ ବହୁଦିନ ରହିବ ସେଥିରେ କୌଣସି ସନ୍ଦେହ ନାହିଁ ।

ମୁସଲମାନମାନେ ଭାରତକୁ ଅସିବାର ପ୍ରାୟ ୮୦୦ବର୍ଷ ପରେ ଇଂରେଜମାନେ ଭାରତକୁ ଆସି ଥିଲେ ହେଁ ସେମାନେ ଭାରତୀୟ ସଂସ୍କୃତି ସହିତ ନିଜକୁ ସାମିଲ କରି ପାରି ନଥବଲେ । ସେମାନଙ୍କର ଉଦ୍ଦେଶ୍ୟ ଥିଲା ଭାରତରେ ସାମ୍ରାଜ୍ୟ ପ୍ରତିଷ୍ଠା କରି ଏହାକୁ ସବୁଦିନେ ଏକ ଶୋଷଣର କ୍ଷେତ୍ର ରୂପେ ବ୍ୟବହାର କରିବେ ଓ ନିଜ ଦେଶର ବାଣିଜ୍ୟ ପ୍ରସାର କରିବେ । ତେଣୁ ମୁସଲମାନ ମାନେ ଭାରତରେ ୧୦୦୦ ବର୍ଷରୁ ଉର୍ଦ୍ଧ୍ୱ ରହଥିଲେ ହେଁ ସେମାନଙ୍କୁ ଘୃଣା ଚକ୍ଷୁରେ ଦେଖି ତାଙ୍କୁ ଭାରତରୁ ତଡ଼ିବା ପାଇଁ କୌଣସି ଉଦ୍ୟମ କରାଯାଇ ନାହିଁ ବରଂ ଭାରତରେ ସିପାହୀ ବିଦ୍ରୋହ

ବୋଲି ଯାହାକୁ କୁହା ଯାଉଛି ତାହା ପ୍ରକୃତରେ ଭାରତର ପ୍ରଥମ ମୁକ୍ତି ଆନ୍ଦୋଳନ ବୋଲି ବିଚାର କରା ଯାଉଛି ଏବଂ ଏହି ଆନ୍ଦୋଳନରେ ଦିଲ୍ଲୀର ଗାଦିଚ୍ୟୁତ ମୁସଲମାନ ସମ୍ରାଟ ବାଦଶାହା ବାହାଦୂର ଶାହକୁ ଭାରତର ସମ୍ରାଟ ଆଖ୍ୟା ଦେଇ ଭାରତର ହନ୍ଦୁ ମୁସଲମାନ ଓ ଶିଖମାନେ ମିଶି ଇଂରେଜମାନଙ୍କ ସହ ଯୁଦ୍ଧ କରିଥିଲେ । ଏହାହି ପ୍ରମାଣ କରୁଛି ଯେ ଇଂରେଜମାନଙ୍କୁ ତଡ଼ିବା ପାଇଁ ଏମାନେ ସମସ୍ତେ ନିଜ ଦେଶ ଭାରତବର୍ଷ ପାଇଁ ଏକତ୍ରିତ ହୋଇଥିଲେ । କିନ୍ତୁ ଅପର ପକ୍ଷରେ ଇଂରେଜମାନେ ଭାରତୀୟମାନଙ୍କୁ ଘୃଣା କରୁଥିବାରୁ ସେମାମନେ ଭାରତର ସଂସ୍କୃତି ସହିତ ନିଜକୁ ସାମିଲ କରିପାରି ନଥିଲେ । ସେଥି ପାଇଁ ମାତ୍ର ୨୦୦ ବର୍ଷ ପରେ ଇଂରେଜମାନେ ଭାରତରୁ ବିତାଡ଼ିତ ହେଲେ । ଏହା ହେଉଛି ଇଂରେଜ ଓ ମୁସଲମାନମାନଙ୍କ ମଧ୍ୟରେ ଭାରତୀୟଙ୍କ ଦୃଷ୍ଟିକୋଣରୁ ବିଶେଷ ତାରତମ୍ୟ । ସିପାହୀ ବିଦ୍ରୋହ ପରେ ଭାରତର ସ୍ୱାଧୀନତା ଆନ୍ଦୋଳନର ରୂପରେଖ ଆରମ୍ଭ ହେବା ପରେ ଇଂରେଜମାନେ ଭାରତୀୟଙ୍କ ମଧ୍ୟରେ ଭେଦନୀତି ପ୍ରୟୋଗକରି ମୁଷ୍ଟିମେୟ ମୁସଲମାନମାନଙ୍କ ଜରିଆରେ ସାଂପ୍ରଦାୟିକ ଭାବ ସୃଷ୍ଟି କରି ହିନ୍ଦୁ ମୁସଲମାନମାନଙ୍କ ମଧ୍ୟରେ ଅନ୍ତର୍ବିଭେଦ ସୃଷ୍ଟି କଲେ । ମହାତ୍ମାଗାନ୍ଧୀ ଭାରତର ରାଜନୈତିକ ପିତା ଏହି ବିଭେଦକୁ ଦୂରକରି ହିନ୍ଦୁ ମୁସଲମାନମାନଙ୍କୁ ଏକାଠି କରିବାର ଅପ୍ରାଣ ଚେଷ୍ଟା କରିଥିଲେ । କିନ୍ତୁ ତାଙ୍କର ଏଇ ଉଦ୍ୟମ ସଫଳ ହୋଇ ପାରିଲା ନାହିଁ । ଭାରତର ସାଧାରଣ ମୁସଲମାନ ସେତେବେଳେ ଭାରତକୁ ଭାଗ ଭାଗ କରି ମୁସଲମାନମାନଙ୍କ ପାଇଁ ଏକ ଅଲଗା ଦେଶ ପାକିସ୍ଥାନ ସୃଷ୍ଟି କରିବା ସପକ୍ଷରେ ନଥିଲେ ହେଁ ଇଂରେଜମାନଙ୍କ ପ୍ରରୋଚନାରେ ସେଥିରେ ଅଗ୍ରଣୀ ହୋଇ ଏକ ସ୍ୱତନ୍ତ୍ର ଦେଶ ଗଠନ କରିବାର ଦେଖାଯାଏ । ଯାହା ଫଳରେ ସବୁ କାଳ ପାଇଁ ସାମ୍ପ୍ରଦାୟିକ ବିବାଦର ଏକ ମଞ୍ଜି ଯୋଡ଼ା ଗଲା । ମହାତ୍ମାଗାନ୍ଧୀ ଗାରତ ଭାଗ ଭାଗ ହେବାବେଳର ଘଟିଥିବା ହିନ୍ଦୁ ମୁସଲମାନ ମାନଙ୍କର ବିବାଦର ପ୍ରତିକାର କରିବାକୁ ଯାଇ ଚରମ ପନ୍ଥୀ ଜଣେ ହନ୍ଦୁଙ୍କର ଗୁଳିରେ ନିଜ ପ୍ରାଣ ବଳି ଦେଇଥିଲେ ।

ଯେଉଁମାନେ ବିଚାର କରନ୍ତି ଭାରତକୁ ଏକ ହିନ୍ଦୁ ରାଷ୍ଟ୍ରରେ ପରିଣତ କରିବା ପାଇଁ ସେମାନେ ଭୁଲି ଯାଆନ୍ତି ଯେ ଭାରତରେ ମୋଟ ପ୍ରାୟ ୧୧ କୋଟି ମୁସଲମାନ ରହିଛନ୍ତି ଏବଂ ଏମାନଙ୍କ ବ୍ୟତୀତ ଶିଖ, ଜୈନ ଓ ଖ୍ରୀଷ୍ଟିୟାନମାନଙ୍କର ସଂଖ୍ୟାମଧ୍ୟ କିଛି କମ୍ ନୁହେଁ । ଭାରତର ସଂସ୍କୃତିର ବିଶେଷତ୍ୱ ହେଉଛି ଭିନ୍ନତା ଭିତରେ ଏକତା । ଭାରତରେ ବହୁ ଭିନ୍ନ ଭିନ୍ନ ଭାଷା ଓ ସଂସ୍କୃତିର ଲୋକେ ଯେପରି ରହିଛନ୍ତି ସେହିପରି ବିଭିନ୍ନ ଧର୍ମାବଲମ୍ବୀଲୋକେ ମଧ୍ୟ ହରିଛନ୍ତି ତଥାପି ଏଇ ଭିନ୍ନତା ଭିତରେ ସମସ୍ତେ ନିଜ ନିଜ ମଧ୍ୟରେ ଫରକ ଭୂଲିଯାଇ ସମସ୍ତେ ଭାରତୀୟ ବୋଲି ନିଜକୁ ପରିଚୟ ଦେଇ ଥାଆନ୍ତି । ଭାରତୀୟ ଜାତୀୟ ସଂହତି ଯାହାକୁ କୁହାଯାଏ ତାହାହିଁ ହେଉଛି ଧର୍ମନିରପେକ୍ଷତା । ବିଶ୍ୱର କୌଣସି ଦେଶରେ ଏଭଳି ସ୍ୱତନ୍ତ୍ର ପରିସ୍ଥିତି ନାହିଁ । ତେଣୁ ଧର୍ମନିରପେକ୍ଷତା ହିଁ ହେଉଛି ବିଶ୍ୱରେ ଆମର ଗର୍ବ ଓ ଗୌରବ ।

CHALENGES OF THE OFFICE OF THE SPEAKER IN INDIA

At the out set, I pay my homage to the memory of Sri G.V. Mavalankar, the first Speaker of the Parliament of free India. First as President of the Central Assembly, then as Speaker of the constituent Assembly (Legislaltive) and the Provisional Parliament and finally as the Speaker of Lok Sabha, for about a period of ten years (from January, 1946 till his death on 27th February, 1956) he had the unique opportunity to preside over the highest deliberative body of the nation and guide it deliberation. He conducted his set up many healthy parliamentary traditions and conventions. In fact, he gave the office of Speaker in India its shape and direction.

Since the days of Sri Mavalankar, We have come a long way. No doubt, we have been successful in preserving our democratic institutions, but these institutions have come under serious stress and strains. We have borrowed our Parliamentary model from Britain, but it has not been possible to borrow (probably it would have been unwise to borrow) the practices that give the British institutions their distinctiveness.
Political realities in out country influencne and shape our intitutions.

What is important, we should hold steadfast to the very essence of parliamentary democrcy and instead of measuring the working of our institutions gainst the British model. we should measure it against ideal itself, in terms whether the practice promotes or subverts the ideal.

The office of Speaker has come under criticism in recent timems. The office faces serious challenges and has to respond to them. The function of the Speaker is broadly the same here as it is in Britain. "His essential function is to preside impartially over the debates of the House and to advise the House in itis proceedings(1). To secure impartiality of Speaker, some conventions and practices have developed in Britain.

*British Practices.

(a) Often an obscure back-bencher is elected to the office,for he is not likely to be obnoxious to either side in the House.

(b) "He is normally chosen, in the first instancne, from among the Government majority. Atempt is made to secure agreement between Government and opposition and this attempt is usually successful."

(c) Once a person is appointed Speaker, he resigns fromhis party and is prevented from advocating claims of his contituency.

(d) "A Speaker who wishes to cotinue shall be reelected, even if the party from which he comes is no longer in office."

(e) It is the normal practice not to oppose the reelection of the former Speaker at a general e!elction.

---

(1) Sir Ivor Jennings : Parliament. Cambridge University Press 1970.p.63-64.

(f) His salary is charged on the consolidated Fund.

*Indian Practices.

Except that the salar of the Speaker in India is charged on Consolidated Fund, it has not been possible in India to adopt other practices. Among other reasons, the absence of biparty system precludes possibility of acceptancne of these practices in India. In India, the Speakker continues to be a member of his party during the tenure of his office and even those who renounce party membership during the tenure of office come back to the party fold as soon as they leave the office. It is desirable that the Speaker,during the tenureof his office, should not take active part in party affairs.

Notwithstanding party affiliation, it is 'Possible for a fairminded man deliberately to cast away his political bais', and to discharge his office with near impartiality. In parliamentary democrcy the speaker holds a very important office. The Stability and success of the system, to a great measure, depends on impartiality with which the Speaker holds the balance between the Government and the opposition; the Government should be allowed to govern and the opposition should be allowed to put forth its views on the floor of the House. Each point of view in the legisllature should have adequate opportunity to express itself. Consciousness of this responsibility weighs heavily on the man in the Chair of the Speaker and is compelling enough to secure impartiality. Further, of all the parliamentary institutions, it is the popular House which enbody the will of the people and the Speaker represents the House. In order that the House is able to give concrete expression to the will of the people, the Speaker should carry the whole House with him, He should so conduct himself that he inspires the confidence of the whole Housein his ability and impartiality. Erosion of faith in impartiality of the presiding officer, if allowed to deepen, will sooner or latr lead to loss of faith in the very parliamentary system and will invitably cause the collapse of the system. This is probably the reason why we in India usually elect permanent member of the party in power, with long parliamentary

experience and deep understanding of parliamentary practices and usages to the office of the Speaker. No doubt, there have been lapses here and there, but we have been able to develop a kind of working impartilaity that has sustained the system, Absolute impartiality is impossible even in Britain; for manbeing what he iw, we can aspire for near impartiality. Blatant partialityon the part of the Speaker, experience shows, has almost always boomeranged on the party in power and the people have not approved of such conduct of the Speaker. When the referee joins the game on one side or the other, the game is spoilt.

*Scenes of disorder inout Houses natural in our situation. We have to accept the challenges rather than bemoan them.

Scenes of disorder in our Houses upset serious minded people in our country and set them wondering whether we shall be able to work long the parliamentary institutions. This is primarily due to the fact that they measure our performance against the British model and find our lelgislaltures wanting and feel naturally disappointed. This is an irrational attitude. Comparision should take into account the difference in situations in which the institutions work. Britain is comparatively a small countnry. She took a long time to evolve the partiamentary democracy and as such, in the process, her people acquired the necessary values and outlook. Moreover, Britain is a developed country and the political system rests on appropriate socioeconimic base.

We, in India, are in a different situation. We borrowed the system and created our institutions. The appropriate values slowly permit our society. The values have not yet found Universal acceptance and have not developed into habits of mind. MOreover, India is alarge country with huge pupulation and is a land of great diversity; even a State of the Union has a lot of diversity within its border. Not only her diversity, but also her long torutous history land to the immensity of her problems. Moreover, ours is a developing country. We are faced with the twin problems of production and distribution. Our production isnot enough for out people. Significantly lalrge number of our people live under poverty line, struggling to make both ends meet and at the same time our policy of distribution has somewhere gone wrong; instead of resulting in equitable distribution has infact widened the gap between the rich and the poor. What is more important, different section of people in our society are gradually becoming acutely conscious of their socioeconimic conditions and are getting restive to secure justice for them. Naturally all these are likely to be reflected in our legislatures and influence the atmosphere in the House. In recent years, public life in our countnry is getting vitiated. it is not surprising to find decent men in the legislature

incensed at corruptin in high places, at the callous and indifferent attitude of Governments to the problems of the people and at the travesty of justice on the part of the authority which has the fate of the people at its disposal. The comulative effect of all these is the tense atmosphere, scene cf disorder, andemonium in the House. It requires infinite patiene and tact on the part of the Speaker to control and calm the situation. The challenge has to be accepted. For the stake is high. Our young democracy is passing through a rough and troubled time. In a roush sea the man at the helm has to muster courage, patience and sense of direction to guide the ship of young democracy into safe harbour. If he lelallves himself to the mercy of the storm, the ship is very likely to go astray and suffer wrekage. Almost all cases of disorder point to the deficiency in our system and it is for all concerned to endeavour to correct the deficiency, if the system is to work and survive. We can ignore them at our peril. What is heartening, our poeple have not lost faith in the parliamentary system. After all the scenes of disorder subside, our members still express regret for their conduct and come back to the House to participate in the debate.

Think of the alternative. If opposition in a fit of righteous indignation withdraws from the House and declares that it has lost its faith in the system, the declares that it has lost its faith in the system, the parliamentary democracy cannot deliver the goods the people expect, the parliamentary institutions have become instruments for oppression and exploitation of the people and under no circumstances it is going to cooperate with the system, political battle will be shifted from the floor of the House to the streets of the cities and villages and the worse may follow. Or alternatively, if the party in power exasperated at the conduct of the members of the opposition suppresses the democratic liberties in the name of restoring discipline in our political life, the country will relapse into a long dark period of its life. This does not mean that members should be allowed to behave as they please in the House and their conduct should be tolerated. It means, all concerned, the Government and the opposition should accept the democratic norms, strive to strengthen the parliamentary system and its socio-economic base, promote the political and moral values which sustain it, follow the rules of the game and the system should so function as to inspire confidence of the people in its capacity to satisfy their reasonable needs; for the alternative is full of hazards.

SHRI PRASANNA KUMAR DASH
SPEAKER,
ORISSA LEGISTATIVE

## -ପରିଶିଷ୍ଟ-

### ଗର୍ବ ଅହଂକାର ନେଇ ଯାଅ ପ୍ରଭୋ! ନିଃସ୍ୱ କରିଦିଅ ମୋତେ
### ତୁମରି ଆଶିଷ ହେଉ ମୋ ପାଥେୟ ନିତିଦିନ ଚଲା ପଥେ ।।

୧୯୯୦ ମସିହାରେ ଓଡ଼ିଶା ବିଧାନ ସଭାର ସାଧାରଣ ନିର୍ବାଚନରେ ବାରିପଦା ନିର୍ବାଚନ ମଣ୍ଡଳୀରୁ ପରାଜୟ ସ୍ୱୀକାର କଲି । ଏହାର ବର୍ଷେ ପୂର୍ବରୁ ୧୯୮୯ରେ ଲୋକସଭାର ନିର୍ବାଚନ ହୋଇଥିଲା । ସେତେବେଳେ ଭାରତର ପ୍ରଧାନମନ୍ତ୍ରୀ ଥାଆନ୍ତି ସ୍ୱର୍ଗତ ରାଜୀବ ଗାନ୍ଧୀ । ସ୍ୱର୍ଗତଃ ଇନ୍ଦିରା ଗାନ୍ଧୀ ତାଙ୍କର ଜୀବିତାବସ୍ଥାରେ ନିଜର ରାଜନୈତିକ ଦାୟାଦ ରୂପେ ଶ୍ରୀଯୁକ୍ତ ରାଜୀବଙ୍କୁ ପ୍ରସ୍ତୁତ କରିଥିବରୁ ଦେଶର ଶାସନ ଭାର ଗ୍ରହଣ କରିବା ତାଙ୍କ ପକ୍ଷରେ ସହଜ ସାଧ ହୋଇଥିଲା । ଦେଶର ୨୯୮୯ ମସିହାର ନିର୍ବାଚନରେ ଯେଉଁଦଳ ଶାସନକୁ ଆସିଲେ ସେମାନେ ପାଞ୍ଚ ବର୍ଷ ଶାସନ ଚଳାଇ ପାରିଲେ ନାହିଁ । ତେଣୁ ୧୯୯୧ ମସିହାର ମଧ ଭାଗରେ ପୁଣି ଲୋକସଭା ପାଇଁ ଏକ ସାଧାରଣ ନିର୍ବାଚନ ହେଲା । ଏହି ନିର୍ବାଚନ ଚାଲିଥିବା ବେଳେ ଏକ ପିର୍ବାଚନ ସଭାରେ ଦେଶର ଯୁବ ପ୍ରଧାନମନ୍ତ୍ରୀ ଶ୍ରୀଯୁକ୍ତ ରାଜୀବ ଗାନ୍ଧୀଙ୍କୁ ଅତି ନିର୍ମମ ଭାବରେ ହତ୍ୟା କରାଗଲା । ଏହି ହତ୍ୟାକାଣ୍ଡ ପରେ ଦେଶରୁ ନେହେରୁ ଗାନ୍ଧୀ ପରିବାର ଶାସନର ଅବସାନ ଘଟିଲା । ଦେଶର ସ୍ୱାଧୀନତା ପ୍ରାପ୍ତି ଦିଗରେ ନେହେରୁ ଗାନ୍ଧି ପରିବାରର ଅବଦାନ ଯେପରି ଉଲ୍ଲେଖନୀୟ ଦେଶରେ ଗଣତାନ୍ତ୍ରିକ ଶାସନର ପ୍ରତିଷ୍ଠା ଓ ତାର ସଫଳ ରୂପାୟନ କ୍ଷେତ୍ରରେ ମଧ କିଛି ଉଣା ନୁହେଁ । ବିଶେଷ କରି ଗଣତନ୍ତ ଶାସନ ପଦ୍ଧତି ମଧରେ ସଂସଦୀୟ ଶାସନ ପ୍ରଣାଳୀକୁ ଭାରତର ମହାନ୍ ନେତା ସ୍ୱର୍ଗତଃ ପଣ୍ଡିତ ନେହେରୁ ସବୁଠାରୁ ଅଧିକ ଗୁରୁତ୍ୱ ଦେଉଥିଲେ । ବିଶ୍ୱରେ ଯେତେ ପ୍ରକାର ଶାସନ ପ୍ରଚଳିତ ସେଥିମଧ୍ୟରୁ ସଂସଦୀୟ ଶାସନ ବ୍ୟବସ୍ଥା ସର୍ବୋତ୍କୃଷ୍ଟ ବୋଲି ସର୍ବଜନ ସମ୍ମତ ।

ଭାରତୀୟ ସଂସ୍କୃତି ଓ ପରଂପରା ଅନୁଧ୍ୟାନ କଲେ ସଂସଦୀୟ ଶାସନ ଭାରତ ବର୍ଷ ପାଇଁ ଏକାନ୍ତ ପ୍ରୟୋଜନ ବୋଲି ପ୍ରତୀତ ହୁଏ । ସହାଶୀଳତା ଗଣତନ୍ତ୍ର ଶାସନର ମୌଳିକ ନୀତି । ଏହି ସହନଶୀଳତା ଭାରତବର୍ଷର ପରଂପରା । ପୌରାଣିକ ବିଷୟର ପର୍ଯ୍ୟାଲୋଚନା କଲେ ଏହାର ସତ୍ୟତା ଉପଲବ୍ଧ କରାଯାଇ ପାରିବ । ଭାରତୀୟ ଏକାନ୍ନବର୍ତ୍ତୀ ପରିବାର ଗଣତନ୍ତ୍ରର ପ୍ରଥମ ସୋପାନ । ସମସ୍ତଙ୍କୁ ନେଇ ଚଳିବା ଓ ଚଳାଇବା ଏହାର ମୌଳିକ ନୀତି । ଶାସନ କ୍ଷେତ୍ରରେ ଏହି ନୀତି ହିଁ ଏକାନ୍ତ ଆବଶ୍ୟକ । ପରିବାର ମୁଖ୍ୟ ଯେପରି ସମସ୍ତଙ୍କ ମନ ନେଇ ଚଳେ ଓ ସମସ୍ତଙ୍କୁ ଏକାଠି କରି ଏକ ସୁସ୍ଥ ଓ ସୁଖମୟ ସଂସାର ସୃଷ୍ଟି କରେ ସଂସଦୀୟ ଶାସନ ଠିକ ସେହିପରି ଗୋଟିଏ ପରିବାରର ରୂପାନ୍ତର ଓ ବୃହତ ଆକାର ମାତ୍ର ।

ତ୍ରେତୟା ଯୁଗରେ ଅଯୋଧର ରାଜା ରାମଚନ୍ଦ୍ର ପ୍ରଜାରଞ୍ଜନ ପାଇଁ ନିଜର ପ୍ରାଣାଧିକା ସତୀ ସୀତାଙ୍କୁ ପରିତ୍ୟାଗ କରି ଏକ ପବିତ୍ର ପରଂପରା ସୃଷ୍ଟି କରି ଯାଇଛନ୍ତି । ପୁଣି ସୀତାଙ୍କ ଗର୍ଭରୁ ବାଲ୍ମୀକି ମୁନିଙ୍କ ଆଶ୍ରମରେ ଲବ କୁଶ ନାମକ ଦୁଇ ଯମଜ ସନ୍ତାନଙ୍କ ଜନ୍ମ । ମହର୍ଷିଙ୍କ ଯତ୍ନରେ ଲାଳିତ ପାଳିତ ହୋଇ ଉପଯୁକ୍ତ ଶିକ୍ଷାଲାଭ କଲାପରେ ଅଶ୍ୱମେଧ ଯଜ୍ଞଶେଷରେ ପ୍ରେରିତ ରାମଚନ୍ଦ୍ରଙ୍କ ଯଜ୍ଞଅଶ୍ୱକୁ ବଳପୂର୍ବକ ବାନ୍ଧି ପକାଇଲେ । ବାଲ୍ମୀକିଙ୍କ ଠାରୁ ସେମାନେ ରାମାୟଣର ସମସ୍ତ ବିଷୟ ବସ୍ତୁ ଜାଣିଥିଲେ ମଧ ସେମାନେ ଯେ ରାମଚନ୍ଦ୍ର ଓ ସୀତାଙ୍କ ସନ୍ତାନ ଏହା ସେମାନଙ୍କୁ ଜାଣିବାକୁ ଦିଆଯାଇ ନ ଥିଲା । ଯଜ୍ଞଅଶ୍ୱକୁ ଉଦ୍ଧାର କରିବା ପାଇଁ ରାମଚନ୍ଦ୍ର ଓ ସୈନ୍ୟ ଅଗ୍ରସର ହେଲେ । ଉଭୟଙ୍କ ମଧରେ ଭୀଷଣ ଯୁଦ୍ଧ ହେଲା ମାତ୍ର ଯୁଦ୍ଧରେ ରାମଚନ୍ଦ୍ର ପରାସ୍ତ ହେଲେ । ଯୁଦ୍ଧ ଶେଷରେ ଲବକୁଶ ଦୁଇଭାଇ ରାମଚନ୍ଦ୍ରଙ୍କୁ ପଚାରିଲେ,"ଆପଣ ପବିତ୍ର ସୂର୍ଯ୍ୟବଂଶର ରାଜା ହୋଇ ଆପଣଙ୍କ ଧର୍ମପତ୍ନୀଙ୍କୁ ଏପରି ନିଃସହାୟ ଭାବରେ କାହିଁକି

ପରିତ୍ୟାଗ କଲେ ?'' ଏହାର ଉତ୍ତରରେ ରାମଚନ୍ଦ୍ର କହିଥିଲେ, ''ଜଣେ ରାଜାର ପ୍ରଥମ କର୍ତ୍ତବ୍ୟ ଜନସାଧାରଣ ବା ପ୍ରଜାପୁଞ୍ଜଙ୍କ ମଙ୍ଗଳ । ପ୍ରଜା ସାଧାରଣଙ୍କ ମତାମତକୁ ସମ୍ମାନ ଦେବା ରାଜାର ଧର୍ମ, ଏବଂ ତା ପରେ ନିଜ ଲୋକ ଓ ନିଜ ପରିବାର'' । ଏହାହିଁ ପ୍ରକୃତ ଗଣତନ୍ତ୍ର । ମାତ୍ର ଦୁଃଖ ଓ ପରିତାପର ବିଷୟ ଏବେ ଆମ ଗଣତନ୍ତ୍ରରେ ଆମେ ଶାସକ ଗୋଷ୍ଠୀ ଆଗ ନିଜ ପରିବାର ତା ପରେ ଦଳ ଓ ଶେଷରେ ଜନସାଧାରଣଙ୍କ ସ୍ଥାନ ରଖୁଛନ୍ତି ।

ଆମ ଦେଶର ସ୍ୱାଧୀନତା ପ୍ରାପ୍ତିପରେ ସଂସଦୀୟ ଶାସନର ଯଥାଯଥ ରୂପାୟନ ଦିଗରେ ଯେତେ ପଦକ୍ଷେପ ନିଆ ଯାଇଛି ତଦପେକ୍ଷା ବରଂ ନିଜର ସ୍ଥିତିତଥା ବ୍ୟକ୍ତି-କୈନ୍ଦ୍ରିକ ରାଜନୀତିକୁ ଦୃଢ଼ୀଭୂତ କରିବାରେ ଅଧିକ ପ୍ରୟାସ କରାଯାଇଛି । ତେଣୁ ଆଜି ଦେଶର ଜାତୀୟ ସଂହତି ବ୍ୟାହତ ହେବା ସଙ୍ଗେ ସଙ୍ଗେ ମାନବିକ ମୂଲ୍ୟବୋଧର ହ୍ରାସ ଘଟିବାକୁ ଯାଉଅଛି । ସ୍ୱାଧୀନତା ପ୍ରାପ୍ତି ପାଇଁ ମହାତ୍ମା ଗାନ୍ଧୀଙ୍କ ନେତୃତ୍ୱରେ ଦେଶବାସୀ ଯେଉଁ ମହାନ୍ ମୂଲ୍ୟ ଦେଇଥିଲେ, ତାର ପରିଣତି କ'ଣ ଶେଷରେ ଏହାହିଁ ହେବ ? ଏବଂ ଏ ପରିଣାମ ପାଇଁ ଦାୟୀ କିଏ ? ବର୍ତ୍ତମାନ ଏହା ବିଚାର କରିବାର ସମୟ । ଅବଶ୍ୟ କେତେକ ଅନ୍ୟମାନଙ୍କ ଅପେକ୍ଷା ନେହେରୁ ଗାନ୍ଧୀ ପରରିବାରକୁ ଅନେକାଂଶରେ ଦାୟୀ କରନ୍ତି । ସେହିଠାରୁ ପାରିବାରିକ ଓ ବ୍ୟକ୍ତି କୈନ୍ଦ୍ରିକ ରାଜନୀତି ଦେଶରେ ଆରମ୍ଭହୋଇ କେବଳ କଂଗ୍ରେସ ଦଳରେ ଆବଦ୍ଧ ନ ରହି କ୍ରମେ ଅନ୍ୟ ରାଜନୈତିକ ଦଳଗୁଡ଼ିକୁ ମଧ କବଳିତ କରିବାକୁ ବସିଲାଣି ।ପରିଣାମ ସ୍ୱରୂପ ଆଜି ଦେଶର ସ୍ୱାଧୀନତା ତଥା ଗଣତାନ୍ତ୍ରିକ ବ୍ୟବସ୍ଥା ବିପନ୍ନ ହେବାକୁ ବସିଲାଣି । ଜନସାଧାରଣ ବିଶେଷତଃ ଯୁବଶକ୍ତି ଏବେଠାରୁ ସଜାଗ ନ ହେଲେ ପରେ ନେଡ଼ି ଗୁଡ଼ କହୁଣୀକୁ ବୋହିଯିବ ।

## ମୋ ଜୀବନର ଦୁଃଖମୟ କାହାଣୀ:-

ପ୍ରବାଦ ଅଛି ''misfortune nenver comes alone'' ଦୁଃଖ ଦୁର୍ଦ୍ଦଶା ଏକୁଟିଆ ଆସେନା - ତାର ସାଙ୍ଗୋ ପାଙ୍ଗ ନେଇ ଗୋଟିକ ପରେ ଗୋଟିଏ ମଣିଷ ଭାଗ୍ୟରେ ଆସି ଦେଖା ଦିଏ । ସଂସାର ରୂପୀ ବିଷରୁ ଉତ୍ପନ୍ନ ବିଷୁଚିକା ଅତ୍ୟନ୍ତ ଦୁର୍ବିସହ ହୁଏ । ଅବଶ୍ୟ ବିଷନିବାରକ ଗରୁଡ଼ମନ୍ତ୍ର ଦ୍ୱାରା ଏ ବିଷର ସମୂଳ ବିନାଶ ଘଟିଥାଏ । ୧୯୯୦ ମସିହାର ଓଡ଼ିଶା ବିଧାନସଭା ନିର୍ବାଚନରେ ବାରିପଦା ନିର୍ବାଚନ ମଣ୍ଡଳୀରୁ ପରାଜୟ ବରଣ କଲି । ମତ୍ର ଏ ପରାଜୟର ଦୁଃଖ ମୋତେ ସ୍ପର୍ଶ କରି ପାରିଲାନି । ଏହା ପୂର୍ବରୁ ୧୯୭୪ରେ ମଧ ଏହି ନିର୍ବାଚନ ମଣ୍ଡଳୀରୁ ମୁଁ ପରାାସ୍ତ ହୋଇଥିଲି । ମାତ୍ର ଲୋକସଂପର୍କ ମୁଁ ପୂର୍ବବତ୍ ଅବ୍ୟାହତ ରଖିଥିଲି । ଲୋକେ ତେଣୁଁ ନିଜର ଭୁଲ ବୁଝି ପାରି ୧୯୮୦ ମସିହାର ପରବର୍ତ୍ତୀ ବିଧାନ ସଭା ନିର୍ବାଚନରେ ମୋତେ ପୁଣି ଜୟଯୁକ୍ତ କରାଇଲେ । ସେହିପରି ୧୯୯୦ର ପରାଜୟ ପରବର୍ତ୍ତୀ ବିଜୟ ପାଇଁ ପଥ ପରିଷ୍କାର କରି ଦେଲା ବୋଲି ସ୍ଥିରକରି ନେଲି । ତେଣୁ ପରାଜୟକୁ ହସିହସି ବରଣ କରିନେଲି । ''ମନର ମୂଳେ ଏ ଜଗତ'' ତାହାହିଁ ଘଟିଲା । ୧୯୯୫ ବିଧାନ ସଭା ନିର୍ବାଚନରେ ନବମ ଥର ପାଇଁ ଏହି ନିର୍ବାଚନ ମଣ୍ଡଳୀରୁ ଜୟଯୁକ୍ତ ହେଲି ।

ଆଗରୁ କହିଛି ଦୁଃଖ କଷ୍ଟ ଏକୁଟିଆ ଆସେନା । ୧୯୯୧ରେ ଆଉ ଏକ ଦୁର୍ଘଟଣା ମୋ ପରିବାର ପ୍ରତି ଅତ୍ୟନ୍ତ ଦୁଃଖଦାୟକ ହେଲା । ସେ ବର୍ଷ ସେପ୍ଟେମ୍ବର ମାସରେ ମୋର ୨ୟ ପୁତ୍ରବଧୂ ଦେହରେ କିରାସିନି ଢାଳି ପୋଡ଼ି ହୋଇ ଆତ୍ମହତ୍ୟା କଲା । ମୋର ୨ୟ ପୁତ୍ର ଶ୍ରୀମାନ୍ ପ୍ରବୋଧ ସେତେବେଳେ ଜି.ଇ.ଡି ବିଭାଗରେ କନିଷ୍ଠ ଯନ୍ତ୍ରୀ ଥିଲା । ସେ ବାରିପଦାର ସରକାରୀ ବିଦ୍ୟୁତ କର୍ମଚାରୀଙ୍କ କଲୋନୀରେ ରହୁଥିବା ଅବସ୍ଥାରେ ଏ ଦୁର୍ଘଟଣା ଘଟିଲା । ଖବର ପାଇ ଆମେ ଯାଇ ଉପସ୍ଥିତ ହେଲୁ ଓ ସଙ୍ଗେ ସଙ୍ଗେ ପିଲାମାନଙ୍କର ପ୍ରତିପାଳନ ଦାୟିତ୍ୱ ମୋସ୍ତ୍ରୀ ଗ୍ରହଣ କଲେ । ପୁଣି ସେହି ବର୍ଷର ଶେଷ ଭାଗରେ ଦିନେ ସ୍ନାନ କରୁଥିବା ଅବସ୍ଥାରେ ମୋର ହାତ ଗୋଡ଼ ଅଚଳ ହୋଇ ପଡ଼ିଲା । ଏହାର ଦଶବର୍ଷ ପୂର୍ବରୁ ଏହିପରି ଏକ ଦୁର୍ଘଟଣାରେ ମୋର ଅତ୍ୟଧିକ ରକ୍ତଚାପ ବଢ଼ିଯିବା ଫଳରେ ବାମ ହାତ ଓ

ଗୋଡ଼ ଅଚଳ ହୋଇ ପଡ଼ିଥିଲା । ମାତ୍ର ଏଥର ଡ଼ାକ୍ତରୀ ପରୀକ୍ଷାରୁ ମୋର ଶରୀରର ରକ୍ତ ବହୁ ପରିମାଣରେ କମି ଥିବାର ଜଣା ପଡ଼ଲାରୁ ମୋର ପୁଅ ପ୍ରବୀର ଓ ଅନ୍ୟ ଜଣେ ମୋର ପୁତ୍ର ପ୍ରତୀମ ଶ୍ରୀମାନ ଦୀନକୃଷ୍ଣ ରକ୍ତ ଦାନ କଲାରୁ ମୁଁ ସଂପୂର୍ଣ୍ଣ ଆରୋଗ୍ୟ ଲାଭ କଲି ।

ଏ ସମସ୍ତ ଦୁର୍ଘଟଣାକୁ ଅତି ଧୈର୍ଯ୍ୟର ସହିତ ଅତିକ୍ରମ କଲାପରେ ୧୯୯୨ ବେଳକୁ ମୋ ସ୍ତ୍ରୀ କଠିନ ରୋଗାକ୍ରାନ୍ତ ହୋଇ ପଡ଼ିଲେ । ମୋର ଦୁଇ ପୁଅ ଶ୍ରୀମାନ ପ୍ରକାଶ ଓ ପ୍ରବୀର ସେତେବେଳେ ଭୁବନେଶ୍ୱରରେ ରହୁଥିଲେ । ସେମାନେ ମାକୁ ତାଙ୍କ ଯତ୍ନରେ ରଖି ଚିକିତ୍ସାର ସମସ୍ତ ବ୍ୟବସ୍ଥା କଲେ । ସେବର୍ଷ ଜୁଲାଇ ଓ ସେପ୍ଟେମ୍ବର ମାାସରେ ଏକ ଘରୋଇ ନର୍ସିଂ ହୋମରେ ଦୁଇଥର ଅସ୍ତ୍ରୋପଚାର କରାଗଲା । ଦୁଇ ପୁଅ ଓ ସାନ ଝିଅ ମା ପାଖରେ ରହି ସମସ୍ତ ଯତ୍ନ ନେଉ ଥାଆନ୍ତି । ତଥାପି ରୋଗ କମିବାର କୌଣସି ଲକ୍ଷଣ ଦେଖା ଯାଉ ନ ଥାଏ । ମୋର ପରାମର୍ଶ କ୍ରମେ ଶେଷରେ ପୁଅ ମାନେ ମାଡ୍ରାଜର Apolo ଚକିତ୍ସାଳୟକୁ ଚିକିତ୍ସା ପାଇଁ ନେଇ ଗଲେ । ସେଠରେ ସବୁପ୍ରକାର ପରୀକ୍ଷା କରାଇ ୧୫/୨୦ ଦିନପରେ ଭୁବନେଶ୍ୱର ଫେରିଲେ । ମାଡ୍ରାଜରୁ ଫେରିଲା ପରେ ମୋ ସ୍ତ୍ରୀର ଅବସ୍ଥରେ ପରିବର୍ତ୍ତନ ଦେଖି ଆନନ୍ଦିତ ହେଲି । ଅବଶ୍ୟ ମୋ ପିଲାମାନେ ମାର ରୋଗ ସଂପର୍କରେ ମୋ ନିକଟରେ କେତେକ ବିଷୟ ଗୋପନୀୟ ରଖିଲେ । ମଣିଷ ଦୁଃଖରେ ପଡିଲେ ନିଜର ପୁରୁଷକାର ଉପରେ ନିର୍ଭର କରିବା ସହ ସେଥିରୁ ଉଦ୍ଧାର ପାଇଁ ଦୈବୀଶକ୍ତି ଉପରେ ମଧ୍ୟ ନିର୍ଭର କରେ । ରୋଗରୁ ଆରୋଗ୍ୟ କାମନା କରି ୧୯୯୩ ମାର୍ଚ୍ଚ ମାସ ତା୧୫ରିଖ ଦିନ ବେତନଟୀ ଠାରେ ଏକ ଚଣ୍ଡୀପାଠ କରାଇବାର ବନ୍ଦୋବସ୍ତ କଲି । ହଠାତ ମାର୍ଚ୍ଚ ମାସ ୧୨ ତାରିଖ ଦିନ ମାର ଅବସ୍ଥା ଅତ୍ୟନ୍ତ ଉଦ୍‌ବେଗ ଜନକ ବୋଲି ଭୁବନେଶ୍ୱରରୁ ବଡ଼ ପୁଅ ଖବର ଦେଲା । ବେତନଟୀରୁ ଅନ୍ୟ ଦୁଇ ପୁଅ ଯାଇ ମାକୁ ନେଇ ରାତି ୩ଟା ବେଳ ଘରେ ଆସି ପହୁଁଞ୍ଚିଲେ । ସେଠାରେ ଅବସ୍ଥା ଆହୁରି ଖରାପ ହୋଇ ପଡ଼ିଲାରୁ ସଙ୍ଗେ ସଙ୍ଗେ ବରିପଦା ଡ଼ାକ୍ତରଖାନାକୁ ଚିକିତ୍ସା ପାଇଁ ନିଆଗଲା । ମାତ୍ର ବିଧିର ବିଧାନ ଅନ୍ୟ ପ୍ରକାର । ତା୧୩/୩/୯୩ ରାତ୍ରୀ ସକାଳେ ବାରିପଦା ଡ଼ାକ୍ତରଖାନାରେ ତିନିପୁଅ, ଦୁଇ ଝିଅ ଓ ଦୁଇ ଜୁଆଁଇଙ୍କ ଉପସ୍ଥିତିରେ ମାତ୍ର ୬୪ବର୍ଷ ବୟସରେ ରୋଗୀ ଶେଷ ନିଃଶ୍ୱାସ ତ୍ୟାଗକଲେ ।

ସ୍ତ୍ରୀ ବିୟୋଗ ଦୁଃଖରେ ଅତ୍ୟନ୍ତ ମର୍ମାହତ ହୋଇ ପଡ଼ିଲି । ଜୀବନ ଅତ୍ୟନ୍ତ ଦୁର୍ବିସହ ହୋଇ ପଡ଼ିଲା । ବନ୍ଧୁ ବାନ୍ଧବ ଆତ୍ମୀୟ ସ୍ୱଜନମାନେ ମୋତେ ନାନା ପ୍ରକାରଶାନ୍ତ୍ୱନା ଦେବାକୁ ଲାଗିଲେ । ମୋର ବହୁ ପୁରୁଣା ବନ୍ଧୁ ସେତେବେଳର ଅରୁଣାଚଳ ପ୍ରଦେଶର ରାଜ୍ୟପାଳ ଶ୍ରୀଯୁକ୍ତ ସୁରେନ୍ଦ୍ର ନାଥ ଦ୍ୱିବେଦୀ, ବାଙ୍କ ବୀହାରୀ ଦାସ, ଶ୍ରୀଯୁକ୍ତ ବିଶ୍ୱନାଥ ପଣ୍ଡିତ, ଶ୍ରୀ ରବୀନ୍ଦ୍ର ମୋହନ ଦାସ ପ୍ରଭୃତି ମୋତେ ସମବେଦନା ଜଣାଇ ଚିଠି ମାନ ଦେଲେ । ମାତ୍ର ମୋ ଆଖିର ଲୁହ କେହି ପୋଛି ପାରିଲେନି । ଅତୀତରେ ମୁଁ ରାଜନୀତି କରି ମୋ ସ୍ତ୍ରୀ ପ୍ରତି ବହୁ ଅବହେଳା କରିଛି ବୋଲି ନିଜେ ନିଜକୁ ଦାୟୀ କରୁଥିବା ବେଳେ ଏ ଆତ୍ମଗ୍ଲାନିରୁ ଉଦ୍ଧାର ବା ପାଆନ୍ତି କିପରି ? ମାତ୍ର ମଣିଷକୁ ସବୁ ସହିବାକୁ ପଡ଼େ । ମନକୁ ଦୃଢ଼ କରି ସବୁ ସହ୍ୟ କରିବାର ଶକ୍ତି ଅର୍ଜ୍ଜନ ନ କଲେ ପରିଣାମରେ ନିଜକୁ ହିଁ ଦୁଃଖ ଭୋଗିବାକୁ ହୁଏ । ଏତିକି ବେଳେ ଗୀତାର ଗୋଟିଏ ବାଣୀ ମୋ ମନରେ ଅପୂର୍ବ ବଳ ସଂଚାର କଲା ।

''ଦେହିନୋଽସ୍ମିନ୍ ଯଥା ଦେହେ କୌମାରଂ ଯୌବନଂ ଜରା,

ତଥା ଦେହାନ୍ତରପ୍ରାପ୍ତିଃ ଧୀରସ୍ତତ୍ର ନ ମୁହ୍ୟତି ।''

ମୃତ୍ୟୁ ମଧ୍ୟ ମଣିଷ ଶରୀରର ଏକ ଅବସ୍ଥା । ଏ ଶରୀରରେ ଶୈଶବ ଯୌବନ ଓ ବାର୍ଦ୍ଧକ୍ୟ ପ୍ରଭୃତି ଭିନ୍ନ ଭିନ୍ନ ଅବସ୍ଥାର ପରିବର୍ତ୍ତନ ସଂଘଟିତ ହେଲା ପରି ମୃତ୍ୟୁ ମଧ୍ୟ ଆସିବ । ଏହା ଅପରିହାର୍ଯ୍ୟ । ଏଥିରେ ମ୍ରିୟମାଣ ହୋଇ ପଡ଼ିବା ବୁଦ୍ଧିମତ୍ତାର ପରିଚାୟକ ନୁହେଁ ।

କ୍ରମେ ବଳ ସଂଚୟ କରି ନିଜକୁ ବିଭିନ୍ନ କାର୍ଯ୍ୟରେ ନୟୋଜିତ କରିବାାକୁ ଚେଷ୍ଟା କଲି ।

ମୁଁ ଏକ କୃଷକ ପରିବାରରୁ ଆସିଥିବାରୁ କୃଷିକାର୍ଯ୍ୟ ପ୍ରତି ମୋର ବିଶେଷ ଆକର୍ଷଣ ଥିଲା । ମୁଁ ବିଧାନ ସଭାର ଅଧକ୍ଷ ଥିଲା ବେଳେ ମଧ ମୋ ନିଜ ଜମିର କୃଷି କାର୍ଯ୍ୟ ତଦାରଖ କରୁଥିଲି । ବିଧାନସଭା ନିର୍ବାଚନରେ ଏବେ ପରାସ୍ତ ହେଲା ପରେ କୃଷିକାର୍ଯ୍ୟ ବିଶେଷ ଭାବରେ ବୁଝା ଶୁଣା କରି ପରିଲି । ଏତଦ୍ ବ୍ୟତୀତ ମୁଁ ବିଧାୟକ ଥିଲାବେଳୁ କେବେ କିମିତି ପତ୍ର ପତ୍ରିକାରେ ଲେଖା ଲେଖି କରୁଥିଲି । ଏବେ ସମୟ ମିଳିକାରୁ ଲେଖା ଲେଖି କରିବାରେ ନିଜକୁ ବିଶେଷ ଭାବରେ ନିୟୋଜିତ କରି ପାରିଲି । ପରିବେଶ ସୁରକ୍ଷା ମୋର ବହୁଦିନର ଚିନ୍ତା ଓ ଚେତନା । ବିଧାନ ସଭାର ବିରୁଦ୍ଧ ଦଳର ସଭ୍ୟ ଥିବା ବେଳେ ପ୍ରତି ବଜେଟ୍ ଅଧିବେଶନ ବେଳ ମୁଁ ଜଙ୍ଗଲ ବିଷୟରେ ବେଶି ମାତ୍ରାରେ ଆଲୋଚନା କରୁଥିଲି ଏବଂ ଜଙ୍ଗଲ ପରିବେଶ ପ୍ରତି ମୋର ବିଶେଷ ଆଗ୍ରହ ଥିଲା । ବିଶେଷ କରି ଶିମିଳିପାଳ ପର୍ବତମାଳାର ସୁରକ୍ଷା ସଙ୍ଗେ ସଙ୍ଗେ ତାକୁ ଏକ ଜୈବମଣ୍ଡଳରେ ପରିଣତ କରିବାର ସମସ୍ତ ଉଦ୍ୟମ ଅବ୍ୟାହତ ରଖିଥିଲି । ବର୍ତ୍ତମାନ ସମୟ ମିଳାବାରୁ ଏ ବିଷୟର ଅବଲମ୍ୱନରେ ବହୁତ ପ୍ରବନ୍ଧ ଲେଖି ସେଉଡ଼ିକ ପ୍ରଜାତନ୍ତ ତଥା ରାଜ୍ୟର ଅନ୍ୟାନ୍ୟ ପତ୍ର ପତ୍ରିକାରେ ପ୍ରକାଶ କଲି । ମୁଁ ସବୁଦିନେ ରାଜନୈତିକ ଚିନ୍ତକ ଓ ସମାଲୋଚକ ମଧ । ନିଜ ଦଳର କୌଣସି ତ୍ରୁଟିପୂର୍ଣ୍ଣ ନିଷ୍ପତ୍ତି ଗୁଡ଼ିକର ନିର୍ଭିକ ଭାବରେ ସମାଲେଚନା କରିବାକୁ କେବେହେଲେ ପଶ୍ଚାତ୍ ପଦ ହୁଏ ନାହିଁ । ଏହି ସମୟରେ ଶ୍ରୀଯୁକ୍ତ ବିଜୁପଟ୍ଟନାୟକଙ୍କ ନେତୃତ୍ୱରେ ପରିଚାଳିତ ଏକଛତ୍ର ଶାସନ ଚାଲିଥିବାରୁ ରାଜ୍ୟଶାସନର ବହୁ ଘଟଣାର ସମାଲେଚନା ମୂଳକ ଲେଖାମାନ ଲେଖିଛି । ଏହି ସମସ୍ତ ଲେଖାଗୁଡ଼ିକ ପ୍ରଜାତନ୍ତ୍ରର ସଂପାଦକ ଶ୍ରୀଯୁକ୍ତ ଭର୍ତ୍ତୃହରି ମହତାବ ତାଙ୍କ କାଗଜରେ ପ୍ରକାଶ କରୁଥିବାରୁ ମୁଁ ଅଧିକ ଉତ୍ସାହିତ ମଧ ହେଉଥିଲି । ଏହି ସମୟ ମଧରେ ମୁଁ ସର୍ବମୋଟ ୩୬ଟି ପ୍ରବନ୍ଧ ଓଡ଼ିଆରେ ଓ ୪ଟି ଇଂରାଜୀରେ ଲେଖିଥିଲି । ସେଥି ମଧରୁ କେତେଟି ମୁଖ୍ୟ ପ୍ରବନ୍ଧର ନାମ ଓ ସେଗୁଡ଼ିକର ସଂକ୍ଷିପ୍ତ ବିଷୟବସ୍ତୁ ନିମ୍ନରେ ପ୍ରଦାନ କରାଗଲା ।

୧) ''ଓଡ଼ିଶାର ଏକା ମାଧିଆ'' ଏହି ଲେଖାଟି ୧୯୯୦ର ବିଧାନସଭା ନିର୍ବାଚନ ପରେ ମନ୍ତ୍ରୀମଣ୍ଡଳ ଗଠନ କରିବାରେ ବିଳମ୍ୱ ଯୋଗୁଁ ଏକ ପ୍ରଶ୍ନର ଉତ୍ତରରେ ନିଜର ଅହଂକାର ଦେଖାଇ ବିଜୁ ପଟ୍ଟନାୟକ ଏକା ଯଥେଷ୍ଟ ବୋଲି କହିଥିବାରୁ ତାର ଏକ ସମାଲେଚନା ମୂଳକ ଲେଖା ।

୨) ''ଓଡ଼ିଶାର ଚଣ୍ଡାଶୋକ''- ଥରେ express High way ରେ ବେପରବାୟ ଟ୍ରକ୍ ଚାଳନା ଯୋଗୁଁ ବହୁ ପିଲାଙ୍କ ମୃତ୍ୟୁ ଘଟିବା ସତ୍ୱେ ଲୋକଙ୍କୁ ଦୋଷାରୋପ କରାଯାଇ ଥିବାରୁ ବିଜୁ ପଟ୍ଟନାୟକଙ୍କୁ ଲକ୍ଷ୍ୟକରି ଏ ଲେଖାଟି ଲେଖିଥିଲି ।

୩) ''ବିଜୁବାବୁଙ୍କ ସେକେଣ୍ଡ ହେଣ୍ଡ କାରଖାନା''- ବିଜୁବାବୁ ୨ୟ ଇସ୍ପାତ କାରଖାନା କରିବାର ଅହଂକାର କରି ଶେଷରେ ତାହା କରି ନ ପାରି ବିଦେଶରୁ କିଛି ପୁରୁଣା ଯନ୍ତ୍ରପାତି ଆଣି କାରଖନା ବସାଇବାର ପରାମର୍ଶ ଦେଇଥିବାରୁ ତାଙ୍କୁ ଲକ୍ଷ୍ୟ କରି ଏ ଲେଖାଟି ଲେଖା ଯାଇଥିଲା ।

୪) ''ବିଜୁବାବୁଙ୍କ ଏକଟଙ୍କା ଦରମା''- ଶ୍ରୀଯୁକ୍ତ ପଟ୍ଟନାୟକ ନିଜର ବାହାଦୁରୀ ଦେଖାଇ ଏକ ଟଙ୍କା ମାତ୍ର ଦରମା ନେବେ ବୋଲି ଘୋଷଣା କରି ନିଜ ବାବଦରେ ବହୁ ଅଯଥା ବ୍ୟୟ କରୁଥିବାରୁ ତାଙ୍କୁ ଉଦ୍ଦେଶ୍ୟ ରଖି ଏ ଲେଖାଟି ଲେଖା ଯାଇଥିଲା ।

୫) ''ତବ ବାଧତି ବାଧତେ''- ଏହା ମଧ ବିଜୁ ପଟ୍ଟନାୟକଙ୍କୁ ଲକ୍ଷ୍ୟ କରି ଏକ ଭୁଲ ବିଷୟର ଅବତାରଣା କରୁଥିବାରୁ ଲେଖା ଯାଇଥିଲା ।

ସେତେବେଳେ ବିଜୁ ପଟ୍ଟନାୟକଙ୍କୁ ଲକ୍ଷ୍ୟ କରି ଏପରି ବିଭିନ୍ନ ଲେଖାମାନ ଲେଖୁଥିବାରୁ ଏବଂ ସରକାରଙ୍କୁ ସମାଲୋଚନା କରୁଥିବାରୁ ମୋତେ ସମର୍ଥନ ଜଣାଇ ବହୁ ବ୍ୟକ୍ତି ବିଶେଷଙ୍କଠାରୁ ଚିଠିମାନ ପାଉଥିଲି ।

ମୋର ଅନ୍ୟ ଲେଖାଗୁଡ଼ିକ ହେଲା, 'ଉତ୍ତର ଓଡ଼ିଶା ବିଶ୍ୱବିଦ୍ୟାଳୟ' ସମବାୟ କ୍ଷେତ୍ରରେ ରାଜନୈତିକ କସରତ୍ କାହିଁକି, ମଜୁରୀହାର ପଚିଶ, ବିଧାନସଭାର ସ୍ୱାଧୀକାର । ମୂଲିଆ ମଜୁରୀର ସମାଧାନ କେଉଁଠି, ଥରକୁଥର ଏପରି ସଂରକ୍ଷଣ କାହିଁକି ?, ଏକ ନିଷ୍ପେଷ ଦରଦାହୀନ ଶାସନ, ଧରିତ୍ରୀର ଆହ୍ୱାନ ୧ ଓ ୨, ସୁବର୍ଣ୍ଣରେଖା କେବେ ପାଣି ଦେବ, ସୁବର୍ଣ୍ଣରେଖା କ'ଣ ସତରେ ପାଣି ଦେବ?,' ଅନାହାର ମୃତ୍ୟୁ ପାଇଁ ଦାୟୀ କିଏ?, ପରିବେଶ ସୁରକ୍ଷା ଓ ଉନ୍ନୟନ ମଧ୍ୟରେ ବିବାଦ କାହିଁକି?, ଧର୍ମନିରପେକ୍ଷତାର ଜନ୍ମ ଭାରତରେ, ଚାଷୀ ମାରଣନୀତି, ବେଢ଼ୀ ଉପରେ କୋରଡ଼ା  ମାଡ଼, ମରୁଡ଼ି କାହିଁକି ଓ ତାର ପ୍ରତିକାର କେଉଁଠି, ଜଳସଂପଦର ସଂରକ୍ଷଣ, ଓଡ଼ିଶାର ବରପୁତ୍ର କିଏ, (ଏହି ଲେଖାଟି ବିଜୁ ପଟ୍ଟନାୟକଙ୍କ ସଂପର୍କରେ ଏକ ବ୍ୟଙ୍ଗାତ୍ମକ ଲେଖା) ମୟୁରଭଞ୍ଜର ଆଞ୍ଚଳିକ ସ୍ଥିତି ଓ ତହିଁର ପ୍ରତିକାର, ଏତେ ଡ଼ର କାହିଁକି?, ପଞ୍ଚାୟତ ରାଜ ଦିବସ ନା ବିଜୁବାବୁଙ୍କ ଜନ୍ମଦିନ, ସାବାସ ମୟୁରଭଞ୍ଜ, ରୋଗ ଜ୍ୱାଳାରେ ବିଜୁଙ୍କ ତାଟିଆ କାମୁଡ଼ା, ରାଜର୍ଷି ଶ୍ରୀରାମଚନ୍ଦ୍ର, ଉଠାଜଳସେଚନ ପାଇଁ ସରକାରୀ ବିତୃଷ୍ଣା କାହିଁକି?, ବିଶ୍ୱ ପରିବେଶକୁ ଓଡ଼ିଶାର ଅବଦାନ, ଶିମିଳିପାଳ ପର୍ବତମାଳା ଓଡ଼ିଶାର ହିମାଳୟ କନ୍‌ସେନ୍‌ସାସ୍, challange to the office of the speaker in India, panchayat Raj an over view, My experience as spseaker, Our Environment.

ଏହି ସମସ୍ତ ପ୍ରକାରର ଲେଖା ଲେଖି ଖବର କାଗଜ ପଢ଼ିବା ସଙ୍ଗେ ସଙ୍ଗେ ନିଜ ଚାଷ ଜମିରେ କୃଷିକାର୍ଯ୍ୟର ତଦାରଖ କରିବା ବ୍ୟତୀତ ସମୟ ସମୟରେ ମୋ ନିର୍ବାଚନ ମଣ୍ଡଳୀରେ ଗସ୍ତ କରି ଲୋକଙ୍କ ସମସ୍ୟା ବୁଝୁଥିଲି । ମୋ ନିଜ ଜିପ ଗାଡ଼ିଟିକୁ ମରାମତି କରି ଚଳାଉଥିଲି । ବେଡେନଟିର କୈଳାସ ଚନ୍ଦ୍ର ଅଗ୍ରୱାଲ ତାଙ୍କ ତେଲଟାଙ୍କିରୁ ମୋତେ ସମୟ ସମୟରେ ତେଲ ମଧ୍ୟ ସାହାଯ୍ୟ କରୁଥିଲେ । ପତ୍ନୀ ବିୟୋଗ ଜନିତ ଦୁଃଖରେ ମର୍ମାହତ ହୋଇ ଭୁବନେଶ୍ୱରରେ ଯାଇ ମୋର ପୁଅ ପ୍ରବୀର ପାଖରେ ରହୁଥିଲି ଓ କଂଗ୍ରେସ ଅଫିସର ବିଭିନ୍ନ କାର୍ଯ୍ୟକ୍ରମରେ ମଧ୍ୟ ଯୋଗ ଦେଉଥିଲି ।

## ନିର୍ବାଚନରେ ଯୋଗ ଦାନ :-

୧୯୯୧ର ଲୋକସଭା ସାଧାରଣ ନିର୍ବାଚନରେ ସଂଗ୍ରେସଦଳ ତରଫରୁ ଭାଗେ ଗୋବର୍ଦ୍ଧନ ପ୍ରାର୍ଥୀ ହେଲେ । ପୂର୍ବରୁ ସେ ଜନତା ଦଳରେ ଥିବା ହେତୁ ତାଙ୍କୁ ପ୍ରର୍ଥୀ କରାଯିବାରୁ  ବହୁ କଂଗ୍ରେସ ଲୋକ ତାଙ୍କ ପ୍ରର୍ଥୀତ୍ୱକୁ ପସନ୍ଦ କରୁ ନଥିଲେ । ସେ ଆସି ପ୍ରଥମେ ମୋତେ ଦେଖା କଲେ । ମୁଁ ଆମ ଲେକଙ୍କୁ ବୁଝାଇ ସମ୍ମତ କରାଇବାରୁ ଜିଲ୍ଲାର ସବୁ ଆଡୁ ତାଙ୍କୁ ସମର୍ଥନ ମିଳିଲା ଏବଂ ସେ ନିର୍ବାଚନରେ ଜୟଯୁକ୍ତ ହେଲେ । ମାତ୍ର ଅଳ୍ପ ସମୟ ପରେ ରୋଗାକ୍ରାନ୍ତ ହୋଇ ତାଙ୍କର ମୃତ୍ୟୁ ହେଲାରୁ ୧୯୯୪ ମସିହାରେ ମୟୂରଭଞ୍ଜ ଲେକସଭାର ଉପନିର୍ବାଚନ ହେଲା । ଏହି ଉପନିର୍ବାଚନ ପାଇଁ ପୂର୍ବରୁ ରାଜ୍ୟ ସଭାର ସଦସ୍ୟା ଥିବା କୁମାରୀ ସୁଶୀଳା ତିରିଆ ପ୍ରାର୍ଥୀଭାବେ ଛିଡ଼ା ହେଲେ ।

ଓଡ଼ିଶାରେ ଏହା ପୂର୍ବରୁ ଯେତେସବୁ ଉପନିର୍ବାଚନ ହୋଇ ଯାଇଛି ସେ ସବୁଥିରେ କଂଗ୍ରେସର ପରାଜୟ ଓ ଜନତା ଦଳର ବିଜୟ ହିଁ ହୋଇଛି । ଏହି ଉପନିର୍ବାଚନ କେବଳ କଂଗ୍ରେସ ପାଇଁ ନୁହେଁ ସମଗ୍ର ରାଜ୍ୟ ପାଇଁ ଥିଲା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । କାରଣ ଏ ଉପନିର୍ବାଚନ ହୋଲା ୧୯୯୪ର ମେ ମାସରେ ଏବଂ ୧୯୯୫ ମାର୍ଚ୍ଚମାସକୁ ଓଡ଼ିଶା ବିଧାନ ସଭାର ସାଧାରଣ ନିର୍ବାଚନର ନିର୍ଦ୍ଧାରିତ ସମୟ । ୧୯୯୦ରୁ ୧୯୯୪ ମଧ୍ୟରେ ରାଜ୍ୟରେ ବିଧାନ ସଭାର ଯେତେ ଉପନିର୍ବାଚନ ହୋଇଛି ସବୁଥିରେ କଂଗ୍ରେସର ପରାଜୟ ହୋଇଛି । ରାଜ୍ୟରେ ଜନତାଦଳର ବିଜୁ ପଟ୍ଟନାୟକଙ୍କ

ସରକାର ଥିବା ହେତୁ ଜନତାଦଳର ହିଁ ସବୁଥିରେ ବିଜୟ ହୋଇଛି । ବର୍ତ୍ତମାନ ୧୯୯୫ ବେଳକୁ ଓଡ଼ିଶା ବିଧାନସଭାର ସାଧାରଣ ନିର୍ବାଚନ ଥିବାଦୃଷ୍ଟିରୁ ଏ ଉପନିର୍ବାଚନ ଜନତାଦଳ ପକ୍ଷରେ ଯେପରି ଗୁରୁତ୍ୱପୂର୍ଣ୍ଣ କଂଗ୍ରେସର ପୂର୍ବସମ୍ମାନ ଓ ଗୌରବ ଫେରାଇ ଆଣି ଆଗାମୀ ବିଧାନସଭା ନିର୍ବାଚନରେ କଂଗ୍ରେସର ବିଜୟ ହାସଲ ପାଇଁ ଏହିଉପନିର୍ବାଚନ ଏକ ମାପକାଠି । ମୟୂରଭଞ୍ଜର ଯେଉଁ ସାତଟି ବିଧାନସଭା ନିର୍ବାଚନ ମଣ୍ଡଳୀ ଏ ଉପନିର୍ବାଚନରେ ଭାଗ ନେବାପାଇଁ ନିର୍ଦ୍ଦିଷ୍ଟ ସେଥିମଧ୍ୟରେ କେବେଳ ବାରିପଦା ବିଧାନସଭା ନିର୍ବାଚନ ମଣ୍ଡଳୀ ଏକମାତ୍ର ସାଧାରଣ ଓ ଅନ୍ୟ ଛଅଟିଯାକ ସଂରକ୍ଷିତ । ତେଣୁ ବାରିପଦା ନିର୍ବାଚନ ମଣ୍ଡଳୀ ହିଁ ଏ ଉପନିର୍ବାଚନର ଭାଗ୍ୟ ନିର୍ଣ୍ଣାୟକ ହେବ ଏବଂ ଏଥିରେ କଂଗ୍ରେସ ପ୍ରାର୍ଥି ଜୟଯୁକ୍ତ ହେଲେ ଆସନ୍ତା ଏକବର୍ଷ ମଧ୍ୟରେ ହେବାକୁ ଥିବା ବିଧାନ ସଭା ନିର୍ବାଚନର ଫଳାଫଳ ମଧ୍ୟ ପ୍ରଭାବିତ ହେବ ଏଥିରେ କୌଣସି ସନ୍ଦେହ ନ ଥିଲା । ଏହି ନିର୍ବାଚନ ମଣ୍ଡଳୀରୁ ମୁଁ ଏହା ପୂର୍ବରୁ ତିନି ତିନିଥର ନିର୍ବାଚିନ ହୋଇଛି । ସେଥିପାଇଁ ମୁଁ ଆପ୍ରାଣ ଚେଷ୍ଟା କଲି ଏବଂ ପରିଣାମରେ କୁମାରୀ ସୁଶୀଳା ତିରିଆ ଜୟଜୁକ୍ତା ହେଲେ । କୁମାରୀ ତିରିଆ ଯେଉଁ ୨୩ ହଜାର ଅଧିକା ଭୋଟରେ ନିର୍ବାଚିତା ହେଲେ ସେଥିମଧ୍ୟରୁ କେବଳ ଏହି ନିର୍ବାଚନ ମଣ୍ଡଳୀରୁ ଅର୍ଦ୍ଧାଧିକ ଅର୍ଥାତ୍ ୧୨ ହଜାର ଭୋଟ ଅଧିକା ପାଇଥିଲେ ।

## ଓଡ଼ିଶାର କଂଗ୍ରେସ ଦଳମଧ୍ୟରେ ବିବାଦ :-

୧୯୮୦ ନିର୍ବାଚନରେ ଇନ୍ଦିରା ଗାନ୍ଧୀଙ୍କ ଯୋଗୁଁ ଭାରତ ତଥା ଓଡ଼ିଶାର ଜାତୀୟ କଂଗ୍ରେସର ବିପୁଳ ବିଜୟ ପୁଣି ଆରମ୍ଭ ହେଲା । ୧୯୮୪ରେ ଶ୍ରୀମତୀ ଗାନ୍ଧୀଙ୍କ ନିର୍ମ୍ମମ ହତ୍ୟା ଯୋଗୁଁ ସେହିଭଳି କଂଗ୍ରେସର ବିଜୟବାନା ଅବ୍ୟାହତ ରହିଲା । କେନ୍ଦ୍ରରେ ଶ୍ରୀଯୁକ୍ତ ରାଜୀବ ଗନ୍ଧୀ ଓ ଓଡ଼ିଶାରେ ଶ୍ରୀଯୁକ୍ତ ଜାନକୀବଲ୍ଲଭ ପଟ୍ଟନାୟକ ନେତୃତ୍ୱରେ ଶାସନ କାର୍ଯ୍ୟ ଚାଲିଲା । କିନ୍ତୁ ଓଡ଼ିଶାରେ କଂଗ୍ରେସ ଦଳ ମଧ୍ୟରେ ଦଳାଦଳି ଆରମ୍ଭ ହୋଇଗଲା । ଶ୍ରୀ ବସନ୍ତ କୁମାର ବିଶ୍ୱାଳ ଦିନେ ଯିଏ ଜାନକୀବାବୁଙ୍କ ଅତି ପ୍ରିୟ ଲୋକ ଥିଲେ ଏବଂ ସେତେବେଳେ ଲୋକେ ଯାହାଙ୍କୁ ସୁପର ଚିଫ୍ ମିନିଷ୍ଟାର ଆଖ୍ୟା ଦେଉଥିଲେ୍ ତାଙ୍କୁ କୌଣସି କାରଣରୁ ୧୯୮୪ର ବିଧାନ ସଭାର ସାଧାରଣ ନିର୍ବାଚନରେ ପ୍ରାର୍ଥି କରା ନଯିବାରୁ ଜାନକୀବାବୁଙ୍କ ସହିତ ଶତ୍ରୁତା ଆରମ୍ଭ ହେଲା । ଶ୍ରୀ କାହ୍ନୁ ଚରଣ ଲେଙ୍କାଙ୍କୁ ମଧ୍ୟ ଛିଡ଼ା କରା ନଯିବାରୁ ସେ ମଧ୍ୟ ଅସନ୍ତୁଷ୍ଟ ହେଲେ । ମାତ୍ର ଏ ଦୁହେଁ ବସନ୍ତବାବୁ ଏବଂ କାହ୍ନୁବାବୁ ପରସ୍ପରର ବିରୋଧି ଥିଲେ ହେଁ କାଳେ ଏ ଦୁହେଁ ମାଶି ଯାଇ ଶତ୍ରୁ ପକ୍ଷ ବଳବତ୍ତର ହୋଇ ଉଠିବ ସେଥିପାର୍ଇ କାହ୍ନୁବାବୁଙ୍କୁ ବୁଦ୍ଧିମାନର ସହିତ ଅଲଗା କରିଦେବା ପାଇଁ ପ୍ରଦେଶ କଂଗ୍ରେସର ଦାୟିତ୍ୱ ଅର୍ପଣ କରାଗଲା । କିଛିଦିନ ପରେ ରାଜ୍ୟ ସଭାର ସଦସ୍ୟ ଶ୍ରୀ ବାସୁଦେବ ମହାପାତ୍ରଙ୍କ ବିୟୋଗ ଘଟିବାରୁ ତାଙ୍କ ସ୍ଥାନରେ ଶ୍ରୀଯୁକ୍ତ ଲେଙ୍କାଙ୍କୁ ରାଜ୍ୟସଭା ସଭ୍ୟ ଭାବରେ ନର୍ବାଚନ କରାଗଲା । କିନ୍ତୁ ଶ୍ରୀ ଲେଙ୍କା ବୁଦ୍ଧିମାନ ଓ ଯୋଗାଡ଼ଦାର ଥିବାରୁ ସେ ରାଷ୍ଟ୍ରମନ୍ତ୍ରୀ ହୋଇଗଲେ । ଏ ମଧ୍ୟରେ ପ୍ରଦେଶ କଂଗ୍ରେସ ମଧ୍ୟରେ ଥରକୁ ଥର ବିବାଦ ଘଟି ଓଡ଼ିଶାରେ ଜାନକୀବାବୁଙ୍କ ନେତୃତ୍ୱ ବଦଳାଇବାର ଉଦ୍ୟମ କରାଗଲା । ମାତ୍ର ଶ୍ରୀଯୁକ୍ତ ଗାନ୍ଧୀଙ୍କର ଜାନକୀବାବୁଙ୍କ ପ୍ରତି ଏତେ ବେଶି ଦୁର୍ବଳତା ଥିଲା ଯେ ଜାନକୀବାବୁଙ୍କ ବୁଦ୍ଧି ଓ କୌଶଳ ବଳରେ ସବୁ ଷଡ଼ଯନ୍ତ୍ର ନିଷ୍ଫଳ ହେଲା । ମୁଁ ସେତେବେଳେ ବିଧାନ ସଭାକୁ ୨ୟ ଥର ପାଇଁ ଅଧ୍ୟକ୍ଷ ନିର୍ବାଚିତ ହୋଇଥାଏ । ନିଜଦଳ ମଧ୍ୟରେ ଘଟୁଥିବା ଦଳାଦଳିରେ ମୁଁ କେବେହେଲେ ଭାଗ ନେଉ ନ ଥିଲି । ତେଣୁ ସମସ୍ତେ ମୋତେ ନିରପେକ୍ଷ ମନେ କରୁଥିଲେ ।

ସେତେବେଳେ ବିଜୁ ପଟ୍ଟନାୟକ ଥାଆନ୍ତି ବିରୁଦ୍ଧ ଦଳର ନେତା । ଶ୍ରୀଯୁକ୍ତ ଜାନକୀ ପଟ୍ଟନୟକଙ୍କ ବିରୁଦ୍ଧରେ ଅହରହ ବିଧାନସଭା ଗୃହରେ ତଥା ବାହାରେ ମଧ୍ୟ ନାନା ପ୍ରକାର ମିଥ୍ୟା ଅଭିଯୋଗମାନ ଆଣି ତାଙ୍କର ଚରିତ୍ର ସଂହାର କରିବାକୁ ପଶ୍ଚାତ୍‌ପଦ ହେଉ ନ ଥାଆନ୍ତି । ଦୁର୍ନୀତିର ଅଭିଯୋଗମାନ ଆଣି ଜାନକୀବାବୁଙ୍କୁ ଏକ ପ୍ରଚଣ୍ଡ

ଦୁର୍ନୀତି ପରାୟଣ ବ୍ୟକ୍ତି ଭାବରେ ସର୍ବସାଧାରଣଙ୍କ ମାନସ ପଟରେ ଚିତ୍ରଣ କରିବାକୁ ସତତ ଯତ୍ନଶୀଳ ହେଉଥାଆନ୍ତି ।

୧୯୮୯ ମସିହାର ଶେଷ ଭାଗରେ ଲୋକ ସଭାର ସାଧାରଣ ନିର୍ବଚନ ସଂଘଟିତ ହେଲା । ସେତେବେଳକୁ ରାଜୀବଗାନ୍ଧୀଙ୍କ ବିରୋଧରେ ବୋଫର କମାଣ କିଣାରେ ଦୁର୍ନୀତର ଗୁରୁତର ଅଭିଯୋଗମାନ ପ୍ରଚାର ହେବାକୁ ଲାଗିଲା । ରାଜୀବଙ୍କ ସରକାରରେ ପ୍ରଥମ ଅର୍ଥମନ୍ତ୍ରୀ ଓ ପରେ ପ୍ରତିରକ୍ଷା ମନ୍ତ୍ରୀ ଥିବା ଶ୍ରୀଯୁକ୍ତ ଭି.ପି.ସିଂହ ନିଜପଦବୀରୁ ଇସ୍ତଫା ପ୍ରଦାନ କରି ବିରୁଦ୍ଧ ଦଳରେ ଯୋଗ ଦେଲେ । ପରିଣାମରେ କଂଗ୍ରେସବିରୋଧିଭାବ ଗୁରୁତର ଆକାର ଧାରଣ କଲା ଏବଂ ୧୯୮୯ ମସିହାର ସାଧାରଣ ନିର୍ବାଚନରେ କଂଗ୍ରେସର ପରାଜୟ ହୋଲା । ମାତ୍ର ଶ୍ରୀଯୁକ୍ତ ରାଜୀବ ଗାନ୍ଧୀ ଜୟଯୁକ୍ତ ହୋଇ କଂଗ୍ରେସ ଦଳର ନେତା ନିର୍ବାଚିତ ହେଲେ । ସରକାର ଗଠନ କରିବା ଭଳି ସଂଖ୍ୟାର ଅଭାବ ହେବାରୁ ବୁଦ୍ଧିମାନର ସହ ବିରୋଧିଦଳଙ୍କୁ ସରକାର ଗଠନ କରିବାର ସୁବିଧା ଛାଡ଼ିଦେଇ ନିଜେ ବିରୋଧୀ ଦଳରେ ବସିଲେ । ଶ୍ରୀଯୁକ୍ତ ଭି.ପି.ସିଂହ ମିଳିତ ବିରୋଧୀ ଦଳର ନେତା ହୋଇ ଜାତୀୟସ୍ତରରେ ସରକାର ଗଠନ କଲେ ! କେନ୍ଦ୍ରୀୟ ସ୍ତରରେ ବିରୁଦ୍ଧ ଦଳ ୨ୟ ଥର ପାଇଁ ସରକାର ଗଠନ କଲେ ସିନା ମାତ୍ର ଏ ସରକାରର ସ୍ଥାୟିତ୍ୱ ସଂପର୍କରେ ସମସ୍ତଙ୍କ ମନରେ ଆଶଙ୍କା ଜନ୍ମିଲା ।

## ଓଡ଼ିଶାରେ କଂଗ୍ରେସର ଚରମ ବିପର୍ଯ୍ୟୟ :-

ଲୋକସଭା ନିର୍ବାଚନ ପରେ ପରେ ଓଡ଼ିଶା ବିଧାନ ସଭାର ସାଧାରଣ ନିର୍ବାଚନ ହେବାର ସ୍ଥିର କରାଗଲା । ଲୋକସଭାର ସାଧାରଣ ନିର୍ବାଚନରେ କଂଗ୍ରେସର ଶୋଚନୀୟ ପରିଣତି ହେତୁ ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ଜାନକୀ ବଲ୍ଲଭ ପଟ୍ଟନାୟକ ଓ ରାଜ୍ୟ କଂଗ୍ରେସର ଅଧ୍ୟକ୍ଷ ଶ୍ରୀ କାହ୍ନୁ ଚରଣ ଲେଙ୍କା ସ୍ୱ ସ୍ୱ ପଦବୀରୁ ଇସ୍ତଫ ଦେଲେ । ପରେ ଶ୍ରୀ ହେମାନନ୍ଦ ବିଶ୍ୱାଳଙ୍କ ନେତୃତ୍ୱରେ ମନ୍ତ୍ରୀମଣ୍ଡଳ ଗଠିତ ହେଲା । ସେହିପରି ଓଡ଼ିଶାର ପୂର୍ବତନ ମୁଖ୍ୟମନ୍ତ୍ରୀ ଶ୍ରୀମତୀ ନନ୍ଦୀନୀ ଶତପଥି ପ୍ରଦେଶ କଂଗ୍ରେସର ସଭାନେତ୍ରୀ ହେଲେ । ଏ ଦୁହେଁ ଯାକ ଶ୍ରୀଯୁକ୍ତ ଜାନକୀ ପଟ୍ଟନାୟକଙ୍କ ବିରୋଧି ଥିଲେ । ଏ ଦୁହିଁଙ୍କର ମୁଖ୍ୟମନ୍ତ୍ରୀ ତଥା ପ୍ରଦେଶକଂଗ୍ରେସ ସଭାପତି କାହାର ହେଲେ ଜନସାଧାରଣଙ୍କ ଉପରେ କୌଣସି ପ୍ରକାର ପ୍ରଭାବ ନ ଥିଲା । ତେଣୁ ୧୯୯୦ର ବିଧାନସଭାର ସାଧାରଣ ନିର୍ବାଚନରେ ଏ ଦୁହେଁ ଯେଉଁ ନୀତି ଧରିଲେ ତା ଫଳରେ ଓଡ଼ିଶାରେ କଂଗ୍ରେସ ଦଳର ଚରମ ବିପର୍ଯ୍ୟୟ ଘଟିଲା । କଂଗ୍ରେସ ଭିତରେ ଦଳାଦଳୀ, ଦୁର୍ନୀତି ଅଭିଯୋଗ ତଥା ଦୃଢ଼ ନେତୃତ୍ୱର ଅଭାବ ସାଙ୍ଗକୁ ସମସ୍ତ ଚାଷୀଙ୍କୁ ଋଣ ଛାଡ଼, ସମସ୍ତ ବେକାର ଯୁବକଙ୍କୁ ଚାକିରୀ, ୨ୟ ଇସ୍ପାତ କାରଖାନା ପ୍ରତିଷ୍ଠା ଓ ସର୍ବୋପୁରି ଜାନକୀ ପଟ୍ଟନାୟକ ସମେତ ସମସ୍ତ ମନ୍ତ୍ରୀଙ୍କ ଅନ୍ୟାୟ ସଂପତ୍ତି ସାଧାରଣରେ ବଣ୍ଟନ ପ୍ରଭୃତି ମିଥ୍ୟା ପ୍ରତିଶ୍ରୁତିମାନ ଜନତା ଦଳ ପକ୍ଷରୁ ଯୋରଦାର ପ୍ରଚାର ସାଧାରଣଙ୍କୁ ବେଶ ସ୍ପର୍ଶ କରିପାରିଲା । କଂଗ୍ରେସ ଲୋକେ ଏ ସବୁ ଅହମିକାପୂର୍ଣ୍ଣ ମିଥ୍ୟା ପ୍ରଚାରର ସାମନା କରିପାରିଲେ ନାହିଁ । ତେଣୁ ପୂର୍ବଥର କଂଗ୍ରେସ ୧୨୨ଟି ସ୍ଥାନ ପାଇଥିଲାବେଳେ ଏଥର ମାତ୍ର ଦଶଟି ସ୍ଥାନରେ ବିଜୟ ଲାଭ କଲା । ବିଧାନସଭାରେ ସ୍ୱୀକୃତି ପ୍ରପ୍ତ ବିରୋଧି ଦଳ ପାଇଁ ଆବଶ୍ୟକ ଏକଦଶମାଂଶ ସ୍ଥାନ ମଧ୍ୟ ଲାଭ କରିପାରିଲା ନାହିଁ ।

## ଜନତାଦଳର ଶାସନ :-

ଜନତାଦଳର ବିପୁଳ ବିଜୟହେଲାରୁ ଶ୍ରୀଯୁକ୍ତ ବିଜୁ ପଟ୍ଟନାୟକଙ୍କ ନେତୃତ୍ୱରେ ମନ୍ତ୍ରୀମଣ୍ଡଳ ଗଠିତ ହେଲା । ବିଧାନସଭାର ୧୪୭ଟି ଆସନ ମଧ୍ୟରୁ କେବଳ ଜନତାଦଳ ୧୨୫ଟି ଆସନ ପାଇଲେ ଏବଂ ତାଙ୍କର ସହଯୋଗୀ ଦୁଇ କମ୍ୟୁନିଷ୍ଟଦଳର ସଭ୍ୟ ମିଶି ଶାସକଦଳର ସଭ୍ୟସଂଖ୍ୟା ୧୩୦ ହେଲା । ଏଭଳି ସଂଖ୍ୟାଧିକ ଭାବେ ଶକ୍ତିଶଳୀ ହୋଇ କୌଣସି ଅଣକଂଗ୍ରେସ ଦଳ କେବେହେଲେ ସରକାର ଗଠନ କରି ନଥିଲେ କିମ୍ବା କଂଗ୍ରେସ ଭଳି ଏକ ଜାତୀୟଦଳର ଏପରି ନଗଣ୍ୟ ମାତ୍ର ଦଶ ସଂଖ୍ୟାକ ସଭ୍ୟ କେବେହେଲେ ଓଡ଼ିଶା ବିଧାନସଭାକୁ ନିର୍ବାଚିତ ହୋଇ

ନଥିଲେ । ତେଣୁ ଶ୍ରୀଯୁକ୍ତ ବିଜୁପଟ୍ଟନାୟକ ଓଡ଼ିଶାରେ ଏକ ଯଥେଚ୍ଛାଚାର ବେପରବାୟ ଶାସନ ଚଳାଇଥିଲେ । କଂଗ୍ରେସ ଦଳର ପୂର୍ବତନ ମୁଖ୍ୟମନ୍ତ୍ରୀଙ୍କ ସମେତ ଅନ୍ୟ ପୂର୍ବତନ କଂଗ୍ରେସ ମନ୍ତ୍ରୀଙ୍କ ନାମରେ ଅମୂଳକ ଅଭିଯୋଗମାନ ଆଣି ଦୁର୍ନିତି ନାମରେ ସେମାନଙ୍କ ଘର ଖାନ୍‌ତଲାସ କରାଇ ସାଧାରଣ ଚକ୍ଷୁରେ କଂଗ୍ରେସ ଦଳକୁ ଅଧିକ ନିନ୍ଦିତ କରାଇ ବିଲୋପ କରିବାର ଅପଚେଷ୍ଟା ଆରମ୍ଭ କରିଦେଲେ । ଏଇଥି ପାଇଁ ଗଣତନ୍ତ୍ରଶାସନରେ ବିରୋଧିଦଳକୁ ଉଚ୍ଚ ଆସନ ଦିଆଯାଇଥାଏ । ଦୃଢ଼ ବରୋଧିଦଳ ରହିଲେ ଶାସକ ଗୋଷ୍ଠୀ ଯଥେଚ୍ଛାଚାରୀ ହୋଇ ପାରନ୍ତି ନାହିଁ । ମାତ୍ର ଏଥର ଓଡ଼ିଶା ଶାସନରେ ଏପରି ବଳବାନ ବିରୋଧିତା ନ ଥିବା ହେତୁ ଜନତାଦଳର ମନ୍ତ୍ରୀ ତଥା ଏମ୍.ଏଲ,ଏ.ମାନେ ବ୍ୟାପକ ଦୁର୍ନୀତିଗ୍ରସ୍ତ ହୋଇପଡ଼ିଲେ । ପୂର୍ବରୁ କଂଗ୍ରେସ ଶାସନ ଅମଳରେ ବିଭିନ୍ନ ଉନ୍ନୟନ ଯୋଜନାରେ ରାଜ୍ୟ ତଥା ବ୍ଲକ୍‌ମାନଙ୍କୁ ଯେଉଁ ପରିମାଣରେ ଅର୍ଥ ଆସୁଥିଲା ଏବେ ତଦପେକ୍ଷା ଦଶଗୁଣ ଅଧିକ ଅର୍ଥ ଆସି ଖର୍ଚ୍ଚ କରାଗଲା । ଏତିକିବେଳେ ସରକାର ବିଧାନସଭା ସଭ୍ୟମାନଙ୍କୁ ତାଙ୍କ ଅଞ୍ଚଳରେ ବିଭିନ୍ନ ଉନ୍ନୟନ କାମରେ ବର୍ଷକୁ ଖଟାଉଥିବା ୩/୪ କୋଟି ଟଙ୍କାର ଉନ୍ନୟନ ଖର୍ଚ୍ଚଗୁଡ଼ିକ ସୁପାରିସ୍ କରିବାର ଦାୟିତ୍ୱ ଦେବାରୁ ସେମାନେ ଏତେ ପରିମାଣର ଅର୍ଥ କମିସନ୍ ଆକାରରେ ନେଲେ ଯେ ସବୁକାମ ଅତି ନିମ୍ନ ମାନର ହେଲା । ସାଧାରଣ ଜନତାର ଦୁଃଖ ଦୁର୍ଦ୍ଦଶା କେହି ବୁଝିଲେ ନାହିଁ ବରଂ ଅଧିକ ପରିମାଣର ଅର୍ଥ ଆତ୍ମସାତ୍ ହୋଇଗଲା । ନିର୍ବାଚନ ବେଳେ ଯେଉଁ ସମସ୍ତ ପ୍ରତିଶ୍ରୁତି ଦେଇ ବିପୁଳ ସମର୍ଥନ ଲାଭକରିଥିଲେ ସେଥିରୁ କୌଣସି ଗୋଟିଏ ହେଲେ ରକ୍ଷା କରି ପାରିଲେ ନାହିଁ । ଏପରିକି ଦଶହଜାର ଟଙ୍କା ପର୍ଯ୍ୟନ୍ତ ଯେଉଁ କୃଷିଋଣ ଛାଡ଼ କରିବାର ପ୍ରତିଶ୍ରୁତି ଦେଇଥିଲେ ସେ ସୁବିଧା କେବଳ ଦଳୀୟ କେତେକ ମୁଷ୍ଟିମେୟ ଲୋକ ପାଇଲାବେଳେ ଅନ୍ୟମାନଙ୍କର ଋଣଭାର ବଢ଼ିଚାଲିଲା । ଦୁର୍ନୀତିଗ୍ରସ୍ତ ସରକାରୀ କର୍ମଚାରୀଙ୍କୁ ମାଡ଼ ଦେବା ପାଇଁ ସାଧାରଣ ଲୋକଙ୍କୁ ଉତ୍ସାହିତ କରି ପରିଶେଷରେ ତାର କୁପରିଣାମ ତାଙ୍କୁହିଁ ଭୋଗିବାକୁ ପଡ଼ିଲା ।

ଏତିକିବେଳେ କଂଗ୍ରେସ ମଧ୍ୟରେ ମଧ୍ୟ ଦଳାଦଳି ବଢ଼ିବାକୁ ଲାଗିଲା । ପୂର୍ବତନ ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ପଟ୍ଟନାୟକଙ୍କ ଦଳ ତଥା ଶ୍ରୀ ବସନ୍ତ କୁମାର ବିଶ୍ୱାଳଙ୍କ ଦଳ ମଧ୍ୟରେ ଅଧିକ ବିବାଦ ବଢ଼ିବାକୁ ଲାଗିଲା । ବିଧାନ ସଭା ମଧ୍ୟରେ କଂଗ୍ରେସଦଳ ମଧ୍ୟ ଦୁଇଦଳରେ ବିଭକ୍ତ ହୋଇ ଯିବାରୁ ଜନତା ଦଳର ସାମନା କରି ପାରିଲେ ନାହିଁ । ତେଣେ ଜାତୀୟ ସ୍ତରରେ ଶ୍ରୀଯୁକ୍ତ ବିଶ୍ୱନାଥ ପ୍ରତାପ ସିଂହଙ୍କ ନେତୃତ୍ୱରେ ଗଠିତ ଅଣକଂଗ୍ରେସ ସରକାର ମଧ୍ୟରେବିବାଦ ଦେଖା ଦେଲା । ୧୯୭୭ ରୁ ୧୯୮୦ ମଧ୍ୟରେ ମୋରାରଜୀ ଦେଶାଇଙ୍କ ନେତୃତ୍ୱରେ ଯେପରି ସରକାର ଭାଙ୍ଗିଯାଇଥିଲା ଏଥର ମଧ୍ୟ ଅନୁରୂପ ଘଟଣାମାନ ଘଟିଲା । ସେତେବେଳର ଉପପ୍ରଧାନମନ୍ତ୍ରୀ ସ୍ୱର୍ଗତଃ ଚରଣ ସିଂ ଇସ୍ତଫା ପ୍ରଦାନ କଲାରୁ ସଂକଟ ଗୁରୁତର ଆକାର ଧାରଣ କଲା ଓ ତଦାନୀନ୍ତନ କେନ୍ଦ୍ରମନ୍ତ୍ରୀ ଶ୍ରୀଯୁକ୍ତ ବିଜୁ ପଟ୍ଟନାୟକଙ୍କ ଚକ୍ରାନ୍ତରେ ଚରଣ ସିଂଙ୍କ ସରକାର ମଧ୍ୟ ଅଳ୍ପ କେତେଦିନ ମଧ୍ୟରେ ଭାଙ୍ଗି ପଡ଼ିଲା । ଏଥର କିନ୍ତୁ ଶ୍ରୀଯୁକ୍ତ ବିଜୁ ପଟ୍ଟନାୟକ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଥାଇ ମଧ୍ୟ ଶ୍ରୀଯୁକ୍ତ ବିଶ୍ୱନାଥ ସିଂହଙ୍କ ସରକାର ଗଠନ କରିବାରେ ସମସ୍ତ କୌଶଳ ପ୍ରୟୋଗ କରିଥିଲେ ଓ କୌଣସି ବିବାଦ ଉପୁଜିଲା ମତ୍ରେ ଓଡ଼ିଶାରୁ ଯାଇ ତାର ସମାଧାନ କରୁଥିଲେ । ଏଥରର ଉପପ୍ରଧାନମନ୍ତ୍ରୀ ଶ୍ରୀଯୁକ୍ତ ଦେବୀଲାଲ ଇସ୍ତଫା ଦେବା ସାଙ୍ଗକୁ ପ୍ରାୟ ୨୧ଜଣ ପର୍ଯ୍ୟନ୍ତ ସଭ୍ୟ ଜନତାଦଳରୁ ବାହାରି ଆସିବା ଫଳରେ ଶ୍ରୀଯୁକ୍ତ ଭି.ପି.ସିଂହଙ୍କ ସରକାର ବିରୁଦ୍ଧରେ ଅନସ୍ଥା ପ୍ରସ୍ତାବ ଆଗତ ହେଲାରୁ ସେ ଇସ୍ତଫା ଦେଲେ ।

ଏତିକିବେଳେ ଶ୍ରଯୁକ୍ତ ଚନ୍ଦ୍ରଶେଖର ସମାଜବାଦୀ ଜନତାଦଳ ନାମରେ ଏକ ଦଳ ଗଠନ କରି କଂଗ୍ରେସ୍‌ଦଳର ସମର୍ଥନରେ ସରକାର ଗଠନ କଲେ । ଏ ସରକାର ଗଠିତ ହେବାର ମାତ୍ର କେତେ ମାସ ପରେ କଂଗ୍ରେସ ନିଜର ସମର୍ଥନ ପ୍ରତ୍ୟାହାର କରି ନେବାରୁ ଶ୍ରୀଯୁକ୍ତ ଚନ୍ଦଶେଖରଙ୍କ ସରକାର ଭାଙ୍ଗି ପଡ଼ିଲା । ଏଠାରେ ସ୍ୱର୍ଗତଃ ରାଜୀବ ଗାନ୍ଧୀ ତଥା କଂଗ୍ରେସ ଦଳର ଦୂରଦୃଷ୍ଟିରେ ଟିକିଏ ଅଭାବ ଘଟିଲା ବୋଲି ମୁଁ ମନେକରେ । ଶ୍ରୀ ଭି.ପି.ସିଂହଙ୍କ ସରକାର ଭାଙ୍ଗି ପଡ଼ିଲା ପରେ ଯଦି କଂଗ୍ରେସ ନିର୍ବାଚନର ଆହ୍ୱାନ ଦେଇ ଥାଆନ୍ତା ତେବେ ଲୋକେ ନିଜାର ଭୁଲ

ବୁଝିପାରି ପୁଣି କଂଗ୍ରେସକୁ ଜୟଯୁକ୍ତ କରାଇ ଥାଆନ୍ତେ । ମାତ୍ର ଚନ୍ଦ୍ରଶେଖରଙ୍କ ସରକାରକୁ ଗଠନ କରିବାରେ ସହାୟତା କରି ସେପରି କୌଣସି କାରଣ ନ ଥାଇ ସମର୍ଥନ ପ୍ରତ୍ୟାହାର କରିନେବାକୁ ବୋଧହୁଏ ଲୋକେ ନା ପସନ୍ଦ କଲେ । ସେ ଯାହା ହେଉବା କାହିଁକି ୧୯୮୯ରେ ଜନସାଧାରଣଙ୍କ ଦ୍ୱାରା ଗଠିତ ଦୁଇଟି ସରକାରର ପତନ ଘଟିଲା ।

ଏହାପରେ ୧୯୯୧ର ଲୋକସଭାର ସାଧାରଣ ନିର୍ବାଚନ ଚାଲିଥିବାବେଳେ ସମସ୍ତ ସୁରକ୍ଷା କଟକଣାକୁ ଭେଦକରି ଏକ ନିର୍ବାଚନ ସଭାରେ ଏକ ଶକ୍ତିଶାଳୀ ବୋମାଦ୍ୱାରା ରାଜୀବ ଗାନ୍ଧୀଙ୍କୁ ହତ୍ୟା କରାଗଲା । ଏ ଦୁର୍ଘଟଣା ଦେଶର ସଂସଦୀୟ ଗଣତନ୍ତ୍ର ପ୍ରତି ଏକ ବଡ଼ ଧକ୍କା ଆଣିଲା । ପ୍ରାୟ ଦୀର୍ଘ ୨୦ ରୁ ୨୧ ଦିନ ପର୍ଯ୍ୟନ୍ତ ନିର୍ବାଚନ ସ୍ଥଗିତ ରହିଲା । ରାଜୀବ ସେତେବେଳେ ପ୍ରଧାନ ମନ୍ତ୍ରୀ ନ ଥିଲେ ମଧ୍ୟ ପୃଥିବୀର ସବୁଦେଶର ପ୍ରତିନିଧିମାନେ ରାଜୀବଙ୍କ ଅନ୍ତ୍ୟେଷ୍ଟିକ୍ରିୟାରେ ଯୋଗଦେଇ ଭାରତବାସୀଙ୍କୁ ସମବେଦନା ଜ୍ଞାପନ କଲେ । ଆମେରିକାର କେନେଡ଼ୀ ପରିବାରର ରାଷ୍ଟ୍ରପତିଙ୍କୁ ଗୋଟିକ ପରେ ଗୋଟିଏ ଯେପରି ହତ୍ୟା କରାଯାଇଥିଲା ଆଜି ଭାରତବର୍ଷରେ ମଧ୍ୟ ଠିକ୍ ସେହି ପରି ୧୯୮୪ରେ ଶ୍ରୀମତୀ ଇନ୍ଦିରା ଗାନ୍ଧୀଙ୍କୁ ଓ ତାର ୭ବର୍ଷ ପରେ ଯୁବକ ରାଜୀବଙ୍କୁ ଅତି ମର୍ମନ୍ତୁଦ ଭାବରେ ହତ୍ୟା କରାଯାଇଥିଲା । ଭାରତର ଗାନ୍ଧୀ ପରିବାର ସାରାବିଶ୍ୱରେ ଅତ୍ୟନ୍ତ ସମ୍ମାନାସ୍ପଦ ଥିଲେ, ସୁତରାଂ ଏ ଦୁର୍ଘଟଣା କେବଳ ଭାରତରେ କାହିଁକି ସାରା ବିଶ୍ୱରେ ଆଲୋଡ଼ନ ସୃଷ୍ଟି କଲା । ଯେଉଁ ଦେଶ ଅହିଂସା ମାର୍ଗରେ ସ୍ୱାଧୀନତା ଲାଭକରି ସମଗ୍ର ବିଶ୍ୱକୁ ଏକ ନୂତନ ଦିଗ୍‌ଦର୍ଶନ ଦେଇଥିଲା ସେହି ଦେଶର ଏକ ପରିବାରର ଦୁଇଜଣ ନେତାଙ୍କୁ ଏପରି ନିର୍ମମ ହତ୍ୟା ସମଗ୍ର ମାନବ ଜାତି ପ୍ରତି ଏକ ନିନ୍ଦନୀୟ ଘଟଣା ।

ରାଜୀବଙ୍କ ପରେ କଂଗ୍ରେସଦଳ ନେତାଶୂନ୍ୟ ହୋଇ ପଡ଼ିଲା । ଏତିକି ବେଳେ ଶ୍ରୀଯୁକ୍ତ ପି.ଭି.ନରସିଂହ ରାଓ ରାଜନୀତିରୁ ସନ୍ୟାସ ଗ୍ରହଣ କରିବାକୁ ଯାଉଥାଆନ୍ତି । ତାଙ୍କୁ ବୟୋଜ୍ୟେଷ୍ଠ ବୋଲି ପ୍ରଥମେ ଦଳର ସଭାପତି ପଦରେ ରଖାଗଲା ଓ ସେ ନିଜ ଦାୟିତ୍ୱରେ ଅବଶିଷ୍ଟ ନିର୍ବାଚନ କାର୍ଯ୍ୟ ତୁଲାଇଲେ । ଅବସ୍ଥା ଚକ୍ରରେ ପଡ଼ି ସେ ଏ ଯାବତ୍ ଦଳର ସଭାପତି ପଦରେ ରହିଆସିଛନ୍ତି ଏବଂ ଉକ୍ତ ପଦବୀ ଏ ପର୍ଯ୍ୟନ୍ତ ଛାଡୁ ନ ଥିବାରୁ ଦଳ ମଧ୍ୟରେ ଅସନ୍ତୋଷ ବୃଦ୍ଧି ପାଇ ଅନେକ ପୁରୁଣା ତଥା ଯୋଗ୍ୟ ଲୋକ ଦଳଛାଡ଼ି ଚାଲିଗଲେଣି । ନିର୍ବାଚନ ପରେ ଶ୍ରୀଯୁକ୍ତ ରାଓ ପ୍ରଥମେ ଅସ୍ଥାୟୀ ଭାବେ ଓ ପରେ ନିର୍ବାଚିତ ହୋଇ ସ୍ଥାୟୀ ପ୍ରଧାନମନ୍ତ୍ରୀ ଭାବରେ ଅଧିଷ୍ଠିତ ହେଲେ । ଏକ ସଂଖ୍ୟାନ୍ୟୁନ ସରକାରର ମୁଖ୍ୟ ହୋଇ ମଧ୍ୟ ସବୁଠାରୁ ଅଧିକ ଝଡ଼ ଝଞ୍ଜାର ସମ୍ମୁଖୀନ ହୋଇଛନ୍ତି । ଏହା ପୂର୍ବରୁ ଭାରତର କୌଣସି ପ୍ରଧାନମନ୍ତ୍ରୀ ସଂଖ୍ୟାଧିକ ଥାଇ ମଧ୍ୟ ଏପରି ଅବସ୍ଥାର କେବେହେଲେ ସମ୍ମୁଖୀନ ହୋଇନାହାନ୍ତି । ବେଳେବେଳେ ଏପରି ପରିସ୍ଥିତି ଉପୁଜେ ମନେହୁଏ ସତେ ଯେପରି ସରକାର ଭାଙ୍ଗିଯିବ ମାତ୍ର ଶେଷ ମୁହୂର୍ତ୍ତରେ ସବୁ ଠିକ ହୋଇଯାଏ । ପରେ ଜନତାଦଳରୁ ଓ କିଛି ସ୍ୱାଧୀନ ସଭ୍ୟ ଆସି କଂଗେସରେ ଯୋଗ ଦେବାରୁ ଲୋକସଭାର ସଭ୍ୟସଂଖ୍ୟାରେ ବୃଦ୍ଧି ଘଟିଲେ ମଧ୍ୟ ରାଜ୍ୟସଭାରେ କଂଗ୍ରେସ ଦଳ ଏବେ ବି ସଂଖ୍ୟାନ୍ୟୁନ । ସମସ୍ୟା ଯେତେ ଗୁରୁତର ହେଲେ ମଧ୍ୟ ହଠାତ୍ କୌଣସି ନିଷ୍ପତ୍ତି ନ ନେଇ ପରିଣତିକୁ ସମୟର ସ୍ରୋତ ଉପରେ ଛାଡ଼ି ଦେବା ଶ୍ରୀଯୁକ୍ତ ରାଓଙ୍କର ରାଜନୈତିକ କୌଶଳ ।

ଓଡ଼ିଶାର ପ୍ରଦେଶ କଂଗ୍ରେସର ଦୁଇ ନେତା ଶ୍ରୀଯୁକ୍ତ ଜାନକୀ ବଲ୍ଲଭ ପଟ୍ଟନାୟକ ଓ ଶ୍ରୀଯୁକ୍ତ ବସନ୍ତ କୁମାର ବିଶ୍ୱାଳଙ୍କ ମଧ୍ୟରେ ଯେଉଁ ବିଭେଦ ସୃଷ୍ଟି ହୋଇଥିଲା ତାର ସମାଧାନ ନ ହୋଇ ବରଂ ଅଧିକ ଘନୀଭୂତ ହେବାକୁ ଲାଗିଲା । ତେଣୁ ଦିଲ୍ଲୀରୁ ଶ୍ରୀଯୁକ୍ତ ପି.ଭି.ନରସିଂହ ରାଓ ଉଭୟଙ୍କୁ ଡ଼କାଇ ଏକ ସମାଧାନ କରି ଦେଲେ ଏବଂ ଶ୍ରୀଯୁକ୍ତ ପଟ୍ଟନାୟକଙ୍କୁ ପ୍ରଦେଶ କଂଗ୍ରେସ ସଭାପତି ଓ ଶ୍ରୀଯୁକ୍ତ ବିଶ୍ୱାଳଙ୍କୁ ଉପସଭାପତି ଦାୟିତ୍ୱ ଦେଲେ । ମାତ୍ର ଏହି ସମାଧାନ ବେଶିଦିନ ପର୍ଯ୍ୟନ୍ତ ତିଷ୍ଠି ପାରିଲା ନାହିଁ ବରଂ ବିଭେଦବଢ଼ିବାକୁ ଲାଗିଲା । ଏହାର କେତେମାସ ପରେ ବିଭିନ୍ନ ପୌରସଭା ଓ ଏନ୍.ଏ.ସି.ଗୁଡ଼ିକର ନିର୍ବଚନ ହେବାରୁ ବିବାଦ କ୍ରମେ ବଢ଼ିବାକୁ ଲଗିଲା । ଉଭୟେ ନିଜ ନିଜର ସମର୍ଥନଙ୍କୁ ପ୍ରାର୍ଥୀ

ଭାବେ ଛାଡ଼ା କରାଇବାକୁ ଚାହିଁଲେ । ବରିପଦା ପୌରସଭାର ନିର୍ବାଚନ ଏହାର ଉପଯୁକ୍ତ ଉଦାହରଣ ହେବ ବୋଲି ମନେକରେ । ବାରିପଦା ପୌର ସଭାର ଅଧକ୍ଷ ପଦ ପାଇଁ ସହରର ମୁଖ୍ୟ କଂଗ୍ରେସ ବ୍ୟକ୍ତି ତଥା ମୋର ପ୍ରଧାନ ସହକର୍ମୀ ଶ୍ରୀମାନ୍ ଦୀନକୃଷ୍ଣ ଉପଯୁକ୍ତ ହେଲେ ମଧ ତାଙ୍କୁ କଂଗ୍ରେସ ତରଫରୁ ପ୍ରାର୍ଥୀ କରାଗଲା ନାହିଁ । ସେତେବେଳେ ମୋତେ ତଥା ଦୀନକୃଷ୍ଣଙ୍କୁ ଜାନକୀବାବୁଙ୍କ ଲୋକ ବୋଲି ବସନ୍ତବାବୁ ବିଚାରକରି ଶ୍ରୀ ହେମନ୍ତ ଦାସ ନାମକ ଜଣେ ବସ ମାଲିକଙ୍କୁ ଏହି ପଦବୀ ପାଇଁ ପ୍ରାର୍ଥୀ ବଛାଗଲା । ମାତ୍ର ଦୀନକୃଷ୍ଣ ସ୍ୱାଧୀନ ପ୍ରାର୍ଥୀଭାବେ ପ୍ରତିଯୋଗିତାରେ ଅବତୀର୍ଣ୍ଣ ହେଲେ ଓ ବିପୁଳ ଭୋଟରେ ବିଜୟୀ ହେଲେ । ପ୍ରକୃତ କଂଗ୍ରେସର ବିଜୟ ଘଟିଲା ଓ ଛଦ୍ମବେଶୀ କଂଗ୍ରେସ ୩ୟ ସ୍ଥାନରେ ରହିଲେ । ସହରର ମୋର ଯେତେ ସହକର୍ମୀ ଥିଲେ ସ୍ୱାଧୀନ ପ୍ରାର୍ଥୀଭବେ ବିଭିନ୍ନ ଓ୍ୟାର୍ଡରୁ ପ୍ରତିଦ୍ୱନ୍ଦତା କରି କାଉନ୍‌ସିଲାର ଭାବେ ମଧ ନିର୍ବାଚିତ ହେଲେ ।

୧୯୯୨ ମସିହାର ମଧଭାଗରେ ପ୍ରଦେଶ କଂଗ୍ରେସ କମିଟିର ଏକ ବୈଠକ ଡ଼କାଗଲା । ମୁଁ ମଧ ପ୍ରତିନିଧି ଭାବରେ ଏ ବୈଠକରେ ଯୋଗ ଦାନ କରିଥିଲି । ଉଭୟ ଜନକୀବାବୁ ଓ ବସନ୍ତବାବୁ ସାଙ୍ଗ ହୋଇ ବୈଠକକୁ ଆସି କିଛି ସମୟ ମଣ୍ଡପ ଉପରେ ବସିଲା ପରେ ଉଠିଯାଇ ନିଜ ନିଜ ସମର୍ଥକମାନଙ୍କ ନିକଟରେ ବସିଲେ । ଏହା ପରେ ପରେ ଦୁଇଦଳର ଗୁଣ୍ଡାମାନଙ୍କ ମଧରେ ଠେଲା ପେଲା ଆରମ୍ଭ ହୋଇ ଘଟଣା ଅତ୍ୟନ୍ତ ଗୁରୁତର ହେବାକୁ ଲାଗିଲା । ଆମେ କେତେଜଣ ଉକ୍ତ ସ୍ଥନରୁ ଅନ୍ୟତ୍ର ଯାଇ କେବଳ ନିରବ ଦ୍ରଷ୍ଟା ହେଲୁ । ଗୁଣ୍ଡାମାନଙ୍କ ସମ୍ମୁଖୀନ ହେବା ଆମ ପକ୍ଷରେ ସମ୍ଭବପର ହେଲା ନାହିଁ । କେତେକଙ୍କୁ ମାଡ଼ ଖାଇ ରକ୍ତାକ୍ତ ଅବସ୍ଥାରେ ଦେଖି ଦୁଃଖିତ ହେବା ସଙ୍ଗେ ସଙ୍ଗେ ନିଜକୁ ଲଜ୍ଜିତ ମନେ କଲୁ । କଂଗ୍ରେସ ଭଳି ଏକ ରାଜନୈତିକ ଦଳରେ ଏପରି ଅଘଟଣ ଦେଖି ଲୋକେ ଦୁଃଖିତ ହେଲେ । ଯେଉଁ କଂଗ୍ରେସ ସତ୍ୟ ଓ ଅହିଂସା ଉପରେ ପ୍ରତିଷ୍ଠିତ ସେ ଦଳର ଭବିଷ୍ୟତ ଗୁଣ୍ଡାଙ୍କ ହାତରେ । ଏହପରେ ଏ ଘଟଣାର ତଦନ୍ତ ପାଇଁ ଦିଲ୍ଲୀରୁ ଶ୍ରୁଯୁକ୍ତ ଝାକଡ଼, ଶ୍ରୀଯୁକ୍ତ ସାଙ୍ଗମା ପ୍ରଭୃତି ନେତୃବୃନ୍ଦ ଆସି ଆମ୍ଭମାନଙ୍କର ମତାମତ ସଂଗ୍ରହ କଲେ । ଏ ଘଟଣା ପାଇଁ ଉଭୟ ନେତା ଦାୟୀ ବୋଲି ମୁଁ ମୋର ଅଭିମତ ପ୍ରକାଶ କରିଥିଲି । ଫଳରେ ଶ୍ରଯୁକ୍ତ ବସନ୍ତବାବୁ ଓ ଜାନକୀବାବୁଙ୍କ ପକ୍ଷରୁ ଛାତ୍ର ନେତାଙ୍କୁ ଦଳରୁ ନିଲମ୍ବିତ କରାଗଲା ।

ଓଡ଼ିଶାର କଂଗ୍ରେସର ସଂଗଠନ ମଧରେ ଚାଲିଥିବା ଦଳାଦଳୀ ଶେଷ ନ ହୋଇ କ୍ରମେ ବୃଦ୍ଧି ପାଉଥିବାର ଦେଖି ଅତ୍ୟନ୍ତ ଦୁଃଖିତ ହେଲି । ଶ୍ରଯୁକ୍ତ ନରସିଂହ ରାଓ ଉଭୟ ପ୍ରଧାନମନ୍ତ୍ରୀ ତଥା ଦଳର ଅଧକ୍ଷ ପଦରେ ଥାଇ ମଧ କେବଳ ଦଣ୍ଡବିଧାନ କରି ଚାଲିଲେ ମତ୍ର ସମସ୍ତେ ଏକତ୍ରିତ ହୋଇ ସଂଗଠନକୁ କିପରି ଦୃଢ଼ତର କରିବେ ସେ ଦିଗରେ କୌଣସି ପଦକ୍ଷେପ ନେଲେ ନାହିଁ । ମୁଁ ସେତେବେଳେ ବିଧାନସଭାର ସଦସ୍ୟ ନ ଥିଲେ ମଧ ଭୁବନେଶ୍ୱରରେ ମୋ ପୁଅମାନଙ୍କ ଠାରେ ରହୁଥିଲି । କଂଗ୍ରେସ ଲୋକ ହିସାବରେ ଏ ବିବାଦର ମୀମାଂସା ପାଇଁ ମୋ ପକ୍ଷରୁ ଉଦ୍ୟମ ଆରମ୍ଭ କଲି । ବହୁ କଂଗ୍ରେସ ଲୋକ ମଧ ଏ ଦିଗରେ ପଦକ୍ଷେପ ନେବାକୁ ମୋତେ ଅନୁରୋଧ ଜଣାଇଲେ । ତେଣୁଁ ପ୍ରଧମେ ଶ୍ରୀଯୁକ୍ତ ବସନ୍ତବାବୁଙ୍କୁ ଡ଼ାକି ତାଙ୍କର ମତାମତ ଜାଣିବାକୁ ଚେଷ୍ଟା କଲି । ତାଙ୍କ ସହିତ ଦୁଇଥର ଆଲୋଚନା ପରେ ସେ ଅବଶ୍ୟ ଜାନକୀବାବୁଙ୍କ ନେତୃତ୍ୱ ମାନି ଚଳିବାକୁ ସମ୍ମତ ହେଲେ । ମାତ୍ର ତାଙ୍କ ଉପରେ ଥିବା ନିଲମ୍ବନ ଆଦେଶେ ପ୍ରତ୍ୟାହାର ନ ହେଲା ପର୍ଯ୍ୟନ୍ତ ସେ ଜାନକୀବାବୁଙ୍କ ସହ ବସି ପାରବେ ନାହିଁ ବୋଲି ମତ ଦେଲେ । ଏହା ମଧ ଯୁକ୍ତିଯୁକ୍ତ । ଏହା ପରେ ଜାନକୀବାବୁଙ୍କ ସହିତ କଥାବାର୍ତ୍ତ କରି ଦଳର ହିତ ଦୃଷ୍ଟିରୁ ଏକାଠି ନ ହୋଇ ଆଗାମୀ ନିର୍ବାଚନ ଲଢ଼ିବା ସମ୍ଭବପର ହୋଇ ପାରିବ ନାହିଁ ବୋଲି ତାଙ୍କୁ କହିଲି । ସୁତରାଂ ପ୍ରଦେଶ କଂଗ୍ରେସର ସଭାପତି ଭାବେ ସେ ନିଜେ ଦଳର ହାଇକମାଣ୍ଡଙ୍କ ତରଫରୁ ଉଭୟଙ୍କ ଉପରେ ଜାରୀ ହୋଇଥିବା ନିଲମ୍ବନ ଆଦେଶ ପ୍ରତ୍ୟାହାର ପରାଇବାର ଉଦ୍ୟମ କରିବାକୁ ଅନୁରୋଧ କଲି । ବହୁତ କହିଲା ପରେ ସେ ମଧ ଏଥିରେ ସମ୍ମତ ହେଲେ । ମାତ୍ର ଏ ଦିଗରେ ସେପରି କୌଣସି ତତ୍ପରତା ପ୍ରକାଶ ପାଇବାର ଲକ୍ଷ୍ୟ କରି ପାରିଲି ନାହିଁ । ଏତିକି ବେଳେ ମୟୁରଭଞ୍ଜ ଲୋକସଭାର ଉପ-ନିର୍ବାଚନ ପ୍ରକାଶ ପାଇଲାରୁ ହାଇକମାଣ୍ଡ ବାଧ ହୋଇ ଉଭୟଙ୍କ ମଧ୍ୟରେ ମିଳାମିଶା କରାଇ ଦେଲେ ।

## ୧୯୯୦ରୁ ୧୯୯୫ ପର୍ଯ୍ୟନ୍ତ ରାଜ୍ୟରେ ଉନ୍ନୟନ କାର୍ଯ୍ୟ :-

୧୯୯୦ର ନିର୍ବାଚନ ପରେ ବିଜୁ ପଟ୍ଟନାୟକଙ୍କ ନେତୃତ୍ୱରେ ରାଜ୍ୟଶାସନ ଚାଲିଲା । ବିଧାନସଭାରେ ବିରୋଧୀ କଂଗ୍ରେସଦଳ ଅତି ନଗଣ୍ୟ । ଜନତା ଦଳ ଯେଉଁ ସମସ୍ତ ଲୋକଭୁଲାଣିଆ ପ୍ରତିଶ୍ରୁତି ଦେଇଥିଲା ସେଥିରୁ ଗୋଟିଏ ହେଲେ ପୂରଣ କରି ନ ପାରିଲେ ହେଁ ଦୁର୍ବଳ ବିରୋଧୀଦଳ ତାର ମୁକାବିଲା କରି ପାରିଲାନି । ଗାମାଞ୍ଚଳରେ ଯେଉଁ ସବୁ ଉନ୍ନୟନ କାମ ଚାଲିଲା ତାହା କଂଗ୍ରେସ ଲୋକଙ୍କୁ କରିବାକୁ ଦିଆଗଲା ନାହିଁ । ମୁଖ୍ୟମନ୍ତ୍ରୀଙ୍କ ସ୍ୱତନ୍ତ୍ର ନିର୍ଦ୍ଦେଶ ବଳରେ ବିଧାୟକଙ୍କ ବିନା ସୁପାରିସ୍‌ରେ କୌଣସି ଉନ୍ନୟନ ହୋଇ ନ ପାରିବାର ବ୍ୟବସ୍ଥା ହେଲାରୁ ପ୍ରତ୍ୟେକ କାମ ପାଇଁ ନିର୍ଦ୍ଦିଷ୍ଟ ଅର୍ଥରୁ ଖୋଲା ଖୋଲି ଭାବରେ ଦଶରୁ ଚାଳିଶ ପ୍ରତିଶତ ପର୍ଯ୍ୟନ୍ତ କମିସନ ନିଆଗଲା । ପ୍ରତିବ୍ଲକ୍‌କୁ କେନ୍ଦ୍ରୀୟ ଅନୁଦାନକୁ ମିଶାଇ ଦେଢ଼ କୋଟିରୁ ଦୁଇ କୋଟି ପର୍ଯ୍ୟନ୍ତ ଯେଉଁ ଅନୁଦାନ ଦିଆଗଲା ତଦ୍ୱାରା ଅଧିକ ଲାଭଥିବା ଦୃଷ୍ଟିରୁ କେବଳ ମାଟି ଓ ଗୋଡ଼ି କାମ କରାଗଲା । କୌଣସି ପକ୍କାକାମ ବା ପୋଲ ଇତ୍ୟାଦି କରା ନ ଯିବାରୁ ଲୋକେ ଯେ ଅସୁବିଧାକୁ ସେହି ଅସୁବିଧାରେ ହିଁ ରହିଲେ । ମୋ ନିର୍ବାଚନ ମଣ୍ଡଳୀରେ ୧୯୯୦ ଭିତରେ ଯେତିକି ଉଠା ଜଳସେଚନ ବ୍ୟବସ୍ଥା ହୋଇ ଥିଲା ସେତିକିରେ ସୀମିତ ରହିଲା । ଯେଉଁ ପ୍ରକଳ୍ପଗୁଡ଼ିକ ଖରାପ ହେଉଥିଲା ତାର ମରାମତି ବା ତତ୍‌ସଂଲଗ୍ନ କେନାଲଗୁଡ଼ିକର ମଧ ମରାମତି କରାଗଲା ନାହିଁ । ଫଳରେ ଅନେକ ପ୍ରକଳ୍ପ ଅଚଳ ହୋଇ ପଡ଼ିଲା ଓ ଲୋକେ ସେଥିରୁ ଲାଭ ଉଠାଇ ପାରିଲେ ନାହିଁ । ବିଧାୟକମାନେ ଏ ଦିଗରେ ଆଦୌ ଦୃଷ୍ଟି ଦେଲେ ନାହିଁ । ମୟୂରଭଞ୍ଜରୁ କୌଣସି କଂଗ୍ରେସ ସଦସ୍ୟ ନିର୍ବାଚିତ ହୋଇ ନ ଥିବାରୁ ମୟୂରଭଞ୍ଜ ସବୁଠାରୁ ବେଶି କ୍ଷତିଗ୍ରସ୍ତ ହେଲା । ବହୁ ଆନ୍ଦୋଳନର ଫଳ ସ୍ୱରୂପ ମୟୂରଭଞ୍ଜରେ ଯେଉଁ ସୁବର୍ଣ୍ଣରେଖା ନଦୀବନ୍ଧ ଯୋଜନା ଆରମ୍ଭ ହୋଇଥିଲା ତାର କାର୍ଯ୍ୟ ସଂପୂର୍ଣ୍ଣରୂପେ ଏହି ସମୟମଧରେ ବନ୍ଦ କରି ଦିଆଗଲା । କର୍ମଚାରୀମାନେ ଦୀର୍ଘ ୫ବର୍ଷ ଧରି ବସି ବସି କେବଳ ଦରମା ନେଲେ । ରେଙ୍ଗଲୀ, ବାଲିମେଲା ଜଳସେଚନ ଯୋଜନାର ବଳକା କର୍ମଚାରୀଙ୍କୁ ବଦଳୀ କରି ଏଠକୁ ଅଣାଗଲା । ଏହି ଯୋଜନା କର୍ଯ୍ୟକାରୀ ହେବାର ଯୋଉଁ ୩ୟ ଓ ୪ର୍ଥ ଶ୍ରେଣୀ ପଦବୀ ନୂଡ଼ିକ ସୃଷ୍ଟି ହେଲା ସେଗୁଡ଼ିକର ନିଯୁକ୍ତି ପାଇଁ କେବଳ ବୁଡ଼ି ଅଞ୍ଚଳର ଲୋକଙ୍କୁ ଅଗ୍ରାଧିକାର ଦିଆଯିବା ପାଇଁ କଂଗ୍ରେସ ସରକାର ଅମଳରୁ ସ୍ଥିର ହୋଇ ଥିଲେ ହେଁ ତାହା ଜନତା ସରକାର ଅମଳରେ ଭାଙ୍ଗି ଦିଆଗଲା ଓ ବିଭିନ୍ନ ଆଳରେ କଟକ ପୁରୀ ଅଞ୍ଚଳରୁ ଲୋକ ଆଣି ନିଯୁକ୍ତି ଦିଆଗଲା । ସୁବର୍ଣ୍ଣରେଖା ପ୍ରକଳ୍ପ ବାବଦ ଅର୍ଥରୁ ପ୍ରାୟ ଦୁଇ ଶହ କୋଟି ଟଙ୍କା କାଟି ନେଇ ନରାଜ ତଥା ଅନ୍ୟ ପ୍ରକଳ୍ପରେ ଲଗାଗଲା । million of wells ଯୋଜନାରେ କେନ୍ଦ୍ର ସରକାରଙ୍କଠାରୁ ଯେଉଁ ଅନୁଦାନ ଆସିଲା ସେ ସମସ୍ତ ଅନ୍ୟ ଦିଗରେ ଖର୍ଚ୍ଚ କରାଗଲା । ଯେଉଁ ଅଳ୍ପ କେତେ ସ୍ଥାନରେ ଗଳସେଚନ ଉଦ୍ଦେଶ୍ୟରେ ଏହି କୂଅମାନ ଖୋଳା ହେଲା ସେଥିରୁ ଦରକାର ବେଳେ ପାଣି ମିଳିଲା ନାହିଁ । ବ୍ଲକସ୍ତରରେ ବିଭିନ୍ନ କାର୍ଯ୍ୟ ପାଇଁ ଯେଉଁ ଅର୍ଥ ବିନିଯୋଗ କରାଗଲା ତାହା ପ୍ରଶାସନ ପକ୍ଷରୁ ଯାଞ୍ଚକରାଗଲା ନାହିଁ । ଫଳରେ ଜନ ସାଧାରଣ ଏହାଦ୍ୱାରା ଉପକୃତ ହୋଇ ପାରିଲେ ନାହିଁ । ବରଂ କେତେକ ମୁଷ୍ଟିମେୟ କର୍ମଚାରୀ ଏଥିରୁ ଲାଭ ଉଠାଇଲେ । ବ୍ଲକମାନଙ୍କରେ ବିଭାଗୀୟ କର୍ମଚାରୀମାନଙ୍କ ଦ୍ୱାରା ଯେଉଁ କାର୍ଯ୍ୟମାନ କରାଗଲା ସେ ସବୁ ଲୁଟ୍ ହୋଇଗଲା । ଜଣେ ଜଣେ କନିଷ୍ଠ ଯନ୍ତ୍ରୀଙ୍କୁ ପଚାଶ ଲକ୍ଷରୁ ଏକ କୋଟି ଟଙ୍କାର କାମ ଦିଆଗଲା । ସେମାନେ ଉକ୍ତ ଟଙ୍କାକୁ ନେଇ ନିଜ ନାମରେ ବେଙ୍କ୍‌ରେ ଜମା କଲେ ଓ ତାର ସୁଧ ନିଜେ ନେଇ ଗଲେ । ଶେଷରେ ବାଛି-ବାଛି ନିଜ ଲୋକଙ୍କୁ କାମ ଦେଇ ଚଢ଼ା କମିଶନି ଆଦାୟ କଲେ । ଏଥିରେ ବି.ଡ଼ି.ଓ.ଙ୍କ ଠାରୁ ଆରମ୍ଭ କରି ଜିଲ୍ଲାପାଳ ପର୍ଯ୍ୟନ୍ତ ସମସ୍ତଙ୍କର ଅଂଶ ରହିଲା । ପ୍ରକୃତରେ ଜନସାଧାରଣଙ୍କ ଉଦ୍ଦେଶ୍ୟରେ କ'ଣ କାମ ହେଲା ନ ହେଲା ସେଥିପ୍ରତି କାହାରି ଦୃଷ୍ଟି ରହିଲା ନାହିଁ । ଅନେକ କ୍ଷେତ୍ରରେ କୌଣସି କାମ କରା ନ ଯାଇ ସମସ୍ତ ଅର୍ଥ ବିଧାୟକଙ୍କ ଠାରୁ ଆରମ୍ଭ କରି ସମସ୍ତ ବ୍ଲକ୍ କମର୍ମଚାରୀଙ୍କ ମଧରେ ଭାଗ ବଣ୍ଟା ହୋଇ ଗଲା । ଯେଉଁ କଂଗ୍ରେସ ଲୋକେ ଆଗରୁ ଠିକାଦାରୀ କରୁଥିଲେ ।ସମାନଙ୍କୁ କୌଣସି

କାର୍ଯ୍ୟ ଦିଆଯିବ ନାହିଁ ବୋଲି ବି.ଡ଼ି.ଓ. ତଥା ଅନ୍ୟ ଅଫିସରମାନେ ପ୍ରକାଶ୍ୟ ଭାବରେ କହିଲେ । ଯେଉଁଠାରେ କଂଗ୍ରେସ ଲୋକେ କଣ୍ଟ୍ରୋଲ ଡିଲର ଥିଲେ ସେମାନଙ୍କୁ ନାନା ଆଳ ଦେଖାଇ କାଟି ଦିଆଗଲା ଓ ସେସବୁ ସ୍ଥାନମାନଙ୍କରେ ଜନତାଦଳର ସମର୍ଥକମାନଙ୍କୁ ନିଯୁକ୍ତି ଦିଆଗଲା । ଆପତ୍ତି ଅଭିଯୋଗ କଲେ କେହି ଶୁଣିଲେ ନାହିଁ । ମୋଟ ଉପରେ ମୟୂରଭଞ୍ଜରେ ଏକ ପ୍ରକାରଏକଛତ୍ର ଶାସନ ଚାଲିଲା । ଏପରିକି ମୁଁ ବାଚସ୍ପତି ଥିବା ବେଳେ ଯେଉଁ ସମସ୍ତ ଉନ୍ନୟନ କାର୍ଯ୍ୟର ମୂଳଦୁଆ ଦିଆଯାଇ ଥିଲା ସେ ସବୁର ନାମ ଫଳକଗୁଡ଼ିକୁ ଭାଙ୍ଗି ଦିଆଗଲା ।

## ଏକ ଦୁର୍ଭାଗ୍ୟପୂର୍ଣ୍ଣ ଘଟଣା ଓ କୌତୁହଳ ସମାବେଶ

୧୯୯୩ ମସିହା ଡ଼ିସେମ୍ବର ତା୨୨ରିଖ ଦିନ ବାରିପଦା ସହରର ମୁଖ୍ୟ ବଜାରରେ ଏକ ଦୁଃଖ ପୂର୍ଣ୍ଣ ଘଟଣା ଘଟିଲା । କେତେକ ବ୍ୟବସାୟୀ ଖାଉଟିମାନଙ୍କୁ ମାପ ଓଜନରେ ଠକୁ ଥିବାର ଅଭିଯୋଗ ହୋଇଆସୁଥିଲା । ଉକ୍ତ ଦିନ ମାପ ଓଜନ ଇନିସ୍‌ପେକ୍ଟର ସଦଳବଳେ ମାଜିଷ୍ଟ୍ରେଟଙ୍କ ଗହଣରେ ଆସି ଗୁଜୁରୀ ମାର୍କେଟର କେତେକ ଦୋକାନରେ ଯାଞ୍ଚ କାର୍ଯ୍ୟ ଚଳାଇଲେ । କେତେକ କ୍ଷେତ୍ରରେ ସାମାନ୍ୟ ତ୍ରୁଟି ପରିଲକ୍ଷିତ ହେବାରୁ ବିଚାର ବିଭାଗୀୟ ମାଜିଷ୍ଟ୍ରେଟ ଦଣ୍ଡ ସ୍ୱରୂପ ଜରିମାନା ଧାର୍ଯ୍ୟ କଲେ । ଜରିମାନାର ପରିମାଣ ଉପରେ ଉଭୟଙ୍କ ମଧ୍ୟରେ ବଚସା ଆରମ୍ଭ ହେଲା । ଏହା ମୁଖ୍ୟ ବଜାର ସ୍ଥଳୀ ହୋଇ ଥିବାରୁ କ୍ରମେ ବହୁଲୋକ ଆସି ରୁଣ୍ଡ ହୋଇଗଲେ । ଲୋକସଂଖ୍ୟା ବୃଦ୍ଧି ସଙ୍ଗେ ସଙ୍ଗେ ଉତ୍ତେଜନା ମଧ୍ୟ ବଢ଼ିବାକୁ ଲାଗିଲା । ଏତିକି ବେଳେ ହଠାତ୍ ପୋଲିସ ତରଫରୁ ଗୁଳିଚାଳନା କରାଗଲା ଏବଂ ସେଥିରେ ଜଣେ କଲେଜ ଛାତ୍ରର ମୃତ୍ୟୁ ହେଲା । ଏ ଘଟଣା ପରେ ଉତ୍ତେଜନା ଆହୁରି ବଢ଼ିଲା ଏବଂ ତହିଁ ପର ଦିନ ଥାନା ନିକଟରେ ପୋଲିସ ପକ୍ଷରୁ ପୁଣି ଗୁଳି ଚାଳନା କରାଗଲା ଏବଂ ଆଉ ଜଣେ ଯୁବକ ଗୁଳି ଚୋଟରେ ଟଳି ପଡ଼ିଲେ ।

ପୂର୍ବଦିନ ଗୁଳିଚାଳନାରେ ଏପରି ଏକ ଦୁର୍ଘଟଣା ଘଟିଥିଲେ ମଧ୍ୟ ୨ୟ ଥର ଗୁଳିଚାଳନା ଏକ ଅମାନୁଷିକ ଘଟଣା । ଏପରି ଘଟଣା ବାରିପଦାର ଇତିହାସରେ କେବେ ହୋଇ ନାହିଁ । ଅବସ୍ଥା ଅଣାୟତ୍ତ ହୋଇପଡ଼ିଲାରୁ ଜିଲ୍ଲାପାଳ ମୋତେ ଡ଼କାଇ ପରାମର୍ଶ ଲୋଡ଼ିଲେ । ଅବଶ୍ୟ ମୁଁ ସେତେବେଳେ ବିରୁଦ୍ଧ ଦଳର ଅନ୍ତର୍ଭୁକ୍ତ । ଏଥିରେ ମୋର କିଛି କରିବାର ନ ଥିଲେ ହେଁ ଏ ଘଟଣାର ବିଚାର ବିଭାଗୀୟ ତଦନ୍ତ ପାଇଁ ସରକାରଙ୍କ ନିକଟରେ ଦାବୀ ଉପସ୍ଥାପନ କଲି । ପରିଣାମରେ ସରକାର ବିଚାର ବିଭାଗୀୟ ତଦନ୍ତ କରିବାର ଘୋଷଣା କଲେ । ଶେଷରେ ଜିଲ୍ଲାପାଳଙ୍କ ତରଫରୁ ଉତ୍ତେଜନା ହ୍ରାସ ଉଦ୍ଦେଶ୍ୟରେ ଏକ ଶାନ୍ତି କମିଟି ସ୍ଥାପନ କରାଗଲା । ଜିଲ୍ଲାପାଳଙ୍କ ଗହଣରେ ଯାଇ ମୁଁ ମଧ୍ୟ ଶାନ୍ତି ସ୍ଥାପନରେ ସହାୟତା କଲି । ବିରୁଦ୍ଧଦଳ ହିସାବରେ ମୁଁ ଚାହିଁଥିଲେ ଏ ଘଟଣା ଅନ୍ୟ ପ୍ରକାରରେ ମୋଡ଼ ନେଇ ପାରି ଥାଆନ୍ତା । ମାତ୍ର ମୋର ଉପସ୍ଥିତି ଶାନ୍ତି ସ୍ଥାପନରେ ସହାୟକ ହୋଇ ପାରିଲା ।

ଏ ଘଟଣାର ଦୁଇମାସ ପରେ ତା୧୭।୨।୯୪ରିଖ ଦିନକ ପାଇଁ ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତବିଜୁ ପଟ୍ଟନାୟକ ମୟୁରଭଞ୍ଜ ଗସ୍ତରେ ଗଲେ । ମୁଖ୍ୟମନ୍ତ୍ରୀଙ୍କ ଏ ଗସ୍ତକାର୍ଯ୍ୟକ୍ରମ ଜଣେ ରାଜାଙ୍କର ଦିଗ୍‌ବିଜୟ ଯାତ୍ରାପରି ମନେ ହୋଇା । ଗସ୍ତକାର୍ଯ୍ୟକ୍ରମର ପୂର୍ବଦିନ ବହୁ ସଂଖ୍ୟକ ରିଜର୍ଭ ପୋଲିସ ଆଠ ଦଶଟି ଗାଡ଼ିରେ ବିଭିନ୍ନ ଅସ୍ତ୍ର ଶସ୍ତ୍ରରେ ସଜ୍ଜିତ ହୋଇ ଚାରିଆଡ଼େ ପଇଁତରା ଦେବାକୁ ଲାଗିଲେ । ସବୁ କଂଗ୍ରେସ ଲୋକଙ୍କୁ ଗିରଫ କରି ମୁଖ୍ୟମନ୍ତ୍ରୀ ଜିଲ୍ଲା ଛାଡ଼ିଲା ପର୍ଯ୍ୟନ୍ତ ଅଟକ ରଖାଗଲା । ସେ ଦିନ ଅପରାହ୍ଣରେ ବାରିପଦା ମହିଳା ମହାବିଦ୍ୟାଳୟର ଏକ ସମାରୋହ ହେବାର ଥାଏ । ସେ ଦିନ ଉକ୍ତ ଉତ୍ସବରେ ଆମେ ଦୁହେଁ ଯୋଗ ଦେଇ ଏକତ୍ରିତ ହେଲୁ । ମୋର ଭାଷଣ କାର୍ଯ୍ୟକ୍ରମରେ ମୁଁ ମୁଖ୍ୟମନ୍ତ୍ରୀଙ୍କୁ କହିଲି, ''ମୟୁରଭଞ୍ଜର ଜନସାଧାରଣ ଅତ୍ୟନ୍ତ ଶାନ୍ତି ପ୍ରିୟ । ସେପରି ପରିସ୍ଥିତି ନ ଉପୁଜିଲେ ସେମାନେ ଉତ୍ତ୍ୟକ୍ତ ହୁଅନ୍ତି ନାହିଁ । ମୁଖ୍ୟମନ୍ତ୍ରୀଙ୍କ ସମ୍ମାନ ନିଜର ସମ୍ମାନ ବୋଲି ସେମାନେ ହୃଦୟଙ୍ଗମ କରନ୍ତି । ମଖ୍ୟମନ୍ତ୍ରୀଙ୍କ ସୁରକ୍ଷା

ଆମର କର୍ତ୍ତବ୍ୟ । ମାତ୍ର ମୁଖ୍ୟମନ୍ତ୍ରୀ ଅହେତୁକ ଭୟରେ ତ୍ରସ୍ତ ହୋଇ  ସେନା ଛାଉଣୀ ମଧ୍ୟରେ ନିଜର ଗସ୍ତକ୍ରମ ଚଳାଇବା ଅତ୍ୟନ୍ତ ଦୁଃଖଦାୟକ । ବହୁ ସଂଖ୍ୟକ ପୋଲିସ ଆତ୍ମରକ୍ଷା ପାଇଁ ନେବା ଫଳରେ ଶାସନ ଖର୍ଚ୍ଚ ବଢୁଛି ଓ ଅନ୍ୟ ପକ୍ଷରେ ବିଭିନ୍ନ ଅଞ୍ଚଳରେ ଆଇନ ସୁରକ୍ଷାରେ ବାଧା ଘଟୁଛି ।'' ଶ୍ରୀଯୁକ୍ତ ବିଜୁ ପଟ୍ଟନାଏକଙ୍କ ସହିତ ମୋର ସଂପର୍କ କ'ଣ ଏହା ସମସ୍ତଙ୍କୁ ଭଲଭାବରେ ଜଣା । ବିଦ୍ୟାଳୟର ଛାତ୍ରୀମାନଙ୍କ ମଧ୍ୟରେ କଂଗ୍ରେସ ସମର୍ଥକମାନେ ମୋତେ ଅତିଥି ଭବେରେ ଚାହୁଁଥିଲାବେଳେ ଜନତା ସମର୍ଥକମାନେ ଶ୍ରୀଯୁକ୍ତ ପଟ୍ଟନାୟକଙ୍କୁ ଚାହୁଁଥିଲେ । ପରି ଶେଷରେ ମୋତେ ସମ୍ମାନିତ ଅତିଥି ଓ ଶ୍ରୀଯୁକ୍ତ ପଟ୍ଟନାୟକଙ୍କୁ ମୁଖ୍ୟ ଅତିଥିଭାବରେ ନିମନ୍ତ୍ରଣ କରାଗଲା  ଆମ ଦୁଇଜଣଙ୍କୁ ଏକତ୍ରିତ ହେବାର ଦେଖି ବହୁଲୋକ କୌତୁହଳ ବଶତଃ ଉକ୍ତ ସମାରୋହରେ ଯୋଗଦେବାକୁ ଇଚ୍ଛୁକଥିଲେ  ହେଁ ସେମାନଙ୍କୁ ପ୍ରବେଶ କରିବାକୁ ଦିଆଗଲା ନାହିଁ ।

## ଓଡ଼ିଶା ବିଧାନସଭାକୁ ମୋର ୯ମ ଥର ପାଇଁ ବିଜୟ :-

୧୯୯୦ର ବିଧାନସଭାର ସାଧାରଣ ନିର୍ବାଚନରେ ପରାଜିତ ହେଲାଠାରୁ ୧୯୯୫ ପର୍ଯ୍ୟନ୍ତ ବହୁ ଘାତ ପ୍ରତିଘାତ ମଧ୍ୟରେ ମୋର ସମୟ ଅତିବାହି ହୋଇଗଲା । ଦୁଃଖରେ ଅଧୀର ହୋଇ ପଡ଼ିଲେ ମନୁଷ୍ୟର ବୁଦ୍ଧି ଓ ବଳ ନଷ୍ଟ ହୋଇଯାଏ, ମାତ୍ର ଶାନ୍ତିରେ ରହିଲେ ଏ  ଦୁଇ ଶକ୍ତିର ବୃଦ୍ଧି ଘଟେ । ବୁଦ୍ଧି ଓ ବଳ ଏ ଦୁଇ ଶକ୍ତିରେ ଯେ ବଳବାନ୍ ଲକ୍ଷ୍ମୀ ସଦା ତା'ର ପଦାନତ । ତେଣୁ ମନୋବଳ ବଢ଼ାଇ ସବୁ  ଦୁଃଖ ଦୁର୍ଦ୍ଦଶାର ଦାଉକୁ ଅତି ଧୈର୍ଯ୍ୟର ସହିତ ସହ୍ୟ କରି ୧୯୯୫ର ଓଡ଼ିଶା ବିଧାନସଭାର ସାଧାରଣ ନିର୍ବାଚନ ପାଇଁ ନିଜକୁ ପ୍ରସ୍ତୁତ କରି ନେଲି । ବିଗତ ତିନି ବର୍ଷ ମଧ୍ୟରେ ମୟୂରଭଞ୍ଜ ଲୋକସଭା ନିର୍ବାଚନମଣ୍ଡଳୀର ଦୁଇ ଥର ନିର୍ବାଚନ ହୋଇ ବାରିପଦା ବିଧାନସଭା ନିର୍ବାଚନ ମଣ୍ଡଳୀରୁ  ସର୍ବାଧିକ ଭୋଟ  ମିଳିଥିବାରୁ ବିଧାନସଭା କ୍ଷେତ୍ରରେ କଂଗ୍ରେସ ପ୍ରାର୍ଥିର ବିଜୟ ସହଜସାଧ ହେବ ମନେ କରି ୧୫ଜଣ କଂଗ୍ରେସ ଦଳ ପାଇଁ ପ୍ରାର୍ଥୀପତ୍ର ଦାଖାଲ କଲେ । ଯାହାଯେଉ ଶେଷରେ ମୋର ପ୍ରାର୍ଥୀପତ୍ର କାଏମ ରହିଲା । ପୂର୍ବଥରର ଜନତା ଦଳର ପ୍ରାର୍ଥୀ ବିଜୟଲାଭ କରିଥିଲେ ହେଁ ତାଙ୍କୁ ଏଥର ଜନତା ଦଳର ପ୍ରାର୍ଥୀତ୍ୱ ମିଳିଲା ନାହିଁ ବରଂ ୧୯୯୦ର ନିର୍ବାଚନରେ ୩ୟ ସ୍ଥାନ ଲାଭକରିଥିବା ସ୍ୱାଧୀନ ପ୍ରାର୍ଥୀଙ୍କୁ ଜନତାଦଳର ଟିକଟ ଦିଆଗଲା । ସେ ହେଉଛନ୍ତି ମୋର ନିଜର ସଂପର୍କୀୟ ବ୍ୟକ୍ତି । ଏତଦ୍ ବ୍ୟତୀତ ଝଡ଼ଖଣ୍ଡ, ଭାରତୀୟ ଜନତା ପାର୍ଟି ଓ ସ୍ୱାଧୀନ ସଭ୍ୟ ମଧ ନିର୍ବାଚନ ପ୍ରତିଦ୍ୱନ୍ଦିତରେ ଅବତୀର୍ଣ୍ଣ ହେଲେ । ନିର୍ବାଚନ କ୍ରମେ ତୀବ୍ର ହୋଇ ଉଠିଲା ।

ମୋ ବିରୁଦ୍ଧରେ ସାଧାରଣତଃ କେବେହେଲେ କୌଣସି ପ୍ରକାରଅଭିଯୋଗ ନାହିଁ । ମାତ୍ର ମୟୂରଭଞ୍ଜର ସର୍ବମୋଟ ୧୦ଟି ଆସନ ମଧ୍ୟରୁ କେବଳ ବାରିପଦା ନିର୍ବାଚନ ମଣ୍ଡଳୀ ସାଧାରଣ ସ୍ଥାନ ଥିବାରୁ ସବୁଦଳର ଦୃଷ୍ଟି ଏ ଆସାନରେ ରହିଅଛି । ମୁଁ ମଧ ଏହା ପୂର୍ବରୁ କ୍ରମାନ୍ୱୟରେ ତିନିଥର ଏହି ଆସନରୁ ବିଜୟୀ ହେଲିଣି । ଏହାକୁ ଛାଡ଼ି ପୂର୍ବରୁ ଏ ଜିଲ୍ଲାର ବେଶିଙ୍ଗା ଖୁଣ୍ଟା ଓ ମୁରୁଡା ନିର୍ବାଚନ ମଣ୍ଡଳୀଗୁଡ଼ିକ ସାଧାରଣ ସ୍ଥାନ ଥିବା ବେଳେ ପାଞ୍ଚଥର ନିର୍ବାଚନତ ହୋଇଥିଲି । ତେଣୁ ମୋପ୍ରତି ସବୁଦଳ ଈର୍ଷାନ୍ୱିତ । ଏଥର ନିର୍ବାଚନ ବେଳକୁ ମୋ ବିରୁଦ୍ଧରେ ଏକ ଗୁରୁତର ଅଭିଯୋଗ ଜନତା ଆଗରେ ରଖାଗଲା, ତହା ହେଲା ମୋର ବୟସ ବହୁତ ହୋଇ ଯାଇଛି, ମୁଁ ବୁଢ଼ା ହୋଇ ଗଲିଣି ତେଣୁ କାର୍ଯ୍ୟକ୍ଷମ ନୁହେଁ ଇତ୍ୟାଦି ଇତ୍ୟାଦି ।

ମୁଁ ଏଠାରେ ଗୋଟିଏ ବିଷୟର ଅବତାରଣା କରିବାକୁ ଚାହେଁ । ଦଳତରଫରୁ ଯେଉଁମାନେ ପ୍ରାର୍ଥି ସେମାନଙ୍କ ମଧ୍ୟରୁ କେହି କେବେହେଲେ ଲୋକଙ୍କ ପାଖକୁ ଯାଆନ୍ତି କି ? ଏପରିକି ନିର୍ବାଚନ ମଣ୍ଡଳୀ କେତେବେତ୍ ତା ମଧ କେହି ଜାଣନ୍ତି  ନାହିଁ । ନିର୍ବାଚନ ମଣ୍ଡଳୀରେ ଗ୍ରାମସଂଖ୍ୟାତ ଦୂରର କଥା କେତେଟି ଗ୍ରାମ ପଞ୍ଚାୟତ ଅଛି ତା ମଧ କେହି ଜାଣନ୍ତି ନାହିଁ । ପ୍ରାର୍ଥିମନୋନୟନ ବେଳେ ପ୍ରଦେଶ କଂଗ୍ରେସ ତରଫରୁ ଯେଉଁପର୍ଯ୍ୟବେକ୍ଷକ ଆସିଥିଲେ, ବାରିପଦା

ନିର୍ବାଚନ ମଣ୍ଡଳୀରେ ଗ୍ରାମ ପଞ୍ଚାୟତର ସଂଖ୍ୟା କେତେ ବୋଲି ପ୍ରାର୍ଥୀମାନଙ୍କଠାରୁ ଜାଣିବାକୁ ଚାହିଲେ । କେହି ଜଣେ ହେଲେ ଏହା ଉତ୍ତର ଦେଇପାରି ନ ଥିଲେ । ମାତ୍ର ବାରିପଦା ନିର୍ବାଚନ ମଣ୍ଡଳୀରେ ଏପରି ଗାଁ ନାହିଁ ଯେଉଁ ଗାଁର ଗୋଟିଏ ହେଲେ ଲୋକକୁ ମୁଁ ନ ଚିହ୍ନିଛି । ଏହା ଅନ୍ୟମାନେ ମୋର ଅହମିକା ବୋଲି ଭାବି ପାରନ୍ତି ମାତ୍ର ଏହା ନିରାଟ ସତ୍ୟ । ଶେଷରେ ଭୁବନେଶ୍ୱରରେ ପ୍ରାର୍ଥୀ ମନୋନୟନ ଚାଲିଥିଲା ବେଳେ କେତେକ ଆଶାୟୀ ପ୍ରାର୍ଥୀ ପ୍ରଦେଶ କଂଗ୍ରେସ ସଭାପତିଙ୍କୁ ଅନୁରୋଧ କଲେ ଯେ, ଯଦି ସେ ମୋତେ ଡ଼ାକି ପ୍ରାର୍ଥୀତ୍ୱ ଦାବୀରୁ ଓହରି ଯିବାକୁ କହିବେ ତେବେ ମୁଁ ଓହରି ଯିବି ଓ ସେମାନଙ୍କ ମଧ୍ୟରୁ କେହି ଜଣେ ପ୍ରାର୍ଥୀ ହେବେ । ଜାନକୀବାବୁ ମୋତେ ଡ଼ାକି ସେମାନଙ୍କର ଏହି କଥା କହି ମୋର ମତାମତ ଲୋଡ଼ିଲେ । ମୁଁ ମଧ୍ୟ ସଙ୍ଗେ ସଙ୍ଗେ ରାଜୀ ହୋଇ ଯାଇ କହିଲି ଅନେକ ପ୍ରାର୍ଥୀତ ଆଶାୟୀ ତେବେ ତାଙ୍କ ମଧ୍ୟରୁ କିଏ ଛିଡ଼ା ହେବ ଏବଂ ନିଶ୍ଚିତ ବିଜୟଲାଭ କରିବେ ତାହା ସଭାପତି ଠିକ୍ କରି ଦେଲେ ମୋର ଓହରି ଯିବାରେ କୌଣସି ଆପତ୍ତି ନାହିଁ । କିନ୍ତୁ ଏହାର କୌଣସି ନଷତି ହୋଇ ପାରିଲା ନାହିଁ । ତେଣୁ ଆଲୋଚନାର ଅବସାନ ଘଟିଲା ଓ ମୋର ପ୍ରାର୍ଥୀତ୍ୱ ସ୍ୱୀକୃତି ଲାଭକଲା ।

ଏଥର ଯେଉଁମାନେ ପ୍ରାର୍ଥୀ ହେବାପାଇଁ ଆଶା କରୁଥିଲେ ଏବଂ ଯେଉଁମାନେ ଦଳମଧ୍ୟରେ ଥାଇ ମଧ୍ୟ ମୋର ବିରୋଧ କରୁଥିଲେ ସେମାନଙ୍କ ନିକଟକୁ ମୁଁ ଆଗ ଗଲି ଓ ମୋତେ ସହଯୋଗ କରିବାକୁ ଅନୁରୋଧ କଲି । ନିର୍ବାଚନ ପ୍ରଚାର ଚାଲିଥିଲା ବେଳେ ବିଭିନ୍ନ ସମୟରେ ସେମାନଙ୍କୁ ପ୍ରଚାର କାର୍ଯ୍ୟରେ ନେଇ ଯାଉଥିଲି । ତେଣୁଁ ସେମୋନଙ୍କର ମନରେ ଯାହା ଧରଣା ଥଉନା କାହିଁକି ଉପରେ ସହଯୋଗ କରୁଥିବାରୁ ଭୋଟରମାନଙ୍କ ଉପରେ ନିଶ୍ଚିତ ପ୍ରଭାବ ପଡୁଥିବାର ମନେ ହେଲା । ମୋର ବୟସ ହୋଇଯାଇଛି ବୋଲି ମୋ ବିରୁଦ୍ଧରେ ବାରମ୍ବାର ନାନା ପ୍ରକାରର ମିଥ୍ୟା ପ୍ରଚାର କରାଗଲା । କେତେବେଳେ ମୋର ଗୋଡ଼ ପଡ଼ିଯାଇ ମୁଁ ଅଚଳ ହୋଇ ପଡ଼ିଲିଣିତ ଆଉ କେତେବେଳେ ଡ଼ାକ୍ତରଖାନାରେ ପଡ଼ି ରହିଛି ଓ ମୋତେ ସେଲାଇନ୍ ଦିଆ ଚାଲିଛି । ପୁଣି ଆଉ କେତେବେଳେ କଟକ ବଡ଼ ଡ଼ାକ୍ତରଖାନାକୁ ସ୍ଥାନନ୍ତରିତ କରାଗଲାଣି ବୋଲି ପ୍ରତ୍ୟକ୍ଷଦର୍ଶୀ ଭାବେ ଲେକଙ୍କ ମଧ୍ୟରେ ଅପପ୍ରଚାର କରାଗଲା । ପୁଣି ମୋତେ ଭୋଟ ଦେଇ ଜୟଯୁକ୍ତ କରାଇବାର ଭୁଲ ଯଦି ଭୋଟରମାନେ କରନ୍ତି ତେବେ ଛ ମାସ ନ ପୂରୁଣୁଁ ପୁଣି ଏକ ଉପନିର୍ବାଚନ ନିଶ୍ଚିତ ବୋଲି ମଧ୍ୟ ପ୍ରଚାର ଚାଲିଲା ।

ପ୍ରଚାରକାର୍ଯ୍ୟ ଚାଲିଥିଲାବେଳେ ଦିନେ ମୁଁ ହଠାତ୍ ଶୁଳିଆପଦା ଥାନାର ଖଡ଼ିଆଶୋଳ ଗ୍ରାମରେ ଯାଇ ପହୁଁଞ୍ଚିଲି । ମୋର ଯିବାଖବର ପାଇ ଆବାଳବୃଦ୍ଧବନିତା ଆସି ଜମା ହୋଇଗଲେ । ବିଶେଷ ଭାବରେ ବହୁ ସଂଖ୍ୟାରେ ସ୍ତ୍ରୀଲୋକ ମୋ ନିକଟକୁ ଆସିଲେ ଏବଂ ସେମୋନେ କହିଲେ ''ଏଇତ ପ୍ରଶନ୍ନବାବୁ ବେଶ ଭଲ ଅଛନ୍ତି, ବେଶ ଚଲାବୁଲା କରୁଛନ୍ତି- ଅଥଚ ତାଙ୍କ ନାମରେ ଏଉ ଅଳ୍ପ ସମୟ ପୂର୍ବରୁ କାହିଁକି ଏପରି ମିଥ୍ୟା ପ୍ରଚାର କରାଗଲା'' ବୋଲି କହି କେତେକ ଉତ୍ୟକ୍ତ ହୋଇ ପଡୁ ଥାଆନ୍ତି । ଏଇଥି ପାଇଁ ମୁଁ ଅନେକ ସମୟରେ ଗାଁମାନଙ୍କରେ ପାଦରେ ଚାଲି ଚାଲି ଯାଉଥିଲି । ଗ୍ରାମାଞ୍ଚଳମାମନଙ୍କରେ ଏ ମିଥ୍ୟା ପ୍ରଚାରର ପ୍ରଭାବ କିଛି ପଡ଼ିଲା ନାହି ମାତ୍ର ଏ ଅପପ୍ରଚାରର କିଛି ପ୍ରଭାବ ବାରିପଦା ସହରରେ ଶିକ୍ଷିତ ଅଞ୍ଚଳରେ ପଡ଼ିବାର ମନେହେଲା ।

୧୯୭୭ରେ ଯେତେବେଳେ କଂଗ୍ରେସର ସମଗ୍ର ଦେଶରେ ଚରମ ବିପର୍ଯ୍ୟୟ ଯେତେବେଳେ ଦଳର ସର୍ବମୟ କର୍ତ୍ତ୍ରୀ ନିଜେ ଇନ୍ଦିରାଗାନ୍ଧୀ ପରାଜିତା ସେତେବେଳେ ପଇସା ନ ଥାଇ ପ୍ରଚାର ପାଇଁ ଗୋଟିଏ ମାତ୍ର ଗାଡ଼ି ବ୍ୟବହାର କରିମଧ୍ୟ ବିପୁଳ ଭୋଟ ପାଇ ବିଜୟଲାଭ କରିଥିଲି । ସେତେବେଳେ ମୟୂରଭଞ୍ଜର ଦଶଟି ଆସନ ମଧ୍ୟରୁ ବାରିପଦା ନିର୍ବାଚନ ମଣ୍ଡଳୀ ଏକମାତ୍ର ସାଧାରଣ ସ୍ଥାନ ହୋଇଥିବାରୁ ଏଠାରୁ ନିର୍ବାଚିତ ପ୍ରତିନିଧି ହିଁ ସମଗ୍ର ଜିଲ୍ଲାର ପ୍ରତିନିଧିତ୍ୱ କରିବ ବୋଲି ବିଚାର କରି ବହୁ ଅଧିକ ଭୋଟରେ ବିଜୟୀ କରାଇଥିଲେ । ମାତ୍ର ମୁଁ ବିଧାନସଭାର ଅଧ୍ୟକ୍ଷ ହୋଇ ମୟୂରଭଞ୍ଜର ଯଥେଷ୍ଟ ଉନ୍ନତି କରିବାରେ ସଫଳକାମ ହୋଇ ପାରିଥିଲେ ହେଁ ଏପରି ମିଥ୍ୟା ପ୍ରଚାରରେ କିପରି

ପ୍ରଭାବିତ ହେଲେ ବୁଝି ପାରୁନି । ନିର୍ବାଚନରେ ବିଜୟୀ ହେଲି ସତ୍ୟ ମାତ୍ରଯେଉଁ ପରିମାଣର ଭୋଟ ପାଇ ବିଜୟ ଲାଭ କଲି ସେଥବରେ ମୋର ମନବୋଧ ହେଲା ନାହିଁ ।

ଏଥରର ନିର୍ବାଚନରେ ପୂର୍ବଥର ଭଳି ଅର୍ଥାଭାବ ନ ଥିଲା । ପ୍ରଧାନମନ୍ତ୍ରୀ ତଥା କଂଗ୍ରେସ ସଭାପତିଙ୍କର ଓଡ଼ିଶା ପ୍ରତି ସମର୍ଥନ ଥିବାରୁ ଆବଶ୍ୟକ ଆର୍ଥିକ ସାହାଯ୍ୟ ପ୍ରଦେଶ କଂଗ୍ରେସ କମିଟିକୁ ମିଳି ପାରିଥିଲା । ମୟୂରଭଞ୍ଜ ଜିଲ୍ଲାର ବାରିପଦା ନିର୍ବାଚନ ମଣ୍ଡଳୀ ବ୍ୟତୀତ ରାଇରଙ୍ଗପୁର, ଖୁଣ୍ଟା ଓ ଉଦଳା ନିର୍ବାଚନ ମଣ୍ଡଳୀମାନଙ୍କରୁ କଂଗ୍ରେସ ପ୍ରାର୍ଥି ବିଜୟୀ ହେଲେ । ବାଙ୍ଗିରିପୋଷି ଓ କୁଳିଅଣା ନିର୍ବାଚନ ମଣ୍ଡଳୀରୁ କଂଗ୍ରେସ ନିଶ୍ଚିତ ଜୟଯୁକ୍ତ ହେବାର ଥିଲେ ହେଁ ନିଜ ଦଳ ମଧ୍ୟରେ କନ୍ଦଳ ଯୋଗୁଁ କଂଗ୍ରେସ ପ୍ରାର୍ଥିଦ୍ୱୟ ଅଳ୍ପ କେତୋଟି ମାତ୍ର ଭୋଟରେ ପରାଜିତ ହେଲେ । ନିର୍ବାଚନ ବେଳେ ମୁଁ ବାରିପଦାରେ ମୋର ସାନଝିଅ ଘରେ ରହୁଥିବାରୁ ମୋ ପକ୍ଷରେ ବିଶେଷ ସୁବିଧା ଜନକ ହୋଇଥିଲା ।

ଏଥରର ନିର୍ବାଚନରେ କୌଣସି ନେତୃସ୍ଥାନୀୟ ବ୍ୟକ୍ତି ମୋତେ ସାହାଯ୍ୟ କରିବାପାଇଁ ଆସି ନ ଥିଲେ । ଅବଶ୍ୟ ବହୁ ଆଗରୁ ଏକ କର୍ମୀ ସମ୍ମିଳନୀରେ କେନ୍ଦ୍ର ସରକାରଙ୍କ ବିଦେଶମନ୍ତ୍ରୀ ଶ୍ରୀଯୁକ୍ତ ପ୍ରଣବ ମୁଖାର୍ଜୀ ଯୋଗ ଦେଇଥିଲେ । ମୁଖ୍ୟମନ୍ତ୍ରୀ ଆମ ଜିଲ୍ଲାର ବିଭିନ୍ନ ନିର୍ବାଚନ ମଣ୍ଡଳୀକୁ ଏବଂ ନିଜେ ପ୍ରଧାନମନ୍ତ୍ରୀ ନିର୍ବାଚନ ସମୟରେ ରାଇରଙ୍ଗପୁରକୁ ଆସିଥିଲେ ହେଁ ବାରିପଦା ନିର୍ବାାଚନ ମଣ୍ଡଳୀକୁ ଆଉ କେହି ଆସି ନ ଥିଲେ । ମୋତେ ଏଥର ବିଶେଷ ପରିଶ୍ରମ କରିବାକୁ ପଡ଼ିଥିଲା । ବାରିପଦା, ଶୂଳିଆପଦା ତଥା ମୁରୁଡା ଅଞ୍ଚଳର ସମସ୍ତ ସହକର୍ମୀ ଅତ୍ୟନ୍ତ ଶ୍ରମ ସ୍ୱୀକାର କରି ଆନ୍ତରିକତାର ସହ କାର୍ଯ୍ୟ କରିଥିବାରୁ ମୁଁ ଜୟଯୁକ୍ତ ହେଲି । ତେଣୁ ଏ ଅବସରରେ ସମସ୍ତ କର୍ମୀ ଓ ଜନସାଧାରଣଙ୍କୁ ମୋର ହାର୍ଦ୍ଦିକ କୃତଜ୍ଞତା ଜଣାଉଛି ।ମୋର ମାନସିକ ଦୃଢ଼ତା ଥିବା ହେତୁ ମୋର ସ୍ୱାସ୍ଥ୍ୟ ସଂପର୍କରେ ନିର୍ବଚନ ବେଳେ ଯେଉଁ ସବୁ ଅପପ୍ରଚାର କରାଗଲା ତାର କୌଣସି ପ୍ରଭାବ ମୋ ଉପରେ ପଡ଼ିନାହିଁ, ବରଂ ସେ ସବୁକୁ ମୁଁ ହସରେ ଉଡ଼ାଇ ଦେଇଛି । ତଥାପି ଯେଉଁମାନେ ଏପରି ଅପପ୍ରଚାର କରୁଥିଲେ ଯେ ମୁଁ ବୃଦ୍ଧ, ଅକର୍ମଣ୍ୟ ଏବଂ ଛ ମାସ ପରେ ପୁଣି ଉପନିର୍ବାଚନ ସେମାନଙ୍କୁ ମଧ୍ୟ ମୋର କୃତଜ୍ଞତା ଜଣାଉଛି କାରଣ ଏ ଅପପ୍ରଚାର ହେତୁ ମୋତେ ଭଗବାନଙ୍କ ଆଶୀର୍ବାଦ ମିଳିଛି ଓ ମୁଁ ସୁସ୍ଥ ଅଛି ।

## ମୁଁ ଏଥର ପ୍ରଥମ ମନ୍ତ୍ରୀ ହେଲି :-

ମୁଁ କଂଗ୍ରେସରେ ଯୋଗଦାନ କଲା ପରେ ଏହା ପୂର୍ବରୁ ତିନିଥର ବିଧାନସଭାର ସଦସ୍ୟ ଭାବରେ ନିର୍ବାଚିତ ହୋଇଥିଲେ ହେଁ କେବେହେଲେ ମନ୍ତ୍ରୀପଦ ଗ୍ରହଣ କରି ନ ଥିଲି ବା ମନ୍ତ୍ରୀପଦ ପାଇବାର ମୋର କେବେ ଲାଳସା ନ ଥିଲା । ବରଂ ବିଧାନସଭାର ଅଧ୍ୟକ୍ଷ ପଦ ମୋ ପକ୍ଷରେ ବୟସ ଦୃଷ୍ଟିରୁ ଅଧିକ ଅନୁକୂଳ ଓ ସମ୍ମାନଜନକ ବୋଲି ବିଚାର କରେଁ । ସେଇଥିପାଇଁ ୧୯୮୪ରୁ ୧୯୯୦ ପର୍ଯ୍ୟନ୍ତ ଛ ବର୍ଷ ମଧ୍ୟରେ ଏହି ପଦ ପାଇଁ ନର୍ଦ୍ୱନ୍ଦରେ ଦୁଇଥର ନିର୍ବାଚିତ ହୋଇ ଦକ୍ଷତାର ସହିତ ନିଜର କର୍ତ୍ତବ୍ୟ ସଂପାଦନ କରିଛି । ମନ୍ତ୍ରୀପଦ ଗ୍ରହଣ କରି ମୁଖ୍ୟମନ୍ତ୍ରୀଙ୍କ ଅଧୀନରେ ଦାୟିତ୍ୱ ତୁଲାଇବାକୁ କେବେହେଲେ ପସନ୍ଦ କରି ନ ଥିଲି । ମାତ୍ର ଏଥର ନିର୍ବାଚନ ସମୟରୁ ମୋ ନିର୍ବାଚନ ମଣ୍ଡଳୀର ଲୋକଙ୍କ ମଧ୍ୟରେ ବିଧାନସଭାର ଅଧ୍ୟକ୍ଷ ନ ହୋଇ ମନ୍ତ୍ରୀ ହେବାର ଏକ ବଳବତୀ ଇଚ୍ଛା ପ୍ରକାଶ ପାଇଲା । ନିର୍ବାଚନ ଫଳ ପ୍ରକାଶ ପାଇଲାପରେ ବହୁଲୋକ ଏଥର ମୋତେ ମନ୍ତ୍ରୀ ହେବା ପାଇଁ ଅନୁରୋଧ ମଧ୍ୟ କଲେ । ନିର୍ବାଚନ ପରେ ଡ଼ାକରା ପାଇ ଭୁବନେଶ୍ୱର ଆସିବାକୁ ପଡ଼ିଲା । ପ୍ରଥମେ ମୁଖ୍ୟମନ୍ତ୍ରୀ ବା ଦଳର ନେତା ନିର୍ବାଚନ କରାଗଲା । ଶ୍ରୀଯୁକ୍ତ ଜାନକୀ ବଲ୍ଲଭ ପଟ୍ଟନାୟକ କୌଣସି ସ୍ଥାନରୁ ନିର୍ବାଚିତ ହୋଇ ନ ଥିଲେ ମଧ୍ୟ ସେ ନେତା ନିର୍ବାଚିତ ହେଲେ ଏବଂ ରାଜ୍ୟପାଳଙ୍କ ନିମନ୍ତ୍ରଣ କ୍ରମେ ସରକାର ଗଠନ କଲେ ।

ଏଥର ଜନତା ଦଳର ପରାଜୟ ଘଟି ପୂର୍ବ ବିଧାନସଭାର ୧୩୦ ଜଣଙ୍କ ମଧ୍ୟରୁ ମାତ୍ର ୪୫ ଜଣ ନିର୍ବାଚିତ ହେଲେ । ଏହା ପୂର୍ବରୁ ଭାରତୀୟ ଜନତା ଦଳର ଓଡ଼ିଶାରେ ସେପରି କୌଣସି ପ୍ରଭାବ ନ ଥିଲା ବେଳେ ଏଥର ୯ ଜଣ ସଭ୍ୟ ନିର୍ବାଚିତ ହେଲେ । ଦୁଇ କମ୍ୟୁନିଷ୍ଟ ଦଳ ସଂପୂର୍ଣ୍ଣରୂପେ ନିଶ୍ଚିହ୍ନ ହୋଇ ଯାଇଥିଲେ ।

୧୯୯୫ ମାର୍ଚ୍ଚ ତା ୧୫ରିଖ ଦିନ ମୁଖ୍ୟମନ୍ତ୍ରୀଙ୍କ ସହିତ ପ୍ରଥମଥର ପାଇଁ ଏଥର ଦୁଇଜଣ ଉପମୁଖ୍ୟମନ୍ତ୍ରୀ ମନୋନିତ ହୋଇ ଶପଥ ଗ୍ରହଣ କଲେ । ସେହି ମାସ ତା୨୦ରିଖ ଦିନ ମୋ ସହିତ ଅନ୍ୟ ମନ୍ତ୍ରୀମାନେ ଶପଥ ଗ୍ରହଣ କଲେ । ମୁଁ ସେ ଭଳି କୌଣସି ବଡ଼ ବିଭାଗର ଦାୟିତ୍ୱ ଗ୍ରହଣ କରିବା ସପକ୍ଷରେ ନ ଥିଲି । ତେଣୁଁ ମୋତେ କେବିନେଟ୍ ପାହ୍ୟା ଦେଇ ପରିବେଶ ବିଜ୍ଞାନ ଓ କାରିଗରୀ ବିଭାଗର ଦାୟିତ୍ୱ ଅର୍ପଣ କରାଗଲା । ପରିବେଶ ମୋର ଅତି ପ୍ରିୟ ବିଷୟ ହୋଇଥିବାରୁ ମୋତେ ସମସ୍ତେ ପରିବେଶବିତ୍ ବୋଲି ବିଚାର କରୁଥିଲେ । ୧୯୮୦-୮୧ ମସିହାରୁ ଓଡ଼ିଶା ପରିବେଶ ସମିତିର ସଭାପତି ଭାବେ ରାଜ୍ୟରେ ପରିବେଶ ସୁରକ୍ଷାର ବାତାବରଣ ସୃଷ୍ଟି କରିବାରେ ସଫଳକାମ ହୋଇପାରିଛି । ବିଧାନସଭାର ଅଧ୍ୟକ୍ଷ ଥିବା ବେଳେ ପରିବେଶ ସୁରକ୍ଷା ଦିଗରେ ଅଧିକତର କାମ କରି ପାରିଥିଲି । ବିଧାନସଭାରେ ପ୍ରଥମେ ଶିମିଳିପାଳ ସୁରକ୍ଷା କମିଟି ଓ ପରେ ତାହା ପରିବେଶ ସୁରକ୍ଷା କମିଟିରେ ପରିଣତ ହୋଇଥିଲା । ତେଣୁଁ ବର୍ତ୍ତମାନ ମୋତେ ସେହି ପରିବେଶ ବିଭାଗର ଦାୟିତ୍ୱ ଦିଆଯାଇ ଥିବାରୁ ମୁଁ ବେଶ ଆନନ୍ଦିତ । ଏତେବେଳକୁ ଶିମିଳିପାଳ ପର୍ବତମାଳାକୁ ଏକ ଜୈବମଣ୍ଡଳରେ ଘୋଷଣା କରାଯାଇଥିବା ଦୃଷ୍ଟିରୁ ତାହା ପରିବେଶ ବିଭାଗର ଅନ୍ତର୍ଭୁକ୍ତ ହେବା କଥା, ମାତ୍ର ଏ ଯାବତ୍ ଉକ୍ତ ପର୍ବତମାଳାର ଦାୟିତ୍ୱ ଏ ବିଭାଗକୁ ନ ଦେବା ଅତ୍ୟନ୍ତ ପରିତାପ ଓ ଅନୁଶୋଚନାର ବିଷୟ ।

ବର୍ତ୍ତମାନ ପରିବେଶ ବିଚାର ଏକ ମୁଖ୍ୟ ଗୁରୁତ୍ୱପୂର୍ଣ୍ଣ ସମସ୍ୟା । ମାତ୍ର ପୂର୍ବରୁ ଏ ବିଷୟ ଉପରେ ବିଶେଷ ଗୁରୁତ୍ୱ ଦିଆଯାଉ ନଥିଲା । ମୁଁ ପରିବେଶ, ବିଜ୍ଞାନ ଓ ପ୍ରଯୁକ୍ତିବିଦ୍ୟା ବିଭାଗର ଦାୟିତ୍ୱ ନେଇଥିବାରୁ ପ୍ରାୟ ସମସ୍ତେ ଆନନ୍ଦିତ । ଏ ବିଭାଗର ଦାୟିତ୍ୱ ନେବା ପରେ ଏହାର ସୁପରିଚାଳନା ପାଇଁ ଜଣେ ଉପଯୁକ୍ତ ପରିବେଶବିତ୍‌ଙ୍କୁପ୍ରଦୂଷଣ ବୋର୍ଡ଼ର ମୁଖ୍ୟ କରି ଆଣିବାର ପ୍ରସ୍ତାବ ଦେଲାରୁ ମୁଖ୍ୟମନ୍ତ୍ରୀ ସମ୍ମତ ହେଲେ ଏବଂ ତଦନୁଯାୟୀ ତାଙ୍କର ନିଯୁକ୍ତି ହେବାରୁ ଶିଳ୍ପକ୍ଷେତ୍ରରେ ବଢ଼ୁଥିବା ପ୍ରଦୂଷଣ ପ୍ରତି ବିଶେଷ ଗୁରୁତ୍ୱ ଦିଆଯାଇ ପାରୁଛି । ଏ ବିଭାଗର ପଦସ୍ଥ ବ୍ୟକ୍ତିମାନେ ଅତି ଯୋଗ୍ୟ ଏବଂ ଆନ୍ତରିକତାର ସହ ସ୍ୱ ସ୍ୱ କର୍ତ୍ତବ୍ୟ ସଂପାଦନ କରୁଅଛନ୍ତି । ଯେ ଯେତେ ବଡ଼ ହେଉନା କାହିଁକି ପରିବେଶ ସୁରକ୍ଷା ପାଇଁ ଲୋକଙ୍କ ଜୀବନ ରକ୍ଷା କ୍ଷେତ୍ରରେ କୌଣସି ବ୍ୟକ୍ତି ବିଶେଷଙ୍କ ସ୍ୱାର୍ଥରକ୍ଷା ପାଇଁ କେବେହେଲେ କାହାରି ସହିତ ସାଲିସ କରିବା ଉଚିତ ନୁହେଁ ବୋଲି ସମସ୍ତଙ୍କୁ ପରାମର୍ଶ ଦେଇଛି । ଏ ଦିଗରେ ମୋର ପୂର୍ଣ୍ଣସମର୍ଥନ ଓ ଦୃଢ଼ତା ଥିବାର ଜାଣି କର୍ମଚାରୀମାନେ ନ୍ୟାୟ ପ୍ରତିଷ୍ଠା ଦିଗରେ କେବେହେଲେ ପଶ୍ଚାତ୍ ପଦ ହେଉ ନାହାନ୍ତି ।

ଅବଶ୍ୟ ଅନ୍ୟ ରାଜ୍ୟପରି ଓଡ଼ିଶାରେ ବହୁ ଶିଳ୍ପ କାରଖାନା ପ୍ରତିଷ୍ଠିତ ହୋଇ ବାୟୁମଣ୍ଡଳ ପ୍ରଦୂଷିତ ହେଉନାହିଁ । ତଥାପି ଅନୁଗୋଳ, ତାଳଚେର, ରାଉରକେଲା, ସମ୍ବଲପୁର, ଝାରଶୁଗୁଡ଼ାର କାଗଜକଳ, ସିମେଣ୍ଟ କାରଖାନା ତଥା ଗଞ୍ଜାମ ଓ ବାଲେଶ୍ୱର ଜିଲ୍ଲାର ଶିଳ୍ପାଞ୍ଚଳଗୁଡ଼ିକରେ ପ୍ରଦୂଷଣ ହେଉଛି । ଏହି ବୃହତ୍ ଶିଳ୍ପଗୁଡ଼ିକ ପ୍ରଦୂଷଣ ନିୟନ୍ତ୍ରଣ ଆଇନ୍ ତଥା ବୋର୍ଡ଼ ସଂଗଠିତ ହେବା ପୂର୍ବକାଳୀନ ଅନୁଷ୍ଠାନ ହୋଇ ଥିଲେ ହେଁ ଏବେ ଏଗୁଡ଼ିକୁ ପ୍ରଦୂଷଣ ନିୟନ୍ତ୍ରଣ କରିବା ପାଇଁ ବାଧ୍ୟ କରାଯାଉଛି । ତଥାପି କିଛି ବାଧାବିଘ୍ନର ସମ୍ମୁଖୀନ ହେବାକୁ ପଡୁଛି । ସମୁଦ୍ର ଉପକୂଳ ତଥା ଚିଲିକା ଯେଉଁ ରୀତିରେ ପ୍ରଦୁଷିତ ହେଉଛି ତହିଁର ପ୍ରତିକାର କରବାର ପ୍ରଚେଷ୍ଟା ଚଳାଇଛି । ସେଥିପାଇଁ ଜନସାଧାରଣଙ୍କର ସହଯୋଗ ଦରକାର । ଜଗତର ନାଥ ଜଗନ୍ନାଥଙ୍କ କୃପାରୁ ଏ କାର୍ଯ୍ୟ ସଫଳତାର ସହ ସଂପନ୍ନ କରିବାର ଆଶା ପୋଷଣ କରେଁ ।

# ଦେଶର ରାଜନୈତିକ ପରିସ୍ଥିତି :-

ଦେଶର ବର୍ତ୍ତମାନ ରାଜନୈତିକ ପରିସ୍ଥିତିର ପର୍ଯ୍ୟାଲୋଚନା କଲେ କେବଳ ଦୁଃଖ ହିଁ ସାର ହୁଏ । ପ୍ରତ୍ୟେକ ଚିନ୍ତାଶୀଳ ବ୍ୟକ୍ତି ଦେଶର ଏ ପରିସ୍ଥିତିରେ ମ୍ରୀୟମାଣ ହୋଇପଡ଼େ । ଭାରତ ବର୍ଷର ସ୍ୱାଧୀନତା ପ୍ରପ୍ତିର ୫୦ ବର୍ଷ ନ ପୂରୁଣୁ ରାଜନୈତିକ ପରିସ୍ଥିତି ଯେପରି କଳଂକିତ ହୋଇ ଏବ ଜଟିଳ ପରିସ୍ଥିତି ଉପୁଜିଲାଣି ସେଥିରେ ସଂସଦୀୟ ଶାସନର ସ୍ଥାୟିତ୍ୱ ସଂପର୍କରେ ସନ୍ଦେହ ଦେଖାଦେବା ଏକ ସାଧାରଣ କଥା । ଯେଉଁ କଂଗ୍ରେସ ଦଳ ଆଜକୁ ଶହେବର୍ଷ ପୂର୍ବେ ଜନ୍ମଲାଭ କରି ଏ ଦେଶର ଜନତାକୁ ଦିଗ୍‌ଦର୍ଶନ ହେଉଥିଲା, ଯେଉଁ କଂଗ୍ରେସ ମହାତ୍ମା ଗାନ୍ଧୀଙ୍କ ନେତୃତ୍ୱରେ ପରିଚାଳିତ ହୋଇ ପ୍ରବଳ ପରାକ୍ରମୀ ବ୍ରିଟିସ ସରକାରକୁ ଅହିଂସା ଉପାୟରେ ଏ ଦେଶରୁ ବିତାଡ଼ିତ କରି ଦେଶର ସ୍ୱଧୀନତା ହାସଲ କରିଥିଲା ସେହି କଂଗ୍ରେସ ଦଳ ଆଜି ଛିନ୍ନ ଭିନ୍ନ । ଯେଉଁ କଂଗ୍ରେସର ନାମ ଶୁଣିଲେ ଦିନେ ଜନତା ଉଦ୍ବେଳିତ ହୋଇ ପଡୁଥିଲା ଆଜି ସେହି ମୂଳ ରାଜନୈତିକ ଦଳ କଂଗ୍ରେସ ଜନତାଠାରୁ ଦୂରେଇ ଯାଇଛି । ଏ ପ୍ରକ୍ରିୟାର ଅଯମାରମ୍ଭ ହେଲା ୧୯୭୭ ମସିହାରୁ ସ୍ୱର୍ଗତ ଇନ୍ଦିରା ଗାନ୍ଧୀଙ୍କ ଦେଶରେ ଜରୁରୀକାଳୀନ ପରିସ୍ଥିତି ଜାରୀ ହେଲା ପରେ ପରେ । ଦଳଭିତରେ ବ୍ୟକ୍ତି ବିଶେଷଙ୍କ ଅବିମୃଷ୍ୟକାରିତା ସମୂହ ସ୍ୱାର୍ଥର ବାଧକ ହୋଇଥବଏ । ଯଦିଓ ପରବର୍ତ୍ତୀ କାଳରେ ଅବସ୍ଥାର ପରିବର୍ତ୍ତନ ଘଟିଲା ଏହି ସମୟରେ ରାଜୀବଗାନ୍ଧୀଙ୍କ ନାମରେ ବୋଫର୍ସ ଅଭିଯୋଗ ଦଳର ଉଚ୍ଚ ପରମ୍ପରା ଓ ମହାନ୍ ଆଦର୍ଶରେ ବାଧା ସୃଷ୍ଟି କଲା ।

ଧର୍ମନିରପେକ୍ଷତା ବା ଜାତି ଧର୍ମ ଓ ବର୍ଣ୍ଣ ନିର୍ବିଶେଷରେ ସମସ୍ତେ ଭାରତୀୟ ଏହି ନୀତି ହିଁ ଜାତିର ଜନକ ମହାତ୍ମା ଗାନ୍ଧୀଙ୍କ ଦ୍ୱାରା ଦେଶ ଶାସନର ନୀତି ରୂପେ ଗୃହୀତ ହୋଇଥିଲା । ସ୍ୱାଧୀନ ଭାରତର ସ୍ରଷ୍ଟା ପଣ୍ଡିତ ଜବାହରଲାଲ ନେହେରୁ ଏହି ଧର୍ମନିରପେକ୍ଷତା ନୀତିର ପ୍ରବର୍ତ୍ତନ ଫଳରେ ଭାରତର ଖ୍ୟାତି ସମଗ୍ର ବିଶ୍ୱରେ ବଢ଼ାଇ ଆସିଥିଲେ ହେଁ ଆଜି ତାହା କ୍ରମେ କ୍ଷୁନ୍ନ ହେବାକୁ ବସିଲାଣି । ଭାରତର ସଂଖ୍ୟାନ୍ୟୂନ ସଂପ୍ରଦାୟ ବିଶେଷ କରି ଅନୁନ୍ନତ ଆଦିବାସୀ ଓ ହରିଜନ ସଂପ୍ରଦାୟର ଲୋକେ କଂଗ୍ରେସର ରକ୍ଷା କବଚ ଭାବରେ କାମ କରି ଆସିଥିବାରୁ କଂଗ୍ରେସ ଦଳ କ୍ଷମତାରେ ରହି ଆସିଥିଲା । ଶ୍ରୀଯୁକ୍ତ ପି.ଭି.ନରସିଂହ ରାଓଙ୍କ ଶାସନ କାଳରେ ଭାରତୀୟ ଜନତାଦଳ ଅଯୋଧ୍ୟାର ରାମଜନ୍ମଭୂମି ଘଟଣାକୁ ନିଜ ଦଳର ଫାଇଦା ଉଠାଇବା ଉଦ୍ଦେଶ୍ୟରେ ଏକ ବିବାଦୀୟ ପରିସରକୁ ଟାଣି ନେଲା । ଅଯୋଧ୍ୟାର ବାବରୀ ମସ୍‌ଜିଦ୍‌କୁ ଭାଙ୍ଗି ସେଠାରେ ରାମମନ୍ଦିର ନିର୍ମାଣ କରିବା ସାଙ୍ଗକୁ ବନାରସର ଶିବ ମନ୍ଦିର ଓ ମଥୁରାର ଶ୍ରୀକୃଷ୍ଣ ମନ୍ଦିର ନିକଟରେ ଥିବା ମସ୍‌ଜିଦ୍‌ଗୁଡ଼ିକ ଭାଙ୍ଗି ହିନ୍ଦୁତ୍ୱର ପ୍ରସାର ପାଇଁ ପ୍ରଚାର କଲା ଯୋଗୁଁ ଭାରତର ମୁସଲମାନ ସଂପ୍ରଦାୟ ଆତଙ୍କିତ ହୋଇ ପଡ଼ିଲେ । ପରିଶେଷରେ ଉତ୍ତର ପ୍ରଦେଶରେ ଭାରତୀୟ ଜନତାଦଳର ଶାସନ ଚାଲିଥିବା ବେଳେ ୧୯୯୨ରେ ରାଜ୍ୟ ସରକାରଙ୍କ ଇଚ୍ଛାକୃତ ଅବହେଳା ତଥା କେନ୍ଦ୍ରସରକାରଙ୍କ ସତର୍କତାର ଅଭାବହେତୁ ଭାରତୀୟ ଜନତାଦଳ ଅନ୍ୟ ସାଂପ୍ରଦାୟିକ ଦଳର ସହାୟତାରେ ବାବରୀ ମସ୍‌ଜିଦ୍ ଧୂଳୀସାତ୍ ହୋଇଗଲା । ଏ ଘଟଣା ପରେ ଭରତର ଧର୍ମନିରପେକ୍ଷତା ତଥା ସରକାରଙ୍କ ପ୍ରତି ସଂଖ୍ୟାଲଘୁ ସଂପ୍ରଦାୟର ବିଶ୍ୱାସ ତୁଟି ଯିବାକୁ ଲାଗିଲା । ଏ ସବୁ ଘଟଣା ପରେ ଏକାଦଶ ଲୋକସଭା ନିର୍ବାଚନର ଅବ୍ୟବହିତ ପୂର୍ବରୁ ହାୱାଲା ଦୁର୍ନୀତିର ବାତ୍ୟା ସମଗ୍ର ଦେଶକୁ ବ୍ୟାପୀଗଲା । ଏ ବାତ୍ୟାର ଆଘାତରେ ମହାଦ୍ରୁମଗୁଡ଼ିକ ଭୂତଳଶାୟୀ ହୋଇଗଲା । ହାୱାଲା ଦୁର୍ନୀତି ଦେଶର ସମ୍ମାନୀୟ ମନ୍ତ୍ରୀ ଏପରିକି ରାାଜ୍ୟପାଳ ଯେଉଁମାନେ ସଂବିଧାନର ରକ୍ଷକଙ୍କଠାରୁ ଆରମ୍ଭ କରି ଦେଶର ସବୁ ରାଜନୈତିକ ନେତାମାାନଙ୍କୁ ଗ୍ରାସ କରିଗଲା । ଏ ଘଟଣାରେ ଦେଶବାସୀ ଯେତିକି ଆଶ୍ଚର୍ଯ୍ୟାନ୍ୱିତି ହେଲେ ସେହି ପରିଭାବରେ ରାଜନୈତିକ ନଳଗୁଡ଼ିକ ପ୍ରତି ବିତୃଷ୍ଣ ମଧ ହୋଇ ପଡ଼ିଲେ । ପରିଣାମରେ ଏକାଦଶ ନିର୍ବାଚନରେ କୌଣସିଦଳ କେନ୍ଦ୍ରରେ ସରକାର ଗଠନ କରିପାରିଲା ଭଳି ନିରଂକୁଶ ସଂଖ୍ୟାଗରିଷ୍ଠତା ଲାଭ କରି ପରିଲେ ନାହିଁ ।

ବ୍ରୀଟେନର ସଂସଦୀୟ ଗଣତନ୍ତ୍ର ଶାସନର  କୌଣସି ଲିଖିତ ସମ୍ବିଧାନ ନ ଥାଇ ମଧ୍ୟ କେବଳ ପରଂପରା ଉପରେ ପର୍ଯ୍ୟବେସିତ ହୋଇ ଏବେ ବି ସଂସଦୀୟ ଶାସନ ଥିବା  ବିଶ୍ୱର ସମଗ୍ର ଦେଶକୁ ଦିଗ୍‌ଦର୍ଶନ ଦେଉଛି । ସେ ଦେଶରେ ଗଣତନ୍ତ୍ରର ମୌଳିକ ନୀତି ପ୍ରତି ସମାଜର ଏହାର ମୂଳ କାରଣ । ସହନଶୀଳତା, ବିଶ୍ୱସନୀୟତା ଦଳମତ ନିର୍ବିଶେଷରେ ଆପୋଷ ଆଲୋଚନା ମାଧ୍ୟମରେ ସମାଧାନ ସଂସଦୀୟ ଗଣତନ୍ତ୍ରକୁ ସୁଦୃଢ଼ କରେ । ବ୍ୟକ୍ତିକୈନ୍ଦ୍ରିକ ରାଜନୀତି ସ୍ୱାର୍ଥପରତା କୌଣସି ମତେ ଭୋଟ ସଂଗ୍ରହ କରି କ୍ଷମତା ହାସଲ କରିବା ଆଜି ଦୁର୍ନୀତି ଓ ଭ୍ରଷ୍ଟାଚାରର ମୂଳ କାରଣ । ଆଜି ଦେଶର ଗଣ୍ୟମାନ୍ୟ ନେତୃସ୍ଥାନୀୟ ବ୍ୟକ୍ତି ବିଶେଷଙ୍କ ନାମରେ ହାୱାଲା ଓ ପ୍ରତିଭୂତି ପ୍ରଭୃତି ଶହ ଶହ କୋଟି ଟଙ୍କାର ଦୁର୍ନୀତିର ଅଭିଯୋଗମାନ ପ୍ରକାଶିତ ହେବା ଫଳରେ ଭାରତ ବିଶ୍ୱ ଦରବାରରେ ନିନ୍ଦିତ ହେବାକୁ ଯାଉଛି । ''ଯଦ୍‌ଯଦାଚରତି ଶ୍ରେଷ୍ଠ ସ୍ତଦତଥୈବେତରେ ଜନଃ'' ଶ୍ରେଷ୍ଠ ଲୋକମାନଙ୍କର ଆଦର୍ଶ ଆଚରଣରୁ ଜନସାଧାରଣ ଆଚରଣ ଶିକ୍ଷା କରି ଥାଆନ୍ତି । ଦେଶର ନେତୃସ୍ଥାନୀୟ ବ୍ୟକ୍ତିଙ୍କ ନାମରେ ଏପରି ଅଭିଯୋଗ ହେବାରୁ ଆଜି ତଳ ସ୍ତରରେ ଦୁର୍ନୀତି ଅତିମାତ୍ରାରେ ମଣିଷକୁ ଅନ୍ଧ କରି ପକାଇଛି । କୌଣସି ଉପାୟରେ କ୍ଷମତା ଆୟତ୍ତ କରି ସବୁଦିନ ପାଇଁ ସେହି କ୍ଷମତାର ଅଧିକାରି ହୋଇ ରହିବା ପାଇଁ ଆଜି ସମସ୍ତେ ବ୍ୟସ୍ତ । ଏପରି ଲୋକଙ୍କ ଚକ୍ଷୁରେ ଦେଶ ହୁଏ ଗୌଣ କ୍ଷମତା ଓ ଉପଭୋଗ ହୁଏ ମୁଖ୍ୟ । ଯିଏ ଯେତେ ଦଳବଳ ଧରି ପ୍ରଚାର କରି ପାରୁଛି ସେ ସେତେ ପାରଦର୍ଶୀ ହୋଇ ପାରୁଛି । ଆଜକୁ ୧୫-୨୦ ବର୍ଷ ତଳେ ଯାହାର ନାମଗନ୍ଧ ନ ଥିଲା ଆଜି ସେହି ରାଜନୈତିକ ଦଳ ରାମ ଲକ୍ଷ୍ମଣଙ୍କ ନାମ ନେଇ ଦେଶରେ  ରଥ ଚଳାଇ  ସତ୍ତାର ଅଧିକାରୀ ହେବାକୁ ବସିଲାଣି । ତେଣୁଁ ଆଜି ବେଳ ଆସିଛି ଗଣ ଦେବତା ଜାଗ୍ରତ ହୁଅନ୍ତୁ । ଦେଶ ସୁରକ୍ଷିତ ହେଉ ।

କୌଣସି ଦେଶ ବା ଜାତିର ଜାତୀୟ ଚରିତ୍ର ନ ଥିଲେ ସେ ଦେଶର ଲୋକ ଚରିତ୍ର ବା ମାନବିକ ମୂଲ୍ୟବୋଧର ଅଭିବୃଦ୍ଧି ଘଟେ ନାହିଁ । ଜାତୀୟ ଚରିତ୍ରହିଁ ଦେଶକୁ  ଅଗେଇ ନେବାରେ ସହାୟକ ହୋଇଥାଏ । ସ୍ୱାଧୀନତା ପ୍ରପ୍ତିପରେ ଜ୍ୱାତୀୟ ଚରିତ୍ର ଗଠନ ଦିଗରେ ଆଦୌ ଦୃଷ୍ଟି ଦିଆଗଲା ନାହି । କେବଳ ଆର୍ଥିକ ପଥଗତି ପ୍ରତି ଗୁରୁତ୍ୱ ଆରୋପ କରି ସରକାର ଓ ପ୍ରଶାସନ ସେ ଦିଗରେ ବ୍ୟସ୍ତ ରହିଲେ । ବିଦେଶରୁ କୋଟି କୋଟି ଟଙ୍କା ଋଣ କରି ଦେଶକୁ ଧନ୍‌ଶାଳୀ କରାଇବା ପାଇଁ ଯୋଜନାମାନ ପ୍ରସ୍ତୁତ କରାଗଲା । ଗୋଟିକ ପରେ ଗୋଟିଏ ପଞ୍ଚବାର୍ଷିକ ଯୋଜନାମାାନ ପ୍ରସ୍ତୁତ କରି ଯୋଉଁ ସବୁ ଅର୍ଥ ବିନିଯୋଗ କରା ଗଲା ତାର ବହୁ ଅଂଶ ବାଟମାରଣା ହୋଇଗଲା । ଫଳରେ ଧନୀ ଓ ଦରିଦ୍ର ମଧ୍ୟରେ ତାରତମ୍ୟ ବୃଦ୍ଧି ପାଇବାକୁ ଲାଗିଲା । ଅନେକ ସ୍ୱାର୍ଥାନ୍ୱେଷୀ ପ୍ରଶାସନ କ୍ଷେତ୍ରରେ ପ୍ରଭାବ ବିସ୍ତାର କରି ଦୁର୍ନୀତି ଓ ଭ୍ରଷ୍ଟାଚାର ବଢ଼ାଇଲେ । ଶାସନ ଓ ଅର୍ଥନୀତି ଅଧିକ କେନ୍ଦ୍ରୀଭୂତ ହେଲା । ଫଳରେ ସମାଜର ତଳ ଶ୍ରେଣୀର ଲୋକେ ଶୋଷଣର ସମ୍ମୁଖୀନ ହୋଇ ନରାଶା ଓ ହତାଶାରେ ନିକ୍ଷେପିତ ହେବାକୁ ଲାଗିଲେ । ନିଜକୁ ଦେଶ ଗଠନରେ ଏକ ଅଙ୍ଗ ବୋଲି ଉପଲବ୍ଧ କରି ପାରିଲେ ନାହିଁ । ବ୍ୟକ୍ତି କୈନ୍ଦ୍ରିକ ରାଜନୀତି ଯୋଗୁଁ ସ୍ୱାର୍ଥାନ୍ୱେଷୀ ଲୋକେ ଯେ କୌଣସି ମତେ କ୍ଷମତା ଦଖଲ କରିବାକୁ ଚେଷ୍ଟାକଲେ ଓ ଥରେ କ୍ଷମତାର ଅଧିକରୀ ହେଲେ ତାକୁ ଛାଡ଼ିବାକୁ ଚାହିଁଲେ ନାହିଁ । ସୁଦୂର ପ୍ରସାରି ପରିଣତି ପ୍ରତି ଦୃଷ୍ଟି ନ ଦେବାରୁ କ୍ରମେ ଅସାମାଜିକତା ବୃଦ୍ଧି ପାଇବାକୁ ଲାଗିଲା । ଶନ୍ତି, ସୌହାର୍ଦ୍ଦ୍ୟ ପ୍ରେମ, ମମତା, ଦୟା, କ୍ଷମା, ସତ୍ୟ ସ୍ଥାନରେ ହିଂସା, ଛଳନା, ପରଶ୍ରୀକାତରତା, ପ୍ରବଞ୍ଚନା, ମିଥ୍ୟା, କପଟାଚାରିତା ପ୍ରଭୃତି ଜନ ଜୀବନକୁ ଅସ୍ତ ବ୍ୟସ୍ତ କରି ପକାଇଲାଣି । ନେତୃବୃନ୍ଦ ଆଜି ଜନତାର ସେବା ନାମରେ କେବଳ ଭୋଟ ପାଇବାକୁ ବ୍ୟସ୍ତ । ଯେ ନିଜର ପାରିଲାପଣ ଦେଖାଇ ପାରୁଛି ସେ ନିଜର ସ୍ୱର୍ଥସାଧନ ପାଇଁ ସବୁ ବୋହି ନେଇ ଯାଉଛି । ଲୋକେ କେବଳ ହୋ ହଲ୍ଲା କରିବାରେ ବ୍ୟସ୍ତ ମାତ୍ର ଏମାାନଙ୍କର କେହି କିଛି କରି ପାରୁ ନାହାନ୍ତି ବା କିଛି କରି ପାରିବେ ନାହିଁ । ନାରୀ ବିଳାସ, ଉପଭୋଗ ଲାଳସା, ସ୍ୱେଚ୍ଛାଚାର, ପ୍ରମତ୍ତତା ଆଦି ସମାଜକୁ ଗ୍ରାସ କରିବାକୁ ବସିଲାଣି । ପ୍ରତ୍ୟେକ ସୁଯୋଗର ଅପେକ୍ଷାରେ । ଯେ ସୁଯୋଗ ପାଉଛି ସେ ଧନୀ ହେଉଛି, ମାନୀ

ହେଉଛି, ପଦପଦବୀର ଅଧିକାରୀ ହୋଇ ପାରୁଛି । ପ୍ରତ୍ୟେକ ସ୍ୱାର୍ଥ ପାଇଁ ବ୍ୟସ୍ତ ।

ମହାତ୍ମା ଗାନ୍ଧୀଙ୍କ ସ୍ୱାଧୀନତା ଆନ୍ଦୋଳନ ବେଳେ ଲୋକ ସଂପର୍କକୁ ମଜଭୁତ କରିବା ପାଇଁ ଜାତି, ଧର୍ମ ଓ ଅଞ୍ଚଳ ନିର୍ବିଶେଷରେ ଯେଉଁ ଜାତୀୟ ଚରିତ୍ର ଗଠନ କରିବାରେ ସଫଳ ହୋଇଥିଲେ ପରବର୍ତ୍ତୀକାଳରେ ଆମେ ତାକୁ ରକ୍ଷା କରି ପାରିଲୁ ନାହିଁ । ଜାତିଆଣ-ଭ.ବ, ସାମ୍ପ୍ରଦାୟିକତା ସଙ୍ଗେ ସଙ୍ଗେ ବିଚ୍ଛିନ୍ନତା ବାଦର ଜନ୍ମ ହୋଇ ଦେଶର ପ୍ରଗତିରେ ବାଧା ସୃଷ୍ଟି କରିବା ସହ ଦେଶର ଗଣତନ୍ତ୍ର ଶାସନ ଆଜି ବିପନ୍ନ ହେବାକୁ ବସିଲାଣି । ଭାରତର ସମସ୍ତ ରାଜନୈତିକ ଦଳ ତଥା ଜନସାଧାରଣ ଦେଶର ଏ ଅବସ୍ଥା ପାଇଁ ସମସ୍ତେ ଦାୟୀ । ବିଶେଷ କରି କଂଗ୍ରେସ ଦଳ ଦେଶର ବୃହତ୍ତମ ତଥା ମୂଳ ରାଜନୈତିକ ଦଳ ହେତୁ ଅଧିକ ପରିମାଣରେ ଯେ ଦାୟୀ ଏହା ନିଃସନ୍ଦେହରେ କୁହାଯାଇପାରେ । ଜାତୀୟ ଚରିତ୍ରର ଅଭାବରୁ ଏବର ଦୁର୍ନୀତି ଓ ଭ୍ରଷ୍ଟାଚାର ପାଇଁ ଆମେ ବିଶ୍ୱଦରବାରରେ ନିନ୍ଦିତ ହେବାକୁ ଯାଉଛୁଁ । ଏଥିରୁ ମୁକ୍ତିର ବାଟ ଆମକୁ ବାହାର କରିବାକୁହେବ ।

ମହାତ୍ମା ଗାନ୍ଧୀଙ୍କ ପରି ଆଉ କେହି ମହାମାନାବ ଜନ୍ମଲାଭକରି ଦେଶକୁ ଠିକ୍ ବାଟକୁ ଆଣିବେ ଏ କଥାବା କିଏ କହିପାରିବ । ତେଣୁଁ ଆମକୁ ହିଁ ଆଜି ତାହା କରିବାକୁ ପଡ଼ିବ । ଆମର ଯୁବଶକ୍ତିକୁ ଆଦର୍ଶ ଦେଖାଇ ଗଢ଼ି ପାରିଲେ ସେହିମାନେ ହିଁ ଦେଶର ଏ ଅବସ୍ଥାର ପରିବର୍ତ୍ତନ କରି ଠିକ୍ ବାଟକୁ ଆଣି ପାରିବେ । ଅନ୍ୟମାନେ ଦେଶର ଏଭଳି ଶୋଚନୀୟ ଅବସ୍ଥା ଦେଖି କ'ଣ ଭାବୁଥିବେ ମୁଁ ଚିନ୍ତା କରିପାରୁନି ମାତ୍ର ଜାତୀୟ ଚରିତ୍ର ଗଠନରେ ଯୁବଶକ୍ତିକୁ ସହାୟତା କରିବା ପ୍ରତ୍ୟେକଙ୍କର କର୍ତ୍ତବ୍ୟ ବୋଲି ମନେକରେ । ଅର୍ଦ୍ଧଶତାବ୍ଦୀରୁ ଅଧିକ କାଳ ବ୍ୟାପୀ ମୋର ରାଜନୈତିକ ଜୀବନ କାଳରେ ମୁଁ କେତେକ ସହକର୍ମୀ ବାହାର କରି ପାରିଛି, ଯେଉଁମାନଙ୍କୁ ଅନ୍ୟମାନେ ଅଯୋଗ୍ୟ ବୋଲି ମନେ କରି ପାରନ୍ତି ମାତ୍ର ସେମାନଙ୍କ ମଧ୍ୟରୁ କେହି କେବେ ଦୁର୍ନୀତି ବା ଭ୍ରଷ୍ଟାଚାରର ଶୀକାର ହେବା କଥା କହି ପାରିବେ ନାହିଁ । ମୋର ଅନ୍ତିମ ଜୀବନରେ ଏହାହିଁ ମୋତେ ଶନ୍ତି ଦେବ । ଏହାହିଁ ମୋ ଜୀବନର ସଫଳତା ବୋଲି ମନେକରେଁ । ଏ ପ୍ରସଙ୍ଗରେ ବିଶ୍ୱକବି ରବିନ୍ଦ୍ରନାଥ ଠକୁରଙ୍କ ଗୋଟିଏ କବିତା ମନେ ପଡ଼େ :-

''ତୁମି ଯଖନ ଜନିଲେ ଭବେ
ତୁମି ଏକା କେନ୍ଦେଛିଲ ହେସେଛିଲେ ସବେ,
ଜୀବନ ଏ ମନି ତୁମି କରିବେ ଗଠନ
ମରନେ ହାସିବେ ତୁମି କାନ୍ଦିବେ ଭୁବନ୍ ।''
ବାସ୍ତବରେ ଏହାହିଁ ମଣିଷ ଜୀବନର ଶ୍ରେଷ୍ଠତ୍ୱ ।।

ପତ୍ନୀ ୰ କୃଷ୍ଣପ୍ରିୟା ଦେବୀଙ୍କର ପ୍ରଥମ ବାର୍ଷିକ ଶ୍ରାଦ୍ଧ ଉପଲକ୍ଷେ

ଶ୍ରୀ ପ୍ରସନ୍ନ କୁମାର ଦାଶଙ୍କର ଅଶ୍ରୁଳ ଶ୍ରଦ୍ଧାଞ୍ଜଳି ।

# ଶ୍ରଦ୍ଧାଞ୍ଜଳି

କିଏ ତୁମେ, ଆସିଥିଲ ପ୍ରଥମ୍ ଦେଖାରେ
ହାତେ ଧରି ଦୂର୍ବା ଆଉ ପାନର ସମ୍ଭାର,
କିଏ ତୁମେ, ଅକାତରେ ଭରି ଦେଇ ଥିଲ
ମୋ ନୀରସ ପ୍ରାଣେ ଏକ ସ୍ୱପ୍ନର ସଂସାର ।
କିଏ ତୁମେ, ଚୁପି ଚୁପି କହିଲ ମୋ କାନେ
ହେବାକୁ ସାଧନା ପଥେ ଚିର ସହଚର,
କିଏ ତୁମେ, ବନିଗଲ ନୀରବ ସାଧିକା
ଛାଡ଼ିଲକି ସୁଖମୟ ଆନନ୍ଦ ସଂସାର ।।
କିଏ ତୁମେ, ଢାଳିଥିଲ ମୋ ପାଇଁ ଜାଗର
ସହିବାକୁ ଦୁଃଖ, ହୋଇ ଘାଟର ପଥର,
କୁହ ତେବେ, କିମ୍ପା ଏକା ଆଗେ ଚାଲି ଗଲ
ସାଇତି ମୋ ଲାଗି ଦୁଃଖ ବେଦନାର ଭାର ।।
ତୁମେ କି ସେ କୃଷ୍ଣପ୍ରିୟା, ମୋର ପ୍ରାଣ ପ୍ରିୟା
ସାଜିଥିଲ ନିଜ ଗୁଣେ ସ୍ନେହ-ପୁଣ୍ୟତୋୟା,
ଶକ୍ତି ଓ ପ୍ରେରଣା ଘେନି ଚଲା ପଥେ ମୋର
ମମତା ଡ଼ୋରିରେ ବାନ୍ଧି ସୃଜିଥିଲ ମାୟା ।।
ତୁମେ କିଗୋ ତପସ୍ୱିନୀ ସେହି କୃଷ୍ଣପ୍ରିୟା
ସାଧନା ମନ୍ଦିରେ ମୋର ସାଥୀ ପୂଜାରିଣୀ,
ତୁମେ କିଗୋ ପ୍ରେମମୟୀ ସେହି କୃଷ୍ଣପ୍ରିୟା
ସମସ୍ତଙ୍କ ଆଦରର ଥିଲ 'ଭାବନାନୀ' ।।
ତୁମେ ଥିଲ ଗୃହଲକ୍ଷ୍ମୀ ମୋ ଜୀବନ ଜ୍ୟୋତି
ହସୁଥିଲା ତୁମ ଲାଗି ମୋ ସୁନା ସଂସାର,
ଝରୁଅଛି ଏକାନ୍ତରେ ତୁମରି ମମତା
ତୁମ ବିନା ଗୃହ ମୋତେ ଦିଶେ ଅନ୍ଧକାର ।।
ପ୍ରଥମ ବାର୍ଷିକ ଶ୍ରାଦ୍ଧେ ବ୍ୟାକୁଳିତ ପ୍ରାଣେ
ଝରାନ୍ତି ଲୋତକ ଆଜି ପ୍ରିୟ ପରିଜନ
ସ୍ୱର ଲୋକେ ଥାଇବାରେ ଦିଅ ଗୋ ଆଶିଷ
ମାନମୟୀ ଘେନ ବାରେ ଏ ସ୍ମୃତି ତର୍ପଣ ।।

# ଅଭୁଲା ସ୍ମୃତି

ସୁଖେ ଆସିଥିଲ ଦୁଃଖେ ଚାଲିଗଲ,
          ଆଉତ ଫେରିଲ ନାହିଁ ।
କେତେ ସନ୍ଧ୍ୟାର ଅକୁହା ବେଦନା
          ଆଉତ କହିବ ନାହିଁ ।।
ବରଷେ ହେଲାଣି ତୁମେ ଗଲା ଦିନୁଁ
          ନୟନୁ ଝରାଏ ପାଣି ।
ସାନ୍ତ୍ୱନା ଦେବାକୁ ପାଶେ ନାହିଁ କେହି
          ମୋ ମନ-ବେଦନା ଜାଣି ।।
ତୁମେ ଥିଲ ମୋର ସାଧନା-ଶାକତି,
ନିଖିଳ କରମେ ପ୍ରେରଣା-ଦାତ୍ରୀ,
ବ୍ରତ-ସାଧନାର ଦୁର୍ଗମ ପଥେ
          ତୁମେ ଯେ ହେଲି ହୀନବଳ ।
ମୋର ଚଲା ପଥେ ସାହସ ଦେବାକୁ
          ତୁମେ ଥିଲ ସେ ସମ୍ବଳ ।

ସତୀ ସ୍ୱାଧୀ ତୁମେ ତେଜିଲ ସଂସାର
          ସଂଖା-ସିନ୍ଦୂର ନାଇ ।
ନାରୀ ଜୀବନର ପୂଣ୍ୟତପ ଫଳ
          ସ୍ୱର୍ଗେ ଭୋଗିବା ପାଇଁ ।।
ଅଭିମାନିନୀ ଗୋ ଚାଲିଗଲ ତୁମେ
          ସବୁ ବନ୍ଧନ ଫେଇ ।
ଦୁଃଖେ ଗଢ଼ିଥିଲ ଯେଉଁ ସଂସାର
          କାହାକୁ ଚାହିଁଲ ନାହିଁ ।।
ସ୍ୱର୍ଗେ ଥାଇ କ୍ଷମା ଦେବ ଆଗୋ ବାମା
          ମୋର ଅବହେଳା ପାଇଁ
ହେଲେ ବିଭୁ ଦୟା ଜନ୍ମାନ୍ତରେ ପ୍ରିୟା
          ଭାବେ ପାଇବଇଁ ମୁହିଁ ।।

# ଦୁଃଖିର ଭଗବାନ

ଯେତେ ଦୁଃଖ ମୋତେ ଦିଅ ପଛେ ପ୍ରଭୋ
ତୁମ ଇଚ୍ଛା ପୂର୍ଣ୍ଣ ହେଉ ।
ଦୁଃଖରେ ହିଁ ଯାର ଜୀବନଟି ଗଢ଼ା
ଭୟକିଣ ତାର ଆଉ ॥୧ ॥

ତୁମକୁ ବହନ୍ତି କରୁଣା ସାଗର
(କାହିଁ) କିଛି ତ ପାଇଲି ନାହିଁ,
ତେବେ କିପାଁ ଲୋକେ କାତରେ ଡ଼ାକନ୍ତି
ରଖ ମୋତେ ଆହେସାଇଁ ॥୨ ॥

ଦୀନାର୍ତ୍ତ ଜନଙ୍କୁ ଉଦ୍ଧାରିଛ ବୋଲି
ବୋଲାଉଛ ଦୀନବନ୍ଧୁ,
ମୋ ପାଇଁ କାହିଁକି ଏତେ ନିଦାରୁଣ
କୁହ ବାରେ ଜଗବନ୍ଧୁ ॥୩ ॥

ଯେବେ ନ ଶୁଣିଲ ତୁମ ଇଚ୍ଛା ପ୍ରଭୋ
ତିଳେ ହେଲେ ଦୁଃଖ ନାହିଁ,
(ଖାଲି) କଷଣ ସହନେ ବଳ ଦିଅ। ପ୍ରଭୋ
ଆଉ କିଛି ମାଗୁ ନାହିଁ ॥୪ ॥

ଦୁଃଖକୁ ବି ସଦା ସୁଖ ମଣୁ ଥାଏଁ
ତୁମ ପାଦପଦ୍ମ ଧ୍ୟାୟୀ,
ସେ ପଦ କମଳେ ସ୍ଥାନ ଦିଅ ମୋତେ
ଜୀବ ଯାଉ ନାମ ଗାଇ ॥୫ ॥

# ମାଗୁଣୀ

ଗର୍ବ ଅହଂକାର ନେଇ ଯାଅ ପ୍ରଭୋ !

ନିଃସ୍ୱ କରିଦିଅ ମୋତେ,

ତୁମରି ଆଶିଷ ହେଉ ମୋ ପାଥେୟ

ନିତିଦିନ ଚଲା ପଥେ ॥୧ ॥

ଦୁଃଖୀ ଦୁଃଖେ ସଦା ଦରଦୀ ହୋଇଣ

ବହୁ ମୋ ଆଖିରୁ ପାଣି,

ଦୁଃଖୀ ସେବା ମଧ୍ୟେ ଦେଖୁ ଥାଏଁ ନିତି

ପ୍ରଭୁଙ୍କ ଯୁଗଳ ଠାଣି ॥୨॥

କି ହେବ ମୋହର ଧନ ବା ସଂପଦ

କିବା ହେବ ରାଜପଦ,

ଲୋଭ ମୋହ ଆଉ ମଦ ବା ମାତ୍ସର୍ଯ୍ୟ

ନ ଗ୍ରାସୁ ମୋହର ମନ,

ଯେତିକି ମିଳିଛି ତୁମ କୃପା ବଳେ

ଧନ୍ୟ ହେଉ ଏ ଜୀବନ ॥୪ ॥

# ମୋ ଦୁଃଖିନୀ

ଏତେ ବଡ଼ ଦଣ୍ଡ କିମ୍ପା ଦେଲ ପ୍ରଭୋ
ଜୀବନର ଶେଷ କାଳେ,
କିବା ଅପରାଧ କଲି ମୁଁ ଜାଣେନା
ପୂଛେ ନିତି ପାଦ ତଳେ ॥୧॥

ଦୁଃଖିନୀକୁ ପାଶୁଁ ଛଡ଼ାଇ ନେଇଣ
ଏକା କରିଦେଲ ମୋତେ,
ତୁମ କାର୍ଯ୍ୟ ସିନା ବାଧା ପଡ଼ିଗଲା
କି ଲାଭ ମିଳିଲା ସତେ ॥୨॥

କାଟିବାକୁ ହେବ ଜୀବନାବଶେଷ
ସାଥିହୀନ ହୋଇ ମୋତେ,
ବେଦନା ବଢ଼ିବ କେହିତ ନ ଥିବେ
ଆହା କରିବାକୁ ସାଥେ ॥୩॥

ତୁମ ବିନୁ ଆଉ କିଏ ଅଛି ମୋର
ତୁମ କୃପା ଧରି ମାଥେ,
ବଳ ଦିଅ ପ୍ରଭୋ ! ଶକ୍ତି ଦିଅ ମୋତେ
ଆଗେଇ ଚାଲିବା ପଥେ ॥୪॥

# ଜାତୀୟ ସଂହତି

ଜାତି ସଂପ୍ରଦାୟ ଧରମ ଭେଦରେ
　　ମଣିଷ ହୋଇଛି ଅସୁର,
ଭାଇର ଛାତିରେ ଛୁରୀ ମାରି କରେ
　　ରକତ ରଂଜିତ ସଂସାର ।।୧।।

ହୃଦୟେ ଆମର ସଦା ଜାଗି ଉଠୁ
　　ବିଶୁଦ୍ଧ ମାନବ ଆଚାର,
ସହନ ଶୀଳତା ଦୟା କ୍ଷମା ପରା
　　ମାନବିକତାର ଆଧାର ।।୨।।

ଉଚ୍ଚ ନୀଚ ଛୁଆଁ ଅଛୁଆଁ ଭାବନା
　　ଲକ୍ଷଣ ସ୍ୱାର୍ଥ ପରତାର,
କହ କିଆଁ ପାଣି ପବନ ଆଲୋକେ
　　ନଥାଏ ପାତର ଅନ୍ତର ।।୩।।

ଆଦିମ ଯୁଗରେ ଦେଖା ଦେଲା ଯେବେ
　　ମଣିଷ ସୃଷ୍ଟିର ସଂସାର,
ଭାଇ ଭାଇ ହୋଇ ଗଢ଼ି ଉଠିଥିଲା
　　ନ ଥିଲା ତ ଭେଦ ବିଚାର ।।୪।।

ଧ୍ୱଂସର ପଥରେ ଆଗେଇ ମଣିଷ
　　ଖୋଳୁଛି ନିଜର କବର,
ରକ୍ଷା କର ପ୍ରଭୋ ! ମଣିଷ ଜାତିକୁ
　　ବିନାଶି ପଶୁତ୍ୱ ବିକାର ।।୫।।

ଦେଶ ଦେଶ ମଧ୍ୟେ ବିବାଦ ଘଟାଇ
　　ମରଣେ ବଢ଼ାଏ ଆଦର,
କିଳାଳସେ ଅବା ତାଣ୍ଡବ ରଚଇ
　　ପରିଣାମେ ନାହିଁ ଖାତର ।।୬।।

ସମ୍ଭାଳ ହେ ପ୍ରଭୋ ! ତୁମରି ଭିଆଣ
　　ମନୋହର ଏହି ସଂସାର,
ଜାଗ୍ରତ ହେଉ ହେ ମାନବ ଜୀବନେ
　　ମୂଲ୍ୟବୋଧତାର ବିଚାର ।।୭।।

ଦେଶ ଦେଶ ମଧ୍ୟେ ଖେଳାଇ ଦିଅ ହେ
　　ଶାନ୍ତି ସଂହତିର ବିଚାର,
ଦାନବ ନ ହୋଇ ନର ହେଉ ଦେବ
　　ମାଗୁଣି କରେଁ ଶ୍ରୀପୟର ।।୮।।

# ପରିବେଶ

ଆମେରେ ଜଗତେ ଯେତେକ ମଣିଷ
ବନ ପଶୁ ପକ୍ଷୀ ବୃକ୍ଷ ଓ ଲତା,
ପରିବେଶୁଁ ଆମେ ଜନ୍ମିଛୁଁ ବଢ଼ିଛୁଁ
ପରିବେଶ ଅଟେ ଆମରି ତ୍ରାତା ।।୧।।

ପୃଥିବୀ ଅପ୍ ତେଜ ମରୁତ ବ୍ୟୋମ
ସରିତ ସାଗର ଯେତେ ଝରଣା,
ସୃଷ୍ଟିର ଏସବୁ ତା ସଙ୍ଗେ ମାନବ
ପରିବେଶ ମଧ୍ୟେ ହେଉଛି ଗଣଣ ।।୨।।

ଜ୍ଞାନ ଓ ବିଜ୍ଞାନ ବୁଦ୍ଧିର ବଳରେ
ଭ୍ରାନ୍ତ ମଣିଷ ଚାହେଁ ହେବ ଆଜି ପ୍ରକୃତି ଆଜି ଉତ୍ପୀଡିତା
ଈଶ୍ୱର, ସୃଷ୍ଟିର ଭାଗ୍ୟ ନିୟନ୍ତା ।।୩।।

ଅନ୍ୟକୁ ଡ଼ରାଇ ନିଜ ସ୍ୱାର୍ଥ ପାଇଁ
ମାନବ ଗଢୁଛି ମାରଣ ଅସ୍ତ୍ର,
ଯାର ପ୍ରୟୋଗରେ ସୁରକ୍ଷା କବଚ
ପରିବେଶ ହୁଅଇ ଛିନ୍ନ ଛତ୍ର ।।୪।।

କଳ କାରଖାନା ଜନ ବୃଦ୍ଧିହେଲେ
ବାୟୁମଣ୍ଡଳ ତ ହୁଏ ଦୂଷଣ,
କିବା ପ୍ରତିକାର ? ବଞ୍ଚାଇବ କିଏ ?
ପରିବେଶ ଅଟେ ଆମ ଜୀବନ ।।୫।।

ବଡ଼ ଉପକାରୀ ଏ ତରୁ ବଲ୍ଲରୀ
ବିଶୁଦ୍ଧ କରଇ ବାୟୁ ଆକାଶ,
ତପନ ଦେବଙ୍କୁ ପ୍ରଖର ତାପରୁ
ଆମକୁ ବଞ୍ଚାଏ ଓଜନ ଗ୍ୟାସ ।।୬।।

ମଣିଷ ଗୋଟିକୁ ଦୁଇ ଗୋଟି ବୃକ୍ଷ
ଲଗାଇ ରାଖହେ ସବୁରି ଯଶ,
ତେବେ ସିନା ସୃଷ୍ଟି ସୁରକ୍ଷିତ ହେବ
ଏଭିବ ବିଭୁଙ୍କ ଶୁଭ ଆଶିଷ ।।୭।।